# ସାରସ୍ୱତ ପୁରୁଷ

(ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ଅଶୀପୂର୍ତ୍ତି ଉପଲକ୍ଷେ)

## ଅଶୀପୂର୍ତ୍ତି-ପରିକ୍ରମା



ଅଶୀପୂର୍ତ୍ତି ସ୍ମୃତି କମିଟି ଆନୁକୂଲ୍ୟରେ (୨୦୧୭)




ଷଷ୍ଠୀପୂର୍ତ୍ତି ଅବସରରେ ସମ୍ବର୍ଦ୍ଧନା ସଭା
ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି/ଅଧ୍ୟାପକ ପଠାଣୀ ପଟ୍ଟନାୟକଙ୍କ ସହ

# ସାରସ୍ୱତ ପୁରୁଷ

## ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ଅଶୀପୂର୍ତ୍ତି ପରିକ୍ରମା

ସଂପାଦନା

ଡକ୍ଟର ବସନ୍ତ କୁମାର ପଣ୍ଡା

ଡକ୍ଟର ହୃଷୀକେଶ ମଲ୍ଲିକ

ପ୍ରକାଶକ

ଅଶୀପୂର୍ତ୍ତି ସ୍ମୃତି କମିଟି, ଭୁବନେଶ୍ୱର

# ସାରସ୍ୱତ ପୁରୁଷ

## ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ଅଶୀପୂର୍ତ୍ତି ପରିକ୍ରମା


ସଂପାଦନା

**ଡକ୍ଟର ବସନ୍ତ କୁମାର ପଣ୍ଡା**

**ଡକ୍ଟର ହୃଷୀକେଶ ମଲ୍ଲିକ**



ପ୍ରକାଶକ:

**ଅଶୀପୂର୍ତ୍ତି ସ୍ମୃତି କମିଟି, ଭୁବନେଶ୍ୱର**

**ଅକ୍ଷର ବିନ୍ୟାସ :**

ଅଚ୍ୟୁତାନନ୍ଦ ମହାରଣା

ଡିଙ୍ଗର, ବେଗୁନିଆ, ଖୋର୍ଦ୍ଧା

ଫୋନ୍-୮୩୪୨୦୧୫୦୮୪

ପ୍ରଥମ ପ୍ରକାଶ : ୨୦୧୭

(ଅକ୍ଟୋବର ତା୨୫ରିଖ)

ମୂଲ୍ୟ : ଟ ୨୦୦/-

# - ସୂଚୀପତ୍ର -

*ସଂପାଦକୀୟ...*

# 'ସାରସ୍ୱତ କର୍ମଯୋଗୀ'

ଏଇ ଗ୍ରନ୍ଥଟି ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ମନନଶୀଳ ସମାଲୋଚକ, ସମାଜ ଓ ସାହିତ୍ୟର ସଂରକ୍ଷଣ ଓ ଅଭିବୃଦ୍ଧିରେ ସହାୟକ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କର ସାରସ୍ୱତ କୃତି ଗୁଡ଼ିକର ସତ୍ୟବଦ୍ଧ ଆକଳନ । ପ୍ରଫେସର ଶତପଥୀଙ୍କ ବୟସ ବର୍ତ୍ତମାନ ଅଶୀ । ଏଥିରେ କିନ୍ତୁ ଦିନକାଳ ଅନୁସାରେ ତାଙ୍କ ଜୀବନର କାଳାନୁକ୍ରମିକ ବିବରଣୀ ପ୍ରଦାନ କରାଯାଇନାହିଁ । ତାଙ୍କ କର୍ମମୟ ଜୀବନର ବିଶ୍ଳେଷଣ, ସମକାଳୀନ ଓଡ଼ିଆ ସାହିତ୍ୟ ଓ ସାହିତ୍ୟସ୍ରଷ୍ଟାଙ୍କୁ ପ୍ରତିଷ୍ଠା ଦେବାରେ 'ଇସ୍ତାହାର' ମାଧ୍ୟମରେ ତାଙ୍କର ଅତନ୍ଦ୍ର ପ୍ରୟାସ, ସାଂପ୍ରତିକ ସାହିତ୍ୟର ତତ୍ତ୍ୱ ଓ ପ୍ରୟୋଗକୁ ଛାତ୍ର, ଗବେଷକ ଓ ପାଠକଙ୍କ ନିକଟରେ ସୁପରିଚିତ କରାଇବା ପାଇଁ ତାଙ୍କର ନିଷ୍ଠାପର ଉଦ୍ୟମ, ଓଡ଼ିଶା ତଥା ଓଡ଼ିଆ ସାହିତ୍ୟର ବିଶିଷ୍ଟ କୃତବିଦ୍ୟ ପ୍ରତିଭାମାନଙ୍କ ଉପରେ ପରିକ୍ରମା ପ୍ରକାଶ କରି ପୂଜ୍ୟପୂଜାର ଅନନ୍ୟ ପରମ୍ପରା ପ୍ରତିଷ୍ଠା, ମର୍ଯ୍ୟାଦାଜନକ ଶାରଳା ପୁରସ୍କାର ଆରମ୍ଭ କରି ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କୃତିକୁ ସମ୍ମାନିତ କରିବାରେ ଉଲ୍ଲେଖନୀୟ କାର୍ଯ୍ୟ, 'ସାଂପ୍ରତିକ' ସାହିତ୍ୟାନୁଷ୍ଠାନ ପ୍ରତିଷ୍ଠା କରି ଓଡ଼ିଆ ସାହିତ୍ୟ ସହିତ ଅନ୍ୟ ଭାରତୀୟ ସାହିତ୍ୟର ଦ୍ୱିପାକ୍ଷିକ ସମ୍ବନ୍ଧ ପ୍ରତିଷ୍ଠା କରିବା ପାଇଁ ପ୍ରଶଂସନୀୟ ଉଦ୍ୟମ, ଭାଷା ସୁରକ୍ଷା ସମ୍ମିଳନୀ ସହିତ ସମନ୍ୱିତ ହୋଇ ଓଡ଼ିଆ ଭାଷାର ସାମଗ୍ରିକ ବିକାଶ ପାଇଁ ଉତ୍ସର୍ଗୀକୃତ ସହଯୋଗ ଆଜି ପ୍ରଫେସର ଶତପଥୀଙ୍କର ଉଲ୍ଲେଖନୀୟ ଅବଦାନ ସମ୍ପର୍କରେ ସବିଶେଷ ଆଲୋଚନା ଏଥିରେ ସ୍ଥାନିତ ହୋଇଛି । ଏଥିସହିତ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାୟ ସବୁ ପ୍ରଧାନ ବିଭାଗରେ- କବିତା, କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ସମ୍ପର୍କରେ ଯୁଗାନ୍ତକାରୀ ପ୍ରଭାବଶାଳୀ ସମାଲୋଚନା ଲେଖି ସେ ଓଡ଼ିଆ ସମାଲୋଚନା ସାହିତ୍ୟର ଯେପରି ପ୍ରଭୂତ ଉନ୍ନତି ସାଧନ କରିଛନ୍ତି, ସେ ସବୁର ଗବେଷଣାତ୍ମକ ପୁଙ୍ଖାନୁପୁଙ୍ଖ ସୁନିର୍ଦ୍ଦିଷ୍ଟ ଆଲୋଚନା ସଂକଳିତ ହୋଇଛି । ଏଥିସହିତ ତାଙ୍କର ନିଜସ୍ୱ ରଚିତ ସୃଷ୍ଟିଶୀଳ କୃତି - କବିତା, ଗଳ୍ପ ଓ ଏକ ଉପନ୍ୟାସ ସମ୍ପର୍କରେ ଆଲୋଚନା ଏଥିରେ ସ୍ଥାନ ପାଇଛି । ଏସବୁକୁ ରଚନା କରିଛନ୍ତି ସୁଯୋଗ୍ୟ ସାହିତ୍ୟସ୍ରଷ୍ଟା ଓ ସମାଲୋଚକଗଣ । ଅନେକ ପ୍ରଫେସର ଶତପଥୀଙ୍କ ଛାତ୍ର, ଗବେଷକ, ସତୀର୍ଥ ସମୀକ୍ଷକ ।

କୁହାଯାଏ ଯେ ସାହିତ୍ୟ ପାଇଁ ଅଭିଭାବକତ୍ୱର ପ୍ରୟୋଜନ ନାହିଁ । କାରଣ ତାହା ସ୍ୱନିର୍ଭର, ସ୍ୱାଧୀନ ଓ ସତ୍ୟନିଷ୍ଠ । କିନ୍ତୁ ଯୁଗେ ଯୁଗେ ଇତିହାସରେ ଦେଖାଯାଉଛି ସମୟର ପ୍ରାଣସ୍ପନ୍ଦନକୁ ସାହିତ୍ୟରେ ପ୍ରକାଶ କରି ଯୁଗର ଆଦର୍ଶରେ ତାହାକୁ ପ୍ରତିଷ୍ଠା କରିବା ପାଇଁ ଯେଉଁମାନେ ମୁଖ୍ୟ ଭୂମିକା ନିର୍ବାହ କରିଥାନ୍ତି, ସେମାନେ ଅଲକ୍ଷ୍ୟରେ ଅଭିଭାବକ ଭାବେ ହିଁ ପରିଚିତ ହୋଇଥାନ୍ତି । ବିପନ୍ନ ମାତୃଭାଷାର କୁଶଳୀ ସେନାପତି ଫକୀରମୋହନ ହୁଅନ୍ତୁ ବା ଯୁଗସ୍ରଷ୍ଟା ରାଧାନାଥ କି ଭକ୍ତକବି ମଧୁସୂଦନ - ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟକାଳରେ ଏମାନଙ୍କ ଅଭିଭାବକତ୍ୱରେ ଓଡ଼ିଆ ସାହିତ୍ୟ ଅଭିବୃଦ୍ଧି ଲାଭ କରିଛି । ଏମାନଙ୍କ ପରେ ପରେ ଆସିଛନ୍ତି ସତ୍ୟବାଦୀର ସାଧକଗଣ । ସଂକଳ୍ପ ଶକ୍ତିରେ, କର୍ମୋଦ୍ୟମରେ, ମାନବତାବାଦୀ ଜୀବନଦର୍ଶନରେ, ଜାତୀୟତାବାଦୀ ସାହିତ୍ୟ ରଚନାରେ ଏମାନେ ଓଡ଼ିଶା ଓ ଓଡ଼ିଆ ସାହିତ୍ୟକୁ ଯେଉଁ ବିପୁଳ ଅବଦାନ ଦେଇ ଯାଇଛନ୍ତି ତାହା ଇତିହାସରେ ସ୍ମରଣ ରହିଛି ଓ ଏ ପର୍ଯ୍ୟନ୍ତ ଅନତିକ୍ରମଣୀୟ ହୋଇ ରହିଛି । ଏସବୁ ପାଇଁ ଯୁଗଚେତନାର ବାର୍ତ୍ତାବହ ଭାବରେ ଉତ୍କଳମଣି ଗୋପବନ୍ଧୁଙ୍କ ଅତୁଳନୀୟ ବ୍ୟକ୍ତିତ୍ୱ ଓ ଅସାମାନ୍ୟ କୃତିତ୍ୱ ଆମପାଇଁ ଚିରକାଳ ଉଦାହରଣ ହୋଇ ରହିଛି । ସାହିତ୍ୟର କ୍ରମୋନ୍ନତି ପାଇଁ ଅନୁକୂଳ ଅବସ୍ଥା ଓ ଶକ୍ତିଶାଳୀ ଚିନ୍ତାଶୀଳ ବ୍ୟକ୍ତିଙ୍କର ଆବଶ୍ୟକତା ବିଷୟରେ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀରେ ଲେଖିଥିଲେ, "ସାହିତ୍ୟର ଉନ୍ନତି ନିମନ୍ତେ କେତେଗୁଡ଼ିଏ ଉପଯୋଗୀ ଅବସ୍ଥା ଏବଂ ଉପାଦାନର ପ୍ରୟୋଜନ । ପ୍ରଥମେ ଶକ୍ତିଶାଳୀ ମତିମାନ ଚିନ୍ତାଶୀଳ ବ୍ୟକ୍ତିର ଆବିର୍ଭାବ । ସାଧାରଣତନ୍ତ୍ରର ଗୁରୁତ୍ୱ ଓ ଆବଶ୍ୟକତା ସ୍ୱୀକାର କଲେ ସୁଦ୍ଧା ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ ସାହିତ୍ୟ, ସମାଜ, ରାଜନୀତି, ଅର୍ଥନୀତି, ଧର୍ମ ପ୍ରଭୃତି ସକଳ କ୍ଷେତ୍ରରେ ଅସାଧାରଣ ମନୁଷ୍ୟର ଆବିର୍ଭାବ ନ ହେଲେ ଅଭାବନୀୟ ପରିବର୍ତ୍ତନ ଏବଂ ଉନ୍ନତି କଦାପି ସମ୍ଭବପର ନୁହେଁ । ପ୍ରତିଭାଶାଳୀ ସାଧକ ଅନ୍ୟାନ୍ୟ କ୍ଷେତ୍ରରେ ଯେପରି, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ଯୁଗାନ୍ତର ଘଟାଇଛନ୍ତି । ସେହିପରି ମହାପୁରୁଷଙ୍କ ଚାରିପାଖେ କେତେଗୁଡ଼ିଏ ସହଯୋଗୀ ଆସି ସ୍ୱତଃ ମିଳିଯା'ନ୍ତି । ଏକ ଅଭିନବ ଚିନ୍ତା ଓ କର୍ମର ସ୍ରୋତ ସର୍ବତ୍ର ପ୍ରବାହିତ ହୁଏ । ପଞ୍ଚସଖାଙ୍କର ଅଭ୍ୟୁଦୟବେଳେ ଓଡ଼ିଶାରେ ଏପରି ପ୍ରଭାବ ଥରେ ଦେଖା ଦେଇଥିଲା । ମାତ୍ର ଏପରି ଯୁଗ ସବୁ ଜାତିର ଭାଗ୍ୟରେ ସହଜରେ ଆସେ ନାହିଁ । ପ୍ରତିଭାର ବିକାଶ ସାଧାରଣତଃ ସବୁବେଳେ ସର୍ବତ୍ର ଘଟେ ନାହିଁ । ଅଧିକ ଭାଗ କାର୍ଯ୍ୟ ପୃଥିବୀରେ ସବୁ କ୍ଷେତ୍ରରେ ଅଧ୍ୟବସାୟ, ସହଯୋଗିତା ଏବଂ ନୈଷ୍ଠିକତା ପ୍ରଭାବରେ ହୋଇଥାଏ । ଏ ଉପାଦାନ ମଧ୍ୟ ଓଡ଼ିଶାରେ ଏକାନ୍ତ ଅଭାବ ।" ପ୍ରାୟ ଶହେବର୍ଷ ପୂର୍ବରୁ ପଣ୍ଡିତ ଗୋପବନ୍ଧୁଙ୍କର ଏଇ ସମୟୋଚିତ ବିଶ୍ଳେଷଣ ଓ ଆହ୍ୱାନ ଆଜି ମଧ୍ୟ ସଂପୂର୍ଣ୍ଣ ପ୍ରାସଂଗିକ ହୋଇ ରହିଛି । ଆମ ସାହିତ୍ୟରେ କୃତବିଦ୍ୟ ଶକ୍ତିଶାଳୀ ଓ ଚିନ୍ତାଶୀଳ ପ୍ରତିଭାମାନଙ୍କର ଅଭାବ ହୁଏତ ନାହିଁ । କିନ୍ତୁ ଜାତୀୟ କାର୍ଯ୍ୟରେ

ନିଜକୁ ବିନିଯୋଗ କରିବାର ମାନସିକତାର ଘୋର ଅଭାବ ଆମ ସାହିତ୍ୟର ସାମଗ୍ରିକ ଅଭିବୃଦ୍ଧି ଦିଗରେ ଅନ୍ତରାୟ ହୋଇଛି ।

ପଣ୍ଡିତ ଗୋପବନ୍ଧୁ ଜଗନ୍ନାଥ ଦାସ ଆଦି ପଞ୍ଚସଖାଙ୍କ ଅଭ୍ୟୁଦୟର କଥା କହିଥିଲେ । ତା'ର ଅନେକକାଳ ପରେ ଆଉ ଏକ ପଞ୍ଚସଖା ଗୋଷ୍ଠୀର ନେତୃତ୍ୱ ନେଇ ସେ ସତ୍ୟବାଦୀ ଯୁଗରେ ଯେଉଁ ଜାତୀୟ ଜାଗରଣ ସମ୍ଭବ କରି ପାରିଥିଲେ, ଓଡ଼ିଶା ଓ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବୋଧହୁଏ ତାହା ଥିଲା ଶେଷ ଜାତୀୟ ଜାଗରଣ । ତା'ପରେ ବ୍ୟକ୍ତିବାଦୀ ରାଜନୀତି, ବ୍ୟଷ୍ଟିବାଦୀ ସାହିତ୍ୟର ପ୍ରଭୂତ ଉନ୍ନତି ହୋଇଛି, କିନ୍ତୁ ଜାତୀୟତାବାଦୀ ଚେତନା ଓ ସାହିତ୍ୟ ଆଉ ସମ୍ଭବ ହୋଇପାରିନାହିଁ । ସତ୍ୟବାଦୀ ଆଦର୍ଶର ଉତ୍ତରାଧିକାରରେ ନିଜକୁ ଦୀକ୍ଷିତ କରିଥିବା ଯେଉଁ କେତେଜଣ ମହତ୍ତ୍ୱାକାଂକ୍ଷୀ ସାହିତ୍ୟିକ ନିଜର ସଂକଳ୍ପ ଶକ୍ତି ଓ କାର୍ଯ୍ୟୋଦ୍ୟମ ବଳରେ ସତ୍ୟବାଦୀର ସାଧକମାନଙ୍କର ସେଇ ତ୍ୟାଗନିଷ୍ଠ ମହନୀୟ ପରମ୍ପରାକୁ ନିଷ୍ପ୍ରଭ ହେଉ ପଛକେ ସଚେତନଭାବେ ଜ୍ୱଳମାନ ଓ ଉଦ୍‌ଜୀବିତ ରଖିଛନ୍ତି ସେମାନଙ୍କ ମଧ୍ୟରେ କୃତବିଦ୍ୟ ସାହିତ୍ୟ ସମାଲୋଚକ ଓ ସଂଗଠକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଅନ୍ୟତମ ଓ ଅଗ୍ରଗଣ୍ୟ ।

## ଅଧ୍ୟାପନା :

ଏଇ କ୍ଷୁଦ୍ର ପ୍ରତିବେଦନଟିରେ ପ୍ରଫେସର ଶତପଥୀଙ୍କର ତିନୋଟି ଦିଗ ପ୍ରତି ଗୁରୁତ୍ୱ ଦିଆଯିବ । ଅଧ୍ୟାପକ ଭାବରେ, ସଂପାଦକ ଓ ସଂକଳକ ଭାବରେ ଓ ସଂଗଠକ ଭାବରେ ତାଙ୍କର ଓଡ଼ିଆ ସାହିତ୍ୟ ସେବା ଓ ପରବର୍ତ୍ତୀ ପିଢ଼ି ପାଇଁ ଉଦାହରଣ ସୃଷ୍ଟି କରିବାର ଦୃଷ୍ଟାନ୍ତ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ବହୁ ପରବର୍ତ୍ତୀ ସମୟରେ ପ୍ରତିଷ୍ଠା ହେଲା । ୧୯୬୯ ମସିହାରେ ଏଇ ବିଭାଗର ପ୍ରଥମ ଅଧ୍ୟାପକ ଭାବେ ଯୋଗ ଦେଲେ ନିତ୍ୟାନନ୍ଦ ବାବୁ । ପରବର୍ତ୍ତୀ ସମୟରେ ଡକ୍ଟର ବଂଶୀଧର ମହାନ୍ତି ଓ ଅନ୍ୟମାନେ ଆସିଲେ । ପାଠ୍ୟକ୍ରମରେ ଆଧୁନିକ ସାହିତ୍ୟକୁ ପ୍ରଧାନ ଅଂଶଭାବେ ଅନ୍ତର୍ଭୁକ୍ତ କରାଇ ସାହିତ୍ୟର ମୁଖ୍ୟ ଧାରା ପ୍ରତି ଛାତ୍ରଛାତ୍ରୀମାନଙ୍କୁ ଆକର୍ଷିତ କରିବା ଥିଲା ନିତ୍ୟାନନ୍ଦ ବାବୁଙ୍କର ମହତ୍ ଉଦ୍ୟମ । ଯଦିଓ ଏହି କାର୍ଯ୍ୟରେ ସେ ବହୁ ବାଧାର ସମ୍ମୁଖୀନ ହୋଇଥିଲେ କିନ୍ତୁ ତାଙ୍କରି କ୍ରମାଗତ ଉଦ୍ୟମ ଓ ନିଷ୍ଠା ଫଳରେ ଆଧୁନିକ ଓଡ଼ିଆ ସାହିତ୍ୟ ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟୟନ ଓ ଗବେଷଣା ପାଇଁ ପ୍ରଧାନ ଉପାଦାନ ଭାବେ ଗୃହୀତ ହେଲା । ସେ ସର୍ବଦା ଛାତ୍ରମାନଙ୍କ ଉପକାରୀ କିନ୍ତୁ ପରୀକ୍ଷା ମୂଲ୍ୟାୟନ ଓ ଗବେଷଣା କାର୍ଯ୍ୟରେ ପକ୍ଷପାତିତାକୁ କେବେ ପ୍ରଶ୍ରୟ ଦେଇନଥାନ୍ତି । ଏଥିରେ ସେ ତାଙ୍କ ଗୁରୁ ଲୋକରନ୍ କୁଞ୍ଜବିହାରୀ ଦାଶଙ୍କ ଅବିଚଳିତ, ନୀତିନିଷ୍ଠ ବ୍ୟକ୍ତିତ୍ୱର ଉତ୍ତରାଧିକାରୀ । ନିତ୍ୟାନନ୍ଦ ବାବୁଙ୍କର ନିଷ୍ଠାପର ଉଦ୍ୟମ ଓ ଅଭୂତପୂର୍ବ ସଂଗଠନ ଫଳରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସତ୍ୟବାଦୀ ପ୍ରଫେସର ଚେୟାର ପ୍ରତିଷ୍ଠା ହୋଇ ପାରିଥିଲା । କିନ୍ତୁ ତାଙ୍କ ପରେ ସେ ଚେୟାରରେ ଯେ ଆଉ

କାହାକୁ ଅବସ୍ଥାପିତ କରାଗଲା ନାହିଁ, ଏହା ଅପାରଗତା ଓ ଅମନଯୋଗିତାର ପରିଣତି । ସ୍ନାତକୋତ୍ତର ଶ୍ରେଣୀରେ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଷୟକୁ ପଢ଼ାଇବା ପାଇଁ ସହାୟକ ପୁସ୍ତକର ଅଭାବ ଥିବାରୁ 'ଇସ୍ତାହାର' ମାଧ୍ୟମରେ ତାହା ଦୂର କରିବା ପାଇଁ ସେ ସର୍ବଦା ଆଧୁନିକ ସାହିତ୍ୟର ବିଭିନ୍ନ ବାଦ, ଅନୁଷଙ୍ଗ ଓ ଓଡ଼ିଆ ସାହିତ୍ୟରେ ସେସବୁର ପ୍ରୟୋଗ ବିଷୟରେ ପ୍ରବନ୍ଧ ପ୍ରକାଶ କରିଥାନ୍ତି । ଅଧ୍ୟାପନା କ୍ଷେତ୍ରରେ ଡଃ ଶତପଥୀଙ୍କର ବୈଶିଷ୍ଟ୍ୟ ରହିଛି । ଯିଏ ତାଙ୍କର ପ୍ରତ୍ୟକ୍ଷ ଛାତ୍ର ହେବାର ସୌଭାଗ୍ୟ ପାଇଛି ସେ ନିଶ୍ଚୟ ସ୍ମରଣ ରଖିଥିବ । ଯିଏ ମୋ'ଭଳି ତାଙ୍କର ପ୍ରତ୍ୟକ୍ଷ ଛାତ୍ର ନୁହନ୍ତି ସେମାନେ 'ସବୁଜରୁ ସାଂପ୍ରତିକ' ପରି ଆକର ଗ୍ରନ୍ଥ ମାଧ୍ୟମରେ ପ୍ରତିଦିନ ତାଙ୍କଠାରୁ ବିଦ୍ୟା ଅର୍ଜନ କରି ସକୃତଜ୍ଞ ଚିତ୍ତରେ ତାଙ୍କ ଅଧ୍ୟବସାୟକୁ ସତତ ପ୍ରଣାମ ଜଣାଉଥିବ । ସେ ଗତାନୁଗତିକତାକୁ ଭାଙ୍ଗି ସର୍ବଦା ନୂତନତାର ସନ୍ଧାନୀ । ଯେଉଁ ବିଷୟକୁ ପଢ଼ାନ୍ତି, ତା'ର ମୂଳ ଉତ୍ସ, ତା'ର ଦାର୍ଶନିକ ଭିତ୍ତି ଓ ଐତିହାସିକ ପୃଷ୍ଠଭୂମିକୁ ସଂଗ୍ରହ କରି ଓ ବିଶ୍ଳେଷଣ କରି ପ୍ରାଞ୍ଜଳଭାବେ ବୁଝାଇଥାନ୍ତି । ପାଣ୍ଡିତ୍ୟ ଅପେକ୍ଷା ପରିଶୀଳନ, ଶାସ୍ତ୍ରଦର୍ଶିତା ଅପେକ୍ଷା ଗଭୀର ବିଶ୍ଳେଷଣ ଓ ପ୍ରଗଲ୍‌ଭତା ଅପେକ୍ଷା ମିତଭାଷିତା ତାଙ୍କ ଆଲୋଚନାର ବୈଶିଷ୍ଟ୍ୟ । ତୁଳନାତ୍ମକ ଅଧ୍ୟୟନ ଓ ସମକାଳୀନ ପ୍ରାସଂଗିକତାକୁ ସେ ସର୍ବଦା ଗୁରୁତ୍ୱ ଦିଅନ୍ତି । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ଛାତ୍ର ନଥିଲି । କିନ୍ତୁ ଅଧ୍ୟାପକ ହେବା ପରେ ଥରେ ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟର ରିଫ୍ରେସର କୋର୍ସରେ ଯୋଗ ଦେଲାବେଳେ ତାଙ୍କର ଅଧ୍ୟାପନା ଓ ସଂଯୋଜନା ସହିତ ପ୍ରତ୍ୟକ୍ଷ ଅନୁଭବରେ ଆସିଲି । ଆମର ଅନୁରୋଧରେ ସେଇ କାର୍ଯ୍ୟକ୍ରମକୁ ସେ କେବଳ ଓଡ଼ିଆ ଅଧ୍ୟାପକଙ୍କ ଭିତରେ ସୀମିତ ନ ରହି ବହୁ ବହୁ ବିଶିଷ୍ଟ କବି, ଲେଖକ ଓ ଅନ୍ୟାନ୍ୟ ବିଷୟର ବିଶିଷ୍ଟ ଲେଖକମାନଙ୍କୁ ଅତିଥି ଅଧ୍ୟାପକ ଭାବେ ନିମନ୍ତ୍ରଣ କରି ଆମକୁ ସେମାନଙ୍କର ଛାତ୍ର ହେବାର ଅପୂର୍ବ ସୁଯୋଗ ଦେଇଥିଲେ । କାର୍ଯ୍ୟକ୍ରମରେ ଗୋପୀନାଥ ମହାନ୍ତି, ମହାପାତ୍ର ନୀଳମଣି ସାହୁ, ଚନ୍ଦ୍ରଶେଖର ରଥ, ଶରତ କୁମାର ମହାନ୍ତି, ଚିତ୍ତରଂଜନ ଦାସ, ଯତୀନ୍ଦ୍ର ମୋହନ ମହାନ୍ତି, କୃଷ୍ଣପ୍ରସାଦ ମିଶ୍ର, ଗଣେଶ୍ୱର ମିଶ୍ର, ଚିନ୍ତାମଣି ବେହେରା ଆଦି ବହୁ ବିଶିଷ୍ଟ କବି ଲେଖକଙ୍କୁ ଅତିଥି ଅଧ୍ୟାପକ ଭାବେ ନିମନ୍ତ୍ରଣ କରିଥିଲେ । ଏହାଥିଲା ପ୍ରଫେସର ଶତପଥୀଙ୍କର ଅନନ୍ୟତା ।

## ସାହିତ୍ୟ ସମାଲୋଚନା :

ବ୍ୟକ୍ତି ଓ ଅଭିବ୍ୟକ୍ତି - ଏ ଦୁଇ ଦିଗରୁ ପ୍ରଫେସର ଶତପଥୀଙ୍କୁ କଳନା କରିବାକୁ ଗଲେ ବୁଝିହୁଏ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ତାଙ୍କର ପ୍ରଭୂତ ଅବଦାନ ସତ୍ତ୍ୱେ ତା'ର ସ୍ୱୀକୃତି ଓ ସମ୍ମାନ ପ୍ରାୟତଃ ହୋଇନାହିଁ । କାରଣ ଦୁଃଖଦ । ଅନେକ ସମୟରେ ସେ ବିଭିନ୍ନ ଅବୁଝାମଣାର ଶିକାର ହୋଇଛନ୍ତି ଘରେ ଓ ବାହାରେ । ବିତର୍କିତ ବ୍ୟକ୍ତିତ୍ୱ ବୋଲି

ଅନେକଙ୍କର ଧାରଣା ହୋଇଛି । କିନ୍ତୁ ପ୍ରକୃତରେ କର୍ତ୍ତବ୍ୟନିଷ୍ଠା ଓ ପରୋପକାରିତା ତାଙ୍କ ଜୀବନର ବ୍ରତ ଭାବେ ସେ ପାଳନ କରିଛନ୍ତି । ସମାଜ ଓ ସାହିତ୍ୟର କଲ୍ୟାଣ ପାଇଁ ସର୍ବଦା ନିଜକୁ ନିୟୋଜିତ କରିଛନ୍ତି । ବିଶ୍ୱବିଦ୍ୟାଳୟରେ ଓ ବିଭିନ୍ନ ଅନୁଷ୍ଠାନ କାର୍ଯ୍ୟରେ ଏହାର ପରିଚ୍ୟ ରହିଛି । ସେ ଯାହାସବୁ ରଚ୍ନା କରିଛନ୍ତି ଆଧୁନିକ ସାହିତ୍ୟର ସମାଲୋଚ୍ନା କ୍ଷେତ୍ରରେ ତାଙ୍କ ନାମ ପ୍ରଥମରୁ ରହିବା କଥା । ସାହିତ୍ୟର ଐତିହାସିକମାନେ ଏହା ସ୍ୱୀକାର କରିଛନ୍ତି । ଓଡ଼ିଆ ସାହିତ୍ୟର କ୍ରମବିକାଶ ଗ୍ରନ୍ଥରେ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି, "ଡଃ ନିତ୍ୟାନନ୍ଦ ଶତପଥୀ ଜଣେ ସୂକ୍ଷ୍ମଦର୍ଶୀ ସମାଲୋଚ୍କ ରୂପେ ବିଦ୍ୱାନ ସମାଜର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି ।" ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ନିଜର "History of Oriya Literature" ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, "Nityananda Satpathy (1937), a professer of oriya in utkal university, who edited a quarterly journal 'Istahar' for many years, devoted to post-independence oriya literature, particularly poetry. Satpathy through his journal, as also else where, highlighted many emerging poets and made assessment for their poetry and created a congenial field for both." ଏସବୁ ସତ୍ତ୍ୱେ ତାଙ୍କର ପ୍ରକୃତ ପ୍ରାପ୍ୟ ଯେ ସେ ପାଇପାରି ନାହାନ୍ତି, ଏହା ଭାଗ୍ୟର ବିଡ଼ମ୍ବନା ଅଥବା ଓଡ଼ିଶାରେ ସାରସ୍ୱତ ପ୍ରତିଭାର ଅବମାନନା କୁହାଯିବ । ଏଥିପାଇଁ ଅନେକାଂଶରେ ଦାୟୀ ହୁଏତ ତାଙ୍କର ବେସାଲିସ୍ ମନୋଭାବ, ସ୍ପଷ୍ଟବାଦିତା, ନିର୍ଭୀକ ପ୍ରଶ୍ନବାଦିତା, ପରିସ୍ଥିତି ସହିତ ଖାପ ଖୁଆଇ ନ ପାରିବାର ପରିଣତି । କିନ୍ତୁ ପ୍ରକୃତରେ Elit ବା ବୁଦ୍ଧିଜୀବୀର ଯାହା ସଂଜ୍ଞା ପ୍ରଫେସର ଶତପଥୀ ତା'ର ଏକ ପ୍ରକୃଷ୍ଟ ଉଦାହରଣ । ତାଙ୍କର ଏଇ ଗୁଣ ଓ ପରାକାଷ୍ଠା ହିଁ ତରୁଣ ବୟସରେ ମୋ'ଭଳି ସାହିତ୍ୟ ପ୍ରତି ଗଭୀର ନିଷ୍ଠା ରଖୁଥିବା ଆହୁରି ଅନେକଙ୍କୁ ଆକର୍ଷିତ କରିପାରିଥିଲା ।

ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚ୍ନାକୁ ପ୍ରଫେସର ଶତପଥୀଙ୍କର ବିପୁଳ ଅବଦାନ ବିଷୟରେ ଉଲ୍ଲେଖନୀୟ ଆଲୋଚ୍ନା ହୋଇନାହିଁ । ଆଧୁନିକ ଓଡ଼ିଆ ସମାଲୋଚ୍କଙ୍କ ମଧ୍ୟରେ ଡଃ ନଟବର ସାମନ୍ତରାୟ, ଅଧ୍ୟାପକ ଚିନ୍ତାମଣି ବେହେରା, ଡଃ ନରେନ୍ଦ୍ର ନାଥ ମିଶ୍ର, ଡଃ ଦାଶରଥି ଦାସ ଓ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ ରହିବ । ଏମାନଙ୍କ ଭିତରୁ କେବଳ ନଟବର ସାମନ୍ତରାୟଙ୍କୁ ବାଦ୍ ଦେଲେ ଡଃ ଶତପଥୀଙ୍କ ସମାଲୋଚ୍ନା ସାହିତ୍ୟ ଗୁଣାତ୍ମକ ଓ ପରିମାଣାତ୍ମକ - ଉଭୟ ଦିଗରୁ ଅନନ୍ୟ । ଆଧୁନିକ ଓଡ଼ିଆ କବିତାର ସମାଲୋଚ୍ନା କ୍ଷେତ୍ରରେ ଡଃ ଶତପଥୀଙ୍କର ଗବେଷଣା ଓ ବିଶ୍ଳେଷଣ ଯେଉଁ ଐତିହାସିକ ପରଂପରା ସୃଷ୍ଟି କରିପାରିଥିଲା, ଏଯାବତ୍ ତାହା ଅନତିକ୍ରମଣୀୟ ଓ ସମସ୍ତ ଛାତ୍ର ଓ ଗବେଷକଙ୍କ ପାଇଁ ଶ୍ରେଷ୍ଠ ଉତ୍ସ ହୋଇ ରହିଛି ।

'ସବୁଜରୁ ସାଂପ୍ରତିକ' ଓ ପରବର୍ତ୍ତୀ ସମୟରେ ରଚିତ 'ସତୁରୀରୁ ସହସ୍ରାବ୍ଦୀ' ଆଧୁନିକ ଓଡ଼ିଆ କବିତା ଆଲୋଚନାର ଆକର ଗ୍ରନ୍ଥ ଭାବରେ ପରିଚିତ । ପରବର୍ତ୍ତୀ ସମୟରେ ଓଡ଼ିଆ ଗଳ୍ପ ଓ ଉପନ୍ୟାସ ବିଷୟରେ ତାଙ୍କର ଆଲୋଚନା ସମତୁଲ୍ୟ ଗୁରୁତ୍ୱ ବହନ କରି ସମଗ୍ର ଆଧୁନିକ ଓଡ଼ିଆ ସାହିତ୍ୟର ମହନୀୟ ସମାଲୋଚକ ଭାବରେ ତାଙ୍କୁ ପ୍ରତିଷ୍ଠା ଦେଇଛି । 'ଓଡ଼ିଆ ମେଗା ଉପନ୍ୟାସ' ରଚନା କରି ସେ ଓଡ଼ିଆ ଭାଷାରେ ଲିଖିତ କ୍ଲାସିକ୍ ଉପନ୍ୟାସର ଚିରାୟତ ମୂଲ୍ୟକୁ ବ୍ୟାଖ୍ୟା କରିଛନ୍ତି ଓ ସର୍ବଭାରତୀୟ ତଥା ବିଶ୍ୱସାହିତ୍ୟର ପରିପ୍ରେକ୍ଷୀରେ ସେଗୁଡ଼ିକର ମହତ୍ତ୍ୱ ପ୍ରତିଷ୍ଠା କରିଛନ୍ତି । ଏସବୁରେ ତାଙ୍କର ବିପୁଳ ବୈଦଗ୍ଧ୍ୟ, ନିରନ୍ତର ମନନଶୀଳତା ଓ ସୂକ୍ଷ୍ମ ବିଚାରବୋଧର ପରିଚୟ ସ୍ପଷ୍ଟ । ତାଙ୍କ ସମ୍ପାଦନାରେ ଏନ୍.ବି.ଟି. ଦ୍ୱାରା ପ୍ରକାଶିତ 'ସାଂପ୍ରତିକ ଓଡ଼ିଆ କବିତା'ରୁ ସାମଗ୍ରିକ ଆକଳନ ଓ ପ୍ରକୃଷ୍ଟ ଉଦାହରଣ ମିଳିଥାଏ । ଏସବୁ ତାଙ୍କର ଅବିଚଳିତ ସାରସ୍ୱତ ଅନ୍ୱେଷାର ଫଳ । ପ୍ରଫେସର ଶତପଥୀଙ୍କର ଜୀବନବ୍ୟାପୀ ସାଧନାର ଅନ୍ୟ ଦୁଇଟି ପ୍ରଧାନ ଦିଗ - ସଂପାଦନା ଓ ସଂଗଠନ ସମ୍ପର୍କରେ ସାମାନ୍ୟ ଆଲୋଚନା କରିବା ଅତ୍ୟନ୍ତ ପ୍ରୟୋଜନ । କାରଣ ଏ ଦୁଇ କାର୍ଯ୍ୟଧାରା ମାଧ୍ୟମରେ ସେ ଓଡ଼ିଆ ସାହିତ୍ୟର ପ୍ରଭୂତ ସେବା କରିଛନ୍ତି ।

**ସଂପାଦନା :**

ପ୍ରଫେସର ଶତପଥୀଙ୍କ ସଂପାଦନା କାର୍ଯ୍ୟ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ପ୍ରଥମଟି 'ଇସ୍ତାହାର' ସଂପାଦନା ଓ ଅନ୍ୟଟି 'ପୂଜ୍ୟପୂଜା ସଂସଦ' ପକ୍ଷରୁ ସଂକଳିତ ଓ ସଂପାଦିତ ୧୨ଖଣ୍ଡ ପରିକ୍ରମା ଗ୍ରନ୍ଥ । ଏ ଉଭୟ ପାଇଁ ପ୍ରଫେସର ଶତପଥୀ ଓଡ଼ିଆ ସାହିତ୍ୟର ଇତିହାସରେ ସ୍ମରଣୀୟ ରହିବା ଉଚିତ । ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ଆଧୁନିକ କବିତା ଅଧ୍ୟାପନା ସମୟରେ ଆଧୁନିକ କବିତାର ଜଟିଳ ଦୁର୍ବୋଧ୍ୟ ରୂପ ଭାବେ ଅସହଜ ଓ ଅଭିନବ ହୋଇପଡ଼ିଛି, ତାହା ସେ ଅନୁଭବ କରିଥିଲେ । ଏଇ ପରିସ୍ଥିତିରେ ବିଶେଷ ରୂପେ ଛାତ୍ର ଓ ଗବେଷକମାନଙ୍କୁ ଆଧୁନିକ କବିତା ପ୍ରତି ସହଜ ଓ ଆତ୍ମିକଭାବ ସୃଷ୍ଟି କରିବା ପାଇଁ 'ଇସ୍ତାହାର' ପତ୍ରିକାର ପରିକଳ୍ପନା । ଇସ୍ତାହାର-୨ର ସଂପାଦକୀୟରେ ନିତ୍ୟାନନ୍ଦ ଏହି କଥାକୁ ବୁଝାଇ କହିଛନ୍ତି, "ତିନିବର୍ଷ ତଳେ 'ଇସ୍ତାହାର' ପ୍ରକାଶନର ପରିକଳ୍ପନା ଯେତେବେଳେ କରାଗଲା ସେତେବେଳେ ଆଧୁନିକ କବିତା କ୍ଷେତ୍ରରେ ଉପୁଜିଥିବା ଅସ୍ୱସ୍ତିକର ପରିସ୍ଥିତି ଓ ତତ୍ପ୍ରତି ପାଠକସମାଜର ଅଭିରୁଚି ମଧ୍ୟରେ ଏକ ମାଧ୍ୟମିକ ଯୋଗାଯୋଗ ସ୍ଥାପନ ପାଇଁ ଉଦ୍ୟମ କରାଯାଇଥିଲା । × × ଆଧୁନିକ ପ୍ରୟୋଗବାଦୀ ଓଡ଼ିଆ କବିତା ସଂପର୍କରେ ପାଠକର କ୍ରମାଗତ ଅଭିଯୋଗକୁ ମୁକାବିଲା କରିବା ଦିଗରେ 'ଇସ୍ତାହାର-୧' ଯେଉଁ ପଦକ୍ଷେପ ନେଇଥିଲା, ଇସ୍ତାହାର-୨ ସେଇ ପଦକ୍ଷେପର ଏକ ପ୍ରସାରିତ ଅଭିବ୍ୟକ୍ତି ମାତ୍ର ।" ଏଇ ମହତ ଉଦ୍ଦେଶ୍ୟ ନେଇ ୧୯୭୭-୭୮ରେ ଆରମ୍ଭ ହୋଇଥିବା 'ଇସ୍ତାହାର' ଶ୍ରେଷ୍ଠ ସମାଲୋଚନା ପତ୍ରିକା ଭାବରେ ଆଜି

୩୯ ବର୍ଷରେ ଉପନୀତ ହୋଇଛି । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାୟ ସବୁ କବି, ଲେଖକ, ନାଟ୍ୟକାରଙ୍କ ଶ୍ରେଷ୍ଠ କୃତି ସଂପର୍କରେ ପ୍ରଥମେ ଆଲୋଚନା ଏଥିରେ ପ୍ରକାଶ ପାଇଛି । ପୁଣି ପ୍ରତିଷ୍ଠିତ ସମାଲୋଚକ ମାନଙ୍କର ଉଦାସୀନତାର ପ୍ରତିକାର ଭାବରେ ସେତେବେଳେ ପ୍ରଫେସର ଶତପଥୀ ଯେଉଁ ନବାଗତ ତରୁଣ ଛାତ୍ର ଓ ଗବେଷକମାନଙ୍କୁ ଉତ୍ସାହିତ କରି ସମାଲୋଚନା ଲେଖିବାରେ ନିୟୋଜିତ କରିଥିଲେ ସେମାନଙ୍କ ଭିତରେ ଅନେକ ଆଜି ପ୍ରତିଷ୍ଠିତ କବି, ଲେଖକ ଓ ସମାଲୋଚକ ଭାବରେ ଓଡ଼ିଆ ସାହିତ୍ୟରେ ଗୌରବ ଅର୍ଜନ କରିଛନ୍ତି । ବିଭିନ୍ନ ସମୟରେ ଇସ୍ତାହାର ସଂପାଦନା ସହିତ ସଂପୃକ୍ତ ଥିବା ଓ କ୍ରମାଗତ ଇସ୍ତାହାର ପୃଷ୍ଠାରେ ଲେଖି ଆସୁଥିବା ଅନେକେ ଆଜି ଓଡ଼ିଆ ସାହିତ୍ୟର ସୁପରିଚିତ ପ୍ରତିଭା । ନାମୋଲ୍ଲେଖ କରିବା ନିଷ୍ପ୍ରୟୋଜନ । ଓଡ଼ିଆ ସାହିତ୍ୟର ପାଠକମାନେ ଅନାୟାସରେ ସେମାନଙ୍କୁ ଜାଣିପାରିବେ । ଆରମ୍ଭ ଦିନରୁ ଇସ୍ତାହାର ମାଧ୍ୟମରେ ପ୍ରଫେସର ଶତପଥୀ କେତେ ସାହିତ୍ୟମନସ୍କ ପ୍ରତିଭାଙ୍କୁ ଆବିଷ୍କାର କରିଛନ୍ତି ଓ ସେମାନଙ୍କ ମାଧ୍ୟମରେ ଓଡ଼ିଆ ସାହିତ୍ୟର ବିପୁଳ ଉନ୍ନତି ସାଧନ କରିଛନ୍ତି ।

ଇସ୍ତାହାର ମାଧ୍ୟମରେ ପ୍ରଫେସର ଶତପଥୀ କେବଳ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ଓ ସମାଲୋଚନାକୁ ବହୁ ଭାବରେ ବିକଶିତ କରାଇବା ପାଇଁ ଉଦ୍ୟମ କରିଛନ୍ତି ସେତିକି ନୁହେଁ, ବିଭିନ୍ନ ସମୟରେ ଦେଖାଦେଇଥିବା ସାମାଜିକ, ସାଂସ୍କୃତିକ, ଶିକ୍ଷାଗତ ଓ ସାହିତ୍ୟିକ ଏପରିକି ରାଜନୈତିକ ସଂକଟ ଓ ସମସ୍ୟାର ସମ୍ମୁଖୀନ ହେବାପାଇଁ ଯଥୋଚିତ ପରାମର୍ଶ ଦେଇଛନ୍ତି । ଇସ୍ତାହାରର ସଂପାଦକୀୟ ହୋଇପାରିଛି ତାଙ୍କର ପରମ ଆୟୁଧ । ପୂର୍ବରୁ ମୁଁ ବୁଦ୍ଧିବାଦୀ Elite ଙ୍କ କଥା କହୁଥିଲି । କେବଳ ଉଚ୍ଚଶିକ୍ଷିତ, ପଦସ୍ଥ, ଅଭିଜାତ ଅବା ଆଧିପତ୍ୟ ବିସ୍ତାର କରିଥିବା ବ୍ୟକ୍ତି ବା ଗୋଷ୍ଠୀ Elite ନୁହନ୍ତି । ନିର୍ଭୀକଭାବେ ସତ୍ୟ ପ୍ରତିଷ୍ଠା କରି ମାନବସମାଜର ପ୍ରଗତିରେ ସହାୟକ ହୋଇପାରିଲେ ସେ ହେବେ ପ୍ରକୃତରେ Elite ପଦବାଚ୍ୟ । ଏଇ ଦୃଷ୍ଟିରୁ ଇସ୍ତାହାର ସଂପାଦକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ନିଃସନ୍ଦେହରେ ଜଣେ Elite ।

ପ୍ରଫେସର ଶତପଥୀଙ୍କର ସଂପାଦନା କାର୍ଯ୍ୟର ଅନ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ବିଭାଗ ହେଉଛି ପୂଜ୍ୟପୂଜା ସଂସଦ ପକ୍ଷରୁ କ୍ରମାଗତ ବିଭିନ୍ନ ମହନୀୟ ପ୍ରତିଭାଙ୍କ ବିଷୟରେ ପରିକ୍ରମା ପ୍ରକାଶ । ସଂପାଦିତ ୧୨ଟି ପରିକ୍ରମା ପ୍ରକୃତରେ ଅତି ମୂଲ୍ୟବାନ ଓ ଛାତ୍ର ଗବେଷକଙ୍କ ପାଇଁ ଖୁବ୍ ଉପକାରୀ । ଓଡ଼ିଶାର ବରେଣ୍ୟ ପ୍ରତିଭାମାନଙ୍କ ସଂପର୍କରେ ତଥ୍ୟ ସଂଗ୍ରହ କରି ଗ୍ରନ୍ଥ ସଂକଳନ ଉଦ୍ଦେଶ୍ୟରେ ପ୍ରଫେସର ଶତପଥୀ ବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ପୂଜ୍ୟପୂଜା ସଂସଦ ନାମରେ ଅନୁଷ୍ଠାନଟିଏ ଗଢ଼ିଥିଲେ । ସଂସଦର କାର୍ଯ୍ୟାଳୟ କଟକ ଝଉଳିଆଗଞ୍ଜରେ ଥିଲା ଓ ସଂସଦର ଆଜୀବନ ସଭାପତି ଥିଲେ ଲୋକରତ୍ନ କୁଞ୍ଜବିହାରୀ ଦାଶ । ସାହିତ୍ୟ ସାଧନା ଓ ଜାତୀୟ ଭାବଚେତନାରେ ଡଃ ଦାଶ ଥିଲେ

ଜଣେ ଅସାମାନ୍ୟ ପ୍ରତିଭା । ତାଙ୍କରି ପରାମର୍ଶରେ ପୂଜ୍ୟପୂଜାର ଏକ ଅନନ୍ୟ ପରଂପରା ପ୍ରତିଷ୍ଠା କରିଥିଲେ ପ୍ରଫେସର ଶତପଥୀ । କୌଣସି ପ୍ରଚାର କୋଳାହଳ ବିନା ନୀରବ ସାଧନାରେ ଗୋଟିଏ ପରେ ଗୋଟିଏ ପରିକ୍ରମା ପ୍ରକାଶ କରି ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧନ କରିବା ସଂଗେ ସଂଗେ ଛାତ୍ର ଗବେଷକଙ୍କ ପାଇଁ ମୂଲ୍ୟବାନ ତଥ୍ୟ ସଂପଦ ପ୍ରସ୍ତୁତ କରିବା ଥିଲା ପୂଜ୍ୟପୂଜା ସଂସଦର ପ୍ରଧାନ କାର୍ଯ୍ୟ । ଏହାର କାର୍ଯ୍ୟଧାରା ଓ ଉଦ୍ଦେଶ୍ୟ ସଂପର୍କରେ ଗୋଟିଏ ସଂପାଦକୀୟରେ ପ୍ରଫେସର ଶତପଥୀ ଲେଖିଛନ୍ତି, "ଜାତି ପାଇଁ ଗୌରବାବହ ଭୂମିକା ସୃଷ୍ଟି କରିଥିବା ପୂର୍ବସୂରୀମାନଙ୍କୁ ଅବହେଳା କରି କୌଣସି ଜାତି ନିଜକୁ ଏକ ମହତ୍ତ୍ୱପୂର୍ଣ୍ଣ ଅବିଚ୍ଛିନ୍ନ ପରଂପରାର ଯୋଗ୍ୟ ଦାୟାଦଭାବେ ପ୍ରତିଷ୍ଠିତ କରିପାରିବ ନାହିଁ । ଆମେ ଏଇ ଲକ୍ଷ୍ୟରେ ଅନୁବ୍ରତୀ ହୋଇ ଅଦ୍ୟାବଧି ଓଡ଼ିଶାର ବିଶିଷ୍ଟ ବରପୁତ୍ର ଓ ମନୀଷୀମାନଙ୍କ ସଂପର୍କରେ ୧୦ଟି ସ୍ମୃତିଲିପି ପ୍ରକାଶ କରିଅଛୁ । 'ଗୋଦାବରୀଶ ପରିକ୍ରମା' ଯଥାର୍ଥରେ ଆମର ଏକାଦଶ ସଂକଳନ ।" ଏପରି ସଂକଳନର ଆବଶ୍ୟକତା ସଂପର୍କରେ ସେ ଆହୁରି ବୁଝାଇ କହିଛନ୍ତି, "ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ ପ୍ରମୁଖଙ୍କ କୃତି ଓ ଭାବମୂର୍ତ୍ତିକୁ ବର୍ତ୍ତମାନର ଛାତ୍ର ଓ ଯୁବକମାନଙ୍କ ଆଗରେ ଉତ୍ତୋଳିତ କରିବା ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେହେଉଛି । କାରଣ ସେମାନେ ସମାଜ, ଜାତି, ସାହିତ୍ୟ ତଥା ଇତିହାସକୁ ଯେଉଁ ଦାନ ଦେଇ ଯାଇଛନ୍ତି ସେ ସବୁକୁ କ୍ରମେ ଆଜିର ଛାତ୍ର ଓ ଯୁବସମାଜ ଭୁଲିଯିବାକୁ ବସିଲାଣି । ସେମାନେ କେବଳ ବ୍ୟକ୍ତିବିଶେଷ ନଥିଲେ, ଗୋଟିଏ ଗୋଟିଏ ଜାତୀୟ ଅନୁଷ୍ଠାନ ଓ ଦେଦୀପ୍ୟମାନ ଚେତନା ମଧ । ନିଜସ୍ୱ ଗର୍ବ ଓ ଗୌରବର ମୁହୂର୍ତ୍ତମାନଙ୍କୁ ବିସ୍ମୃତ ହୋଇ କୌଣସି ଜାତି ଇତିହାସରେ ବଡ଼ ଭାବେ ନିଜକୁ ଠିଆ କରି ପାରିବକି ? ତେଣୁ ଆନୁଷ୍ଠାନିକ ଓ ବ୍ୟକ୍ତିଗତ ଉଦ୍ୟମରେ ସେମାନଙ୍କ ସଂପର୍କରେ ଯେତେ ପ୍ରାମାଣିକ ପୁସ୍ତକ ପ୍ରକାଶିତ ହୋଇ ଲୋକଲୋଚ଼ନକୁ ଆସିବ ସେତେ ଜାତିର ସାମୂହିକ କଲ୍ୟାଣ ସାଧିତ ହୋଇପାରିବ ।" ଏଇ ଉଦ୍ଦେଶ୍ୟରେ ନିରନ୍ତର କାର୍ଯ୍ୟ କରି ପୂଜ୍ୟପୂଜା ସଂସଦ ପକ୍ଷରୁ ମଧୁସ୍ମରଣିକା (୧୯୬୫), ଗୋପବନ୍ଧୁ ସ୍ମରଣିକା (୧୯୬୬), ନୀଳକଣ୍ଠ ପରିକ୍ରମା (୧୯୬୯), ପ୍ରହରାଜ ପରିକ୍ରମା (୧୯୭୧), ଆଚାର୍ଯ୍ୟ ପରିକ୍ରମା (୧୯୭୩), ଅତିବଡ଼ୀ ପରିକ୍ରମା (୧୯୭୫), ଗୋପବନ୍ଧୁ ପରିକ୍ରମା (୧୯୭୭), ମାନସିଂହ ପରିକ୍ରମା (୧୯୭୯), ବୈକୁଣ୍ଠନାଥ ପରିକ୍ରମା (୧୯୮୧), ଗୋଦାବରୀଶ ପରିକ୍ରମା (୧୯୮୬) ଓ ଗଜପତି ପରିକ୍ରମା (୧୯୮୮) ପ୍ରକାଶ କରିପାରିଥିଲେ । ପ୍ରଥମରୁ ଏପରି ଉଦ୍ୟମ ଆରମ୍ଭ କରି ସେ ଯେପରି ଆର୍ଥିକ ସମସ୍ୟାର ସମ୍ମୁଖୀନ ହୋଇଥିବେ, ଏହା ଅନୁଭବୀମାନେ ଅନୁମାନ କରିପାରିବେ । କିନ୍ତୁ କୌଣସି ଲୋଭ ବା ପ୍ରଚାରର ବଶବର୍ତ୍ତୀ ନ ହୋଇ ଅବିଚ଼ଳିତ ଭାବେ ସେ କାର୍ଯ୍ୟ କରିଆସିଛନ୍ତି । ନିଜର ଗୁରୁ, ଶିକ୍ଷକ ଡଃ ଶ୍ରୀନିବାସ ମିଶ୍ର,

ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓ ବରିଷ୍ଠ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁଙ୍କଠାରୁ ଆରମ୍ଭ କରି ବହୁ ସତୀର୍ଥ ବନ୍ଧୁ, ଗବେଷକ ଓ ଛାତ୍ରମାନଙ୍କୁ ସେ ଏଇ ସଂସଦର ସାରସ୍ୱତ କାର୍ଯ୍ୟରେ ସହଯୋଗ କରିବା ପାଇଁ ଅନୁରୋଧ କରିଛନ୍ତି । କିନ୍ତୁ କାର୍ଯ୍ୟପ୍ରବାହର ମଧ୍ୟସ୍ତମ୍ଭ ଭାବେ ନିଜକୁ ସ୍ଥିର ଓ ଅବିଚଳିତ ରଖିଛନ୍ତି । ଅନୁଷ୍ଠାନର ଆଭିମୁଖ୍ୟ ବିଷୟରେ ସ୍ପଷ୍ଟ କରି କହିଛନ୍ତି, "ପୂଜ୍ୟପୂଜା ସଂସଦ ପରି ଏକ ନିରୁତା ସାହିତ୍ୟ ଓ ସଂସ୍କୃତି ଅଭିମୁଖୀ ସଂସ୍ଥା ପାଇଁ ତା'ର ନିଜସ୍ୱ ସୀମିତତା ରହିଛି । × × ପୂଜ୍ୟପୂଜା ସଂସଦ ନୀରବରେ କିଛି ସ୍ଥାୟୀ କାର୍ଯ୍ୟ କରୁଥିବାରୁ ଅନୁଦାନ ନ ମିଳିଲେ ମଧ୍ୟ କ୍ଷୋଭ ବା ପ୍ରତିବାଦ ପ୍ରକାଶ କରିବ ନାହିଁ । ତାହା ଆମ ଅନୁଷ୍ଠାନର ପବିତ୍ର ଆଭିମୁଖ୍ୟ । (ସଂପାଦକୀୟ : ବୈକୁଣ୍ଠ ପରିକ୍ରମା) - ଏହି ଆଭିମୁଖ୍ୟକୁ ଚରିତାର୍ଥ କରିବା ପାଇଁ ପ୍ରଫେସର ଶତପଥୀଙ୍କ ଅତନ୍ଦ୍ର ପ୍ରୟାସ, ସମୟ ଓ ଶ୍ରମର ଉପଯୋଗ ଫଳରେ ଓଡ଼ିଶା ଓ ଓଡ଼ିଆ ସାହିତ୍ୟର କେତେ ମହନୀୟ ପ୍ରତିଭା ଅବିସ୍ମୃତ ହୋଇ ରହିଛନ୍ତି ପରିକ୍ରମା ପୃଷ୍ଠାରେ, ଜାତିର ଅବଚେତନାର ଓ ଛାତ୍ର ଗବେଷକମାନଙ୍କ ଅଧ୍ୟୟନ ଓ ଅନୁସନ୍ଧାନ ଭିତରେ ।

## ସଂଗଠନ :

ପ୍ରଫେସର ଶତପଥୀଙ୍କର ଜୀବନ କର୍ମମୟ । ସେ କର୍ମବାଦ ଉପରେ ସର୍ବଦା ଗୁରୁତ୍ୱ ଦିଅନ୍ତି । କର୍ମତତ୍ପର ନ ହେଲେ ତାଙ୍କ ସହିତ ପାଦ ମିଶାଇ ଚାଲିବା ସମ୍ଭବପର ହୁଏ ନାହିଁ । ପଣ୍ଡିତ ଗୋପବନ୍ଧୁଙ୍କ ଉକ୍ତି 'କର୍ମେ ଜୀଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ' । ଉକ୍ତିଟିକୁ ଜୀବନର ପ୍ରତିକ୍ଷେତ୍ରରେ ସେ ପ୍ରତ୍ୟକ୍ଷ କରି ଦେଖାଇବା ପାଇଁ ଚେଷ୍ଟା କରିଛନ୍ତି । ଉତ୍କଳମଣିଙ୍କ ମହାର୍ଘ ଜୀବନୀ ଗ୍ରନ୍ଥ 'ହେ ସାଥି ହେ ସାରଥୀ' ରଚନା କରି ଓଡ଼ିଆ ସାହିତ୍ୟରେ ତଥ୍ୟପୂର୍ଣ୍ଣ ଗବେଷଣାମୂଳକ ଜୀବନୀ ରଚନାର ଯେପରି ଏକ ପରଂପରା ଆରମ୍ଭ କରିଥିଲେ ନିଜ ଜୀବନରେ କର୍ମବାଦକୁ ବ୍ରତଭାବରେ ଗ୍ରହଣ କରି ଓଡ଼ିଆ ସାହିତ୍ୟ ସଂସ୍କୃତି ସଂଗଠନ କାର୍ଯ୍ୟରେ ମଧ୍ୟ ଅନନ୍ୟ ଦୃଷ୍ଟାନ୍ତ ସୃଷ୍ଟି କରିଛନ୍ତି । ତାଙ୍କରି ଉଦ୍ୟମରେ ଓ ନେତୃତ୍ୱରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏପରି କେତେକ କାର୍ଯ୍ୟସିଦ୍ଧି ସମ୍ଭବ ହୋଇଛି, ଯାହା ଅନ୍ୟମାନଙ୍କ ପାଇଁ ଉଦାହରଣ ହୋଇ ରହିଛି ।

ସାହିତ୍ୟ ସଂଗଠନର ପ୍ରଥମ ଉଦାହରଣ ହେବ ଇମ୍ଫା ପକ୍ଷରୁ ମର୍ଯ୍ୟାଦାପୂର୍ଣ୍ଣ 'ଶାରଳା ପୁରସ୍କାର' ପ୍ରତିଷ୍ଠା । 'ଇଣ୍ଡିଆନ୍ ମେଟାଲ୍‌ସ ଆଣ୍ଡ୍ ଫେରୋ ଆଲୟସ୍' ବିଶିଷ୍ଟ ଶିଳ୍ପସଂସ୍ଥାର ପ୍ରତିଷ୍ଠାତା ମୁଖ୍ୟ ବୈଜ୍ଞାନିକ ଡଃ ବଂଶୀଧର ପଣ୍ଡା ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ଇଲା ପଣ୍ଡା ସଂସ୍କୃତିସଂପନ୍ନ ଓ ସାହିତ୍ୟାନୁରାଗୀ । ଧନାଢ଼୍ୟ ପଣ୍ଡା ଦମ୍ପତି ଓଡ଼ିଆ ସାହିତ୍ୟର ବିକାଶ ପାଇଁ ଅର୍ଥ ବିନିଯୋଗ କରିପାରିବେ । କିନ୍ତୁ ଏଇ ସଦୁପାୟ, ଯୋଜନା ଓ କର୍ମପ୍ରେରଣା କିପରି ସମ୍ଭବ ହୁଅନ୍ତା ? ଶ୍ରୀମତୀ ଇଲା ପଣ୍ଡା ଏକଦା ଥିଲେ ଶାନ୍ତିନିକେତନ ବିଶ୍ୱଭାରତୀର କଳା ଭବନର ଛାତ୍ରୀ । ତାଙ୍କ ପିତା ବିଶିଷ୍ଟ ଐତିହାସିକ ଓ ଶିକ୍ଷାବିତ୍ ପ୍ରଫେସର ଘନଶ୍ୟାମ

ଦାଶ ତାଙ୍କୁ କଳାଶିକ୍ଷା ପାଇଁ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ପଠାଇଥିଲେ ଓ ଏକଦା ତାଙ୍କର ସହକର୍ମୀ ଓଡ଼ିଆ ବିଭାଗର ଅଧ୍ୟକ୍ଷ ଡଃ କୁଞ୍ଜବିହାରୀ ଦାଶଙ୍କୁ କନ୍ୟାର ତତ୍ତ୍ୱ ବୁଝିବା ପାଇଁ କହିଥିଲେ । ଏଇ ସୂତ୍ରରେ ଇଳାଦେବୀ ଥିଲେ ଲୋକରତ୍ନ ଡଃ କୁଞ୍ଜବିହାରୀ ଦାଶଙ୍କର ସ୍ନେହାଧୀନା ଓ ଅନ୍ତରଙ୍ଗ । ଡଃ ଶତପଥୀ ପ୍ରଥମେ ନିଜର ପ୍ରିୟ ଓ ପୂଜ୍ୟ ସାର୍ ଡଃ କୁଞ୍ଜବିହାରୀ ଦାଶଙ୍କୁ ଏପରି ଏକ ପୁରସ୍କାର ପ୍ରତିଷ୍ଠା ବିଷୟରେ କହି ତାଙ୍କର ହୃଦ୍‌ବୋଧ କରାଇଥିଲେ । ତା'ପରେ ଶ୍ରୀମତୀ ଇଳା ପଣ୍ଡା ଓ ଡଃ ବଂଶୀଧର ପଣ୍ଡାଙ୍କୁ ଏଇ ପ୍ରସ୍ତାବ ଦେଇ ତାହାର ରୂପାୟନ ସମ୍ଭବ କରାଇଥିଲେ । ଓଡ଼ିଆ ସାହିତ୍ୟର ଇଷ୍ଟଦେବୀ ଅଧିଷ୍ଠାତ୍ରୀ ଶାରଳାଙ୍କ ନାମରେ ପୁରସ୍କାର ପ୍ରତିଷ୍ଠା ହେଲା ୧୯୭୯ ମସିହାରେ । ପ୍ରତିଷ୍ଠାତା ସଭାପତି ହେଲେ ଲୋକରତ୍ନ କୁଞ୍ଜବିହାରୀ ଦାଶ । ଶ୍ରୀମତୀ ଇଳା ପଣ୍ଡା ହେଲେ କାର୍ଯ୍ୟକାରୀ ସଭାପତି ଓ ସଂପାଦକ ହେଲେ ଡଃ ନିତ୍ୟାନନ୍ଦ ଶତପଥୀ । ଗୋଟିଏ ଶ୍ରେଷ୍ଠ ସାହିତ୍ୟ କୃତିର ସ୍ରଷ୍ଟାଙ୍କୁ ଶାରଳା ପୁରସ୍କାର ପ୍ରଦାନ କରାଯିବା ସହିତ ଆଉ କେତେଜଣଙ୍କୁ ଉପାୟନ ପ୍ରଦାନ ପୂର୍ବକ ସମ୍ବର୍ଦ୍ଧିତ କରାଯାଉଥିଲା । ପ୍ରଥମ ବର୍ଷର ପୁରସ୍କାର ଲାଭ କରିଥିଲେ 'କୁଳବୃଦ୍ଧ' ଚରିତୋପନ୍ୟାସ ପାଇଁ ବିଶିଷ୍ଟ ଲେଖକ ସୁରେନ୍ଦ୍ର ମହାନ୍ତି ଓ ଉପାୟନ ପାଇଁ ସମ୍ବର୍ଦ୍ଧିତ ହୋଇଥିଲେ କବି କାଳିନ୍ଦୀ ଚରଣ ପାଣିଗ୍ରାହୀ, ବିଶିଷ୍ଟ ଔପନ୍ୟାସିକ ଗୋପୀନାଥ ମହାନ୍ତି, ବିଶିଷ୍ଟ ଜନନାୟକ ଓ ଲେଖକ ହରେକୃଷ୍ଣ ମହତାବ, ସମାଲୋଚକ ଡଃ ନଟବର ସାମନ୍ତରାୟ ଓ ବ୍ୟଙ୍ଗ ଲେଖକ ଫତୁରାନନ୍ଦ । ଦୀର୍ଘକାଳ ପ୍ରଫେସର ଶତପଥୀ ଶାରଳା ପୁରସ୍କାର ଉପଦେଷ୍ଟା ସମିତିର ସଂପାଦକ ଥିଲେ ଓ ବହୁ ବିଶିଷ୍ଟ ଲେଖକ, କବି, ସାହିତ୍ୟିକଙ୍କୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରି ଶାରଳା ପୁରସ୍କାରକୁ ଓଡ଼ିଶାର ସର୍ବଶ୍ରେଷ୍ଠ ସାହିତ୍ୟ ପୁରସ୍କାରର ମର୍ଯ୍ୟାଦା ପ୍ରତିଷ୍ଠା କରିବାର ଗୌରବ ଆଣିପାରିଥିଲେ । ଓଡ଼ିଶାର ସାହିତ୍ୟିକ ମଣ୍ଡଳୀ ଏ ଦିଗରୁ ତାଙ୍କର ନିଷ୍ଠା ଓ ଅବଦାନକୁ ନିଶ୍ଚୟ ସ୍ମରଣ ରଖିବେ ।

ପ୍ରଫେସର ଶତପଥୀଙ୍କର ସାହିତ୍ୟ ସଂଗଠନ ଦକ୍ଷତାର ଅନ୍ୟ ଏକ ଉଲ୍ଲେଖନୀୟ ପରିଚୟ ଥିଲା 'ସାଂପ୍ରତିକ' ଅନୁଷ୍ଠାନ । ୧୯୮୫ ମସିହା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି ସାହିତ୍ୟପ୍ରିୟ ଜାନକୀବଲ୍ଲଭ ପଟ୍ଟନାୟକ । ସାହିତ୍ୟ ସଂସ୍କୃତି ପାଇଁ ପୃଷ୍ଠପୋଷକତା ପ୍ରଚୁର । ଓଡ଼ିଶାର ରାଜନୀତି ଓ ପ୍ରଗତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥାନ୍ତି ବିଶିଷ୍ଟ ଜନନେତା ବସନ୍ତ କୁମାର ବିଶ୍ୱାଳ । ତାଙ୍କରି ଅର୍ଥାନୁକୂଲ୍ୟ ଓ ପୃଷ୍ଠପୋଷକତାରେ ସୃଷ୍ଟି ହେଲା ସଂଭ୍ରାନ୍ତ ସାହିତ୍ୟ ଅନୁଷ୍ଠାନ 'ସାଂପ୍ରତିକ' । ପ୍ରଫେସର ଶତପଥୀ ଓ ତାଙ୍କ ବନ୍ଧୁ ଇଂଜିନିୟର୍ ଅଜିତ୍ ମୋହନ ମୁଖାର୍ଜୀ ସାଂଗଠନିକ ଦାୟିତ୍ୱ ବହନ କଲେ । ଓଡ଼ିଶାର ଅନେକ ବିଶିଷ୍ଟ ସାହିତ୍ୟିକଙ୍କୁ ସଦସ୍ୟଭାବେ ଆହ୍ୱାନ କରି ବିଭିନ୍ନ ଆଲୋଚନାଚକ୍ର ଓ ବୈଠକ ହେଲା । ଅନୁଷ୍ଠାନଟି ପଞ୍ଜିକୃତ ହେଲା । ପ୍ରକୃତ ଆଭିମୁଖ୍ୟ ସ୍ଥିର ହେଲା ଓଡ଼ିଆ ସାହିତ୍ୟକୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇବା । ଏଥିପାଇଁ ଦୁଇଟି କାର୍ଯ୍ୟପନ୍ଥା ସ୍ଥିର କରାଗଲା ।

ପ୍ରଥମଟି କେତେକ ଉପାଦେୟ ଓଡ଼ିଆ ପୁସ୍ତକର ଅନୁବାଦ ଓ ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ବୈଶିଷ୍ୟ ବିଷୟରେ ଇଂରାଜୀରେ ସଂକଳନ ପ୍ରକାଶ କରିବା । ଦ୍ୱିତୀୟଟି ଅନ୍ୟ ରାଜ୍ୟର ଭାଷାସାହିତ୍ୟ ସହିତ ଦ୍ୱିପାକ୍ଷିକ ସଂପର୍କ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଗୌରବ ପ୍ରତିଷ୍ଠା । 'ସାଂପ୍ରତିକ'ର ସାଂଗଠନିକ କାର୍ଯ୍ୟ ବସନ୍ତ ବିଶ୍ୱାଳଙ୍କ ସରକାରୀ ବାସଭବନରୁ ପରିଚାଳିତ ହେଉଥିଲା । ଅନୁଷ୍ଠାନର ସଭାପତି ହେଲେ ବିଶିଷ୍ଟ ଗାଳ୍ପିକ କିଶୋରୀ ଚରଣ ଦାସ । ଉପସଭାପତି ମହାପାତ୍ର ନୀଳମଣି ସାହୁ । ସଂପାଦକ ରହିଲେ ନିଜେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଓ ଯୁଗ୍ମ ସଂପାଦକ ଥିଲି ମୁଁ । ସେତେବେଳେ ମୁଁ ଯୁବକ । ନୂଆ ଅଧ୍ୟାପକ ହୋଇଥାଏ । ବଡ଼ ସାହିତ୍ୟିକଙ୍କ ସହିତ ମିଶି ସାହିତ୍ୟିକ କାର୍ଯ୍ୟ କରିବାର ଦୁର୍ଲ୍ଲଭ ଅନୁଭୂତି ମୋତେ ସର୍ବଦା ଉତ୍ସାହିତ କରୁଥାଏ । ପ୍ରଥମ ବର୍ଷରେ ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଓ ସାହିତ୍ୟିକ ମହତ୍ତ୍ୱ ବିଷୟରେ ଇଂରାଜୀରେ ସୁନ୍ଦର ପରିପାଟୀରେ ସାଂପ୍ରତିକ ଶୀର୍ଷକରେ ସଂକଳନଟିଏ ପ୍ରକାଶିତ ହେଲା । ଗୋଟିଏ ଭବ୍ୟ ସାରସ୍ୱତ ଉତ୍ସବରେ ତାହାକୁ ଲୋକାର୍ପିତ କରିବା ପାଇଁ ନିମନ୍ତ୍ରିତ ହୋଇ ଆସିଥିଲେ ସୁ-ବିଖ୍ୟାତ ଆଲୋଚକ 'ଧ୍ୱନ୍ୟାଲୋକ'ର ପ୍ରତିଷ୍ଠାତା ପ୍ରଫେସର ନରସିଂହାୟା । ସମଗ୍ର ସାହିତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି ହେଲା । କେହି କେହି ଈର୍ଷାନ୍ୱିତ ହୋଇ ବିଭିନ୍ନ କଥା କହି ସମାଲୋଚନା ମଧ୍ୟ କଲେ । କିନ୍ତୁ 'ସାଂପ୍ରତିକ'ର ସାରସ୍ୱତ କାର୍ଯ୍ୟ ଓ ସଂଗଠନ ଥିଲା ଓଡ଼ିଶାରେ ଅଭିନବ ଓ ଅନନ୍ୟ । ପରବର୍ତ୍ତୀ ବର୍ଷ ସାଂପ୍ରତିକ ପକ୍ଷରୁ ଆଉ ଏକ ନୂତନ ପ୍ରକଳ୍ପ ପ୍ରସ୍ତୁତ କରାଗଲା । ସାଂପ୍ରତିକ ସମୟର ଉଲ୍ଲେଖନୀୟ ସାହିତ୍ୟ ପୁସ୍ତକର ସମୀକ୍ଷା ସଂକଳନ କରି ଗ୍ରନ୍ଥ ସମୀକ୍ଷା ଶୀର୍ଷକରେ ପ୍ରକାଶ କରିବା । ଗ୍ରନ୍ଥ ସମୀକ୍ଷା ମାଧ୍ୟମରେ ପ୍ରକୃତରେ ରୁଚିପୂର୍ଣ୍ଣ ଉପାଦେୟ ସାହିତ୍ୟ ପୁସ୍ତକ ବିଷୟରେ ସବିଶେଷ ଆଲୋଚନା କରି ପାଠକମାନଙ୍କୁ ସେହି ପୁସ୍ତକ ପଢ଼ିବା ପାଇଁ ଆକର୍ଷିତ କରିବା ଥିଲା ଏହି କାର୍ଯ୍ୟର ମୁଖ୍ୟ ଉଦ୍ଦେଶ୍ୟ । 'ସାଂପ୍ରତିକ ଗ୍ରନ୍ଥ ସମୀକ୍ଷା-୧୯୮୫'ରେ ବହୁ ଉଲ୍ଲେଖନୀୟ ପୁସ୍ତକର ସମୀକ୍ଷା ସଂକଳିତ ହୋଇଥିଲା । ଉଲ୍ଲେଖନୀୟ ପୁସ୍ତକ ମଧ୍ୟରୁ ରମାକାନ୍ତଙ୍କ 'ଶ୍ରୀରାଧା'ର ସମୀକ୍ଷା କରିଥିଲେ ଦାଶରଥି ଦାସ, ଗୋପୀନାଥ ମହାନ୍ତିଙ୍କର 'ଧୂଳି ମାଟିର ସନ୍ଥ'ର ସମୀକ୍ଷା କରିଥିଲେ ଚିତ୍ତରଂଜନ ଦାସ, ମନୋରଂଜନ ଦାସଙ୍କ ନାଟକ 'ନନ୍ଦିକେଶରୀ'ର ସମୀକ୍ଷା କରିଥିଲେ ଯତୀନ୍ଦ୍ରମୋହନ ମହାନ୍ତି, କୁଞ୍ଜବିହାରୀ ଦାଶଙ୍କ ଭ୍ରମଣ କାହାଣୀ 'ଆମେରିକା ପୁନଶ୍ଚ'ର ସମୀକ୍ଷଣ ଗଗନେନ୍ଦ୍ରନାଥ ଦାଶ, ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଆଦ୍ୟ ସକାଳ'ର ସମୀକ୍ଷା ନିତ୍ୟାନନ୍ଦ ଶତପଥୀ ଓ ସଦାଶିବ ମିଶ୍ରଙ୍କ ପ୍ରବନ୍ଧ 'ଅର୍ଥ ଓ ଅର୍ଥାନ୍ତର'ର ସମୀକ୍ଷା କରିଥିଲେ ନରେନ୍ଦ୍ରନାଥ ମିଶ୍ର, ମହାପାତ୍ର ନୀଳମଣି ସାହୁଙ୍କ 'ପାପ ଓ ମୁକ୍ତି'ର ସମୀକ୍ଷା କରିଥିଲେ ସୌରୀନ୍ଦ୍ର ବାରିକ । ଏହିପରି ଉଦ୍ୟମ ସେତେବେଳେ ଓଡ଼ିଆ ସାହିତ୍ୟ ପାଇଁ ଥିଲା ଅଭିନବ ଓ ଅତ୍ୟନ୍ତ ସ୍ୱାଗତଯୋଗ୍ୟ । ଏସବୁର

ଯୋଜନା ଓ ତା'ର ରୂପାୟନ ପ୍ରଫେସର ଶତପଥୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହିଁ ହେଉଥିଲା ।

'ସାଂପ୍ରତିକ'ର ଦ୍ୱିତୀୟ କାର୍ଯ୍ୟଧାରାଟି ଥିଲା ଆହୁରି ଆକର୍ଷଣୀୟ ଓ ଉଲ୍ଲେଖନୀୟ । ଭାରତବର୍ଷର ଅନ୍ୟ ରାଜ୍ୟକୁ ଯାଇ ସେହି ରାଜ୍ୟର ଭାଷା ସାହିତ୍ୟ ସହିତ ଦ୍ୱିପାକ୍ଷିକ ସଂପର୍କ ସ୍ଥାପନ ମାଧ୍ୟମରେ ଓଡ଼ିଆ ସାହିତ୍ୟର ପ୍ରସାର କରିବା ଓ ଗୌରବ ପ୍ରତିଷ୍ଠା କରିବା ଥିଲା ଏହାର ଉଦ୍ଦେଶ୍ୟ । ୧୯୮୬ ମସିହା ଏପ୍ରିଲ୍ ମାସରେ କର୍ଣ୍ଣାଟକର ରାଜଧାନୀ ବାଙ୍ଗାଲୋରଠାରେ ପ୍ରଥମ ଦ୍ୱିଭାଷିକ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଓଡ଼ିଆ-କନ୍ନଡ଼ ଦ୍ୱିଭାଷିକ ସଂପାନରେ ତିନିଦିନ ବ୍ୟାପୀ ବିଭିନ୍ନ ଅଧିବେଶନରେ ଉଭୟ ଭାଷାର ବହୁ ବିଶିଷ୍ଟ ସାହିତ୍ୟିକ ଯୋଗ ଦେଇଥିଲେ । ଆୟୋଜନ ପାଇଁ ବସନ୍ତ ବିଶ୍ୱାଳ ମହୋଦୟ ନିଜେ ଆମ କେତେଜଣଙ୍କୁ ନେଇ ପୂର୍ବରୁ ଯାଇଥିଲେ । କର୍ଣ୍ଣାଟକର ତତ୍କାଳୀନ ସଂସ୍କୃତି ମନ୍ତ୍ରୀ ଜୀବରାଜ୍ ଆଲଭାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସଂପାନର ସବୁ ଆୟୋଜନ ହୋଇଥିଲା । ଶେଷଦିନ ଆମର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟ ବ୍ୟୋମଯାନ ନେଇ ସଂପାନର ଉଦ୍ଯାପନରେ ଯୋଗ ଦେଇଥିଲେ । କବିତା, କଥାସାହିତ୍ୟ, ନାଟକ ପ୍ରଭୃତି ବିଭିନ୍ନ ଅଧିବେଶନରେ ଓଡ଼ିଆ ସାହିତ୍ୟରୁ ବିଶିଷ୍ଟ କବି ସୌଭାଗ୍ୟ ମିଶ୍ର, ପ୍ରତିଭା ଶତପଥୀ, କଥା ସାହିତ୍ୟରୁ ମହାପାତ୍ର ନୀଳମଣି ସାହୁ, କିଶୋରୀ ଚରଣ ଦାସ, ପ୍ରତିଭା ରାୟ, ପ୍ରାବନ୍ଧିକ ଶରତ କୁମାର ମହାନ୍ତି, ଆଲୋଚକ ଯତୀନ୍ଦ୍ର ମୋହନ ମହାନ୍ତି, ପ୍ରଫୁଲ୍ଲ କୁମାର ମହାନ୍ତି, କବି ହୃଷୀକେଶ ମଲ୍ଲିକ ଆଦି ଯୋଗ ଦେଇଥିଲେ । ବିଭିନ୍ନ ଅଧିବେଶନରେ କନ୍ନଡ଼ ସାହିତ୍ୟର ଶିବରାମ କରନ୍ଥ, ସୁମଥିନ୍ଦ୍ର ନାଡ଼ିଗ, ପ୍ରଫେସର ନାଗରାଜ ଆଦି ବହୁ ବିଶିଷ୍ଟ ସାହିତ୍ୟିକ ଯୋଗ ଦେଇଥିଲେ । ଓଡ଼ିଶାରୁ ଯାଇଥିବା ସମସ୍ତ ସାହିତ୍ୟିକଙ୍କୁ ରାଜ୍ୟ ଅତିଥି ଭାବରେ ଅଭ୍ୟର୍ଥନା ଓ ମୂଲ୍ୟବାନ ପୁସ୍ତକ ଉପହାର ଦିଆଯାଇଥିଲା । ପ୍ରତିଦିନ ସାଂସ୍କୃତିକ କାର୍ଯ୍ୟକ୍ରମମାନ ଆୟୋଜିତ ହେଉଥିଲା । ଆମ ପାଇଁ ଏହା ଥିଲା ପ୍ରକୃତରେ ଦୁର୍ଲଭ ଅନୁଭୂତି । ପରବର୍ତ୍ତୀ ସମୟରେ ୧୯୯୩ରେ ଦିଲ୍ଲୀରେ ପୁଣି 'ସାଂପ୍ରତିକ' ପକ୍ଷରୁ ଓଡ଼ିଆ-ହିନ୍ଦୀ ଦ୍ୱିଭାଷିକ ସଂପାନର ଆୟୋଜନ କରାଯାଇଥିଲା । ସେତେବେଳେ ଭାରତ ସରକାରଙ୍କର ସଂସ୍କୃତି ସଚିବ ଥିଲେ କବି ଡଃ ସୀତାକାନ୍ତ ମହାପାତ୍ର । ସଂସ୍କୃତି ବିଭାଗ ପକ୍ଷରୁ ସେ କିଛି ଅନୁଦାନର ବ୍ୟବସ୍ଥା କରି ଦେଇଥିଲେ ଓ ହିନ୍ଦୀ ସାହିତ୍ୟର ବିଶିଷ୍ଟ ସମାଲୋଚକ ନାମୱର ସିଂ ଓ ସଂସ୍କୃତି ବିଭାଗର ଯୁଗ୍ମ ସଚିବ କବି ଅଶୋକ ବାଜପେୟୀଙ୍କୁ ଏ କାର୍ଯ୍ୟରେ ସହାୟତା କରିବା ପାଇଁ ଅନୁରୋଧ କରିଥିଲେ । ତ୍ରିଦିବସୀୟ ସଂପାନକୁ ଉଦ୍ଘାଟନ କରିଥିଲେ ନ୍ୟାୟମୂର୍ତ୍ତି ରଙ୍ଗନାଥ ମିଶ୍ର । ବିଭିନ୍ନ ଅଧିବେଶନରେ ଓଡ଼ିଆ ଓ ହିନ୍ଦୀ ଭାଷାର ବହୁ ବିଶିଷ୍ଟ କବି ଲେଖକ ଯୋଗଦେଇଥିଲେ । ଏସବୁର ମୂଳରେ ପ୍ରଫେସର ଶତପଥୀଙ୍କ ଅଦମ୍ୟ ଉତ୍ସାହ, ନିରଳସ

କର୍ମଯୋଜନା ଓ ସାରସ୍ୱତ ଉତ୍କର୍ଷ ଯେ ପୂରି ରହିଥିଲା ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ପାଇଁ ଉଭୟ ସର୍ଜନ ଓ ସଂଗଠନରେ ତାଙ୍କର ଅତୁଳନୀୟ ଯୋଗଦାନ ଆମ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି ।

ପ୍ରଫେସର ଶତପଥୀଙ୍କ ସାରସ୍ୱତ କର୍ମଜୀବନର ଚାରୋଟି ପ୍ରଧାନ ଦିଗ- ଅଧ୍ୟାପନା, ସାହିତ୍ୟ ସୃଷ୍ଟି ଓ ଆଲୋଚନା, ସଂପାଦନା ଓ ସଂଗଠନ ସଂପର୍କରେ ସବୁ କଥା ଆଲୋଚନା କରି ଲେଖିବା ବିସ୍ତୃତ ଓ ସମୟ ସାପେକ୍ଷ । ମୋର ଅନୁଭୂତିରୁ ଓ ସମୀକ୍ଷାତ୍ମକ ପରିଶୀଳନରୁ ବ୍ୟକ୍ତିଗତ ଓ ନୈର୍ବ୍ୟକ୍ତିକ ଏ ଉଭୟ ଦିଗରୁ ଯତ୍‌ସାମାନ୍ୟ ପରିଚୟ ଦେଲି । ପ୍ରଥମରୁ କହିଛି ଓଡ଼ିଶାରେ ସତ୍ୟବାଦୀର ସାଧକମାନେ ଯେଉଁ ମହତ୍ ପରଂପରା ସୃଷ୍ଟି କରି ଯାଇଥିଲେ ତା'ର ଉତ୍ତରାଧିକାର ଘେନି ଯେଉଁ କେତେଜଣ ସାହିତ୍ୟ ସାଧକ ଓ ସଂସ୍କୃତିର ସଂରକ୍ଷକ ଆଜି ମଧ୍ୟ ଯେଉଁ ଦେଦୀପ୍ୟମାନ ଶିଖାଟିର ନିସ୍ତବ୍ଧ ଜ୍ୟୋତିଟିକୁ ଅନ୍ତତଃ ସଂଜୀବିତ ରଖିଛନ୍ତି ପ୍ରଫେସର ନିତ୍ୟାନନ୍ଦ ଶତପଥୀ ସେମାନଙ୍କ ମଧ୍ୟରେ ଅନ୍ୟତମ ଓ ଅଗ୍ରଗାମୀ । ଏବେ ସେ ଅଶୀ ବର୍ଷରେ ପଦାର୍ପଣ କରିଛନ୍ତି । ତଥାପି ସାରସ୍ୱତ ଜଗତରେ କର୍ମମୁଖର ଅଛନ୍ତି । 'ଇସ୍ତାହାର' ସଂପାଦନାରେ ନିରବଚ୍ଛିନ୍ନ କାର୍ଯ୍ୟ କରୁଛନ୍ତି । ଆମେ ତାଙ୍କ ସ୍ୱାସ୍ଥ୍ୟକୁ ନେଇ ବେଳେବେଳେ ଚିନ୍ତିତ ଓ ତାଙ୍କୁ ସଚେତନ କରାଉଛୁ । ସେ କିନ୍ତୁ ଭାଷା ସାହିତ୍ୟ ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି । ଏଇ ଆତ୍ମୋତ୍ସର୍ଗରୁ ପାଉଛନ୍ତି ସଂକଳ୍ପ ଶକ୍ତି ଓ କର୍ମୋଦ୍ୟମର ଅଦମ୍ୟ ପ୍ରେରଣା । ଏହିପରି ସେ ଶତାୟୁ ହୁଅନ୍ତୁ । ଆମ ଭାଷା ସାହିତ୍ୟକୁ ଆପଣାର ଅକ୍ଷୟ କୀର୍ତ୍ତିରେ ମହନୀୟ କରନ୍ତୁ । କବିଙ୍କର ଅମରବାଣୀ 'ତୋମାର କୀର୍ତ୍ତିର ଚେୟେ ତୁମି ଯେ ମହତ୍' ତାଙ୍କ ଜୀବନ ବ୍ୟାଖ୍ୟାରେ ସାର୍ଥକ ହେଉ ।

ଜୀବେତ ଶରଦଂ ଶତମ୍
ପଶ୍ୟେମ ଶରଦଂ ଶତମ୍
ଶୃଣୁୟାଂ ଶରଦଂ ଶତମ୍ ।

■ *ଡକ୍ଟର ବସନ୍ତ କୁମାର ପଣ୍ଡା*
*ପ୍ରଫେସର ଓଡ଼ିଆ ଭାଷା*
*ଶିକ୍ଷାବିଭାଗ, ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ*
*ଭୁବନେଶ୍ୱର- ୨ ୨*

# ପ୍ରଫେସର ଶତପଥୀଙ୍କୁ ଚିଠିରେ ଚିଠିରେ...

♦ ଡକ୍ଟର ବ୍ରଜମୋହନ ମିଶ୍ର

ପରମ ପୂଜନୀୟ ଗୁରୁଦେବ,

ମୋର ଭୂମିଷ୍ଠ ପ୍ରଣାମ ନେବେ । ଆପଣଙ୍କର ସଂପୂର୍ଣ୍ଣ ଅପରିଚିତ ଏ ଅଧମ, କାରଣ ପ୍ରତ୍ୟକ୍ଷ ଭାବେ ସେ ଶ୍ରେଣୀଗୃହରେ ଆପଣଙ୍କ ପ୍ରଜ୍ଞା-କୃପାଧନ୍ୟ ହୋଇନାହିଁ । ତା ସତ୍ତ୍ୱେ ଗତ ୧୯୭୦ ଠାରୁ ମୁଁ ଆପଣଙ୍କୁ ଗୁରୁ ରୂପେ ସ୍ୱୀକାର କରିନେଇଛି ତାର କାରଣ ମୁଁ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଛାତ୍ର ଥିବା ସମୟରେ ଇଂରାଜୀ ଅନର୍ସ ସହ ଦର୍ଶନ ଓ ଓଡ଼ିଆ ସାହିତ୍ୟ ପାଶ୍ ବିଷୟ ରଖିଥିଲି । ପ୍ରି ୟୁନିଭରସିଟି ଠାରୁ ବି.ଏ. ପର୍ଯ୍ୟନ୍ତ ଓଡ଼ିଆ ମୋର ଇଚ୍ଛାଧୀନ ବିଷୟ ଥିଲା । ତା' ମୂଳରେ ଥିଲା ସେଠାକାର କତିପୟ କାଳଜୟୀ ଓଡ଼ିଆ ଅଧ୍ୟାପକଙ୍କ ପ୍ରଜ୍ଞା ଓ ଆବେଗ ମିଶା ଚମତ୍କାର ଅଧ୍ୟାପନା । ସେମାନେ ହେଲେ ପୂଜ୍ୟପାଦ ସର୍ବଶ୍ରୀ ଗୋଲକ ବିହାରୀ ଧଳ, ଡଃ ବେଣୀମାଧବ ପାଢ଼ୀ, ପୀତାମ୍ବର ପ୍ରଧାନ, ଶ୍ୟାମା ପ୍ରସନ୍ନ ମିଶ୍ର, ରତ୍ନାକର ସାହୁ, ଶ୍ରୀରାମ ପଣ୍ଡା, ବାଇଧର ମହାନନ୍ଦିଆ ଓ ବାସୁଦେବ ସାହୁ । ଏ ସମସ୍ତଙ୍କର ମୁଁ ଅତ୍ୟନ୍ତ ଆତ୍ମିକ ଥିଲି । ଦିବଂଗତ ବାସୁସାର୍ ମୋତେ ଅନେକବାର କହିଥିଲେ ଓଡ଼ିଆ ଅନର୍ସ ନେବା ପାଇଁ । କାରଣ ସେ ଭାବୁଥିଲେ ମୁଁ ସେଥିରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେବି । ହେଲେ ତାହା ମୋ ନିୟତି ନଥିଲା । ବାଣୀବିହାରରେ ଇଂରାଜୀରେ ଏମ୍.ଏ. ପଢ଼ିଥିଲେ (୧୯୭୦) ସେଠାରେ ମୁଁ ଦ୍ୱିତୀୟ ବ୍ୟାଚ୍‌ର ହୋଇଥାନ୍ତି । ପୂଜ୍ୟ ଗଣେଶ୍ୱର ମିଶ୍ର ମୋର ଅଧ୍ୟାପକ ଥିଲେ । ପୁରୀରେ ଯେପରି ଥିଲେ ବିଶିଷ୍ଟ ସାହିତ୍ୟିକ ଚନ୍ଦ୍ରଶେଖର ରଥ ଓ ବାଗ୍ମୀ ହୃଦାନନ୍ଦ ରାୟ, ଦୁର୍ବାସା ସତ୍ୟବାଦୀ ମିଶ୍ର । ମୋର ଅଧ୍ୟକ୍ଷ ଥିଲେ ସୁଧୀର ଜଗଦାନନ୍ଦ ମହାନ୍ତି, ଡଃ ଶ୍ରୀନିବାସ ସାହୁ ଓ ଡଃ ପି.ଏନ୍.ଚାଟାର୍ଜୀ । ଏସବୁ ଲେଖିବାର କାରଣ, ଏମାନଙ୍କ ଚୁମ୍ବକୀୟ ବ୍ୟକ୍ତିତ୍ୱ ମୋର ମନ ଓ ହୃଦୟକୁ ସମୃଦ୍ଧ କରିଥିଲା । ପୁରୀ ପରେ ରେଭେନ୍ସାରେ ଆଚାର୍ଯ୍ୟ ସର୍ବେଶ୍ୱର ଦାସଙ୍କ ନିର୍ମଳ ହୃଦୟ, ଋତମ୍ଭରା ପ୍ରଜ୍ଞା ତଥା ଅକୈତବ ଛାତ୍ରବତ୍ସଳତା ମୋର ପରବର୍ତ୍ତୀ ଅଧ୍ୟାପକ ଜୀବନରେ ହୋଇଥିଲା ନିର୍ଭରଯୋଗ୍ୟ ବତିଘର । ମୋର ଦୈନ୍ୟ ପ୍ରପୀଡ଼ିତ ଛାତ୍ର ଜୀବନରେ ଏଇ ଗୁରୁଜୀମାନେ ଅନେକ ଆଶା ଓ ଆଶ୍ୱାସନାର ମୂର୍ତ୍ତିମନ୍ତ ବିଗ୍ରହ ହୋଇଥିଲେ । ଠିକ୍ ସେହି ସମୟରେ ଆପଣଙ୍କ ପୂଜ୍ୟପୂଜା ସଂସଦ କର୍ତ୍ତୃକ ପ୍ରକାଶିତ କେଇଟି ବିଶେଷାଙ୍କ

ପଢ଼ିବାର ସୌଭାଗ୍ୟ ଘଟିଥିଲା, ଯାହା ଆପଣଙ୍କ ପ୍ରତି ମୋତେ ଆକର୍ଷିତ କରିଥିଲା । ସେଇ ଦୃଷ୍ଟିରୁ ପ୍ରାୟ ୧୯୭୦ ଠାରୁ ମୁଁ ଭାବଗତ ଭାବେ ଆପଣଙ୍କ ଛାତ୍ର । ତା'ପରେ 'ଇସ୍ତାହାର'ର ଦ୍ୱିତୀୟ ସଂଖ୍ୟାଠାରୁ ଆପଣ ତା'ର ସଂପାଦନା ଦାୟିତ୍ୱ ବହନ କରି ଯେଉଁ ସାରସ୍ୱତ ପରିମଣ୍ଡଳ ତଥା ସାଂସ୍କୃତିକ ଜିଜ୍ଞାସା ଓଡ଼ିଶାରେ ସୃଷ୍ଟି କଲେ, ତାହା ମୋତେ ଅଭିଭୂତ କଲା । 'ଇସ୍ତାହାର'ର ସମସ୍ତ ସଂଖ୍ୟା (ପ୍ରଥମଟିକୁ ଛାଡ଼ି) ମୋ ପାଖରେ ଅଛି ଖୁବ୍ ଯତ୍ନରେ । ଭାଗବତ ମହାପୁରାଣକୁ ଯେପରି ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ସହ ପୂର୍ବେ ଓଡ଼ିଆ ଘରମାନଙ୍କରେ ସ୍ଥାପିତ କରାଯାଉଥିଲା, ଆପଣଙ୍କ ଅନନ୍ୟ ଇସ୍ତାହାର ମନୋଜ ଦାସଙ୍କ 'The Heritage' ମୋ ପାଖରେ ସେଇ ରୂପେ ପୂଜିତ । ଦୁଃଖର ଜ୍ୱଳନ ଭିତରେ ମୁଁ ଗୀତା ଓ ଗୀତାଞ୍ଜଳି ପଢ଼ିବା ସହ ଏଇ ଦୁଇ ସମ୍ଭ୍ରାନ୍ତ ପତ୍ରିକା ପାଠ କରି କୀଟ୍‌ସଙ୍କ 'ନାଇଟିଙ୍ଗେଲ୍' କି ୱାର୍ଡ୍‌ସୱାର୍ଥଙ୍କ 'କୁକୋ' ଜଗତକୁ ଚାଲିଯାଏ । ଇସ୍ତାହାରରେ ଆପଣଙ୍କ ସଂପାଦକୀୟ ଉପରେ ଏକ ଆକଳନ କରିଥିଲି । ଲେଖା ଚାରି/ପାଞ୍ଚ ପୃଷ୍ଠା ହୋଇ ରହିଗଲା ପ୍ରାୟ ଛଅବର୍ଷ ତଳେ ।

ଗୁରୁଜୀ, ଏହା ମୋ ଖଣ୍ଡିତ ବ୍ୟକ୍ତିତ୍ୱର ଚିରନ୍ତନ ଗୀତିକବିତା । କୌଣସି କାମ ମୁଁ ଆରମ୍ଭ କରି ସାରିପାରେ ନାହିଁ । କାରଣ ମୋର ଆନ୍ତରିକତା ସତ୍ତ୍ୱେ ନିରବଚ୍ଛିନ୍ନତା ନଥାଏ । ୧୯୬୧ରେ ସପ୍ତମ ଶ୍ରେଣୀରେ ପଢୁଥିବାବେଳେ ଲେଖିଥିଲି 'ରାଧାନାଥ ସାହିତ୍ୟରେ ନାରୀ' - ସେ ବି ଅପୂର୍ଣ୍ଣ । ଏହିପରି ଅନେକ । ଯେଉଁ ଲେଖା କଥା କହୁଥିଲି, ସେଥିରେ ମୁଁ ଆପଣଙ୍କୁ ବଙ୍ଗଳାରେ ସର୍ବାଧିକ ପ୍ରସାରିତ ଓ ଆଦୃତ 'ଦେଶ' ପତ୍ରିକାର ସଂପାଦକ ସାଗରମୟ ଘୋଷଙ୍କ ସହ ତୁଳନା କରିଥିଲି । ଏ ଅପୂର୍ଣ୍ଣତା ମୋର ଯାଉନାହିଁ କି ଯିବ ବୋଲି ମୋର ଦୃଢ଼ତା ନାହିଁ । ଆଜି ଆପଣଙ୍କୁ ଏ ଚିଠି ଲେଖିଲାବେଳେ ଏ ସବୁ କଥା ଲେଖୁଛି ଏକ ପୃଷ୍ଠଭୂମି ଭାବ୍‌ରେ । ଅସଲ କଥା, ଆପଣଙ୍କ ଆତ୍ମଜୀବନୀ-ପ୍ରେମ ଓ ପ୍ରତାରଣା ଯାହା ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନରୁ ଗତ ୬ ତାରିଖରେ କିଣିଲି । 'ଅଗ୍ରଦୂତ'ରେ କାମ ଥିଲା, କିଂତୁ ଖୋଲି ନଥିବା ଯୋଗୁଁ ସେଇ ପାଖ ଏକ ଧର୍ମଶାଳାରେ ତଳେ ବସି ସେଇଟିକୁ ପଢ଼ିଚାଲିଲି । ବର୍ଷା ଆସିବାରୁ ଓ ମୋର ଭଦ୍ରକ ଫେରିବା ଥିବାରୁ (ମନ କହୁନଥିଲେ ମଧ୍ୟ) ବହିଟିକୁ ତିରିଶି ପୃଷ୍ଠା ଯାଏଁ ପଢ଼ି ବାଦାମବାଡ଼ି ଆସିଲି । ଭାବିଥିଲି ପାଗ ଭଲ କଲେ ପଢ଼ି ପଢ଼ି ଯିବି । ହେଲେ ତାହା ହେଲା ନାହିଁ । ବସ୍‌ରେ ସେ ସୁବିଧା ମିଳିଲା ନାହିଁ ଘରେ ଆସି ପଢ଼ିଲି । 'ବିଷମ ସଂସାର'କୁ ଫେରିଥିବା ଏ ଅି-ରାଧାନାଥ ଇଚ୍ଛା କରି ମଧ୍ୟ ଏକାଦିକ୍ରମେ ତାହା ପଢ଼ିପାରିଲା ନାହିଁ । ସାତ ତାରିଖ ଭୁବନେଶ୍ୱର

ଯିବାକୁ ହେଲା ଏକ ଜରୁରି କାମରେ । ରାତିରେ ଫେରି ନଅଟା ଠାରୁ ପ୍ରାୟ ରାତ ଗୋଟାଏ ପର୍ଯ୍ୟନ୍ତ ପଢ଼ି ଶେଷଭାଗକୁ ଆସିଗଲି । ଆଖିର ପତା ପଡ଼ିଆସିବା ଯୋଗୁଁ ଆଉ ଅଧିକ ଆଗେଇ ପାରିଲି ନାହିଁ ଯଦିଓ ତାହା ଥିଲା ମୋର ଅଯୋଗ୍ୟତା । 'ବିବେକୀ ଗ୍ରାହକ' କାହିଁକି ନିଦ୍ରାଭିଭୂତ ହେବ ? ଆଠ ତାରିଖ ଅର୍ଥାତ୍ ଗତ କାଲି ନ ଖାଇ (ଏପରିକି ଦାନ୍ତ ନ ଘଷି) ପୁଣି ପଢ଼ା ଆରମ୍ଭ କଲି ଓ ତାହା ପ୍ରାୟ ଦୁଇଘଣ୍ଟା ଭିତରେ ଶେଷ କଲି । ଚାରିଶହ ଅଠର ପୃଷ୍ଠା ସମ୍ବଳିତ ଆପଣଙ୍କ ଆତ୍ମଲିପି ପାଠ ଶେଷ କଲା ପରେ ମୁଁ ସ୍ୱାଭାବିକ ଅବସ୍ଥାରେ ନଥିଲି । ସମଗ୍ର ସତ୍ତାରେ ମୋର ଏକ କଂପନ ଅନୁଭବ କଲି । ଓଡ଼ିଆ ସାହିତ୍ୟରେ ଏପରି ସାହିତ୍ୟିକ ପୁଷ୍ପରାଗ ଅନନ୍ୟ । ଆପଣ ଯେଉଁ ତିନିଜଣଙ୍କ ଆତ୍ମଜୀବନୀ ଦ୍ୱାରା ପ୍ରଭାବିତ, ସେମାନଙ୍କ ଲେଖାରେ ମଧ୍ୟ ଏପରି ନୈତିକ ସାହସ ଓ ଆଧ୍ୟାତ୍ମିକ ଶକ୍ତି ପରିଲକ୍ଷିତ ହୁଏ ନାହିଁ । 'ପ୍ରେମ ଓ ପ୍ରତାରଣା'ର (ପ୍ରଥମ ଭାଗ) ଜୀବନୀଶକ୍ତି ଆପଣଙ୍କ ନିର୍ମଳ ବ୍ୟକ୍ତିତ୍ୱର ଶାଳୀନଲୀଳାର କଳାତ୍ମକ ପ୍ରକାଶ ଯାହା ଆପଣଙ୍କ ଯେ କୌଣସି ସୃଷ୍ଟିର ମଂଜ । କେତେ ସ୍ୱଚ୍ଛନ୍ଦ, ସରଳ ତଥା ସହଜ ହେଲେ ବିଦଗ୍ଧ ସ୍ରଷ୍ଟା ଏପରି ସର୍ଜନା କରିବାକୁ ସାହସୀ ଓ ଶକ୍ତିମାନ୍ ହୋଇପାରିବ ! ଉକ୍ତ ପାଞ୍ଚଟି ଶବ୍ଦ ମୁଁ ଖୁବ୍ ସତର୍କ ଭାବେ ପ୍ରୟୋଗ କରିଛି କେବଳ ଆପଣଙ୍କ ପାଇଁ । ଆମ ସମୟର ଦୁର୍ଦ୍ଦଶା ଯେ ବହୁ ଓଡ଼ିଆ ଲେଖକଙ୍କ ପାଇଁ ଏ ପାଞ୍ଚ ଶବ୍ଦ ପ୍ରୟୋଗ ହୋଇପାରିବ ନାହିଁ ଯଦିଓ ସେମାନେ ନାମକରା । ସେମାନଙ୍କ ଲେଖାରେ ଚତୁରି, ଚମକ ଏତେ ବେଶି ଯେ ସେଥିରେ ଚେତନା ଓ ଚୁମ୍ବନ ଖୁବ୍ କମ୍ । (ମୋର ପୂଜ୍ୟ ଗୁରୁ, ଓଡ଼ିଶାର ସକ୍ରେଟିସ୍ ଶରତ କୁମାର ମହାନ୍ତିଙ୍କ ସହ ବେଳେବେଳେ ଆଲୋଚନାରେ ଏଇ କଥା ମୁଁ କହୁଥିଲି । ତେଣୁ ସେଗୁଡ଼ିକ ଫୁଲଝରି, ଫୁଲ ନୁହନ୍ତି । କିଂତୁ ଆପଣଙ୍କ ସୃଷ୍ଟି ବିଶେଷ କରି ଏଇ ଆତ୍ମଜୀବନୀ ପ୍ରମାଣ କରିଦେଇଛି ଯେ ତଥାପି ସାହିତ୍ୟରେ 'ବଂଚୁଥିବା' (କେବଳ କରୁ ନଥିବା) ସ୍ରଷ୍ଟା ଅଛନ୍ତି ଯେଉଁମାନେ ସତ୍ୟର ସହ୍ୟାଦ୍ରି । ଯଥାର୍ଥରେ ଆପଣଙ୍କ ଏ ଅନାବିଳ କୃତି ଗାନ୍ଧିଙ୍କ ଆତ୍ମଜୀବନୀ, ରୁଷୋଙ୍କ 'The confession' ଏବଂ ସନ୍ଥ ଅଗଷ୍ଟିନ୍‌ସ 'Confession' ସହ ତୁଳନୀୟ ।

ଏପରି ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ଏଯାବତ୍ ନାହିଁ । ମୁଁ ଯେଉଁ ୨୦/୩୦ ଖଣ୍ଡ ଆତ୍ମଜୀବନୀ ପଢ଼ିଛି, ତା ମଧ୍ୟରୁ ମାୟାଧର ମାନସିଂହଙ୍କ 'ଶିକ୍ଷାବିତ୍‌ର ଗାଥା' ତଥା ରବିସିଂହଙ୍କ 'ନିଃସଙ୍ଗ ପଦାତିକ' ଏହା ପାଖାପାଖି ହୋଇପାରନ୍ତି । ଏପରିକି ଚିତ୍ତରଂଜନ ଦାସଙ୍କ 'ମିତ୍ରସ୍ୟ ଚକ୍ଷୁସା' ଓ ଗୁରୁଜୀ ସର୍ବେଶ୍ୱର ଦାସଙ୍କ 'ମୋ କାହାଣୀ' ତଥା ଶ୍ରୀରାମଚନ୍ଦ୍ର ଦାସଙ୍କ 'ମୋ କାହାଣୀ' ଏତେ ନିର୍ଭୀକତାର ସ୍ୱାକ୍ଷର ବହନ କରନ୍ତି ନାହିଁ । ଅବଶ୍ୟ ମୋ ଗୁରୁଜୀ ପୀତାମ୍ବର ପ୍ରଧାନଙ୍କ 'ଘାସଫୁଲର ନିଜ କଥା'ରେ ଯଥେଷ୍ଟ ସଚ୍ଚୋଟତା ଅଛି । ଗୋପୀନାଥଙ୍କ ଆତ୍ମଜୀବନୀରେ କିଛିଟା ନିର୍ଭୀକ ସତ୍ୟ ପ୍ରକାଶ ପରିଦୃଷ୍ଟ । କିଂତୁ ଏସବୁକୁ

ତରାଜୁର ଗୋଟିଏ ପାଖରେ ରଖି ଅନ୍ୟ ପାଖରେ ଆପଣଙ୍କ ପ୍ରେମ ଓ ପ୍ରତାରଣାକୁ ରଖିଲେ, ଏହା ତଳକୁ ଯିବ । କାରଣ ଏହାର ସ୍ୱଚ୍ଛତା, ପରିଚ୍ଛନ୍ନତା ତଥା ଆବେଗନିଷ୍ଠତା ଅତ୍ୟନ୍ତ ଆବେଦନକ୍ଷମ ।

ଗୁରୁଜୀ, ଯେଉଁ ଦହନ ଜ୍ୱଳନର ଅଗ୍ନିବଳୟ (The wheel of fire, ସେକ୍ସପିଅରଙ୍କ Kings lear ର ଏକ ଉକ୍ତି ରାଜା Lears ଙ୍କ "I am bound upon a wheel of fire") ଆପଣଙ୍କୁ ଶ୍ରୀମନ୍ତ, ଶୁଚିମନ୍ତ ତଥା ସୁଷ୍ଟୁ କରିଛି, ତାହା ଯେକୌଣସି ପ୍ରତିଭାର ଲଲାଟ ଲିଖନ । ଓଡ଼ିଶାରେ ଚିତ୍ତରଂଜନଙ୍କ ଅବସ୍ଥା ବି ଢ଼ଣା ଅଧିକେ ଏଇ ପ୍ରକାର । କାହିଁକି ଯେ ଜଣେ ସରସ୍ୱତୀ ସନ୍ତାନକୁ ଏପରି ଚକ୍ରବ୍ୟୂହ ମଧ୍ୟକୁ ଠେଲି ଦିଆଯାଏ, ତାହା ରହସ୍ୟମୟ । ହଁ, ତା'ର ଏକ ଚିରାଚରିତ କୈଫିୟତ- "ବିପଦ ପ୍ରଭୁଙ୍କ କଷଟି ପାଷାଣ / ପରଖନ୍ତି ଯହିଁ ନର ହୃଦ ଟାଣ ।" ବାଧ ହୋଇ ଯାକୁ ଗ୍ରହଣ କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ । କିଂତୁ ପ୍ରଭୁଙ୍କ 'କଷଟି ପାଷାଣ'ରେ ମଧ କିଛି ଲକ୍ଷ୍ମଣରେଖା ରହିବା ଦରକାର ନୁହେଁ କି ? ଏ ସଂପର୍କରେ ପବିତ୍ର ବାଇବେଲ୍‌ରେ "The Book of Job" କୁ ଏକ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣ କରାଯାଇପାରେ । କ'ଣ ଦୋଷ ଥିଲା ଭକ୍ତପ୍ରବର ରାଜା 'ଜୋବ'ଙ୍କର ଯେ ତାଙ୍କୁ ସକଳ ଅକଥନୀୟ ଦୁର୍ବିପାକ ଭିତରକୁ ଠେଲି ଦିଆଗଲା ? ଶେଷରେ କୁଷ୍ଠରୋଗୀ ରାଜା (ରାଜ୍ୟହରା, ସନ୍ତାନହରା, ସଂପତ୍ତିହରା, ପାତ୍ର, ମନ୍ତ୍ରୀ, ସାମନ୍ତ, ଜ୍ଞାତି କୁଟୁମ୍ବ ଏପରିକି ପ୍ରାଣପ୍ରିୟା ପତ୍ନୀ ପରିତ୍ୟକ୍ତା) ନିଟୋଳ ଭକ୍ତିରେ ନତଜାନୁ ହୋଇ ଈଶ୍ୱରଙ୍କୁ ପଚାରିଛନ୍ତି- ହେ ଭଗବାନ୍, ହେ ବିଶ୍ୱପିତା, ଆପଣଙ୍କୁ ଆହ୍ୱାନ କରୁନାହିଁ, ସମସ୍ତ ବିନମ୍ରତାର ସହ ପଚାରୁଛି - "ମୋର କ'ଣ ଦୋଷ ଥିଲା ଯେ, ଏପରି ଦୁର୍ଘଟଣା ସବୁ ଘଟିଗଲା ?" ହେଲେ କି ଉତ୍ତର ଦେଲେ ସେହି ପ୍ରେମମୟ, ସର୍ବଶକ୍ତିମାନ୍ ? କହିଲେ ଆକାଶବାଣୀରେ, ଜଳଦ ଗମ୍ଭୀର କଣ୍ଠରେ- "Job, you can't question the why and how of god's workings." ଏ କି ପ୍ରକାର ଉତ୍ତର ? ଏ ତ ଦୈବୀ ଅତ୍ୟାଚାର । ଯାକୁ କ'ଣ ସହଜରେ ଗ୍ରହଣ କରିନେଇ ହେବ ? ସଂସାରରେ ଅନେକ ଦୁର୍ଘଟଣା ଅବାନ୍ତର ତଥା ଅପ୍ରାସଂଗିକ ମନେହୁଏ । ଯୁକ୍ତିବାଦୀମାନେ ଏହାକୁ କାହିଁକି ବିଶ୍ୱସ୍ତ ମନରେ ସ୍ୱୀକାର କରିବେ ? ସେଥିସକାଶେ ସେହି ସର୍ବଶକ୍ତିମାନଙ୍କୁ ମୋର ସନ୍ଦେହ ହୁଏ । ଏ ସଂପର୍କରେ ଥରେ ଗୁରୁଜୀ ଶରତ ମହାନ୍ତିଙ୍କ ସହ ଆଲୋଚନା ହୋଇଥିଲା । ସେ କହିଲେ- "ତୁମେ ଯେଉଁ ସର୍ବଶକ୍ତିମାନ ଈଶ୍ୱରଙ୍କ ଧାରଣା ରଖିଛ ବାସ୍ତବରେ ସେ କିଛି ଶକ୍ତିମାନ ବା ଅଳ୍ପ ଶକ୍ତିମାନ । ତାଙ୍କପରି କିମ୍ବା ତାଙ୍କଠାରୁ ଅଧିକ ଶକ୍ତିଶାଳୀ ହେଉଛି ସଇତାନ । ତା' ନହେଲେ ସର୍ବଶକ୍ତିମାନ ଈଶ୍ୱର ବେଳେବେଳେ ତା'ଠାରୁ ପରାଭବ ଲଭୁଛନ୍ତି କିପରି ?"

'ପ୍ରେମ'ରେ 'ପ୍ରତାରଣା'କୁ କାହିଁକି ସ୍ଥାନ ଦେଲେ ସେହି ପରମ ପ୍ରେମିକ କାରଣ ସେ ଗୋପୀମାନଙ୍କୁ ପ୍ରତାରିତ କରିଥିଲେ ବୋଲି କି? ତାହା ନ ହୋଇଥିଲେ କ'ଣ ପ୍ରେମ କ୍ଷତିଗ୍ରସ୍ତ ହୋଇଥାନ୍ତା ନା ଅଧିକ ଶକ୍ତିଶାଳୀ ହୋଇଥାନ୍ତା ? କିଏ କାମ୍ୟ ନିତ୍ୟାନନ୍ଦଙ୍କ ପାଇଁ, ବହୁଗ୍ରାମ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରେମଶୀଳା ପ୍ରତିଭା ନା ପ୍ରେମରେ ପ୍ରତାରିତ କରିଥିବା କବି ପ୍ରତିଭା ଦେବୀ? ପୁଣି ଏପରି ନିୟତିଟିଏ କାହିଁକି ଯୋଡ଼ି ଦିଆଯାଇଥାଏ ଜଣେ ସଚ୍ଚା ପ୍ରେମିକ ପାଇଁ? ଯେଉଁ ନାରୀ ପ୍ରେମ ପାଇଁ ପାଗଳିନୀ ହୋଇ ଉଠେ, ସେ ପୁଣି ପରବର୍ତ୍ତୀ ସମୟରେ କିପରି "Femme fate" "Fated woman" ରେ ବିବର୍ତ୍ତିତ ହୋଇ ନିଜକୁ ବିକୃତ କରିଦିଏ ? ଶ୍ରୀ ଅରବିନ୍ଦଙ୍କ ଭାଷାରେ ବିବର୍ତ୍ତନ ତ ସଦା ଅଗ୍ରଗାମୀ । ହେଲେ ପ୍ରେମର ଏ କି ପ୍ରକାର ଅଗ୍ରଗାମିତା? - ମୁଁ ଜଣକୁ ହୃଦୟ ଦେବାକୁ ସମ୍ମତ ହୋଇ ବଳକ୍ରମେ ସେହି ଅଗ୍ନି ସମ୍ମୁଖସ୍ଥ ପ୍ରତିଜ୍ଞାକୁ କିପରି ଗୋଇଠା ମାରିବି ? ଗୁରୁଜୀ, ଏହିପରି ଅନେକ ଦୁର୍ଘଟଣା ଦେଖିଲାପରେ ମୋର ଏ ସାଂସାରିକ ବ୍ୟବସ୍ଥା ପ୍ରତି ଘୋର ଅବିଶ୍ୱାସ ଜାତ ହେଉଛି ।

ମୋର ବଂଧୁ ଅଧାପକ (ପରିସଂଖ୍ୟାନ) ବୈରାଗୀ ଚରଣ ସାହୁ ଏବେ ଫକୀର ମୋହନ କଲେଜରେ । ଠିକ୍ ଆପଣଙ୍କ ପରି ତାଙ୍କର ପ୍ରେମରେ ପ୍ରତାରଣା । ଅତ୍ୟନ୍ତ ମେଧାବୀ, ମାଟ୍ରିକ୍‌ରେ ଓଡ଼ିଶାରେ ୫ମ, ପି.ୟୁ.ସାଇନ୍ସରେ ୬ଷ୍ଠ, ପି.ପି.ରେ ଷଷ୍ଠ, ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ, ସ୍ୱର୍ଣ୍ଣପଦକ ପ୍ରାପ୍ତ । ମନୋଜ ଦାସଙ୍କ ଭାଣେଜୀଙ୍କ ଝିଅ ସହ ପ୍ରେମ ବିବାହ । ହେଲେ ଏବେ ପ୍ରତାରିତ । ତାଙ୍କର ପତ୍ନୀ ଆତ୍ମସୁଖରେ ତାଙ୍କ ମାତା ଓ ପୁଅ ଝିଅଙ୍କ ସହ ପଣ୍ଡିଚେରୀ ଆଶ୍ରମରେ ଆଉ ଅମର ଏଇ ସରଳପ୍ରାଣ ବଂଧୁ ପାଗଳ ହୋଇ ଜୀବନ୍ମୃତ । କେତେବଡ଼ ପ୍ରତିଭାର ଏପରି ଦୁଃସ୍ଥିତି ? ଏବଂ କାହିଁକି ? କଷଟି ପଥର ରୂପେ ବିଭୁ / ପ୍ରଭୁ ପ୍ରେରିତ ବିପଦ ଏଠି କି ଉଦ୍ଦେଶ୍ୟ (ମହତ) ସାଧନ କରୁଛି ? ଠିକ୍ ଯେପରି ଆପଣଙ୍କ କ୍ଷେତ୍ରରେ । 'ସବୁଜରୁ ସାଂପ୍ରତିକ' ପରେ ଆପଣଙ୍କ ଠାରୁ ଅନେକ ପୁଷ୍ପୋଦ୍‌ଗମ ହେବାର ଥିଲା । ଯେଉଁ ସାରସ୍ୱତ ପଥରେ ଆପଣ ଦୀର୍ଘ ଯାତ୍ରା କରି ଅନେକ ମାଇଲଖୁଣ୍ଟ ଅତିକ୍ରମ କରିଥିଲେ ତାହା ତ ଆହୁରି ଆହ୍ୱାନ ରଖୁଥିଲା ଆପଣଙ୍କ ସମକ୍ଷରେ । ଏକ ସୁସ୍ଥ (ନିରାପଦ ନ ହେଲେବି) ଜୀବନ ପ୍ରବାହ ଘଟିଥିଲେ ଆପଣ ସେଇ ଆହ୍ୱାନର ସମୁଚିତ ସମ୍ମୁଖୀନ ହୋଇ ପାରିଥାନ୍ତେ । ସେଇ ସ୍ୱଚ୍ଛନ୍ଦତାରେ କାହିଁକି ପ୍ରେମିକା ପତ୍ନୀଙ୍କର ବିତୃଷ୍ଣା ? ସେ କ'ଣ ସତରେ ପ୍ରେମ କରୁନଥିଲେ ? ତାଙ୍କର କୌଣସି ଏକ ସ୍ମୃତିଚାରଣାରେ (ମୋର ପଢ଼ିବା ଭଳି ମନେ ହେଉଛି) ସେ ପ୍ରଶ୍ନ କରିଛନ୍ତି- "ପ୍ରେମରେ ଅବା କ'ଣ ପାଇଲେ ସେ ।" ତାଙ୍କର ସେ ବକ୍ତବ୍ୟ ଭିତରେ ଅଭିମାନ ଅପେକ୍ଷା ଅଭିଯୋଗ ବେଶ୍ ଫୁଟି ଉଠିଥିଲା । ମନେହେଉଥିଲା ସତେଯେପରି ଆପଣଙ୍କୁ ପ୍ରେମ କରି ସେ ନିଜ ପ୍ରତ

ଗୁରୁତର ଅପରାଧ କରିଛନ୍ତି । ତାଙ୍କର ସେଇ ବକ୍ତବ୍ୟ ପାଠ କରି ସେଦିନ ମୁଁ ବିସ୍ମିତ । ଚିନ୍ତିତ ତଥା ଭାବପ୍ରବଣ ହୋଇ ସେ ସଂପର୍କରେ ଏଠାକାର ଅଧ୍ୟାପକ ବଂଧୁ ଦିଲ୍ଲୀପ ବାବୁଙ୍କୁ (ଆପଣଙ୍କ ଛାତ୍ର) ପଚାରି କିଛି କିଛି ଜାଣିଥିଲି । ଏକଦା ପ୍ରେମିକ ପ୍ରେମିକା, ପରେ ପତି-ପତ୍ନୀ ଏବେ ଯେ ଆଉ ଚକୋର ଚକୋରୀ ଅବା ସାବିତ୍ରୀ ସତ୍ୟବାନ ନୁହଁନ୍ତି, ତାହା ଜାଣିବାକୁ ପାଇଥିଲି ତାଙ୍କଠାରୁ । ଏ ପୁସ୍ତକ ପାଠ କଲାପରେ ସବୁ ସଫା ଜଣାପଡ଼ିଲା । ଆପଣଙ୍କ ଆଘାତ ସତେଯେପରି ମୋତେ ଆଘାତ କରିଗଲା । ମୋର ଚଉତିରିଶି ବର୍ଷର ଅଧ୍ୟାପନାରେ ମୁଁ ଅନେକବାର ସେକ୍ସପିଅରଙ୍କ ସନେଟ୍ (CXVI) ସଚ୍ଚାପ୍ରେମ (True love) ପଢ଼ାଇଲାବେଳେ ପ୍ରେମର ସ୍ୱରୂପ ବ୍ୟାଖ୍ୟା କରି କେତେ ଭାବପ୍ରବଣ ହୋଇଥିବି । କେତେ ଦୃଷ୍ଟାନ୍ତ ଦେଇ ପ୍ରେମର ସ୍ୱର୍ଗୀୟ ଦ୍ୟୁତି ଓ କାନ୍ତିର ଉଦ୍‌ଘୋଷଣା କରିଥିବି । ପ୍ରେମ ବିନା ଜୀବନ କେତେ ଅଶକ୍ତ ତାହା ମଧ୍ୟ ପ୍ରକାଶ କରିଥିବି । ତାହା ବି ତୁଚ୍ଛା ନୁହେଁ । କିନ୍ତୁ ଯେଉଁ ପ୍ରେମିକାଙ୍କ ଦ୍ୱାରା ଆପଣ ପ୍ରତାରିତ ହେଲେ ସେ ସତରେ ପ୍ରେମକୁ କି ଭାବରେ ଅନ୍ତରସ୍ଥ କରିଥିଲେ ? ପୁଣି ଜଣେ ଖ୍ୟାତିସଂପନ୍ନା ଏଇ 'ଶବରୀ'ର କବି ଶବରୀ-ଭାବକୁ କାହିଁକି କେବଳ ସାହିତ୍ୟ ଭିତରେ ସୀମିତ ରଖିଥିଲେ ? ଆବେଗ ଓ କଳ୍ପନାର ପକ୍ଷ ହୋଇ ଦୃଶ୍ୟରୁ ଅଦୃଶ୍ୟକୁ ଉଡୁଥିବା କବି ପ୍ରେମର 'ଆର ଦୃଶ୍ୟ' ଦେଖିବାରେ କିପରି ଅସମର୍ଥ ହେଲେ ? ଯେଉଁ ଭାଷା ପ୍ରୟୋଗ କରି ସେ ଆପଣଙ୍କୁ ବାରମ୍ବାର ଶାବ୍ଦିକ ଚାବୁକ ମାରିଲେ ତାହା ତାଙ୍କର କେଉଁ କବିପଣିଆର ନିଦର୍ଶନ ? କବି ମରିଯାଏ ସିନା ମାରିଯାଏ ନାହିଁ । ତେଣୁ ତାଙ୍କୁ "unification of sensibility" ର କବି କୁହାନଯାଇ "dissociation of sensibility" ର କବି କୁହାଯାଇ ପାରିବ । ଅଧିକନ୍ତୁ ଆବେଗର ମାୟା ଦର୍ପଣଟିଏ ସୃଷ୍ଟି କରି ସେ ଯେ ଆବେଗକୁ କଳୁଷିତ କରିଛନ୍ତି ତାହା ବି କାହିଁକି କୁହାନଯିବ ? ଏ ତ ଅଦ୍ଭୁତ ସଂସାର । ଆପଣ ସାର୍, ଯାହା ଭାବନ୍ତୁ ନା କାହିଁକି ମୋ ବିବେଚନାରେ ଏ ସଂସାରର ସ୍ୱରୂପ ଆଦୌ ଅମୃତମୟ, ସୁଧାମୟ ନୁହେଁ । ତେଣୁ ବୁଦ୍ଧଙ୍କ ଅବବୋଧ ଯଥାର୍ଥ । ମୁଖ୍ୟତଃ କାମନା ଆଧାରିତ ସଂସାର-ବେଭାର ଆଚମ୍ବିତ କରାଏ । ପ୍ରେମରୁ କାମନା ପୂରା ଷୋଳଅଣା ବର୍ଜିତ ହେଉ ବୋଲି ଭାବିବା ଠିକ୍ ନୁହେଁ । କିଂତୁ ତାହା ଯଦି କାମନା ଦ୍ୱାରା ନିୟନ୍ତ୍ରିତ ହୁଏ ତାହାହେଲେ ପ୍ରେମକୁ ସନ୍ନିପାତ ହୋଇଯାଏ । ପ୍ରେମିକା-ପତ୍ନୀ-କବି ଏଇ ସହଜ ତତ୍ତ୍ୱଟିକୁ ମୂଳରୁ ଜ୍ଞାତ ଥାଇ ସେଇ ଅନୁସାରେ କାହିଁକି ଜୀବନତରୀକୁ ବାହିନେବାକୁ କୃପଣ ତଥା ଅନୁଦାର ହେଲେ ? ଯଦି ତାହା ହୋଇଥାନ୍ତା, ତାହାହେଲେ ସେ ଅଭିଯୋଗକାରିଣୀ ହୋଇ ଆକ୍ରମଣ କରିବା ଅପେକ୍ଷା ଅଭିମାନିନୀ ହୋଇ ଆଶ୍ଳେଷ ପ୍ରାର୍ଥିନୀ ହୋଇଥାନ୍ତେ ଠିକ୍ ଯେପରି ରବୀନ୍ଦ୍ରନାଥଙ୍କ 'ପୁରସ୍କାର' କବିତାର ଉପସଂହାରରେ କବିପତ୍ନୀ ହୋଇଛନ୍ତି- ରତ୍ନମାଳା ବଦଳରେ

କବି ସ୍ୱାମୀଙ୍କ କଣ୍ଠର ଫୁଲମାଳ ତାଙ୍କୁ ଅଧିକ ପ୍ରୀତିପ୍ରଦ ବୋଧ ହୋଇଛି । ତେଣୁ ଅଭିଯୋଗ, ଅଭିମାନରେ ବିବର୍ତ୍ତିତ ହୋଇ ଅଶ୍ରୁ ଓ ଆଶ୍ଳେଷରେ ସମାହିତ ହୋଇଛି । ସେଠି ପ୍ରେମାଗ୍ନି, ଅଭିଯୋଗ (କାମନା ଜଡ଼ିତ)କୁ ଅଶ୍ରୁଯୋଗରେ ମହିମାନ୍ୱିତ କରିଛି । ମାନନୀୟା ପ୍ରତିଭାଦେବୀ ସେ ଆଡ଼କୁ ଢଳିଲେ ନାହିଁ କାହିଁକି ? ପ୍ରେମ ପାଇଁ ରାତିର ଅଂଧକାରରେ ଗୌରୀ, ନନ୍ଦିକେଶ୍ୱରୀ କେତେ ବାଟ ଯାଇ ନପାରିଲେ ! ଯେଉଁ ତନ୍ମୟ ଧୂଳିର ସେ ସ୍ରଷ୍ଟା, ତାହାର ମର୍ମବାଣୀ ସେ କିପରି ବିସ୍ମୃତ ହେଲେ ? ଏଇଥିରୁ ତାଙ୍କର ଦ୍ୱୈତ ବ୍ୟକ୍ତିତ୍ୱ (କବିସତ୍ତା - ବ୍ୟକ୍ତିସତ୍ତା)ର ଆଭାସ ମିଳେ । ଯେଉଁ କବି ଏଇ ଦୋଷଦୁଷ୍ଟ, ସେ ଯେତେ ଇମେଜ୍, ସିମ୍ବଲ୍ ଯୋଖି କବିତା ପାଟବ ପ୍ରଦର୍ଶନ କଲେ ବି ନିଜ ଭିତରେ ଭାରି ନିଉଚ୍ଛୁଣା ହୋଇ ରହିଯାନ୍ତି । ଫଳରେ ଦୀନକୃଷ୍ଣଙ୍କ 'ନିର୍ମଳ କବିତ୍ୱ' ବଦଳରେ ସମାଜ ପାଏ 'ନିର୍ମୂଳ କବିତ୍ୱ' । ଆପଣ ଉଭୟେ ମୋର ପୂଜ୍ୟ । ତେଣୁ ଶଙ୍କିତ ଭାବରେ ଅନେକ କଥା କହି ଲେଖିପାରୁ ନାହିଁ ।

ରାଜନୀତିରେ ପ୍ରେମ ତ ନଥାଏ ତେଣୁ ସେଠି ପ୍ରତାରିତ ହେବା ସ୍ୱାଭାବିକ । ଯେଉଁ ଦଳ ହୁଅନ୍ତୁ ନା କାହିଁକି ସମସ୍ତଙ୍କର ଗୋଟିଏ ଲକ୍ଷ୍ୟ ନଦୀ ନଥାଇ ପୋଲ ତିଆରି କରିବାର ନିର୍ଲଜ ପ୍ରତିଶ୍ରୁତି ଦେବା, ଯହିଁରୁ ଉପୁଜେ ପ୍ରତାରଣା, କାରଣ ସେ ପ୍ରତିଶ୍ରୁତି ହିଁ ପ୍ରତାରଣାର ଅନ୍ୟନାମ । ଏ କୁରୁକ୍ଷେତ୍ର, ଆଦୌ ଧର୍ମକ୍ଷେତ୍ର ନୁହେଁ, ଏଠି ସମସ୍ତେ ଶକୁନି, ପଶାକାଠି ଗଡ଼େଇବାରେ ବ୍ୟଗ୍ର ଓ ସିଦ୍ଧହସ୍ତ । କଳା ଅପେକ୍ଷା କୌଶଳର ଏଠି ବାଜିମାତ୍ । ଭାବ, ଭାବପ୍ରବଣତା ସ୍ଥାନରେ ଏଠି ଭୋକ ଓ ଭେକର ଭୈରବୀ ନୃତ୍ୟ । କାହାକୁ ଆପଣ ଠିକ୍ ବୋଲି କହିବେ ? କିଏ ଏଠି ପ୍ରାଣଭରି ଗାଇଉଠେ- "ଏକର ବିନାଶେ ଅନେକ ପ୍ରକାଶେ ସୃଷ୍ଟିର ଏ ନିତ୍ୟ ବିଧି / ଏକର ଯା କ୍ଷୟ ଅନେକ ଉଦୟ, ଅନେକେ ଏକର ସିଦ୍ଧି ?"... କୋଉ ଶାଳା ଭାଲ ନଏ- ପରିବାରତନ୍ତ୍ର, ହାଇକମାଣ୍ଡ ତନ୍ତ୍ର, ଦଳତନ୍ତ୍ର, ଗୋଷ୍ଠି ତନ୍ତ୍ର ଭିତରେ ଗଣତନ୍ତ୍ର ଧର୍ଷିତା । ଯେଉଁ ଗଣତନ୍ତ୍ର 'Government of aristocrats' ହେବା କଥା, ତାହା ବର୍ତ୍ତମାନ ଗୁଡ଼ାଏ ନପୁଂସକ, ବାମନଙ୍କ ଦୁଃଶାସନ ହୋଇଛି । ଗଣନିର୍ବାଚନରେ 'ସମୃଦ୍ଧ ଓଡ଼ିଆ'ର ଜଣେ ବାବୁ ମୋତେ ବହୁ ଅନୁରୋଧ କଲେ ସେଥିରେ ଯୋଗ ଦେଇ ଭଦ୍ରକ ଜିଲ୍ଲାରୁ ନିର୍ବାଚନରେ ଲଢ଼ିବା ପାଇଁ । ବାରମ୍ବାର ଫୋନ୍, ଦଳୀୟ କର୍ମୀମାନଙ୍କ ଅନୁନୟ ବିନୟ ଫଳରେ ମୁଁ ଛଅ ରାତି ଅସ୍ଥିର ହୋଇପଡ଼ିଲି । ମୋତେ ଚିହ୍ନି ଭଲ ପାଉଥିବା ବିଜ୍ଞ ଜଣଙ୍କ ପରାମର୍ଶରେ ସେଥିରୁ ନିବୃତ୍ତ ହେଲି । ଯେଉଁ ନିର୍ବାଚନ ମଣ୍ଡଳିରେ କୋଡ଼ିଏ କୋଟି ଟଙ୍କା ଖର୍ଚ୍ଚ କରି ନିର୍ବାଚନରେ ପ୍ରାର୍ଥୀ ଜିତିଲେ ସେଠି ମୋ ପରି ଅଧ୍ୟାପକ କ'ଣ କରିଥାନ୍ତା ? ଦୁଇ ଲକ୍ଷ ଟଙ୍କା ଖର୍ଚ୍ଚ କରିବାର ସାମର୍ଥ୍ୟ ନଥିଲା । କାରଣ ମୋର ସଂଚୟ କିଛି ନଥିଲା ଯେହେତୁ ସେଥିରେ ମୋର ବି ବିଶ୍ୱାସ

ନଥିଲା । ଅବସରପ୍ରାପ୍ତି ପରେ ମିଳିଥିବା ୧୦/୧୨ ଲକ୍ଷ ଟଙ୍କା ବିଭିନ୍ନ ବାଟରେ ଶେଷ ହୋଇଯାଇଥିଲା । ତଥାପି କେତୋଟି ସର୍ତ୍ତ ରଖିଥିଲି ଲଢ଼ିବା ପାଇଁ ଯାହା ସେମାନେ ପୂରଣ କରିବାରେ ପଶ୍ଚାତ୍‌ପଦ ହେଲେ । ୧୯୮୦ ମସିହାରେ ଏବର କଂଗ୍ରେସ ନେତା ଶ୍ରୀଯୁକ୍ତ ଅନନ୍ତ ପ୍ରସାଦ ସେଠୀ (ଆମେ ଏକା ହାଇସ୍କୁଲ୍ ଛାତ୍ର, ସେ ମୋର ଦୁଇବର୍ଷ ତଳେ ପଢୁଥିଲେ) ଓ ମୁଁ ସ୍ଥିର କଲୁ ମୂଲ୍ୟବୋଧ ଭିତ୍ତିକ ରାଜନୀତି ପାଇଁ ଜଣକୁ ନିର୍ବାଚନରେ ଠିଆ କରାଇବା । ପିଲାଟି ଓଡ଼ିଆ ଏମ୍.ଏ. ସ୍ୱାଧୀନ ପ୍ରାର୍ଥୀ ହେଲା ଶିମୁଳିଆ ନିର୍ବାଚନ ମଣ୍ଡଳୀରେ ଦେଢ଼ମାସ କାଳ ବୁଲିଲି ଅନନ୍ତଙ୍କ ସ୍କୁଟର ପଛପଟେ ବସି । ଯେଉଁଠାକୁ ଗଲୁ, ସେଠାରେ ଆମର ଭାଜି ପ୍ରଶଂସା । ମନେହେଲା ନିର୍ବାଚନ ବୈତରଣୀ ପାର ହୋଇଗଲୁ । ହେଲେ ଫଳ ହେଲା ବିପରୀତ । ମାତ୍ର ୬/୭ ହଜାର ଭୋଟ୍ ମିଳିଥିଲା । ୧୧ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ନ ଖାଇ ନ ପିଇ, ଡଃ ହରେକୃଷ୍ଣ ମହତାବଙ୍କ ରୋଷର ଶିକାର ହୋଇ (କାରଣ ତାଙ୍କ ସାନଭାଇ ଗୋପୀନାଥ ଦାସ କଂଗ୍ରେସରୁ ଲଢୁଥିଲେ । ସରକାରୀ ଚାକିରି ହରେଇ ଏଇ ଫଳ ପାଇଲି । ସେ ଅନୁଭୂତି ଅଭୁଲା । ମୋର ଅଧ୍ୟକ୍ଷ (ଭଦ୍ରକ ମହାବିଦ୍ୟାଳୟର) ଡଃ ଗୁରୁପଦ ପରିଡ଼ା (ଯେ ମୋତେ ପୁତ୍ରପରି ସ୍ନେହ କରୁଥିଲେ) ମୋତେ ଅନେକ ବୁଝାଇଥିଲେ ଏଥିରେ ନ ପଶିବା ପାଇଁ । କିଂତୁ ଆପଣଙ୍କ ପରି ମୋର ଏକମାତ୍ର ଲକ୍ଷ୍ୟ ଥିଲା 'ସେବା' - ସମାଜର ସାର୍ବିକ ଉତ୍‌ଥାନ । ହେଲେ ସବୁଆଡ଼େ ଏହି ଗାନ୍ଧି ମହାତ୍ମାଙ୍କର (ପାଞ୍ଚଶ ଟଙ୍କିଆ ନୋଟ୍) ଉତ୍ପାତ । କ'ଣ କରିବା ଗୁରୁଜୀ ? କିପରି ଅର୍ଥର ଅକ୍ଟୋପସ୍‌ରୁ ଗଣତନ୍ତ୍ରକୁ ଉଦ୍ଧାର କରିବା ? ରାଜାଜୀ ତ ଏ ସଂପର୍କରେ ବହି ଲେଖିଦେଲେ । ହେଲେ ବାସ୍ତବ ଚିତ୍ର ତ ସଂପୂର୍ଣ୍ଣ ଭିନ୍ନ; ଆମ ଚାରିପଟେ 'ବନ୍ଦେ ମାତରମ୍' ପରିବର୍ତ୍ତେ 'ବନ୍ଦେ ଉଦରମ୍' ର କିଳିକିଳା ନାଦ । ସ୍ୱାର୍ଥ ଓ ଭୋଗର ମତ୍ତବାରଣମାନେ ସମାଜ, ସାହିତ୍ୟ, ସଂସ୍କୃତିର ନଳିନୀ ବନକୁ ଦଳି ପକାଇଲାବେଳେ କାହାନ୍ତି ସେ ଚକ୍ରଧାରୀ ଯାହାଙ୍କ ଉଦ୍‌ଘୋଷଣା - "ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।" ଏ କ'ଣ କେବଳ ଏକ ବାକ୍‌ଚାତୁରୀ ନା ବାସ୍ତବତା ?

ଯେଉଁ ମହାନ୍ ଅନ୍ତଃପ୍ରେରଣାରେ ପ୍ରାୟୋଜିତ ହୋଇ ଆପଣ ରାଜନୀତିରେ ଆପଣଙ୍କ ଜୀବନର ମହାମୂଲ୍ୟ ଚାରିବର୍ଷ ଦେଲେ ତା'ର ବଂଶୀସ୍ୱନ କିଏ ବୁଝିବ ? ବାସ୍ତବରେ ଏ ଦେଶ a continent of civa (ନିରଦ ଚୌଧୁରୀ) - a dead land, a cactus land where fools rush in and angels fear to tread. କାହିଁକି କେଜାଣି ଶ୍ରୀରାମକୃଷ୍ଣଙ୍କ ଜୀବନୀ ପୁସ୍ତକରେ ନୋବେଲ ବିଜେତା ରୋମା ରୋଲାଁ କହିଥିଲେ ଯେ ଯେତେବେଳେ ସମଗ୍ର ପୃଥିବୀ ଅତୀବ ଅଂଧାରଗ୍ରସ୍ତ, ସେତେବେଳେ ଭାରତରେ ଜ୍ଞାନସୂର୍ଯ୍ୟ ପ୍ରଚଣ୍ଡ କିରଣ ଢାଳୁଥିଲେ (ଏଇ ମର୍ମରେ) । କୁଆଡ଼େ ଗଲେ ସେ

ସୂର୍ଯ୍ୟ ସହସ୍ରାଂଶୁ, ଦିବାକର, ନମୋ ସବିତ୍ରେ ଜଗଦେକ ଚକ୍ଷୁସେ ? ଏଠି ସବୁ 'ମହତୀ ବିନଷ୍ଟ ହୋଇଗଲା ନା ? ଏ ତ ବାସ୍ତବରେ ଆମ ଗୁରୁଙ୍କ କଥିତ 'ଅସୂର୍ଯ୍ୟ ଉପନିବେଶ' । ଡଃ କାଲାମ ଯେତେ ସ୍ୱପ୍ନ ଦେଖିଲେ ବି (India-2020) ତାହା ଯେ ବାସ୍ତବରେ ଏଠାରେ ହୋଇପାରିବ ଏହା ଜଣାଯାଉ ନାହିଁ । ଗୋଟେ ମୁନି, ଋଷିର ଦେଶରେ ଏତେ ସଂଖ୍ୟାରେ 'ସ୍ୱାମୀ ନିତ୍ୟାନନ୍ଦ' (ବାଙ୍ଗାଲୋର) ବାହାରିଲେ କିପରି ? ଏ ତ କେବଳ ରାଣୀହାଟ ପୋଲ ଭାଙ୍ଗିଯାଉନି ତା' ଇଟା, ଲୁହାଛାତ ବି ଦିନ ଦିପ୍ରହରେ ଡକାୟତି ହୋଇଯାଉଛି । ଅଦ୍ଭୁତ ସ୍ଥିତି, ଏ ସବୁ ନିତିଦିନିଆ ସୁଆଙ୍ଗ ଆମର ଦେହସୁଦ୍ଧା ହୋଇଗଲେ ବି ତଥାପି ସହି ହେଉନାହିଁ । ଭିତରର ଆତ୍ମାପୁରୁଷ 'ଯୁଦ୍ଧଂ ଦେହି' ଉଚ୍ଚାରଣ କରୁଛି; କିଂତୁ ଯୁଦ୍ଧ କ'ଣ କରି ହେଉଛି ? ଏକଲା ଚାଲି ବି ନିସ୍ତାର ନାହିଁ । ଆପଣ ଚାଲିଲେ ମଧ୍ୟ ଚାଲିପାରିବେ ନାହିଁ । କାରଣ କାହା ମର୍ଜିରେ ଆପଣଙ୍କୁ ଚାଲିବାକୁ ତାଡ଼ନା କରାଯିବ । ସତରେ ଆମେ ସ୍ୱାଧୀନ ଭାବରେ କେତେ ପରାଧୀନ ? ଗଣତନ୍ତ୍ରରେ କେତେ ପରତନ୍ତ୍ର ? ସାରା ଦେଶରେ ଖାଲି ମହୋତ୍ସବ ଚାଲିଥିବାବେଳେ ସମସ୍ତେ ଯେପରି 'ଉତ୍ସ'କୁ ବିସ୍ମୃତ ହୋଇଛନ୍ତି - କସ୍ୟ ତ୍ୱଂ ବା କୁତଃ ଆୟାତ...

ତିର୍ତ୍ତୋଲ ହେଉ କି ଏରସମା ହେଉ - ଯେଉଁ ସ୍ଥାନରେ ରହି ଆପଣ ରାଜନୀତିର ଏକ କ୍ରାନ୍ତି ଆଣିବାକୁ ଚାହୁଁଥିଲେ ତାହା ତ ଏଇ 'ଉତ୍ସ' ବିସ୍ମୃତ । ତେଣୁ ଆପଣଙ୍କ ସଂସ୍କୃତି ସଂପନ୍ନ ସଂବର୍ଦ୍ଧନା ଅନୁଷ୍ଠାନକୁ ହରିଚନ୍ଦନ କି ନନ୍ଦ ଯାଆନ୍ତେ କିପରି ? - ଶ୍ୱା ଯଦି କ୍ରିୟତେ ରାଜା ସଃ କିଂ ନ ଅଶ୍ନାତି ଉପାନହମ୍ ?" ନୀଳବର୍ଣ୍ଣ ଶୃଗାଳମାନେ ତ ଅନ୍ୟର ପ୍ରାଣଘାତକ ହୁଅନ୍ତି । ଆପଣ ସେମାନଙ୍କ ପାଲରେ / ଜାଲରେ ପଡ଼ିଥିଲେ କିପରି ଫେରିଥାନ୍ତେ ? ତେଣୁ ଏ ଆଘାତ ଆପଣଙ୍କୁ ଅଧିକ ପ୍ରଜ୍ଞାବାନ କରାଇଥିବ । ନୀଳବର୍ଣ୍ଣ ଶୃଗାଳ, ଜାଲ ତଥା ସିଂହାସନରେ କୁକୁର ରାଜାମାନେ ଆପଣଙ୍କୁ ପରୋକ୍ଷରେ ସୂର୍ଯ୍ୟସ୍ନାନ କରିବାର କାରଣ ହୋଇଥିବେ । ତେଣୁ ରାମ ଚରିତ ମାନସରେ ତୁଳସୀ ଦାସ ଖଳ ବନ୍ଦନା କଲା ପରି ସେମାନଙ୍କୁ ନମସ୍କାରଟିଏ ଜଣାଇ କାର୍ଡ଼ିନାଲ ନ୍ୟୁ ମ୍ୟାନ୍‌ଙ୍କ 'Lead Kindly light' ସ୍ତୋତ୍ର ପାଠ କରୁଥିବେ । ସେଇ ପ୍ରେମରେ ଆଦୌ ପ୍ରତାରଣା ନାହିଁ କାରଣ ସେଠାରେ ପ୍ରେମରେ ରାଜନୀତି କି ରାଜନୀତିରେ ପ୍ରେମ ନାହିଁ, ଅଛି ଖୋଲି ହୋଇଯିବାର, ମେଲି ହୋଇଯିବାର, ଡଙ୍କେଇ ଯିବାର ପୂର୍ଣ୍ଣଯୋଗ ।

ଗୁରୁଦେବ, ଭାବାବିଷ୍ଟ ହୋଇ ଆପଣଙ୍କ ପାଖକୁ ଆବୁରୁଝାବୁରୁ କେତେ କ'ଣ ଗାରେଇଗଲିଣି । ଏ ଧୃଷ୍ଟତା ପାଇଁ ଆପଣ, ଆପଣଙ୍କ ମହତଗୁଣରେ ଆପଣଙ୍କ ଶିଷ୍ୟତୁଲ୍ୟ ଏ ଅଧମକୁ କ୍ଷମାଦେବେ । ଜଣକ ସହ ଏକାତ୍ମ ହୋଇଗଲେ / ହୋଇଥିଲେ ଏ ଉଚ୍ଛ୍ୱାସ ଆସେ । ଆପଣଙ୍କ ସହ ଭାବଗତ ସାମ୍ୟ ଥିବାରୁ ଏଗୁଡ଼ାକ ଲେଖି ଯାଉଛି; ଜାଣେନା

ଆପଣଙ୍କ ବ୍ୟଥାସିକ୍ତ ହୃଦୟ, ଏହାକୁ କିପରି ଭାବ୍‌ରେ ଗ୍ରହଣ କରିବ । ଅନେକ ଦୂରରେ ଆପଣ ଥିଲେବି ଖୁବ୍ ସ୍ପଷ୍ଟଭାବେ ମୁଁ ଆପଣଙ୍କ 'ବିଧୂରତା' ଉପଲ୍‌ବ୍‌ଧି କରୁଛି । ଏ 'ବିଧୂରତା' ଆପଣଙ୍କ ପାଇଁ ସତ୍ୟଦେବଙ୍କ 'ସାଧନ ସମର'ରେ ପରିଣତ ହୋଇଯାଉ - ସେହି ସର୍ବକାରଣର କାରଣଙ୍କ ନିକଟରେ ମୋର ଏ ପ୍ରାର୍ଥନା । କାରଣ ଆପଣଙ୍କ 'ନାଚିକେତ ଅଗ୍ନି'ର ଉତାପରେ ଅନେକ ଗ୍ଲାନି ଧ୍ୱଂସ ହୋଇପାରିବ ।

ଆଜି ଶ୍ରଦ୍ଧେୟ ବଂଧୁ, ସାନଭାଇ ତଥା ମୋର ଛାତ୍ରତୁଲ୍ୟ ବିଜ୍ଞ ଅଧ୍ୟାପକ ଦିଲ୍ଲୀପ ବାବୁଙ୍କ ଠାରୁ ଆପଣଙ୍କ ଠିକଣା ସଂଗ୍ରହ କରି ଏ ଚିଠି ଖଣ୍ଡିକ ଲେଖୁଛି । ମୋର ପ୍ରାର୍ଥନା, ସମୟ ଓ ସୁବିଧା ଦେଖି ମୋତେ କିଛି ଲେଖିବେ । ପରିଶେଷରେ ଆଉ ଏକ ଅନ୍ତରଭରା ପ୍ରାର୍ଥନା- ହେ ବିଶ୍ୱପିତା, ସେମାନେ ପ୍ରେମିକା ଓ ରାଜନୀତି ବାଲା । କ'ଣ କରୁଛନ୍ତି ସେମାନେ ଜାଣି ନାହାନ୍ତି । ତାଙ୍କୁ ଆପଣ କ୍ଷମା ଦିଅନ୍ତୁ । ଫଳରେ ନାଟକ ବିୟୋଗାନ୍ତକ ନ ହୋଇଯାଉ । ସେମାନଙ୍କର ଚୈତନ୍ୟ ଜାଗ୍ରତ ହେଉ । ସେମାନେ ଢେଉ ଗୁଡ଼ାକୁ ସାଗର, ବୃକ୍ଷ-ଗୁଡ଼ାକୁ ବନ, ମାନଚିତ୍ରକୁ ମହାଦେଶ ଭାବିବା ଭ୍ରମରେ ନ ଭ୍ରମି ବହୁ ବାଧା ଅତିକ୍ରମି ସ୍ୱଚ୍ଛ ଜୀବନଯାପନ କରିବାକୁ ବ୍ରତୀ ହୋଇଥିବା ନିତ୍ୟାନନ୍ଦଙ୍କର ପ୍ରଣୟ ଦୋସର ହୋଇଯାଆନ୍ତୁ ।

ପ୍ରଣାମ ସହ ଆପଣଙ୍କର ସ୍ନେହାଧୀନ

ବ୍ରଜ

# ଗଳ୍ପ ରଚନାରେ ବି ସେ ଏକ ବିସ୍ମୟ

♦ ଇଂ. ବିଷ୍ଣୁ ସାହୁ

କୃତବିଦ୍ୟ ସମାଲୋଚକ, ସୁସମ୍ପାଦକ, ସ୍ୱନାମଧନ୍ୟ ସାହିତ୍ୟିକ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ 'ଗଳ୍ପସମଗ୍ର'ର ପ୍ରକାଶନ ଆମ ସାହିତ୍ୟଜଗତର ଏକ ଉଲ୍ଲେଖଯୋଗ୍ୟ ଘଟଣା । ଉଲ୍ଲେଖଯୋଗ୍ୟ ଏଇଥିପାଇଁ ଯେ, ଏହି ସାରସ୍ୱତପୁରୁଷ ଆମ ସାହିତ୍ୟର ସୂଚୀପତ୍ରରେ ଗୋଟିଏ ସ୍ପର୍ଦ୍ଧିତ ଉଚ୍ଚାରଣ ଏବଂ ସମସାମୟିକ ସାହିତ୍ୟକର୍ମର ଜଣେ ନିଷ୍କକ୍ଷ ତଥା ଦିଗ୍‌ଗଜ ଅନୁଶୀଳନ ।

ସଂକ୍ଷେପରେ କହିବାକୁ ଗଲେ ସେ ଆମ ସାମ୍ପ୍ରତିକ ସାହିତ୍ୟର ଏକ ମନୋହର ଏବଂ ମନ୍ମୟ ମୁଖବନ୍ଧ ସ୍ୱରୂପ ।

ଏଣୁ ତାଙ୍କ ଦ୍ୱାରା ଏଯାବତ୍ ଲିଖିତ ସମସ୍ତ ଗଳ୍ପର ଗ୍ରନ୍ଥରୂପ 'ଗଳ୍ପସମଗ୍ର' ଉପରେ କିଛି ଲେଖିବା ନିଶ୍ଚିତ ଭାବେ ଗୋଟିଏ ତଥ୍ୟନିଷ୍ଠ ମୁଖବନ୍ଧର ମୁଖବନ୍ଧ ଲେଖିଲାଭଳି । ସେ ଦୃଷ୍ଟିରୁ ଏହା କିଭଳି ଗୋଟିଏ ଦାୟିତ୍ୱସମ୍ପନ୍ନ କାର୍ଯ୍ୟ ଏବଂ ମୋ ଭଳି ଜଣେ ଲେଖକ ପକ୍ଷେ ମଧ୍ୟ କେଉଁ ପରିମାଣରେ ଦୁରୂହ - ଏହା ସହଜରେ ଅନୁମେୟ ।

ଏଇଠି କହିରଖେଁ, ତାଙ୍କର ଉଚ୍ଚକୋଟୀର ପ୍ରବନ୍ଧ, ସମାଲୋଚନା- ସାହିତ୍ୟ, କବିତା ଏବଂ ଗଳ୍ପକେତୋଟି ପାଠ କରି ଅବଶ୍ୟ ଏ ଲେଖକ ଅନେକ ସମୟରେ ବିମୋହିତ ହୋଇଛି । ତେଣୁ ମୁଁ ତାଙ୍କର ଜଣେ ରସଗ୍ରାହୀ ପାଠକ ମାତ୍ର; ସମାଲୋଚକ ତ ଆଦୌ ନୁହେଁ । ଅନ୍ୟ ପକ୍ଷରେ ତାଙ୍କ ସାହିତ୍ୟ ସୃଷ୍ଟିକୁ ତର୍ଜମା କଲାଭଳି ମୁଁ ମଧ୍ୟ ସେଭଳି ପ୍ରସିଦ୍ଧ କିମ୍ୱା ପ୍ରବୀଣ ନୁହେଁ । ଏଣୁ ମୋ ଉପରେ ଏଭଳି ଗୋଟିଏ ଗୁରୁଦାୟିତ୍ୱ ନ୍ୟସ୍ତ କରି ସେ ମହାଶୟ ଯେ ମୋର ନିଦ ହଜାଇ ଦେଇଛନ୍ତି ଓ ମୋ ଭାବକେନ୍ଦ୍ରରେ ସୁତୀବ୍ର ଶିହରଣ ସୃଷ୍ଟି କରିଛନ୍ତି- ଏକଥା ନ କହିଲେ ସତ୍ୟର ଅପଳାପ ହେବ ।

ଏଭଳି ଗୋଟିଏ ସିଦ୍ଧାନ୍ତ ଗ୍ରହଣ କରିବା ପଛରେ ହୁଏତ ରହିଛି ତାଙ୍କ ଉଦାରତା ଓ ମହାନତା । ଏକଥା ମଧ୍ୟ ହୋଇପାରେ ଯେ ଆମ ସାହିତ୍ୟ ଜଗତକୁ ଏହା ତାଙ୍କର ଭିନ୍ନ ରୁଚିବୋଧ ନିହିତ ଏକ ମାର୍ମିକ ସଙ୍କେତ ।

କଥା ହେଲା, କୌଣସି ପୁସ୍ତକର ପାଣ୍ଡୁଲିପିକୁ ଆମୂଳଚୂଳ ପାଠ କରିବା ଏ ଲେଖକ ପାଇଁ ନୂତନ ଭୂଖଣ୍ଡଟିଏ ଆବିଷ୍କାର କରିବାଭଳି ଚମକପ୍ରଦ ଏବଂ ଉତ୍ତେଜନାପୂର୍ଣ୍ଣ । କିନ୍ତୁ ଅନ୍ୟ ପକ୍ଷରେ, ସେଇଟି ଯଦି କୌଣସି ପ୍ରିୟଜନ ଅଥବା ଗୁରୁଜନଙ୍କର ହୋଇଥାଏ, ତେବେ ସେଭଳି ପଠନାନନ୍ଦର ସ୍ଥାନ ପରିଗ୍ରହଣ କରେ ସଚେତନତା ଓ ସ୍ପର୍ଶକାତରତା ।

କହିବା ବାହୁଲ୍ୟ, ସାହିତ୍ୟ ଲାଗି ନିରନ୍ତର ଉତ୍ସର୍ଗୀକୃତ ଶ୍ରୀଯୁକ୍ତ ଶତପଥୀ ମୋର ପ୍ରିୟଜନ । ଏମିତି ଏକ ଧାରଣା ପଛରେ ରହିଛି, ମୋ ପ୍ରତି ତାଙ୍କର ରହିଥିବା ଗଭୀର ଶ୍ରଦ୍ଧା, ଯାହା ମୁଁ ଲକ୍ଷ୍ୟ କରିଆସିଛି ସୁଦୀର୍ଘ ପଚିଶ ବର୍ଷ ତଳୁ, ପ୍ରଥମେ ପ୍ରଥମେ ଇସ୍ତାହାର ପୃଷ୍ଠାରେ କବିତା ସବୁ ଲେଖିଲାବେଳେ ପରବର୍ତ୍ତୀ ସମୟରେ ଅବଶ୍ୟ ଲେଖିଛି ଗଳ୍ପ । ସେ ତାକୁ ଯଥୋଚିତ ନ୍ୟାୟ ଦେଇ ଛାପିଛନ୍ତି ଏବଂ ଉଚ୍ଚମନ୍ତବ୍ୟ ଦ୍ୱାରା ମୋତେ ଅନୁଗୃହୀତ କରିଛନ୍ତି ।

ଥରେ ପଠେଇଥିଲି କବିତାଟିଏ । ସେତେବେଳେ ମୋ ଲେଖକ ଜୀବନର ପ୍ରାକ୍‌କାଳ । ଏଣୁ ମୁଁ ଥାଏ ସ୍ୱାଭାବିକ ଭାବରେ ଅନାମଧେୟ । ମୋତେ କିନ୍ତୁ ପ୍ରତ୍ୟୁତ୍ତରରେ ମିଳିଥିଲା ତାଙ୍କ ହସ୍ତାଙ୍କିତ ଘରିଫର୍ଦ ସମ୍ବଳିତ ଗୋଟିଏ ଦୀର୍ଘ ଚିଠି । ଚିଠି ନୁହେଁ ତ ଗୋଟିଏ ସାରସ୍ୱତ ଆଲିଙ୍ଗନ । ତାହା ମୋତେ ଅନୁପ୍ରେରିତ କରିଥିଲା ସାହିତ୍ୟ ସାଧନା ପାଇଁ । ସେ ପ୍ରେରଣା ଅଦ୍ୟାବଧି ଉଜ୍ଜୀବିତ ।

ସେ ମୋର ଗୁରୁଜନ । ଏକା ମୋର କାହିଁକି, ଆମ ସମସାମୟିକ ଲେଖକ ମାନଙ୍କର ସେ ଗୁରୁସ୍ୱରୂପ । ସାହିତ୍ୟ ପ୍ରତି ତାଙ୍କ ନିଷ୍ଠାରେ ଯେ କୌଣସି ଛିଦ୍ର ନାହିଁ, ଏକଥା ସର୍ବଜନ ସ୍ୱୀକାର୍ଯ୍ୟ । ଏଣୁ ତାଙ୍କ ଗ୍ରହଣୀୟତା ବ୍ୟାପକ । ସବୁଠୁଁ ବଡ଼ କଥା ହେଲା, ତାଙ୍କ ନଖଦର୍ପଣରେ ରହିଥାଏ ସମସ୍ତଙ୍କ ସାରସ୍ୱତ କୃତି ଏବଂ କୃତିତ୍ୱ । ଅନ୍ୟ ଭାଷାରେ କହିଲେ, ସେ ଆମ ସାରସ୍ୱତ ଅସ୍ମିତାର ଗୋଟିଏ ଚଳମାନ୍ ପ୍ରତିରୂପ ।

ଏ ପ୍ରସଙ୍ଗରେ ଆଉ ଗୋଟିଏ କଥା ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯେଉଁ ଦୁଇଟି ନିରୁତା ସାହିତ୍ୟ ପତ୍ରିକା ଓଡ଼ିଶାର ସାହିତ୍ୟ ଆକାଶକୁ ସମ୍ଭ୍ରାନ୍ତ ଦ୍ୟୁତି ଦେବାରେ ସମର୍ଥ ହୋଇଛନ୍ତି, ସେ ଦୁଇଟି ହେଲେ 'ଝଙ୍କାର' ଓ 'ଇସ୍ତାହାର' । କିନ୍ତୁ ପାର୍ଥକ୍ୟଟି ହେଲା. 'ଝଙ୍କାର' ପତ୍ରିକା ମନୀଷୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରଜାତନ୍ତ୍ର ସମ୍ବାଦପତ୍ରର ଆନୁଷ୍ଠାନିକ ପୃଷ୍ଠଭୂମିରେ ପରିପାଳିତ; କିନ୍ତୁ 'ଇସ୍ତାହାର' ପରିପୋଷିତ, କେବଳ ଶ୍ରୀଯୁକ୍ତ ଶତପଥୀଙ୍କ ଉଭୟ ଅନ୍ତର୍ଦୃଷ୍ଟି ଏବଂ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତିଗତ ତତ୍ତ୍ୱାବଧାନରେ । ତାଙ୍କର ଏଭଳି ଅବିମିଶ୍ର ସାରସ୍ୱତ ପ୍ରତିବଦ୍ଧତା ପାଇଁ ସେ ଆମ ସାହିତ୍ୟ ପରିବାରର ଅଭିଭାବକ, ଅତଏବ ଗୁରୁଜନ ।

ସେହି ସାହିତ୍ୟଗୁରୁଙ୍କର ରହିଛି ଦୀର୍ଘଦିନର ସାରସ୍ୱତ ଅଭିଜ୍ଞତା । ରହିଛି ମଧ୍ୟ ପ୍ରଚୁର ଅଧ୍ୟବସାୟ ଏବଂ ଅନୁସନ୍ଧିତ୍ସା । ତେବେ 'ଗଳ୍ପସମଗ୍ର' ପ୍ରକାଶନର ପରିପ୍ରେକ୍ଷୀରେ ତାତ୍ପର୍ଯ୍ୟ ପୂର୍ଣ୍ଣ କଥାଟି ହେଉଛି, ଏଇ ଗ୍ରନ୍ଥଟିର ପ୍ରକାଶନ ଉତ୍ତାରେ ସେ ଜଣେ ବିଧିବଦ୍ଧ ଗଳ୍ପସ୍ରଷ୍ଟା ଭାବରେ ପ୍ରତିଭାତ ହେବେ ଓଡ଼ିଶାର ସାରସ୍ୱତ ପରିମଣ୍ଡଳରେ ।

ତେବେ, ପାଣ୍ଡୁଲିପିଟି ପଢ଼ିସାରିବା ପରେ ଯେଉଁ କଥାଟି ସୂକ୍ଷ୍ମଭାବରେ ଲକ୍ଷ୍ୟଣୀୟ, ତାହା ହେଲା- ପ୍ରଥମତଃ ଉକ୍ତ ସଂକଳନର ସମସ୍ତ ଗଳ୍ପ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚନା

ସାହିତ୍ୟର ଅଭିଯାତ୍ରା ସହିତ ତାଳ ଦେଇ ରଚିତ ହୋଇଆସିଛି । ଦ୍ୱିତୀୟତଃ ଏହା ମଧ୍ୟ ପରିଲିଖିତ ହୋଇଛି ସମୟର ଗୋଟାଏ ଖାମଖିଆଲୀ ବ୍ୟବଧାନରେ । ତୃତୀୟତଃ ଏହାସବୁ ଲେଖାଯାଇଛି ତୀବ୍ର ଅନୁଭୂତିର ତାଡ଼ନାରେ; କୌଣସି ପତ୍ର ପତ୍ରିକାରେ ପ୍ରକାଶିତ ହେବାର ବରାଦ କିମ୍ବା ବାଧ୍ୟବାଧକତାରେ ନୁହେଁ । ଏଣୁ ସେଗୁଡ଼ିକ ସ୍ୱତଃସ୍ଫୂର୍ତ୍ତ ।

ତେଣୁ ଏ ତିନୋଟିଯାକ କଥା ଜଣେ ଲେଖକ ଭାବରେ ସାହିତ୍ୟକ୍ଷେତ୍ରରେ ତାଙ୍କ ସବ୍ୟସାଚୀତ୍ୱକୁ ହିଁ ଇଙ୍ଗିତ କରୁଛି ।

ସାହିତ୍ୟର କ୍ଷେତ୍ର ବ୍ୟାପକ । ସାହିତ୍ୟକଟିଏ କିନ୍ତୁ ସୀମିତ ଶକ୍ତିର ଅଧିକାରୀ- ଏହା ଅନେକାଂଶରେ ସତ୍ୟ । କିନ୍ତୁ କତିପୟ ଯୋଗଜନ୍ମା ସାହିତ୍ୟସ୍ରଷ୍ଟା ଅଛନ୍ତି, ଯେଉଁମାନଙ୍କୁ ନିର୍ଦ୍ଦିଷ୍ଟ କୌଣସି ପରିସୀମା ଭିତରେ ରେଖାଙ୍କିତ କରି ରଖିବା କଷ୍ଟସାଧ୍ୟ । ସେମାନେ ଦିଗବିଦିଗ ସ୍ପର୍ଶୀ । ସାହିତ୍ୟର ଯେ କୌଣସି ବିଭାଗରେ ସେମାନେ ତାଙ୍କ ସର୍ଜନଶକ୍ତିକୁ ଢାଳିଦେଇ ପାରନ୍ତି । ଦୃଷ୍ଟାନ୍ତ ଭାବରେ ଆମେ ସେମାନଙ୍କୁ ନେଇପାରିବା, ଯେଉଁ କେତେଜଣ ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, କବି, ଗୀତିକାର, ସ୍ୱରକାର, ସ୍ତମ୍ଭକାର, ପ୍ରାବନ୍ଧିକ, ଆଧ୍ୟାତ୍ମିକ ଚିନ୍ତନ ପ୍ରକଟ କରିବା ଭଳି ମାର୍ଗଦର୍ଶକ । ସେମାନେ ସବୁ କ୍ଷଣଜନ୍ମା ଏବଂ ସାହିତ୍ୟର ପ୍ରତ୍ୟେକ ବିଭାଗରେ ସେମାନଙ୍କର ପରାକାଷ୍ଠା ସ୍ୱୀକୃତ ।

ଯେଉଁ ସାହିତ୍ୟିକ ପୃଷ୍ଠଭୂମି, ଅଭିନିବେଶ, ଅଧ୍ୟୟନ ଓ ଅଧ୍ୟବସାୟରୁ ଏଭଳି ପ୍ରତିଭା ନିଷ୍ପନ୍ନ ହୁଏ, ତାହା ଶ୍ରୀଯୁକ୍ତ ଶତପଥୀଙ୍କର ଅଛି । ତାଙ୍କର ତଥ୍ୟନିର୍ଭର ପ୍ରବନ୍ଧସବୁ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟକ୍ରମର ସହାୟକ ଗ୍ରନ୍ଥ । ତାଙ୍କ ସମାଲୋଚନା ସାହିତ୍ୟ ଯେଉଁମାନେ ପଢ଼ିଛନ୍ତି, ସେମାନେ ସ୍ୱୀକାର କରିବେ ସାହିତ୍ୟ ପ୍ରତି ତାଙ୍କର ଦୃଷ୍ଟିକୋଣ କିଭଳି ପୀନବୃଦ୍ଧ । କେବେ କେବେ ତାଙ୍କ କବିତା ଓ ଗଳ୍ପ ଅବଶ୍ୟ ଆତ୍ମପ୍ରକାଶ କରିଛି ପତ୍ରିକା ପୃଷ୍ଠାରେ, ଯେଉଁଥିରୁ ତାଙ୍କର ମୌଳିକ ସୃଜନାତ୍ମକ ଶୈଳୀଟି ସୁସ୍ପଷ୍ଟ ହୋଇ ଦେଖାଯାଏ ଏବଂ ବିଶେଷ ଭାବରେ ଆଲୋଚିତ ହୋଇଥାଏ ପାଠକ ମହଲରେ ।

କିନ୍ତୁ ଏକକାଳୀନ ତାଙ୍କର ଏତେଗୁଡ଼ିଏ ଗଳ୍ପ ପାଠ କରିବା ଏ ଲେଖକ ପାଇଁ ଏକ ଭାବଗର୍ଭକ ଅଭିଜ୍ଞତା । ଭାବଗର୍ଭକ ଏଇଥିପାଇଁ, ତାଙ୍କ କଥାବସ୍ତୁ ଗୁଡ଼ିକର ଗଳ୍ପାନୁସାରୀ ଭାଷା ତାଙ୍କ ଦ୍ୱାରା ପରିପାଳିତ ଗଦ୍ୟଭାଷାର ବୌଦ୍ଧିକତା ଦ୍ୱାରା କୌଣସି ଦୃଷ୍ଟିରୁ ଆକ୍ରାନ୍ତ ନହେବା । ତାଙ୍କ ଭାଷା ଅନାଘ୍ରାତ ଏବଂ ଶାଣିତ ।

ତାଙ୍କ କଥାଭ୍ରୂଣରେ ରହିଥିବା ଗଳ୍ପଧର୍ମିତାର ଗତି ମଧ୍ୟ ପ୍ରଖର ଏବଂ ସ୍ପନ୍ଦନଯୁକ୍ତ । ପ୍ରାରମ୍ଭର ଆକସ୍ମିକତା, ଉତ୍କଣ୍ଠାପୂର୍ଣ୍ଣ ମଧ୍ୟଭାଗ ଏବଂ ଯୌକ୍ତିକତାପୂର୍ଣ୍ଣ କଳାତ୍ମକ ପରିଣତି ଯାହା ଯେମିତି ରହିବା କଥା, ସେମିତି ସବୁ ରହିଛି ତାଙ୍କ ଗଳ୍ପରେ । ମାତ୍ର ତିନି ଚାରୋଟି ଗଳ୍ପକୁ ଛାଡ଼ିଦେଲେ, ଅନ୍ୟ ଗଳ୍ପଗୁଡ଼ିକ ଯେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଚିତ୍ରାଙ୍କନ ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।

ଦୀର୍ଘକାଳ ବ୍ୟାପୀ ଓଡ଼ିଆ ଭାଷା - ସାହିତ୍ୟର ଅଧ୍ୟାପନା କରିବା, ପ୍ରାୟ ୩୮ ବର୍ଷ ପର୍ଯ୍ୟନ୍ତ ଗୋଟିଏ ଆଗଧାଡ଼ିର ପତ୍ରିକାକୁ ସୁସ୍ଥ ସୁନ୍ଦର ଭାବରେ ବଞ୍ଚାଇ ରଖିବା ଭିତରେ ମଧ୍ୟ ତାଙ୍କ ସର୍ଜନଶୀଳ ସୁକୁମାର କାବ୍ୟାତ୍ମା ଓ ଗଳ୍ପାତ୍ମାକୁ ସେ ଯେ ବେଶ୍ ହେପାଜତ୍ କରି ଆସିଛନ୍ତି ଏବଂ ନିଜର ସ୍ୱଭାବ ସୁଲଭ ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀର ଦନ୍ତାଘାତରୁ ଯେ ବଞ୍ଚାଇ ରଖିପାରିଛନ୍ତି - ଏହାହିଁ ଏ ଲେଖକ ପାଇଁ ମୁଖବନ୍ଧଟି ପ୍ରସ୍ତୁତ କରିବା ପର୍ଯ୍ୟାୟରେ ସବୁଠୁ ଅଧିକ ସୁଖକର ଉପଲବ୍ଧି ।

ଆଲୋଚ୍ୟ ଗଳ୍ପ ଗ୍ରନ୍ଥରେ ରହିଛି ସମୁଦାୟ ସଇଁତିରିଶଟି ଗଳ୍ପ ।

'ଗଳ୍ପ ପୂର୍ବରୁ' ଶୀର୍ଷକରେ ଯାହା ଶ୍ରୀଯୁକ୍ତ ଶତପଥୀ ଲେଖିଛନ୍ତି, ତାହା ଗଳ୍ପ ନହେଲେ ମଧ୍ୟ ଗଳ୍ପଲିଖନ ପ୍ରକ୍ରିୟାର ଗୋଟିଏ ରକ୍ତାକ୍ତ ଭାବଭୂମି ପରି ମନେହୁଏ; ଯାହା ଭିତରେ ଭରି ରହିଛି ପ୍ରଚୁର ଆବେଗ ଓ ଆର୍ଦ୍ରତା । ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ; କାରଣ ଏଥିରେ ରହିଛି ତାଙ୍କର କେତୋଟି ମାର୍ମିକ ସ୍ୱୀକାରୋକ୍ତି ଏବଂ ପାଠକ ସମାଜ ପାଇଁ ପ୍ରଶ୍ନାକୁଳ କେତୋଟି ଆନ୍ତରିକ ନିବେଦନ । ସେତିକ ମଧ୍ୟରେ ଅବଶ୍ୟ ନିହିତ ରହିଛି ତାଙ୍କର ଗଳ୍ପ ଲେଖିବାର ପ୍ରାସଂଗିକତା ।

ସେ କହନ୍ତି, "ମୋତେ ଏଯାବତ୍ ଓଡ଼ିଆ ସାହିତ୍ୟର ପାଠକମାନେ କେବଳ ସମାଲୋଚକ ଭାବେ ଜାଣିଥିଲେ... ମୁଁ ସୃଜନଶୀଳ ସ୍ରଷ୍ଟାର ଭୂମିକାରେ ଏଠି ଉପନୀତ... ଅନେକ ଗଳ୍ପରେ ମୋର ସ୍ୱଷ୍ଟ ଓ ଅନ୍ତରଙ୍ଗ ଅନୁଭୂତି ରହିଛି... ମହାକାଳର ଜାଗତିକ ପ୍ରହାର ମଧ୍ୟରେ ବ୍ୟକ୍ତିମଣିଷର ମନରେ ଅନବରତ ଭାସି ଚାଲିଥିବା ଅଗଣିତ ଆହତ ଆତ୍ମିକ ସ୍ପନ୍ଦନ ହିଁ କ୍ଷୁଦ୍ରଗଳ୍ପ" ଇତ୍ୟାଦି ।

ପ୍ରକୃତରେ ତାଙ୍କ ଗଳ୍ପଗୁଡ଼ିକରେ ଯେ ଲେଖକଙ୍କର ବ୍ୟକ୍ତିଗତ ସ୍ୱଷ୍ଟ ଓ ଅନ୍ତରଙ୍ଗ ଅନୁଭୂତିମାନ ରହିଛି... ଏହା ଆଦୌ ନିରାଧାର ନୁହେଁ । ସେହି ପରିପ୍ରେକ୍ଷୀରେ ତାଙ୍କ ସୃଷ୍ଟି ସମୂହକୁ ବିଚାରକଲେ ସେଗୁଡ଼ିକ ଭୂମିଷ୍ଠ ହେବାର ଯଥାର୍ଥତା ଅନୁଭବ କରିହେବ ।

ସେହି ସବୁ ଗଳ୍ପର ସାମଗ୍ରିକ ପୃଷ୍ଠଭୂମିରୁ ଯେଉଁ ଗୋଟିଏ କଥା ଫୁଟି ଦିଶୁଛି, ତାହାହେଲା- ଜଣେ ସ୍ରଷ୍ଟା କିଭଳି ନିଜର ଚାରିପାଖର ବିଶ୍ୱ ପ୍ରତି ସର୍ବାନ୍ତକ୍ରରଣରେ ଉନ୍ମୁଖ ଏବଂ ଆଖିଦେଖା, ଅଙ୍ଗେନିଭା କଥାଗୁଡ଼ିକ ପ୍ରତି କେଉଁ ପରିମାଣରେ ବିଶ୍ୱସ୍ତ, ଯତ୍ନବାନ ଏବଂ ସ୍ଥଳବିଶେଷରେ ପ୍ରତିକ୍ରିୟାଶୀଳ ।

କଲେରିକ୍ କହିଥିଲେ, A poet is an unacknowledged legistator of mankind. ଏ ଲେଖକର ଯାହା ମନେହୁଏ poet ର ବ୍ୟବହାରିକ ଅର୍ଥ କେବଳ 'କବି' ନୁହେଁ, ଜଣେ ସୃଜନଶୀଳ ସ୍ରଷ୍ଟା । ସେ ହୁଏତ ଜଣେ କବି, ନାଟ୍ୟକାର, ଗାଳ୍ପିକ ଏପରିକି ପ୍ରାବନ୍ଧିକ ବି ହୋଇପାରନ୍ତି । ପ୍ରକୃତରେ ଯେଉଁ ପ୍ରବନ୍ଧରେ କାବ୍ୟିକତା ନଥାଏ, ତାହା କେବଳ ଏକ ସ୍ଥୁଳ ବିବରଣୀ ନୁହେଁ ତ ଆଉ କ'ଣ ? ସେସବୁ ବ୍ୟକ୍ତିମାନସକ

ମଥିତ କିମ୍ବା ସ୍ପନ୍ଦିତ କରେନାହିଁ । ସ୍ପନ୍ଦନ ଆସେ ସେଇଥିରୁ, ଯେଉଁଥିରେ ରହିଥାଏ ବ୍ୟକ୍ତିର ଭାବଭୂମି ପାଇଁ ଖୋରାକ । ଜଣେ ଲେଖକ legistator ହୁଏ ସେତେବେଳେ, ଯେତେବେଳେ ସେ 'ସୁ' ଓ 'କୁ' ଭିତରେ ଥିବା ଝୀନ ପରଦାଟିକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଇପାରେ ସମାଜକୁ ।

ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ତାଙ୍କ ଗଳ୍ପଗୁଡ଼ିକରେ ସେହି ବିଭାଜନ ରେଖାଟି ଅତ୍ୟନ୍ତ ସ୍ପଷ୍ଟ, ଆନ୍ତରିକ ଏବଂ ସ୍ଥଳ ବିଶେଷରେ ହୃଦୟବିଦାରକ ମଧ୍ୟ । ତାଙ୍କ ଗଳ୍ପଜଗତର ସୀମାରେଖା ନିର୍ଣ୍ଣୟ କଲାଭଳି ଗଳ୍ପ, ଦେଶାତ୍ମବୋଧ ପଟ୍ଟଭୂମିରେ ଲିଖିତ ଗଳ୍ପ, ଶିଶୁ ମନସ୍ତତ୍ତ୍ୱର ଗଳ୍ପ, ମାନବେତର ଚରିତ୍ରକୁ ଅନୁଶୀଳନ କଲାଭଳି ଗଳ୍ପ, ପ୍ରେମ ଭାବନାର ପୃଷ୍ଠଭୂମିରେ ଲିଖିତ ଗଳ୍ପ, ପୌରାଣିକ ଆଖ୍ୟାନଭିତ୍ତିକ ଗଳ୍ପ, ମାନବବାଦର ଜୟଗାନ କରୁଥିବା ଗଳ୍ପ, ସମାଜ ସଂସ୍କାରଧର୍ମୀ ଗଳ୍ପ, ଅବଦମିତ ଯୌନେଚ୍ଛାକୁ ରୂପାୟିତ କରୁଥିବା ଗଳ୍ପ, ରାଜନୈତିକ ସଚେତନତା ସମ୍ବଳିତ ଗଳ୍ପକୁ ନେଇ ତାଙ୍କର ଗଳ୍ପସୃଷ୍ଟି ଅତ୍ୟନ୍ତ ସମୃଦ୍ଧ ।

ଭାଷା ପ୍ରୟୋଗରେ ସେ ମଧ୍ୟ ଅତ୍ୟନ୍ତ ସଚେତନ । ତାଙ୍କ ଭାଷା ଅଭିଜାତ ଓ କାହାଣୀକୁ ଗତିଶୀଳ କରାଇବା ପରି ତରଳ ତଥା ଭାବଦ୍ୟୋତକ । ବେଳେବେଳେ ମନେହୁଏ ତାଙ୍କର ଭାଷାଜଗତ ଗୋଟିଏ ସଚେତନତାର ପ୍ରାଚୀର ଦ୍ୱାରା ଦୁଇଭାଗରେ ବିଭକ୍ତ । ତାଙ୍କର ସମାଲୋଚନା ଭାଷା ଗୋଟିଏ ଗୋଲାର୍ଦ୍ଧରେ ତ ସୃଜନାତ୍ମକ ଭାଷା ଅପର ଗୋଲାର୍ଦ୍ଧରେ । ଏଣୁ ତାଙ୍କ ଗଳ୍ପଭାଷା ଭିତରୁ ସମାଲୋଚକ-ନିତ୍ୟାନନ୍ଦଙ୍କୁ ଖୋଜି ପାଇବା ସମ୍ଭବ ହେବନାହିଁ ।

କେତୋଟି ଗଳ୍ପରୁ ଲାଗେ, ସ୍ୱୟଂ ଗାଳ୍ପିକ ସତେଅବା ବିସ୍ତାରିତ ପ୍ରେମ-ଭାବନାର ଏକ ଅବରୁଦ୍ଧ ଗନ୍ତାଘର । ସେ ମାନବବାଦର ଜଣେ ବେସାଲିସ୍ ଉଦ୍‌ଗାତା । ଯେହେତୁ ତାଙ୍କର ସାରସ୍ୱତ ଜୀବନଟି ସୁଦୀର୍ଘ ଏବଂ ସଂଗ୍ରାମପୂର୍ଣ୍ଣ, ତେଣୁ ଆତ୍ମାର ନିରବ ଆହ୍ୱାନ ଏବଂ ସମୟର ଦାବି ଗୁଡ଼ିକ ପ୍ରତି ସେ ଏକାନ୍ତଭାବେ ଉତ୍‌କର୍ଣ୍ଣ । ଲାଗେ, ସାମାଜିକ ବିଲକ୍ଷଣ ଗୁଡ଼ିକୁ ମୂଳପୋଛ କରିବା ପାଇଁ ସେ ପ୍ରତିଜ୍ଞାବଦ୍ଧ । ଶ୍ରୀଯୁକ୍ତ ଶତପଥୀଙ୍କ ରାଜନୈତିକ ଅଭିଜ୍ଞତାର ପର୍ଯ୍ୟାପ୍ତ ଝଲକ ମଧ୍ୟ ମିଳେ ତାଙ୍କ ଗଳ୍ପବସ୍ତୁରୁ ।

ତାଙ୍କ ଗଳ୍ପସୃଷ୍ଟିର ବୈଭିନ୍ନ୍ୟ ଦର୍ଶାଇବାକୁ କେତୋଟି ପୃଷ୍ଠଭୂମିର ଅଡୋରଣା କରିବାର ଲୋଭ ସମ୍ବରଣ କରିପାରୁନାଇଁ ।

ନବବଧୂ ଗୀତାଳି ଯେମିତି ପ୍ରଚଳିତ ଲୋକକଥାର ବଶବର୍ତ୍ତୀ ହୋଇ ତା'ର ଗର୍ଭନଷ୍ଟ କରିବାକୁ ଆସିଛି ହସ୍‌ପିଟାଲ୍‌କୁ ଓ ସନ୍ତାନବତୀ ପ୍ରସୂତିମାନଙ୍କୁ ଦେଖି ବିରକ୍ତ ଓ ବିବ୍ରତ ହେବା ଭିତରେ ଉପଲବ୍ଧି କରିଛି, ମାତୃତ୍ୱ ହିଁ ନାରୀ ଜୀବନର ପୂର୍ଣ୍ଣତା । ତାହା ବର୍ଣ୍ଣିତ ହୋଇଛି 'କାଳ ଓ କର୍ଣ୍ଣିକା' ଗଳ୍ପରେ । 'ଚିଠି' ଗଳ୍ପରେ ଜଣେ ଅଳ୍ପପରିଚିତା ତରୁଣୀ କିଭଳି ଲେଖକଙ୍କ ଉପଦେଶ ଓ ଦିଗ୍‌ଦର୍ଶନକୁ ଅପେକ୍ଷା କରି କରି ଆତ୍ମହତ୍ୟାର

ପଥ ବାଛିନେଇଛି- ତାର ବର୍ଣ୍ଣନା ରହିଛି । 'ଝିଅ' ଗଳ୍ପରେ ରହିଛି ବଡ଼ଭଉଣୀର ମନସ୍ତାତ୍ତ୍ୱିକ ବିଚିତ୍ରତା ତଥା ଦ୍ୱନ୍ଦ୍ୱର ପ୍ରସଙ୍ଗ । 'ବୃଷଭ ଉପାଖ୍ୟାନ' ଗଳ୍ପରେ ରହିଛି ରାଜନୀତିରେ ଛଳନା ଓ କପଟତାର ଭୋଜବାଜି । 'ନବନୀତା' ଗଳ୍ପରେ ରହିଛି ଦୁଇଜଣ କାମୁକ ପୁରୁଷଙ୍କ ପଶୁସୁଲଭ ରିରଂସା ଓ ଆଦର୍ଶବାଦୀ ବାସୁଦେବର ବ୍ୟତିକ୍ରାନ୍ତ ଚରିତ୍ର । 'ଇତିଶ୍ରୀ' ଗଳ୍ପ ହେଉଛି ସମାଜର ନାଲି ଆଖିକୁ ଉପ୍ରୋଧ ନ କରି ଗୋଟିଏ କୁଷ୍ଠିର କନ୍ୟାକୁ ଘରକୁ ଆଣି ଲାଳନ ପାଳନ କରିବାର ମାର୍ମିକ କାହାଣୀ । 'ଶ୍ୱାନ ଉପାଖ୍ୟାନ' ଗଳ୍ପଟି ବୁଲା କୁକରମାନଙ୍କ ଉଚ୍ଛୃଙ୍ଖଳ ଯୌନସଂପର୍କ ଓ ଭୟଙ୍କର ଜିଘାଂସାର ନିଛକ ଚିତ୍ର । 'ଧୂସର ସୀମାନ୍ତ' ଗଳ୍ପରେ ରହିଛି ଯୁଦ୍ଧଭୂମିରେ ମଧ୍ୟ ମହାଭାରତୀୟ ସଂସ୍କୃତିର ଅବାଧ ଆତ୍ମପ୍ରକାଶ । 'ସମ୍ଭୁନାଥର କାହାଣୀ'ରେ ରହିଛି ଏକ ଅଜବ ଚରିତ୍ରର ସଫଳ ଓ ଆବେଗପୂର୍ଣ୍ଣ ରୂପାୟନ । 'ସ୍ମୃତିରେ ସ୍ମୃତିରେ ମୀରା' ଗଳ୍ପଟି ଅମାନୁଷିକ ସ୍ୱାମୀ କର୍ତ୍ତୃକ ଅନ୍ତଃସତ୍ତ୍ୱା ହୋଇ ସୁନ୍ଦରୀ ପତ୍ନୀ ମୀରା ପୃଥିବୀ ପୃଷ୍ଠରୁ ବିଦାୟ ନେବାର କରୁଣ କାହାଣୀ ଏବଂ 'ଯେ ନଦୀ ମରୁପଥେ' ଆମ ସମାଜରେ ନାରୀନିର୍ଯ୍ୟାତନାର ସକରୁଣ ଚିତ୍ରପଟ ।

ନା- ଗଳ୍ପଗୁଡ଼ିକୁ ବିଶଦ ଭାବରେ ବ୍ୟବଚ୍ଛେଦ କରିବାର ଆବଶ୍ୟକତା ନାହିଁ । କାରଣ ସେପରି କରିବା ପାଠକମାନଙ୍କର ନାନ୍ଦନିକ ଉପଲବ୍ଧି ପଥରେ ଅନ୍ତରାୟ ହେବ ବୋଲି ଏ ଲେଖକର ଆଶଙ୍କା । ଏଣୁ ସେସବୁ ପାଠପମାନଙ୍କ ଅବବୋଧ ନିମନ୍ତେ ମହଜୁଦ୍ ରହୁ ।

ଉକ୍ତ ଗଳ୍ପ ଗ୍ରନ୍ଥରେ ଥିବା ସମୁଦାୟ ସଇଁତିରିଶଟି ଯାକ ଗଳ୍ପ ଦୁଇଟି ପ୍ରମୁଖ ଭାବରେ ସନ୍ନିବେଶିତ । ପ୍ରଥମ ଭାଗ 'କାଳ ଓ କର୍ଣ୍ଣିକା' ଏବଂ ଦ୍ୱିତୀୟ ଭାଗ 'ଯେ ନଦୀ ମରୁପଥେ' । ଉକ୍ତ ନାମକରଣରେ ମଧ୍ୟ ରହିଛି ଲେଖକଙ୍କ କାବ୍ୟିକତା ଏବଂ ପରିପକ୍ୱତା ।

ମୋଟାମୋଟି ଭାବରେ ଆଲୋଚ୍ୟ 'ଗଳ୍ପସମଗ୍ର' ଗ୍ରନ୍ଥଟି ଲେଖକଙ୍କୁ ଜଣେ ପୂର୍ଣ୍ଣାଙ୍ଗ ଗଳ୍ପସ୍ରଷ୍ଟାର ମାନ୍ୟତା ପ୍ରଦାନ କରିବାରେ ଏକ ଉପଯୁକ୍ତ ଭୂମିକା ତୁଲାଇବ- ଏହା ନିଃସନ୍ଦେହ ।

ଶ୍ରୀଯୁକ୍ତ ଶତପଥୀ କ୍ଷୁଦ୍ରଗଳ୍ପ ଗୁଡ଼ିକରେ ମୂଳ ସମସ୍ୟାର ଉପସ୍ଥାପନ କରିବା ସହିତ ସମାଧାନର ସୂକ୍ଷ୍ମ ଇଙ୍ଗିତ ମଧ୍ୟ ଦେଇଛନ୍ତି । ବୃହତ୍ତର ଜୀବନ ଜିଜ୍ଞାସା ସହିତ ପରିସ୍ଥିତିରୁ ପରିତ୍ରାଣର ସଂକେତ ମଧ୍ୟ ଠାଏ ଠାଏ ପ୍ରଦାନ କରିଛନ୍ତି । ଯେହେତୁ ଏଇ ଗଳ୍ପଶୈଳୀଟି ତାଙ୍କ ନିଜସ୍ୱ, ତେଣୁ ଗଳ୍ପ ସବୁ ଅତି ପ୍ରଭାବଶାଳୀ ହୋଇପାରିଛି ।

ଗଳ୍ପମୋଦୀ ପାଠକଙ୍କ ପାଇଁ ଏହା କେବଳ ଯେ ଉପଭୋଗ୍ୟ ହେବ, ତାହା ନୁହେଁ, ଉକ୍ତ ଗ୍ରନ୍ଥଟି ମଧ୍ୟ ଏ ଶତାବ୍ଦୀର ସାହିତ୍ୟଶାଳା ପାଇଁ ସଂଗ୍ରହଣୀୟ ହେବ । ସର୍ବୋପରି ଏ ଲେଖକ ପ୍ରଚୁର ଆଶାବାଦୀ ଯେ ପାଠକଙ୍କ ଦରବାରରେ ଜଣେ ବରିଷ୍ଠ ଲେଖକଙ୍କର ଏଭଳି ଅର୍ଦ୍ଧନାରୀଶ୍ୱର ସାରସ୍ୱତ ଭାବମୂର୍ତ୍ତିଟି ରହସ୍ୟମୟ ଏବଂ ପ୍ରଣିଧାନଯୋଗ୍ୟ ମନେହେବ ।

ତଥାପି ତାଙ୍କ ଗଳ୍ପର ଭାଷାପ୍ରୟୋଗ ସଂପର୍କରେ କିଛି କୁହାଯାଇପାରେ । ଗାଳ୍ପିକ ଏ ପୁସ୍ତକରେ 'ଗଳ୍ପପୂର୍ବରୁ' ଶୀର୍ଷକରେ ଯେଉଁ କଥା ଲେଖିଛନ୍ତି ତାହା ମୋତେ ଅଧିକ ଆଲୋଡ଼ିତ କରିଛି । "ମହାକାଳର ଜାଗତିକ ପ୍ରବାହ ମଧ୍ୟରେ ବ୍ୟକ୍ତିମଣିଷର ମନରେ ଅନବରତ ଭାସି ଚାଲିଥିବା ଅଗଣିତ ଆହତ ଆତ୍ମିକ ସ୍ପନ୍ଦନ ହିଁ କ୍ଷୁଦ୍ରଗଳ୍ପ । ବୁଦ୍‌ବୁଦ୍ ପରି ଅନେକ ସ୍ପନ୍ଦନ ଆକୃତି ନେବାମାତ୍ରେଇ ଫାଟି ମିଳେଇ ଯାଆନ୍ତି । କେତେକ ବୁଦ୍‌ବୁଦ୍ ଜଳସ୍ରୋତ୍‌ରେ ଭାସିଚାଲନ୍ତି କିଛି ସମୟ ଓ ଦୂରତା ପାଇଁ । ସେମିତି ଅବଚେତନ ଓ ସଚେତନ ସ୍ରୋତରେ କିଛି ସମୟ ପାଇଁ ଭାସି ଭାସି ନିଜ ସ୍ଥିତିକୁ ସାବ୍ୟସ୍ତ କରିଥିବା ସ୍ପନ୍ଦନ କେତୋଟିକୁ ମୁଁ ମୋ ଗଳ୍ପରେ ଧରି ରଖିବାକୁ ଚେଷ୍ଟା କରିଚି । ସେସବୁ ସ୍ପନ୍ଦନ ମୋତେ ଆଘାତ କରିଛନ୍ତି ବୋଲି ମୋର ଏତେ ଆପଣାର ହୋଇପାରିଛନ୍ତି । ଅନେକ ଭାବନା ଉଦୟ ହେବାମାତ୍ରେ ଅସ୍ତମିତ ହୋଇ ହାତଛଡ଼ା ହୋଇ ଯାଇଛନ୍ତି । ଅନେକ ଅଣ୍ଡାଳି ହୋଇଚି; ପାଇଚି ପୁଣି ହଜାଇଛି । ତେଣୁ ଅନୁଭବ କରିଛି କାଳ ବା ସମୟ ପାଖରେ ଲେଖକର ଲେଖନୀ (କର୍ଣ୍ଣିକା) କେଡ଼େ ଅପାରଗ, କେଡ଼େ ଅସହାୟ ।"

'କାଳ ଓ କର୍ଣ୍ଣିକା' ପ୍ରଥମ ଗଳ୍ପଟି ଓଡ଼ିଆ ସାହିତ୍ୟରେ ଏକ ଅଦ୍ଭୁତଗଳ୍ପ ବୋଲି କହିବାରେ ମୋର କୁଣ୍ଠା ନାହିଁ । ଅଥଚ୍ ଲେଖକଙ୍କ ଅମନଯୋଗିତା ପାଇଁ ସମ୍ଭବତଃ ଏହିପରି ଅନେକ ଗଳ୍ପ ଚର୍ଚ୍ଚା ସ୍ତରକୁ ଆସିନାହିଁ । ସମସ୍ତେ ଡକ୍ଟର ଶତପଥୀଙ୍କୁ ମହାନ୍ ସମାଲୋଚ୍‌କ ବୋଲି ଦୁହାଇ କହିଛନ୍ତି । କିଂତୁ ନାରୀର ମନସ୍ତତ୍ତ୍ୱକୁ ନେଇ ସେ ଯେ କେତେ ସୁନ୍ଦର ଗଳ୍ପ ଲେଖିଛନ୍ତି ଏ ସଂକଳନର 'ସ୍କେଲିଟନ୍', 'ସୁଜାତା ମହାନ୍ତି', 'ଚିଠି', 'ଚନ୍ଦ୍ରଉଦିଆ ଚନ୍ଦ୍ରା', 'ନବନୀତା', 'ଜୀବ ଓ ଜୈବିକ', 'ଝିଅ' ଗଳ୍ପମାନଙ୍କୁ ନ ପଢ଼ିଲେ କେହି ବୁଝି ପାରିବେନି । ଓଡ଼ିଆ ସାହିତ୍ୟର ସ୍ୱଳ୍ପ ସଂଖ୍ୟକ ଗଳ୍ପ ସମାଲୋଚ୍‌କଙ୍କର ଆଖି ଏ ସବୁ ଗଳ୍ପ ପ୍ରତି ଆକୃଷ୍ଟ ନ ହୋଇଥିବା ଦୁର୍ଭାଗ୍ୟର ବିଷୟ ନିଶ୍ଚୟ ।

ଏ ଦିଗରେ ଏକ ସଂଯୋଗ ସେତୁର ଭୂମିକା ତୁଲାଇବା ପାଇଁ ଗଳ୍ପଲେଖକ ମୋତେ ଯେଉଁ ସୁଯୋଗଟି ଦେଇଛନ୍ତି, ତା'ର କେତେ ଶତାଂଶ ମୁଁ ପୂରଣ କଲି କିମ୍ବା ଆଦୌ ଏକ ଶତାଂଶ ସୁଦ୍ଧା ପୂରଣ କରିପାରିଲି କି ନା – ସେ ବିଚାର ଆପଣମାନଙ୍କର; ଆପଣମାନେ, ଯେଉଁମାନେ ହିଁ ହେବେ ଏ ଗଳ୍ପସମଗ୍ରର ବିଦଗ୍ଧ ପାଠକ ।

ଅବଶ୍ୟ ଏ ଲେଖକର କ୍ଷୁଦ୍ର ମତରେ ସେ ବିଚାରଟି ମଧ୍ୟ ସେଭଳି ଗୁରୁତ୍ୱପୂର୍ଣ୍ଣ ନୁହେଁ; ଯେଭଳି ଗୁରୁତ୍ୱପୂର୍ଣ୍ଣ, ନିଜ ଗଳ୍ପମନସ୍କତାର ମେଘମାଳା ଭିତରୁ ଗଳ୍ପଗନ୍ଧର୍ବ ଶ୍ରୀଯୁକ୍ତ ଶତ୍‌ପଥୀ ଅମ କଥା ସାହିତ୍ୟର ଭୂପୃଷ୍ଠକୁ ସଦର୍ପ ଓ ସଘୋଷ ଅବତରଣ କରିବା ।

■ *ପୂର୍ବତନ ଚେଳି ଇଂଜିନିୟର, ବକ୍ରକବାଟୀ, କଟକ ଢୋନ୍*

# ନିତ୍ୟାନନ୍ଦ ଶତପଥୀଙ୍କ ଗଳ୍ପ-ମାନସ

♦ ଡକ୍ଟର ଅର୍ଚ୍ଚନା ନାୟକ

ଓଡ଼ିଆ ସମାଲୋଚନା ସାହିତ୍ୟରେ ଆପଣାର କୀର୍ତ୍ତିମାନ ସ୍ଥାପନ କରିଥିବା ଡକ୍ଟର ନିତ୍ୟାନନ୍ଦ ଶତପଥୀ ସ୍ୱଳ୍ପ କରି ଓଡ଼ିଆ କଥାସାହିତ୍ୟରେ ମଧ୍ୟ ସୁଗାଳ୍ପିକର ଗୌରବମୟ ପରିଚିତି ସୃଷ୍ଟି କରିପାରିଛନ୍ତି । ବିଗତ ଶତାବ୍ଦୀର ଶେଷ ଦଶକର ସମାଜ ଓ ଜୀବନର ବୈଶିଷ୍ଟ୍ୟମୟ ସାମାଜିକ ସଂଘାତ ଓ ମଣିଷର ସଂଘର୍ଷମୟ ଜୀବାନୁଭୂତିକୁ ନେଇ ତାଙ୍କର ଗଳ୍ପସଂକଳନ 'କାଳ ଓ କର୍ଣ୍ଣିକା'ର ପରିକଳ୍ପନା । ତାଙ୍କର ଦ୍ୱିତୀୟ ସଂକଳନ 'ଯେ ନଦୀ ମରୁପଥେ' ଚଳନ୍ତି ଶତାବ୍ଦୀର ପ୍ରଥମ ଦଶକର ଅବ୍ୟବସ୍ଥିତ ଜୀବନସୂତ୍ର ବିଚ୍ଛିନ୍ନ ଆଧୁନିକ ମଣିଷର ନଗ୍ନ ଜୀବନଲିପି । ଏହି ଦୁଇଟି ଗଳ୍ପ ସଂକଳନକୁ ନେଇ ପରିକଳ୍ପିତ ତାଙ୍କର ଗଳ୍ପ ସମଗ୍ର ବିଗତ ଦୁଇ ଦଶନ୍ଧିର କ୍ଷୟମାଣ ଜୀବନର ସ୍ଥିତି ଓ ଅବସ୍ଥିତିକୁ ଦର୍ଶାଇବା ସହିତ ସାମାଜିକ ତଥା ବ୍ୟକ୍ତିଗତ ମୂଲ୍ୟବୋଧର ସଂକଟ ଭିତରେ ବଞ୍ଚୁଥିବା ଆଧୁନିକ ମଣିଷର ଭାବ-ଦାରିଦ୍ର୍ୟ, ଅସହାୟତାବୋଧ ଓ ରୁଚିହୀନ ନଗ୍ନତାକୁ ବହୁ ଭାବରେ ପ୍ରକାଶ କରିଛି । ପରିମାଣରେ କମ୍ ହେଲେ ହେଁ ଗୁଣାତ୍ମକ ସୃଷ୍ଟି ମଧ୍ୟରେ ନିତ୍ୟାନନ୍ଦ ଶତପଥୀ ଓଡ଼ିଆ ଗଳ୍ପକୁ ଆପଣାର ବିଭର ଓ ନୂତନ ଦୃଷ୍ଟିକୋଣ ମଧ୍ୟଦେଇ ନୂତନ ଦିଶା ଦେବାକୁ ଚେଷ୍ଟା କରିଛନ୍ତି ।

ଗାଳ୍ପିକଙ୍କ ପ୍ରତିଭାର ପ୍ରଥମ୍ ସ୍ମାରକୀ-'କାଳ ଓ କର୍ଣ୍ଣିକା' କୋଡ଼ିଏଟି ଗଳ୍ପର ସମନ୍ୱୟ । ପ୍ରଗତି ଓ ବିକାଶର ତୂର୍ଯ୍ୟନାଦ କରୁଥିବା ନୂତନ ଶତାବ୍ଦୀରେ ଜୀବନର ସକଳ ଆଶା ଓ ସମ୍ଭାବନାଠାରୁ ଦୂରେଇ ରହିଥିବା ଅଭାବ ଓ ପୀଡ଼ାଗ୍ରସ୍ତ ମଣିଷ ଆପଣାର ଜୀବନ ପରିଧିରେ ପ୍ରତିନିୟତ ଅସରନ୍ତି ହତାଶା ଓ ବ୍ୟର୍ଥତାର ସାମ୍ନା କରୁଛି ତ କେଉଁଠି ବିକାରଗ୍ରସ୍ତ କୁତ୍ସିତ ମାନସିକତାର ପ୍ରତିଭୂ ପାଲଟିଛି । ଆପଣାର ଶୋକ ସନ୍ଧାନୀ ମଣିଷ ରୁଚିହୀନ ଜୀବନର ଅର୍ଗଳିରେ ପ୍ରବେଶ କରି କେଉଁଠି ନଗ୍ନ ଓ ଅଶାଳୀନ ମାନବୀୟ ବିଭରବୋଧର ଧ୍ୱଜା ଉଡ଼ାଇଛି ତ କେତେ ସ୍ଥଳରେ ଜୀବନ ଓ ଜଗତର ବିରୋଧାଭାସକୁ ସାମ୍ନା କରି ନପାରି ଆପଣା ଜୀବନ ବୃତ୍ତରେ କେନ୍ଦ୍ରିତ ହୋଇ ଅନ୍ତଃସାରଶୂନ୍ୟ ଜୀବନକୁ ଆପଣେଇ ନେଇଛି । କାଳ ଓ କର୍ଣ୍ଣିକାର ଅଧିକାଂଶ ଗଳ୍ପରେ ଏହି ଦ୍ୱୈତ ଜୀବନାନୁଭବ ଓ ତା'ର କ୍ରିୟା-ପ୍ରତିକ୍ରିୟାର ସମ୍ମେଳନ ଘଟିଛି ।

'କାଳ ଓ କର୍ଣ୍ଣିକା' ଗଳ୍ପ ସଂକଳନର ପ୍ରଥମ ଗଳ୍ପଟି 'କାଳ ଓ କର୍ଣ୍ଣିକା' ଶିରୋନାମାରେ ପ୍ରକାଶିତ । ମାତୃତ୍ୱ ପରି ଏକ ସମ୍ବେଦନଶୀଳ ମାନବୀୟ ଭାବଭୂମି ଉପରେ ପ୍ରଥମ ଗଳ୍ପର ପରିକଳ୍ପନା । ସଂକଳନର ଅନ୍ତିମ ଗଳ୍ପଟି ମଧ୍ୟ ସମାନ ଭାବଭୂମି ଆଧାରିତ । ନାରୀର ସକଳ ସୁକୁମାରପଣ ଭିତରେ ମାତୃତ୍ୱ ହେଉଛି ଦୁର୍ଲଭ ସୃଜନଶୀଳ ସୃଷ୍ଟି କ୍ଷମତା ଯାହାର

ସାର୍ଥକତାରେ ନାରୀ ଯୁଗଯୁଗ ଧରି ପୁରୁଷର ଅହଂକାର ଓ ଶ୍ରେଷ୍ଠତ୍ୱ ବିଚାର ଭିତରେ ମଧ୍ୟ ହୋଇପାରିଛି ପୂର୍ଣ୍ଣତମା ଓ ବନ୍ଦନୀୟା । ମାନବର ସର୍ବକାଳିକ ପ୍ରଗତି ଓ ବିକାଶର ମନ୍ତ୍ରସାଧିକା ହେଉଛି ନାରୀ ଯାହାର ମାତୃତ୍ୱବୋଧ ସୃଷ୍ଟିର ଛନ୍ଦ-ପତନରେ ହୁଏ କ୍ରିୟାଶୀଳ । କିନ୍ତୁ ସାଂପ୍ରତିକ ଜୀବନକାଳରେ ନାରୀଟି ଏକ ସଂଗତିହୀନ ବିଚାରବୋଧରେ ପୀଡ଼ିତା । 'କାଳ ଓ କର୍ଣ୍ଣିକା' ଗଳ୍ପରେ ଗୀତାଲି ଓ 'ମାତୃତ୍ୱ' ଗଳ୍ପରେ ମିଶ୍ ପ୍ରଣେତା ମହାନ୍ତିଙ୍କ ଜୀବନାଦର୍ଶର ମାନଦଣ୍ଡରେ ମାତୃତ୍ୱ ଏକ ସମ୍ବେଦନଶୀଳ ପ୍ରସଂଗ ହୋଇନାହିଁ । ଜଣେ ବନ୍ଧ୍ୟା ରହିବାର ଆଶା ଓ ସ୍ୱପ୍ନ ମଧ୍ୟରେ ଭବିଷ୍ୟତର ପ୍ରବାହକୁ ବିନଷ୍ଟ କରିବାକୁ ଶ୍ରେୟ ମଣିଛି ତ ଅନ୍ୟଜଣେ ଆଇଏଏସ୍ ହେବାର ସ୍ୱପ୍ନ ଦେଖୁଦେଖୁ ଉତ୍ତରାଧିକାରୀର ସଂପର୍କ ସୂତ୍ରକୁ ଅସ୍ୱୀକାର କରିଛି ।

ଚଳନ୍ତି ସମୟରେ ଅଭୂତପୂର୍ବ ସାମାଜିକ ପ୍ରଗତି ସତ୍ତ୍ୱେ ସାମାଜିକ ବ୍ୟବସ୍ଥାରେ ନାରୀପ୍ରତି ସମାଜର ହୀନମନ୍ୟ ଦୃଷ୍ଟିକୋଣ ଅପରିବର୍ତ୍ତିତ ରହିଛି । ଅଭାବ ଓ ଅସହାୟତାର ଶିକାର ନାରୀ ସବୁକାଳରେ ପୁରୁଷର ଆସଙ୍ଗ-କାମବାସନାର ଶିକାର ହୋଇଛି । ସବୁ କାଳରେ ଅବକ୍ଷୟ ଓ ରୁଗ୍ଣ ଜୀବନବୋଧର ପରିଚୟ ଦେଇ ପୁରୁଷ ନୈତିକତାର ସୀମାକୁ ଲଂଘନ କରିଛି । 'ନବନୀତା' ଗଳ୍ପରେ ଘୁଙ୍ଗୀ ନବନୀତା ବାରମ୍ବାର ଧର୍ଷଣର ଶିକାର ହୋଇ ଶେଷର ଅଭାବନୀୟ ପରିସ୍ଥିତିରେ ମୃତ୍ୟୁବରଣ କରିଛି । ପିତୃମାତୃହୀନ ଘୁଙ୍ଗୀ ନବନୀତାକୁ ଗଳ୍ପରେ ଉପସ୍ଥାପନା କରି ଗାଳ୍ପିକ ସାମାଜିକ ଜୀବନରେ ପୁରୁଷର କୁତ୍ସିତ ଓ ବୀଭତ୍ସ କାମବାସନାର ଜୀବନ୍ତ ଚିତ୍ର ପ୍ରଦାନ ସହିତ ସେମାନଙ୍କର ଅମାନବୀୟ ଆଚରଣର ଚରମ ପରିଣତି କିପରି ନବନୀତାର ମୃତ୍ୟୁର କାରଣ ହୋଇଛି ଦର୍ଶାଇଛନ୍ତି । ଗଳ୍ପରେ ତିରିଶି ବର୍ଷ ବୟସରେ ପଦାର୍ପଣ କରିଥିବା ଅସହାୟ ନବନୀତାକୁ ପଚାଶ ବର୍ଷ ବୟସ ହରିସାହୁ ଓ ଚାଳିଶି ବର୍ଷ ବୟସ୍କ ଲକ୍ଷ୍ମଣ ସାମଲ ଆପଣା ଆପଣାର କାମବାସନାର ଚରିତାର୍ଥ ପାଇଁ ବାରମ୍ବାର ଧର୍ଷଣ କରନ୍ତି । ପ୍ରତିକ୍ରିୟାଶୂନ୍ୟ ଘୁଙ୍ଗୀ ନବନୀତା ମୁଠାଏ ଖାଇବା ପାଇଁ ସେମାନଙ୍କର ଅତ୍ୟାଚାରକୁ ସହିନିଏ କିନ୍ତୁ ଏ ସବୁର ବ୍ୟତିକ୍ରମ ବାସୁଦେବ ନବନୀତାକୁ ଜୀବନର ରାହା ଦେବାକୁ ଚେଷ୍ଟା କରେ ଓ ତା' ପ୍ରତି ହେଉଥିବା ଅତ୍ୟାଚାରର ପ୍ରତିବାଦ କରିବାକୁ ପ୍ରବର୍ତ୍ତାଏ । ହେଲେ ଘୁଙ୍ଗୀ ନବନୀତା ଉପରେ ଏହାର ପ୍ରଭାବ ପଡ଼େନି । ସମୟକ୍ରମେ ନବନୀତା ଗର୍ଭବତୀ ହୁଏ । ହରିସାହୁ ଓ ଲକ୍ଷ୍ମଣ ସାମଲ ଆପଣା ଆପଣାର ପାପକର୍ମକୁ ଲୁଚେଇବାକୁ ଯାଇ ନବନୀତାକୁ ହତ୍ୟା କରନ୍ତି । ହତ୍ୟା ପରେ ତାକୁ ପୋଡ଼ିଦେବାକୁ ସେହି ଘରେ ନିଆଁ ଲଗାଇ ଦିଅନ୍ତି । ବାସୁଦେବ ନବନୀତାକୁ ବଞ୍ଚେଇବାକୁ ଚେଷ୍ଟା କରି ବିଫଳ ହୁଏ । ତେବେ ସମୁଦାୟ ଗଳ୍ପଟିରେ ପାଶବିକ କାମନାର ଶିକାର ହୋଇଥିବା ଜଣେ ନିଃସହାୟ ଓ ଦରିଦ୍ର ତରୁଣୀର କାରୁଣ୍ୟମୟ ଜୀବନର ଇତିବୃତ୍ତ ସ୍ଥାନ ପାଇଛି ।

ତେବେ 'ଜୀବ ଓ ଜୈବିକ' ଗଳ୍ପରେ ଅଭିନବ ମହାନ୍ତିଙ୍କର ଦେହକ୍ଷୁଧାର ଚିତ୍ରକଳ୍ପ ଗାଳ୍ପିକ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣର ବିଶ୍ଳେଷଣ କରିଛନ୍ତି । ପୁରୁଷଟି ଭିତରେ ଜୈବିକ

କ୍ଷୁଧାଜନିତ କ୍ରିୟା ଓ ପ୍ରତିକ୍ରିୟା ପାରିପାର୍ଶ୍ୱିକ ଘଟଣାବଳୀକୁ କିପରି ଅସ୍ୱାଭାବିକ କରେ ତାହା ପ୍ରଦର୍ଶିତ ହୋଇଛି । ଗୀତା ପ୍ରତି ଆସକ୍ତିଜନିତ ପ୍ରତିକ୍ରିୟା ଗୀତା ପାଖରେ ପହଞ୍ଚି ପାରିବ କି ନାହିଁ ର ସନ୍ଦେହ ଅଭିନବ ମହାନ୍ତିଙ୍କୁ ଅଧିକ କ୍ଷୁଧିତ ଓ କ୍ରୋଧିତ କରିଛି । ତେବେ ଜୀବନ ଜୈବିକ ବାସନାରୁ ମୁକ୍ତ ନୁହେଁ ବୋଲି ଗାଳ୍ପିକ ଦର୍ଶାଇବାକୁ ଚାହିଁଛନ୍ତି ।

ସାମାଜିକ ଜୀବନରେ ନାରୀର ବିବିଧ ସାମାଜିକ କ୍ରିୟା, ଅନ୍ତର୍ବେଦନା ଓ ଅସହାୟତାବୋଧ ପ୍ରତି ଗାଳ୍ପିକଙ୍କ ସହାନୁଭୂତିଶୀଳ ମନୋଭାବ କେତେକ ସ୍ଥଳରେ ପ୍ରକାଶ ପାଇଛି । ଚଳନ୍ତି ସମୟରେ ମନୁଷ୍ୟର ଅକଳ୍ପନୀୟ ଭୌତିକ ପ୍ରଗତି ସତ୍ତ୍ୱେ ସାମାଜିକ ଜୀବନାଚରରେ ନାରୀ ଏବେବି ଅସହାୟତା ଓ ନିଃସଙ୍ଗତାବୋଧର କେନ୍ଦ୍ରବିନ୍ଦୁରେ ରହିଛି । ସ୍କେଲିଟନ୍, ସୁଜାତା ମହାନ୍ତି, ଅଗଷ୍ଟ ପନ୍ଦର, ଝିଅପରି ଗଳ୍ପରେ ନାରୀ ଜୀବନ ସମସ୍ୟାର ରୂପାୟନ ଘଟିଛି । ନାରୀଟି ସାମାଜିକ ଜୀବନରେ କନ୍ୟା, ବଧୂ, ଜନନୀ । ସର୍ବୋପରି ନାରୀଟିର ଭୂମିକା ସାମାଜିକ ସଂଘାତକୁ ଅଧିକ ସାମ୍ନା କରିଛି । ଆପଣାର ଅନ୍ତର୍ବେଦନାକୁ ପ୍ରକଟିତ କରିନାହିଁ । ନିରନ୍ତର ଆଘାତ ସହି 'ଅଗଷ୍ଟ ପନ୍ଦର'ର ବୋଉ ପରି ସେ ହୋଇଛି ସହନଶୀଳା, ଅଭାବ ଓ ଅନଟନର ତାଡ଼ନା ସହି ସହି ସ୍କେଲିଟନ୍‌ର ସୁମତି ପରି ସେ ବାଧ୍ୟ ହୋଇଛି ମୃତ ସମୀର ଶବକୁ କେତୋଟି ଟଙ୍କାରେ ବିକିବା ପାଇଁ, ସାମାଜିକ ଉପେକ୍ଷା ଓ ଅନାଦର ସହି ସହି ସେ ଝିଅ ଗଳ୍ପର ସାବି ପରି ହୋଇଛି ମୂକ ପ୍ରତିମା ଓ ପ୍ରିୟପରିଜନଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରି ସୁଜାତା ମହାନ୍ତି ପରି ସେ ହୋଇଛି ପୂର୍ଣ୍ଣତମା । ପ୍ରତ୍ୟେକଟି ଗଳ୍ପରେ ଭିନ୍ନ ଭିନ୍ନ ଅଶୋଭନୀୟ ଓ ରୁଚିହୀନ ସାମାଜିକ ପରିବେଶ ନାରୀର ଜୀବନୀ ଶକ୍ତିକୁ କ୍ଷତାକ୍ତ କରିଛି । ଶତ ଶତ ଆଘାତର ବେଦନାରେ ନାରୀ ହେଉଛି ଲୋତକାପ୍ଲୁତା ଓ ମୁହ୍ୟମାଣା । ସୁଜାତା ମହାନ୍ତି ଭାବନାରେ - "ଏଇ ତ ତା'ର ଅପୁଚ୍ଛା ଅପାଂକ୍ତେୟ ଜୀବନ । ନା ଅଛି ଘର, ନା ସମାଜ, ନା ସ୍ନେହ, ନା ମମତା ।" ତଥାପି ନାରୀଟି ତା'ର ଦୟା-କ୍ଷମା-ପ୍ରେମ ଓ ଉଦାରତାରେ ପୃଥିବୀକୁ ବାନ୍ଧି ରଖିଛି । ନିଜ ଭିତରେ ନିରନ୍ତର ଲହୁଲୁହାଣ ହୋଇ ପୃଥିବୀକୁ ଦେଇଛି ତାର କରୁଣା ଓ ପ୍ରେମ ।

ରାମାୟଣର ଊର୍ମିଳାଙ୍କ ଜୀବନ ପୃଷ୍ଠଭୂମି ଉପରେ ରଚିତ ହୋଇଛି 'ଉପେକ୍ଷିତା' ଗଳ୍ପ । ଲୋକଚକ୍ଷୁର ଅନ୍ତରାଳରେ ରହିଲେ ବି ଲକ୍ଷ୍ମଣଙ୍କ ପତ୍ନୀ ଊର୍ମିଳାଙ୍କ କୌଣସି କ୍ଷୋଭ ବା ଅନୁଶୋଚନା ନାହିଁ । ପ୍ରେମ, ତ୍ୟାଗ ଓ କ୍ଷମା ନାରୀକୁ ଅଧିକ ବ୍ୟକ୍ତିତ୍ୱମୟୀ କରେ, କରେ ବନ୍ଦନୀୟା । ଊର୍ମିଳାଙ୍କ ପ୍ରତି ଗାଳ୍ପିକଙ୍କ ସମବେଦନା ଉପେକ୍ଷିତାର ରୂପ ନେଲେ ବି ଊର୍ମିଳାଙ୍କ ଜୀବନ ଦୃଷ୍ଟି କାଳାତୀତ ଓ ଶାଶ୍ୱତ ମୂଲ୍ୟବୋଧ ଓ ବିଚାରର ସୂତ୍ର ପାଲଟିଛି । ସେହିପରି ତାଙ୍କର ଅନ୍ୟତମ ଗଳ୍ପ 'ଗୋଟିଏ ବୋକ ଓ ବିନ୍ଦୁଏ ଲୁହ'ରେ ତିନିବର୍ଷର ଶିଶୁ ପ୍ରତି ନଳିନୀ ଦେବୀଙ୍କ ମାତୃତ୍ୱଭରା ରୂପର ପରିପ୍ରକାଶ ଘଟିଛି । ଜନନୀ ଭୂମିକାରେ ନାରୀ କଲ୍ୟାଣମୟୀ, ସ୍ନେହମୟୀ, ଜୀବନର ସର୍ବସୁଖ ପ୍ରଦାୟିନୀ । ପରିବର୍ତ୍ତିତ କାଳ ଓ

ଯୁଗଚେତନା ଭିତରେ ନାରୀ ତାର ସେବା, ତ୍ୟାଗ, କ୍ଷମା, ପ୍ରେମ ଓ ପବିତ୍ରତା ପାଇଁ ଚିର ବନ୍ଦନୀୟା । ଏହି ବିଷୟବୋଧଟି ଗଳ୍ପଗୁଡ଼ିକରେ ସର୍ବତ୍ର ପ୍ରକାଶିତ ହୋଇଛି ।

ବିଗତ ଦୁଇ ଦଶନ୍ଧି ମଧ୍ୟରେ ପ୍ରକାଶିତ ପାରିବାରିକ ଜୀବନର ସଂକଟ, ତିକ୍ତ ଓ ଜଟିଳ ଦାମ୍ପତ୍ୟ ଜୀବନର ଚିତ୍ରକୁ ନେଇ 'ସେମିମ୍ୟାଡ୍' ଓ 'ଦହନ-ଦୋହନ' ଗଳ୍ପର ପରିକଳ୍ପନା । ସେମିମ୍ୟାଡ୍ ଗଳ୍ପରେ ସନାତନ ଶର୍ମା, ଆପଣାର ପାରିବାରିକ ବନ୍ଧନ ଭିତରେ ନିଃସଙ୍ଗ ଓ ପୀଡ଼ା ଜର୍ଜରିତ । ଭୁଶୁଡ଼ି ପଡ଼ିଥିବା ପାରିବାରିକ ଜୀବନ ଭିତରେ ବ୍ୟକ୍ତି ଆପଣା ଉପରୁ ନିୟନ୍ତ୍ରଣ ହରାଇ କିପରି ଅର୍ଦ୍ଧପାଗଳ ଅବସ୍ଥାକୁ ଆସିଯାଏ, ତା'ର ଦୃଷ୍ଟାନ୍ତ ଗଳ୍ପଟି ବହନ କରୁଛି । ସନାତନ ଶର୍ମାଙ୍କ ଭାବନାରେ- "ଜୀବନର ସମସ୍ତ ଧାବମାନ ଗତି, ସବୁ ଉଦ୍ୟମ, ସବୁ ଆଶା ଓ ଆକାଂକ୍ଷା, ସବୁ ସମ୍ଭାବନା ଓ ପ୍ରତିଯୋଗିତା ମନେହେଉଥିଲା ନିହାତି ଅଳୀକ ଓ ଅର୍ଥହୀନ । ସବୁ ପ୍ରତିଷ୍ଠା ଓ ପରିଚୟର ଉପରେ ଯେପରି କିଏ ମେଞ୍ଚାଏ କଳା ବୋଳିଦେଇଛି- ଲଦିଦେଇଛି ତା'ର ନିଜର ସିଦ୍ଧାନ୍ତ ସେ ଅମଣିଷ, ଅଦରକାରୀ, ଅର୍ଦ୍ଧପାଗଳ ସେମିମ୍ୟାଡ୍ ।" ପାରିବାରିକ ଅଶାନ୍ତି ଓ ବ୍ୟକ୍ତି ପୀଡ଼ନର ଏଇ ସର୍ବଗ୍ରାସୀ ରୂପ ଆଧୁନିକ କାଳରେ ପାରିବାରିକ ଜୀବନର ମଧୁରତା ଓ ପବିତ୍ରତାକୁ କେବଳ ନଷ୍ଟ ଓ ବିପନ୍ନ କରିନି ବରଂ ଏଥିସହିତ ଉପହାସ କରିଛି ଆମର ପାରଂପାରିକ ଜୀବନବୋଧକୁ, ବିଶ୍ୱାସକୁ ଓ ଭଲପାଇବାକୁ । 'ଦହନ-ଦୋହନ' ଗଳ୍ପରେ ଏହାର ପୁନରାବୃତ୍ତି ଘଟିଛି । ବ୍ୟକ୍ତିର ସୁବିଧାବାଦୀ, ନୀଚ ଓ ସ୍ୱାର୍ଥପର ମନୋଭାବ ପାଇଁ ଦାମ୍ପତ୍ୟଜୀବନ ପ୍ରଭାବିତ ହୋଇଛି । ପତ୍ନୀଙ୍କର ଉପେକ୍ଷା ପାଇଁ ହୀନମନ୍ୟତାର ଶିକାର ହୋଇଛନ୍ତି ସବ୍ୟସାଚୀ । ଅର୍ଥହୀନ ଓ ଅସ୍ୱସ୍ତିକର ପାରିବାରିକ ଜୀବନ ମଧ୍ୟରେ ସେମିମ୍ୟାଡ୍ ଗଳ୍ପର ସନାତନ ଶର୍ମା ଓ ଦହନ-ଦୋହନ ଗଳ୍ପର ସବ୍ୟସାଚୀ ଆପଣା ଆପଣାର ଦୁଃଖ, ବେଦନା ଓ ଅସହାୟତାବୋଧ ନେଇ ବଞ୍ଚି ରୁହନ୍ତି । ଆଧୁନିକ ଜୀବନରେ ସଭ୍ୟ ମଣିଷଟି ତା'ର ବିଶିଷ୍ଟ ସାମାଜିକ ପରିଚିତି ଭିତରେବି ଏକ ଅସୁରକ୍ଷିତ ଓ ସମ୍ବେଦନାହୀନ ଜୀବନ ଧାରଣ ପାଇଁ ବାଧ୍ୟ ହୁଏ । ବୋଧହୁଏ ଏହାହିଁ ଆଧୁନିକ ମଣିଷର ଭାଗ୍ୟ ଓ ଭବିତବ୍ୟ ।

ମୋହନ ମୂର୍ତ୍ତି, ଇତିଶ୍ରୀ, 'ପିତାମହ' ପ୍ରଭୃତି ଗଳ୍ପରେ ଗଳ୍ପନାୟକମାନେ ସେମାନଙ୍କର ଉଚ୍ଚତର ପାରମ୍ପାରିକ ମୂଲ୍ୟବୋଧ, ବିଚାର ଓ ମାନବିକତାବୋଧ ପାଇଁ ନିଜ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରନ୍ତି । ପିତାମହ ଗଳ୍ପରେ ସବ୍ୟସାଚୀ ନିଜର ସଶକ୍ତ ଜୀବନର ପରିଚୟ ପ୍ରଦାନ କରନ୍ତି । ସମୟାନ୍ତରରେ ସେ ଅସହାୟ ହେଲେ ମଧ୍ୟ ପିତାମହ ତାଙ୍କୁ ସହାୟତାର ଅଦୃଶ୍ୟ ହାତ ବଢ଼ାଇଛନ୍ତି । ସେ ଜୀବନରେଖାର ଶେଷ ବିନ୍ଦୁର ନିକଟତର; ସବ୍ୟସାଚୀ ଶେଷରେ ପରିପାର୍ଶ୍ୱର ଆଘାତରେ କ୍ଷତାକ୍ତ ଓ ଲହୁଲୁହାଣ ହୁଅନ୍ତି । 'ଇତିଶ୍ରୀ' ଗଳ୍ପରେ ଜଣେ କୁଷ୍ଠରୋଗୀର କନ୍ୟାକୁ ଗଳ୍ପନାୟକ ଘରେ ଆଶ୍ରୟ ଦେବା, ମୋହନମୂର୍ତ୍ତି ଗଳ୍ପରେ ମୋହନମୂର୍ତ୍ତି ନିଜେ ଉପବାସରେ ରହି ପାଇଥିବା ପାଞ୍ଚଟଙ୍କାକୁ ଭିକାରୁଣୀକୁ

ଦେବାର ବର୍ଣ୍ଣନା ଭିତରେ ମାନବିକତାର ଜୟଗାନ ରହିଛି । ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା କରି ଚରିତ୍ର ଦ୍ୱୟ ଆପଣାର ବ୍ୟକ୍ତିତ୍ୱ ଓ ବିଚାରଧାରାକୁ ଜୀବନାମୁଖୀ କରିଛନ୍ତି । 'ବିସର୍ଜନ' ଗଳ୍ପରେ ଅଭାବଗ୍ରସ୍ତ ଧନୀ ମୋଚୀର ଉଜ୍ଜ୍ୱଳମୟ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରାଯାଇଛି । ବିକ୍ରୀ ହୋଇ ପାରି ନଥିବା ଗଣେଶ ମୂର୍ତ୍ତିଗୁଡ଼ିକୁ ବିସର୍ଜନ କରି ସେ ସତେବା ସନ୍ତାନମାନଙ୍କୁ ହରେଇଥିବା ଦୁଃଖରେ କାନ୍ଦିବାରେ ଲାଗିଛି ।

ଚଳନ୍ତି ସମୟର ରାଜନୈତିକ ପୃଷ୍ଠଭୂମି ଉପରେ ରଚିତ ହୋଇଛି 'ବିଧାନସଭା' ଗଳ୍ପ, ଯେଉଁ ଗଳ୍ପରେ ନେତା ଓ ଜନତାଙ୍କ ଚାରିତ୍ରିକ ଦୋଷ ଓ ଗୁଣକୁ ପ୍ରଦର୍ଶିତ କରାଯାଇଛି । ମୂଲ୍ୟବୋଧଭିତ୍ତିକ ରାଜନୀତି ଆଜି ବ୍ୟକ୍ତିଜୀବନରୁ ବିଦାୟ ନେଇଛି । ନେତାଙ୍କଠାରୁ ଜନତାଙ୍କ ଯାଏଁ ପ୍ରତ୍ୟେକ ଅନ୍ୟକୁ ବିଭିନ୍ନ ମାର୍ଗରେ ପ୍ରତାରିତ କରିବାର ମନ୍ଦ ଅଭିଳାଷକୁ ଲକ୍ଷ୍ୟ କରି ଗଳ୍ପନାୟକ ବିବ୍ରତ ଓ ବିଷାଦଗ୍ରସ୍ତ । ଏସବୁ ସତ୍ତ୍ୱେ କେଉଁଠି କେବେ ମଣିଷର ମହତପଣିଆ ଦର୍ଶନ ମାତ୍ରେ ତାଙ୍କ ଭିତରେ ଜୀବନ ଓ ଜଗତପ୍ରତି ଆସ୍ଥା ଫେରିଆସେ ।

'ଯେ ନଦୀ ମରୁପଥେ' ଗଳ୍ପସଂକଳନ ପ୍ରକାଶ ବେଳକୁ ସମାଜ ଓ ଜୀବନ ହୋଇଛି ଅଧିକତର ନିମ୍ନଗାମୀ ଓ ଅବକ୍ଷୟମୁଖୀ । ବ୍ୟକ୍ତିଗତ ଜୀବନରେ ହେଉ ବା ହେଉ ପାରିବାରିକ ବା ସାମାଜିକ ଜୀବନଧାରା, ପ୍ରତ୍ୟେକ କ୍ଷେତ୍ରରେ ବ୍ୟକ୍ତିର କୁତ୍ସିତ ମାନସିକତାର ପ୍ରଦର୍ଶନ, ସଂକୀର୍ଣ୍ଣ ଓ ସ୍ୱାର୍ଥପର ମନୋଭାବର ପ୍ରକାଶ ଘଟିଛି । ମଣିଷର ଅକଳ୍ପନୀୟ ଭୌତିକ ବିକାଶ, ଜ୍ଞାନ-ବିଜ୍ଞାନର ବିସ୍ତାର ସତ୍ତ୍ୱେ ମଣିଷଟି ଆପଣାର ନ୍ୟାୟିକ ବିଚାରରେ ସଂକୁଚିତ ମନୋଭାବ ପ୍ରଦର୍ଶନ କରୁଛି, ପାରିବାରିକ ଜୀବନରେ ବିଚ୍ଛିନ୍ନତାବୋଧର ଶିକାର ହୋଇଛି, ସାମାଜିକ ଜୀବନକୁ କରିଛି ପତନମୁଖୀ । 'କାଳ ଓ କର୍ଣ୍ଣିକା' ଗଳ୍ପ ସଂକଳନର ଗଳ୍ପଗୁଡ଼ିକରେ ଜଣେ ସମ୍ବେଦନଶୀଳ ଶିଳ୍ପୀ ଆତ୍ମାର ପୀଡ଼ା ଥିଲା ଓ ଥିଲା ଅନେକ ସ୍ଥଳରେ ବିଶ୍ୱାସ ଓ ଆଗାମୀ ପ୍ରତି ଆସ୍ଥା; କିନ୍ତୁ ପରବର୍ତ୍ତୀ ସଂକଳନରେ ଏହା ଅନେକାଂଶରେ ତିରୋହିତ ହୋଇଛି । ବିଶେଷତଃ ଏହି କାଳର ରଚନାରେ ଗାଳ୍ପିକ ପାରିବାରିକ ଜୀବନର ଦୟନୀୟ ଓ ଅଶୋଭନୀୟ ଆଚରଣକୁ ପ୍ରଦର୍ଶନ କରି ବ୍ୟକ୍ତିର ଅସହାୟତାବୋଧକୁ ଅଧିକ ଚିତ୍ରିତ କରିଛନ୍ତି । ପାରିବାରିକ ଜୀବନରେ ଅବିଶ୍ୱାସ, ପ୍ରତାରଣା ଓ ପ୍ରତିଶୋଧ ପରାୟଣ ମନୋଭାବ ଯୋଗୁଁ ବ୍ୟକ୍ତି ଜୀବନ୍ତ ପୀଡ଼ାଜର୍ଜରିତ ହୋଇଛି ।

'ଚିଠି', 'ଜ୍ୟୋତିଷବାଣୀ', 'ଘରବିକ୍ରି' ଗଳ୍ପ ତିନୋଟିରେ ବିଫଳ ଦାମ୍ପତ୍ୟ ଜୀବନ ଓ ବ୍ୟକ୍ତିର ଅସହାୟତା ଓ ହତାଶାବୋଧ ଅଧିକ ପରିସ୍ଫୁଟ । ପୂର୍ବ ସଂକଳନର ସେମିମ୍ୟାଡ୍ ଓ ଦହନ-ଦୋହନ ଗଳ୍ପ ଦ୍ୱୟରେ ପୁରୁଷଟି ଆପଣା ପତ୍ନୀ ଦ୍ୱାରା ମାନସିକ ନିର୍ଯ୍ୟାତନାର ଶିକାର ହେବାର ପୁନରାବୃତ୍ତି ଉକ୍ତ ଗଳ୍ପଗୁଡ଼ିକରେ ଘଟିଛି । ଚିଠି ଗଳ୍ପରେ ପତ୍ନୀଙ୍କ ଦ୍ୱାରା ଚରିତ୍ରହୀନ ଓ ଅସଭ୍ୟ ମଣିଷର ଆଖ୍ୟା ପାଇବା ପରେ ଅଧ୍ୟାପକ ଜଣକ ପାଞ୍ଚାଳୀ ନାମ୍ନୀ ଝିଅଟି ପ୍ରତି ନିଜର ସମସ୍ତ ମାନବିକ ସମବେଦନା ଥିବା ସତ୍ତ୍ୱେ ସାହାଯ୍ୟ କରିପାରନ୍ତ ନାହିଁ । ପରିଣତିରେ

ଝିଅଟି ଆତ୍ମହତ୍ୟା କରେ । ପାରିବାରିକ ଜୀବନର ଦୟନୀୟ ସ୍ଥିତି ଜ୍ୟୋତିଷ ବାଣୀ ଓ ଘରବିକ୍ରି ଗଳ୍ପ ଦ୍ୱୟରେ ପ୍ରକାଶିତ । ଜ୍ୟୋତିଷବାଣୀ ଗଳ୍ପରେ ଦୀନନାଥ ନିଜର ପତ୍ନୀ ଓ କନ୍ୟାଙ୍କ ସୁବିଧାବାଦୀ ମନୋଭାବର ଶିକାର ହୁଅନ୍ତି । ତାଙ୍କର କନ୍ୟା କେବଳ ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ ବିଚ୍ଛେଦର କାରଣ ହୁଏନା ବରଂ ତାଙ୍କୁ ନିଃସଙ୍ଗ ଓ ଅସହାୟ କରିଦିଏ । 'ଘରବିକ୍ରି' ଗଳ୍ପର ନିଶିକାନ୍ତ ହେଉଛନ୍ତି ଦୀନନାଥଙ୍କର ଅନ୍ୟ ଏକ ରୂପ । ନିଶିକାନ୍ତ ନିଜର ସନ୍ତାନ ଓ ପତ୍ନୀଙ୍କ ପାଇଁ ନିଜ ଜୀବନର ସମଗ୍ର କାଳ ବିନିଯୋଗ କରିଥିଲେ ମଧ୍ୟ ପ୍ରତିଦାନରେ ସେମାନଙ୍କ ଦ୍ୱାରା ମାନସିକ ନିର୍ଯ୍ୟାତନାର ଶିକାର ହୁଅନ୍ତି । ନିଜର ପୈତୃକ ସଂପତ୍ତି ଓ ସମସ୍ତ ସଞ୍ଚୟକୁ ପତ୍ନୀ ଓ ସନ୍ତାନମାନେ ହସ୍ତଗତ କରି ତାଙ୍କୁ ଗୃହତ୍ୟାଗ କରି ଚାଲିଯିବାକୁ ଧମକ ଦିଅନ୍ତି । ପାରିବାରିକ ଜୀବନର ବିଫଳତା ଓ ବ୍ୟର୍ଥତା ସାଂପ୍ରତିକ ମଣିଷର ଜୀବନକୁ କିପରି ନିମ୍ନମୁଖୀ ଓ ପୀଡ଼ା ଜର୍ଜରିତ କରିଛି, ଗଳ୍ପଗୁଡ଼ିକ ତା'ର ସାକ୍ଷ ପ୍ରଦାନ କରନ୍ତି ।

ନିତ୍ୟାନନ୍ଦ ଶତପଥୀଙ୍କ ଏହି ପର୍ଯ୍ୟାୟର ସାମାଜିକ ଗଳ୍ପଗୁଡ଼ିକରେ ସାମାଜିକ ଜୀବନର ବିଫଳତାବୋଧ, ସାମାଜିକ ବ୍ୟବସ୍ଥାର ଦୋଷ ଓ ତ୍ରୁଟି ଅଧିକଭାବେ ପ୍ରତିଫଳିତ ହୋଇଛି । ଭାରତର ଗଣତାନ୍ତ୍ରିକ ବ୍ୟବସ୍ଥାରେ ନିର୍ବାଚନ ରାଜନୀତିର କୁତ୍ସିତ ବିଚାରଧାରାକୁ ଗାଳ୍ପିକ ବୃଷଭ ଉପାଖ୍ୟାନ, 'ବୃଷଭ ସଂହିତା' ଗଳ୍ପ ଦ୍ୱୟରେ ପ୍ରକାଶ କରିଛନ୍ତି । ଉଭୟ ଗଳ୍ପରେ ରାଜନୈତିକ ଦଳଗୁଡ଼ିକ ଆପଣା ଆପଣାର ଦଳୀୟ ଚିହ୍ନକୁ ନେଇ ପ୍ରଚାର କରିବା କାଳରେ ନିରୀହ ଷଣ୍ଢକୁ ବ୍ୟବହାର କରିଛନ୍ତି । ପରିଣତିରେ ଷଣ୍ଢଟି ପରାଜିତ ପ୍ରାର୍ଥୀମାନଙ୍କର ରୋଷର ଶିକାର ହୋଇ ମୃତ୍ୟୁବରଣ କରିଛି । ବୃଷଭ ଉପାଖ୍ୟାନ କାହାଣୀର ପୁନରାବୃତ୍ତି ବୃଷଭ ସଂହିତାରେ ଘଟିଥିଲେ ମଧ୍ୟ ଗାଳ୍ପିକ ଭୋଟ୍ ରାଜନୀତିର ବୀଭତ୍ସ ଓ ନଗ୍ନ ରୂପ କିପରି ନିରୀହ ପ୍ରାଣୀର ମୃତ୍ୟୁର କାରଣ ହୁଏ, ତାହା ଦର୍ଶାଇଛନ୍ତି; ରାଜନେତା ମାନଙ୍କର ସାମାଜିକ ଦାୟିତ୍ୱବୋଧ କିପରି ନିମ୍ନଗାମୀ ଓ ଅରୁଚିକର । 'ଅବଶିଷ୍ଟ ଅବୋଶୋଷ' ଗଳ୍ପଟି ସ୍ୱାଧୀନତାର ପୃଷ୍ଠଭୂମି ଉପରେ ରଚିତ ଓ ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଶୋଚନୀୟ ସାମାଜିକ ଚିତ୍ର ଗଳ୍ପଟିରେ ନିଖୁଣ ଭାବରେ ପ୍ରତିଫଳିତ । ଅଶୀ ବର୍ଷ ବୟସ୍କ ସଉରା ଅନ୍ଧର ଜୀବନ କାହାଣୀ ଓ ପାନଦୋକାନର ଇତିହାସ ମଧ୍ୟରେ ଗାଳ୍ପିକ ଆମ ସ୍ୱାଧୀନ ଜୀବନର ବିଫଳତାବୋଧ ଓ ବ୍ୟର୍ଥତାକୁ ପ୍ରକାଶ କରିଛନ୍ତି । "ମଣିଷ ପ୍ରତି ମଣିଷର ଆଦର ନାହିଁ, ମମତା ନାହିଁ । ସମ୍ୱଳ ନଥିବା ଦରିଦ୍ର ଉପରେ ଏ ଦେଶରେ ଏବେବି ଥିଲାବାଲାଙ୍କର ଅକଥନୀୟ ଅତ୍ୟାଚାର ଲାଗିରହିଛି । କାଲି ବ୍ରିଟିଶ୍ ରାଜା ଯାଇଛି ସିନା, ହେଲେ ଦରିଦ୍ରକୁ ଶୋଷିବାର ନିଶା ଏ ଦେଶରେ ମଣିଷମାନଙ୍କର ରକ୍ତରୁ ଏବେବି ନିଭିନାହିଁ ।" କେବଳ ଶାସକ ବଦଳିଛନ୍ତି ମାତ୍ର ବଦଳି ନାହିଁ ଶାସନ । ଭାରତବର୍ଷର ଭାଗ୍ୟ ଅକାଶରେ ଗଣତନ୍ତ୍ର ଶାସନ ବ୍ୟବସ୍ଥା ଆସ୍ଥା ଓ ବିଶ୍ୱାସର ସୂର୍ଯ୍ୟଟିଏ ପରି ଉଇଁପାରିନି ବରଂ ଜନଗଣଙ୍କ ଭାଗ୍ୟ ଓ ଭବିତବ୍ୟ ପୂର୍ବପରି ଘୋର ତମସ୍ରା ମଧ୍ୟରେ ବୁଡ଼ି ରହିଛି ।

ଯେ ନଦୀ ମରୁପଥେ, ଚିଠି, ସ୍ମୃତିରେ ସ୍ମୃତିରେ ମୀରା, ଚନ୍ଦ୍ରଉଦିଆ : ଚନ୍ଦ୍ରା ଗଳ୍ପଗୁଡ଼ିକରେ ନାରୀଜୀବନର କରୁଣ ଆତ୍ମଲିପି ଓ ସେମାନଙ୍କର ଶୋଚନୀୟ ଜୀବନ ସ୍ଥିତିର ପରିଚୟ ପ୍ରଦତ୍ତ ହୋଇଛି । ଚିଠି ଗଳ୍ପରେ ପାଞ୍ଚାଳି ପ୍ରେମ କରି ସାମାଜିକ ଆସ୍ଥା ଲାଭ କରିପାରିନି, ତେଣୁ ଆତ୍ମହତ୍ୟା କରିଛି । ତେବେ ସମଗ୍ର ଗଳ୍ପରେ ପାଞ୍ଚାଳି ପ୍ରଦତ୍ତ ଚିଠିର ପ୍ରଭାବ ଗଳ୍ପନାୟକଙ୍କ ପାରିବାରିକ ଜୀବନରେ ଅଶାନ୍ତ ଝଡ଼ ସୃଷ୍ଟି କରିଛି । ଗଳ୍ପରେ ଗଳ୍ପନାୟକ ଆପଣାର ଗୃହ କଟକରୁ ରାତ୍ରି ବସ୍‌ରେ ପ୍ରତ୍ୟାବର୍ତ୍ତନ କାଳରେ ଆକସ୍ମିକ ଘଟଣାକ୍ରମରେ ପାଞ୍ଚାଳି ଓ ତା'ର ଅଧ୍ୟାପକ ଭାଇଙ୍କ ଆତିଥ୍ୟ ସେମାନଙ୍କ ଗୃହ ଢେଙ୍କାନାଳରେ ଗ୍ରହଣ କରନ୍ତି । ପାଞ୍ଚାଳି ସହିତ ଯୋଡ଼ିହୁଏ ନୂଆ ସଂପର୍କ । ସେହି ସଂପର୍କର ଆଧାରରେ ପାଞ୍ଚାଳି ତା'ର ବ୍ୟକ୍ତିଗତ ସମସ୍ୟା ସବୁର ସମାଧାନ ଚାହେଁ ଓ ସେଥିପାଇଁ ଗଳ୍ପନାୟକଙ୍କ ଗୃହ ଠିକଣାରେ ପ୍ରେରଣ କରେ ଏକ ଆବେଗମୟ ଭାଷାରେ ଚିଠି । ଏଇ ଚିଠି ହିଁ ଗଳ୍ପନାୟକ ଓ ତାଙ୍କର ପତ୍ନୀ ଶ୍ରୀମତୀ ଦାସଙ୍କ ମଧ୍ୟରେ ଝଡ଼ ସୃଷ୍ଟି କରେ । ଶ୍ରୀମତୀ ଦାସଙ୍କ ଭାଷାରେ ସେ ଜଣେ କାମୁକ, ନୁଙ୍ଗୁରା, ଲଜ୍ଜାହୀନ ଓ ଅବିବେକୀ ମଣିଷ । ଚିଠିଟି ପାରିବାରିକ ଜୀବନରୁ ବାରମ୍ବାର ଘଟଣାକ୍ରମେ ଅଶାନ୍ତ କରୁଥିଲେ ମଧ୍ୟ ଗଳ୍ପ ନାୟକଙ୍କ ହସ୍ତଗତ ହୋଇପାରିନି । ପାଞ୍ଚାଳିକୁ ନେଇ କୌଣସି ଆବେଗ ପ୍ରକାଶ ମାତ୍ରେ ଗଳ୍ପନାୟକ ସେଇ ଭାବନାରୁ ନିବୃତ୍ତ ହେବାକୁ ଚେଷ୍ଟା କରନ୍ତି । ଗୃହକୁ କ୍ରମେ ସ୍ୱାଭାବିକ ଶାନ୍ତି ଫେରିଆସେ ସତ୍ୟ, ମାତ୍ର ବେଳେବେଳେ ତାଙ୍କ ପାଖରେ ପହଞ୍ଚି ପାରିନଥିବା ସେହି ରହସ୍ୟମୟ ଚିଠି ପାଇଁ ପତ୍ନୀଙ୍କ ରୋଷ, ଅଶାଳୀନ ଓ ରୁଚିହୀନ କଟୁ ମନ୍ତବ୍ୟର ଶିକାର ହେବାକୁ ପଡ଼େ । ଗଳ୍ପ ଭାଷାରେ- "କିନ୍ତୁ ମୁଦାପେଡ଼ି ଭିତରୁ ସାପୁଆକେଳା ପଦ୍ମତୋଳା ବୋଲି ସାପକୁ ଛାଡ଼ିଦେଲା ପରି ଶ୍ରୀମତୀ ଦାସ ବେଳେବେଳେ ତାଙ୍କ ସାଇତା ଅତି ଗୋପନୀୟ ପତ୍ର-ପେଡ଼ିରୁ ପାଞ୍ଚାଳିର ଚିଠିକୁ ମୋ ଉଦ୍ଦେଶ୍ୟରେ ଛାଡ଼ି ଦେଉଥିଲେ । ସେଇ ଦିନମାନଙ୍କରେ କିଛି ସମୟ ପାଇଁ ଉତ୍ତେଜନା ଲାଗି ରହୁଥିଲା ଓ ତା' ପରେ ସ୍ୱାଭାବିକ ଭାବେ ବାତାବରଣ ଶୀତଳ ହୋଇଯାଉଥିଲା ।" ତେବେ ପରେ ଆକସ୍ମିକ ଘଟଣାକ୍ରମେ ପାଞ୍ଚାଳିର ଭାଇ ସହିତ ଗଳ୍ପନାୟକଙ୍କ ସାକ୍ଷାତ ହୁଏ ଓ ତାଙ୍କଠାରୁ ପାଞ୍ଚାଳି ଆତ୍ମହତ୍ୟା କରିଥିବା ଜାଣିପାରନ୍ତି । ଅସହାୟ ଝିଅଟିକୁ ସାହାଯ୍ୟ କରିପାରିନଥିବାର ଅବଶୋଷ ଗଳ୍ପନାୟକଙ୍କୁ ବିବ୍ରତ କରେ । ଏବେ ଚିଠିର ଭାଷା ତାଙ୍କ ନିକଟରେ ସ୍ପଷ୍ଟ ହୁଏ ସତ୍ୟ, ମାତ୍ର ଝିଅଟିର ଆତ୍ମହତ୍ୟା ପାଇଁ ଆପଣାକୁ ଗଳ୍ପନାୟକ ଦୋଷୀ ମନେକରନ୍ତି । କିନ୍ତୁ ପତ୍ନୀଙ୍କ ତରଫରୁ ସେଇ ଚିଠିର ଶର ନିକ୍ଷେପରୁ, କୁତ୍ସିତ ଭାଷାରୁ ତାଙ୍କୁ ନିସ୍ତାର ମିଳେନି । ଗଳ୍ପନାୟକ ବାଧ୍ୟ ହୋଇ ପାଞ୍ଚାଳିର ଦୁର୍ଭାଗ୍ୟ ଜୀବନର କଥା ପ୍ରକାଶ କରନ୍ତି । ଶ୍ରୀମତୀ ଦାସଙ୍କର ପାଞ୍ଚାଳି ପ୍ରତି ରହିଥିବା କ୍ରୋଧ ଓ ଘୃଣା ହଠାତ୍ ଶାନ୍ତ ହୋଇ ପରିଣତ ହୁଏ କାରୁଣ୍ୟରେ । ଝିଅଟିର ଯେଉଁ ଚିଠିଟି ଦିନେ ପାରିବାରିକ ଅଶାନ୍ତିର କାରଣ

ପାଲଟିଥାଏ, ସେଇ ଚିଠି ଲେଖିଥିବା ଝିଅଟି ପ୍ରତି ସ୍ୱଭାବିକ ଭାବରେ ଶ୍ରଦ୍ଧା ଓ ସମ୍ବେଦନା ସୃଷ୍ଟି ହୁଏ ।

ଚନ୍ଦ୍ରଉଦିଆ : ଚନ୍ଦ୍ରାରେ ଚନ୍ଦ୍ରାନାମ୍ନୀ ବ୍ରାହ୍ମଣୀ ନାରୀଟିକୁ ତା'ର ଅସହାୟ ସ୍ଥିତିରେ ନିଜକୁ ସମାଜରକ୍ଷକ ବୋଲାଉଥିବା ସମାଜପତିମାନେ ଦୟା ଓ ଅନୁଗ୍ରହର ହାତ ବଢ଼େଇବା ପରିବର୍ତ୍ତେ ସାମାଜିକ ଓ ମାନସିକ ତାଡ଼ନା ଦେଇଛନ୍ତି । ଚନ୍ଦ୍ରା ସେମାନଙ୍କର ରୋଷର ଶିକାର ହୋଇ ଦୟନୀୟ ଓ ଶୋଚନୀୟ ଜୀବନଯାପନ କରିଛି । ସଂକଳନର ଏଇ ଶେଷ ଗଳ୍ପଟିରେ ଜଣେ ଅତୁଳନୀୟା ସୁନ୍ଦରୀ ନାରୀର ଦୟନୀୟ ଓ କରୁଣ ଜୀବନ ସ୍ଥିତିର ଉପସ୍ଥାପନା କରାଯାଇଛି । ସ୍ୱାଧୀନତା ପରବର୍ତ୍ତୀ ପୃଷ୍ଠଭୂମି ଉପରେ ରଚିତ ଏହି ଗଳ୍ପଟିରେ କୃଷିଭିତ୍ତିକ ଗ୍ରାମ୍ୟଜୀବନର ଚିତ୍ର ପ୍ରଦତ୍ତ । ବିଶେଷତଃ ଗ୍ରାମ୍ୟକୈନ୍ଦ୍ରିକ ଜୀବନଧାରାରେ ସାମାଜିକ ଜୀବନାଚ୍ଛର ଭିତରେ ବ୍ୟକ୍ତିଜୀବନଟି କିପରି ଉପେକ୍ଷିତ ହୋଇପାରେ ତାହା ଚନ୍ଦ୍ରାର ଜୀବନ ଚିତ୍ର ଭିତରେ ଗାଳ୍ପିକ ପ୍ରଦର୍ଶନ କରିଛନ୍ତି । ଦରିଦ୍ର ପରିବାରରେ ଜନ୍ମିତ ଚନ୍ଦ୍ରା ଦିଆନପୁରର ଅନାମ ତିହାଡ଼ୀକୁ ବିବାହ କରେ । ବ୍ରାହ୍ମଣଘରର କୁଳବଧୂ ଚନ୍ଦ୍ରା ଦୁର୍ଭାଗ୍ୟକ୍ରମେ ନିଜର ଶାଶୂଘରର ସମସ୍ତଙ୍କୁ ହରାଇ ଏକାକିନୀ ହୁଏ ଓ ଏଇ ଅଭାବନୀୟ ପରିସ୍ଥିତିରେ ସେଇ ଘରର ହଳିଆ ହରିଆ ବିଧବା ଚନ୍ଦ୍ରାକୁ ସହାୟତା ଦିଏ । ହରିଆ ସହିତ ଚନ୍ଦ୍ରାର ଦେହ ଓ ମନର ସଂପର୍କ ଯୋଡ଼ିହୁଏ । ଗର୍ଭବତୀ ଚନ୍ଦ୍ରାକୁ ସମାଜପତିମାନେ ତା'ର ଗୃହରୁ ବହିଷ୍କାର କରନ୍ତି । ଚନ୍ଦ୍ରା ଶେଷରେ ହରିଜନ ହଳିଆ ହରିଆର ଗୃହରେ ନିଜର ସନ୍ତାନମାନଙ୍କ ସହିତ ଅବଶିଷ୍ଟ ଦିନ ବିତାଏ । ଗଳ୍ପରେ ଗାଳ୍ପିକ କେତେକ ଗତାନୁଗତିକ ପ୍ରଶ୍ନ ଉତ୍ଥାପନ କରନ୍ତି । ବ୍ୟକ୍ତି ଆପଣାର ସୁଖ-ସନ୍ତୋଷ-ସୁରକ୍ଷା ଓ ବିକାଶ ପାଇଁ ସମାଜ ଗଢ଼େ ସତ୍ୟ, ମାତ୍ର ଅନେକ ପରିସ୍ଥିତିରେ ସମାଜର କଠୋର ବିଧି ବ୍ୟବସ୍ଥା ବ୍ୟକ୍ତିଗତ ଜୀବନର କାମନା ବାସନା, ଜୀବନର ନାନ୍ଦନିକ ବିଚାରବୋଧର ଅନ୍ତରାୟ ପାଲଟେ । ଗଳ୍ପରେ ଚନ୍ଦ୍ରା ଭଳି ଅସାମାନ୍ୟ ସୁନ୍ଦରୀ ନାରୀଟି ବିଧବା ହେବା ପରେ ନିଜର ଦେହର କ୍ଷୁଧା ମେଣ୍ଟାଇବା ପାଇଁ ହରିଆ ସହିତ ସଂପର୍କ ସ୍ଥାପନ କରି ସାମାଜିକ ଜୀବନର ବିରୋଧାଚରଣ କରେ ସତ୍ୟ, ମାତ୍ର ବଞ୍ଚି ରହିବାର ଦାବି ନିକଟରେ, ବ୍ୟକ୍ତି ଆପଣାର ଦେହର କ୍ଷୁଧାକୁ ସ୍ୱୀକାର କରିବାର ସତ୍ୟ ନିକଟରେ ଏହା କେତେ଼ ଅଳିକ, ସହଜରେ ବୁଝାପଡ଼େ । ଏହା ବ୍ୟତୀତ ଗଳ୍ପଟିରେ ଚନ୍ଦ୍ରାର ଜୀବନଧାରଣ, ଅବୈଧ ସନ୍ତାନକୁ ଗର୍ଭଧାରଣ କରିବାର, ସମାଜ ଦ୍ୱାରା ବହିଷ୍କୃତ ହୋଇ ଅନ୍ୟତ୍ର ବଞ୍ଚି ରହିବାର ଦୃଢ଼ତା ଚରିତ୍ରଟିକୁ ଏକ ବ୍ୟତିକ୍ରମ ଚରିତ୍ରରେ ରୂପାନ୍ତରିତ କରିଛି ।

ବିବରଣାତ୍ମକ ଗଳ୍ପ 'ସ୍ମୃତିରେ ସ୍ମୃତିରେ' ଜଣେ ସୁନ୍ଦରୀ ବିବାହିତା ତରୁଣୀର କାରୁଣ୍ୟମୟ ଜୀବନ ଓ ଶୋଚନୀୟ ମୃତ୍ୟୁର ଚିତ୍ର ପ୍ରଦର୍ଶିତ ହୋଇଛି । ମୀରା ନାମକ ସୁନ୍ଦରୀ ତରୁଣୀଟି ଅନୁପ ଛୋଟରାୟ ସହିତ ନିଜର ଗ୍ରାମ ଓ ପରିବାର ସହିତ ସଂପର୍କ ଛିନ

କରି ସହରକୁ ଚାଲିଆସି ଏକ କଲୋନୀରେ ଅବସ୍ଥାନ କରେ । ଏଠାରେ ମୀରା ପ୍ରତି ହିଁ ଅନୁପଙ୍କ ଅତ୍ୟାଚାର ଆରମ୍ଭ ହୁଏ । ମୀରା ପରି ଜଣେ ସୁନ୍ଦରୀ, ସୁଶୀଳା ଓ ଭଦ୍ର ତରୁଣୀ ପ୍ରତି ସ୍ୱାମୀ ଅନୁପଙ୍କର ନିୟମିତ ଅତ୍ୟାଚାର କଲୋନୀ ବାସୀଙ୍କୁ ଅତିଷ୍ଠ କରେ । ଅନ୍ୟମାନେ ଏ କଥାର ପ୍ରତିବାଦ କରନ୍ତି ମାତ୍ର ଘଟଣାର ବାରମ୍ବାର ପୁନରାବୃତ୍ତି ଘଟେ । ଗାଳ୍ପିକ ମୀରା ପ୍ରତି ହେଉଥିବା ଅତ୍ୟାଚାରରେ ବିଚଳିତ ଓ ମର୍ମାହତ ହେଲେ ମଧ୍ୟ ସାହାଯ୍ୟ କରିପାରନ୍ତି ନାହିଁ । ଗଳ୍ପଭାଷାରେ - "ସତେ ଯେପରି ଦେବୀ ପ୍ରତିମାଟିଏ ମର୍ତ୍ତ୍ୟକୁ ଅବତରଣ କରି ଆସିଥିଲା କେଉଁ ଅଭିଶାପର ଦୁର୍ଯ୍ୟୋଗକୁ ଭେଟିବା ପାଇଁ ।" ତେବେ ଅନୁପଙ୍କର ମୀରା ପ୍ରତି ଶାରୀରିକ ନିର୍ଯ୍ୟାତନା ଶେଷ ସୀମାରେ ପହଞ୍ଚେ । ଏକ ଅଭାବନୀୟ ଘଟଣା କ୍ରମରେ ମୀରାକୁ ଦରାପୋଡ଼ା ଅବସ୍ଥାରେ ଉଦ୍ଧାର କରାଯାଏ । କିନ୍ତୁ ଏକ ସୁନ୍ଦର ଜୀବନ ପାଇଁ ଲଢ଼େଇ କରୁ କରୁ ସୁନ୍ଦରୀ ମୀରା ସେଇ ଅଧାପୋଡ଼ା ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କରେ । ଅନୁପ ପୋଲିସ୍ ଦ୍ୱାରା ଗିରଫ ହୁଏ । କଲୋନୀବାସୀ ମୀରାର ଶବକୁ ମିଳିତ ଭାବରେ ଏକ ଅଭାବିତ ଶୋକାକୁଳ ପରିବେଶରେ ସତ୍କାର କରନ୍ତି । ମୀରାର ନିଷ୍ଠୁର ସ୍ୱାମୀର ଅତ୍ୟାଚାର, ମୀରା ପରି ଜଣେ କୋମଳାଙ୍ଗୀ ଓ ସୁନ୍ଦରୀ ନାରୀର କରୁଣ ମୃତ୍ୟୁ ଗାଳ୍ପିକଙ୍କୁ ଅଧିକ ଭାବାଚ୍ଛନ୍ନ କରେ । ମୀରାର ଜୁଇ ପାଖରେ ଦଣ୍ଡାୟମାନ ଗାଳ୍ପିକ ମୀରାକୁ ସଶ୍ରଦ୍ଧ ଶ୍ରଦ୍ଧାଞ୍ଜଳି ଦେଇ କୁହନ୍ତି- "ଅଭିଶପ୍ତ କିନ୍ନରୀ, ତୁମର ସ୍ଥାନ ଏ ଅପବିତ୍ର ମର୍ତ୍ତ୍ୟରେ ନୁହେଁ । ତୁମେ ସ୍ୱର୍ଗର କନ୍ୟା- ସ୍ୱର୍ଗକୁ ହିଁ ଫେରିଯାଅ ।" ତେବେ ସମୁଦାୟ ଗଳ୍ପଟିରେ ଜଣେ ନୃଶଂସ ପୁରୁଷର କ୍ରୀଡ଼ନକ ପାଲଟିଥିବା ଜଣେ ସୁନ୍ଦରୀ ତରୁଣୀର କରୁଣ ଜୀବନ-ଗାଥା ସ୍ଥାନ ପାଇଛି । ପୁରୁଷର ପଶୁପ୍ରବୃତ୍ତି ନିକଟରେ ନାରୀର କୋମଳତା ଓ ସୁନ୍ଦରପଣ ମୂଲ୍ୟହୀନ ହୋଇପଡ଼ିଛି । ଆମର ପରିକଳ୍ପିତ ଧରା - ସ୍ୱର୍ଗରେ ଭୂଲୁଣ୍ଠିତ ହୋଇଛି ମଣିଷର ଅମୃତ ସୃଷ୍ଟି ଓ ସୁକୁମାରପଣ ।

ସଂକଳନର ଶୀର୍ଷକ ଗଳ୍ପ 'ଯେ ନଦୀ ମରୁପଥ'ରେ ସୁକେଶୀ ନାମ୍ନୀ ତରୁଣୀର ତିକ୍ତ ଓ ସଂଘର୍ଷମୟ ଜୀବନର ଇତିହାସ ସ୍ଥାନିତ । ତିନିବର୍ଷରେ ପିତା ଓ ନଅ ବର୍ଷରେ ମାତାଙ୍କୁ ହରାଇ ସୁକେଶୀ ନିଜର ଭିଣୋଇ ଓ ଭଉଣୀର ଆଶ୍ରିତ ହେଲେ ହେଁ ଯୌବନପ୍ରାପ୍ତି ପରେ ଭିଣୋଇ ବଳିଦତ୍ତର କାମବାସନାର ଶିକାର ହୁଏ । ପରେ ବନବିହାରୀ ନାମକ ଯୁବକ ସହିତ ବିବାହର ପ୍ରତିଶ୍ରୁତି ଦିଅନ୍ତି ଭିଣୋଇ ବଳୀଦତ୍ତ କିନ୍ତୁ ସୁକେଶୀ ଅନ୍ତଃସତ୍ତ୍ୱା ଥିବା ସମୟରେ ବନବିହାରୀ ନାମକ ଅନ୍ୟତ୍ର ବିବାହ କରନ୍ତି । ସୁକେଶୀ ଉପାୟଶୂନ୍ୟ ହୋଇ ନିଜର ଭଉଣୀ ଓ ଭିଣୋଇକୁ ତ୍ୟାଗ କରି ନିଜ ଗାଁକୁ ନୂତନ ଜୀବନ ସନ୍ଧାନରେ ଫେରିଯାଏ । ସବୁକାଳରେ ନାରୀକୁ ପାରିବାରିକ ଜୀବନରେ ସମ୍ମାନ ଓ ସୁରକ୍ଷା ମିଳି ନାହିଁ କିମ୍ବା ସମାଜ ବ୍ୟବସ୍ଥାରେ ନାରୀପ୍ରତି ପୁରୁଷ ସମାନ ନ୍ୟାୟ ବିଚାର କରିନାହିଁ । ଅଭାବିତ ଭାଗ୍ୟ, ଶୋଚନୀୟ ଜୀବନ ନେଇ ସେ

କେବେକେବେ ବଞ୍ଚି ରହିବା ପାଇଁ ଲହୁଲୁହାଣ ହୋଇ ସଂଗ୍ରାମ କରିଛି ତ କେଉଁଠି ହାରିଯାଇ ମୃତ୍ୟୁର ପଥକୁ ବାଛି ନେଇଛି ।

'ତିନୋଟି ହତ୍ୟାର କାହାଣୀ' ଗଳ୍ପଟିରେ ବାନାମ୍ବର ତିହାଡ଼ୀ ନିଜର ଚରିତ୍ରହୀନା ପତ୍ନୀ ଓ ପୁତ୍ର କନ୍ୟାଙ୍କୁ ହତ୍ୟା କରିବାର ଏକ କରୁଣ କାହାଣୀ ଲିପିବଦ୍ଧ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଗଳ୍ପଟି ବିଶେଷ ଗୁରୁତ୍ୱପୂର୍ଣ୍ଣ । ବାନାମ୍ବର ତିହାଡ଼ୀଙ୍କର ମନର ସ୍ଥିତି ଓ ସମକାଳର ପରିସ୍ଥିତି କିପରି ତିନି ତିନୋଟି ହତ୍ୟା ପାଇଁ ପରିବେଶ ସୃଷ୍ଟି କରିଛି ଗାଳ୍ପିକ ଦର୍ଶାଇଛନ୍ତି । କ୍ରୋଧର ବଶବର୍ତ୍ତୀ ଜଟିଳ ମାନସିକ ସ୍ଥିତିରେ ମଣିଷ ଆପଣାର ପତ୍ନୀ ଓ ସନ୍ତାନମାନଙ୍କୁ ନିର୍ବିକାର ଚିତ୍ତରେ ହତ୍ୟା କରିପାରେ ବୋଲି ସୂଚୀତ ହୋଇଛି । ସେହିପରି 'ମାଙ୍କଡ଼ ଉପାଖ୍ୟାନ' ଅନ୍ୟତମ ସଫଳ ମନସ୍ତାତ୍ତ୍ୱିକ ଗଳ୍ପ । ଗଳ୍ପରେ ବିନ କକାଙ୍କ ଅଶୋଭନୀୟ ଆଚରଣ ପଶ୍ଚାତରେ ମଣିଷକୁ ମାଙ୍କଡ଼ର ବଂଶଧର ସାଥୀରେ ଯୋଡ଼ିଦେବା ଯଥାର୍ଥ । ତେବେ ମଣିଷର ପାଶବିକ ଆଚରଣ ମଣିଷକୁ ମାଙ୍କଡ଼ କରେ ସତ; ମାତ୍ର ମାଙ୍କଡ଼ରୁ ମଣିଷ ହେବାର ସାଧନା ହିଁ ଯଥାର୍ଥରେ ମାନବିକ ସାଧନା । ଆଧୁନିକ ଦର୍ଶନର ସମସ୍ତ ଦ୍ୱାହି ସତ୍ତ୍ୱେ ଗଳ୍ପଟି ଆଧୁନିକ ମଣିଷର କୁତ୍ସିତ ବିଗ୍ରହ ଓ ଜୀବନବୋଧର ପରିଚୟ ଦିଏ ।

'ଶ୍ୱାନ ଉପାଖ୍ୟାନ' ଓ 'ପୁନଶ୍ଚ ଶ୍ୱାନ ଉପାଖ୍ୟାନ' ଗଳ୍ପ ଦୁଇଟି ଗୋଟିଏ ଗଳ୍ପର ଦୁଇଟି ପର୍ଯ୍ୟାୟ । ମନୁଷ୍ୟେତର ପ୍ରାଣୀକୁ ନେଇ ରଚିତ ହୋଇଛି ଅନ୍ୟତମ ଗଳ୍ପ 'କୁଆ ବସାରେ କୋଇଲି' । ଗଳ୍ପ ତିନୋଟିରେ ପଶୁପକ୍ଷୀ ଜଗତର ବଂଶାନୁଗମ ଓ ପ୍ରବୃତ୍ତିର ଚିତ୍ର ପରିବେଶିତ ହୋଇଛି । ଗାଳ୍ପିକଙ୍କର ଜୀବମାନଙ୍କୁ ନେଇ ଗଭୀର ପର୍ଯ୍ୟବେକ୍ଷଣ ଓ ଅନୁଶୀଳନ ଗଳ୍ପ ତିନୋଟିକୁ ସାର୍ଥକ କରିପାରିଛି । 'ହାତୀଚଢ଼ା' ଗଳ୍ପଟିକୁ ଗାଳ୍ପିକ ନିତ୍ୟାନନ୍ଦ ଶତପଥୀଙ୍କ ଏକମାତ୍ର ହାସ୍ୟରସାତ୍ମକ ଗଳ୍ପ ଭାବରେ ଗ୍ରହଣ କରାଯାଇପାରେ । ଗଳ୍ପରେ ଅଭିନବ ବାବୁଙ୍କ ହାତୀକୁ ନେଇ କୌତୁହଳୀ ହେବା, ପିଲାମାନଙ୍କୁ ହାତୀ ଉପରେ ବସିବା ପାଇଁ ଉତ୍ସାହିତ କରି ଓ ନିଜର ପରିବାରର ସଦସ୍ୟଙ୍କ ତିରସ୍କାରର ଶିକାର ହେବା ବେଶ୍ ହାସ୍ୟ ଉଦ୍ଦୀପକ ଶୈଳୀରେ ବର୍ଣ୍ଣିତ ।

କଥାକାର ନିତ୍ୟାନନ୍ଦ ଶତପଥୀ ତାଙ୍କ ରଚିତ ଗଳ୍ପଗୁଡ଼ିକରେ ସାଂପ୍ରତିକ କାଳର ନାରୀ ପୁରୁଷର ମାନସିକତା, ଦାମ୍ପତ୍ୟ ଜୀବନର ବିଫଳତା, ନାରୀ ଜୀବନର ଅସହାୟତା ଓ ରାଜନୀତିର ପଶାଖେଳରେ ନିର୍ଯ୍ୟାତିତ ମଣିଷର ବାସ୍ତବ ଚିତ୍ର ଯେପରି ବିଶ୍ୱାସନୀୟ ରୀତିରେ ବର୍ଣ୍ଣନା କରିଛନ୍ତି ସେହିପରି ମାନବେତର ଜୀବସତ୍ତାର ଜୀବନକ୍ରମ ଓ ଯନ୍ତ୍ରଣାପ୍ରତି ମଧ୍ୟ ସମ୍ବେଦନଶୀଳ ହୋଇଛନ୍ତି । ଗାଳ୍ପିକ ଶତପଥୀଙ୍କର ଜୀବନ ଓ ଜଗତ ପ୍ରତି ଗଭୀର ଓ ପ୍ରସାରିତ ଦୃଷ୍ଟିକୋଣର ପରିଚୟ ତାଙ୍କ ଗଳ୍ପଗୁଡ଼ିକର ବିଶେଷତ୍ୱ ।

■ *ଅଭୀପ୍ସା, ପ୍ଲଟ୍‌ନଂ. ୧୦୨, ଶହୀଦନଗର, ଭୁବନେଶ୍ୱର-୭*
*ମୋ: ୯୪୩୭୨୨୭୮୨୦*

# ପ୍ରେମ, ପ୍ରତିବାଦ ଓ ଜୀବନର ଅକପଟ ଇସ୍ତାହାର
## କବି ନିତ୍ୟାନନ୍ଦ ଶତପଥୀଙ୍କ କବିତା

♦ ଡକ୍ଟର ଅପର୍ଣ୍ଣା ମହାନ୍ତି

"ଯେଉଁମାନେ ନିଜ କୁହାଟରେ / ଉଛୁଳେଇ ଦେଇ ପାରନ୍ତି ପର୍ବ / ଗାଇ ବୁଲନ୍ତି କୁତ୍ସା ଅପର୍ଯ୍ୟାପ୍ତ / ଓଜନ କରନ୍ତି ନିଜର ମାନ ଅପମାନ ମୁଦ୍ରାରେ, ପଦବୀରେ... / ବୁଝନ୍ତି ନାହିଁ ପ୍ରେମର ସଂଜ୍ଞା ବି ହୋଇପାରେ / ବରବାଦ୍ ହୋଇଯିବାର ଖିଆଲ୍ / ନିଜକୁ ଏକାକୀ କରିଦେବାର ପୁରୁଷାକାର / ଶୂନ୍ୟ ରମଣ ଓ ଶୂନ୍ୟ ସଂଘର।"

(ପ୍ରେମର ସଂଜ୍ଞା - ସବା ସାନପୁଅ ପ୍ରେମିକା, ପୃ-୨୪)

କବିତାରେ ଏହି ବକ୍ତବ୍ୟଟି ହିଁ କବି ନିତ୍ୟାନନ୍ଦ ଶତପଥୀଙ୍କର ପ୍ରେମ ଓ ଜୀବନପ୍ରତି ଥିବା ଅକପଟ ଦୃଷ୍ଟିକୋଣ ସଂପର୍କରେ ମୋତେ ସଚେତନ ହେବାକୁ ବାଧ୍ୟ କରିଥିଲା। ପ୍ରଫେସର ଡଃ ନିତ୍ୟାନନ୍ଦ ଶତପଥୀ (ମୋର ସମ୍ମାନନୀୟ ଭାଇନା)ଙ୍କୁ କବି ଦୃଷ୍ଟିରେ ମୁଁ କେବେ ଦେଖି ନଥିଲି। ସବୁବେଳେ ଅପ୍ରିୟ ସତ୍ୟ କହୁଥିବା, କ୍ରୋଧରେ ଦୁର୍ବାସା ସାଜୁଥିବା, ଛାତ୍ରଛାତ୍ରୀଙ୍କ ମେଳରେ ଆଧୁନିକ କବିତାର କଠୋର, ନିରପେକ୍ଷ ସମାଲୋଚକ ବୋଲାଉଥିବା ମଣିଷଟିର କବିପଣ ପ୍ରତି ଧ୍ୟାନଦେବାକୁ କିଏ ବା କାହିଁକି ଜରୁରୀ ମନେକରିବ? ପୁଣି ଯେତେବେଳେ ଘରେ ସରସ୍ୱତୀଙ୍କ ବରପୁତ୍ରୀ କବି ପ୍ରତିଭା ଶତପଥୀ (ମୋ ନାନୀ) ଗୃହଲକ୍ଷ୍ମୀ, ଶଢର ଠାକୁରାଣୀ ଭାବରେ ସ୍ୱୟଂ ବିରଜିତା। ତେଣୁ ତାଙ୍କ ପରିବାରର ଜଣେ ଆଦରଣୀୟା ସାନଭଉଣୀ ଭାବରେ ନାନୀଙ୍କ ସହ କବିତା ଆଲୋଚନା କରିବା ଓ ନାନୀଙ୍କ ପକ୍ଷ ନେଇ ଭାଇନାଙ୍କ ସହ ଯୁକ୍ତିତର୍କ କରିବା ଥିଲା ମୋର କାମ। ଏପରିକି ପିଏଚ୍‌ଡି ଗବେଷଣା ବେଳେ 'ତୋ ଦେଇ ପାଠ ହବନି, ମୋର ଗୋଟାଏ ଜାଗା ମାଡ଼ିବସିଛୁ' କହି ଗାଳିଦେଲାରୁ ମୁଁ ନାନୀଙ୍କୁ ଦିଗ୍‌ଦର୍ଶିକା ଭାବେ ବଦଳାଇ ମୋର ଗବେଷଣା ନିବନ୍ଧ ପ୍ରସ୍ତୁତି କରିଥିଲି। କିନ୍ତୁ ଭାଇନାଙ୍କର ଶିଶୁ ପରି ସରଳ ମନଟି ସେଥିରେ କୌଣସି ଗ୍ଲାନି ନ ରଖି, ଦିନ ଦିନ, ରାତି ରାତି କେନ୍ଦ୍ରାପଡ଼ାରେ ମୋର ଘରେ ବସି ସେହି ନିବନ୍ଧଟି ଅନୁଶୀଳନ ଓ ସଂଶୋଧନ କରି ପ୍ରସ୍ତୁତି କରିଦେଇଥିଲେ। ମୋର ଦୁର୍ଭାଗ୍ୟ, ସେତେବେଳେ ବି ତାଙ୍କର ମୌଳିକ କବି-ପଣଟି ମୋ ଚେତନାରେ ଧରା ଦେଇନଥିଲା। ସମସ୍ତଙ୍କ ପରି ମୁଁ ମଧ୍ୟ ତାଙ୍କର ଆଲୋଚକ/ସମାଲୋଚକ ସତ୍ତାଟି ପ୍ରତି ଅଧିକ ଉନ୍ମୁଖ ଥିଲି।

କବିଠାରୁ ଗଭୀରତର ଆବେଗ ସହିତ ପ୍ରଜ୍ଞାର ନିରପେକ୍ଷ ସମନ୍ୱୟ ଘଟିଲେ ହିଁ 'କବିତା'ର ଯଥାର୍ଥ ମୂଲ୍ୟାୟନ କରିହୁଏ - ଆଧୁନିକ ଓଡ଼ିଆ କବିତାର ଆଲୋଚନା

ସମାଲୋଚ଼ନା କ୍ଷେତ୍ରରେ ପ୍ରଫେସର ଡଃ ନିତ୍ୟାନନ୍ଦ ଶତପଥୀ ତାହାହିଁ ସାବ୍ୟସ୍ତ କରିବାକୁ ଚାହୁଁଥିଲେ ଓ ନିରବଚ୍ଛିନ୍ନ ଭାବେ ତାହାହିଁ କରୁଥିଲେ । ଆଧୁନିକ ଓଡ଼ିଆ କବିତାକୁ ପାଠକଙ୍କ ପାଖରେ ପରିଚିତ କରାଇବାରେ ତାଙ୍କର 'ସବୁଜରୁ ସାଂପ୍ରତିକ' ଓ 'ସତୁରୀରୁ ସହସ୍ରାବ୍ଦୀ' ପରି ବିପୁଳାୟତନ ଗ୍ରନ୍ଥ ଦୁଇଟିର ବିକଳ୍ପ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।

କିନ୍ତୁ ଆଧୁନିକ କବିତାର ଏହି ରସିକ ଓ ପ୍ରାଜ୍ଞ ଆଲୋଚ଼କଙ୍କ ସାରସ୍ୱତ ଜୀବନଯାତ୍ରା କବିତାରୁ ହିଁ ଆରମ୍ଭ ହୋଇଥିଲା । ୧୯୬୨ ମସିହାରେ ପତ୍ନୀ ପ୍ରତିଭା ଶତପଥୀଙ୍କ ସହିତ ମିଶି ପ୍ରକାଶିତ ହୋଇଥିବା କବିତାର ଯୁଗଳବନ୍ଦୀ 'ଆମ କବିତା' ସଂକଳନରେ ପ୍ରକାଶିତ କବିତା ସବୁ ତାଙ୍କର ଆଦ୍ୟ ତାରୁଣ୍ୟର ପ୍ରଣୟାବେଗର ରୋମାଣ୍ଟିକ୍ ଇସ୍ତାହାର ଥିଲା । ସେଥିରେ ସ୍ଥାନିତ ସ୍ୱପ୍ନ, ଅଗ୍ନିଶିଖା, ନିରାଜନା, ପ୍ରତିଫଳନ, ହେ ତରୁଣୀ ଆଦି କବିତାଗୁଡ଼ିକ ରୋମାଣ୍ଟିକ୍ ଓ ବିଷାଦଗ୍ରସ୍ତ ପ୍ରେମର ଚିତ୍ର ଉପସ୍ଥାପନ କରେ । ଯାହାକୁ ସେ ଜୀବନର ସାଥୀ ଭାବେ କଳ୍ପନା କରନ୍ତି ତା'ରି ପାଇଁ ଏ କବିତାରେ କପଟତାର ଶବ୍ଦଟିଏବି ଖୋଜିଲେ ମିଳେ ନାହିଁ । କିଂତୁ ପ୍ରେମରେ ସେ ଏତେ ବିଷାଦଗ୍ରସ୍ତ କାହିଁକି ? ସମ୍ଭବତଃ ତାହାହିଁ ହୋଇପାରେ ଏକ ମହତ୍ୱପୂର୍ଣ୍ଣ ପ୍ରେମର ଭ୍ରାନ୍ତି ଓ ଭାବନା । ସେଥିରେ ଯେତିକି ଥାଏ ପ୍ରେମ ପାଇଁ ସଂକଳ୍ପ ସେତିକି ଥାଏ ପ୍ରେମ ସଫଳ ନ ହେବାର ଆଶଙ୍କା । ତେଣୁ କବି ଶତପଥୀ ଉଚ୍ଚାରଣ କରନ୍ତି-

ଯାହା କିଛି ଦୂରଲଭ୍ୟ / ତାହାପାଇଁ ଏତେ ଉପଚାର
କେଉଁ ଦିନ ଚାଲିଯିବ / ଅକସ୍ମାତେ ନୀରବ, ନିଷ୍ଠୁର
କହିବନି ପଦଟିଏ କଥା
ସମୟର ସାୟାହ୍ନରେ ଗ୍ରାସେ ଯଥା
ଅନ୍ଧକାର ବ୍ୟାଥା ।          (ହେ ତରୁଣୀ)

ସେ କ'ଣ ଭବିଷ୍ୟଦ୍ରଷ୍ଟା ପରି ଜାଣିଥିଲେ ତାଙ୍କ ଜୀବନର ସାୟାହ୍ନରେ ନିଷ୍ଠୁର ପ୍ରେମିକା ନୀରବରେ ତାଙ୍କୁ ଏକାକୀ ଛାଡ଼ି ଦେଇ ଚାଲିଯିବ ? ତେଣୁ ପ୍ରାକ୍-ବିବାହ କାଳରେ କୌଣସି କାରଣରୁ ଏପରି ପଙ୍‌କ୍ତି ତାଙ୍କ କବିତାରେ ଆସିଯାଇଥିଲା । ହୁଏତ ହୋଇଥିବ ।

କବି ହରିହର ମିଶ୍ର, କବି ସୌଭାଗ୍ୟ ମିଶ୍ରଙ୍କ ସହିତ ସେ ବିଷୁବ ଉତ୍ସବ ମଣ୍ଡପରେ କବିତା ପାଇଁ ୧୯୬୨( ?)ରେ ପୁରସ୍କାର ପାଇଥିଲେ । ଅଥଚ୍ ଅନ୍ୟ ଦୁଇ କବିବଂଧୁ ନିରବଚ୍ଛିନ୍ନ ଭାବରେ ଆଜୀବନ କବିତା ଲେଖୁଥିଲେ ବି ପ୍ରଫେସର ଶତପଥୀ କାହିଁକି କବିତାଠାରୁ ଦୂରେଇଗଲେ ତାହା ତାତ୍ପର୍ଯ୍ୟର ବିଷୟ । ମୁଁ ତାଙ୍କୁ ସେ କଥା ଥରେ ପଚାରିଥିଲି । ସେ ହସି ହସି କହିଥିଲେ ଗୋଟିଏ ଘରେ ଦୁଇଜଣ ସ୍ୱପ୍ନାବିଷ୍ଟ ହୋଇଗଲେ ହାଣ୍ଡି ମାଙ୍କଡ଼ଚିତ୍ ମାରିବା ସାର ହେବ । ତା'ପରେ କବିତା ଲେଖି ମୁଁ କଣ କେବେ ତୋ ନାନୀକୁ ଅତିକ୍ରମ

କରିପାରିଥାନ୍ତି ? ତେଣୁ ବୋଧହୁଏ ସମାଲୋଚ଼ନାକୁ ମୋର ସାହିତ୍ୟ-ସରଣୀ ଭାବେ ମାନିନେଲି । ପୁଣି କହିଲେ ବିଶ୍ୱ ବିଦ୍ୟାଳୟର ଅଧ୍ୟାପକଟିଏ ପାଇଁ ଏତେ ଆହ୍ୱାନ (challange) ଥାଏ ଯେ ସେଠି କବିତାକୁ ସ୍ୱୀକୃତି ମିଳେନି, ମିଳେ କେବଳ ପ୍ରବନ୍ଧକୁ । ମୁଁ ତେଣୁ କବିତା ନ ଲେଖି କବିତାକୁ ଚିହ୍ନେଇବାକୁ ଲାଗିପଡ଼ିଥିଲି ଜୀବନକାଳ ସାରା । ସେ ଏମ୍.ଏ. (ଓଡ଼ିଆ) ଶେଷ ବର୍ଷର ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲା ବେଳେ 'ଆମ କବିତା'ର ମୁଖବନ୍ଧ ଲେଖିଛନ୍ତି । ତାକୁ ପଢ଼ିଲେ ଯେ କୌଣସି ପାଠକ ବୁଝିପାରିବ ଯେ ଏ ତରୁଣ କବି ଭବିଷ୍ୟତରେ ଆଧୁନିକ ଓଡ଼ିଆ କବିତାର ଜଣେ ଚିହ୍ନରା ଗ୍ରାହକ ଭାବେ ଆତ୍ମପ୍ରକାଶ କରିବେ । ସମ୍ଭବତଃ ତାହା ବ୍ୟର୍ଥ ହୋଇନାହିଁ । ତାଙ୍କର ହଜାର ହଜାର ଛାତ୍ରଛାତ୍ରୀ ମୁଗ୍ଧ ପାଠକବର୍ଗ, ଗବେଷକ ଓ ଅଧ୍ୟାପକମାନେ କେବେହେଲେ 'ସବୁଜରୁ ସାଂପ୍ରତିକ'କୁ ଉପେକ୍ଷା କରି ପାରିବେ ନାହିଁ । ଏହାହିଁ ତାଙ୍କ ସାହିତ୍ୟେ ସାଧନାର ବିପୁଳ ପରିଚ଼ୟ । କବିତା ନ ଲେଖିବି ସେ ଯେପରି ଅନେକ କବିଙ୍କୁ ତାଙ୍କ ନିରପେକ୍ଷ ସମାଲୋଚ଼ନାରେ ଚିହ୍ନାଇ ପାରିଛନ୍ତି ତାହା ଏ ଶତାବ୍ଦୀର ଓଡ଼ିଆ ସାହିତ୍ୟ କେବେହେଲେ ଭୁଲିପାରିବ ନାହିଁ । ସେ ଯେପରି ନିଜେ ଇତିହାସ ପାଲଟି ଯାଇଛନ୍ତି ଯାହା ଆଗରେ ପୁରସ୍କାର ଅସାର ବିବେଚିତ ହେବାକୁ ବାଧ୍ୟ । ତଥାପି ଏହି ସବୁ କବିତାର କବି ଶ୍ରୀ ଶତପଥୀଙ୍କର ଆଦ୍ୟ ତାରୁଣ୍ୟର ରୋମାଣ୍ଟିକ୍ ଉଦ୍ଦାମତା ତଥା ହୃଦୟର ସତ୍ୟକଥନ ପ୍ରତି ଏକ ସମ୍ବେଦନଶୀଳ ପ୍ରତିବଦ୍ଧତାର ସ୍ୱରକୁ ମୁଖର କରିଥିଲା । କିନ୍ତୁ ଏହା ପରେ ପରେ ଏହି କବିଙ୍କର ସମସ୍ତ କାବ୍ୟ ପ୍ରବଣତା ଆଧୁନିକ ଓଡ଼ିଆ କବିତାକୁ ଆଲୋଚ଼କୀୟ ଅନୁରାଗରେ ଉଦ୍‌ଭାସିତ କରିବାରେ ନିମଜ୍ଜିତ ହୋଇଗଲା । ମୋର ଯାହା ମନେହୁଏ ନିଜର ପ୍ରିୟତମା ପତ୍ନୀ ଓ ପ୍ରେମିକା କବି ପ୍ରତିଭା ଶତପଥୀଙ୍କର କବିତାର କାବ୍ୟିକ ସୌନ୍ଦର୍ଯ୍ୟକୁ ଓଡ଼ିଆ ସାହିତ୍ୟର ଛାତ୍ରଛାତ୍ରୀ ତଥା ପାଠକ ମହଲରେ ସାବ୍ୟସ୍ତ କରିବାକୁ ଏକ ଭାବନାତ୍ମକ ପ୍ରେରଣା ସତେ କି ତାଙ୍କୁ ଏପରି ଅଧ୍ୟବସାୟ ଭିତରକୁ ଆକର୍ଷିତ କରିନେଇଥିଲା ।

ସେତେବେଳେ ଆଧୁନିକ ଓଡ଼ିଆ କବିତା ଦୁର୍ବୋଧ୍ୟତା ଦୋଷରେ ଦୋଷୀ । ତାକୁ ଯଥାର୍ଥ ପରିଚିତି ଦେବାକୁ ହେଲେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଧାରାର ଗଭୀର ଅନୁଶୀଳନ ସହିତ କବିତା ପ୍ରତି କୋମଳ ସମ୍ବେଦନଶୀଳ ଅନ୍ତର୍ଦୃଷ୍ଟି ରହିବା ମଧ୍ୟ ଜରୁରୀ । ପ୍ରଫେସର ଡଃ ଶତପଥୀଙ୍କର ଦୁଃସାହସୀ ଅଧ୍ୟୟନ ପିପାସା ଏବଂ ଅଭିବ୍ୟକ୍ତି-ପ୍ରବଣତା ଏ କ୍ଷେତ୍ରରେ ପ୍ରଥମେ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲା । ତେବେ ତାଙ୍କ ଆଲୋଚ଼ନାର ଆକଳନ କରିବା ଏହି ଆଲେଖ୍ୟର ଲକ୍ଷ୍ୟ ନୁହେଁ । କବିତା ଆଲୋଚ଼ନାର ଅନ୍ତରାଳରେ ଯେଉଁ କବିହୃଦୟର ତୀକ୍ଷ୍ଣତାକୁ ସେ ବହୁକାଳ ଧରି ଧୂମାଚ୍ଛନ୍ନ ଅଗ୍ନିଗର୍ଭା ପରି ସାଇତି ରଖିଥିଲେ ତାହା କିପରି 'ସବାସାନ ପ୍ରେମିକା' ଶୀର୍ଷକ କାବ୍ୟଗ୍ରନ୍ଥରେ ଆଲୋକ/ଉତ୍ତାପ ବିକିରଣ

କରିଉଠିଛି ତାକୁ ହିଁ ମୁଗ୍ଧ ଅବଲୋକନର ପରିସରଭୁକ୍ତ କରିବା ହିଁ ହେଉଛି ଏହି ଆଲେଖ୍ୟର ଉଦ୍ଦେଶ୍ୟ ।

'ପ୍ରବାହ ପ୍ରକାଶନୀ' ଯାଜପୁର ଦ୍ୱାରା ପ୍ରକାଶିତ 'ସବାସାନ ପ୍ରେମିକା' କାବ୍ୟସଂକଳନ, ଶ୍ରୀଯୁକ୍ତ ଶତପଥୀଙ୍କର ଦ୍ୱିତୀୟ ପୂର୍ଣ୍ଣାଙ୍ଗ କବିତାଗ୍ରନ୍ଥ । ପ୍ରଚ୍ଛଦରେ ଏକ ଖଣ୍ଡିତ ହୃଦୟର ରଂଗ / ଆକୃତି ନେଇ ନିରୁଦ୍ଦିଷ୍ଟ ହୋଇଯିବାକୁ ଉଦ୍ୟତ ବେଲୁନଟି ଆଡ଼େ କଅଁଳ ହାତଟି ବଢ଼େଇ ଦେଇଛି ଦୁଇ/ତୁନି ବର୍ଷର ଅବୋଧ ଶିଶୁକନ୍ୟାଟିଏ । ଜୀବନର ଋଣଗ୍ରସ୍ତତାର କଥା କହୁଥିବା 'ତଗାବୀ ଚକଡ଼ା' ଠାରୁ ବିପର୍ଯ୍ୟସ୍ତ ସାମାଜିକ ମୂଲ୍ୟବୋଧ ପାଇଁ ବାହୁନୁଥିବା ଅନ୍ତରର କଥା 'ବେବିନା' ପର୍ଯ୍ୟନ୍ତ, ଏଥିରେ ସ୍ଥାନିତ ୩୬ଟି କବିତାରେ ପ୍ରେମ, ଆବେଗ, ଅନୁତାପ, ସାମାଜିକ ପ୍ରତିବଦ୍ଧତା, ବନ୍ଧୁପ୍ରେମ, ତଥା ଆଧିଭୌତିକ ଚେତନା ପରି ଅନେକ ଭାବ-ବିଭାବନର ଅକପଟ/ଅନାବୃତ ଅଭିବ୍ୟକ୍ତି ସ୍ପଷ୍ଟ । ଏକଦା କ୍ଷୁଦ୍ରଗଳ୍ପର ସଂଜ୍ଞା ଦେବାକୁ ଯାଇ ବିଶ୍ୱକବି ରବୀନ୍ଦ୍ରନାଥ କହିଥିଲେ- "ଛୋଟ ପ୍ରାନ୍ / ଛୋଟ କଥା / ଛୋଟ ଛୋଟ ଦୁଃଖବ୍ୟଥା / ନିତାନ୍ତ ଇ ସହଜ ସରଲ୍ / ସହସ୍ର ବିସ୍ମୃତିରାଶି / ପ୍ରତ୍ୟହ ଯେତେସେ ଭାସି / ତାରି ଦୁ ଋରିଟି ଅଶ୍ରୁଜଲ୍" କବି ଶ୍ରୀ ଶତପଥୀଙ୍କ 'ସବା ସାନ ପ୍ରେମିକା' ମଧ୍ୟ ସେହିପରି ଖୁବ୍ ସାନ ସାନ ମାନବୀୟ ଭାବପ୍ରବଣତାର ଅକପଟ ଇସ୍ତାହାର କହିଲେ ଭୁଲ୍ ହେବ ନାହିଁ ।

ଏହାର ପ୍ରତ୍ୟେକ କବିତା ନିହାତି ପାର୍ଥିବ ସୁଖ-ଦୁଃଖ, ବ୍ୟଥା-ଆନନ୍ଦ, ପ୍ରାପ୍ତି-ଅପ୍ରାପ୍ତିର ଏକ ନିରବଚ୍ଛିନ୍ନ ଗତିଶୀଳତା । ପାଠକମାନେ ପ୍ରଥମ ଶୀର୍ଷକ କବିତାଟିକୁ ପାଠକଲେ ହିଁ ଜାଣିପାରିବେ ଯେ ମଣିଷର ପ୍ରେମଭାବନା କେତେ ଗତିଶୀଳ । ଚଉଦ, ଚବିଶ ଓ ଋଳିଶିବର୍ଷର ପ୍ରେମିକାଙ୍କୁ ଅତିକ୍ରମ କରି ଦିନେ ପୁଣି ତାହା ଦୁଇବର୍ଷ ବି ପୂରି ନଥିବା ପ୍ରେମିକାଟିର ପ୍ରେମ ପାଖରେ ଆସି ପହଞ୍ଚିଯାଏ । ଏହା ପ୍ରାଚୀନ କାଳର ମୁନିଋଷିଙ୍କ ଜୀବନର ଗତିଶୀଳତାକୁ ନେଇ ଉଦ୍ଧୃତିଟିଏ ମନେପକେଇଦିଏ- "ପୁନରପି ଜନମମ୍ / ପୁନରପି ମରଣମ୍ / ପୁନରପି ଜନନୀ ଜଠରେ ଶୟନମ୍," ତେଣୁ 'ସବାସାନ ପ୍ରେମିକା'ଟି କବିଙ୍କ ଗଳାକୁ ଜଡ଼େଇଧରି ଅଭିଜ୍ଞା ନାରୀଟିଏ ପରି ଚୁମାଟିଏ ଦିଏ, ଯାହାକୁ ସେ ତାର ଦରୋଟି ତୁଣ୍ଡରେ 'ଉମ୍‌ମା' ବୋଲି କହେ । କୈଶୋର, ଯୌବନ ଓ ଉତ୍ତୀର୍ଣ୍ଣ ବୟସର ପ୍ରେମିକାମାନେ ଏହି ଅବୋଧ ଶିଶୁର ଭଲପାଇବା ଆଗରେ କୃତ୍ରିମ ଓ ଗୌଣ ଲାଗନ୍ତି । ଦେହଜ ଆକର୍ଷଣକୁ ଅତିକ୍ରମ କରିଯାଉଛି ଆତ୍ମିକ ଆନନ୍ଦମୟତା । କେଡ଼େ ସିଧା, ସରଳ ଏ କବିତାର ଭାଷା ଓ ଭାବ । କେଡ଼େ ପ୍ରତ୍ୟକ୍ଷ ଏହାର ସଂଚରଣଶୀଳତା - "ସେମାନେ କେହି ବି ନାହାନ୍ତି ସମୟକ୍ରମେ / ପରଲଗା ଚଢ଼େଇମାନେ ଉଡ଼ିଯାଇଛନ୍ତି / ନିଜ ନିଜ ସ୍ୱାର୍ଥ ଓ ସିଦ୍ଧିରେ / କେବଳ ତୁଇ ମାୟାର କୁହୁଡ଼ିରେ / ମତେ ଆଚ୍ଛନ୍ନ କରି ରଖିବୁ / ଦେଖ୍ ତୋର ଜେଜେ ତୋ ପାଇଁ / ପ୍ରତିଦିନ ମରୁଥିବାରୁ କିପରି ବଂଚିଉଠୁଛି ।"

ପ୍ରଫେସର ଶତପଥୀଙ୍କ ସହିତ ମୋର ସଂପର୍କ ବହୁଦିନର । କବି ପ୍ରତିଭା ଶତପଥୀଙ୍କ ପରିବାରରେ ଜଣେ ଅନ୍ତରଙ୍ଗ ସଦସ୍ୟ ଭାବରେ ଜୀବନର ବହୁ ସମୟ ବିତିଛି । ଭୁବନେଶ୍ୱର ଆସିଲେ ତାଙ୍କର ବାଣୀବିହାରର କ୍ୱାଟର୍ସ ହିଁ ଥିଲା ମୋ ଘର । ଶ୍ରୀ ଓ ଶ୍ରୀମତୀ ଶତପଥୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମୋର ଗବେଷଣା ଓ କବିତା ରଚନାର ବିକାଶ ଘଟିଛି । ସେତେବେଳୁଁ ଏହି ମଣିଷଟିକୁ ମୁଁ ବହୁ ବିରୋଧାଭାସର ଅଧିକାରୀ ଭାବରେ ଜାଣିଥିଲି । ସାରସ୍ୱତ ଆକଳନ କଲାବେଳେ ବ୍ୟକ୍ତିଗତ ଶତ୍ରୁ/ମିତ୍ରତାର ପ୍ରଶ୍ନ ସେ ଭୁଲିଯାନ୍ତି । ରଘୁନାଥ ଦାସ (ଜଟାୟୁ)ଙ୍କ ପରି ବିସ୍ମୃତ ହୋଇଯାଉଥିବା କାବ୍ୟପୁରୁଷଙ୍କୁ ଓଡ଼ିଆ ପାଠକଙ୍କ ଆଗରେ ଉପସ୍ଥାପିତ କରିବାର ନିଷ୍ଠା ମତେ ସତରେ ଚକିତ କରିଥିଲା । ଅପ୍ରିୟ ସତ୍ୟକୁ ସେ ଯେପରି ମୁହେଁ ମୁହେଁ କହି ଶତ୍ରୁ ସୃଷ୍ଟି କରିପାରନ୍ତି, ନିରପେକ୍ଷ ସାହିତ୍ୟ ସମାଲୋଚନା କରି ସେ ସେହିପରି ଶତ୍ରୁ/ମିତ୍ରଙ୍କୁ ଏକାକାର କରିଦେଇପାରନ୍ତି ।

ତାଙ୍କର ଏହି ମୌଳିକ ଗୁଣଟି ଯୋଗୁଁ ହିଁ ସେ ଜୀବନରେ ବହୁବାର ପ୍ରତାରିତ ହୋଇଛନ୍ତି । ଅବହେଳିତ ହୋଇଛି ତାଙ୍କର ସୃଜନସାଧନା । ଆଲୋଚ୍ୟ ସଂକଳନଟିରେ ସେ ଦ୍ୱିଧାହୀନ ଭାବେ ନିଜର ସମସ୍ତ ଗୁଣ/ଅବିଗୁଣକୁ ମନଖୋଲି କବିତାରେ ଢାଳି ଦେଇଛନ୍ତି ସତେ କି ! ତାଙ୍କର ଖଣ୍ଡିତ ଜୀବନୀ 'ପ୍ରେମ ଓ ପ୍ରତାରଣା' ପାଇଁ ତାଙ୍କ ସହିତ ମୋର ଯୋର୍ ମତପାର୍ଥକ୍ୟ ହୋଇଥିଲା । ସେ ହସି ହସି ମତେ କହିଥିଲେ- "ଯାହା ସତ୍ୟ ତାହା ଲେଖିଦେଇଛି । ଏଥିପାଇଁ ମୁଁ ନିନ୍ଦିତ ହେବାକୁ ରାଜି । ବନ୍ଦିତ ହେବାକୁ ରାଜି ।" ସେହି ସ୍ୱୀକାରୋକ୍ତି ତାଙ୍କ କବିତାରେ ଉଦ୍‌ଭାସିତ ହୋଇଉଠିଛି - "ପାପ କରିବାକୁ ବାରମ୍ବାର ନିଷେଧ ସତ୍ତ୍ୱେ । ମୁଁ ପାପକରେ / ପାପ ଏକ ସହଜ ଗୁଣିତକ / ମୋ ମନର ହରଣ ମିଶାଣ ଫର୍ଦ୍ଦରେ ।" (ପାପ)

ଅନେକ ସମୟରେ ସୃଜନଶୀଳତା ଓ ସାମାଜିକତାର ଭାବନାରେ ତାଳମେଳ ରହେନାହିଁ । ବରଂ ମୁଁ ମନେକରେ ପ୍ରତ୍ୟେକ ସତ୍‌ସ୍ରଷ୍ଟା ତଥାକଥିତ ସାମାଜିକ ନୀତିନିୟମର ବିରୋଧାଚରଣ କରେ । ନିତ୍ୟାନନ୍ଦ ଶତପଥୀଙ୍କ କବିସତ୍ତା ତାର ଏକ ଜ୍ୱଳନ୍ତ ଉଦାହରଣ । 'ବାର୍ଦ୍ଧକ୍ୟ ପ୍ରେମ' ଶୀର୍ଷକ କବିତାରେ ସେ କହନ୍ତି- "ପ୍ରେମ ପାଇଁ ବୟସ ବା ଶୁକ୍ଳକେଶ ନୁହେଁ ଅନ୍ତରାୟ / ମନ ଯଦି ଶୁଭ୍ର ଏକ ସୁନ୍ଦର ତଡ଼ାଗ / ନିଶ୍ଚୟ ସେଠାରେ ହେବେ ସ୍ୱପ୍ନପରି କେହି ପ୍ରତିଭାତ / ଚହଲା ପାଣିରେ ଭାସି ସ୍ୱପ୍ନଯିବ ପହଁରି ପହଁରି / ମନକୁ ରଖିଲେ ଖାଲି ଶୁଚିସ୍ନାତ / ସେ ଷୋଡ଼ଶୀ ପାଇଁ" ସେହିପରି 'ଅଭିଜ୍ଞାନ' ଶୀର୍ଷକ କବିତାରେ - "ପ୍ରେମ ପାଇଁ ନାଇଁ ନୀତି / ପ୍ରେମ ପାଇଁ ନାଇଁ ହେତୁବାଦ / ଯେ ମରମୁଁ ହଜିଗଲା ପ୍ରାଣଭରା / ପ୍ରୀତିର ସଂବାଦ / ସେ ଅନ୍ତର ବାହୁନିବ, ବାହୁନିବ / ଆତ୍ମା କଇଁ କଇଁ / ହଜିଲା ସ୍ମୃତିରେ ଝୁରି ବୁହାଇବ / ଅଶ୍ରୁର ସଂଯୋଗ" ପରି ଗଭୀର ରୋମାଣ୍ଟିକ୍ ଚେତନାର ଅବାରିତ ପ୍ରବାହ ସହ ନୂଆ ସଂପର୍କଗୁଡ଼ିକୁ ସେ ସାଦରେ ଗ୍ରହଣ କରିଛନ୍ତି । କେହି ଯଦ

ଜୀବନରୁ ଚାଲିଗଲା ତ କ'ଣ ହେଲା, ସବୁ ନିରାଶାର ଅଂଧାର ଭିତରେ ପୁଣି କେହି ନା କେହି ଭଲପାଇବାର ଦୀପାଳିଟିଏ ଜାଳିଦିଏ କ୍ଷଣିକ ପାଇଁ । ସେ ଦୁକାନାରୀ ହେଉପଛେ, କବି ତା' ପ୍ରତି ନିଜର କୃତଜ୍ଞତା ପ୍ରକାଶ କରନ୍ତି । ଏଇଠି ସ୍ମରଣକୁ ଆସନ୍ତି କବି ମାନସିଂ । ସେ ଲେଖିଥିଲେ "ନୟନୁଁ ଯାହାର ଲୋତକ ମୋ ପାଇଁ ବହିଲା / ମୋ ପାଇଁ ତ ସିଏ ପରମପୂଜ୍ୟ ମହିଳା ।" କବି ନିତ୍ୟାନନ୍ଦ କହନ୍ତି- "ମୋ ଭୀରୁତା, ମୋ ଜୀବନ / ପାପ ଓ ପ୍ରଣୟ / ସବୁରେ ନିଜର କରି ମୋତେ କଲ / ମୁଗ୍ଧ ମହନୀୟ ।"

ଏହି ସଂକଳନର 'ସୀମାନ୍ତ ଭାବନା' କବିତାଟିକୁ ସେ ମୋତେ ଉତ୍ସର୍ଗ କରିଛନ୍ତି । ଶତପଥୀ ଦମ୍ପତିଙ୍କର ମନାନ୍ତର, ମତାନ୍ତର ମଧ୍ୟରେ ମୁଁ ଥିଲି ଏକ ଅସହାୟ ସାକ୍ଷୀ । ବହୁ ସମୟରେ ମଝିରେ ରହି ଏପଟୁ ସେପଟୁ ଆଘାତ ପାଇଛି । ଉଭୟ ମୋତେ ଭୁଲ୍ ବୁଝିଛନ୍ତି ମଧ୍ୟ । କିନ୍ତୁ ଭାଇନା ହୃଦ୍‌ଘାତର ଶିକାର ହୋଇ ଦିଲ୍ଲୀ ଏମ୍‌ସ୍‌ରେ ଚିକିତ୍ସିତ ହେଉଥିଲାବେଳେ, ନିଜର ଏକଦା ପ୍ରେୟସୀ ଓ ପତ୍ନୀଙ୍କୁ ଚାରିଦିନ ପାଖରେ ପାଇ ଯେଉଁ ଭାବାନ୍ତର ଆସିଥିଲା, ତାରି କରୁଣ ସ୍ୱରଲିପି ହେଉଛି ଏଇ କବିତା । କାହିଁକି ଏ କବିତା ସେ ମତେ ଉତ୍ସର୍ଗ କଲେ ମୁଁ ଜାଣେନା । ଆହା, ମୁଁ ହେଲେ ଏ ସଂସାରଟିକୁ ଯୋଡ଼ି ରଖିବାରେ କିଛି ସଫଳ ଭୂମିକା ବହନ କରିପାରିଥାନ୍ତି ! ! ଏ କବିତାକୁ ସେଥିପାଇଁ ମୁଁ ଯେତେଥର ପଢ଼ିଛି, ଆଖିରେ ଲୁହ ଜକେଇ ଆସିଛି । ନିଜ ନିଜ ଜିଦ୍‌ରେ ଅଟଳ ତଥା ତର୍କର ପାହାଡ଼କୁ ଅତିକ୍ରମ କରିବାକୁ ଅସମର୍ଥ ଜଣେ ମଣିଷର ସାମୟିକ କୃତଜ୍ଞତାବୋଧ ବି କେଡ଼େ କରୁଣ... "ଏବେ ସଂଜ ପାଖାପାଖି / ଡଙ୍କମୋଡ଼ି ପଡ଼ିବାର ବେଳ / ମପାଚୁପା ସାନ୍ନିଧ୍ୟକୁ ଧନ୍ୟବାଦ / କୃତଜ୍ଞତା ଜଣାଉଛି ସେତିକି ସମ୍ବଳ ।" (ସୀମାନ୍ତ ଭାବନା)

ଜୀବନର ଘାତ-ପ୍ରତିଘାତ ଭିତରେ, ବ୍ୟଥା ଆନନ୍ଦ, ଆବେଗ, ପ୍ରଜ୍ଞା, କାମ, କ୍ରୋଧ ଆଦି ପ୍ରତ୍ୟେକ ପ୍ରବୃତ୍ତିକୁ ଭରପୂର ଭୋଗିଥିବା ଏହି କବିଜଣକ କିନ୍ତୁ ସ୍ୱାଭାବିକ୍ ଭାବରେ ଖୁବ୍ ବେପରବାୟ, ଖିଆଲି ମଣିଷ । ପ୍ରେମର ସଂଜ୍ଞା ନିର୍ଦ୍ଧାରଣ କରିବାକୁ ଯାଇ ସେ କହନ୍ତି- "ଯେଉଁମାନେ ନିଜ କୁହାଟରେ / ଉଚ୍ଛୁଳେଇ ଦେଇ ପାରନ୍ତି ପର୍ବତ / ଗାଇ ବୁଲନ୍ତି କୁହା ଅପର୍ଯ୍ୟାପ୍ତ / ଓଜନ କରନ୍ତି ନିଜର ମାନ ଅପମାନ / ମୁଦ୍ରାରେ ପଦବୀରେ / ବୁଝନ୍ତି ନାହିଁ ପ୍ରେମର ସଂଜ୍ଞା ବି ହୋଇପାରେ / ବରବାଦ୍ ହୋଇଯିବାର ଖିଆଲ୍ / ନିଜକୁ ଏକାକୀ କରିଦେବାର ପୁରୁଷକାର / ଶୂନ୍ୟ ରମଣ ଓ ଶୂନ୍ୟ ସଂଚର ।" (ପ୍ରେମର ସଂଜ୍ଞା)

ପ୍ରେମରେ ସେ ଦେହ ଓ ଦାହକୁ ଏକାକାର କରି ଦେଖନ୍ତି । ସ୍ୱୀକାର କରନ୍ତି ଯାବତୀୟ ପାପ । ଛଳନା ଓ ଶୈଳିକ ଚାତୁରୀକୁ ପଛକରି ସେ କହନ୍ତି ରୋକ୍‌ଠୋକ୍ ସତକଥା । ଏପରି ମଣିଷ ସମସ୍ତ ସାମାଜିକ ଛଦ୍ମତାକୁ ଅସ୍ୱୀକାର କରିବା ଏକ ସାଧାରଣ କଥା - "ସାମାଜିକ ହିସାବ / ନିକାଶ ଅଙ୍କ କଷାରେ / ଅସତର୍କ ଓ ଶୋକାତୁର ମୋର ବ୍ୟକ୍ତିତ୍ୱ / ବାରମ୍ବାର ବରଫ ପରି ଶୀତଳ ଓ / ଅଗ୍ନିପିଣ୍ଡ ପରି ପ୍ରଜ୍ୱଳିତ ହୁଏ ।" (ସ୍ମୃତି-୨) ପ୍ରେମ

ପ୍ରତି ନିଜର ବିଚାର ରଖିବାକୁ ଯାଇ ସେ ମଧ୍ୟ କହନ୍ତି- "ମୁଁ ଖାଲି ଏକ ଅନ୍ଧପ୍ରେମର ନାୟକ ନୁହେଁ / ବିଭାଜିତ ସ୍ମୃତିର ଭାଗଫଳ ବା ଭାଗଶେଷ ନୁହେଁ / ପରମ ପ୍ରେମିକର ପ୍ରେମ ପାଖରେ ବନ୍ଧା / ଚିର ସ୍ନେହ ପାଗଳ ମଣିଷଟିଏ ।"

କବି ନିତ୍ୟାନନ୍ଦଙ୍କର ନିଜ ସଂପର୍କରେ ନିଜର ସ୍ୱୀକାରୋକ୍ତିରେ ଏତେ ଟିକେ ଛଦ୍ମତା ନାହିଁ । ଯେଉଁଠି ତାଙ୍କୁ ଟିକିଏ ସ୍ନେହ/ଶ୍ରଦ୍ଧା ମିଳିଛି ପାପ/ପୁଣ୍ୟ ବାଛବିଚାର ନ କରି ସେ ବାଂଧି ହୋଇଯାଇଛନ୍ତି ସେଇଠି । ଜୀବନର ସାମଗାନ କରିଛନ୍ତି ଉଦାତ୍ତ କଣ୍ଠରେ । ଜୀବନର ଗତିପଥକୁ ଯେଉଁ ଦୁଇଟି ଧାର ନିୟନ୍ତ୍ରଣ କରିଛି ତାହାର ବନ୍ଦନା କରିଛନ୍ତି ନିର୍ବିକାର ଅକୁଣ୍ଠିତ ଭାବରେ- "ମୋ ଆଗେ ଦୁଇଟି ତୀର୍ଥ, ଦୁଇ ସ୍ମୃତି ମୌନ ନିର୍ବିକାର / ଏକରେ ଦେଇଚି ପ୍ରୀତି, ଅପରରେ ଅଶ୍ଳୀଳ ବିଚାର / ଏକରେ ଶରୀର ତୃଷ୍ଣା, ଆନମନେ ସ୍ୱର୍ଗ କଳପନା / ମୋ ଆତ୍ମାରେ ଦୁଇଧାର, ମୁଁ କରଚି ଅଗାଧ କଳନା ।" (ଦୁଇଧାର)

ଜୀବନକୁ ଅବିକଳ ଜୀବନପରି ଭୋଗିବାର ଜିଦ୍ ତାଙ୍କ କବିତାକୁ ଅନେକ ସମୟରେ ପ୍ରତ୍ୟକ୍ଷ ଓ ଅନମନୀୟ କରିଛି । ସାମାଜିକ ମୂଲ୍ୟବୋଧର ଅବକ୍ଷୟ ଯେତେବେଳେ ତାଙ୍କୁ ବ୍ୟଥିତ କରିଛି ସେତେବେଳେ ସେ ପ୍ରତ୍ୟକ୍ଷ ରାଜନୀତିକୁ ଓହ୍ଲାଇ ସଂସ୍କାରପ୍ରୟାସୀ ହେବାର ଲକ୍ଷ୍ୟ ବି ରଖିଛନ୍ତି । କିନ୍ତୁ ଆଦର୍ଶକୁ ପାଥେୟ କରି ରାଜନୀତିରେ ମାଇଲ୍ ମାଇଲ୍ ଏକୁଟିଆ ଚାଲିବାର ଶପଥ ଓ ସାହସ ତାଙ୍କର ଅଚିରେ ଧୂଳିସାତ୍ ହୋଇଯାଇଛି । ରାଜନୀତିରେ ଚରମ ଶଠତା ଓ ଛଳନା ବ୍ୟତୀତ ଅନ୍ୟସବୁ ଆଦର୍ଶ ଯେ ଅର୍ଥହୀନ ଏହା ଉପଲବ୍ଧି କରି ସେ କହିଛନ୍ତି- "ହାତଟେକି ସଭାମଞ୍ଚେ ଅନେକ କହିବା କଥା / ସବୁ ଆଜି ମନେହୁଏ ପ୍ରଚଣ୍ଡ ସ୍ୱାର୍ଥର ସଂଜ୍ଞା / ହରାଇଛି ସବୁ ଅଙ୍ଗୀକାର ।" କବି ଅନନ୍ତ ପଟ୍ଟନାୟକଙ୍କ ସ୍ମୃତିରେ ରଚିତ (ଦନ୍ତାଘାତ ସମୟର) 'ଆରଣ୍ୟକର କବିତା', 'ଜନଗଣ ମାଗେ' ପରି କବିତାରେ ସାମାଜିକ ବୈଷମ୍ୟ, ହିଂସା, ଭ୍ରଷ୍ଟାଚାର ବିରୋଧରେ ତୀବ୍ର କାବ୍ୟିକ ଉଦ୍‌ଗୀରଣ ହୋଇଛି ଏବଂ ଶେଷ କବିତା 'ବେବିନା'ରେ ଏକ କୋହ ଆକୁଳ କବିପ୍ରାଣର ପ୍ରତିବାଦ ମୁଖର ହୋଇଉଠିଛି ।

- "ଆଉ ବାପାମାନେ ଝିଅକୁ ପଠାଇବେ କି / ସ୍କୁଲ୍ ଓ କଲେଜ... / ମାଆମାନେ ଚାହିଁରହିଥିବେ / ସେମାନଙ୍କ ଫେରନ୍ତା ବାଟକୁ / ମନରେ ଖାଲି ପାପ ଭାବନା, ଦକା ଓ ଅବଶୋଷ / କାହିଁକି ଏ ଯାଏ ସ୍କୁଲରୁ ଫେରୁନି । ମୋ ମଲ୍ଲୀ, ନୀଳକଇଁ ବା ପଦ୍ମପଳାସ / ଭୋକ ନଥିବ ପେଟରେ / ପ୍ରାଣ ଥାଇ ବି ନଥିବ ପିଣ୍ଡରେ... ।" (ବେବିନା)

ଶେଷକୁ ସବୁ ଓଡ଼ିଆଙ୍କ ପରି ସେ ମଧ୍ୟ 'ବାଧିଲା ଜାଣି କ୍ଷମା'ର ନାୟକ ଜଗନ୍ନାଥଙ୍କ ଉପରେ ଅଭିମାନ କରିଛନ୍ତି- "ତୁମେ ସବୁ ଦେଖୁଚ ନା ନାହିଁ / କାହିଁକି ନୀରବ ତୁମେ ପ୍ରତିକାରହୀନ / ତୁମେ ତ ଅଥର୍ବ ନୁହଁ / କିପରି ତୁଟିବ ଏତେ ବିଷମତା / ନଚେତ୍ କାହିଁକି ତୁମେ ବୋଲାଇବ / ହର୍ତ୍ତା କର୍ତ୍ତା ଦଇବ ବିଧାତା ?" (ଜଗନ୍ନାଥ)

 

ପ୍ରେମ/ପ୍ରତାରଣା, ଆଶା/ନିରାଶା, ପ୍ରତିବାଦ/ପ୍ରତିରୋଧର ଜ୍ୱଳନ ଧୀରେ ଧୀରେ ଶାନ୍ତ ହୋଇଛି କବି ଅନ୍ତରରେ । ସମଗ୍ର ଜଗତ ପାଇଁ କଲ୍ୟାଣର ଭାବନା ଉଛୁଳି ପଡୁଛି । ମନର ବେଦନା ପୋଥିରେ ହାରିଯାଇଥିବା ମଣିଷମାନଙ୍କ ପାଇଁ କରୁଣାର ଶବ୍ଦମାଳା ଲିପିବଦ୍ଧ ହୋଇଯାଇଛି ଆପେ ଆପେ । କବିଙ୍କ 'କବିତାର ସୂଚୀ'ରେ ଆଉ ବ୍ୟକ୍ତିଗତ ଭାବ/ଭାବନା ନୁହେଁ, କୋଟି ଅନ୍ତର ପାଇଁ ସମର୍ପିତ ଆବେଗର ଇସ୍ତାହାର ପ୍ରକାଶ ପାଉଛି- "ଯେଉଁମାନେ ହାରିଗଲେ, ଯେଉଁମାନେ ହରାଇଲେ ପଥ / ମୁହଁମାଡ଼ି ପଡ଼ିଗଲେ ଜୀବନରେ ଖୋଜି ନୂଆ ଅର୍ଥ / ଅସଂଖ୍ୟ ହଜିଲେ ଏଠି ଏ ମାଟିର ଧୂସର ମରୁରେ / ସେମାନେ ନିଅନ୍ତୁ ରୂପ ମୋ ମନର ବେଦନା ପୋଥିରେ... ।" (କବିତାର ସୂଚୀ)

ଜଗତ ଓ ନିଜ ପ୍ରତି ଏହି କରୁଣାଦୃଷ୍ଟି କବିପ୍ରାଣକୁ ସ୍ୱତଃ ଏକ ଆଧିଭୌତିକ ସ୍ତରକୁ ଘେନିଯାଏ । ସେ କବି ବୈକୁଣ୍ଠନାଥଙ୍କ 'ଜୀବନପାତ୍ର ମୋ ଭରିଛ କେତେମତେ' ହେଉ, କିମ୍ବା ମାନସିଂଙ୍କ 'ଖୋଜେ ମୁଁ ଅରୂପେ ରୂପକ୍ଳାନ୍ତ ନେତ୍ର ଦୁଇ' ହେଉ ପ୍ରତ୍ୟେକ ସଚେତନ କବିଜୀବନ ଏହି ଅନ୍ତିମ ସମର୍ପଣର ସ୍ୱରକୁ ଚିହ୍ନିବା ପାଇଁ ବାଧ୍ୟହୁଏ । ସବୁ ଅଂଧାରକୁ ଅତିକ୍ରମ କରି କବି ନିତ୍ୟାନନ୍ଦ ମଧ୍ୟ ସେଇ ଅଭିପ୍ରେତ ଆଶ୍ଚର୍ଯ୍ୟ ସକାଳକୁ ଦେଖୁଛନ୍ତି- "ଆଶ୍ଚର୍ଯ୍ୟ ସକାଳ ଦେଖେ / ସେ ଲୋଟୁଛି ମୋ ଶେଯରେ / ଉଗ୍ରଗନ୍ଧୀ ଫୁଲଟିଏ / ସତେକି ପାଖୁଡ଼ା ମେଲି / ମୋ ପାଇଁ ଫୁଟିଥିବା ସୁଗନ୍ଧରାଜ / ଅବା ତାହା ଦିଅଁଙ୍କର ଛଡ଼ାଫୁଲ / ଅପୂର୍ବ ମହକ / ସିଏ ମୋର ପ୍ରେମର ପ୍ରତୀକ ।" (ପ୍ରେମର ପ୍ରତୀକ)

କବି ଶ୍ରୀ ଶତପଥୀଙ୍କ କବିତାରେ ପରୀକ୍ଷା ନୀରିକ୍ଷା ନାହିଁ । 'ପ୍ରୟୋଗ' କିମ୍ବା 'ବାଦ'ର ଜଂଜାଳ ନାହିଁ । ସାଧାସିଧା ଜୀବନର ସାଧାରଣ ବ୍ୟଥା ଓ ଆନନ୍ଦର ଅକପଟ ଇସ୍ତାହାର ଜାରିତ ହୋଇ କବିତା ଆକାରରେ ଝରିଯାଇଛି ଶବ୍ଦ ଓ ଛନ୍ଦରେ । ସରଳ, ସଂପ୍ରେଷଣକ୍ଷମ ଆବେଗମୟତା ହିଁ ଏ ସବୁ କବିତାର ମୌଳିକ ଉପାଦାନ । ସେଇଥିପାଇଁ ହୃଦୟକୁ ଛୁଏଁ । ଦୁଃଖରେ ସୁଖରେ ପଂକ୍ତିଗୁଡ଼ିକ ଆପେ ଆପେ ମନେପଡ଼ିଯାଏ । କବିତା ପାଇଁ ଏହାଠାରୁ ଅଧିକ ସାର୍ଥକତା ଆଉ କ'ଣ ବା ହୋଇପାରେ ?

■ *ପୂର୍ବତନ ପ୍ରାଧ୍ୟାପକ, ଓଡ଼ିଆ ବିଭାଗ*
*କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ*
*କପାଳେଶ୍ୱର, କେନ୍ଦ୍ରାପଡ଼ା*

# ଏକ ଓହଳଭରା ବରଗଛର କୋମଳ କିଶଳୟ

◆ ଡକ୍ଟର ମମତାରାଣୀ ବେହେରା

କବିତା ସମାଲୋଚନା ଭଳି ଏକ ମନନଶୀଳ ସାହିତ୍ୟ ସର୍ଜନାରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଓହଳଭରା ବରଗଛଟିଏ ପରି ସତ ଓ ସୁଦୃଢ଼ । କବିତାର କୋମଳତା ଏକ ନିରପେକ୍ଷ ବିଚାରକ, ମୁଗ୍ଧ ପାଠକ, ପ୍ରାଜ୍ଞ ସମାଲୋଚକ ଭାବେ ତନ୍ନତନ୍ନ କରି ନିରେଖିଥିବା ଭିତରେ ବୋଧହୁଏ ନିଜେ କବି ପାଲଟିବାର ସ୍ୱପ୍ନ ବିଶେଷ ପ୍ରକାଶିତ ହୋଇପାରିନି । ସର୍ଜନପ୍ରବଣ କବି ମନ ଭିନ୍ନ ମୋଡ଼ ନେଇଛି । କବିତା ହୋଇପାରେ ତାଙ୍କର ପ୍ରଥମ ପ୍ରେମ, କିନ୍ତୁ ଟିକିଏ ଅଭିମାନରେ, ସେ ଆଡ଼ ହୋଇ ରହିଯାଇଛି, ହେଲେ ସମାଲୋଚନାମନସ୍କ ମନ ତାଙ୍କର କେବେ କେମିତି ତାଙ୍କୁ ନ ଲୋଡ଼ି ରହିପାରେନି । କୁଣ୍ଠିତ ପଦପାତରେ ହେଉପଛେ, କବିତା ଆସିଛି । ବେଳ ଅବେଳରେ, ନିରୋଳା ଆତ୍ମମଗ୍ନ ମୁହୂର୍ତ୍ତରେ । ମନର ମାନସୀ ହୋଇ ଅକ୍ଷରମାଳା ଆପଣାକୁ ଆପେ ଗୁନ୍ଥି ହୋଇଯାଇଛି ।

ଅବହେଳାରେ ହଜିଯାଇଛି କିଛି କବିତା । ଆଉ କିଛି ସେହି ହଜିଲା ପୃଷ୍ଠା ଭିତରୁ ନୂଆ ଠାଣିମାଣି ନେଇ ଫେରିଆସିଛି । ଏକଥା ନିଜେ ଶ୍ରୀଯୁକ୍ତ ଶତପଥୀ ତାଙ୍କ କାବ୍ୟ ସଂକଳନ 'ସବା ସାନ ପ୍ରେମିକା'ରେ ସ୍ୱୀକାର କରିଛନ୍ତି । "ସମାଲୋଚନା ଲେଖିବାରେ ମନୋନିବେଶ କଲାପରେ କବିତା ଲେଖିବା ପ୍ରାୟ ଆଉ ସମ୍ଭବ ହୋଇନଥିଲା । × × × ତାହାହିଁ ଥିଲା ମୋର କାବ୍ୟିକ ଅବଶୋଷ । କେତେବେଳେ କେତେବେଳେ କୌଣସି ପ୍ରେରଣାରେ ହୁଏତ କେତୋଟି କବିତା ଲେଖି ହୋଇଯାଉଥିଲା । ସ୍ପଷ୍ଟ ମନେହେଉଛି ୧୯୭୫/୭୬ ବେଳେ 'ଆଖି' ଓ 'ସମୁଦ୍ର' ନାମରେ ଦୁଇଟି କବିତା ଲେଖିଥିଲି ଓ ତାହା ତତ୍କାଳୀନ କୌଣସି ପତ୍ରିକାରେ ପ୍ରକାଶିତ ମଧ୍ୟ ହୋଇଥିଲା । ଏବେ ସେ କବିତା ଦୁଇଟି ଦୁଷ୍ପ୍ରାପ୍ୟ । ଯେତେ ଖୋଜାଖୋଜି କଲେବି ପାଉନାହିଁ । ଅଥଚ ସେଥିପାଇଁ ଖୁବ୍ ବ୍ୟଥିତ ଥିଲାବେଳେ ମୋ ଆରାଧ୍ୟା ଦେବୀ ମା' ଶାରଳା ଯେପରି ମୋ ହାତଧରି ଲେଖେଇଦେଲେ କବିତାଟିଏ । ଯାହାକୁ ସମୁଦ୍ରର ଆଖି ନାମରେ ଛାପିବାକୁ ପ୍ରଥମେ ଭାବିଥିଲି । କିନ୍ତୁ କେଜାଣି କାହିଁକି 'ତା ଆଖିର ନୀଳନିଶା' ନାମକରଣଟି ମୋତେ ଅଧିକ ଆବିଷ୍ଟ କଲା ।" (ମୋର ବି ପଦେ, ସବା ସାନ ପ୍ରେମିକା)

'ସବା ସାନ ପ୍ରେମିକା ଓ ଅନ୍ୟାନ୍ୟ କବିତା' ପୂର୍ବରୁ କବି ତାରୁଣ୍ୟ କାଳରେ ଲେଖିଥିବା କବିତାଗୁଡ଼ିକୁ କବିପତ୍ନୀ ପ୍ରତିଭା ଶତପଥୀଙ୍କ ସହିତ ମିଳିତ ଭାବେ 'ଆମ

କବିତା’ ସଂକଳନରେ ପ୍ରକାଶ କରିଛନ୍ତି । ତେବେ ଦୁଇଟି କାବ୍ୟ ସଂକଳନ ମଧ୍ୟରେ ଦୂରତା ଖୁବ୍ ବେଶୀ । କିଛି ତାରୁଣ୍ୟ କାଳରେ ଆଉ କିଛି ପରିଣତ ବୟସରେ ଲେଖି ହୋଇଯାଇଛି । ତେବେ ସମୟ କିମ୍ବା ବୟସର ବ୍ୟବଧାନ ଯେତେବି ଥାଉ କବି ମନରେ ସବୁବେଳେ କବିତା କୋମଳ ପତ୍ରଟିଏ ହୋଇ ଆଖିମିଟିକା ମାରିଛି । କବିତା ପାଇଁ ସବୁ ସମୟ ତାରୁଣ୍ୟମୟ । କବିତା ହିଁ ପ୍ରକାଶିତ ହୋଇ ପ୍ରମାଣ କରେ ଆଜିବି କବିମନରେ ତରୁଣକାଳ ତପ୍ତ ନିଦାଘରେ ତିରୋହିତ ହୋଇଯାଇ ନାହିଁ । କବି ଚିରକାଳ ଚିର ବସନ୍ତର ପକ୍ଷୀ । ତା’ ଆଖିରେ ପ୍ରେମ ଆକାଶବ୍ୟାପୀ । ନୀଡ଼ବାହୁଡ଼ା ବେଳ କି ଆକାଶରେ ଡେଣା ମେଲିବା ବେଳ ସେ ଜାଣେନା, ତେଣୁ ହିଁ ଆସେ କବିତା ସବା ସାନ ପ୍ରେମିକା ହୋଇ । ପ୍ରେମିକା କି ପତ୍ନୀର ପ୍ରେମରେ ନୁହେଁ, କୁନି ନାତୁଣୀର ଭଲ ପାଇବାରେ ଲେଖି ହୋଇଯାଏ ତେଣୁ; “କିନ୍ତୁ ମୁଁ ଏବେ ପ୍ରେମରେ ପଡ଼ିଯାଇଛି ଯେ, ମୋର ସବା ସାନ ପ୍ରେମିକା / ତା’ର ବୟସ ଦୁଇବର୍ଷ ବି ପୂରିନି । × × × ତା’ର ମଧୁର ଚୁମାରେ ଥାଏ / ଜୀବନ ପାଇଁ ବଞ୍ଚିବାର ଆହ୍ୱାନ × × ମୁଁ ତାକୁ କହେ- ହେ ମୋର ସବା ସାନ ପ୍ରେମିକା, / ତୋରି ପାଇଁ ମୁଁ ବଞ୍ଚିବି ନିଶି ଦିନ ।” “କେବଳ ତୁଇ ମାୟାର କୁହୁଡ଼ିରେ / ମୋତେ ଆଛନ୍ନ କରି ରଖିବୁ / ଦେଖ ତୋର ଜେଜେ ତୋ ପାଇଁ / ‘ପ୍ରତିଦିନ ମରୁଥିବାରୁ କିପରି ବଞ୍ଚି ଉଠୁଚି ।” (ସବା ସାନ ପ୍ରେମିକା)

ଜୀବନ ଓ ମୃତ୍ୟୁର ଲମ୍ବା ରାସ୍ତାରେ ଅନେକ ସଂପର୍କର ଉଦୟ ହୁଏ, ପୁଣି ଅସ୍ତ ଯାଏ । କେତେ ସୌଧ, କେତେ ଅଟ୍ଟାଳିକା ସମୟର ବାଲିସ୍ତୂପରେ ହଜିଯାଏ । ପୁଣି କେବେ ସ୍ମୃତିର ଖିଅ ଯୋଡ଼ି ଉଖାରି ଦେଲେ, ହଜିଲା ଅତୀତର ନିଭିଲା ମୁହଁଟିଏ ଦିଶିଯାଏ । ଅତିକ୍ରାନ୍ତ ସମୟ ଓ ସଂପର୍କର ଉଦ୍‌ଘୋଷଣ କରିବସେ । ପାଦ ଅଟକିଯାଏ କ୍ଷଣକେ । ହାତ ଆଉଁସିଦିଏ ଆସ୍ତେ କାହାର ଧୂଳିବୋଳା ମୁହଁ । ହେଲେ ଜଡ଼ଶୀତଳ ଅତୀତର ମଣିଷ ଅନ୍ୟ କେହି ହୋଇ ରହିଯାଆନ୍ତି । “ମୋର ଏକଦା ପତ୍ନୀ ବା ପ୍ରେମିକା / ଯେଉଁମାନେ ମୋ କୋଳର ଉଷୁମରେ / ନିଆଁ ପୋଉଥିଲେ ଶରତ ଓ ଶୀତରେ / କେଉଁମାନଙ୍କୁ ପିଠିରେ ସବାର କରି / ମାତୁଥିଲି ଘୋଡ଼ା ସଇସ ଖେଳରେ / ସେମାନେ କେହି ବି ନାହାନ୍ତି ସମୟକ୍ରମେ / ପରଲଗା ଚଢ଼େଇମାନେ ଉଡ଼ିଯାଇଛନ୍ତି / ନିଜ ନିଜର ସ୍ୱାର୍ଥ ଓ ସିଦ୍ଧିରେ ।” (ସବା ସାନ ପ୍ରେମିକା)

ଅତିକ୍ରାନ୍ତ ବୟସର ପାହାଚ୍‌ରେ ଠିଆ ହୋଇ ବିଷାଦରେ ଘାରି ହୁଅନ୍ତି କବି । ପ୍ରେମିକ, ପତି ପୁଣି ପିତା ହୋଇ ସଂପର୍କର ବହୁ ଓହଳରେ ଭାରି ହୋଇ ପଡ଼ିଥିବା ବୃକ୍ଷଟି, ସତେ ଅବା ଥୁଣ୍ଟା ହୋଇଯାଏ କ୍ରମଶଃ । ଛାୟା ଲୋଡ଼ି ଆଉ କେହି ଆସନ୍ତିନି ବାଟୋଇ । ଗହଳ ପତ୍ରର ଛାଇରେ ବସା ବାନ୍ଧିଥିବା ଚଢ଼େଇମାନଙ୍କ ଚିଁ ଚାଁ ଗୀତ ଶୁଭେନାହିଁ । ଏଇ କି ଜୀବନ ! ଚିରକାଳ ମଣିଷର ଭାଗ୍ୟ । ପୁଣି ଯୌବନର ପ୍ରେମ ତ ତହୁଁ ଅଧିକ, ତରକା

ଅତି, ପରଜାପତି ! ବାରମ୍ବାର ଘୂରି ଫେରି ଅନାନ୍ତି କବି । କୋଳାହଳ ନାହିଁ କାରୁଣ୍ୟରେ ଭରପୂର ଉଦାସ ଛାଇ ତାକୁ ଆଚ୍ଛନ୍ନ କରେ, ଅଧିର । ସେହି ନିରବ ନିଃସଙ୍ଗତାରୁ ସଂପର୍କର ନୂଆ ଖିଅଟିଏ ଯୋଡ଼ି ହୋଇଯାଏ, ଯାହା ହୃଦୟରେ ଲେପିପାରେ ଚନ୍ଦନ । ଜୀବନ ବଞ୍ଚିବାକୁ ପ୍ରାଣରେ ଭରିଦିଏ ନୂତନ ସ୍ପନ୍ଦନ । କିନ୍ତୁ କୁନି ପ୍ରେମିକାଟିର ବନ୍ଧନରେ, ଚୁମ୍ବନରେ ଚରଣପାତରେ ସ୍ମୃତି ସଜଳ ହୋଇଉଠେ ଅତୀତ । ପଛକୁ ଫେରି ଋହାଁନ୍ତି କବି, ଧୂଆଁଳିଆ ସମୟରେ ଚିହ୍ନା ମୁହଁ ଅଚିହ୍ନା ହୋଇଗଲାଣି । ସମୁଦ୍ରର ଲହଡ଼ି ଧୋଇଦେଲାଣି ଅନେକ ପାଦ ଚିହ୍ନ, ହେଲେ ସତେଜ ଦିଶୁଛି ଗୋଟେ କୁନି ଝିଅର ମୁହଁ, ଆଙ୍କି ହୋଇ ରହୁଛି କୋମଳ ପାଦର ଗହିରଆ ଦାଗ, ଯାହାକୁ ସମୁଦ୍ର କୁଆର ଲିଭାଇ ପାରୁନି । ଅଦୃଶ୍ୟ ଅକ୍ଷରରେ ଲେଖା ତା'ର ଠିକଣା । ଆତ୍ମାର ତୀର୍ଥରେ ଲେଖି ହୋଇଯାଉଛି । ଭୁଲି ହୋଇଯାଉଛି ତେଣୁ ବୟସର କ୍ଲାନ୍ତି । ଭାଙ୍ଗି ଯାଇଥିବା ସ୍ନେହ ପ୍ରେମ, ସଂପର୍କର ବତାସ ପବନ । ଶୋଚ଼ନା ରହେ ନାହିଁ ଇହ ଓ ପରକାଳ ପାଇଁ । ତଥାପି "ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର / ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।" (କବିବର ରାଧାନାଥ ରାୟ)

ସବୁ କବି, ସବୁ ମଣିଷ ସ୍ମୃତିର ପାଉଁଶ ତଳେ ସାଇତି ହୋଇ ରହିଥିବା ନିଆଁ ଝୁଲରେ କେବେ ନା କେବେ ପୋଡ଼ି ହେବାର କଷ୍ଟ ଅନୁଭବ କରନ୍ତି । ହେଲେ ଯେତେ ପୋଡ଼ିଗଲେ ବି ପାଉଁଶ ତଳୁ କାଢ଼ିପାରେନା ହାତ । ଛାତିତଳେ ଦିକ୍‌ଦିକ୍ ଜଳୁଥାଏ ଦିବା ନିଶି ସ୍ମୃତିର କ୍ଷତ । ଅତୀତ ଆହତ କରେ । ମାଡ଼ଖିଆ ପିଲାପରି ଚୁପ୍‌ଋପ୍ ମୁହଁ ପୋତି ଭୋଗିବା ସମୟଠାରୁ ଭିନ୍ନ ସମୟକୁ ପାଦ ଉଠାଇଦିଏ । ଛାତିତଳେ ଫାଙ୍କା ଫାଙ୍କା ଶୂନ୍ୟସ୍ଥାନ । ଆନନ୍ଦଘନ ମୁହୂର୍ତ୍ତ ସବୁ ଅଶ୍ରୁ ହୋଇ ଝରିଯାଏ । ଅଶ୍ରୁତ ସ୍ୱର ଶୁଭିଯାଏ । ବିଷାଦବୋଧରେ, ଅନୁତପ୍ତ ଅସହାୟତାରେ ଶ୍ରୀଯୁକ୍ତ ଶତପଥୀଙ୍କ କବିପ୍ରାଣ ଉଦାସର ଗୀତ ଗାଇବାରେ ରାଧାନାଥଙ୍କୁ ଟପି ଯାଆନ୍ତି । କାହାର ସେ ସ୍ମୃତି ଜୀବନର ସାୟାହ୍ନରେ ଚୁର୍‌ମାର୍ କରେ ଗୋଟେ ଦରଦୀ ହୃଦୟକୁ ।

କେହି ନଥିବାବେଳେ ହିଁ ଥାଏ କବିତା । ସେହି ହିଁ ବୋଧହୁଏ କବିତାର ବଡ଼ପଣ । ଭଙ୍ଗା ମନକୁ ଯୋଡ଼ିବାରେ, ଅପ୍ରେମକୁ ପ୍ରେମରେ ବାନ୍ଧି ଦେବାରେ ତାହାଠାରୁ ଆଉ କିଏ ଏତେ କୁଶଳୀ କାରିଗର ଅଛି ? କେଉଁ ଅତୁଆ ସୂତାର ଗୁଡ଼ି, କେଉଁ ଖିଅ ଛିଡ଼ିଯାଇଥିବା ଗୁଡ଼ି ସେଇ 'ତୁମେ' । ହାତ ନଟେଇରୁ ଯିଏ ବନ୍ଧନ କାଟି, ହଜିଯାଇଛି କୋଉ ସୀମାହୀନ ଆକାଶରେ ନା ଦୂର ପାହାଡ଼ର ଶୀର୍ଷରେ ଅପହଞ୍ଚ ସଂପର୍କର ଶୋକାତୁର ଛାଇ ହୋଇ ରହିଯାଇଛି । ବୁଝିହୁଏନା ବୋଲି, ବୋଧ ଦିଏ କବିତା – "ତୁମକୁ ଚିହ୍ନାଇ ଦିଏ ଏ ମେଘର ପ୍ରତିଟି ଅସରା / ମୁଁ ନିଜକୁ ଯେତେ ଝାଡ଼ିଝୁଡ଼ି କରେ ଆବିଷ୍କାର / ସେତେସେତେ ଅବୋଧ ମୋ ମନର ଚେହେରା / ତୁମକୁ ଗୁଡ଼ାଇ ଧରେ / ଅତୁଆ ସୂତାର ଗୁଡ଼ି / ଖିଅ ତାର କାହିଁ / ତୁମେ ଯାଅ ଘୁଞ୍ଚି ଘୁଞ୍ଚି ବହୁ ଦୂରେ / ତୁମେ ଏକ ଅପହଞ୍ଚ ପାହାଡ଼ର /

ସଂଧ୍ୟାଘେରା ଶୋକାତୁର ଛାଇ ।" (ସ୍ମୃତି-୧) କିନ୍ତୁ ପବନକୁ ଫାନ୍ଦରେ କି ବାନ୍ଧିପାରେ ? ଚିକ୍‌କଣ ଚଟାଣରେ ଗଡ଼ି ଯାଉଥିବା ପାରଦକୁ କିଏ ହାତରେ ମୁଠାଇ ପାରେ ? ହେଲେ ପାରେ କବି ସ୍ୱପ୍ନରେ, ସ୍ମୃତିରେ, ସପ୍ରେମ ସମ୍ମୋହନରେ- "ମୋତେ ଲାଗେ ତୁମକୁ ମୁଁ ଭେଟୁଅଛି / ପ୍ରତିଦିନ, ପ୍ରତି ରାତି, ମୋ ମନର ବିସ୍ତୃତ ଇଲାକା / ଆଜି କାଲି ତୁମ ପାଇଁ ଲାଗେ ଏତେ ଫାଙ୍କା ।" ତେବେ ଏଠି ପାଇବା ଅପେକ୍ଷା ହରେଇବା ହିଁ ଅଧିକ ସତ୍ୟ ! ଯେଉଁ ଭେଟିବା କଥାଟି କହିଦିଅନ୍ତି କବି, ତାହାର ସ୍ୱରୂପ କଣ ? କିଏ ସିଏ ? ଅପହଞ୍ଚ ପାହାଡ଼ର ଉଦ୍ଧତ ସାହ୍ନାଇ ! ଯାହାର ଅଶ୍ରୁତ ସ୍ୱର ଶୁଣିହୁଏ ନାହିଁ ! କେହି ସହଚରୀ ଆଗକୁ ଉଠିବାର ନିଶାରେ ପହଞ୍ଚିଯାଏ ପାହାଡ଼ର ଶୀର୍ଷରେ । ଅଥଚ୍ ସମାନ ପାଦରେ ଚାଲି ନପାରି ପାହାଡ଼ ତଳେ ଆଣ୍ଠେଇ ପଡ଼ନ୍ତି ସହଗାମୀ ମଣିଷ ଜଣକ । ପ୍ରେମରେ, ଭ୍ରମରେ, ବିରହରେ, ବିଷାଦରେ ଅତି ବହଳ ଓ ଅନେକ ପାତଳ ସ୍ମୃତିର ଦଂଶନରେ ଅହରହ କ୍ଷତବିକ୍ଷତ ସତ୍ତା ତାଙ୍କର ଭାଙ୍ଗିଯାଏ ନାହିଁ । ଜୀବନର ରାସ୍ତା ଯେତେ ଆବଡ଼ା ଖାବଡ଼ା ହେଲେ ବି ତାକୁ ଅତିକ୍ରମ କରିବାକୁ ହେବ ହିଁ ହେବ ।

ସମୁଦ୍ରର ଢେଉ ପରି ମଣିଷର ସୁଖ ଦୁଃଖ । ମନର ବେଳାଭୂମି ଛୁଇଁ ଏହି ସୁଖ ଦୁଃଖର ଯିବା ଆସିବା ଅନତିକ୍ରମଣୀୟ ସତ୍ୟ । କବି ସାମାଜିକ ଜୀବନର ହିସାବ ନିକାଶର ଅଙ୍କ କକ୍ଷାରେ ଅସତର୍କ ଶୋକାତୁର ହୋଇ ପଡ଼ନ୍ତି । ବ୍ୟକ୍ତିତ୍ୱ ତାଙ୍କର ବହୁଧା ବିଭକ୍ତ ହୋଇଯାଏ । କେବେ ବରଫ ଖଣ୍ଡ ପରି ଶୀତଳ ତ କେବେ ଅଗ୍ନିପିଣ୍ଡ ପରି ପ୍ରଜ୍ୱଳିତ ମନ ତାଙ୍କର । ତଥାପି ଦେହ ଓ ମନର ସବୁ ସୀମା ଅତିକ୍ରମ କରି ସୀମାନ୍ତରେ ଦିନେ ପହଞ୍ଚିବାକୁ ହୁଏ । ତେଣୁ ବିଷାଦ ଭିତରୁ 'ମରଣ ତୁହି ମମ ଶ୍ୟାମ ସମାନ' । ଭଗବାନଙ୍କୁ ସାନ୍ତ୍ୱନା ଭାବେ ସାଉଁଟି ନିଅନ୍ତି ସେ । ଭଙ୍ଗା ଗଢ଼ା ସ୍ମୃତିର ଫରୁଆରୁ ଦୁଃଖ, ସୁଖ, ପାଇବା ହଜିବାର ହିସାବ ନିକାଶ କରୁ କରୁ ଅତିକ୍ରମ କରିସାରିଥାନ୍ତି ଜୀବନର ଦୀର୍ଘ ପଥ । ସଂଜ ନଇଁଆସେ । କେଉଁ ଦୂର ଦେବାଳୟରୁ ଭାସି ଆସେ ଅମୃତ ମନ୍ତ୍ରଧ୍ୱନି । ମନରେ ଅଜଣା ସ୍ପର୍ଶର ପୁଲକ । ଦେହରେ ରୋମାଞ୍ଚିତ କଦମ୍ବ କୋରକ । ଏତେବେଳେ ପାଖରେ କିଏ ଥିବା କି ନଥିବା ସେ ସବୁ ଅର୍ଥହୀନ । ସ୍ମୃତି ତ ବିସ୍ମୃତିରେ ହଜିଯିବାର ଅପେକ୍ଷାରେ କେବଳ । କାହାକୁ ବୁଝେଇ ହେବ ତାଙ୍କ ମନର ଦରଦକୁ । ସାରା ଜୀବନ ଯାହା ପାରି ନାହାନ୍ତି, ତାହାକି ଆଉ ମୁହଁ ସଂଜବେଳେ ବୁଝାଇ କହିପାରିବେ ? ତଥାପି ପ୍ରାଣର ଉଚ୍ଛୁଳା ପ୍ରେମକୁ, ନିରୀହ ନିଷ୍ପାପ ସଂଳାପକୁ, ନୀରବତାରେ ନିଉଛାଳି ଗୀତ ପଦକୁ ଉଚ୍ଚରିତ କରନ୍ତି ସେ- "ମୁଁ ଖାଲି ଏକ ଅନ୍ଧପ୍ରେମର ନାୟକ ନୁହେଁ / ବିଭାଜିତ ସ୍ମୃତିର ଭାଗଫଳ ବା ଭାଗଶେଷ ନୁହେଁ / ପରମ ପ୍ରେମିକର ପ୍ରେମ ପାଖରେ ବନ୍ଧା / ଚିର ସ୍ନେହ-ପାଗଳ ମଣିଷଟିଏ ।" (ସ୍ମୃତି -୨)

ବିଶ୍ୱାସର ତାଳପତ୍ର ଭାଙ୍ଗିଯାଏ । ସମୟ ହିଁ ସବୁକିଛି ତା' କାନି ପଣତରେ ପୋଛିଦିଏ । ସମୟ ସୃଷ୍ଟି କରେ କ୍ଷତ, ପୁଣି ଲିଭାଇଦିଏ କ୍ଷତ ଚିହ୍ନ । ସମୟ ପାଲଟିଯାଏ ସବୁଠାରୁ ନିଷ୍ଠୁର ଶୋଷକ । ଯୌବନର ନାନା ତେଜଦୀପ୍ତ ଠାଣି, ପରିପୁଷ୍ଟ ପେଶିର ବିଶ୍ୱାସ, ପାହାଡ଼ ଟାଳିବାର ନିଶା କି ନିଆଁରେ ପଶିବାର ଦୁରାଶା ସବୁକିଛି ସ୍ୱପ୍ନ ପ୍ରାୟ ମିଳେଇଯାଏ । ଏହାହିଁ ମଣିଷର ଜୀବନ । ସର୍ବଶେଷ ଉପଲବ୍ଧି । କବିଙ୍କ ପ୍ରାଜ୍ଞମନ ସେ ବିଚାର କରିପାରେ । ସମୟ ସହିତ ସାଲିସ୍ କରେ । "ବେଶ୍ ଭଲ ନିଜର ଗମ୍ଭୀରା ଘରେ / ଶୋଇଯିବା ନିରବରେ ନାହିଁ କୋଳାହଳ ।" (ଦନ୍ତାଘାତ ସମୟର)

ସମୟ ଓ ସମ୍ପର୍କର ହିସାବ ଖାତାରୁ ହିଁ ଜୀବନ ଗଣିତର ଧାଡ଼ି କବିତା ହୋଇଯାଇଛି । ଯୌବନର ପ୍ରଜ୍ଞା, ପ୍ରତିବଦ୍ଧତା, ପ୍ରେମ ଓ ପ୍ରତିଶ୍ରୁତି ସମୟର ଦନ୍ତାଘାତରେ କ୍ଷତାକ୍ତ ହେବାବେଳେ ହୁଏ, ଏହି କବିତାର ଜନ୍ମ । ତେଣୁ ପ୍ରତିଟି ଧାଡ଼ିରେ ଉଦାସ ଅପରାହ୍ନର ଛାଇ । ଦୁଃଖ, ନୈରାଶ୍ୟ, ସଂପର୍କହୀନତା, ମୃତ୍ୟୁ ଓ ମହାକାଳ ତେଣୁ ଏସବୁ କବିତାର ମୁଖ୍ୟ ସ୍ୱର ପାଲଟି ଯାଇଛି । ସତେଅବା କବି, ଜୀବନଯୁଦ୍ଧରେ ଏକ ପରାଜିତ ସୈନିକ । ବିଫଳ ପ୍ରେମ, ବିଷାଦଘେରା ଦାମ୍ପତ୍ୟ, ବିଭଙ୍ଗ ସଂସାରର ନିଷ୍ଠୁରତାକୁ କବିତା ବିନା ଆଉ କେଉଁଠି ସାଇତି ହେବ ? "ଆଜି ଖାଲି ଲେଖିବାକୁ ନିଜଠାରୁ ଅଲଗା ଯେତେକ / ମୋ ଆଖିର ଚଉପାଶେ ଯେତେ ପଙ୍ଗୁ, ମୂକ, ହତବାକ / କେଉଁମାନେ ହାରିଗଲେ, ଯେଉଁମାନେ ହରାଇଲେ ପଥ / ମୁହଁ ମାଡ଼ି ପଡ଼ିଗଲେ ଜୀବନରେ ଖୋଜି ନୂଆ ଅର୍ଥ / ଅସଂଖ୍ୟ ହଜିଲେ ଏଠି ଏ ମାଟିର ଧୂସର ମରୁରେ / ସେମାନେ ନିଅନ୍ତୁ ରୂପ ମୋ ମନର ବେଦନା-ପୋଥିରେ / ସେମାନେ କି ପରିଚିତ ହେବେ ନାହିଁ ମଣିଷ ପଣରେ / କବିତାର ସୂଚୀ ଆଜି ଗଢ଼ା ହେଉ ନୂତନ ରୂପରେ ।" (କବିତାର ସୂଚୀ)

ସଂସାରକୁ ଜୀବନ୍ତ ବିସ୍ମୟ ଭାବେ ବିବେଚନା କରିଛନ୍ତି କବି । ଅବସାଦ ଓ ଅସନ୍ତୋଷରେ ଘାରି ହୋଇଛନ୍ତି । ପ୍ରେମ କରି ପରିତାପ କରନ୍ତି । ଭାଙ୍ଗିଯାଇଥିବା ଦାମ୍ପତ୍ୟ ଜୀବନକୁ ଯୋଡ଼ିବାକୁ ଅସଫଳ ହୁଅନ୍ତି । ଚାରିପାଖରେ ଝଡ଼ । ନୈରାଶ୍ୟର କଳାଅନ୍ଧାର ରାତି ଭିତରୁ ଆତ୍ମାର କାନ୍ଦ ଶୁଭୁଛି । ବାରମ୍ବାର ଅତୀତ ଫେରି ଆସୁଛି । ବିକଳ ହେଉଛି ପ୍ରାଣ - "କାହିଁ ସାଥୀ, କାହିଁ ମୋର ସାଥୀ / ସେ ଦିନର ହସଖେଳ, କଥା ଯେତେ / କୁହା ଓ ଅକୁହା / ଆଜି ଖାଲି ମନେପଡ଼େ ।" (ସେଦିନ ପାଇଁ ଗୋଟିଏ କବିତା) ନିଜ ଇଚ୍ଛାରେ ପ୍ରେମ ଓ ଯୌନ ଜୀବନ ଜୀଇଁବା ମଣିଷର ଜନ୍ମଗତ ଅଭିଳାଷ ହୋଇଥାଇପାରେ । ମାତ୍ର ଭାରତୀୟ ସମାଜ, ପାରମ୍ପରିକ ସଂସାରର ନିୟମ ଆଜି ବି ତାହା ସ୍ୱୀକାର କରେ ନାହିଁ । ଆଦୌ ସହ୍ୟ କରିପାରେ ନାହିଁ ଦାମ୍ପତ୍ୟ ଜୀବନ ଭିନ୍ନ ଯୌନ ପରିତୃପ୍ତି । ସେଥିପାଇଁ ଆମ ରାଧାକୃଷ୍ଣଙ୍କ ପ୍ରେମଲୀଳା ଅଲୌକିକ ଓ ଅପ୍ରାକୃତର ବନ୍ଧନୀ ଭିତରେ ଗ୍ରହଣୀୟ ହୋଇଛି । ଦେହକାମନାରେ ତୁଳସୀପତ୍ର ପଡ଼ି ନୈବେଦ୍ୟ

ହୋଇଛି । ଦେବଦାସୀ ମଣିଷର ନହୋଇ ଦେବତାର ପ୍ରିୟା ହୋଇ ପାଦରେ ଘୁଙ୍ଗୁର ବାନ୍ଧିଛି ।

ବିଦେଶୀୟ ଚିନ୍ତାଧାରାରେ କବିବର ସ୍ୱଦେଶୀ ନାୟକ ନାୟିକାଙ୍କୁ ପ୍ରେମପ୍ରଣୟର ମାର୍ଗ ଦେଖାଇ ଦେଇଥିଲେ ବି ବିଯୋଗରେ ହିଁ କାହାଣୀ ଶେଷ କରନ୍ତି । ନାରୀ ହୋଇ, କୁମାରୀ ହୋଇ ପ୍ରଣୟ ଭିକ୍ଷା କରିଥିବା ନନ୍ଦିକା ଅପରିସୀମ ଗ୍ଳାନି, ଲଜ୍ଜା, ଲାଞ୍ଛନା ଓ ଅପମାନରେ ଦଗ୍ଧ ହୋଇ ଶେଷରେ ଆତ୍ମହତ୍ୟାର ପଥ ବାଛିନିଏ । ପିତାମାତା, ପରିବାରର ଅଗୋଚରରେ ଘର ଛାଡ଼ି ମିଳନର ଆଶା ପୋଷଣ କରିଥିବା କେଦାର, ଗୌରୀ ବି ସେହି ମରଣକୁ ବରଣ କରିନିଅନ୍ତି । ପ୍ରଣୟ ଅଭିଳାଷୀ ହୋଇ ସୂର୍ଯ୍ୟ ଦେବତାଙ୍କ ଦେଉଳ ଭାଙ୍ଗିପଡ଼େ । ଚରମ ଅଭିଶାପରୁ ମୁକ୍ତି ପାଇପାରନ୍ତି ନାହିଁ ସେ । ପୁଣି କନ୍ୟା ସହ ନିଷିଦ୍ଧ ପାପର ସଂପର୍କ ରଖିଥିବା ପିତାଙ୍କୁ ହତ୍ୟା କରିବାକୁ କୁଣ୍ଠିତ ହୋଇନାହାଁନ୍ତି ମହାରାଣୀ ପାର୍ବତୀ । ତେବେ ଏତିକି ହିଁ ଆମର ସୀମା ଓ ପରିଧି । ଜଣେ ସଚେତନ ମଣିଷ କୌଣସି ଏକ ପରିସ୍ଥିତିରେ ଯଦି ବି ସେହି ସୀମା ବାହାରେ ପାଦ ପକାଏ ନିଶ୍ଚୟ ଅନୁତାପର ଅନଳରେ ଜଳିବାକୁ ବାଧ ହେବ । ଆଜିବି ସଂସାର ନିଃସଙ୍ଗ କରିପାରେ, କିନ୍ତୁ ନିୟମ ଭାଙ୍ଗିବାରେ ବିଶ୍ୱାସ କରେନା । "ଜନାନ୍ତିକ ସରହଦ ଡେଇଁ / ବନର କପୋତ ଦୁଇ ରଚିଥିଲୁ ଏ ଯେଉଁ କୁଳାୟ / ସେଠି ଯଦି ଅବସାଦ, ଅସନ୍ତୋଷ / ଖାଲି ପରିତାପ / ବରଂ ଭଲ ଏକା ଏକା ଚାଲିବାରେ / ଅତିକ୍ରମ କରିବାରେ / ଏ ସଂସାର ଜୀବନ୍ତ ବିସ୍ମୟ ।" (ସେଦିନ ପାଇଁ ଗୋଟିଏ କବିତା)

ସମଗ୍ର କାବ୍ୟ ସଂକଳନର କବିତାଗୁଡ଼ିକୁ ପ୍ରେମ, ପରିତାପ, ପ୍ରତିଶ୍ରୁତି ଓ ପରମଙ୍କ ପ୍ରତି ଥିବା ସଖ୍ୟତା, ଏହି ଭାବ ଓ ଭାବନା ମଧ୍ୟରୁ ବିଚାର କରାଯାଇପାରେ । ପ୍ରେମରୁ ପ୍ରେମଭଙ୍ଗ, ସ୍ୱପ୍ନଭଙ୍ଗ, ପରିତାପରୁ ମୋହଭଙ୍ଗ ଓ ପଶ୍ଚାତ୍‌ଦୃଷ୍ଟି, ପ୍ରତିଶ୍ରୁତିରୁ ବଞ୍ଚିବାର ରାହା ଓ ପରମଙ୍କୁ ନିଜ ପ୍ରାଣ ସମର୍ପିଦେଇ ଭବସାଗରରୁ ପାରିହେବା ନାଆ ଖୋଜିଛନ୍ତି କବି । ତେବେ ସବୁକିଛି କବିର ଆଖିରେ ଦେଖିଛନ୍ତି ସେ । ପ୍ରେମକୁ, ଘୃଣାକୁ, ଆଦରକୁ, ଅନାଦରକୁ ସାଉଁଟିଛନ୍ତି ସମଭାବରେ । ଅଭିଜ୍ଞ ଜୀବନ ବୁଝିସାରିଛି ଜୀବନଟା ନିଷ୍ଠୁର ଡଗାବାରଣ । ସବୁଠାରେ ମପାଚୁପା ଦେଣନେଣ । ଅବଜ୍ଞା ଓ ବିପର୍ଯ୍ୟୟର ହିସାବ ଖସଡ଼ାରେ ଜୀବନ, ସ୍ନେହ ପ୍ରେମ ଶୂନ୍ୟ ଏକ ଡଗାବୀ-ଚକଡ଼ା ।

ପ୍ରେମ, ଭ୍ରାନ୍ତି ଓ ସାଲିସ୍‌ରେ ଲେଖାହୁଏ କବିତା । ଯେହେତୁ ଜୀବନର ଶେଷକଥା ମୃତ୍ୟୁ, ତେଣୁ ହିଁ ସାଲିସ୍ କରିବାକୁ ହୁଏ ପ୍ରତିଟି ମୁହୂର୍ତ୍ତ ସହିତ । ପ୍ରେମିଳ ଜୀବନକୁ ଗରଳ ହେଲେ ବି ଆକଣ୍ଠ ପାନ କରନ୍ତି କବି । ପ୍ରେମିକାର ତନୁର ଲାବଣ୍ୟରେ କାମନାର କସ୍ତୁରୀ ଥାଉ କି ନଥାଉ, ତା'ର ସମ୍ମତି କି ଅସମ୍ମତି ଅସ୍ପଷ୍ଟ ଓ ଅବୋଧ ହେଉଥାଉ ବରଂ କବିଙ୍କୁ ମନେହୁଏ ସେ ପ୍ରଣୟିନୀ କେଉଁ ଯୁଗର ବାସକସଜ୍ଜା ଚିତ୍ରଲେଖା, ଆଉ ସେ

ଚିରକୁମାର କୁମାର ଗିରି । ଅଥଚ ଅତୀତର ବାଲୁକାସ୍ତୂପରୁ ସେ ସାଉଁଟି ପାଆନ୍ତି ଶୀତଳ ବିଭ୍ରାନ୍ତିର ସଞ୍ଚିତ ସୋହାଗ । ତରଳ ଅନ୍ଧକାରର ସୁଯୋଗ ନେଇ ଇଚ୍ଛାକୁ ଉନ୍ମୁକ୍ତ କରନ୍ତି ତ, ପାଆନ୍ତି ନାହିଁ ତାରା କି ଜହ୍ନ, କେବଳ ମିଳେ ଦୁର୍ଭାବନା ଚିରକାଳ । ତେଣୁ ଏସବୁର ଶେଷ କଥା କହେ କବିତା - "ଥରେ ଦେଖା ହେଲେ ତାକୁ କୁହନ୍ତି / ମୁଁ କବି, ମୁଁ କବି... / ମୋର ଦୁର୍ବଳତାକୁ କ୍ଷମାଦିଅ ଦେବୀ / କ୍ଷମା ଦିଅ ନାରୀ, ମୁଁ ନିର୍ବାଣ ଚାହେଁ; / ମୁଁ ପାଗଳ ଭୂଷୁକୁ / ଏଇ ମାତ୍ର ତୁମ କନକ ଉପତ୍ୟକାରୁ / ଲମ୍ଫ ଦେଉଚି ଧରା ତଳକୁ.../ ମାଟିରେ ମିଶିଯିବାକୁ ଚିରକାଳ ।" (ମାଟିରେ ମିଶିଯିବାକୁ ଚିରକାଳ)

ସ୍ୱପ୍ନଭଙ୍ଗର ଭୟଙ୍କର ଶବ୍ଦ । କବିତାର କୋମଳ ଲାବଣ୍ୟ ତଳେ ଲୁଚିଥିଲେ ବି ଦିଶିଯାଏ ତା ବିଭଙ୍ଗ ରୂପ । ଗୋଟାଏ ଅଧା ତିଆରି ଘରର ପ୍ରତୀକରେ ପ୍ରକାଶିତ ହୁଏ କବିଙ୍କର ବିକଟ କାରୁଣ୍ୟ । ଘରଟି ସଂପୂର୍ଣ୍ଣ ହେବା ପୂର୍ବରୁ ହୁଏ ପରିତ୍ୟକ୍ତ । ଅଧା ତିଆରି ଘରର ଛାତରୁ ଲୋସଡ଼ି ପଡ଼େ ମୁଠା ମୁଠା ଅପ୍ରତ୍ୟୟ, ଅସ୍ନେହ ଓ ଅବୁଝାମଣାର ଝାଟିମାଟି । ପାଦ ଦେବା ପୂର୍ବରୁ ଦେହସାରା କାଦୁଅର ଆସ୍ତରଣ, ନା ଧୋଇ ହୁଏ, ନା ପୂର୍ବପରି ମନକୁ ସୁନ୍ଦର ଓ ସୁକୁମାର କରିହୁଏ । ଇଟା ଯୋଡୁ ଯୋଡୁ ଲେଖା ହୋଇଯାଉଛି ଭାଙ୍ଗିଯିବାର କବିତା - "ଘର ସନ୍ଧିରୁ ଖସୁଚି ବାଲି / ଉଇହୁଙ୍କା ମୁଣ୍ଡ ଟେକୁଚି ଅବାରିତ / ମାଳମାଳ ବେଙ୍ଗଙ୍କ ରଡ଼ିରେ / କାନ ଫାଟିଯାଉଚି / ଗଛଡାଳରୁ ବାଦୁଡ଼ିର ଚେଁଙ୍କ / କୋଇଲି, ହଳଦୀ ବସନ୍ତ କାହାନ୍ତି ? / ଶବ୍ଦର କୋଳାହଳରେ ଘର ଦୋହଲୁଚି / ଏ କ'ଣ ଭୂମିକମ୍ପ / ନା ଆଉ କିଛି ଅଘଟଣ ?" (ଘର)

ବିରୋଧାଭାସରେ ଏ ଘରର ମୂଳଦୁଆ, କାନ୍ଥ ଓ ଛାତର କଳ୍ପନା । ନ ହେଲେ କି ଯେଉଁ ଘରଟିକୁ ଚାଲିଯାଉଥିବା ପଥଚାରୀମାନେ ଆଶ୍ଚର୍ଯ୍ୟ ଅନୁଭୂତିରେ ଚାହିଁ ରହନ୍ତି, ଘରର ଐଶ୍ୱର୍ଯ୍ୟ ବାସ୍ତବ କି ନୁହେଁ ବୋଲି ଭ୍ରମରେ ପଡ଼ନ୍ତି, ତାହା ପୁଣି କିପରି ଏତେ ବିପର୍ଯ୍ୟୟର ସାକ୍ଷୀ ହୋଇଥାଏ । ଭଙ୍ଗୁର ସ୍ୱପ୍ନର ସାକାର ରୂପ ପାଲଟିଯାଏ ? ଛାତରୁ ଝାଟିମାଟି ଖସିପଡ଼େ, କୋଉଠୁ ଆସେ କାଦୁଅର ଛିଟା ? ଏ କ'ଣ କବିଙ୍କ ସମଗ୍ର ଜୀବନପଥର ମାନଚିତ୍ର । ଏ କ'ଣ କବିଙ୍କ କବିତ୍ୱ ? ଏ କ'ଣ ପ୍ରେମ ଆଉ ପାପର ଅବିଚ୍ଛିନ୍ନ ଅନୁଭୂତି ! ଗୋଟେପଟେ ପାପର ବିକଟ ସ୍ୱର, ଆରପଟେ ପ୍ରେମର ଓଁକାର । କାହାକୁ ଛାଡ଼ି ହୁଏନା, କାହା ସହ ଯୋଡ଼ି ହୋଇ ହୁଏନା । ଜଣେ ପ୍ରତିଷ୍ଠିତ ବ୍ୟକ୍ତିର ବ୍ୟକ୍ତିତ୍ୱ, ପୁଣି ଗୋଟେ ପ୍ରତାରିତ ପ୍ରେମିକର ଭାଗ୍ୟ କିଏ କାହାଠାରୁ ଉଣା କି ଅଧିକ, ଏକଇ ଜୀବନରେ ବିଚାର କରିହୁଏନି । ତେଣୁ ଯେତିକି ସେ ବୁଝନ୍ତି ଭାବପ୍ରବଣ ହୋଇ ପ୍ରେମର ସଂଜ୍ଞା, ସେତିକି ପ୍ରାଜ୍ଞ ମନ ତାଙ୍କର ତଉଲିପାରେ ପାପର କାଳିମାକୁ - "ପାପ ଏକ ଆଦିମ ପିପାସା / ମଣିଷର ଦେହ ଏବଂ ମନ ସହ ବିବେକର ବିଯୁକ୍ତ ମୀମାଂସା ।" (ପାପ)

ଅନୁତାପ, ଅନୁଶୋଚନା ଓ ମୃତ୍ୟୁ ଚିନ୍ତାର ତ୍ରୟି ଭାବନାରେ 'ସୀମାନ୍ତଭାବନା' ଲିଖିତ । କବି ଅପର୍ଣ୍ଣା ମହାନ୍ତିଙ୍କୁ ଏହି କବିତାଟି ନିବେଦିତ ହୋଇଥିଲେ ବି କବିତାର ଉପଲକ୍ଷ୍ୟ କବିଙ୍କ ପ୍ରେମାସ୍ପଦା ପତ୍ନୀ । ଯିଏ ବାର୍ଦ୍ଧକ୍ୟ କାଳରେ ଖୁବ୍ ବେଶୀ ମନେପଡ଼ନ୍ତି । "ତୁମର କର୍କଶତାରେ ତଥାପି କେଉଁଠି / ଛପି ରହିଥିଲା କି ଅବୋଧ ରହସ୍ୟ / ଯାହା ମୋତେ ଏକାକୀ ବଞ୍ଚିବା ପାଇଁ / ଦେଉଥିଲା ଯଥେଷ୍ଟ ସାହସ ।" (ସୀମାନ୍ତଭାବନା) ଜୀବନର ସୀମାନ୍ତରେ ଉପନୀତ ହୋଇଥିବା ମଣିଷ ଯୁଦ୍ଧ ନୁହେଁ, ଘୃହେଁ ସାଲିସ୍ । ପ୍ରାଚୁର୍ଯ୍ୟ, ଅହଂକାର ଅଥବା ପ୍ରଲୋଭନର ମହୁଫେଣା ଛାଡ଼ି ସବୁ ମହୁମାଛି କେବେଠାରୁ ଉଭାନ ହୋଇଗଲେଣି । ପଛକୁ ଅନେଇଲେ ପାପ ଓ କାରୁଣ୍ୟର କଳା ଛାଇ । କବି ସ୍ୱୀକାର କରନ୍ତି ଜୀବନଲୋଭୀ ମଣିଷଟିଏ, ଜୀଇଁବାର ଉପାଦାନ ଖୋଜି ପାପ ପାଖରେ ପହଞ୍ଚି ଯାଇଛି ହୁଏତ । ସେ ପାପରୁ ମୁକ୍ତି ପାଇଁ ପୁଣି ତହଲବିକଳ ହୋଇଛି । ଗୈରିକ ଭାବନାରେ ସନ୍ନ୍ୟାସୀ ପରି ଘରଦ୍ୱାର ଲୋଭ ମୋହ ତ୍ୟାଗ କରିବାକୁ ପାଦ ଉଠାଇଛି ।

କିନ୍ତୁ ପାପର ଆକାର ନେଇ ଆସିଥିବା ପ୍ରେମିକା ନୁହେଁ ପତ୍ନୀ ହିଁ ମଧୁକ୍ଷରା ମୁହୂର୍ତ୍ତର ସ୍ମୃତି ହୋଇ ଆସନ୍ତି । ମେଲାଣି ବାଟ ଓଗାଳି ମନର ଦରଜା ପାଖରେ ଉଭା ହୁଅନ୍ତି । କିନ୍ତୁ ପୁନଃ ସଂସାରର ରମ୍ୟ ନୀଡ଼ଟିଏ ଗଢ଼ିବା ପାଇଁ କାହିଁ ଅବକାଶ ? "ମୁଁ ତ ଏବେ ସୀମାନ୍ତରେ / ଆଉ କେତେଦିନ ପରେ ନିଭିଯିବ ଶିଳଟରୁ ସବୁ ଦାଗ / ଓଲଟି ପଡ଼ିବ ନାବ ଭଉଁରୀରେ / ମୁଁ ଆଉ କାହିଁକି ହେବି ଭାର କାହା ଜୀବନରେ / କାହିଁକି ବୁଣିବି ଆଉ ବାନ୍ଧପାଟ / ଏ ମୁହୂର୍ତ୍ତ ସେଥିପାଇଁ ନୁହେଁ ଅନୁକୂଳ ।"(ସୀମାନ୍ତଭାବନା) କବିତା 'ଛିନ୍ନମେଘ' ଓ 'ଚୈତକ', 'ମୋହ'ରେ ବି ସେଇ ଏକା ବିଷାଦବୋଧ, ମୋହ ଓ ମୋହଭଙ୍ଗର କାରୁଣ୍ୟ । "ମୋ ଦେହର ଗୋଧୂଳିରୁ ନିଭୁ ଆଜି / ଦିନାନ୍ତ କୁହୁକ / ସାପ ଯେହ୍ନେ ଛାଡ଼ିଆସେ ଦୂରପଥେ ତା' ଦେହ ନିର୍ମୋକ / ଫୁଲର ପୁଲକ ରାତି, କଦମ୍ବର ଉଲ୍ଲାସ ଅଧୀର / ମୋ ଦେହରେ ନ କରୁ ବିଭୋର ।" (ମୋହ)

'ଧୂପ'ର ପ୍ରଣୟ ଅଧୀର କବି 'ହେମଶସ୍ୟ'ର ପ୍ରାଚୁର୍ଯ୍ୟରେ ବିଭୋର ହେବା ପରି କବି ଶ୍ରୀଯୁକ୍ତ ଶତପଥୀ ଜୀବନଯାତ୍ରାରେ ଭରି ରହିଥିବା ବିଷକୁ ଫିଙ୍ଗି ହଜିଯାଇଥିବା ଅମୃତ ଲଗ୍ନକୁ ଖୋଜି ହୁଅନ୍ତି । ମନେହୁଏ ପତ୍ନୀଙ୍କ ସହିତ ବିତିଥିବା କୈଶୋର ଓ ତାରୁଣ୍ୟର ମୁହୂର୍ତ୍ତ ହିଁ ତାଙ୍କୁ ମୋହାଛନ୍ନ କରେ । ସ୍ମୃତିର ପାହାଚରେ ଫେରନ୍ତି ପଛକୁ । ପୁଣି ନିରାଶ ଭିତରୁ ପ୍ରଣୟର ଗୀତ ଗାଆନ୍ତି କବି ।

- "ମମତା ପାତ୍ର କେତେ ଦେଇଥିଲି ଢାଳି / ସେ ସବୁ କି ଆଜି ନିଃଶେଷ, ଅବଶେଷ / ଅମୃତଲଗ୍ନ ଆଉ କି ଆସିବ ନାହିଁ / ଜୀବନ ପାତ୍ରେ / ଭରି ରହିଥିବ ବିଷ ?" (ଗୋଟିଏ ସନେଟ୍)

'ବାର୍ଦ୍ଧକ୍ୟ ପ୍ରେମ' କବିତାରେ ବୃଦ୍ଧ ମଣିରେ ପ୍ରେମକୁ ସମାଜ ସ୍ୱୀକୃତି କିମ୍ବା ସମ୍ମାନ ଜଣାଉ ନଥିବାର ଅବଶୋଷ ପ୍ରକାଶ କରନ୍ତି । ପୁଣି ପ୍ରତିବାଦର ସ୍ୱର ତୀବ୍ର ହୋଇଉଠେ । ବାର୍ଦ୍ଧକ୍ୟ ଅବସ୍ଥାରେ ବି ତାରୁଣ୍ୟ, ହୃଦୟରେ ବଞ୍ଚିରହିପାରେ । ଏହି ସମୟରେ ପ୍ରେମ ପରି ଶାଶ୍ୱତ ସଂପଦକୁ ଜଣେ ମଧ୍ୟ ସାଇତି ରଖିପାରେ । କବି ନିଜ ଉକ୍ତିର ଯଥାର୍ଥତା ପ୍ରତିପାଦନ କରିବା ପାଇଁ ପାରସ୍ୟ କବି ଓମରଖୟାମ୍‌ଙ୍କ ଉଦାହରଣ ଦିଅନ୍ତି ଏବଂ ଓଟସ୍‌ମ୍ୟାନ୍‌ଙ୍କ ବକ୍ତବ୍ୟ "It is the worst thing that an old man can be a lover" କୁ ଭୁଲ୍ ବୋଲି ବିବେଚନା କରନ୍ତି । ପ୍ରେମର ମହିମା ଓ କ୍ଷମତାକୁ ପ୍ରକାଶ କରି କହନ୍ତି ସ୍ନାୟୁ ବରଫହ୍ରଦ ସଦୃଶ କଠିନ ହୋଇଯାଇଥିଲେ ବି ପ୍ରେମ ସୂର୍ଯ୍ୟକିରଣ ପରି ତାକୁ ତରଳାଇ ଦେବାକୁ ସକ୍ଷମ ହୋଇଥାଏ - "ପ୍ରାଣ ତା'ର ନିଃସ୍ୱ ନୁହେଁ, ହୋଇପାରେ ସ୍ନାୟୁ ତା' ବରଫ ହ୍ରଦ / ତଥାପି ସେ ଲୋଡ଼େ ସୂର୍ଯ୍ୟାଲୋକ / ତରଳିଯିବାକୁ ବହି ତୃଷାତୁରା କାହାପାଇଁ / ପାପ ନୁହେଁ ଦେହ ଦାହ, / ହୃଦୟ ତା ନୁହେଁ ଶୂନ୍ୟକୋଷ / ବରଂ ପ୍ରେମର ସେ ପ୍ରବୀଣ ରଇତ ।" (ବାର୍ଦ୍ଧକ୍ୟ-ପ୍ରେମ) ପ୍ରେମର ଜୟଗାନ କରିବାରେ ଉଦ୍ଧୃତ ଏହି ଧାଡ଼ି କେତୋଟିରେ କାବ୍ୟିକତା ରହିଥିବାବେଳେ, ଶ୍ରୀଯୁକ୍ତ ଶତପଥୀଙ୍କ ବ୍ୟକ୍ତିଗତ ଜୀବନର ଅସହାୟତା, କୌଣସି ତରୁଣୀ ପ୍ରତି ପ୍ରେମାସକ୍ତ ହୋଇପଡ଼ିବାର ଅତ୍ୟଧିକ ମୋହ ଉକ୍ତ କବିତାର ଲାବଣ୍ୟକୁ ଚୂରମାର୍ କରିଦେଇଛି । ପୁରୁଷ ବୃଷଭ ଓ ପୁଷ୍ପିତା ଗାଭୀର ଉଦାହରଣକୁ ମାନବିକ ପ୍ରେମ ଓ ସଂପର୍କ ସହିତ ଯୋଡ଼ି ଦେବାରେ ପ୍ରଣୟପାତ୍ରଟି ଭାଙ୍ଗିରୁଜି ଖପରା ହୋଇଯିବା ପରି ମନେହୁଏ । ବୃଷଭ କି ବୁଝେ ପ୍ରେମରେ ହଜିଯିବା, ମଜିଥିବା, ଝୁରିହେବା, ଝରିପଡ଼ିବା, ପାଇବା, ହଜେଇବାର ନିବିଡ଼ ଅନୁଭବକୁ । ଠିକ୍ ଏହି ଉଦାହରଣ ପରେ ପରେ ସତ୍ୟବତୀ ଓ ପରାଶରଙ୍କୁ ଆଣି ଉଭା କରାଇବା ଆଦୌ ଯଥାର୍ଥ ମନେହୁଏ ନାହିଁ । ଦେହର ଦାହ ଯେତେ ତୀବ୍ର ହେଲେବି, ଲଜ୍ଜାର କୁହୁଡ଼ି ସୃଜିବାକୁ କେବେ କ'ଣ ଭୁଲି ପାରିଥିଲେ ମହାକବି ବ୍ୟାସ ?

କିନ୍ତୁ କେହି ସ୍ୱୀକାର କରୁ କି ନ କରୁ କେହି ସ୍ୱୀକୃତି ଦେଉ କି ନ ଦେଉ ପ୍ରେମ ଓ ଯୌନତା ଦେହ ମନର ଦେହଳୀ ଡେଇଁ ଚାଲିଯିବା ଆଦୌ ସହଜ ନୁହେଁ, ଏପରିକି ସ୍ୱାଭାବିକ ମଧ୍ୟ ନହୋଇପାରେ । ବାର୍ଦ୍ଧକ୍ୟ ଅବସ୍ଥାରେ ତାରୁଣ୍ୟକୁ ବଞ୍ଚାଇ ରଖିପାରିବା କବି, କଳାକାର ଭଳି ସୂକ୍ଷ୍ମଜୀବୀ ମଣିଷର ଚମତ୍କାରିତା । କଳାକୁ କଳାରେ ଗୁନ୍ଥିଲେ ହିଁ ମାଳାଟିଏ ହୋଇପାରେ । ଏହି ଶବ୍ଦ ଗୁନ୍ଥିବାରେ ମାଳାକାରର କୁଶଳତା ଓ ନିପୁଣତାକୁ ବାଦ୍ ଦେଇ ବିଚାର କରାଯାଇନପାରେ । ଏହି ପରିପ୍ରେକ୍ଷୀରେ 'ପ୍ରବଳ ବର୍ଷା' କବିତାଟିକୁ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ । କବିଙ୍କ କାବ୍ୟ ଗୁନ୍ଥନର ଚମତ୍କାରିତା ବେଶ୍ ବାରି ହୋଇପଡ଼େ ଏହି କବିତାରେ । ସକାଳର ନରମ ମୁହଁକୁ ପଖାଳି ଯେବେ ବର୍ଷା ଆସେ, ପ୍ରବଳ ବର୍ଷା; ଓଦା ହୋଇଯାଏ କବିର ହୃଦୟ । ପ୍ରାଣକୁ ପ୍ରେମିଳ କରିଦିଏ

ଶ୍ୟାମଳ ମେଘମାଳ । ବୁନ୍ଦା ବୁନ୍ଦା ମେଘ ବିନ୍ଦୁରେ କବିତାର ଶବ୍ଦ ମଣିମୁକ୍ତା ହୋଇ ଝରିପଡ଼େ ମନର ଅଗଣାରେ । କବି କ'ଣ ! ଅକବି ବି କବି ହୁଏ । ମୁନି ମନ ବି ଅଧୀର ହୋଇପଡ଼େ । ଆନମନା କରେ ତାକୁ ବର୍ଷା । ଅପସରୀ ସାଜି ତା'ର ଧ୍ୟାନ ଭଗ୍ନ କରେ । ବାର୍ଦ୍ଧକ୍ୟରେ ଯୌବନର କୁସୁମ କୋରକର ମହମର ବାସ୍ନା ମହକିଯାଏ । ପ୍ରବଳ ବର୍ଷା, ପ୍ରଳୟ ନୁହେଁ ପ୍ରଣୟର କାବ୍ୟ ରଚନା କରିବାକୁ କବିକୁ ଉଛନ୍ନ, ଅଧୀର କରେ । ତେଣୁ ସମଗ୍ର କାବ୍ୟ ସଂକଳନର ଶ୍ରେଷ୍ଠ ପ୍ରଣୟ କବିତା ଭାବେ 'ପ୍ରବଳ ବର୍ଷା'କୁ ଗ୍ରହଣ କରାଯାଇପାରେ । ବୟସ କି ବାର୍ଦ୍ଧକ୍ୟ ଯେତେ ପ୍ରତିରୋଧ କଲେ ବି ଦୁକାନାରୀ ଆସିବାକୁ ବାରଣ କରିପାରେନି ପୁଣି ଏଇ ବର୍ଷା । "ଆଜି ସକାଳୁ ମେଘର ପହ୍ଲାରେ / ଅଗଣିତ ବତ୍ସାର କୋମଳ ମୁଖାଘାତ / ଏଇ ବର୍ଷିବ ବର୍ଷିବ ହୋଇ / ଏବେ ଅକାଡୁଚି ମୂଷଳ ବାରିପାତ / ମୋ ଆଗ ରାସ୍ତାରେ ମଇଳା ପାଣିର ସୁଅ / ଆଜି କାଗଜ ଡଙ୍ଗାଟିଏ ଭସାଇ ପାରନ୍ତି କି ?" (ପ୍ରବଳ ବର୍ଷା) ଚମତ୍କାର ଚିତ୍ରକଳ୍ପ । ଦୁଧିଆଳୀ ଗାଈ ସାଜେ ମେଘ, ଯାହାର ଚିରରେ ଅଗଣିତ ବତ୍ସାର କୋମଳ ମୁଖାଘାତ । ଅମର ଜୀବନର, ଅନନ୍ୟ ସୃଜନର, କୋମଳ ବାତ୍ସଲ୍ୟର ଚିତ୍ରିତ ବିମ୍ବ କବି ମନରେ ପ୍ରତିଫଳିତ ହୁଏ । ପୁନଶ୍ଚ କାଗଜଡଙ୍ଗା ସାଜି ଭିଜି ଭିଜି ପ୍ରଣୟ ବିଧୂର କବି ମନ ପହଁଞ୍ଚିଯାଏ ପ୍ରଣୟିନୀ ପାଖରେ ।

ବର୍ଷା ଦୂର କରେ ନିଃସଙ୍ଗତା । କଳ୍ପନାରେ କଳ୍ପିତା ନାରୀ ସ୍ମୃତିର ବୋଇତରେ ଆସି ଉଭା ହୋଇଯାଏ । ତେଣୁ କବି ମନେ କରନ୍ତି - "ଏ ବର୍ଷାରେ ମୁଁ ଏକାକୀ / କିନ୍ତୁ ନିଃସଙ୍ଗ ନୁହେଁ କଦାପି / ତୁମର ପ୍ରତିଟି ସ୍ମୃତି, କଥା ଓ କାହାଣୀ / ମୋ ମନରେ ଲହଡ଼ି ମାରୁଚି / କ୍ଷିପ୍ର, ଅତି କ୍ଷିପ୍ର ପୁଣି ଅଚଞ୍ଚଳ; / ବର୍ଷାର ନିଜସ୍ୱ ଅତିଶୟରରେ ମୁଁ / ବାଲକୋନି ଛାଡ଼ି ଶେଯରେ ଲୋଟୁଚି ।" (ପ୍ରବଳ ବର୍ଷା) । ଘନ ଆଲିଙ୍ଗନ ମୁଦ୍ରାରେ ପରସ୍ପରର ଉଷ୍ଣତାକୁ ଅନୁଭବ କରୁ କରୁ ପ୍ରଣୟିନୀ ନଦୀ ପରି ଛଳ ଛଳେଇଯାଏ ତ ପ୍ରଣୟ ପାଗଳ କବି ବିଗଳିତ ହୋଇଯାନ୍ତି ଚାନ୍ଦ୍ରାୟଣରେ ଉତପ୍ତ, ଶାଣିତ ଲୋଳିତ ଇନ୍ଦ୍ରନୀଳମଣି ପ୍ରାୟେ । ବାର୍ଦ୍ଧକ୍ୟ କାମ୍ୟକବନରେ ରୂପାନ୍ତରିତ ହୁଏ । ବୟସର ବ୍ୟବଧାନ ଉଭେଇଯାଏ । ପ୍ରେମଠାରୁ କାମର ବ୍ୟବଧାନ ଆଦୌ ରହେ ନାହିଁ, ବରଂ - "ନଦୀଟିଏ ପ୍ରଖର ପ୍ରବାହରେ / ବହି ଆଣୁଥିବା ସବୁ କର୍ଦ୍ଦମାକ୍ତକୁ / ଦେହରେ ବୋଳି / ଲବଣାକ୍ତ ସାଗର ଧନ୍ୟ ହୋଇଯାଏ / ପ୍ରଭାତର ଲାଲ୍ କିରଣରେ / ଶିଥିଳ ଲହରୀ ଉଲ୍ଲାସରେ ନାଚୁଥାଏ ।" (ଆଉ ଜଣେ ରମଣୀ)

ପ୍ରେମିକା ଓ ପତ୍ନୀ, ଜଣେ ପ୍ରବାଳ ଅନ୍ୟ ଜଣେ ମୁକ୍ତା । ଜଣେ ଦରଜା ବାହାରେ ରହେ ତ ଜଣେ କୋଠରୀ ଭିତରେ ଶୁଏ । ତେଣୁ ହିଁ ଦ୍ୱନ୍ଦ୍ୱ । ସୀମାହୀନ ଯନ୍ତ୍ରଣାରେ ଆକ୍ରାମାକ୍ରା ହୁଅନ୍ତି କବି । "ମୁକ୍ତାର ଧାରୁଆ ଶାଣ ମୋତେ କରେ ଲହୁଲୁହାଣ ତ / ପ୍ରବାଳର ଶୀତଳତା ଖୋଜି ଖୋଜି ସୀମାନ୍ତେ ସ୍ତବ୍ଧକିତ ।" (ମୁକ୍ତା ଓ ପ୍ରବାଳ) ଏହି ଦ୍ୱିଧା

ବିଭକ୍ତ ବ୍ୟକ୍ତିସତ୍ତାର ସ୍ୱର କବିତା 'ଦୁଇଧାର'ରେ ଲକ୍ଷ୍ୟ କରାଯାଏ । "ଦୁଇଟି ନଦୀର ସ୍ରୋତ, ଦୁଇଧାର, ଦୁଇଟି ସରଣୀ / ମୁଁ ଦେଖୁଚି ଶେଷ ଆଉ ଅଶେଷର ପ୍ରୀତି ଉଦୀପନା / ଶୁଣାଇ କି ହୁଏ ମିଳି ସେତୁହୀନ ପ୍ରାଣର କାହାଣୀ / ସେ ଦୁଇ ନଦୀରେ ମିଶେ ଧରା ଆଉ ସ୍ୱର୍ଗର କାମନା ।" (ଦୁଇଧାର) ପ୍ରାଣର ଦ୍ୱନ୍ଦ୍ୱ, ହତାଶା ଓ ଗ୍ଲାନି ଉଭୟଙ୍କଠାରୁ ପୁଣି ମୁହଁ ଫେରାଇ ନେବାକୁ ଚାହାଁନ୍ତି କବି ।

'ଚିର ହାହାମୟ ଓ ଛାର ଜୀବନ / ଜୀବନ ନୁହଁଇ ଜୀବନ୍ତ ମରଣ ।" କବିବର ରାଧାନାଥଙ୍କଠାରୁ ଅଧିକ ବିଷାଦମୟ ସ୍ୱର ଶୁଭିଯାଏ ଆଉ ଥରେ "ବନର କପୋତ ଦୁଇ ରଚିଥିଲୁ ଏ ଯେଉଁ କୁଳାୟ / ସେଠି ଯଦି ଅବସାଦ, ଅସନ୍ତୋଷ ଖାଲି ପରିତାପ / ବରଂ ଭଲ ଏକା ଏକା ଚାଲିବାରେ / ଅତିକ୍ରମ କରିବାରେ / ଏ ସଂସାର ଜୀବନ୍ତ-ବିସ୍ମୟ ।" (ସେଦିନ ପାଇଁ ଗୋଟିଏ କବିତା)

ବିଷାଦ ବିମର୍ଷରେ କବି ପାଦେ ପାଦେ ଆଗେଇ ଯାଆନ୍ତି ମୃତ୍ୟୁପଥକୁ । ବୈଦିକ ମନ୍ତ୍ରଧ୍ୱନିକୁ ଉଚ୍ଚାରଣ କରନ୍ତି 'ମରଣ ତୁହୁଁ ମମ ଶ୍ୟାମ ସମାନ' । ସାଲିସ୍ କରନ୍ତି ଦୁଃଖ ସହିତ ବିଷାଦ ଓ ବିରହ ସହିତ । ମୃତ୍ୟୁକୁ ପ୍ରେମିକାର ରମଣୀୟ କୋଳ ବୋଲି ମାନି ନିଅନ୍ତି । ତେଣୁ କବି ଯେଉଁ ପତ୍ନୀକି ପ୍ରେମିକାର ବିପ୍ରଲମ୍ଭ ଜାଲରେ ପଡ଼ି ଛଟପଟ ହୁଅନ୍ତି, ସେ ହିଁ ମୃତ୍ୟୁର ଜାଲ ତ ସେ ହିଁ ଜୀବନ ପାଲଟିଯାଏ ।

"ତୁମେ ନଷ୍ଟ ନଦୀର ନାରୀ / ମୁଁ ଉଜୁଡ଼ି ଯାଇଥିବା କ୍ଷେତର ରଇତ / ତୁମେ ଫୁଲର ମହକରେ ଉଚ୍ଚାଟନ / ମୁଁ ଫଳରେ ପ୍ରଲୁବ୍ଧ ପଙ୍ଗପାଳ / ଜୀବନର ହାର୍‌ଜିତ୍‌ରେ / ଆଣ୍ଠୁମାଡ଼ି ପଡ଼ିଥିବା ମଣିଷ ଉପରେ / କରାଯାଏ କି ମିଳିତ ଆକ୍ରମଣ ।" (ଜୀବନର ସାମଗାନ) ମୃତ୍ୟୁ ଆଡ଼କୁ ଚଞ୍ଚଳପାଦ ପକେଇଥିବା ମଣିଷଠାରେ ରାଗ, ରୋଷ କି ଆକ୍ରମଣ କରିବା ମାନେ ତ ଅସହାୟ ଅସ୍ତ୍ର ଧରି ନ ଥିବା ମଣିଷ ଉପରେ ଆକ୍ରମଣ । କିନ୍ତୁ କାହାକୁ ଏ ଅନୁନୟ "ପାଚିଲା ତାଳ ଝଡ଼ିଯିବାକୁ ଗଛରେ / ଅପେକ୍ଷା କରିଥିବାବେଳେ / ତା' ଆଡ଼କୁ ଫୋପଡ଼ ମାରିବା ହାସ୍ୟାସ୍ପଦ ନୁହେଁକି ? / ସେ ତ ଆପଣା ଛାଏଁ ଝଡ଼ିଯିବାକୁ ରହିଛି ଉଦ୍ୟତ / ତାକୁ ଝଡ଼ିଯିବାକୁ ଅପେକ୍ଷା କର ।" (ଜୀବନର ସମାଗାନ) ଦୁଃଖ, କ୍ଷୋଭ, ଅଭିମାନର ଏ ଭାଷା କାହାପାଇଁ ? ବ୍ୟକ୍ତିଗତ ଜୀବନର ତିକ୍ତତା, ସନ୍ତାନମାନଙ୍କର ଉପେକ୍ଷାର ଏହି କାବ୍ୟିକ ଅଭିବ୍ୟକ୍ତି ? ନା, ସଂସାର ଜାଲରେ ପଡ଼ି କଳବଲ ହେଉଥିବା ପ୍ରତିଟି ମଣିଷକୁ ନିରୀହ ପ୍ରତି ରଣହୁଙ୍କାର ଦେଉଥିବା ଯୁଦ୍ଧରଙ୍କକୁ ଏ କବିତା ପ୍ରତୀକିତ କରେ ।

ମଣିଷର ମନଠାରୁ ଅଧିକ ଭୟଙ୍କର ଯୁଦ୍ଧକ୍ଷେତ୍ର ଆଉ କେଉଁଠି ଅଛି ? କିନ୍ତୁ ସେ ଯୁଦ୍ଧକ୍ଷେତ୍ରରେ ଠିଆ ହୋଇ ଅର୍ଜୁନଙ୍କ ପରି ବିଷାଦବୋଧରେ ଘାରି ହୁଅନ୍ତି କବି । ଯୁଦ୍ଧକ୍ଷେତ୍ରର ଖୁବ୍ ନିକଟରେ ମୃତ୍ୟୁର ଡାକରା । ତା' ପାଖରେ ଶତ୍ରୁ, ମିତ୍ର ସଭିଏଁ ସମାନ ।

ପ୍ରେମୀ ମଣିଷଟି ଶୁଣିପାରେ ଯୁଦ୍ଧନାଦ ପୁଣି ମୃତ୍ୟୁର ଡାକ । ତେଣୁ ନିଜ ଭିତରେ ଶାନ୍ତ ନିର୍ବିକାର ସାମୁଦ୍ରିକ ଆବେଗ ଫୁଟିଉଠେ । ଭିକାରୀ ପରି ସେ ମାଗେ ଚୁମା, ପ୍ରତିବଦଳରେ ବଢ଼େଇଦିଏ ଢାଲ, ବର୍ଚ୍ଛା ଓ କୁନ୍ତ । ଯୁଦ୍ଧକ୍ଷେତ୍ରରେ ସନ୍ଧି ଭିକ୍ଷା କରୁଥିବା ନାୟକ ନିରାଶ ହୁଅନ୍ତି । କଳ୍ପନାରେ ଅସଂଖ୍ୟ ଚୁମାର ଜୁଆରକୁ ପ୍ରତ୍ୟକ୍ଷ କରୁଥିବା କବି ଅପ୍ରେମରେ ଅକର୍ମଣୀଳା ପାଲଟି ଯାଆନ୍ତି । ଜଣକ ପରେ ଜଣେ ମେଲାଣି ମାଗି ଫେରିଯାଆନ୍ତି ତିନିଜଣ ପ୍ରେମିକା । କିଏ ଏହି ତିନି ପ୍ରେମିକା ? ବୟସର ତିନୋଟି ଅବସ୍ଥା କୈଶୋର, ତାରୁଣ୍ୟ ଓ ପ୍ରୌଢ଼ କାଳକୁ ପ୍ରତୀକିତ କରନ୍ତି ନାହିଁକି ? ଚତୁର୍ଥ ଅବସ୍ଥା ବାର୍ଦ୍ଧକ୍ୟରେ କବି ନିଶ୍ଚୟ ଦେହର ଡାଳରୁ ବିଦାୟ ଦେଇଥିବା ସେହି ପ୍ରେମିକା ପରି ଆଦରଣୀୟ ସମୟକୁ ସ୍ମରଣ କରନ୍ତି । ଏମାନେ ବିଦାୟ ନେବାପରେ ସବାଶେଷ ପ୍ରେମିକା ଭାବରେ ନିଶ୍ଚୟ ଆସିବ ମୃତ୍ୟୁ । "ସେତେବେଳେ ତୁମେମାନେ କେହି ନଥିବ; / ମେଲାଣି ବେଳା ଆଉ ଉଚ୍ଛୁର ହେବାର ନୁହେଁ / ସାରା ଦେହରେ ବର୍ଷି ଯାଉଥିବା ଫୁଲ / ଓ ଅନେକ ଲୁହର ହିମକାକରରେ ଜଡ଼ସଡ଼ ହୋଇ / ତା' ସାଙ୍ଗରେ ଯିବାକୁ ହେବ ।" (ମେଲାଣି ବେଳା) ଏହି ଏକା ଅନୁଚିନ୍ତା କବିତା 'ଜୀବନର ଉପାନ୍ତ'ରେ ଲକ୍ଷ୍ୟ କରାଯାଏ । 'ପ୍ରେମର ପ୍ରତୀକ'ରେ ବି ବଡ଼ କାବ୍ୟିକ ଆବରଣ ମଧ୍ୟରେ ମୃତ୍ୟୁ ଭାବନାଟି ଶବଳିତ ହୋଇଛି । ଜୀବନ ଡାଳର ସରାଗରେ ବସାବାନ୍ଧିଥିବା ମୃତ୍ୟୁର ଚଢ଼େଇ ପାଲଟିଯାଇଛି ପରମ ଆଗ୍ରହରେ ପ୍ରେମର ପ୍ରତୀକ ।

ପ୍ରେମ, ଜୀବନ ଓ ମୃତ୍ୟୁ ଚେତନା ଭିନ୍ନ ଅନ୍ୟ କେତୋଟି କବିତାରେ ଜାତୀୟ ପ୍ରୀତି, ବିଭୁବୋଧ ଓ ସମାଜ ଚିତ୍ରର ପ୍ରତିଫଳନ ଘଟିଛି । କବିତା 'ଅଭିଜ୍ଞାନ', କବି ସଚ୍ଚିରାଉତରାୟଙ୍କ 'ପ୍ରେମ ଓ ଜୀବନ' ପ୍ରତି ପ୍ରତିକ୍ରିୟା ରଖିଥିବାବେଳେ 'ପ୍ରେମର ସଂଜ୍ଞା'ରେ ନେତାଙ୍କ ଛଳବାଜି ଓ ଭୋଟ ରାଜନୀତିର ଶଠ ପ୍ରେମ ସଂପର୍କରେ ଦୃଷ୍ଟିପାତ କରିଛନ୍ତି । 'ଦନ୍ତାଘାତ ସମୟର' କବିତାଟିରେ ସମୟର ନିଷ୍ଠୁରତାକୁ ଉଖୁରେଇ ଦେଖାଇ ଦିଅନ୍ତି କବି – "ମନେହୁଏ ସମୟ ତ ସବୁଠାରୁ ନିଷ୍ଠୁର ଶୋଷକ / ଯୌବନର ରକ୍ତତେଜ, ପରିପୁଷ୍ଟ ପେଶୀର ବିଶ୍ୱାସ / ପାହାଡ଼ ଟାଳିବା ନିଶା, ଅବା ଡେଇଁ ନିଆଁରେ ପଶିବା / ସବୁକିଛି ହଜିଯାଏ ।" ତେବେ ମଣିଷର ସବୁ ଟାଣ, ଅଭିମାନ, ଯୁଦ୍ଧ ଜିତିବାର ନିଶା ସମୟର ଦନ୍ତାଘାତେ ନିଶ୍ଚିହ୍ନ ହୋଇଯିବାରେ ମଣିଷ ତ ପରମ ପ୍ରଶାନ୍ତି ଟିକକ ଲାଭ କରିପାରେ । ହେଲେ କବି ସ୍ୱୀକାର କରନ୍ତି ନାହିଁ ସମୟର ସହଯୋଗକୁ, ବରଂ କହନ୍ତି – "ସମୟର ତୀକ୍ଷ୍ଣ ଦାନ୍ତ ମନକୁ ଖଣ୍ଡିଆ କରେ / ଦାଗ ରଖେ ଅଧିକରୁ ଅଧିକ / ଯାହାର ଦୃଷ୍ଟିରେ ଯାହା ନୁହେଁ ପ୍ରତିହତ ।" 'ରାଣୀ ମହୁମାଛି' କବିତାରେ ରିରଂସାର ପ୍ରଲୋଭନକୁ ପ୍ରତ୍ୟକ୍ଷ କରନ୍ତି କବି । ପାପ ଓ ରିରଂସା ସତେଅବା ହାତ ଧରାଧରି ହୋଇ ଜାଲ ବିଛାଇଥାନ୍ତି । ଯେଉଁ ଜାଲରେ ଥରେ ପଡ଼ିଗଲେ ଅପଥଚାରୀ ମଣିଷ ଆଉ ଫେରିବାର

ବାଟ ପାଏନି । "ଜାଣୁଛି ଆଜି ହିଁ ହେବ ମୋର / ମୃତ୍ୟୁର ଶୁଭାରମ୍ଭ ଓ ବଞ୍ଚିବାର ଶେଷ ଲଗ୍ନ / ଆଜି ହିଁ ରମଣ ଅନ୍ତେ ମୋତେ / ମୃତ୍ୟୁ ଶଯ୍ୟାରେ ଶୁଆଇ ଦିଆଯିବ / ତଥାପି କାହିଁକି ସେ ପ୍ରଲୋଭନକୁ / ଏଡ଼ାଇ ପାରୁନି ?" (ରାଣୀ ମହୁମାଛି) ଅଭିଶପ୍ତ ଦମ୍ପତି ପଣ୍ଡୁ ଆଉ ମାଦ୍ରିଙ୍କ ମିଥ୍ ଏଇଠି ହୁଏତ ପାଠକ ସାମ୍‌ନାକୁ ଆସି ପାରିଥାନ୍ତା, କିନ୍ତୁ ତାହାକୁ ଏଡ଼େଇ ଦେଇଛନ୍ତି କବି ।

'କବିତାର ସୂଚୀ'ରେ କବି ମନରେ କବିତାର ଜନ୍ମ, ଲାଳନ ସଂପର୍କରେ ସୂଚନା ଦିଅନ୍ତି କବି । ଅନେକ କବିତା ଭିତରେ ଥାଏ ଅକବିତା, ଅନେକ କାବ୍ୟନାୟିକା ବି ହୋଇପାରନ୍ତି ଅବାଞ୍ଛିତା, ଅନେକ ଘଟଣା ବି ଏଡ଼ାଇଯିବାର କଥା ଥିଲା କିନ୍ତୁ ତାକୁ ସାଇତି ରଖିଦିଏ କବିତା - "ଯେତେ ଭ୍ରମ, ଭ୍ରାନ୍ତି, ଯେତେ ନେଇଥିଲା କବିତାର ରୂପ / ସେସବୁ ଏ ବୟସରେ ମନେହୁଏ ନିହାତି ବେଖାପ ।" (କବିତାର ସୂଚୀ) ସମୟ, ସଂପର୍କ ଓ ମଣିଷ ଜାତି ପ୍ରତି ବିଶ୍ୱାସହୀନତାର କଥା କହେ କବିତା 'ଆରଣ୍ୟକର କବିତା' । ସ୍ୱର୍ଗତ କବି ଅନନ୍ତ ପଟ୍ଟନାୟକଙ୍କ ସ୍ମୃତିରେ ଲେଖା ହୋଇଥିବା କବିତାଟିରେ କବି ଅନନ୍ତ ପଟ୍ଟନାୟକଙ୍କ ବୈପ୍ଳବିକ ସ୍ୱରର ଆଭାସ ବେଶ୍ ସ୍ପଷ୍ଟ । ମୃତ୍ୟୁର ଅରଣା ମଇଁଷି ଉପରେ ବସି ଜୀବନ ସଞ୍ଜରେ ଚାଲିଯିବା କବି ଦୀପକ ମିଶ୍ରଙ୍କ ପାଇଁ ଉତ୍ସର୍ଗୀତ କବିତା 'ତିନୋଟି ସ୍ୱପ୍ନ', ମୃତ୍ୟୁର ଗୈରିକ ଭାବନାରେ ଗତିଶୀଳ ହୋଇଛି । "ଅପେକ୍ଷା କର ହେ ବନ୍ଧୁ / ମୁଁ ଆଦୌ ଯିବାପାଇଁ ତୁମ ସଂଗେ / ନୁହେଁ ବିଚଳିତ / ତୁମେ ଯଦି ଆସିଅଛ ସଞ୍ଜ ଆଗୁ / ପୁଣି କିଆଁ ରାତି ଶେଷୁ / ଯିବାପାଇଁ ହେଉଚ ଉଚ୍ଚାଟ ?"

ଜାତୀୟ ଜୀବନର ଦୁର୍ଗତି, ମଣିଷର ଅଧୋଗତି ଓ ପ୍ରାଣର ଆରତି 'ଜଗନ୍ନାଥ' କବିତାରେ ଜଗତର ନାଥକୁ ସମ୍ବୋଧନ କରି କହନ୍ତି କବି - "କାହିଁ ମାନବତାବୋଧ / ରାଷ୍ଟ୍ରପ୍ରୀତି, / ମାତୃଭାଷା ପ୍ରୀତି / ହରାଇଲୁ ଆମେ ସବୁ ଭାରତୀୟ / ଏ ଯେଉଁ ସଂପତ୍ତି ×× ତୁମେ ସବୁ ଦେଖୁଚ ନା ନାହିଁ / କାହିଁକି ନୀରବ ତୁମେ ପ୍ରତିକାର ହୀନ / ତୁମେ ତ ଅଥର୍ବ ନୁହଁ ।" କବିତା 'ନବବର୍ଷା' ଏ ସ୍ୱର ହୋଇଛି ପୁନଃ ଉଚ୍ଚାରିତ । ବ୍ୟକ୍ତିଗତ ପ୍ରେମପ୍ରଣୟ ବାହାରେ ଲେଖା ହୋଇଥିବା ଏହି ଦେଶପ୍ରେମ, ଜାତିପ୍ରେମ ଭିତ୍ତିକ କବିତା ମଧ୍ୟରେ 'ପୂଜନୀୟ', 'ହିମାଳୟର ପତ୍ର' ଓ 'ଜନଗଣ ମାଗେ' କବିତା ଅନ୍ୟତମ । କବିତାର ମୋହ ଅପେକ୍ଷା ପ୍ରାଜ୍ଞ ବିଚାର, ବୌଦ୍ଧିକ ଚେତନାର ପ୍ରତିଫଳନ ଲକ୍ଷ୍ୟ କରାଯାଏ ଏହି କବିତାରେ ।

ଜୀବନ, ମୃତ୍ୟୁ, ସମୟ ଓ ପ୍ରେମର ପ୍ରତୀକ ଭାବରେ ଅଦୃଶ୍ୟ 'ତୁ'ର ପରିକଳ୍ପନା । ତା' ଆଖିର ନୀଳନିଶାରେ ତେଣୁ ଉଛନ୍ନ କବି ମନ । ମତ୍ସ୍ୟକନ୍ୟା ପ୍ରାୟ ତା'ର ଆମନ୍ତ୍ରଣ - "କୂଳକୁ ଫେରିବା ପାଇଁ ଚେଷ୍ଟା ମୋର ହୁଏ ପ୍ରତିହତ / ତା' ପ୍ରେମର ନୀଳନିଶା ମୋତେ କରେ ଆହୁରି ଆସକ୍ତ / ହାତଗୋଡ଼ ହୋଇଯାଏ ଯଷ୍ଟିପରି / ନିଷ୍କ୍ରିୟ, ଅବଶ /

ସମୁଦ୍ର ନେଉଚି ଟାଣି କେଉଁଆଡ଼େ / ନାହିଁ ଅବଶୋଷ / ଆଖିର ସମୁଦ୍ର ତା'ର ଅପଲକ ଅପାଙ୍ଗରେ ନେଉଚି ଭସାଇ / ମୁଁ ଖାଲି ଭାସୁଚି ଏକ ଶବପରି / ତା' ମମତା ଛଳନାରେ ନିଜକୁ ବୁଡ଼ାଇ ।" (ତା' ଆଖିର ନୀଳନିଶା)

ଏକମାତ୍ର କବିତା 'ବବିନା'ରେ ସମୟ, ସମାଜ ଓ ପରିପାର୍ଶ୍ୱ ପ୍ରତି ସଚେତନ ରହିଛନ୍ତି କବି । ଏକ ଧର୍ଷିତା ଝିଅର ମୃତ୍ୟୁ କବିଙ୍କୁ କରିଛି ବ୍ୟଥିତ ଓ ଗଭୀର ମର୍ମାହତ । ଝିଅଟିକୁ ଅସହାୟା ଝିଅମାନଙ୍କ ପ୍ରତୀକ ରୂପରେ ଚିତ୍ରିତ କରିଛନ୍ତି । ମଣିଷ ରୂପୀ ରାକ୍ଷସମାନଙ୍କର ଗଣଧର୍ଷଣର ଶିକାର ହୋଇ ଅକାଳରେ ଝରିପଡ଼ିଥିଲା ସେହି ନିଷ୍ପାପ କଳିକା । ଯାହା ଦିନେ ଥରାଇ ଦେଇଥିଲା ସମାଜର ପ୍ରାଣତନ୍ତ୍ରୀ । ପାଲଟି ଥିଲା ଦୁଃଖ, କାରୁଣ୍ୟର ପ୍ରମୁଖ ଖବର । ପ୍ରଶ୍ନବାଚୀ ଟାଣିଥିଲା ରାଜନେତାଙ୍କ ସଚ୍ଚୋଟ ପଣିଆ ଉପରେ । ଯେଉଁ ମାଂସଲୋଭୀ ଗୃଧ୍ରମାନେ ତାକୁ ଘେରି ଧର୍ଷଣ କରିଥିଲେ, ବେକ ଚିପି ତା' ନରମ ଓଠରୁ କଥା ଛଡ଼େଇ ନେଇଥିଲେ, ସେମାନଙ୍କ ପ୍ରତି ଶ୍ରୀଯୁକ୍ତ ଶତପଥୀଙ୍କ ପ୍ରାଣରେ ପ୍ରବଳ ଘୃଣା ଭରିଯାଇଛି । ତା'ର କାବ୍ୟିକ ପରିଭାଷା ହୋଇଛି ଏହି କବିତା 'ବବିନା' । "କେହି ଜଣେ ତ କହି ପାରିଥା'ନ୍ତା / ବଞ୍ଚିଥାଉ ଏ ସୁନ୍ଦର ହଳଦୀବସନ୍ତ / ତାକୁ ମାରିଦେଲେ ଶୂନ୍ୟ ହୋଇଯିବନି ଗଛବୃଛ / ସ୍ଥିର ହୋଇଯିବନି ମଳୟ, ନଦୀ ଓ ସମୁଦ୍ର ? / ତାଙ୍କ ଗାଁର ମାଟି ଉପରେ / ଆଉ ଉଡ଼ି ଉଡ଼ି ଯିବେ କି ସୁନ୍ଦର ପ୍ରଜାପତି / ଅବା କେଉଁ ସୁକୁମାର ସୁନେଲି ବିହଙ୍ଗ / ଆଉ ଶୁଣାଯିବ କି ତା' ମଧୁର କୂଜନ ?" (ବବିନା)

ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥୀ ଓଡ଼ିଆ ସାହିତ୍ୟର ବିଶିଷ୍ଟ ଗବେଷକ, ବିଦଗ୍ଧ କାବ୍ୟ ସମାଲୋଚକ ଭାବେ ଦେଶ ପ୍ରତିଷ୍ଠା ଅର୍ଜନ କରିଥିଲେ ବି କବିତା ତାଙ୍କର ଆଦ୍ୟ କୈଶୋରର ପ୍ରେମ, ଯୌବନରେ ପ୍ରଣୟିନୀ ଓ ବାର୍ଦ୍ଧକ୍ୟରେ ସବାସାନ ପ୍ରେମିକା ଭାବରେ ପରମ ଆଦରଣୀୟା ହୋଇ ରହିଛି । ବୌଦ୍ଧିକ ଚର୍ଚ୍ଚାରେ ହୁଏତ କ୍ଳାନ୍ତି ଆସିପାରେ, ମାତ୍ର କବିତା କେବେ କବିକୁ କ୍ଳାନ୍ତ କରେ ନାହିଁ । କବିତା ଆସେ ସବୁ ଭାବପ୍ରବଣ ମୁହୂର୍ତ୍ତରେ ଏକାନ୍ତ ପ୍ରିୟ ସଖୀ ହୋଇ । ଅନ୍ତରଙ୍ଗ ପଣରେ ଆସନ ପାତେ କବିର ହୃଦୟରେ । ଭଙ୍ଗା ମନକୁ ଯୋଡ଼ିବାକୁ ଚେଷ୍ଟା କରେ । ଆପଣା ପଣରେ ହୃଦୟର କ୍ଷତକୁ ଆଉଁଷିବାକୁ ଆଗଭର ହୁଏ । ତାହାହିଁ ହୋଇଛି କବିତା ଗ୍ରନ୍ଥ 'ସବାଶେଷ ପ୍ରେମିକା'ରେ ।

■ *ଓଡ଼ିଆ ବିଭାଗ*
*ଡି.ଡି.ସି.ଇ., ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର*
*ମୋ: ୯୯୩୭୭୩୦୮୫୦୧*

# ଆଧୁନିକ ଓଡ଼ିଆ କବିତାକୁ 'ଇସ୍ତାହାର'ର ଦାନ

♦ ଡକ୍ଟର ସଂଙ୍ଗିତା ମିଶ୍ର

ଆଧୁନିକ ଓଡ଼ିଆ କବିତାକୁ 'ଇସ୍ତାହାର' ପତ୍ରିକାର ଅବଦାନ ପ୍ରସଙ୍ଗରେ ଆଲୋଚନା କରିବା ସମୟରେ ଯେଉଁ ପ୍ରାଥମିକ ଦୁଃସ୍ଥିତିଟି ଦୃଷ୍ଟିକୁ ଆସେ, ତାହା ହେଉଛି ପ୍ରୟୋଗବାଦୀ ଓଡ଼ିଆ କବିତା । ଉତ୍ତର ପଚ୍ଛଶ ପରବର୍ତ୍ତୀ ଦୁଇଦଶନ୍ଧିର କବିତାକୁ ସାଧାରଣତଃ ପ୍ରୟୋଗବାଦୀ କବିତା ନାମରେ ନାମିତ କରାଯାଇଛି । ଓଡ଼ିଆ କବିତା କ୍ଷେତ୍ରରେ ଆନ୍ତର୍ଜାତିକ କାବ୍ୟାଦର୍ଶର ବ୍ୟାପକ ପ୍ରୟୋଗ ଏବଂ ରୂପାୟନ ହେତୁ ଆଲୋଚ୍ୟ କାଳକୁ ପ୍ରୟୋଗବାଦୀ କାଳ ରୂପେ ଗ୍ରହଣ କରାଯାଇଥାଏ । ଆଙ୍ଗିକ ଓ ଆତ୍ମିକ ବିଭବରେ ପାଶ୍ଚାତ୍ୟ ସାହିତ୍ୟାଦର୍ଶର ପରୀକ୍ଷା ନିରୀକ୍ଷା କରାଯାଇଥିବା ହେତୁ କେହି କେହି ଏହି ସମୟଖଣ୍ଡକୁ ପରୀକ୍ଷାଧର୍ମୀ କବିତାର ସମୟ ଭାବେ ମଧ୍ୟ ଗ୍ରହଣ କରିଥାନ୍ତି । ସମୟ, ପରିବେଶ ଓ ପରିସ୍ଥିତିର ପରିବର୍ତ୍ତନ ସଙ୍ଗେ ସଙ୍ଗେ କବିତାର ପରିବର୍ତ୍ତନ ଏକ ଅବଶ୍ୟମ୍ଭାବୀ ସତ୍ୟ । ଫରାସୀ କଂକ୍ରିଟ୍ କବି Pierre Garnier ନୂତନ କବିତାର ଆବିର୍ଭାବକୁ ନେଇ ଯେଉଁ ସୁଚିନ୍ତିତ ମତାମତ ପୋଷଣ କରନ୍ତି ତାହା ଏଠାରେ ପ୍ରଣିଧାନଯୋଗ୍ୟ ।

If the poem has changed
It is that I have changed
It is that we all have changed
It is that the universe has changed." (୧)

(କଂକ୍ରିଟ୍ କବିତା-ଏକ ଅଧ୍ୟୟନ - ଶ୍ରୀ ସାତକଡ଼ି ହୋତା ୨୪ଶ ବର୍ଷ-ଷଷ୍ଠ ସଂଖ୍ୟା-ଝଂକାର) ଉପରୋକ୍ତ ମନ୍ତବ୍ୟର ସତ୍ୟାସତ୍ୟ ଉତ୍ତର ପଚ୍ଛଶ କାଳୀନ ଓଡ଼ିଆ କବିତାରେ ସ୍ପଷ୍ଟ ପ୍ରତିଭାତ ହୁଏ । କିନ୍ତୁ ପରୀକ୍ଷା ନାମରେ ଆଲୋଚ୍ୟ କାଳରେ ଅପପ୍ରୟୋଗ ଏବଂ ଅତିପ୍ରୟୋଗବାଦୀ କବିତାର ବିଲକ୍ଷଣ ରୂପେ କବିତାକୁ ଅକବିତାରେ ପରିଣତ କରିଥିଲା । ସପ୍ତମ ଦଶକ ବେଳକୁ ସାଂପ୍ରତିକ କବିତା ବିରୁଦ୍ଧରେ ବିକ୍ଷୋଦ୍‌ଗାର ଏକ ସାହିତ୍ୟିକ ଫେସନ୍‌ରେ ପରିଣତ ହୋଇଥିଲା । ଅବଶ୍ୟ ବିଗତ ଦୁଇ ଦଶନ୍ଧି ମଧ୍ୟରେ ରଚିତ କବିତା ବିରୁଦ୍ଧରେ ହୋଇଥିବା ଦୁର୍ବୋଧ୍ୟତାର ଅଭିଯୋଗକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । କାବ୍ୟଭାବନରେ ଅନ୍ତରଙ୍ଗ ଅନୁଭୂତିର ଅଭାବ, ପ୍ରକାଶନରେ ପରିଚ୍ଛନ୍ନତା ଅଭାବ, ଅତିରିକ୍ତ ବ୍ୟକ୍ତିଗତତା (esotericism) ଏବଂ ବୌଦ୍ଧିକତାର ଦ୍ରୁତ ବିନ୍ୟାସ ଏହି କବିତାକୁ ବଦନାମ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ୧୯୭୦ ମସିହା

ବେଳକୁ ପରୀକ୍ଷା ଓ ପ୍ରୟୋଗର ପଙ୍କିଳ ସରସୀ ମଧ୍ୟରେ କେତୋଟି କବିତା ପଙ୍କଜ ପ୍ରସ୍ଫୁଟିତ ହେବାକୁ ଆରମ୍ଭ କରିଦେଇଥିଲା । ଅର୍ଥାତ୍ ସପ୍ତମ ଦଶକ ବେଳକୁ ଅନେକ ରସୋତ୍ତୀର୍ଣ୍ଣ କବିତା ରଚିତ ହୋଇସାରିଥିଲା । ଏବଂ କବିମାନେ ଆହରଣ ଓ ସମୀକରଣର ଏକ ଦୃଢ଼ ଭୂମି ପ୍ରତିଷ୍ଠା କରିସାରିଥିଲେ । କବିତାର ଏହି ବିବର୍ତ୍ତିତ ଧାରାକୁ ସଞ୍ଚିତ କରି ରଖିବା ନିମନ୍ତେ ଗୋଟିଏ ପାତ୍ରର ଆବଶ୍ୟକତା ଥିଲା । ଯେପରି ଆକାଶର ଜଳବିନ୍ଦୁକୁ ଧାରଣ କରିବା ନିମନ୍ତେ ଧରଣୀ ପ୍ରାକୃତିକ ବା କୃତ୍ରିମ ଆଧାର ପ୍ରସ୍ତୁତ ରଖିଥାଏ, ଠିକ୍ ସେହିପରି କାବ୍ୟରସକୁ ଧାରଣ କରିବା ନିମନ୍ତେ ଗୋଟିଏ ଆଧାର ଆବଶ୍ୟକ ହୋଇଥାଏ । ସପ୍ତମ ଦଶକ ବେଳକୁ କବି ଓ କାବ୍ୟରସିକ ମାନଙ୍କ ନିମନ୍ତେ ଏକ ସୁଦୃଢ଼ ଓ ସମ୍ମାନଜନକ ଆଧାରର ଅଭାବ ଅନୁଭୂତ ହେଉଥିଲା । 'ଇସ୍ତାହାର' ପତ୍ରିକା ଥିଲା ଆଧୁନିକ କବିତାର ଏହି ପାତ୍ର, ଆଧାର ଓ ମଞ୍ଚ । ବର୍ତ୍ତମାନ ଏହି ପତ୍ରିକାର ଜନ୍ମ ଓ ଶୈଶବ ସଂପର୍କରେ କେତୋଟି ତଥ୍ୟ ପରିବେଷଣ କରିବା ଏକାନ୍ତ ଆବଶ୍ୟକ ।

## 'ଇସ୍ତାହାରର ଜନ୍ମ ଓ ଶୈଶବ' :-

୧୯୭୪ ମସିହା ନଭେମ୍ବର ମାସରେ ପ୍ରୟୋଗବାଦୀ ଓଡ଼ିଆ କବିତାର ଆଧାରଭୂମି ରୂପେ ଏହି ପତ୍ରିକାଟି ଆତ୍ମପ୍ରକାଶ କରିଥିଲା । 'ଇସ୍ତାହାର' ପ୍ରଫେସର ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥୀଙ୍କର ମାନସ ସନ୍ତାନ ହେଲେହେଁ ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ ସଂପାଦକ ଥିଲେ ଶ୍ରୀଯୁକ୍ତ ଶତପଥୀଙ୍କର ଅନ୍ୟତମ ପ୍ରିୟ ଛାତ୍ର ଶ୍ରୀ ଭାଗୀରଥି ସାହୁ । ମୁଖବନ୍ଧରେ ଗୁରୁଦେବଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରି ସଂପାଦକ କୁହନ୍ତି, "ମୋର ଗୁରୁଦେବ ଅଧ୍ୟାପକ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥୀଙ୍କର ଅକୁଣ୍ଠିତ ସାହାଯ୍ୟ, ସହାନୁଭୂତି ଓ ସ୍ନେହବୋଳା ପ୍ରେରଣା ହେତୁ ଏହାର ପ୍ରକାଶନ ସମ୍ଭବ ହୋଇପାରିଥିବାରୁ ମୁଁ ତାଙ୍କ ନିକଟରେ ଚିର ଋଣୀ ।" ଏହି ପ୍ରଥମ ସଂଖ୍ୟାଟି ଆଧୁନିକ ଓଡ଼ିଆ କବିତାର ପ୍ରାୟୋଗିକ ଆଲୋଚନା ଓ ଅନୁଶୀଳନକୁ ଗୁରୁତ୍ୱ ଦେଇଥିଲା । 'ଅନନ୍ତ ଶୟନ', 'ସରୀସୃପ', 'ଗୋବର ଗଣେଶ', 'ପିଙ୍ଗଳାର ସୂର୍ଯ୍ୟ', 'ସମୁଦ୍ର', 'ନଈ ପହଁରା', 'ନାମକରଣ', 'ନକଲି ସାମ୍ରାଜ୍ଞୀ', 'ରଣ ସଂଗୀତ', 'ଓଲଟ ବଂଶୀ', 'ମଳା ନଈ', 'ମ୍ଳେଚ୍ଛ', 'ପ୍ରତିଧ୍ୱନି', 'ତିନୋଟି ମଙ୍ଗଳ ଗୀତ ଓ ସକାଳ' ଏହି ପରି ଚଉଦଗୋଟି କବିତାର ପ୍ରାୟୋଗିକ ଆଲୋଚନା ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ ସମାଲୋଚକ, ସ୍ୱନାମଧନ୍ୟ ଅଧ୍ୟାପକ ଓ ବିଜ୍ଞ ପାଠକମାନଙ୍କ ଦ୍ୱାରା କରାଯାଇଥିଲା । ପତ୍ରିକାଟିର ସର୍ବଶେଷ ଅଧ୍ୟାୟରେ, 'ଉତ୍ତର ସତୁରୀର ଓଡ଼ିଆ କବିତା, ଏକ ସ୍ପର୍ଶକ ଚିନ୍ତା' ଶୀର୍ଷକରେ ଶ୍ରୀଯୁକ୍ତ ଶତପଥୀଙ୍କ ଦ୍ୱାରା ରଚିତ ଏକ ସମାଲୋଚନାତ୍ମକ ନିବନ୍ଧ ପ୍ରକାଶିତ ହୋଇଥିଲା । କାରଣ ଏହି ସମାଲୋଚକ ଅନୁଭବ କରିଥିଲେ ଯେ ଗତ ଦଶନ୍ଧିରେ ଅର୍ଥାତ୍ ଉତ୍ତର ଷାଠିଏରେ ପ୍ରୟୋଗବାଦୀ ଓଡ଼ିଆ କବିତାର ସ୍ଥିତି ଓ

ଆଭିମୁଖ୍ୟ ସଂପର୍କରେ ଯେଉଁ ଆକ୍ରମଣ ହୋଇଥିଲା ସତୁରୀ ଦଶକର କବିମାନେ ସେହି ଆହ୍ୱାନର ମୁକାବିଲା କରିବା ପାଇଁ ଆଗେଇ ଆସିଛନ୍ତି । ନିତ୍ୟାନନ୍ଦ ପତି, ପ୍ରସନ୍ନ କୁମାର ମିଶ୍ର, ସୌରୀନ୍ଦ୍ର ବାରିକ, ପ୍ରତିଭା ଶତପଥୀ, ଦୁର୍ଗାଚରଣ ପରିଡ଼ା, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ବ୍ରଜନାଥ ରଥ, ବ୍ରହ୍ମୋତ୍ରୀ ମହାନ୍ତି, ଫନୀ ମହାନ୍ତି, ପ୍ରସନ୍ନ କୁମାର ପାଟ୍ଟଶାଣୀ, ବଂଶୀଧର ଷଡ଼ଙ୍ଗୀ, ଅମରେଶ ପଟ୍ଟନାୟକ, ସରୋଜ ରଂଜନ ମହାନ୍ତି ଆଦି କବିମାନଙ୍କ ମଧ୍ୟରେ ସେ ଯେଉଁ ପ୍ରଚଣ୍ଡ ଶକ୍ତି ସାମର୍ଥ୍ୟ ପରିକଳ୍ପନା କରିପାରିଥିଲେ 'ଇସ୍ତାହାର'ର ପରବର୍ତ୍ତୀ ସଂସ୍କରଣ ଗୁଡ଼ିକ ଥିଲା ତା'ର ସାକାର ରୂପ ।

'ଇସ୍ତାହାର'ର ପ୍ରଥମ ସଂଖ୍ୟା ଆଜି ଓଡ଼ିଆ ସାହିତ୍ୟ ଭଣ୍ଡାରର ଅନ୍ୟତମ ନିଧି । କବିତାର ଆଲୋଚନା, ସମାଲୋଚନା ତଥା ପତ୍ରିକାର ଇତିହାସରେ ଏହା ଏକ ମାଇଲ୍ ଖୁଣ୍ଟ । ୧୯୭୪ ମସିହା ନଭେମ୍ବର ମାସରେ ଶ୍ରୀଯୁକ୍ତ ଭାଗୀରଥି ସାହୁଙ୍କ ସଂପାଦନାରେ ପ୍ରକାଶିତ ଏହି ଗୋଟିଏ ସଂଖ୍ୟା ପରେ ଏହି ପତ୍ରିକାଟିକୁ ପୁନଃ ପ୍ରକାଶିତ ହେବା ପାଇଁ ଚାରିଗୋଟି ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା । ପତ୍ରିକାଟିର ନିର୍ବାସନର ମୁଖ୍ୟ କାରଣ ଥିଲା ସମାଲୋଚକମାନଙ୍କର ଅସହଯୋଗ । ସମ୍ଭବତଃ ଛାତ୍ର ଭାଗୀରଥି ସାହୁ ଏହି ଗୁରୁଦାୟିତ୍ୱ ବହନ କରିବାକୁ ସମର୍ଥ ହୋଇପାରି ନାହାନ୍ତି । ଫଳତଃ ଚାରିବର୍ଷ ପରେ ୧୯୭୮ ମସିହା ଫେବୃଆରୀ ମାସରେ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନାରେ ପ୍ରାୟୋଗିକ ଆଲୋଚନା ଓ ସମୀକ୍ଷା ସମୃଦ୍ଧ ତ୍ରୟମାସିକ ପତ୍ରିକାଭାବେ ଏହା ଆତ୍ମପ୍ରକାଶ କରେ । ଧୀରେ ଧୀରେ ପାଠକ ମାନଙ୍କର ଅନୁରୋଧ ଏବଂ ମୃଦୁ ତାଡ଼ନାର ବଶବର୍ତ୍ତୀ ହୋଇ ଏହା ଆଧୁନିକ ଓଡ଼ିଆ କବିତା ସହ କ୍ଷୁଦ୍ରଗଳ୍ପ, ରମ୍ୟରଚନା, ଭ୍ରମଣ କାହାଣୀ ଆଦି ଅନ୍ୟାନ୍ୟ ସାହିତ୍ୟିକ ବିଭବକୁ ଆପଣାର କଳେବର ମଧ୍ୟରେ ସ୍ଥାନ ଦେଇଛି । ଏପରିକି ନାଟ୍ୟ ସାହିତ୍ୟକୁ ନେଇ ଉନ୍ନତ ସମାଲୋଚନା ମଧ୍ୟ ସ୍ଥାନିତ ହୋଇଛି । ଏସବୁ ବିବିଧ ସାହିତ୍ୟ ସ୍ୱରୂପକୁ ଅଙ୍ଗୀଭୂତ କରିଥିଲେ ହେଁ ଓଡ଼ିଆ କବିତା ପ୍ରତି ଏହାର ଶ୍ରଦ୍ଧା ଓ ଦାୟବଦ୍ଧତା ସର୍ବାଧିକ ଥିଲା ।

୧୯୭୪ ମସିହାକୁ 'ଇସ୍ତାହାର'ର ଜନ୍ମବର୍ଷ ରୂପେ ଗ୍ରହଣ କରାଗଲେ, ଏହି ପ୍ରବନ୍ଧ ରଚନା କାଳକୁ ଅର୍ଥାତ୍ ୨୦୧୭ ମସିହାରେ ତା'ର ଅୟୁଷ ହେବା କଥା ୪୩ ବର୍ଷ । କିନ୍ତୁ ଏହାର ପ୍ରତିଷ୍ଠାତା ସଂପାଦକ ଚାରିବର୍ଷର ବ୍ୟବଧାନକୁ ବାଦ୍ ଦେଇ 'ଇସ୍ତାହାର'ର ଜନ୍ମଲଗ୍ନ ୧୯୭୮ ମସିହାରୁ ଗଣନା କରିଛନ୍ତି । ତେଣୁ ପତ୍ରିକାଟି ବର୍ତ୍ତମାନ ୩୯ ବର୍ଷରେ ପଦାର୍ପଣ କରିଛି । ଦୀର୍ଘ ଚାରିଦଶନ୍ଧି ଧରି ଏହି ପତ୍ରିକା ଆଧୁନିକ ଓଡ଼ିଆ କବିତା ନିମନ୍ତେ କିପରି ଅନୁରକ୍ତି, ଆଦର, ପୃଷ୍ଠପୋଷକତା ଓ ପୃଷ୍ଠଭୂମି ଯୋଗାଇଛି ତାହାର ତାଲିକା ନିମ୍ନରେ ପ୍ରଦାନ କରାଗଲା ।

୧. ଆଧୁନିକତାର ଏନ୍ଟ୍ରିଶାଳ 'ଇସ୍ତାହାର'
୨. ସଂପାଦକୀୟ ପୃଷ୍ଠାରେ ଅଧୁନିକ କବିତା ସଂପର୍କରେ ସୁଚିନ୍ତିତ ମତାମତ
୩. ସମାଲୋଚନା-ଧର୍ମୀ ଅନୁବାଦର ଭୂମିକା
୪. ଉଚ୍ଚକୋଟୀର ସାକ୍ଷାତ୍‌କାର
୫. ସାହିତ୍ୟ ସମାଗ୍ଭର
୬. ଅନୁବାଦ କବିତା ଓ ଇସ୍ତାହାର
୭. ଗୀତିକବିତା ଓ ଇସ୍ତାହାର

## ୧. ଆଧୁନିକତାର ଏନ୍ଟ୍ରିଶାଳ ଇସ୍ତାହାର :-

'ଇସ୍ତାହାର' ପତ୍ରିକାକୁ ଆଧୁନିକତାର ଏନ୍ଟ୍ରିଶାଳ ରୂପେ ଗ୍ରହଣ କରିଛନ୍ତି ଓଡ଼ିଆ କଥାସାହିତ୍ୟର ଅନ୍ୟତମ ଯଶସ୍ୱୀ କଥାକାର ଡକ୍ଟର ରାମଚନ୍ଦ୍ର ବେହେରା । 'ସାରସ୍ୱତ ଆକଳନ' ପୁସ୍ତକର 'ଇସ୍ତାହାର'ର ସଂପାଦକ ପ୍ରବନ୍ଧରେ ଡକ୍ଟର ବେହେରା କୁହନ୍ତି, "ଏପରି ଏକ ଅଭିନନ୍ଦନୀୟ ମଞ୍ଚ ପ୍ରସ୍ତୁତ କରିବାର ବିରଳ କୃତିତ୍ୱ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କର । ସାଂପ୍ରତିକ ସାହିତ୍ୟକୁ ଅସ୍ପୃଶ୍ୟ ବୋଲି ବିବେଚନା କରୁଥିବା ରକ୍ଷଣଶୀଳତାକୁ ପରାହତ କରିବାରେ ସେ ଏହି ପତ୍ରିକା ଜରିଆରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ମୌଳିକ ଗଳ୍ପ ଓ କବିତା ସହିତ ଯେଉଁ ପ୍ରବନ୍ଧ ପ୍ରକାଶିତ ହେଉଅଛି ଏଇ ପତ୍ରିକାରେ, ତାହା ପରିଣତ କରିପାରିଛି ଏହାକୁ ଆଧୁନିକତାର ଏକ ଏନ୍ଟ୍ରିଶାଳରେ । ସେହିଠାରେ ଭୂମିଷ୍ଠ ହେଉଛନ୍ତି ଅନେକ ସମାଲୋଚକ ତଥା ଗବେଷଣାତ୍ମକ ପିଏଚ୍.ଡି. ନିବନ୍ଧ ।" (ପୃ-୧୬୭-ସାରସ୍ୱତ ଆକଳନ) ବର୍ତ୍ତମାନ କଥାକାର ବେହେରାଙ୍କ ଉକ୍ତିର ଯଥାର୍ଥତା ପ୍ରତିପାଦନ ନିମନ୍ତେ ନିମ୍ନୋକ୍ତ ବିଷୟଗୁଡ଼ିକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ ।

୧.୧ : ଇସ୍ତାହାରରେ ପ୍ରକାଶିତ ସମାଲୋଚନାତ୍ମକ ପ୍ରବନ୍ଧ
୧.୨ : ସମ୍ଭାବନା ପ୍ରଦର୍ଶନ କରୁଥିବା ତରୁଣ ସ୍ରଷ୍ଟାଙ୍କ କୃତି ଉପରେ ଆଲୋକପାତ
୧.୩ : ସାଂପ୍ରତିକ କାଳର କବିମାନଙ୍କ ପ୍ରତି ଉଦାର ଓ ଉତ୍ସାହପ୍ରଦ ଦୃଷ୍ଟିଭଂଗୀ
୧.୪ : ଉଚ୍ଚକୋଟୀର ପୁସ୍ତକ ସମୀକ୍ଷା

## ୧.୧ : ଇସ୍ତାହାରରେ ପ୍ରକାଶିତ ସମାଲୋଚନାତ୍ମକ ପ୍ରବନ୍ଧ:-

'ଝଂକାର' ସଦୃଶ ପ୍ରତିଷ୍ଠିତ ଏବଂ ଇସ୍ତାହାର ଠାରୁ ୩୦ ବର୍ଷ ବଡ଼ ସମୃଦ୍ଧ ପତ୍ରିକାଟିଏ ଥାଉ ଥାଉ ଆଲୋଚ୍ୟ ପତ୍ରିକାଟିକୁ କଥାକାର ବେହେରା ଆଧୁନିକତାର ଏନ୍ଟ୍ରିଶାଳ ରୂପେ ଗ୍ରହଣ କରିବାର ପ୍ରମୁଖ କାରଣ ଏଥିରେ ପ୍ରକାଶିତ ସମାଲୋଚନାତ୍ମକ ପ୍ରବନ୍ଧ । 'ଝଂକାର' ସଂପୂର୍ଣ୍ଣ ଓଡ଼ିଆ ସାହିତ୍ୟ ପ୍ରତି ପ୍ରତିବଦ୍ଧ ଥିବାବେଳେ 'ଇସ୍ତାହାର'

କେବଳ ଆଧୁନିକ ସାହିତ୍ୟର ପୃଷ୍ଠପୋଷକତା କରିଥିଲା । 'ଇସ୍ତାହାର'ର ପ୍ରାରମ୍ଭିକ ସଂଖ୍ୟାଗୁଡ଼ିକରେ ଆମେ ସାରଳା, ପଞ୍ଚସଖା, କବି ସମ୍ରାଟ ଏପରିକି ରାଧାନାଥଙ୍କୁ ଖୋଜିଲେ ହତାଶ ହେବା । ବହୁ ପରବର୍ତ୍ତୀ କାଳରେ ଅର୍ଥାତ୍ ୧୯୯୬ ମସିହା ଜୁନ୍ ମାସ 'ଇସ୍ତାହାର'ରେ ପ୍ରଫେସର ଡକ୍ଟର ଦାଶରଥୀ ଦାସଙ୍କ 'ପ୍ରେମର ଅଭିଷେକ' ଶୀର୍ଷକ ପ୍ରବନ୍ଧରେ ରାଧାନାଥ ଓ ନଗେନ୍ଦ୍ରବାଳାଙ୍କ ସଂପର୍କକୁ ନେଇ ଏକ ଭିନ୍ନ ସ୍ୱାଦର ଆଲୋଚନା ଦେଖିବାକୁ ମିଳିଥିଲା । ସମ୍ଭବତଃ ଏହିପରି ଏକ ଉଚ୍ଚକୋଟୀର ଏବଂ ଭିନ୍ନ ସ୍ୱାଦର ସମାଲୋଚନା ଛାପିବା ନିମନ୍ତେ 'ଇସ୍ତାହାର' ପତ୍ରିକାକୁ ତା'ର ଘୋଷିତ ସମୟସୀମା ଡେଇଁ ପଶ୍ଚାତ୍‌ମୁଖୀ ହେବାକୁ ପଡ଼ିଥିଲା । ଦୀର୍ଘ ୩୯ ବର୍ଷର ଏହି ପତ୍ରିକାକୁ ତନ୍ନ ତନ୍ନ କରି ଖୋଜିଲେ ଆପଣ କାଁ ଭାଁ ହାତଗଣତି କେତୋଟି ସମାଲୋଚନାତ୍ମକ ପ୍ରବନ୍ଧ ପାଇବେ, ଯେଉଁଥିରେ ପ୍ରାଚୀନ ବା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ସମୀକ୍ଷା କରାଯାଇଥିବ ।

'ଇସ୍ତାହାର'ର ସମାଲୋଚନାତ୍ମକ ପ୍ରବନ୍ଧ ସଂପର୍କରେ ଆଲୋଚନା କରିବା ସମୟରେ ଦ୍ୱିତୀୟ ବର୍ଷ / ଦ୍ୱିତୀୟ ସଂଖ୍ୟାଟିକୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ଏହି ସଂଖ୍ୟାରେ ୬ ଗୋଟି ପ୍ରବନ୍ଧ ପ୍ରକାଶିତ । ସେଗୁଡ଼ିକ ହେଉଛି-

- ନିଃସଂଗତାବୋଧ ଓ ଆଧୁନିକ ଓଡ଼ିଆ କବିତା (ଅଧ୍ୟାପକ ସୌରୀନ୍ଦ୍ର ବାରିକ)
- ସାଂପ୍ରତିକ ଓଡ଼ିଆ କବିତାର ବିଲକ୍ଷଣ ଓ ଭବିଷ୍ୟତ (ଅଧ୍ୟାପକ କୁମୁଦ ଚନ୍ଦ୍ର ଦାଶ)
- ଶରତ କାବ୍ୟ ମାନସ : ଏକ ଦୃଷ୍ଟିପାତ (ଅଧ୍ୟାପକ ବୈଷ୍ଣବ ଚରଣ ସାମଲ)
- ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ କବିତା : ଦୃଷ୍ଟି ଓ ଦର୍ଶନ (ଶ୍ରୀ ହୃଷୀକେଶ ମଲ୍ଲିକ)
- ଗାଳ୍ପିକ ଅଖିଳମୋହନ : ଦୃଷ୍ଟି ଓ ଦର୍ଶନ (ଅଧ୍ୟାପକ କାର୍ତ୍ତିକେଶ୍ୱର ସାହୁ)
- ଅଚ୍ୟୁତାନନ୍ଦ ପତିଙ୍କ କ୍ଷୁଦ୍ରଗଳ୍ପ (ଶ୍ରୀ ଶତ୍ରୁଘ୍ନ ପାଣ୍ଡବ)

ଉପରୋକ୍ତ ସୂଚୀପତ୍ରରୁ ସ୍ପଷ୍ଟ ହେଲା ଯେ, ଛଅଗୋଟି ପ୍ରବନ୍ଧ ମଧ୍ୟରୁ ଚାରୋଟି ପ୍ରବନ୍ଧ ଆଧୁନିକ କବିତା ସଂପର୍କରେ ହୋଇଥିବାବେଳେ, ଦୁଇଗୋଟି ପ୍ରବନ୍ଧ ଆଧୁନିକ ଗଳ୍ପକୁ ନେଇ ରଚିତ । ଏତଦ୍‌ବ୍ୟତୀତ କବି ସୀତାକାନ୍ତ ମହାପାତ୍ରଙ୍କ 'ଝଡ଼' କବିତା ଏବଂ ରାଜେନ୍ଦ୍ର ପ୍ରସାଦ ପଣ୍ଡାଙ୍କର 'ଜୀବନପ୍ରତି' କବିତାର ପ୍ରାୟୋଗିକ ଆଲୋଚନା କରାଯାଇଛି । ପ୍ରତିଭା ଶତପଥୀଙ୍କ ରଚିତ 'ସାହାଡ଼ାସୁନ୍ଦରୀ' କବିତା ସଂକଳନର ସମୀକ୍ଷା ସାଙ୍ଗକୁ ପଣ୍ଡିତ ଗୌରୀଶଙ୍କର ଶତପଥୀଙ୍କ ସଂପାଦନାରେ ସଂପାଦିତ 'ପୁନର୍ବସୁ' ନାମକ ଏକ ପତ୍ରିକାର ସମୀକ୍ଷା ମଧ୍ୟ ପ୍ରକାଶିତ ହୋଇଛି । ପୁନଶ୍ଚ ପ୍ରାରମ୍ଭରେ କବି ଶ୍ରୀ ରମାକାନ୍ତ ରଥଙ୍କ ସହ ଏକ ସାକ୍ଷାତ୍‌କାର ପ୍ରକାଶିତ । ଏତଦ୍‌ବ୍ୟତୀତ ବିଶ୍ୱସାହିତ୍ୟ ପରିକ୍ରମା ଶୀର୍ଷକରେ

ସ୍ଥିତିବାଦୀ ସାହିତ୍ୟିକ ଫ୍ରାଞ୍ଜ୍ କାଫ୍‌କାଙ୍କ କୃତି ଉପରେ କବି ସୀତାକାନ୍ତ ମହାପାତ୍ରଙ୍କ ରଚିତ ନିବନ୍ଧ ପ୍ରକାଶିତ ହୁଏ ।

ଉପରୋକ୍ତ ସୂଚନାରୁ ସ୍ପଷ୍ଟ ହେଲା ଯେ ସାଂପ୍ରତିକ ସାହିତ୍ୟ କୃତିର ବିଚାର ବିଶ୍ଳେଷଣ ଏବଂ ବିଶ୍ୱସାହିତ୍ୟ ସହ ଯୋଗସୂତ୍ର ସ୍ଥାପନ ଥିଲା 'ଇସ୍ତାହାର'ର ଆଭିମୁଖ୍ୟ । ପରବର୍ତ୍ତୀ ସଂଖ୍ୟାଗୁଡ଼ିକରେ 'ବିଶ୍ୱ ସାହିତ୍ୟ ପରିକ୍ରମା' ନାମକ ଏକ ଅଧ୍ୟାୟ ସଂଯୋଜିତ କରାଯିବ ଏବଂ ଏଥିରେ ଧାରାବାହିକ ଭାବେ କବି ସୀତାକାନ୍ତ ମହାପାତ୍ର ଲେଖନୀ ଚାଳନା କରିବେ ଏପରି ସୂଚନା ମଧ୍ୟ ଆଲୋଚ୍ୟ ସଂଖ୍ୟାରେ ପ୍ରଦାନ କରାଯାଇଥିଲା । 'ଇସ୍ତାହାର' ପତ୍ରିକାରେ କବି ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ଭାନୁଜୀ ରାଓ, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ସୌଭାଗ୍ୟ ମିଶ୍ର ଓ ଦୀପକ ମିଶ୍ରଙ୍କ କୃତି ଓ କୃତିତ୍ୱକୁ ନେଇ ବିଭିନ୍ନ ସମୀକ୍ଷାମୂଳକ ପ୍ରବନ୍ଧ ପ୍ରକାଶିତ ହେଲା । ଏତଦ୍‌ବ୍ୟତୀତ ଓଡ଼ିଆ କାବ୍ୟଧାରାକୁ ପ୍ରବେଶ କରୁଥିବା ସମସ୍ତ ପ୍ରକାର ନୂତନ ଶୈଳୀ ସଂପର୍କରେ ମଧ୍ୟ ଆଲୋଚନାମାନ ପ୍ରକାଶ ପାଇଲା । 'ନବଯୁଗର କବି ମାନସରେ ସଚ୍ଚିଦାନନ୍ଦଙ୍କ 'ପାଣ୍ଡୁଲିପିର ପ୍ରଭାବ ଓ ପ୍ରତିଷ୍ଠା', 'କବି ଗୁରୁପ୍ରସାଦଙ୍କ କାବ୍ୟମାନସ ଓ ଚମ୍ପାଫୁଲ', 'କବିତାରେ ଛନ୍ଦ ଓ ସାଂଗୀତିକତାର ବିକାଶ', 'ଇଲିୟଟ୍‌ଙ୍କ ଓ୍ୱେଷ୍ଟ୍‌ଲ୍ୟାଣ୍ଡ୍‌ରେ ଭାରତୀୟ ଭାବନା ଓ ପ୍ରତ୍ୟକ୍ଷ ଅନୁଭୂତି', 'ସଚ୍ଚିଦାନନ୍ଦଙ୍କ ପାଣ୍ଡୁଲିପିରେ ବାସ୍ତବବାଦୀ ପ୍ରେମଚେତନା', 'ଅସ୍ତିତ୍ୱବାଦ ଓ ଓଡ଼ିଆ କବିତା', 'ଶରତ ପ୍ରଧାନଙ୍କ କବିତାରେ ଚିତ୍ର ଚେତନା', 'ଗୁରୁପ୍ରସାଦଙ୍କ କବିତା ପ୍ରସଂଗ', 'ସୀତାକାନ୍ତଙ୍କ କବିତା ଏକ ମୁଗ୍ଧ ଦୃଷ୍ଟି', 'ଦୁଇଟି ସୂର୍ଯ୍ୟ କବିତା : 'ସୂର୍ଯ୍ୟ' ଓ 'ସୂର୍ଯ୍ୟ ମୋ କୋଠରୀ', 'ସମୟର ଶେଷନାମ ଏକ ସମୀକ୍ଷଣ', 'କବିତାରେ ସରଳତା', 'ସାଂପ୍ରତିକ ଓଡ଼ିଆ କବିତାରେ ମିଥ୍ ଚେତନା', 'ସାହିତ୍ୟରେ ମେଟାଫିଜିକାଲ୍ ଶୈଳୀ', 'ସାହିତ୍ୟରେ ରହସ୍ୟବାଦ', 'ଚେତନା ପ୍ରବାହ ଧାରା', 'ପରଂପରା, ଭାଗବତ ଓ ସାଂପ୍ରତିକ ଓଡ଼ିଆ କବିତା', 'ଆଧୁନିକ ଓଡ଼ିଆ କବିତାରେ ଏକା ଏକା ଅପେକ୍ଷାର ସ୍ୱର' ଏହିପରି ଉଚ୍ଚକୋଟୀର ଗବେଷଣାତ୍ମକ ପ୍ରବନ୍ଧମାନ ପ୍ରକାଶିତ ହେବାକୁ ଆରମ୍ଭ କଲା । ଏଠାରେ ସୂଚନା ପ୍ରଦାନ କରିବା ଆବଶ୍ୟକ ଯେ ଏଠାରେ ଯେଉଁ ପ୍ରବନ୍ଧ ଗୁଡ଼ିକର ନାମ ଉଲ୍ଲେଖ କରାଗଲା, ତାର ରଚନା ପତ୍ରିକା ପ୍ରକାଶନର ପ୍ରଥମ ଦଶନ୍ଧିରେ ହିଁ କରାଯାଇଛି ।

ଉତ୍ତର ଅଶୀ ପରବର୍ତ୍ତୀ ସମୟରେ ଓଡ଼ିଆ କବିତା ରୂପାନ୍ତରିତ ହୋଇ ଭିନ୍ନ ସ୍ୱର ଓ ସ୍ୱାଦର ସମ୍ଭାର ନେଇ ଆପଣାକୁ ପ୍ରସ୍ତୁତ କରିଛି । ଏହି ରୂପାନ୍ତରଣକୁ ଉତ୍ତର ଆଧୁନିକତା ନାମରେ ନାମିତ କରାଯାଇଛି । ପୁନଶ୍ଚ (post modern oriya poetry) କୁ ନେଇ ମତ-ମତାନ୍ତର ସୃଷ୍ଟି ହୋଇଛି । ଉତ୍ତର ଆଧୁନିକ ଓଡ଼ିଆ କବିତାକୁ ନେଇ 'ଇସ୍ତାହାର'

ପୃଷ୍ଠାରେ ଯେଉଁ ପ୍ରବନ୍ଧଗୁଡ଼ିକ ପ୍ରକାଶିତ ହୋଇଛି, ତା'ର ତାଲିକା ନିମ୍ନ ସାରଣୀରେ ପ୍ରଦାନ କରାଗଲା ।

**ସାରଣୀ : ୧**

| କ୍ର.ସଂ: ପ୍ରବନ୍ଧର ନାମ | ଲେଖକ | ଇସ୍ତାହାର ସଂଖ୍ୟା |
|---|---|---|
| ୧. ଉତ୍ତର ଆଧୁନିକତା (ପରୀକ୍ଷା ଓ ପ୍ରତିଶ୍ରୁତିର ଶେଷ ଦଶକ) | ହୃଷୀକେଶ ମଲ୍ଲିକ | ଇସ୍ତାହାର-୭୫ |
| ୨. ଉତ୍ତର ଆଧୁନିକତା : ଦୃଷ୍ଟି ଓ ଧାରଣା | ଡଃ ବେଣୁଧର ପାଢ଼ୀ | ଇସ୍ତାହାର-୮୪ |
| ୩. ଓଡ଼ିଆ କବିତାରେ ଉତ୍ତର ଆଧୁନିକତା | ଡଃ ଶତ୍ରୁଘ୍ନ ପାଣ୍ଡବ | ଇସ୍ତାହାର-୧୦୫ |
| ୪. ଉତ୍ତର ଆଧୁନିକତା : ଭୂମିରୁ ଭୂମା | ଡଃ ବେଣୁଧର ପାଢ଼ୀ | ଇସ୍ତାହାର-୧୧୮ |
| ୫. ଉତ୍ତର ଆଧୁନିକ ନୂଆପିଢ଼ିର ସଫଳ ନାରୀକବି କତିପୟ | ପତିତପାବନ ଗିରି | ଇସ୍ତାହାର-୧୧୯ |
| ୬. ଉତ୍ତର ଆଧୁନିକବାଦ ଓ ୧୯୮୦ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ | ଡଃ ଗଣେଶ ପ୍ରସାଦ ସାହୁ | ଇସ୍ତାହାର-୧୨୦ |
| ୭. ଉତ୍ତର ଆଧୁନିକତା, ବିତର୍କିତ ବିଦଗ୍ଧତା ଓ ନବେ ଦଶକର ଓଡ଼ିଆ କବିତା | ଡଃ ଦିଲ୍ଲୀପ କୁମାର ସ୍ୱାଇଁ | ଇସ୍ତାହାର-୧୨୧ |
| ୮. ଉତ୍ତର ଆଧୁନିକ ଓଡ଼ିଆ କବିତା | ପ୍ର. ନିତ୍ୟାନନ୍ଦ ଶତପଥୀ | ଇସ୍ତାହାର-୧୨୨/୨୩ |
| ୯. ଉତ୍ତର ଆଧୁନିକତାର ସମକାଳୀନ ପରିସର ଓ ପ୍ରକରଣ | ଡ. ମାନସ କୁମାର ଦାସ | ଇସ୍ତାହାର-୧୩୪ |

ଏହି ସାରଣୀରେ ଲିପିବଦ୍ଧ ପ୍ରବନ୍ଧଗୁଡ଼ିକୁ ପାଠ କରିବା ପରେ ବିଜ୍ଞ ପାଠକ ସମାଜ ଓ ଗବେଷକଗଣ ଇସ୍ତାହାରକୁ କେବଳ ଆଧୁନିକତାର ନୁହେଁ ବରଂ ଉତ୍ତର ଆଧୁନିକତାର ଏକ୍ରୁଡ଼ିଶାଳ ରୂପେ ସ୍ୱୀକାର କରିବା ନିମନ୍ତେ ପଶ୍ଚାତ୍‌ପଦ ହେବେନାହିଁ ।

## ୧.୨: ସମ୍ଭାବନା ପ୍ରଦର୍ଶନ କରୁଥିବା ତରୁଣ ସ୍ରଷ୍ଟାଙ୍କ କୃତି ଉପରେ ଆଲୋକପାତ -

ଇସ୍ତାହାର ପତ୍ରିକା ସମ୍ଭାବନା ପ୍ରଦର୍ଶନ କରୁଥିବା ତରୁଣ ସ୍ରଷ୍ଟାଙ୍କ କୃତି ଓ କୃତିତ୍ୱକୁ ସଦାସର୍ବଦା ଅଗ୍ରାଧିକାର ପ୍ରଦାନ କରିଆସିଛି । ୧୯୮୦ ପରବର୍ତ୍ତୀ ସମୟର ବିବର୍ତ୍ତିତ କାବ୍ୟଚେତନାର ପ୍ରମୁଖ ସ୍ୱରଦ୍ୱୟ ହେଉଛି- ନବ୍ୟ ମାର୍କ୍ସବାଦ ଏବଂ ଦଳିତ ଚେତନା । କବି ଆଶୁତୋଷ ପରିଡ଼ାଙ୍କ ପ୍ରତି 'ଇସ୍ତାହାର'ର ସଂପାଦକ କେତେମାତ୍ରାରେ ଶ୍ରଦ୍ଧାଶୀଳ ତାହା ଏହି ପ୍ରବନ୍ଧର ପରବର୍ତ୍ତୀ ପୃଷ୍ଠାରେ ଆଲୋଚନା କରାଯାଇଛି । ନବ୍ୟ ମାର୍କ୍ସବାଦୀ

ଚେତନାର ଅନ୍ୟତମ ପ୍ରମୁଖ କବି ରମେଶ ପତି ସଂପ୍ରତି ଏହି ପତ୍ରିକାର ସଂପାଦନା ମଣ୍ଡଳୀରେ ଯୋଗଦେବା ଅତ୍ୟନ୍ତ ଆନନ୍ଦର ବିଷୟ । ୨୦୧୦ ମସିହା ପୂଜା ବିଶେଷାଙ୍କରେ 'କବି ରମେଶ ପତିଙ୍କ କାବ୍ୟସରଣୀ' ଶୀର୍ଷକ ପ୍ରବନ୍ଧଟି ପ୍ରକାଶିତ ହୁଏ, କବି ପୀତାମ୍ବର ତରାଇଙ୍କ କବିତା ସଂକଳନ 'ଶୂଦ୍ରକର ଶ୍ଳୋକ' ଉପରେ ପର୍ଯ୍ୟବସିତ ଶ୍ରୀଯୁକ୍ତ ରବି ସ୍ୱାଇଁଙ୍କ ପ୍ରବନ୍ଧ, "ପୀତାମ୍ବରଙ୍କ କବିତାରେ : ଶୂଦ୍ରକର ଲହୁ ଓ କବିର ଲୁହ" ପ୍ରକାଶିତ ହୁଏ ୨୦୦୩ ମସିହା ଶାରଦୀୟ ବିଶେଷାଙ୍କରେ । ପୁନର୍ବାର ୨୦୦୪ ମସିହା ଶାରଦୀୟ ସଂଖ୍ୟାରେ ପ୍ରକାଶିତ ରବି ପଣ୍ଡାଙ୍କ ରଚିତ ପ୍ରବନ୍ଧ - "ନିଭୃତ ଅନ୍ତରାତ୍ମାର କୋମଳ କାରୁଣ୍ୟ ହିଁ ପୀତାମ୍ବରଙ୍କ 'ସଇରାତ ଶତକର ଅନ୍ତଃସ୍ୱର' ।" କବି ଗିରିଜା କୁମାର ବଳିୟାର ସିଂ, କବି ଗୋକୁଳ ମିଶ୍ର, କବି ବିପିନ ନାୟକ ଏହିପରି ନୂତନ ଏବଂ ତରୁଣ କବିମାନଙ୍କର କବିତା ସଂକଳନ ସମୂହକୁ ନେଇ ସମୀକ୍ଷାତ୍ମକ ନିବନ୍ଧ ପ୍ରକାଶ, ଏହି ପତ୍ରିକାର ଆଧୁନିକ କବିତା ପ୍ରତି ଦାୟବଦ୍ଧତାକୁ ଅଧିକ ସୁଦୃଢ଼ କରିଥାଏ । ଏହିପରି ଏକକ ଆଲୋଚନା ସାଂଗକୁ ଅଶୀଦଶକ, ନବେ ଦଶକ ଓ ଏକବିଂଶ ଶତାବ୍ଦୀର କବିତାବଳୀକୁ ନେଇ ଯେଉଁ ସମସ୍ତ ପ୍ରବନ୍ଧ ପ୍ରକାଶିତ ସେଥିରେ ବହୁସଂଖ୍ୟାରେ ତରୁଣ ଏବଂ ନବୀନ କବିମାନଙ୍କୁ ଆଲୋଚନାର ପରିସରଭୁକ୍ତ କରାଯାଇଅଛି ।

### ୧.୩ : ସାଂପ୍ରତିକ କାଳର କବିମାନଙ୍କ ପ୍ରତି ଉଦାର ଓ ଉତ୍ସାହପ୍ରଦ ଦୃଷ୍ଟିଭଙ୍ଗୀ :

କେବଳ ତରୁଣ, ଯୁବପିଢ଼ିର କବି ନୁହଁନ୍ତି କବି ଶତ୍ରୁଘ୍ନ ପାଣ୍ଡବ, ହୃଷୀକେଶ ମଲ୍ଲିକ, ପ୍ରମୋଦ ମହାନ୍ତି, ହରିହର ମିଶ୍ର, ବୈକୁଣ୍ଠନାଥ ସାହୁ, ଦିଲୀପ ଦାସ, ବ୍ରହ୍ମାନନ୍ଦ ଦାସ, ନିତ୍ୟାନନ୍ଦ ନାୟକ, ପ୍ରସନ୍ନ କୁମାର ମିଶ୍ର, ନୃସିଂହ ପ୍ରସାଦ ତ୍ରିପାଠୀ, ସୁଚେତା ମିଶ୍ର, ବୀଣାପାଣି ପଣ୍ଡା, ଗାୟତ୍ରୀବାଳା ପଣ୍ଡା, ସେନାପତି ପ୍ରଦ୍ୟୁମ୍ନକେଶରୀ, ବଂଶୀଧର ଷଡ଼ଙ୍ଗୀ, ସଦାଶିବ ଦାସ, ବ୍ରଜନାଥ ରଥ, ପ୍ରତିଭା ଶତପଥୀ, ଗିରିବାଳା ମହାନ୍ତି, ଅପର୍ଣ୍ଣା ମହାନ୍ତି ଆଦି ଶତାଧିକ ବର୍ଷିୟାନ ତଥା ନବୀନ କବିମାନଙ୍କ କୃତି ଓ କୃତିତ୍ୱର ବିଶ୍ଳେଷଣ ଥିଲା 'ଇସ୍ତାହାର'ର ଧର୍ମ । 'ଇସ୍ତାହାର' ଅତ୍ୟନ୍ତ ନିଷ୍ଠା ଓ ଆନ୍ତରିକତାର ସହ ଦୀର୍ଘ ୩୯ବର୍ଷ ଧରି ଏହି ଧର୍ମ ଆଚରଣ କରିଆସିଛି ।

### ୧.୪ : ଉଚ୍ଚକୋଟୀର ପୁସ୍ତକ ସମୀକ୍ଷା -

'ଇସ୍ତାହାର'ରେ ପ୍ରକାଶିତ କବିତା ପୁସ୍ତକର ସମୀକ୍ଷାରୁ ସଂପୃକ୍ତ ପୁସ୍ତକର ଆତ୍ମା ଏବଂ ରଚୟିତାଙ୍କ ସୃଜନଶୀଳ ଦିଗ୍‌ବଳୟ ସଂପର୍କରେ ଯଥେଷ୍ଟ ଧାରଣା ମିଳିଥାଏ । ଏଥିରେ ପ୍ରକାଶିତ ପୁସ୍ତକ ସମୀକ୍ଷା ଆଧୁନିକ ଓଡ଼ିଆ କବିତା ପ୍ରତି କିପରି ଯତ୍ନଶୀଳ ତା'ର

ଗୋଟିଏ ଉଦାହରଣ ନିମ୍ନରେ ପ୍ରଦାନ କରାଗଲା । ୨୦୦୬ ମସିହା ଏପ୍ରିଲ୍-ଜୁନ୍ ସଂଖ୍ୟାରେ କବି ସୁଚେତା ମିଶ୍ର 'ରକ୍ତରାଗିଣୀ' କବିତା ସଂକଳନର ସମୀକ୍ଷା କରନ୍ତି । ଏହି କବିତା ସଂକଳନଟି ଯୁବପିଢ଼ିର ତିନିଜଣ କବି ଓ ଗାଳ୍ପିକ ଶ୍ରୀଯୁକ୍ତ ରବିପଣ୍ଡା, ଶ୍ରୀଯୁକ୍ତ ସିତେଶ ତ୍ରିପାଠୀ ଓ ଶ୍ରୀଯୁକ୍ତ ସନ୍ତୋଷ ସାମଲଙ୍କ ଦ୍ୱାରା ସଂପାଦିତ ହୋଇଛି । ଏଥିରେ ସର୍ବମୋଟ ୮୫ଜଣ କବିଙ୍କର କବିତା ସ୍ଥାନିତ । କବିତା ଗୁଡ଼ିକର ରଚନାକାଳ ୧୯୮୦ରୁ ୨୦୦୬ ମସିହା ପର୍ଯ୍ୟନ୍ତ ପ୍ରଲମ୍ବିତ । ସମୀକ୍ଷକ ସୁଚେତା ମିଶ୍ର ଆଲୋଚ୍ୟ ସଂକଳନ ସଂପର୍କରେ ମତବ୍ୟକ୍ତ କରି କୁହନ୍ତି, 'ରକ୍ତରାଗିଣୀ' ତରୁଣ କବିଙ୍କର, ତରୁଣ କବିଙ୍କ ଦ୍ୱାରା, ତରୁଣ କବିଙ୍କ ପାଇଁ ଏକ ନିୟାମକ ହୋଇପାରେ । ଆଜି କବି ଯେ କବିର ଖୋଳ ଭିତରୁ ବାହାରି ଆସି ଲଗାତର ପ୍ରତିରଚନା କରୁଛି ଓ ପାଠକଙ୍କୁ ଡାକିନେଇ ସେଇ ସବୁ ସହ ଏକାତ୍ମ କରେଇବାକୁ ଚାହୁଁଛି, ଅନ୍ତତଃ ଏ କଥାଟି ସ୍ପଷ୍ଟ କରିଦେଇଛି ଏ ସଂକଳନଟି ।" (ଇସ୍ତାହାର - ୧୦୦)

ଇସ୍ତାହାର ପତ୍ରିକା କେବଳ କବିତା ସଂକଳନର ସମୀକ୍ଷା ପ୍ରକାଶ କରିନାହିଁ ବରଂ କବିତା ସଂପର୍କରେ ପ୍ରକାଶିତ ପୁସ୍ତକଗୁଡ଼ିକ ସମୀକ୍ଷା ମଧ୍ୟ ପ୍ରକାଶିତ କରିଛି । ଆଧୁନିକ ଓଡ଼ିଆ ସାହିତ୍ୟର ଗବେଷଣା ଧାରାକୁ ଇସ୍ତାହାର ପ୍ରଶସ୍ତ ଓ ସୁଗମ କରିପାରିଛି । ୨୦୧୪ ମସିହା ଏପ୍ରିଲ୍ ମାସ 'ଇସ୍ତାହାର'ରେ କବି, ସମାଲୋଚିକା ତଥା 'ଇସ୍ତାହାର'ର ପୂର୍ବତନ ସହଯୋଗୀ ସଂପାଦିକା ଡକ୍ଟର ପ୍ରତିଭା ଶତପଥୀଙ୍କ ପୁସ୍ତକ 'ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ସଂକଳନର ସମୀକ୍ଷା ଶର୍ମିଷ୍ଠା ମହାପାତ୍ରଙ୍କ ଦ୍ୱାରା କରାଯାଇଛି । ୧୯୯୯ ମସିହାର ଶାରଦୀୟ ବିଶେଷାଙ୍କରେ ଡଃ ଶତ୍ରୁଘ୍ନ ପାଣ୍ଡବଙ୍କ ରଚିତ 'ଆଧୁନିକ ଓଡ଼ିଆ କବିତା ପରିଚର୍ଚ୍ଚା' ପୁସ୍ତକଟିର ସମୀକ୍ଷା କରନ୍ତି ଅପର୍ଣ୍ଣା ମହାନ୍ତି । ଆଲୋଚନାର ଶେଷରେ ସମୀକ୍ଷିକା ଯେଉଁ ଟିପ୍ପଣୀ ପ୍ରଦାନ କରନ୍ତି ତାହା ନିମ୍ନରେ ପ୍ରଦତ୍ତ କରାଗଲା । "ଆଧୁନିକ କବିତା ସଂପର୍କରେ ବହୁ ସଚେତନ ପାଠକ/ଆଲୋଚକ/ଗବେଷକ ଅତ୍ୟନ୍ତ ପ୍ରତିକୂଳ ମନ୍ତବ୍ୟ ଦେବାର ଦେଖାଯାଏ । ସାଧାରଣ ପାଠକଙ୍କ କଥା ଦୂରେ ଥାଉ ଓଡ଼ିଆ ସାହିତ୍ୟର ଅଧିକାଂଶ ଅଧ୍ୟାପକ ଗବେଷକ ମଧ୍ୟ ଆଧୁନିକ କବିତା ପ୍ରତି ସୂକ୍ଷ୍ମ ତଥା ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ପୋଷଣ କରିପାରନ୍ତି ନାହିଁ । ନିଜର ସୀମାବଦ୍ଧ ଓ ସ୍ଥୁଳ ଅବବୋଧକୁ ପାଣ୍ଡିତ୍ୟର ଅହଂକାରରେ ବିଭୂଷିତ କରି ଆଧୁନିକ କବିତାର ସ୍ୱରୂପକୁ ନ୍ୟୂନ କରି ଆଲୋଚନା କରିଛନ୍ତି । ବହୁ ଆଲୋଚନା ଚକ୍ରରେ ଏପରି ସମ୍ବେଦନଶୂନ୍ୟ ଆସ୍ପର୍ଦ୍ଧାକୁ ପ୍ରତ୍ୟକ୍ଷ କରିବାକୁ ହୋଇଛି । ଆଧୁନିକ କବିତାର ସାର୍ଥକ ମୂଲ୍ୟାୟନ ଦିଗରେ ଡଃ ନିତ୍ୟାନନ୍ଦ ଶତପଥୀଙ୍କର ଉଦ୍ୟମ ପ୍ରଥମେ ଏହାର ଅନୁରାଗୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ଶତ୍ରୁଘ୍ନ ଗ୍ରନ୍ଥଟିକୁ ତାଙ୍କରି ହାତରେ ଅର୍ପଣ କରି ଉତ୍ତର ଦାୟାଦର କର୍ତ୍ତବ୍ୟ ସଂପାଦନ କରିଛନ୍ତି । ପ୍ରଫେସର ଡକ୍ଟର ଦାଶରଥି ଦାସ ଆଧୁନିକ କବିତାର ଆଲୋଚନା କ୍ଷେତ୍ରରେ ଏକ ସମୃଦ୍ଧ ପରଂପରାର ପଥିକୃତ । ଶତ୍ରୁଘ୍ନଙ୍କ ପ୍ରବନ୍ଧ ସଂକଳନଟି ଉକ୍ତ ସ୍ରୋତର ଅନ୍ୟତମ ମଧୁର ଧାରା ଭାବେ ଓଡ଼ିଆ କବିତା ପ୍ରତି ପାଠକୀୟ ଆକର୍ଷଣ ଓ ଅବବୋଧ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ସାଧାରଣ ଅନୁସନ୍ଧିତ୍ସାକୁ ସନ୍ତୁଷ୍ଟ କରିବାରେ ଯେ ସହାୟକ ହେବ ଏଥିରେ ସନ୍ଦେହ ନାହିଁ ।" (ଇସ୍ତାହାର-୭୫/୭୬) ୨୦୦୦ ମସିହା ଶାରଦୀୟ ବିଶେଷାଙ୍କରେ ଡକ୍ଟର ସୌଦାମିନୀ ନନ୍ଦଙ୍କ ରଚିତ କବିତା ଉପରେ ପର୍ଯ୍ୟବସିତ ସମାଲୋଚନା ଗ୍ରନ୍ଥ 'କବିକଣ୍ଠ'ର ସମୀକ୍ଷା କରନ୍ତି ଡକ୍ଟର ସଂଘମିତ୍ରା ମିଶ୍ର । ସୌଦାମିନୀ ନନ୍ଦ ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସରେ ଜଣେ ଓଜସ୍ୱିନୀ ପ୍ରତିଭା । ଆଲୋଚ୍ୟ ପତ୍ରିକାରେ ଶ୍ରୀରାଧାର କାଳବାଚକତାକୁ ନେଇ ତାଙ୍କର ଦୁଇଗୋଟି ପ୍ରବନ୍ଧ ସ୍ଥାନିତ ।

୨୦୧୨ ମସିହାରେ 'କବିତାରେ ବିଶ୍ୱ' ନାମକ ଏକ ଅଭିନବ କବିତା ସଂକଳନର ସମୀକ୍ଷା ପ୍ରକାଶିତ ହୁଏ । ଏହି ସଂକଳନଟିରେ ବିଶ୍ୱର ବିଭିନ୍ନ ଦେଶର ନିର୍ବାଚିତ କବିତାର ଅନୁବାଦ ସ୍ଥାନ ପାଇଛି । ଛଅଗୋଟି ମହାଦେଶର ଖ୍ୟାତନାମା କବିତାର ଅନୁବାଦ କରିଛନ୍ତି ଅନୁବାଦକ ନିରଞ୍ଜନ ପାଢ଼ୀ । ଏହା ବିଂଶ ଶତକର ବିଶ୍ୱ କବିତାର ଏକ ସଂକଳନ । ଏବଂ ଏହି ସମୀକ୍ଷାଟି ଶତ୍ରୁଘ୍ନ ପାଣ୍ଡବଙ୍କ ଦ୍ୱାରା କରାଯାଇଛି ।

୨୦୦୯ ମସିହା ଶାରଦୀୟ 'ଇସ୍ତାହର'ରେ ସାଗିନା ବେଗମ୍' ନାମକ ଏକ କାବ୍ୟର ସମୀକ୍ଷା କରନ୍ତି ଡଃ ହୃଷୀକେଶ ମଲ୍ଲିକ । ଏହି କାବ୍ୟଟିରେ କବି ଯେଉଁ ବିଷୟବସ୍ତୁ ଚୟନ କରିଛନ୍ତି, ତାହା ସମୟୋପଯୋଗୀ ଓ ଏକାନ୍ତ ଅଭିନବ । ପାକିସ୍ତାନୀ ଝିଅ ସାଗିନା କାବ୍ୟର ନାୟିକା ଓ ଭାରତୀୟ ପୁଅ ଆବୁଲ୍ କାବ୍ୟର ନାୟକ । ବିବାହ ସୂତ୍ରରେ ଆବୁଲ୍‌ର ହାତ ଧରି ସାଗିନା ଭାରତ ଆସିଛି । ସାଗିନାର ଅସଲ ପରିଚୟ ସେ ପାକିସ୍ତାନର ଗୁପ୍ତଚର ସଂସ୍ଥା ଆଇ.ଏସ୍.ଆଇ. ଦ୍ୱାରା ତାଲିମ୍ ପ୍ରାପ୍ତ ଏକ ଆତ୍ମଘାତୀ ସନ୍ତ୍ରାସବାଦୀ, ଛଳ ବିବାହରେ ଭାରତରେ ରହି ଧ୍ୱଂସ ଓ ପ୍ରଳୟ ରଚନା ତାହାର ଅଭିସନ୍ଧି । କିନ୍ତୁ ଭାରତ ଆସିବା ପରେ ସ୍ୱାମୀ ଆବୁଲ୍‌ଙ୍କ ନିଷ୍କପଟତା ଓ ଶ୍ରଦ୍ଧାରେ ତାଙ୍କର ହୃଦୟ ଭାରତ ପ୍ରତି ଗଭୀର ମମତ୍ୱବୋଧରେ ରୂପାନ୍ତରିତ ହୋଇଛି । ନିଜର ଅସଲ ପରିଚୟକୁ ସ୍ୱାମୀଙ୍କ ନିକଟରେ ବ୍ୟକ୍ତ କରି ସାଗିନା ନିଜକୁ ଦ୍ୱିଧାବୋଧ ଓ ମାନସିକ ସଂକଟରୁ ମୁକ୍ତ କରିଛି । ଆବୁଲ୍ ଓ ସାଗିନା ସମସ୍ତ ତଥ୍ୟ ପୋଲିସ୍‌କୁ ଜଣାଇଦେଇ ପ୍ରତିକାର ବିଧାନର ନିଷ୍ପତ୍ତିରେ ପହଞ୍ଚିଛନ୍ତି ।

ଏହି କାବ୍ୟର ଆଙ୍ଗିକ ବିଭବ ପରଂପରା ଅନୁମୋଦିତ ହୋଇଥିବାବେଳେ ଆତ୍ମିକ ବିଭବରେ ଅଣଗତାନୁଗତିକ ବିଷୟବସ୍ତୁର ଅବତାରଣ ହେତୁ ଏହି କାବ୍ୟଟିର ସମୀକ୍ଷା ଉଲ୍ଲେଖନୀୟ ସଂଯୋଗ ଦାବିକରେ ।

ଏତଦ୍‌ବ୍ୟତୀତ ଶତ୍ରୁଘ୍ନ ପାଣ୍ଡବଙ୍କର 'ପାଣି ଓ ଅନ୍ୟାନ୍ୟ କବିତା', ଦିଲୀପ କୁମାର ସ୍ୱାଇଁଙ୍କ 'ଧାନଫୁଲ କାନଫୁଲ' ଏବଂ ବିରଜା ବଳଙ୍କର 'ପ୍ରାଚୀନ ଏକ ପୋଲ ଭିତରୁ' ପରି ସଂଖ୍ୟାଧିକ କବିତା ସଂକଳନର ସମୀକ୍ଷା ଏହାକୁ ଆଧୁନିକତାର ଏକ ଶକ୍ତିଶାଳ ରୂପେ ଗୌରବମୟ ପରିଚୟ ପ୍ରଦାନ କରିଥାଏ ।

## ୨. ସଂପାଦକୀୟ ପୃଷ୍ଠାରେ ଆଧୁନିକ କବିତା ସଂପର୍କରେ ସୁଚିନ୍ତିତ ମତାମତ:-

'ଇସ୍ତାହାର' ପତ୍ରିକାର ସଂପାଦକୀୟ ଗୁଡ଼ିକ ଏହି ପତ୍ରିକାକୁ ଉଚ୍ଚାସନ ପ୍ରଦାନ କରିବାରେ ଅନ୍ୟତମ ମୁଖ୍ୟ ସହାୟକ ରୂପେ ଦଣ୍ଡାୟମାନ । ୩୯ ବର୍ଷର 'ଇସ୍ତାହାର'ର ସଂପାଦକୀୟ ଗୁଡ଼ିକ ଉପରେ ନଜର ପକାଇଲେ ଆପଣ ପ୍ରଫେସର ଶତପଥୀଙ୍କ ସଂପାଦକୀୟ ସହ ଆଉ କେତୋଟି ନାମ ମଧ୍ୟ ଦେଖିବାକୁ ପାଇବେ । କବି ପ୍ରତିଭା ଶତପଥୀ, ହରିହର ମିଶ୍ର, ଚନ୍ଦ୍ର କୁମାର ମହାନ୍ତି, ବାଞ୍ଛାନିଧି ଦାସ, କ୍ଷୀରୋଦ ଦାସ ଓ ବିଦ୍ୟୁତ୍‌ପ୍ରଭା ସାହୁ ପ୍ରମୁଖ ଏହାର ସଂପାଦକୀୟ ପୃଷ୍ଠାରେ ଲେଖନୀ ଚାଳନା କରିଛନ୍ତି । ବିଶେଷତଃ ରଜତ ଜୟନ୍ତୀ ପାଳିତ ହେବା ପରେ ପ୍ରଫେସର ଶତପଥୀ ଏହି ପତ୍ରିକାର ପ୍ରତିଷ୍ଠାତା ସଂପାଦକ ରହି ନୂତନ ବ୍ୟକ୍ତିଙ୍କ ହସ୍ତରେ ଏହାର ଦାୟିତ୍ୱ ଅର୍ପଣ କରିବାକୁ ଚାହିଁଛନ୍ତି । ସକଳ ପ୍ରଚେଷ୍ଟା ସତ୍ତ୍ୱେ ଆଜି ମଧ୍ୟ ଅଶୀ ବର୍ଷ ବୟସରେ ଓଡ଼ିଆ ସାହିତ୍ୟର ଜାତୀୟ ସଂପତ୍ତି 'ଇସ୍ତାହାର'ର ପ୍ରକାଶନ, ଆବଣ୍ଟନ ଓ ପ୍ରସାରଣ ନିମନ୍ତେ ଡକ୍ଟର ଶତପଥୀ ଯେଉଁ ଶାରୀରିକ ପୀଡ଼ା, ଆର୍ଥିକ ଚାପ ଓ ମାନସିକ ସଂଘର୍ଷକୁ ଆପଣାର କରନ୍ତି ତା'ର ତୁଳନା ନାହିଁ ।

'ଇସ୍ତାହାର' ସଂପାଦକୀୟ ଗୁଡ଼ିକୁ ବିଷୟବସ୍ତୁ ଓ ଦୃଷ୍ଟିଭଙ୍ଗୀ ଦୃଷ୍ଟିରୁ ତିନୋଟି ବିଭାଗରେ ବିଭକ୍ତ କରାଯାଇପାରେ । ଯଥା- ସାମାଜିକ ସମସ୍ୟା ଆଧାରିତ ସଂପାଦକୀୟ, ରାଜନୀତିକ ସମସ୍ୟା ଆଧାରିତ ସଂପାଦକୀୟ ଓ ସାହିତ୍ୟିକ ସମସ୍ୟା ଆଧାରିତ ସଂପାଦକୀୟ । ଏଠାରେ ତିନୋଟି ବିଭାଗ ମଧ୍ୟରୁ ଶେଷୋକ୍ତ ବିଭାଗଟିରେ ଏବଂ କବିତା ସଂପର୍କରେ ଆଲୋଚନା କରାଯାଇଥିବା ସଂପାଦକୀୟ ବିଷୟରେ ସୂଚନା ପ୍ରଦାନ କରାଯିବ ।

୧୯୮୩ ମସିହାର ଶାରଦୀୟ ବିଶେଷାଙ୍କରେ ସଂପାଦକୀୟ ଶୀର୍ଷକ ରହେ 'ଆମ ସାହିତ୍ୟ ଜଗତ ସଂପର୍କରେ କଥୋପକଥନ' । ଏହି ସଂପାଦକୀୟର ପ୍ରାରମ୍ଭରେ ଯେଉଁ ସୂଚନା ରହିଛି ତାହା ଅତ୍ୟନ୍ତ ପୀଡ଼ାଦାୟକ ଓ ଅସାହିତ୍ୟିକ ଘଟଣା । ଅଥଚ୍ ଏପରି ଘଟଣା ସଂପର୍କରେ ଉଲ୍ଲେଖ କରିବା ନିମନ୍ତେ ଏହି ସମୀକ୍ଷିକା ବାଧ୍ୟ ହେଉଛି, କାରଣ ଏହାଦ୍ୱାରା

ଆଧୁନିକ ଓଡ଼ିଆ କବିତାକୁ ପୃଷ୍ଠପୋଷକତା ପ୍ରଦାନ କରିଥିବା ସଂପାଦକଟିକୁ ଯେ କିପରି କଣ୍ଟକମୟ ପଥରେ ରକ୍ତଭିଜା ପାଦରେ ଚାଲିବାକୁ ହୋଇଛି ସେ ସଂପର୍କରେ କିଞ୍ଚିତ ତଥ୍ୟ ମିଳି ପାରିବ । 'ଇସ୍ତାହାର' ଜୀବନ୍ତ କବିମାନଙ୍କ କୃତି ଓ କୃତିତ୍ୱ ଉପରେ ଆଲୋକପାତ କରୁଥିଲେ ହେଁ ଯେଉଁମାନେ ସାଧନା ଓ ପ୍ରତିଭା ସଂପନ୍ନ ନୁହଁନ୍ତି ସେମାନଙ୍କ ପ୍ରତି 'ଇସ୍ତାହାର'ର ସଂପାଦକ ଆଦୌ ଶ୍ରଦ୍ଧାଶୀଳ ନୁହଁନ୍ତି । ଫଳତଃ କିଛି ମନ୍ଦକବି 'ଇସ୍ତାହାର'ର ସଂପାଦକଙ୍କ ପ୍ରତି କ୍ଷୁବ୍‌ଧ ହୋଇ ଅତ୍ୟନ୍ତ ଅଶାଳୀନ ମନ୍ତବ୍ୟ ପ୍ରଦାନ କରିବା ଘଟଣା ଏଥିରେ ବର୍ଣ୍ଣିତ । ଅତ୍ୟନ୍ତ ବିନମ୍ରତାର ସହ ଡକ୍ଟର ଶତପଥୀ ନିଜସ୍ୱ ମତ ରଖି କୁହନ୍ତି ଯେ, "କବିମାନଙ୍କୁ ସ୍ୱୀକୃତି ପ୍ରଦାନ କରିବାକୁ ମୁଁ କିଏ ?" ଭବଭୂତି ପରା କହିଥିଲେ, "ନିରବଧି କାଳ । ବିପୁଳାଚ୍ ପୃଥ୍ୱୀ ।" ଲମ୍ବା ସମୟ ପଡ଼ି ରହିଛି । ସାଧନାରତ ରହିଲେ ସମୟ ସେମାନଙ୍କୁ ସ୍ୱୀକୃତି ଦେବ ।" ଏପରି କିଛି ଅପ୍ରୀତିକର ଘଟଣା ପରେ କବି ପୁନର୍ବାର ସ୍ୱୀୟ କବିତାନୁରକ୍ତିର ପରିଚୟ ପ୍ରଦାନ କରନ୍ତି । ନିମ୍ନରେ ସଂପାଦକୀୟ ପୃଷ୍ଠାର ଉଦ୍ଧୃତାଂଶ ପ୍ରଦାନ କରାଗଲା- "ସେଦିନ ଆଞ୍ଚଳିକ ଶିକ୍ଷା କଲେଜର ଜଣେ ବଂଧୁଙ୍କ ଘରେ ସକାଳୁ ସକାଳୁ କବିତା ଆଲୋଚନାରେ ପ୍ରାୟ ୨ଟି ଘଣ୍ଟା ବିତିଗଲା । ଉଭୟ ଅନୁଭବ କରିଥିଲୁ କର୍ମ ବ୍ୟସ୍ତ ଜୀବନରେ ସେ ଦୁଇଟି ଘଣ୍ଟା ଥିଲା ସବୁଠାରୁ ମୂଲ୍ୟବାନ ସମୟ । କଲେଜ ପିଲାଙ୍କ ବି.ଏ. ପାଠ୍ୟକ୍ରମରେ ଥିବା ତିନୋଟି ଆଧୁନିକ କବିତା 'ଝର୍କା କଡ଼ର ଗୋଲାପ', 'ଚିତ୍ରପ୍ରତିମା' ଓ 'ସବା ସାନପୁଅ' ଥିଲା ଆମର ଆଲୋଚନାର ବିଷୟ । କେତେବେଳେ କବିତାଗୁଡ଼ିକର ଭାବବହନ କରିନେବାରେ ଆମେ ଏକମତ ହେଉଥିଲୁ, କେତେବେଳେ ବା ହେଉନଥିଲୁ । କିନ୍ତୁ ଉଭୟେ ଏକମତ ହେଲୁ ଯେ ଏଣିକି ଦୁଇ ବା ତତୋଧିକ କାବ୍ୟମୋଦୀ ବଂଧୁ ଏକାଠି ହୋଇ ଚ' ଖାଉ ଖାଉ କବିତା ସଂପର୍କରେ ଆଲୋଚନା କଲେ ଆଧୁନିକ କବିତାର ଅର୍ଥ ଉପଲବ୍‌ଧି ସୁଗମ ହେବ, ଦୂଷିତ ସାହିତ୍ୟିକ ବାତାବରଣ ମଧ୍ୟ ଅନେକଟା ସଫା ହୋଇଯିବ । communication ବା ଭାବ ଆବେଦନ କବିତାର ସର୍ବ ଶ୍ରେଷ୍ଠ ଧର୍ମ ହେବା ଉଚିତ ବୋଲି ଆମେ ଏକମତ ହେଲୁ ।" ଏହି ଚ' ଆସରରୁ 'ଇସ୍ତାହାର' ପତ୍ରିକାର ପରବର୍ତ୍ତୀ କର୍ମଯୋଜନା ପ୍ରସ୍ତୁତ କରାଗଲା । ୧୯୮୪ ମସିହାରୁ ପ୍ରଥମେ ଏହି ତିନୋଟି କବିତାକୁ ନେଇ ଏବଂ ପରବର୍ତ୍ତୀ ସମୟରେ ଏପରି ଏକାଧିକ କବିତାର ବିଚାର ବିଶ୍ଳେଷଣକୁ ନେଇ 'ଇସ୍ତାହାର' ତରଫରୁ ନିୟମିତ ପାଠଚକ୍ରର ଆୟୋଜନ କରାଯିବ ।

୧୯୮୪ ମସିହାର ଶାରଦୀୟ ବିଶେଷାଙ୍କର ସଂପାଦକୀୟର ଶୀର୍ଷକ ହେଉଛି 'ଓଡ଼ିଆ ସାହିତ୍ୟର ସୁବର୍ଣ୍ଣ ତାରିଖ' । ଏହି ସଂପାଦକୀୟଟିରେ ୧୯୯୩ ମସିହାରେ କବ

ସୀତାକାନ୍ତ ମହାପାତ୍ର ଜ୍ଞାନପୀଠ ପୁରସ୍କାର ପାଇବା ନିମନ୍ତେ ମନୋନୀତ ହେବା ପରେ ସମାଲୋଚକ ଶତପଥୀ ଏହାକୁ ଆଧୁନିକ କବିତାର ବିଜୟ ରୂପେ ଗ୍ରହଣ କରିଛନ୍ତି । ୧୯୯୨ ମସିହାରେ ରମାକାନ୍ତଙ୍କ ସରସ୍ୱତୀ ସମ୍ମାନ ଲାଭ ଏବଂ ଏହାର ଚାରିବର୍ଷ ପୂର୍ବରୁ କବି ସଚ୍ଚିଦାନନ୍ଦ ରାଉତରାୟ କବିତା ନିମନ୍ତେ ଜ୍ଞାନପୀଠ ଲାଭ କରିବା ପରେ, ସୀତାକାନ୍ତଙ୍କ ପ୍ରତି ଭାରତୀୟ ସ୍ୱୀକୃତି ଇସ୍ତାହାରର ସଂପାଦକଙ୍କୁ ବେଶ୍ ଆମୋଦିତ କରିପାରିଛି । ତେଣୁ ସଂପାଦକୀୟରେ ଡଃ ଶତପଥୀ କୁହନ୍ତି, "ବିଗତ ଦଶକରେ ଓଡ଼ିଆ କବିତା ଯେଉଁ ସିଦ୍ଧି ଓ ସାଫଲ୍ୟର ଅଧିକାରୀ ହୋଇଛି ଏସବୁ ସର୍ବଭାରତୀୟ ପୁରସ୍କାର ଯେ ତା'ର ନିଜସ୍ୱ ଦାବି ଏକଥା ଅନ୍ତତଃ ଆମେ ଓଡ଼ିଆମାନେ ବୁଝୁ ବା ନବୁଝୁ ଅନ୍ୟାନ୍ୟ ଭାରତୀୟ ଭାଷାର ସାହିତ୍ୟିକମାନେ ଉପଲବ୍ଧି କରିଛନ୍ତି ଓ ତଦନୁସାରେ ଓଡ଼ିଆ କବିତାକୁ ଶୀର୍ଷତମ ମାନ୍ୟତା ପ୍ରଦାନ କରିଛନ୍ତି- ଏଥିପାଇଁ ଆମେ ଗୌରବାନ୍ୱିତ ହେବା କଥା ।" ସଚ୍ଚିବାବୁ ଓ ଗୁରୁବାବୁଙ୍କ ଠାରୁ କାବ୍ୟ ନେତୃତ୍ୱ ଛଡ଼ାଇ ଆଣିଥିବା ଦୁଇ କବି ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ରଙ୍କୁ ଆଲୋଚ୍ୟ ସଂପାଦକୀୟରେ ଦୁଇଟି ମାଇଲ୍‌ଖୁଣ୍ଟ ରୂପେ ଗ୍ରହଣ କରାଯାଇଛି ।

ଶ୍ରୀରାଧାର କବି ରମାକାନ୍ତ ରଥ ପ୍ରଫେସର ଶତପଥୀଙ୍କର ଅନ୍ୟତମ ପ୍ରିୟ କବି । ଶ୍ରେଣୀଗୃହରେ 'ଆଧୁନିକ ଓଡ଼ିଆ କବିତା' ସ୍ୱତନ୍ତ୍ର ପତ୍ର ରଖି ସାର୍‌ଙ୍କ ନିକଟରୁ ବୌଦ୍ଧିକ ଆଲୋଚନା ଶୁଣିବାବେଳେ କବି ରମାକାନ୍ତଙ୍କର ପ୍ରତ୍ୟେକ କବିତାକୁ ସେ ଗୋଟି ଗୋଟି କରି ଆମକୁ ବୁଝାଇଛନ୍ତି । କିନ୍ତୁ, 'ଇସ୍ତାହାର'ର ସଂପାଦକ ରୂପେ ସେ ଆଧୁନିକ ଓଡ଼ିଆ କବିତା ନିମନ୍ତେ ଜାଗ୍ରତ ପ୍ରହରୀ ସଦୃଶ ଦଣ୍ଡାୟମାନ । ରମାକାନ୍ତ ଓ ସୀତାକାନ୍ତ ପରି ଅମିତ ପରାକ୍ରମୀ କବିଙ୍କ ହସ୍ତରୁ କାବ୍ୟ ନେତୃତ୍ୱ କେଉଁ ଦିଗକୁ ଗତି କରିଛି ତତ୍ ସଂପର୍କରେ ମଧ ସେ ସୁଚିନ୍ତିତ ମତାମତ ପୋଷଣ କରିଛନ୍ତି । ପ୍ରୟୋଗବାଦୀ ଓଡ଼ିଆ କବିତା ତୁଙ୍ଗ ଆସନରେ ଆରୋହଣ କରି ମିଥ୍, ଚିତ୍ରକଳ୍ପ, ପ୍ରତୀକ, ମୃତ୍ୟୁ, ସମୟ ଓ ପାରିତ୍ରିକ ଚେତନାଦି ସମସ୍ତ ଭାବ ବୈଭବ ଓ ରୂପଦ୍ୟୁତି ପ୍ରକାଶ କରିବା ପରେ, ଓଡ଼ିଆ କବିତାରେ ଯେଉଁ ନୂତନ ଧାରା ସୃଷ୍ଟି ହେଲା, ତାହା ହେଉଛି ଜନବାଦୀ ଚେତନା ବା ନବ୍ୟ ମାନବବାଦ । ଏହି ଚେତନାର ଆଦ୍ୟ ଉଦ୍‌ଘୋଷକ ବ୍ରଜନାଥ ରଥ ଏବଂ ଆଶୁତୋଷ ପରିଡ଼ା ଡକ୍ଟର ଶତପଥୀଙ୍କର ସମୀକ୍ଷାତ୍ମକମାନ ସବୁ ଖୁବ୍ ବେଶୀ ଆହ୍ଲାଦିତ କରନ୍ତି । ଇସ୍ତାହାର-୭୯ ଅର୍ଥାତ୍ ୨୦୦୧ ମସିହା ମାର୍ଚ୍ଚ-ମେ ସଂଖ୍ୟାରେ ଆଶୁତୋଷ ପରିଡ଼ାଙ୍କର ୪ର୍ଥ କବିତା ସଂକଳନ 'ରକ୍ତବର୍ଣ୍ଣ ବାଲି'ର ସମୀକ୍ଷା କରନ୍ତି ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ପ୍ରୟୋଗବାଦୀ କବିମାନେ ଅତିରିକ୍ତ ବ୍ୟକ୍ତିଗତତା ମଧରେ ଆବଦ୍ଧ ହୋଇଯିବାରୁ ପ୍ରତିବଦ୍ଧ ସାମାଜିକ ଧାରାଟି କ୍ରମଶଃ ଶିଥିଳ ହୋଇଯାଇଛି । କବି ସଚ୍ଚି ରାଉତରାୟ, ରମାକାନ୍ତ

ରଥ, ଗୁରୁପ୍ରସାଦ ମହାନ୍ତି, ଦୀପକ ମିଶ୍ର, ରଘୁନାଥ ଦାସ, ହରିହର ମିଶ୍ର, ପ୍ରତିଭା ଶତପଥୀ, ସୌଭାଗ୍ୟ ମିଶ୍ର ପ୍ରମୁଖ କବିଗଣଙ୍କ କବିତା ମଧ୍ୟରେ ମାନବତାବାଦର ଯେଉଁ ମ୍ଳାନ ଦୀପଶିଖାଟି ପ୍ରତିଭାତ ତତ୍ ସଂପର୍କରେ ମଧ୍ୟ ଡକ୍ଟର ଶତପଥୀ ଆଲୋକପାତ କରିଛନ୍ତି । କିନ୍ତୁ ସମୀକ୍ଷାର ଦୁଇଗୋଟି ସ୍ଥାନରେ କବି ରମାକାନ୍ତ ରଥଙ୍କୁ ସିଧାସଳଖ ଆରୋପ କରିଛନ୍ତି । ନିମ୍ନ ଉଦ୍ଧୃତାଂଶରେ ସେହି ଉକ୍ତି ସମୂହ ଲିପିବଦ୍ଧ ।

ଉଦ୍ଧୃତାଂଶ-୧ "କାହିଁକି ସେମାନେ ତଥାପି ପଳାତକ ସାଜି ସାମନ୍ତବାସ ପାଇଁ ବ୍ୟଗ୍ରତା ପ୍ରକାଶ କରୁଛନ୍ତି ? ଏ ଦେଶ ପାଇଁ ତେବେ କିଏ ଭାବିବ ? ଏ ଦେଶ କେତେ ଭାବରେ ଏଇ କବିମାନଙ୍କୁ ଆତ୍ମିକ, ମାନସିକ, ଦୈହିକ ଓ ଆଧ୍ୟାତ୍ମିକ ଉପାଦାନ ଯୋଗାଇ ଦେଇ ନାହିଁ ?" ୧୯୯୯ ମସିହାର ମହାବାତ୍ୟା ପରେ ମଧ୍ୟ ଭାବଜୀବୀ କବି କଣ୍ଠରୁ କାହିଁକି ପଦଟିଏ ସ୍ମରଣୀୟ କବିତା ଉଚ୍ଚାରିତ ହେଲା ନାହିଁ, ଏହି କ୍ଷୋଭ ପ୍ରକାଶ କରିବାକୁ ଯାଇ ସମୀକ୍ଷକ ଉପରୋକ୍ତ ଉଦ୍ଧୃତାଂଶଟି ଉଚ୍ଚାରଣ କରିଛନ୍ତି ।

ଉଦ୍ଧୃତାଂଶ-୨ "କିନ୍ତୁ କବିମାନେ ସେ ରାସ୍ତା ଭୁଲିଲେ ଓ ନିଜ ନିଜ ଅନେକ କୋଠରୀ ଭିତରେ ବନ୍ଦୀ ହୋଇଗଲେ । ଆମେ ସେଇ କବିମାନଙ୍କୁ ବୁଝି ନପାରି ମଧ୍ୟ ସେତେବେଳେ ବହୁତ ବହୁତ ତାରିଫ୍ କଲୁ, କାରଣ ରାଜା ଲଙ୍ଗଳା ହୋଇ ମଧ୍ୟ ଝୀନବସନ ପିନ୍ଧି ସୁନ୍ଦର ଦିଶୁଛନ୍ତି ବୋଲି କହିବାକୁ ଆମେ ବାଧ୍ୟ ଥିଲୁ । ସତ କହିବାକୁ ଆମର ସାହସ ନଥିଲା । ସତ କହିବାକୁ ଗଲେ ସେ ସମୟର କବିତାର ନଈକୁ କେତେଜଣ ପାଠକ ବା ସମାଲୋଚକ ପହଁରି ପାରୁଥିଲେ ? ××× ।"

କାହିଁକି ଆଉ ଜଣେ କବି ଭଗବତୀ ଚରଣଙ୍କ ପରି ଏ ରାଜ୍ୟକୁ ସାମ୍ୟ, ମମତା ଓ ମାନବବାଦର ନୂତନ ମନ୍ତ୍ରରେ ଅଭିମନ୍ତ୍ରିତ କଲେ ନାହିଁ ? - ଏହି ପ୍ରଶ୍ନ ଉପସ୍ଥାପନ କରି ସେ ଉଭୟ କବି ଓ ସମାଲୋଚକଙ୍କର ତ୍ରୁଟି ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ଡଃ ଶତପଥୀଙ୍କର ଏହି ସମୀକ୍ଷାଟି ପାଠକ ମହଲରେ ଖୁବ୍ କ୍ରିୟା-ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏହି ଲେଖାଟିକୁ ପସନ୍ଦ କରିଥିବା ପାଠକଙ୍କ ଠାରୁ ନାପସନ୍ଦ କରିଥିବା କବିଙ୍କ ସଂଖ୍ୟା ଥିଲା ଅଧିକା । ଆହତ ସମୀକ୍ଷକ ୨୦୦୧ ମସିହା ଶାରଦୀୟ ସଂଖ୍ୟାରେ ଯେଉଁ ସଂପାଦକୀୟଟି ଲେଖନ୍ତି ତା'ର ଶୀର୍ଷକ ଥିଲା 'ସଂପାଦକୀୟ ନୁହେଁ ଅଗ୍ରଲେଖ !' ଏଥିରେ ୨୦୦୦ ମସିହା ପୂଜାସଂଖ୍ୟା (କଥା କଥା କବିତା କବିତା)ରେ ପ୍ରକାଶିତ ପ୍ରଫେସର ସର୍ବେଶ୍ୱର ଦାସଙ୍କ 'ପ୍ରିୟଛାତ୍ର' ସ୍ମୃତିଲେଖାର କିୟଦଂଶ ଉଦ୍ଧୃତି ଭାବରେ ଗ୍ରହଣ କରାଯାଇଛି । ପ୍ରଫେସର ଦାଶଙ୍କ ମତରେ, "କବି ଆଉ ଶାସକ ରମାକାନ୍ତ ଅଲଗା । କିନ୍ତୁ ସମୟ ସମୟରେ ମନେହୁଏ କବି ରମାକାନ୍ତ କ'ଣ ଶାସକ ହୋଇଥିବାରୁ ଆଖି ବୁଜିଦେଲେ । ଅର୍ଦ୍ଧଶତାବ୍ଦୀର ଯନ୍ତ୍ରଣାକୁ, ବ୍ୟର୍ଥତାକୁ ? ଭୁଲିଗଲେ ବନ୍ୟା, ବାତ୍ୟା, ମରୁଡ

ପ୍ରପୀଡ଼ିତଙ୍କୁ - ଅନାହାରକ୍ଲିଷ୍ଟ ଜନତାଙ୍କୁ । ମୃତ୍ୟୁଚେତନା, ବିଷଣ୍ଣତା ତା'ର କ'ଣ କେବଳ ଏକାନ୍ତ ବ୍ୟକ୍ତିଗତ ଚେତନା ବା ଏକ ରୋମାଣ୍ଟିକ୍ ମନର ଆବେଗାତ୍ମକ ବିଳାସ ମାତ୍ର? ବାସ୍ତବ ମୃତ୍ୟୁକୁ ଯେପରି ସେ ଏଡ଼େଇ ଦେଇଛି ।" ଏପରି ଘଟଣାବର୍ତ୍ତ ମଧ୍ୟରେ ଅଧ୍ୟାପକ କୁଳମଣି ଜେନା 'ରକ୍ତବର୍ଣ୍ଣ ବାଲି'ର ସମୀକ୍ଷାକୁ ନେଇ ଗୋଟିଏ ଲେଖା ପଠାନ୍ତି, ଯାହାର ଶୀର୍ଷକ 'ଓଡ଼ିଆ ସମାଲୋଚନା ସାହିତ୍ୟର ଦିଗ ପରିବର୍ତ୍ତନ ।' ଅଧ୍ୟାପକ ଜେନାଙ୍କର ଏହି ଲେଖାଟିକୁ ଅଗ୍ରଲେଖ ରୂପେ ଉପସ୍ଥାପନ କରାଯାଇଥିଲା । ଓଡ଼ିଆ କବିତାର ବିବର୍ତ୍ତନର ଧାରାରେ 'ଇସ୍ତାହାର-୭୯' ଓ 'ଇସ୍ତାହାର-୮୨' ସଂଖ୍ୟା ଉଲ୍ଲେଖଯୋଗ୍ୟ ଆସନ ଦାବି କରନ୍ତି । କେବଳ ସାହିତ୍ୟ ନୁହେଁ, ସମାଲୋଚନା ମଧ୍ୟ ଜନବାଦୀ ଏବଂ ମାନବତାବାଦୀ ହେବା ଆବଶ୍ୟକ ବୋଲି ସଂପାଦକ କହନ୍ତି ।

ଇସ୍ତାହାର-୮୮ ସଂଖ୍ୟାର ସଂପାଦକୀୟ ପୃଷ୍ଠାରେ 'ଇସ୍ତାହାରର କେତୋଟି ଶାରଦୀୟ ଓ ବିଶେଷ ସଂଖ୍ୟା ଉପରେ ଆଲୋକପାତ କରନ୍ତି ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ଏଥିରେ ମଧ୍ୟ ଓଡ଼ିଆ କବିତାକୁ ନେଇ ଯେଉଁ ସମୀକ୍ଷାତ୍ମକ ନିବନ୍ଧଗୁଡ଼ିକ ପ୍ରକାଶିତ ହୋଇଛି, ତା'ର ଏକ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଛି ।

୨୦୦୬ ମସିହା ଶାରଦୀୟ ବିଶେଷାଙ୍କରେ ସଂପାଦକୀୟର ଶୀର୍ଷକ ଥିଲା 'ସାଂପ୍ରତିକ ଓଡ଼ିଆ କବିତା' । ୧୯୮୦-୨୦୦୦ ଏହି ଦୁଇ ଦଶନ୍ଧିର କବିତା ମଧ୍ୟରେ ଯେଉଁ ଆଶ୍ୱାସନାର ସ୍ୱର ଶୁଣାଯାଇଥିଲା, ତାହା ପୁନର୍ବାର ଶିଥିଳ ହୋଇଯାଇଛି । କବିତା ପ୍ରେମ, ନିଃସଂଗତା, ହତାଶା, ଅତୀତ ଆତ୍ମମୁଖତା ଓ ନିଜସ୍ୱ ସଂପର୍କର ଇଲାକା ପରିତ୍ୟାଗ କରି ଦେଶ ଓ ଦଶର କୋହ ବ୍ୟକ୍ତ କରୁ ଏହାହିଁ ଶ୍ରୀଯୁକ୍ତ ଶତପଥୀଙ୍କର ଅଭିଳାଷ । ଓଡ଼ିଆ କବିତା ପରିପାର୍ଶ୍ୱର ସତ୍ୟ ଓ ସମସ୍ୟାକୁ ଉପେକ୍ଷା ନ କରି ସେଥିପ୍ରତି ଅଧିକ ଶ୍ରଦ୍ଧାଶୀଳ ହେବା ଆବଶ୍ୟକ । 'ଇସ୍ତାହାର'ର ପୂଜା ସଂଖ୍ୟାରେ ପ୍ରକାଶିତ ହେବା ପାଇଁ ଆସିଥିବା ଦୁଇଶହରୁ ଊର୍ଦ୍ଧ୍ୱ କବିତା ମଧ୍ୟରେ ପ୍ରଳୟଙ୍କରୀ ବାତ୍ୟା ବ୍ୟାପାତର ଚିତ୍ର ନ ଦେଖି ହତାଶ ହୋଇଛନ୍ତି ସଂପାଦକ । ଓଡ଼ିଆ କବିତାକୁ ଆଦରଣୀୟ ଓ ଗ୍ରହଣୀୟ କରିବା ନିମନ୍ତେ ଏହି ସଂପାଦକୀୟରେ ଯେଉଁ ଆହ୍ୱାନ ପ୍ରଦାନ କରାଯାଇଛି ତାହା ଅଭିନନ୍ଦନୀୟ ।

୨୦୧୦ ମସିହା ଶାରଦୀୟ ଇସ୍ତାହାରର ସଂପାଦକୀୟର ଶୀର୍ଷକ ଥିଲା 'ଜଳଧାରା ନା ଜଳଧାର?' ଏହି ସଂପାଦକୀୟଟିରେ ଅତ୍ୟନ୍ତ ଅଭିନବ ଶୈଳୀରେ ଭୀମଭୋଇଙ୍କ କବିତାର ଗୋଟିଏ ମାତ୍ର ପଂକ୍ତିର ଗୋଟିଏ ମାତ୍ର ଶବ୍ଦକୁ ବିଶ୍ଳେଷଣ କରିଛନ୍ତି ପ୍ରାଜ୍ଞ ସଂପାଦକ । "ଶୂନ୍ୟ ପବନ ବୋଲାଇଲା, ଜଳଧାରା ହେଲା ସ୍ଥିରୀ / ଏଥିରୁ ଅଧିକ ଅଛି ଯେବେ ସନ୍ଥେ କହିଦିଅ ବାଛି କରି ।" - ଏହି ପଂକ୍ତିଟିରେ ଜଳଧାରା ଶବ୍ଦଟି ଜଳଧାର

ହେବ; ଏହା ପ୍ରତିପାଦିତ କରିବାକୁ ଯାଇ ସମାଲୋଚକ ଯେଉଁ ଭାବମୟ ଏବଂ ଜ୍ଞାନମୟ ପ୍ରତିପାଦନ ପ୍ରଦାନ କରିଛନ୍ତି; ତାହା ଓଡ଼ିଆ କବିତାର ଅବବୋଧ କ୍ଷେତ୍ରରେ ଏକ ନୂତନ ପରିମଣ୍ଡଳ ସୃଷ୍ଟି କରିପାରିଛି ।

ଏହିପରି ଇସ୍ତାହାରର ବୌଦ୍ଧିକ ସଂପାଦକୀୟ ପୃଷ୍ଠା ମଧ୍ୟ ଆଧୁନିକ ଓଡ଼ିଆ କବିତାର ଆଲୋଚନା ଧାରାକୁ ପରିପୁଷ୍ଟ କରିବା ନିମନ୍ତେ ସହାୟକ ହୋଇପାରିଛି ।

## ୩. ସମାଲୋଚନାଧର୍ମୀ ଅନୁବାଦର ଭୂମିକା:-

ଆଲୋଚ୍ୟ ପ୍ରସଙ୍ଗରେ ଓଡ଼ିଆ ପତ୍ରପତ୍ରିକାରେ ସଂଯୋଜିତ ଏକ ବିରଳ ଅଧ୍ୟାୟ ସଂପର୍କରେ ଆଲୋଚନା କରାଯିବ । ଅନୁବାଦ ଯେ କୌଣସି ଭାଷାସାହିତ୍ୟର ଏକ ଅପରିହାର୍ଯ୍ୟ ଅଙ୍ଗ । ତେଣୁ ଅନୂଦିତ ଗଳ୍ପ, କବିତା, ଉପନ୍ୟାସ ଆଦିର ଗୁରୁତ୍ୱ ସ୍ୱୀକାର କରି ପ୍ରତ୍ୟେକ ପତ୍ରପତ୍ରିକା ଅନୁସୃଜନଧର୍ମୀ ସୃଷ୍ଟିକୁ ସାଦର ସ୍ଥାନ ପ୍ରଦାନ କରିଛନ୍ତି । କିନ୍ତୁ 'ଇସ୍ତାହାର' ପତ୍ରିକାରେ କେତେବେଳେ ସମାଲୋଚନାତ୍ମକ ପ୍ରବନ୍ଧର ଅନୁବାଦ ସ୍ଥାନିତ କରାଯାଇଥିଲା । ଏହି ସମାଲୋଚନାଧର୍ମୀ ଅନୁବାଦକୁ ଆମେ ୩ ଭାଗରେ ବିଭକ୍ତ କରିପାରିବା ।

୧ମ - ଓଡ଼ିଆ କବିଙ୍କ ସଂପର୍କରେ କରାଯାଇଥିବା ସମାଲୋଚନାତ୍ମକ ପ୍ରବନ୍ଧର ଅନୁବାଦ ।

୨ୟ - ବିଶିଷ୍ଟ ସାହିତ୍ୟିକଙ୍କ ରଚିତ ସମାଲୋଚନାଧର୍ମୀ ପ୍ରବନ୍ଧର ଅନୁବାଦ ।

୩ୟ - ଓଡ଼ିଆ କବିମାନଙ୍କର ଇଂରାଜୀ ବକ୍ତବ୍ୟ ବା ସୃଷ୍ଟିର ଅନୁବାଦ ।

### ୩.୧ - ଓଡ଼ିଆ କବିଙ୍କ ସଂପର୍କରେ କରାଯାଇଥିବା ସମାଲୋଚନାତ୍ମକ ପ୍ରବନ୍ଧର ଅନୁବାଦ:-

୧୯୯୪ ମସିହା ଶାରଦୀୟ ସଂଖ୍ୟାରେ 'ସମୟ ଓ ଶବ୍ଦର କବି ସୀତାକାନ୍ତ' ଶୀର୍ଷକରେ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୁଏ । ଏହି ପ୍ରବନ୍ଧଟି ଗୋଟିଏ ସମାଲୋଚନାଧର୍ମୀ ପ୍ରବନ୍ଧର ଅନୁବାଦ । ମୂଳ ପ୍ରବନ୍ଧଟିର ଲେଖକ ହେଉଛନ୍ତି ଡଃ ନାମବର ସିଂହ । ଏବଂ ଏହା ହିନ୍ଦୀ ଭାଷାରେ ରଚିତ ହୋଇଥିଲା । ଡକ୍ଟର ବଳରାମ ମିଶ୍ର ଏହି ପ୍ରବନ୍ଧଟିକୁ ଅନୁବାଦ କରିଛନ୍ତି । କବି ସୀତାକାନ୍ତଙ୍କୁ ଡକ୍ଟର ସିଂହ ଏହି ପ୍ରବନ୍ଧରେ କୃଷ୍ଣକାନ୍ତ କବି ରୂପେ ଗ୍ରହଣ କରିଛନ୍ତି । ଆଲୋଚକଙ୍କ ଭାଷାରେ, "ଏହା ବି ଗୋଟିଏ ବିରୋଧାଭାଷ ଯେ ସୀତାକାନ୍ତ କବିତା କ୍ଷେତ୍ରରେ ହେଉଛନ୍ତି କୃଷ୍ଣକାନ୍ତ । କୃଷ୍ଣଙ୍କ ଛାୟା ତାଙ୍କର କବିତାରେ ଖୁବ୍ ସୁବିସ୍ତୃତ । କବି କୃଷ୍ଣ କଥା ଦ୍ୱାରା ଏତେ ପ୍ରଭାବିତ ଯେ ତାଙ୍କର ନିଜ ଗାଁର ସ୍ମୃତି ବିମ୍ବାତ୍ମକ ହୋଇଯାଇଚି-

"ଦୁଇ ପାହାଡ଼ ଭିତରେ ମୁଣ୍ଡ ଗୁଞ୍ଜି
ତମ ଗାଁ ତଥାପି ନିଦରେ ଶୋଇଥାଏ
ପୁତନାର ଦୁଇ ବିଶାଳ
ସ୍ତନ ମଝିରେ ଶିଶୁ କୃଷ୍ଣ ।"

ଏହି ବିମ୍ବଦ୍ୱାରା ଏହା ସ୍ପଷ୍ଟ ଯେ ସୀତାକାନ୍ତ କୃଷ୍ଣଙ୍କୁ ଏକ ଆଧୁନିକ କବି ଭାବରେ ଦେଖିଛନ୍ତି ।" (ପୃ-୨୧୨ - ଇସ୍ତାହାର ୬୩/୬୪)

## ୩.୨ ବିଶିଷ୍ଟ ସାହିତ୍ୟିକଙ୍କ ରଚିତ ସମାଲୋଚନାଧର୍ମୀ ପ୍ରବନ୍ଧର ଅନୁବାଦ:-

୧୯୮୪ ମସିହା ଏପ୍ରିଲ୍-ଜୁନ୍ ସଂଖ୍ୟା ଇସ୍ତାହାରରେ 'ବିଶ୍ୱ ସାହିତ୍ୟ ପରିକ୍ରମା' ପୃଷ୍ଠାରେ ଟି.ଏସ୍.ଇଲିଅଟଙ୍କ ସମାଲୋଚନା - 'ହ୍ୟାମଲେଟ'ର ଅନୁବାଦ ପ୍ରକାଶିତ ହୋଇଛି । ଏହି ପ୍ରବନ୍ଧଟିକୁ ଇଂରାଜୀ ଭାଷାରୁ ଅନୁବାଦ କରିଛନ୍ତି ରବି ସ୍ୱାଇଁ । ଅନୂଦିତ ପ୍ରବନ୍ଧର ଅଗ୍ରଭାଗରେ ଅନୁବାଦକ ଯେଉଁ ସୂଚନା ପ୍ରଦାନ କରିଛନ୍ତି ତାହା ନିମ୍ନରେ ପ୍ରଦାନ କରାଗଲା ।

(ହ୍ୟାମ୍‌ଲେଟ୍ ଇଂରାଜୀ ନାଟ୍ୟକାର ସେକ୍‌ସପିୟରଙ୍କ ରଚିତ ଅନ୍ୟତମ ଜନପ୍ରିୟ ଟ୍ରାଜେଡ଼ି । ଟି.ଏସ୍.ଇଲିୟଟ୍‌ଙ୍କ ଏହି ପ୍ରବନ୍ଧକୁ ସେକ୍‌ସପିୟରଙ୍କ ହ୍ୟାମ୍‌ଲେଟ୍ ନାଟକର ଏକ ସଂକ୍ଷିପ୍ତ ସମାଲୋଚନା ଭାବେ ନିଆଯାଇପାରେ । କିନ୍ତୁ ଏହି ପ୍ରବନ୍ଧର ଭିନ୍ନ ଏକ ମହତ୍ତର ଉଦ୍ଦେଶ୍ୟ ରହିଅଛି । ଇଲିଅଟ୍ ଏହି ପ୍ରବନ୍ଧ ମାଧ୍ୟମରେ ସମାଲୋଚନାର ଏକ ନୂତନ ବ୍ୟାଖ୍ୟା କରିଛନ୍ତି । ତାହା ହେଲା ତାଙ୍କର ଅବ୍‌ଜେକ୍‌ଟିଭ୍ କୋ ରିଲେଟିଭ୍ ତତ୍ତ୍ୱ । କେତେକ ଓଡ଼ିଆ ସମାଲୋଚକ ଏହି ତତ୍ତ୍ୱକୁ 'କାବ୍ୟିକ ଅନିବାର୍ଯ୍ୟତା' ନାମରେ ନାମିତ କରିଅଛନ୍ତି । କିନ୍ତୁ ଏଠାରେ ସେହି ଇଂରାଜୀ ନାମଟିକୁ ହିଁ ରଖାଯାଇଛି ଏବଂ ଗ୍ରହଣ କରାଯାଇଛି ।)

୧୯୯୧ ମସିହା ଜୁଲାଇ ସଂଖ୍ୟାରେ 'ଆଧୁନିକତାର ପ୍ରଶ୍ନ : ସାହିତ୍ୟ ସଂପର୍କରେ' ଶୀର୍ଷକ ଏକ ସମାଲୋଚନାଧର୍ମୀ ପ୍ରବନ୍ଧ ପ୍ରକାଶିତ ହୁଏ । ଏହି ପ୍ରବନ୍ଧଟିର ମୂଳ ରଚନାକାର ହିନ୍ଦୀ ଭାଷୀ ସମାଲୋଚକ ଡଃ ନଗେନ୍ଦ୍ର । ପ୍ରବନ୍ଧଟିର ମର୍ମାନୁବାଦ କରିଛନ୍ତି ଶ୍ରୀ ବିଜୟ କୁମାର ମହାରଣା । ଆଧୁନିକ ସାହିତ୍ୟର ବିଚାର ସମୟରେ ଏହି ବୌଦ୍ଧିକ ପ୍ରବନ୍ଧଟି ଜ୍ଞାନ ଲିପ୍‌ସୁ ଛାତ୍ର ଓ ଗବେଷକ ମାନଙ୍କର ବିଶେଷ ସହାୟକ ହୋଇପାରିବ ।

## ୩.୩ ଓଡ଼ିଆ କବିମାନଙ୍କର ଇଂରାଜୀ ବକ୍ତବ୍ୟ ବା ସୃଷ୍ଟିର ଅନୁବାଦ:-

୧୯୮୯ ମସିହା ମେ ମାସ 'ଇସ୍ତାହାର'ରେ 'କବିତାର ରହସ୍ୟଗୁଣ' ଶୀର୍ଷକରେ ଏକ ଅନୂଦିତ ପ୍ରବନ୍ଧ ପ୍ରକାଶିତ ହୁଏ । ଏହି ପ୍ରବନ୍ଧଟିର ମୂଳ ଲେଖକ କବି ଜୟନ୍ତ ମହାପାତ୍ର । ଶ୍ରୀଯୁକ୍ତ ମହାପାତ୍ର ଇଣ୍ଡୋ-ଆଂଗ୍ଲିଆନ୍ କବି ରୂପେ ସାରାବିଶ୍ୱରେ ପରିଚିତ ।

'Indian Post' ରେ ସ୍ୱକାବ୍ୟ ଚେତନା ଓ ସୃଷ୍ଟି ପ୍ରକ୍ରିୟା ସଂକ୍ରାନ୍ତରେ ରଚିତ ତାଙ୍କର ଏହି 'Post Script' ରଚନାଟିର ଅନୁବାଦ କରିଛନ୍ତି କବି ପ୍ରତିଭା ଶତପଥୀ ।

୧୯୯୩ ମସିହା ଜୁନ୍ ମାସ 'ଇସ୍ତାହାର'ରେ ସରସ୍ୱତୀ ସମ୍ମାନ ଉତ୍ସବ ମଞ୍ଚରେ କବି ରମାକାନ୍ତ ରଥ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ, ତାର ଅନୁବାଦ କରିଛନ୍ତି କବି ପ୍ରତିଭା ଶତପଥୀ ।

ସମାଲୋଚନାଧର୍ମୀ ପ୍ରବନ୍ଧର ଅନୁବାଦ 'ଇସ୍ତାହାର'ର ଅନ୍ୟତମ ବଳିଷ୍ଠ ବିଶେଷତ୍ୱ ହୋଇଥିଲେ ହେଁ ଏହାର ସଂଖ୍ୟା ନଗଣ୍ୟ । ସଂପ୍ରତି ଏହି ବିଭାଗଟି ସଂପୂର୍ଣ୍ଣ ଲୁପ୍ତ । 'ଇସ୍ତାହାର'ର ବିଜ୍ଞ ସଂପାଦକମଣ୍ଡଳୀ ଏଥିନିମନ୍ତେ ଯତ୍ନଶୀଳ ହେବା ଆବଶ୍ୟକ ।

## ୪. ଉଚ୍ଚକୋଟୀର ସାକ୍ଷାତ୍‌କାର:-

ସାକ୍ଷାତ୍‌କାର ପତ୍ରପତ୍ରିକାର ଅପରିହାର୍ଯ୍ୟ ଅଙ୍ଗ । ସାକ୍ଷାତକାର ମାଧ୍ୟମରେ ଜଣେ କବିଙ୍କର ଆଭିମୁଖ୍ୟ ସଂପର୍କର ସ୍ପଷ୍ଟ ସୂଚନା ମିଳିଥାଏ । 'ଇସ୍ତାହାର' ପତ୍ରିକାରେ ଓଡ଼ିଆ କବିମାନଙ୍କ ସମେତ ଭାରତୀୟ କବି ଓ ସାହିତ୍ୟିକମାନଙ୍କର ସାକ୍ଷାତକାର ପ୍ରଦାନ କରିବା ନିମନ୍ତେ ପ୍ରଯତ୍ନ କରାଯାଇଥିଲା । ଇସ୍ତାହାରର ଷଷ୍ଠ ସଂଖ୍ୟାରେ 'କବି ଶ୍ରୀ ରମାକାନ୍ତ ରଥଙ୍କ ସହ ସାକ୍ଷାତକାର' ପ୍ରକାଶିତ ହୁଏ । ଏହି ସାକ୍ଷାତ୍‌କାରଟି ଶ୍ରୀ ଅଭୟ ସିଂ ଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଛି । ଏଥିରେ ସ୍ଥାନିତ ୧୪ ଗୋଟି ପ୍ରଶ୍ନ ମଧ୍ୟରୁ ଗୋଟିଏ ପ୍ରଶ୍ନ ଦୁର୍ବୋଧତାକୁ ନେଇ କରାଯାଇଛି । ଯାହାର ଉତ୍ତରରେ କବି କହିଛନ୍ତି, "ଯଦି ମୋର କବିତା ଅବୋଧ ରହିଯାଉଛି ସେଥିପାଇଁ ମୁଁ ଦୁଃଖିତ । ଏ ଅବୋଧତା ଇଚ୍ଛାକୃତ ନୁହେଁ, ବରଂ ମୁଁ ମୋର ବକ୍ତବ୍ୟ ପ୍ରାଞ୍ଜଳ କରିବାକୁ ସବୁବେଳେ ଚେଷ୍ଟା କରୁଛି । ଯଦି ସଫଳ ହୋଇପାରୁନାହିଁ ମୋର କାବ୍ୟିକ ପ୍ରଚେଷ୍ଟା ବ୍ୟର୍ଥ ବୋଲି ସ୍ୱୀକାର କରିବାରେ ମୋର କୌଣସି ଦ୍ୱିଧା ନାହିଁ ।

ପୁନଶ୍ଚ ୧୯୮୮ ମସିହା ଶାରଦୀୟ ସଂଖ୍ୟାରେ 'ଶ୍ରୀରାଧା'ର କବିଙ୍କୁ କେତୋଟି ପ୍ରଶ୍ନ ଶୀର୍ଷକରେ ଏକ ସାକ୍ଷାତ୍‌କାର ପ୍ରକାଶିତ ହୁଏ । ଏହି ସାକ୍ଷାତକାରଟି ଇସ୍ତାହାର ସଂପାଦନା ମଣ୍ଡଳୀ ଅର୍ଥାତ୍ (ଡକ୍‌ଟର ପ୍ରତିଭା ଶତପଥୀ, ଡକ୍‌ଟର ଆଶୁତୋଷ ପରିଡ଼ା ଓ ଅଧ୍ୟାପକ ଶତ୍ରୁଘ୍ନ ପାଣ୍ଡବ) ମିଳିତ ଭାବରେ କରିଛନ୍ତି । ଏହି ସାକ୍ଷାତକାରର ସମସ୍ତ ପ୍ରଶ୍ନ କେବଳ 'ଶ୍ରୀରାଧା' ଉପରେ ପର୍ଯ୍ୟବସିତ ।

ଇସ୍ତାହାରର ୪୯/୫୦ ସଂକ୍ୟାରେ ଜ୍ଞାନପୀଠ ପୁରସ୍କାର ବିଜେତା ପଦ୍ମଶ୍ରୀ ଡଃ ସଚ୍ଚିଦାନନ୍ଦ ରାଉତରାୟଙ୍କ ସହ ଏକ ସାକ୍ଷାତକାର ସଂଯୋଜିତ କରାଯାଏ । ଏହି ସାକ୍ଷାତକାରଟିର ଉପସ୍ଥାପକ ଶ୍ରୀ କୁଳମଣି ଓଝା । ଏଥିରେ ଥିବା ୧୭ ଗୋଟି ପ୍ରଶ୍ନ ମଧ୍ୟରେ ଆଧୁନିକ ଓଡ଼ିଆ କବିତାର ଆଙ୍ଗିକ ଓ ଆତ୍ମିକ ବୈଭବକୁ ଆକଳନ କରିହୁଏ ।

କେବଳ ଓଡ଼ିଆ କବିମାନଙ୍କ ସହିତ ନୁହେଁ ବରଂ ଭାରତୀୟ କବିଙ୍କ ସହ ସାକ୍ଷାତ୍‌କାର 'ଇସ୍ତାହାର' ପତ୍ରିକାର ଅନ୍ୟତମ ଅଭିନନ୍ଦନୀୟ ପଦକ୍ଷେପ । ୧୯୯୦ ମସିହାର ଶାରଦୀୟ ବିଶେଷାଙ୍କରେ କବି ଶ୍ରୀ ହରଭଜନ ସିଂଙ୍କ ସହ ସାକ୍ଷାତକାର ପ୍ରକାଶିତ ହୁଏ । ଯାହାର ଉପସ୍ଥାପକ ହେଉଛନ୍ତି କୁମାର ଶ୍ରୀକାନ୍ତ । ସେହିପରି ୧୯୮୮ ମସିହାର ଶାରଦୀୟ ସଂଖ୍ୟାରେ ଜ୍ଞାନପୀଠ ବିଜେତା ଅସମୀୟା ସାହିତ୍ୟିକ ଶ୍ରୀ ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟଙ୍କ ସହ ସାକ୍ଷାତକାର ପ୍ରକାଶିତ ହୁଏ ।

ଇସ୍ତାହାର-୫୭ରେ କବି ନୃସିଂହ ପ୍ରସାଦ ତ୍ରିପାଠୀଙ୍କ ସହ ଗୋଟିଏ ସାକ୍ଷାତକାର ଉପସ୍ଥାପିତ ହୁଏ । ଏହି ସାକ୍ଷାତକାରଟିର ଉପସ୍ଥାପକ ହେଉଛନ୍ତି କବି ଆଶୁତୋଷ ପରିଡ଼ା ଓ କବି ପ୍ରତିଭା ଶତପଥୀ । ୧୯୯୪ ମସିହା ଶାରଦୀୟ ସଂଖ୍ୟାରେ କବି ଦୀପକ ମିଶ୍ରଙ୍କ ସହ ସାକ୍ଷାତକାର ପ୍ରକାଶିତ ହୁଏ । ଏହି ସାକ୍ଷାତକାରଟି କବି ଶତ୍ରୁଘ୍ନ ପାଣ୍ଡବଙ୍କ ଦ୍ୱାରା କରାଯାଇଛି । ୨୦୦୫ ମସିହା ନବବର୍ଷ ବିଶେଷାଙ୍କରେ ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ଖବର ଶୁଣିବା ପରେ ଇସ୍ତାହାରର ସଂପାଦକ ତାଙ୍କୁ ଗୃହରେ ଭେଟିବା ପରେ ଯେଉଁ ସାକ୍ଷାତକାରଟି ପ୍ରସ୍ତୁତ କରି ପ୍ରକାଶ କରିଛନ୍ତି ତାହା ଅତ୍ୟନ୍ତ ଉଚ୍ଚକୋଟୀର ଓ ହୃଦୟସ୍ପର୍ଶୀ । ଏଥିରେ ପ୍ରଫୁଲ୍ଲ ମହାନ୍ତିଙ୍କର ଆଧୁନିକ ଓଡ଼ିଆ କବିତାର ଅବବୋଧକୁ ନେଇ ଗୋଟିଏ ପ୍ରଶ୍ନ ରହିଛି । ନିମ୍ନରେ ସେହି ସାକ୍ଷାତ୍‌କାରର ନିର୍ଦ୍ଧାରିତ ଅଂଶଟି ପ୍ରଦାନ କରାଗଲା ।

"ପ୍ରଶ୍ନ - 'ନିଦାଘର କବି' ଏପରି ନାମକରଣ କାହିଁକି ?

ଉତ୍ତର - ଏ ସମାଲୋଚନା ଗ୍ରନ୍ଥରେ ମୁଁ ପ୍ରାୟ ୧୯୫୦ ରୁ ୮୦ ମସିହା ମଧ୍ୟବର୍ତ୍ତୀ କବିତାକୁ ଆଲୋଚନାକୁ ଆଣିଛି । ମୋ ମତରେ ଏ ସମୟର ଆଧୁନିକ କବିତାର ରସ, ଛନ୍ଦ ଓ ଶୀଳତାର କୌଣସି ଆଶ୍ୱାସନା ନାହିଁ ଓ ହା'ହୁତାଶମୟ ଜୀବନର ଚିତ୍ର ଅଧିକ ରହିଛି । ଏହାର ବିଭିନ୍ନ / ବିସ୍ତୃତ ଆଲୋଚନା ସଚ୍ଚିବାବୁଙ୍କଠାରୁ ରାଜେନ୍ଦ୍ର ପଣ୍ଡାଙ୍କ କବିତା ପର୍ଯ୍ୟନ୍ତ । ମୋର ବିଭିନ୍ନ ସମାଲୋଚନାତ୍ମକ ଲେଖା- ଅଧିକାଂଶ 'ଇସ୍ତାହାର'ରେ ପ୍ରକାଶ ପାଇଥିଲା । ସେଇସବୁ ଆଲୋଚନାର ଏକ ସମାହାର 'ନିଦାଘର କବି' । ଶବ୍ଦସଂଯୋଜନା, ଛନ୍ଦଯୋଜନା ଓ ନୂତନ ଶୈଳୀର ପ୍ରୟୋଗ ସତ୍ତ୍ୱେ ଯେଉଁ ଜୀବନଚର୍ଯ୍ୟା ପ୍ରକାଶ ପାଇଛି ସେଠି କବି ସଂପୂର୍ଣ୍ଣଭାବେ ବିଚ୍ଛିନ୍ନ ଓ ଆତ୍ମଲୀନ । ପ୍ରେମର ସମ୍ଭାବନା ନାହିଁ, ମାନବବାଦିତା ବିଲୁପ୍ତ । ଯେଉଁ ଥିମ୍ କୁ ନିଆଯାଇ କବିତା ଲେଖାଯାଇଛି ସେଥିରେ କୌଣସି ନୂତନତ୍ୱ ନାହିଁ, ଶେଷ ସିଦ୍ଧାନ୍ତ ବୋଲି କିଛି ନାହିଁ ।" ଏହାପରେ ଗୁରୁପ୍ରସାଦ ମହାନ୍ତି, ସୀତାକାନ୍ତଙ୍କ 'ଅଷ୍ଟପଦୀ', ରମାକାନ୍ତଙ୍କ 'ଅନେକ କୋଠରୀ', ସୌଭାଗ୍ୟ ମିଶ୍ର ଓ ହରପ୍ରସାଦ ଦାସଙ୍କ କବିତାକୁ ନେଇ କେତୋଟି ପ୍ରଶ୍ନୋତ୍ତର ସନ୍ନିବେଶିତ ।

ଆଧୁନିକ ଓଡ଼ିଆ କବିତାକୁ ନେଇ ଗବେଷଣାରତ ଛାତ୍ର, ଜିଜ୍ଞାସୁ ପାଠକ, ଶ୍ରେଣୀ ଗୃହରେ ଅଧ୍ୟୟନରତ ଅଧ୍ୟାପକ ସମସ୍ତଙ୍କ ନିମନ୍ତେ ଏସବୁ ସାକ୍ଷାତକାରଗୁଡ଼ିକ ପାଠ କରିବା ଏକାନ୍ତ ଅପରିହାର୍ଯ୍ୟ । ସଂପ୍ରତି 'ଇସ୍ତାହାର' ପୃଷ୍ଠାରେ ଏହି ସାକ୍ଷାତ୍କାର ପୃଷ୍ଠାଟି ମଳିନ ହୋଇଯାଇଛି । ଅବଶ୍ୟ ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ, ହୃଷୀକେଶ ପଣ୍ଡା ଓ ଦୀନନାଥ ପାଠୀଙ୍କ ସହ ସାକ୍ଷାତକାରମାନ ପ୍ରକାଶିତ ହୋଇଛି, କିନ୍ତୁ ଏହା ନିୟମିତ ହୋଇପାରିନାହିଁ । ଏଥିପ୍ରତି 'ଇସ୍ତାହାର'ର ସଂପାଦକ ମଣ୍ଡଳୀ ଯତ୍ନଶୀଳ ହେବେ ବୋଲି ଆଶା ପୋଷଣ କରିବା ଉଚିତ ହେବ ।

## ୫. ସାହିତ୍ୟ ସମାଚାର :-

୧୯୮୩ ମସିହା ଇସ୍ତାହାରର ନବବର୍ଷ ବିଶେଷାଙ୍କରେ ଓଡ଼ିଶା ସାହିତ୍ୟ ଏକାଡେମୀର 'ରଜତ ଜୟନ୍ତୀ କବିତା ପାଠୋତ୍ସବ' ଶୀର୍ଷକରେ ଶ୍ରୀଯୁକ୍ତ ହୃଷୀକେଶ ମଲ୍ଲିକଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପ୍ରକାଶିତ ହୁଏ । ଏଥିସହିତ ଲେଖକ ସାମ୍ମୁଖ୍ୟ ତରଫରୁ ଆୟୋଜିତ 'ସାହିତ୍ୟୋତ୍ସବ-୧୯୮୨' ସଂପର୍କରେ ମଧ୍ୟ ଗୋଟିଏ ବିବରଣୀ କବି ମଲ୍ଲିକ ପ୍ରକାଶିତ କରନ୍ତି । ଏହି ଆଲେଖ୍ୟ ଶେଷରେ ସଂପାଦକ ଶତପଥୀ ଯେଉଁ ଅଭିମତ ପ୍ରଦାନ କରନ୍ତି, ତାହା ନିମ୍ନରେ ପ୍ରଦାନ କରାଗଲା । "(ଚଳିତ ସଂଖ୍ୟାଠାରୁ 'ଇସ୍ତାହାର'ରେ 'ସାହିତ୍ୟ ସମାଚାର' ନାମରେ ଏକ ନିର୍ଦ୍ଦିଷ୍ଟ ଅଧ୍ୟାୟ ପରିବେଶିତ ହେଉଅଛି । ଏହା ଏଣିକି ଧାରାବାହିକ ଭାବେ ପ୍ରତିସଂଖ୍ୟାରେ ସ୍ଥାନ ପାଇବ । ସାଂପ୍ରତିକ ସାହିତ୍ୟ ଜଗତରେ ଉତ୍କଟ ଆତ୍ମମ୍ଭରିତା, ଗୋଷ୍ଠୀଗତ ହୀନ ପ୍ରଚାରମୂଳକତା, ସାହିତ୍ୟ ସମ୍ମିଳନୀ ନାମରେ ହେଉଥିବା ପାରସ୍ପରିକ କୁତ୍ସା, ଅସଂଗତି ଓ ଅସାମଞ୍ଜସ୍ୟ, ଅସୂୟା ସର୍ବୋପରି ଓଡ଼ିଆ ସାହିତ୍ୟରେ ପ୍ରତ୍ୟକ୍ଷୀଭୂତ ହେଉଥିବା ନାନାଦି ହୀନ ଅସାହିତ୍ୟିକ କାର୍ଯ୍ୟକଳାପକୁ ଲୋକଲୋଚନକୁ ଆଣି ଗଠନମୂଳକ ଚିନ୍ତାଧାରା ସ୍ଥାପନ କରିବା ଏହି ସ୍ତମ୍ଭର ଲକ୍ଷ୍ୟ ଓ ବିଶେଷତ୍ୱ ହେବ । ତେଣୁ ଓଡ଼ିଶାର ପୁରପଲ୍ଲୀ ସହିତ ସହରାଞ୍ଚଳରେ ଘଟୁଥିବା ଅପସାହିତ୍ୟିକ/ଅଣସାହିତ୍ୟିକ ଘଟଣାବଳୀ ତଥା ସାହିତ୍ୟ ନାମରେ ହୀନ ଆତ୍ମପ୍ରଚାର, ଅଭିସନ୍ଧି ସମେତ ସାହିତ୍ୟର ସୂକ୍ଷ୍ମ ସୁନ୍ଦର ରୂପବିଭବ ଓ ନିଷ୍ଠାପର ଆନୁଷ୍ଠାନିକ କାର୍ଯ୍ୟକଳାପ ବିଷୟରେ ସଂକ୍ଷିପ୍ତ, ସ୍ପଷ୍ଟ, ଶାଣିତ ଓ ରୁଚିବନ୍ତ ଆଲୋଚନା ପଠାଇବାକୁ ତଥା ଏ କ୍ଷେତ୍ରରେ ନିର୍ଭୀକତା ଓ ନିରପେକ୍ଷତା ଅବଲମ୍ବନ କରିବାକୁ ସମୀକ୍ଷକମାନଙ୍କୁ ଅନୁରୋଧ । ଏ ସମୟରେ ପ୍ରକାଶ ପାଇବା ଲେଖାପାଇଁ ଲେଖକମାନେ ଚାହିଁଲେ ତାଙ୍କ ନାମ ସଂପୂର୍ଣ୍ଣ ଗୋପନୀୟ ରଖାଯିବ - ସଂପାଦକ)"

ଏହି ସାହିତ୍ୟ ସମାଚାର ବିଷୟକ ଅଗ୍ରଲେଖଟି କିପରି ଅଗ୍ରଗତି କରିଛି ତା'ର ସବିଶେଷ ବିବରଣୀ ସଂଗ୍ରହ କରିବା ଏହି ସମୀକ୍ଷକ ପକ୍ଷରେ ସମ୍ଭବ ହୋଇନାହିଁ । କିନ୍ତୁ

ଓଡ଼ିଆ କବିତା ପାଠୋତ୍ସବକୁ ନେଇ ଏପରି ଏକ ସ୍ତମ୍ଭର ପରିକଳ୍ପନା 'ଇସ୍ତାହାର'ର ସଂପାଦକଙ୍କର ବଳିଷ୍ଠ ଚିନ୍ତାଶକ୍ତିର ପରିଚୟ ଦିଏ ।

ଇସ୍ତାହାର-୫୭ ରେ 'ସାହିତ୍ୟ ପ୍ରେକ୍ଷାପଟ୍ଟ-୧୯୯୨' ଶୀର୍ଷକରେ ଯେଉଁ ସାହିତ୍ୟ ସମାଚାର ପ୍ରକାଶିତ ହୋଇଥିଲା, ତାହା ଅତ୍ୟନ୍ତ ଉଚ୍ଚକୋଟୀର ଓ ତଥ୍ୟଭିତ୍ତିକ ହୋଇପାରିଥିଲା । ଏହି ସାହିତ୍ୟ ସମାଚାରରେ ନିମ୍ନୋକ୍ତ ବିଷୟବସ୍ତୁ ଗୁଡ଼ିକ ସ୍ଥାନିତ କରାଯାଇଥିଲା । ଯଥା- ନୋବେଲ୍ ସାହିତ୍ୟ ବିଜେତା ୱାଲ୍‌କଟ୍, ବୁକ୍ରୁର୍ ପୁରସ୍କାର, ଯୁଗ୍ମ ବିଜେତା ମାଇକେଲ୍ ଓ ଅନ୍‌ସୱାର୍ଥ, ସରସ୍ୱତୀ ସମ୍ମାନ ବିଜେତା କବି ରମାକାନ୍ତ ରଥ, ଜ୍ଞାନପୀଠ ବିଜେତା କବି ସୁବାସ ମୁଖୋପାଧାୟ, ପ୍ରଥମ ବ୍ୟାସସମ୍ମାନ ବିଜେତା ନବମ ମୂର୍ତ୍ତିଦେବୀ ବିଜୟିନୀ ଡଃ ପ୍ରତିଭା ରାୟ, ଇକ୍‌ବାଲ୍ ସମ୍ମାନ, କବିର ସମ୍ମାନ, ଶାରଳା ପୁରସ୍କାର ବିଜୟିନୀ ଡଃ ପ୍ରତିଭା ଶତପଥୀ, ଓଡ଼ିଆ ସାହିତ୍ୟ ପାଣିପାଗ, ଆନ୍ତର୍ଜାତିକ ପାଣିପାଗ, ସାହିତ୍ୟ ଏକାଡେମୀ ପୁରସ୍କାର ବିଜେତା ସ୍ୱର୍ଗତ ରବିପଟ୍ଟନାୟକ, ଅନ୍ୟାନ୍ୟ ପୁରସ୍କାର ଓ ସାହିତ୍ୟ ସମ୍ବାଦ ।

ସଂପ୍ରତି 'ଇସ୍ତାହାର' ପତ୍ରିକାର ଏହି ସ୍ତମ୍ଭଟି ଦୃଶ୍ୟମାନ ହେଉନଥିଲେ ହେଁ ଏପରି ସମାଚାର ଭିତ୍ତିକ ଆଲେଖ୍ୟର ଉପାଦେୟତା ଯଥେଷ୍ଟ ଅଧିକ ।

## ୬. ଅନୁବାଦ କବିତା ଓ ଇସ୍ତାହାର :-

'ଇସ୍ତାହାର' ପୃଷ୍ଠାରେ ପ୍ରକାଶିତ ଅନୂଦିତ କବିତା ସମୂହ ବିଶ୍ୱସାହିତ୍ୟ ସହ ଓଡ଼ିଆ ସାହିତ୍ୟର ଯୋଗାଯୋଗ ସ୍ଥାପନରେ ସହାୟତା କରିଥାଏ । ୧୯୯୦ ମସିହାର ଶାରଦୀୟ ଇସ୍ତାହାରରେ 'ଜର୍ମାନୀର ପୁନର୍ମିଳନ' ଓ 'ଅଶ୍ୱମେଧ ଯଜ୍ଞ' ଶୀର୍ଷକରେ ଦୁଇଟି କବିତା ସ୍ଥାନ ପାଏ । ପ୍ରଥମ କବିତାଟିର ମୂଳ ଲେଖକ ଅର୍ଲିନ୍ ନାଇଡ୍ ହୋଇଥିବାବେଳେ ଏହାର ଭାଷାନ୍ତର କରନ୍ତି ପ୍ରତିଭା ଶତପଥୀ ଏବଂ ଦ୍ୱିତୀୟ କବିତାଟିର ମୂଳ ଲେଖକ ଅମ୍ରିତା ପ୍ରୀତମ୍ ହୋଇଥିବା ବେଳେ ଏହାର ଭାଷାନ୍ତର କରନ୍ତି ଅପର୍ଣ୍ଣା ମହାନ୍ତି । କବି ପ୍ରତିଭା ଶତପଥୀ ଇସ୍ତାହାରର ଅନୁବାଦ ପର୍ଯ୍ୟାୟକୁ ସମୃଦ୍ଧ କରିବାରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ୧୯୯୮ ମସିହାର ଶାରଦୀୟ ସଂଖ୍ୟାରେ ମାଲାୟାଲମ୍ କବି ଏନ୍.ବାଲାମଣି ଅମ୍ମାଙ୍କର ସିଦ୍ଧି / ବିଶ୍ୱଦର୍ଶନ କବିତାର ଅନୁବାଦ କରନ୍ତି କବି ପ୍ରତିଭା ଶତପଥୀ । ଏତଦ୍‌ବ୍ୟତୀତ ଏହି ସଂଖ୍ୟାରେ ହିନ୍ଦୀ କବି କେଦାରନାଥ ସିଂହ ଏବଂ ଇଂରାଜୀ କବି ମାଇକେଲ୍ ଟ୍ରୁ ଙ୍କର କବିତାର ଅନୁବାଦ ମଧ୍ୟ ପ୍ରକାଶିତ ହୁଏ । ଇସ୍ତାହାର-୭୫ ସଂଖ୍ୟାଟି ଅନୂଦିତ କବିତା ଦୃଷ୍ଟିରୁ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଏଥିରେ ହିନ୍ଦୀ ସାହିତ୍ୟର ଜନକ ପ୍ରତିମ କବୀରଙ୍କ କେତୋଟି କବିତାର ମର୍ମାନୁବାଦ କରନ୍ତି କବି ରମାକାନ୍ତ ରଥ ।

ଏତଦ୍‌ବ୍ୟତୀତ ହିନ୍ଦୀଭାଷିକ କବି ଗିରୀଶ ପାଣ୍ଡେ ଓ ମୀରା ଶ୍ରୀବାସ୍ତବଙ୍କ କବିତା ଅନୁବାଦ କରନ୍ତି କବି ପ୍ରତିଭା ଶତପଥୀ । ଇସ୍ତାହାର-୮୮ ସଂଖ୍ୟାରେ ବିଶ୍ୱକବି ରବୀନ୍ଦ୍ର ନାଥଙ୍କର ଦୁଇଟି କବିତା 'ନାରୀ ଓ ସାମାନ୍ୟଜନ'ର ଅନୁବାଦ କରନ୍ତି ସୁସମାଲୋଚକ ନରେନ୍ଦ୍ର ନାଥ ମିଶ୍ର । ପୁନଶ୍ଚ ଅସମୀୟା କବିତାର ଅନୁବାଦ କରନ୍ତି ରାଜେନ୍ଦ୍ର ଷଡ଼ଙ୍ଗୀ । ଅନୁବାଦକ ରାଜେନ୍ଦ୍ର ଷଡ଼ଙ୍ଗୀ ଅସମୀୟା ଓ ବଙ୍ଗଳା ଭାଷାରୁ ନିୟମିତ କବିତା ଅନୁବାଦ ପ୍ରକାଶ କରିଆସିଛନ୍ତି । ଅସମୀୟା କବି ରବୀନ୍ଦ୍ର ସରକାର, ପଙ୍କଜ ଗୋସ୍ୱାମୀ, ଲାବଣ୍ୟଦତ୍ତ ଗୋସ୍ୱାମୀ, ରକ୍ତିମା ବରୁଆ, ହିରେନ୍ ଭଟ୍ଟାଚାର୍ଯ୍ୟ ଓ ବଙ୍ଗୀୟ କବି ଜୀବନାନନ୍ଦ ଦାସଙ୍କ କବିତାର ଅନୁବାଦ ଶ୍ରୀଯୁକ୍ତ ଷଡ଼ଙ୍ଗୀଙ୍କ ଦ୍ୱାରା କରାଯାଇଛି । 'ଇସ୍ତାହାର'ର ୧୦୫ ସଂଖ୍ୟାରେ ଦୁଇଟି ନେପାଳି କବିତାର ଅନୁବାଦ କରନ୍ତି କବି ବ୍ରଜନାଥ ରଥ । ଅସମୀୟା କବିତାର ଅନୁବାଦ କ୍ଷେତ୍ରରେ ସୁଷମା କୁମାରୀ ନନ୍ଦ ମଧ୍ୟ ଯୋଗଦାନ ଦେଇଛନ୍ତି । କବିତାର ଅନୁସୃଜନ କ୍ଷେତ୍ରରେ ବଙ୍ଗାଳୀ ନନ୍ଦଙ୍କ ନାମ ମଧ୍ୟ ଗ୍ରହଣ କରାଯିବ ।

ଓଡ଼ିଆ କବିତା ଭଣ୍ଡାରକୁ ସମୃଦ୍ଧ କରିବାରେ ଅନୂଦିତ କବିତା ମଧ୍ୟ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥାଏ । ସ୍ଥାନୀୟତାରୁ ମୁକ୍ତ ହୋଇ ଆତ୍ମ-ପ୍ରସାରଣ କାଳରେ ଉଭୟ କବି ଏବଂ ପାଠକଙ୍କ ନିମନ୍ତେ ବିଶ୍ୱସାହିତ୍ୟ ଉପଯୁକ୍ତ ଇନ୍ଧନ ଯୋଗାଇଥାଏ । 'ଇସ୍ତାହାର' ଅତ୍ୟନ୍ତ ନିଷ୍ଠାପର ଭାବେ ଏହି ଭୂମିକା ଗ୍ରହଣ କରିଆସିଛି । ଏବେ ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ କିଛି କିଛି ଅନୁବାଦିତ ଗଳ୍ପ ପ୍ରକାଶ ପାଉଛି । ଏହା ସ୍ୱାଗତଯୋଗ୍ୟ ।

## ୭. ଗୀତିକବିତା ଓ ଇସ୍ତାହାର :-

'ଇସ୍ତାହାର' ପତ୍ରିକା ଆଧୁନିକ ଓଡ଼ିଆ କବିତା ଅର୍ଥାତ୍ ମୁକ୍ତଛନ୍ଦର କବିତାକୁ ନେଇ ପରୀକ୍ଷା ଓ ପ୍ରୟୋଗର କ୍ଷେତ୍ର ରୂପେ ଆତ୍ମପ୍ରକାଶ କରିଥିଲେ ହେଁ ପରବର୍ତ୍ତୀ ସମୟରେ ଗୀତିକବିତାକୁ ପରିସରଭୁକ୍ତ କରିଛି । ବିଜୟମୋହନ ରାୟ, ନନ୍ଦକିଶୋର ସିଂ, ଶରତ ଚନ୍ଦ୍ର ରଥ, ପୀତାମ୍ବର ଦାସ, ଧନଞ୍ଜୟ ସ୍ୱାଇଁ, ସନାତନ ସ୍ୱାଇଁ, ଅଜୟ କୁମାର ମହାନ୍ତି, ଉମାକାନ୍ତ ନାୟକ, ବିଜୟ ମହାନ୍ତି, ଆଶାରାଣୀ ବେଉରା, କ୍ଷମାନିଧି ଭୋଇ, ଶ୍ରୀକାନ୍ତ ଜେନା ଓ ଦିଲ୍ଲୀପ୍ ଶ୍ରୀଚନ୍ଦନ ପ୍ରମୁଖ କବିଗଣ ଏଥିରେ ଗୀତିକବିତାମାନ ପ୍ରଦାନ କରୁଛନ୍ତି । ସମ୍ଭବତଃ ଇସ୍ତାହାରର ରଜତ ଜୟନ୍ତୀ ପରେ ଏହି ବିଭାଗଟି ସଂଯୋଜିତ କରାଯାଇଛି । ସମସ୍ତ ପ୍ରୟୋଗବାଦୀ ପରୀକ୍ଷା ନିରୀକ୍ଷା ପରେ ମଧ୍ୟ ଗୀତିକବିତା ସ୍ୱତଃସ୍ଫୂର୍ତ୍ତ ଧାରାଟି କ୍ଷୀଣ ହେଲେ ମଧ୍ୟ ଏଯାବତ୍ ଜୀବିତ ରହିଛି । ତେଣୁ ଇସ୍ତାହାର ମଧ୍ୟ ସେହି ଧାରାଟିକୁ ଆପଣା ବୁକୁରେ ସାଇତି ଧରିଛି । ଇସ୍ତାହାର-୧୧୯ରେ ଡଃ ତୁଳସୀ ଓଝାଙ୍କ ରଚିତ ପ୍ରବନ୍ଧ 'ପ୍ରୀତି ଫଗୁଣର କବି ରସରାଜ ନାରାୟଣ ପ୍ରସାଦ ସିଂ' ପ୍ରକାଶିତ ହୁଏ । ୧୯୫୫ ମସିହାରୁ ଆକାଶବାଣୀର ଗୀତିକବି ରୂପେ ସ୍ୱୀକୃତି ପାଇଥିବା କବି ସିଂ ଙ୍କର ଦୁଇଟି

ଆଖିର କବିତା', 'ନିବେଦନ', 'ମେଘ ଫଗୁଣ', 'ବନ୍ଧୁଭରା ବସୁନ୍ଧରା', 'ଠିଆ ପୁଚି ନାରଙ୍ଗ' ଓ 'ପ୍ରୀତି ପ୍ରଜାପତି' ଆଦି ଗୀତିକବିତା ସଂକଳନ ପ୍ରକାଶିତ । ଗୀତିକବିତାକୁ ଦୃଢ଼ ପୃଷ୍ଠଭୂମି ପ୍ରଦାନ କରିବା ନିମନ୍ତେ ସେ ମଧ୍ୟ 'ଗୀତି-କୁଂଜ' ନାମକ ଏକ ଅନୁଷ୍ଠାନ ନିର୍ମାଣ କରିଛନ୍ତି । ଡଃ ଓଝାଙ୍କ ରଚିତ ଏହି ପ୍ରବନ୍ଧଟି ଅତ୍ୟନ୍ତ ଉଚ୍ଚକୋଟୀର ହେବା ସଂଗେ ସଂଗେ ଓଡ଼ିଆ ଗୀତିକବିତାର ଗବେଷଣା ଧାରାକୁ ପରିପୁଷ୍ଟ କରିବାରେ ସହାୟକ ହୋଇଛି ।

ସୃଜନଶୀଳ ସମୀକ୍ଷା ସମୃଦ୍ଧ ତ୍ରୈମାସିକ 'ଇସ୍ତାହାର' ଏହାର ପ୍ରତିଷ୍ଠାତା ସଂପାଦକଙ୍କର ଅଶୀତି ବର୍ଷ ପୂର୍ତ୍ତି ସହ ତାଳ ଦେଇ ଚାଳିଶ ବର୍ଷରେ ପଦାର୍ପଣ କରିବ । ଅର୍ଥାତ୍ ପ୍ରଫେସର ଶତପଥୀ ତାଙ୍କ ସମଗ୍ର ଜୀବନକାଳ ମଧ୍ୟରୁ ଅର୍ଦ୍ଧେକଭାଗ ଏହି ପତ୍ରିକାର ପ୍ରକାଶନ ତଥା ପ୍ରସାରଣ ନିମନ୍ତେ ଅର୍ପଣ କରିଛନ୍ତି । ଦୁଇହଜାର ତିନି ମସିହା ଶାରଦୀୟ ବିଶେଷାଙ୍କର ସଂପାଦକୀୟରେ ପ୍ରଫେସର ଶତପଥୀ ସୃଜନଶୀଳ ପତ୍ରିକା ସଂପାଦନାର ବେଦନାଦାୟକ ଯନ୍ତ୍ରଣା ବ୍ୟକ୍ତ କରି ଏହାକୁ ନିର୍ବାଣମୁଖୀ ପ୍ରଦୀପର ଶେଷ ଦୀପଶିଖା ସହ ତୁଳନା କରିଥିଲେ । କିନ୍ତୁ ରଜତ ଜୟନ୍ତୀ ଉତ୍ସବ ମଞ୍ଚରୁ ପ୍ରେରଣା ଘେନା କରି ଏହି ଜାତୀୟ ସଂପତ୍ତିକୁ ନିର୍ବାପିତ ହେବା ପାଇଁ ଦେଇ ନାହାନ୍ତି । ଯେଉଁମାନେ ଏହି ମହନୀୟ ନିଧିର ଆୟୁଷ ନିମନ୍ତେ ଯତ୍ନଶୀଳ ହୋଇଛନ୍ତି ଏବଂ ପ୍ରଫେସର ଶତପଥୀଙ୍କ ସହାୟତା କରିଛନ୍ତି ସେମାନଙ୍କୁ ଏହି ଅବସରରେ ଅଶେଷ କୃତଜ୍ଞତା ଜ୍ଞାପନ କରୁଛି । ଏହି ପ୍ରବନ୍ଧରେ ୩୯ ବର୍ଷର ଇସ୍ତାହାରକୁ ଆଲୋଚନାର ପରିସରଭୁକ୍ତ କରିବାର ପ୍ରୟାସ କରାଯାଇଛି । ଏହା ଏକ ସଂପୂର୍ଣ୍ଣ ଗବେଷଣାଭିତ୍ତିକ ଉପସ୍ଥାପନ ନ ହେଲେହେଁ, ଆଂଶିକ ତଥା ପାକ୍ଷିକ ଉପସ୍ଥାପନ । ପରବର୍ତ୍ତୀ ଗବେଷକମାନଙ୍କୁ ଏହି ଆଲେଖ୍ୟଟି ପଥପ୍ରଦର୍ଶନ କରିବା ସଂଗେ ସଂଗେ, 'ଇସ୍ତାହାର'ରେ ପ୍ରକାଶିତ ନୂତନ ସ୍ତମ୍ଭ ତଥ୍ୟ ଓ ତତ୍ତ୍ୱ ଲୋକଲୋଚନକୁ ଆସିପାରିବ । ଏବେ ସମଗ୍ର 'ଇସ୍ତାହାର'କୁ ଡିଜିଟାଲାଇଜ୍ କରାଯାଇଛି । ଏହା ମଧ୍ୟ ବଜାରରେ ଓ ନେଟ୍‌ରେ ସୁପ୍ରାପ୍ୟ । ଗବେଷକମାନେ ଏହାକୁ ଅଧିଗତ କରିବାର ସୁଯୋଗ ନେଇ ପାରନ୍ତି ।

■ *ସହାୟକ ପ୍ରଫେସର (ଓଡ଼ିଆ ବିଭାଗ)*
*ଶୈଳବାଳା ମହିଳା ମହାବିଦ୍ୟାଳୟ(କଟକ)*
*ମୋ: ୯୪୩୯୫୦୩୫୯୦*

# 'ଇସ୍ତାହାର'ରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦକୀୟ ଅଭିବ୍ୟକ୍ତି

♦ ଡକ୍ଟର କୁମୁଦିନୀ ମିଶ୍ର

ଆଧୁନିକ ଓଡ଼ିଆ ସାହିତ୍ୟର ସମୀକ୍ଷା କ୍ଷେତ୍ରରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଏକ ସ୍ୱର୍ଦ୍ଧିତ ନାମ । ବିଶେଷକରି ସବୁଜ ଓ ସବୁଜୋତ୍ତର ଓଡ଼ିଆ କବିତାର ସୂକ୍ଷ୍ମାନୁସୂକ୍ଷ୍ମ ଅନୁଧ୍ୟାନ ଓ ବିଶ୍ଳେଷଣ ତାଙ୍କ ସାହିତ୍ୟ ସାଧନାର ଶ୍ରେଷ୍ଠ ବିଭବ । ତାଙ୍କ ରଚିତ 'ସବୁଜରୁ ସାଂପ୍ରତିକ' (ପିଏଚ୍.ଡି. ଉପାଧି ପାଇଁ ପ୍ରସ୍ତୁତ ସନ୍ଦର୍ଭର ପ୍ରକାଶିତ ରୂପ) ଅଦ୍ୟାବଧି ସାତଗୋଟି ସଂସ୍କରଣରେ ପ୍ରକାଶିତ ହୋଇ ଛାତ୍ର, ଗବେଷକ ଓ ଅଧ୍ୟାପକମାନଙ୍କ ଦ୍ୱାରା ବହୁଭାବେ ଆଦୃତି ଲାଭ କରିଛି । ଏହି ଗ୍ରନ୍ଥର ଉତ୍ତରଣ ପର୍ବ ରୂପେ 'ସତୁରୀରୁ ସହସ୍ରାବ୍ଦୀ'ର ମଧ ଦୁଇଗୋଟି ସଂସ୍କରଣ ଆଲୋକକୁ ଆସିସାରିଛି । 'ପ୍ରମୁଖ କବି କତିପୟ', 'କାବ୍ୟ ପ୍ରକରଣ', 'କାବ୍ୟଦୃଷ୍ଟି-କାବ୍ୟ ବିଚାର' ଆଦି ଆଉ କେତେଗୋଟି ଗ୍ରନ୍ଥରେ ମଧ ସେ ଓଡ଼ିଆ କବିତା ସଂପର୍କରେ ଆଲୋଚନା କରିଛନ୍ତି ।

ଖ୍ରୀ: ୧୯୬୯ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ଅଧ୍ୟାପନା ଆରମ୍ଭ କରିବା ସମୟକୁ ସତ୍ୟବାଦୀ ଯୁଗ ପରବର୍ତ୍ତୀ ଓଡ଼ିଆ କବିତାର ଗବେଷଣାଧର୍ମୀ ଆଲୋଚନା ପ୍ରାୟତଃ ହୋଇନଥିଲା । ତେଣୁ ଛାତ୍ରଛାତ୍ରୀମାନେ ଏମ୍.ଏ. ପରୀକ୍ଷାରେ ବିଶେଷ ପତ୍ର (Special paper) ରୂପେ ଆଧୁନିକ ଓଡ଼ିଆ କବିତା ବିଷୟଟି ନେବାପାଇଁ ଆଗ୍ରହ ପ୍ରକାଶ କରୁନଥିଲେ । ଏହି ଅଭାବପୂରଣ ଲାଗି ଅଧ୍ୟାପକ ଶତପଥୀ ସବୁଜରୁ ସବୁଜୋତ୍ତର ସମୟ ଓଡ଼ିଆ କବିତା ସଂପର୍କରେ ଗବେଷଣା କାର୍ଯ୍ୟ ଆରମ୍ଭ କରିଥିଲେ ।

ପୁଣି ଖ୍ରୀଷ୍ଟାବ୍ଦ ୧୯୭୪ରେ ଭାଗୀରଥି ସାହୁ ନାମକ ଜଣେ ଛାତ୍ର ବିଶେଷ ପତ୍ର ଭାବେ 'ଆଧୁନିକ ଓଡ଼ିଆ କବିତା' ବିଷୟଟି ନେଇ ତାଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ କରିବାରୁ ଅଧ୍ୟାପକ ଶତପଥୀ ଏକ ସ୍ୱତନ୍ତ୍ର ପତ୍ରିକା ପ୍ରକାଶ କରି ଆଧୁନିକ ଓଡ଼ିଆ କବିତାର ପ୍ରାୟୋଗିକ ଆଲୋଚନା କରିବାକୁ ମନସ୍ଥ କଲେ । ଫଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରୁ 'ଇସ୍ତାହାର' ଶୀର୍ଷକ ଏକ ତ୍ରୟମାସିକ ପତ୍ରିକା ଖ୍ରୀ: ୧୯୭୪ ନଭେମ୍ବର ମାସରେ ପ୍ରକାଶିତ ହେଲା । ଏଥିରେ ଉପଦେଷ୍ଟା ରହିଲେ ନିଜେ ଅଧ୍ୟାପକ ଶତପଥୀ ଏବଂ ସଂପାଦକ ରହିଲେ ଛାତ୍ର ଭାଗୀରଥି ସାହୁ । ଏହାର ମୁଖବନ୍ଧରେ ସଂପାଦକ ଶ୍ରୀ ସାହୁ ଲେଖିଥିଲେ "ଓଡ଼ିଆ ସାହିତ୍ୟରେ 'ଇସ୍ତାହାର' ପ୍ରକାଶନ - ଏକ ନୂତନ ପଦଚିହ୍ନ । ଏଥିରେ କବିଙ୍କ କବିତା ସହ ବିଜ୍ଞ ସମାଲୋଚକ ମାନଙ୍କଠାରୁ ତା'ର ବ୍ୟବହାରିକ

ଆଲୋଚନା (Practical Criticism) ଗ୍ରହଣ କରାଯାଇ ସଂକଳିତ କରାଯାଇଛି ।" ସାଂପ୍ରତିକ କାଳ ଓ ସମୟକୁ ପ୍ରତିନିଧିତ୍ୱ କରୁଥିବା ବିଭିନ୍ନ ଚେତନା ଓ ବିଭିନ୍ନ ଧାରାର କବିତା ଓ ତାହାର ଆଲୋଚନା ଏହି ପତ୍ରିକାରେ ସ୍ଥାନିତ ହେବ ବୋଲି ସେ ସୂଚନା ଦେଇଥିଲେ ।

କିନ୍ତୁ ଏହି ଜନ୍ମସଂଖ୍ୟାଟି ପ୍ରକାଶ ପାଇବା ପରେ 'ଇସ୍ତାହାର'ର ଦ୍ୱିତୀୟ ସଂଖ୍ୟାଟି ଦେଖିବା ଲାଗି ପାଠକଙ୍କୁ ଖ୍ରୀଷ୍ଟାବ୍ଦ ୧୯୭୮ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ଛାତ୍ର ଭାଗୀରଥିଙ୍କ ଏମ୍.ଏ. ପରୀକ୍ଷା ଶେଷ ହୋଇଯିବା ପରେ ସେ ଆଉ ଏହାର ସଂପାଦକ କାର୍ଯ୍ୟ ବହନ କଲେ ନାହିଁ । ଅଧ୍ୟାପକ ଶତପଥୀ ମଧ୍ୟ ଅଧ୍ୟାପନା କାର୍ଯ୍ୟ ସହ ପିଏଚ୍.ଡି. ସନ୍ଦର୍ଭ ପ୍ରସ୍ତୁତି କାର୍ଯ୍ୟରେ ବ୍ୟସ୍ତ ରହିବାରୁ ପତ୍ରିକାଟି ପାଇଁ ସମୟ ଦେଇପାରିଲେ ନାହିଁ । ଖ୍ରୀ: ୧୯୭୬ ନଭେମ୍ବର ମାସରେ ସେ କଳାବିଭୂଷଣ (ପିଏଚ୍.ଡି.) ଉପାଧି ଲାଭ କରିବା ପରେ ପୁଣି 'ଇସ୍ତାହାର' ତ୍ରୈମାସିକଟି ନିୟମିତ ଭାବେ ପ୍ରକାଶ କରିବା ଉଦ୍ୟମରେ ଲାଗିପଡ଼ିଲେ । ଫଳରେ 'ଇସ୍ତାହାର'ର ଦ୍ୱିତୀୟ ସଂଖ୍ୟା ଖ୍ରୀ: ୧୯୭୮ ଫେବୃୟାରୀ ମାସ ଶ୍ରୀପଞ୍ଚମୀ ତିଥିରେ ପ୍ରକାଶ ପାଇଲା ଏବଂ ସେ ନିଜେ ଏହାର ସଂପାଦନା ଦାୟିତ୍ୱ ନେଇ 'ସଂପାଦକୀୟ'ରେ ଲେଖିଲେ- "ଆଧୁନିକ ଓଡ଼ିଆ କବିତା ସଂପର୍କରେ ପାଠକଙ୍କ କ୍ରମାଗତ ଅଭିଯୋଗକୁ ମୁକାବିଲା କରିବା ଦିଗରେ 'ଇସ୍ତାହାର' ପ୍ରଥମ ସଂଖ୍ୟା ଯେଉଁ ପଦକ୍ଷେପ ନେଇଥିଲା, 'ଇସ୍ତାହାର' ଦ୍ୱିତୀୟ ସଂଖ୍ୟା ସେହି ପଦକ୍ଷେପର ଏକ ପ୍ରସାରିତ ଅଭିବ୍ୟକ୍ତି ମାତ୍ର ।" ଏହି ସଂଖ୍ୟାର ବିଶେଷତ୍ୱ ଥିଲା, ଏଥିରେ ସ୍ୱାଧୀନତା (୧୯୪୭) ଠାରୁ ଖ୍ରୀ: ୧୯୭୭ ପର୍ଯ୍ୟନ୍ତ ପ୍ରକାଶିତ ଓଡ଼ିଆ କବିତା ପୁସ୍ତକର ଏକ ତାଲିକା ପ୍ରକାଶ ପାଇଥିଲା । ଏହାର ୬ ମାସ ପରେ 'ଇସ୍ତାହାର'ର ପୂଜାସଂଖ୍ୟା ଭାବେ ଖ୍ରୀ: ୧୯୭୮ ଅକ୍ଟୋବର ମାସରେ ତୃତୀୟ/ଚତୁର୍ଥ ମିଳିତ ସଂଖ୍ୟାଟି ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିବା ସହ କେହି କେହି ପାଠକ ଏଥିରେ ଆଧୁନିକ ଗଳ୍ପ, ଉପନ୍ୟାସ ଓ ନାଟକର ଆଲୋଚନା ପ୍ରକାଶ କରିବାକୁ ସଂପାଦକଙ୍କୁ ଅନୁରୋଧ କଲେ । ତେଣୁ 'ଇସ୍ତାହାର'ର ପଞ୍ଚମ ସଂଖ୍ୟା ଠାରୁ ସଂପାଦକ ଗଳ୍ପ, ଉପନ୍ୟାସାଦି ଆଧୁନିକ ସାହିତ୍ୟର ଅନ୍ୟ ବିଭାଗ ଉପରେ ଆଲୋଚନା ପ୍ରକାଶ କରିବାକୁ ପଦକ୍ଷେପ ନେଲେ । ତାଙ୍କ ଭାଷାରେ- "ଇସ୍ତାହାରର ଚାରୋଟି ସଂଖ୍ୟା ଏଯାବତ୍ କେବଳ କବିତା ଉପରେ ଧ୍ୟାନସ୍ଥ ହୋଇଥିବା ବେଳେ ଆସନ୍ତା ସଂଖ୍ୟାଠାରୁ ଏଥିରେ କବିତା ସହିତ ଗଳ୍ପ, ଉପନ୍ୟାସ, ନାଟକାଦି ଉପରେ ଆଲୋଚନା ପତ୍ରସ୍ଥ ହେବ ।" ('ଶୈଶବରୁ ଅବସର' - ପୃଷ୍ଠା-୧୪୬)

ସେ ପୁଣି 'ଇସ୍ତାହାର'ର ନାମକରଣ ସଂପର୍କରେ କହନ୍ତି- 'ଇସ୍ତାହାର' ଶବ୍ଦର ଆକ୍ଷରିକ ଅର୍ଥ ଯାହାହେଉପଛେ, ତାହା ଇଂରାଜୀ 'Manifesto' ର ପାରିଭାଷିକ ପ୍ରତିଶବ୍ଦ । ଆରବିକ୍ ଇସ୍ତାହାର ଶବ୍ଦଟି ଭାରତୀୟ ଭାଷାମାନଙ୍କରେ 'ଇସ୍ତାହାର' ଭାବେ ସାମାନ୍ୟ

ରୂପାନ୍ତରିତ ହୋଇ ପ୍ରଶାସନିକ ଦପ୍ତରରେ ବ୍ୟାପକଭାବେ ନୋଟିସ୍, ଦିଗ୍‌ଦର୍ଶନ, ଖସଡ଼ା, ଶ୍ୱେତପତ୍ର ଅର୍ଥରେ ପ୍ରୟୋଗ ହୋଇଛି । ଏହି 'ଇସ୍ତାହାର' ଶବ୍ଦକୁ ନୂତନ ଅର୍ଥ-ସମୃଦ୍ଧି ଦେଇ ସାହିତ୍ୟର ବିଶେଷ କଥନ, ଦିଗ୍‌ଦର୍ଶନ ବା ସାହିତ୍ୟର ଆଭିମୁଖ୍ୟ ଅର୍ଥରେ ମଧ୍ୟ ପ୍ରୟୋଗ କରାଯାଇପାରେ । (ଶୈଶବରୁ ଅବସର - ପୃ-୧୪୫ ଦ୍ରଷ୍ଟବ୍ୟ)

ଆଧୁନିକ ସାହିତ୍ୟର ମୁଖପତ୍ର ରୂପେ ଏହି ତ୍ରୈମାସିକ ପତ୍ରିକାର ଆଭିମୁଖ୍ୟ ଦର୍ଶାଇ ସେ ପୁଣି ଲେଖିଛନ୍ତି- "ଆଧୁନିକ ପ୍ରୟୋଗବାଦୀ ଚିନ୍ତା ଓ ଚେତନା ସହ ପାଠକଙ୍କ ଯୋଗସୂତ୍ର ସ୍ଥାପନ କରିବା ଲାଗି ଏହି ପତ୍ରିକା ନିରବଚ୍ଛିନ୍ନ ଉଦ୍ୟମ କରିବ । (ଇସ୍ତାହାର- ୩ୟ/୪ର୍ଥ ସଂଖ୍ୟା ସଂପାଦକୀୟ)

'ଇସ୍ତାହାର' ପତ୍ରିକାର ସହଯୋଗୀ ସଂପାଦକ ଭାବେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ବ୍ୟକ୍ତି ରହିଥିଲେ ହେଁ ମୁଖ୍ୟ ସଂପାଦକ ଭାବେ ଡକ୍ଟର ଶତପଥୀ ହିଁ ଦାୟିତ୍ୱ ତୁଲାଇ ଆସିଛନ୍ତି । ପୁଣି ଅଦ୍ୟାବଧି ପ୍ରକାଶ ପାଇଥିବା 'ଇସ୍ତାହାର'ର ୧୪୦ ଗୋଟି ସଂଖ୍ୟାରୁ ୨୯, ୩୭, ୪୦, ୪୧, ୫୧-୫୨, ୬୮, ୬୯, ୭୧-୭୨, ୮୬, ୯୧, ୯୨, ୯୩, ୯୬, ୯୮, ୯୯, ୧୦୬, ୧୦୭, ୧୦୮, ୧୦୯, ୧୧୦, ୧୧୧, ୧୧୪ ଓ ୧୩୩-୧୩୪ ସଂଖ୍ୟା ଗୁଡ଼ିକର ସଂପାଦକୀୟ ଭିନ୍ନ ଭିନ୍ନ ସହଯୋଗୀ ସଂପାଦକ ଲେଖିଥିବା ବେଳେ ୧ମ ସଂଖ୍ୟାର ସଂପାଦକୀୟ ଛାତ୍ର ଭାଗୀରଥି ସାହୁ ଲେଖିଛନ୍ତି । ପୁଣି ୬୬ତମ ସଂଖ୍ୟାରେ ସଂପାଦକୀୟ ସ୍ତମ୍ଭ ପ୍ରକାଶ ପାଇନାହିଁ । ଏହି ସବୁ ସଂଖ୍ୟା ବ୍ୟତୀତ ଅନ୍ୟ ସମସ୍ତ ସଂଖ୍ୟାର ସଂପାଦକୀୟ ଲେଖିଛନ୍ତି ମୁଖ୍ୟ ସଂପାଦକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ।

'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରୁ ପ୍ରଫେସର ଶତପଥୀଙ୍କ ବିଭିନ୍ନ ବିଷୟରେ ବିକ୍ଷିପ୍ତ ଭାବରେ ପ୍ରକାଶ ପାଇଥିବା ଅଭିବ୍ୟକ୍ତିକୁ ନିମ୍ନୋକ୍ତ ଭାବେ ଦର୍ଶାଇ ଦିଆଯାଇପାରେ ।

## (କ) 'ଇସ୍ତାହାର'ର କେତୋଟି ବିଶେଷ ସଂଖ୍ୟା ସଂପର୍କରେ ବକ୍ତବ୍ୟ :-

'ଇସ୍ତାହାର' ପତ୍ରିକା ପ୍ରତି ସମଗ୍ର ଓଡ଼ିଶାରେ ସୁଧୀପାଠକଙ୍କ ପ୍ରବଳ ଆଗ୍ରହ ପ୍ରକାଶ ପାଇବାରୁ ସଂପାଦକ ଡଃ ଶତପଥୀ ଏହାର କେତୋଟି ଅଞ୍ଚଳଭିତ୍ତିକ ବିଶେଷ ସଂଖ୍ୟା ପ୍ରକାଶ କରିଛନ୍ତି । ଖ୍ରୀ: ୨୦୦୧ ଅଗଷ୍ଟ-ସେପ୍ଟେମ୍ବର ମାସରେ ପ୍ରକାଶିତ 'ଇସ୍ତାହାର'ର ୮୧ତମ ସଂଖ୍ୟାଟିକୁ 'ରାଉରକେଲା ବିଶେଷାଙ୍କ' ଭାବେ ପ୍ରକାଶ କରି ସେ ଲେଖିଥିଲେ- "ଗତ ମେ ମାସରେ ମୁଁ ଭଞ୍ଜଜୟନ୍ତୀ କାର୍ଯ୍ୟକ୍ରମରେ ଯାଇଥିବାବେଳେ ଆଦର୍ଶ ପାଠାଗାରରେ କେତେଜଣ ସାହିତ୍ୟିକ ବନ୍ଧୁଙ୍କ ସହିତ ଏକ ସଂଧ୍ୟାମିଳନରେ ଏକାଠି ହୋଇଥିଲି । ସେମାନଙ୍କୁ ଏହି ପ୍ରସ୍ତାବ ଦେବାମାତ୍ରେ ସେମାନେ ଖୁବ୍ ଆନନ୍ଦର ସହିତ ପ୍ରସ୍ତାବଟିକୁ

ଅନୁମୋଦନ କରିଥିଲେ । ତା'ର ପ୍ରତିଶ୍ରୁତି ହେଉଛି- 'ରାଉରକେଲା ବିଶେଷାଙ୍କ' । (ଇସ୍ତାହାର-୮୧ତମ ସଂଖ୍ୟା ସଂପାଦକୀୟ) ରାଉରକେଲା ମାଟିରୁ ଉପାଦାନ ସଂଗ୍ରହ କରି କାବ୍ୟ-କବିତା, ଗଳ୍ପ-ଉପନ୍ୟାସ, ନାଟକ ଆଦି ଲେଖୁଥିବା ବନ୍ଧୁ ଲେଖକଙ୍କୁ ପାଠକ ବର୍ଗଙ୍କ ସହ ପରିଚିତ କରାଇବା ଥିଲା ଏହି ବିଶେଷାଙ୍କର ଉଦ୍ଦେଶ୍ୟ ।

ସେହିପରି ଖ୍ରୀ: ୨୦୦୨ରେ ପ୍ରକାଶିତ 'ଇସ୍ତାହାର'ର ୮୩ତମ ସଂଖ୍ୟାଟି । ଅବିଭକ୍ତ ବାଲେଶ୍ୱର ଜିଲ୍ଲା ବିଶେଷାଙ୍କ ରୂପେ ପ୍ରକାଶ କରିବା ଅବସରରେ ସେ କହିଥିଲେ- "ବାଲେଶ୍ୱର, ଜଳେଶ୍ୱର, ସୋର, ବାସୁଦେବପୁର ଓ ଭଦ୍ରକକୁ କେନ୍ଦ୍ରକରି ଏତେ ସଂଖ୍ୟାରେ ଲେଖକ, ଲେଖିକା ଲେଖୁଥିବା ମୋ ଚିନ୍ତାଧାରାର ବାହାରେ ଥିଲା । ସେମାନଙ୍କ ସାରସ୍ୱତ ପ୍ରତିଭା ମୋତେ କେବଳ ବିସ୍ମିତ କରିନାହିଁ, ମୋର ଦୃଢ଼ ବିଶ୍ୱାସ ପାଠକଙ୍କୁ ମଧ୍ୟ ଆକୃଷ୍ଟ କରିବ ।" ବାଲେଶ୍ୱର ମାଟିର କଥାକାର ମନୋଜ ଦାସ ସର୍ବଭାରତୀୟ ସାରସ୍ୱତ-ପୁରସ୍କାର 'ସରସ୍ୱତୀ ସମ୍ମାନ'ରେ ଭୂଷିତ ହୋଇଥିବାରୁ ସେ ତାଙ୍କୁ ଅଭିନନ୍ଦନ ଜଣାଇଛନ୍ତି ।

ଖ୍ରୀ: ୧୯୭୮ରୁ ଇସ୍ତାହାର ନିୟମିତ ଭାବେ ପ୍ରକାଶ ପାଇଥିବାରୁ ତା'ର ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ଖ୍ରୀ: ୨୦୦୩ରେ ରଜତଜୟନ୍ତୀ ବିଶେଷାଙ୍କ (ଇସ୍ତାହାର-୮୭ତମ ସଂଖ୍ୟା) ପ୍ରକାଶିତ ହୋଇଥିଲା । ସେହି ସଂଖ୍ୟାର ସଂପାଦକୀୟ ପୃଷ୍ଠାରେ ୨୫ ବର୍ଷ ତଳର ସ୍ମୃତି ରୋମନ୍ଥନ କରି ସଂପାଦକ ଶତପଥୀ ଲେଖିଛନ୍ତି- "ଖ୍ରୀଷ୍ଟାବ୍ଦ ୧୯୭୮ରେ ସର୍ବାଧିକ ୯ ଜଣ ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ 'ଆଧୁନିକ ଓଡ଼ିଆ କବିତା'କୁ ବିଶେଷ ପତ୍ର ରୂପେ ଅଧ୍ୟୟନ କରିବାରୁ ପୁଣି ଥରେ 'ଇସ୍ତାହାର' ପ୍ରକାଶ ପାଇବା ଉଚିତ ବୋଲି ମୁଁ ଅନୁଭବ କରିଥିଲି । ଆମ ବିଭାଗର ଶ୍ରେଣୀକକ୍ଷ ଥିଲା 'ଇସ୍ତାହାର'ର ପ୍ରସୂତି କକ୍ଷ । ସେଠାରେ ଘଣ୍ଟା ଘଣ୍ଟା ଧରି ଆଧୁନିକ କବିତା ଉପରେ ଆଲୋଚନା ହେଉଥିଲାବେଳେ ମୁଁ ନିର୍ଘଣ୍ଟକୁ ଭୁଲି ଯାଉଥିଲି । ସେ ଛାତ୍ରମାନେ ଏତେ ଉତ୍ସାହୀ ଥିଲେ ଯେ, ମୋର ଶ୍ରମ ସାର୍ଥକ ହେଲାପରି ମଣୁଥିଲି ।"

ଏହିପରି ସ୍ମୃତିଚାରଣ କରୁ କରୁ ସେ ପୁଣି କହିଛନ୍ତି, 'ଇସ୍ତାହାର'ର ୫ମ ସଂଖ୍ୟା ଠାରୁ ଗଳ୍ପ, ନାଟକ ସଂପର୍କୀୟ ଆଲୋଚନାକୁ ଏହି ପତ୍ରିକାର କୁକ୍ଷୀଗତ କରାଗଲା । କିନ୍ତୁ ଏହି ପତ୍ରିକା ପ୍ରତି ଛାତ୍ରମାନଙ୍କ ଆନୁଗତ୍ୟ ଦୀର୍ଘସ୍ଥାୟୀ ହେଉନଥିଲା । 'ଇସ୍ତାହାର'ର ସଂପାଦନା ମଣ୍ଡଳୀ ବାରମ୍ବାର ବଦଳୁଥିଲା । ତଥାପି 'ଇସ୍ତାହାର' ମାଧ୍ୟମରେ ଏକ ତରୁଣ ଗୋଷ୍ଠୀ କ୍ରମେ ଆତ୍ମପ୍ରକାଶ କରୁଥିଲେ । କବି ଓ କବିତା, ଗଳ୍ପ ଓ ଗାଳ୍ପିକ, ପ୍ରବନ୍ଧ ଓ ପ୍ରାବନ୍ଧିକ, ରମ୍ୟରଚନା, ଏକାଙ୍କୀ, ପୁସ୍ତକ ସମୀକ୍ଷା, ଅନୁବାଦ ସାହିତ୍ୟ ଓ ବିଶ୍ୱ ପରିକ୍ରମା- ଏହିପରି ନାନାବିଧ ବିଭାଗ ଓ ଉପବିଭାଗକୁ ନେଇ 'ଇସ୍ତାହାର' ପ୍ରକାଶ ପାଇବାରୁ ଏକ ବୃହତ୍ତର ପାଠକ ଗୋଷ୍ଠୀ ସୃଷ୍ଟି କରିବାରେ ଏହା ସମର୍ଥ ହୋଇପାରିଥିଲା । (ଇସ୍ତାହାର-୮୭ତମ ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

'ଇସ୍ତାହାର'ର ରଜତଜୟନ୍ତୀ ସମ୍ଭରର ଖୁବ୍ ସମାରୋହରେ ପାଳିତ ହେବା ପରେ ଏହି ପତ୍ରିକାର ଅନ୍ୟତମ ସଂପାଦିକା ତଥା ପ୍ରଫେସର ଶତପଥୀଙ୍କ ଧର୍ମପତ୍ନୀ ତଥା କବି ଡଃ ପ୍ରତିଭା ଶତପଥୀଙ୍କ ସଂପାଦନାରେ 'ଉଦ୍‌ଭାସ' ପତ୍ରିକା ପ୍ରକାଶିତ ହେବାରୁ ବିଷାଦଗ୍ରସ୍ତ ହୋଇ ପ୍ରଫେସର ଶତପଥୀ 'ଇସ୍ତାହାର'ର ପ୍ରକାଶନ ବନ୍ଦ କରିଦେବା ପାଇଁ ମନସ୍ଥ କରି ଲେଖିଥିଲେ- "ବିଜ୍ଞାପନଦାତାମାନେ ଗୋଟିଏ ପରିବାରର ଦୁଇଟି ପତ୍ରିକା ପାଇଁ କାହିଁକି ବିଜ୍ଞାପନ ଦେବେ ? ସେଥିରେ ମଧ୍ୟ ଅନେକ ଅବୁଝାମଣା ସୃଷ୍ଟି ହେବାର ସମ୍ଭାବନା ମୁଁ ଦେଖିବାକୁ ପାଉଛି । ତେଣୁ ଗୋଟିଏ ପତ୍ରିକା ବିବାକ୍ ବନ୍ଦ ହୋଇଯିବା ଉଚିତ୍ ହେବ ।" (ଇସ୍ତାହାର / ୯୦ତମ ସଂଖ୍ୟା - ସଂପାଦକୀୟ) ତାଙ୍କ ଯୁକ୍ତିରେ ସରକାରୀ ଓ ଅର୍ଦ୍ଧସରକାରୀ ବିଜ୍ଞାପନର ଅଭାବ ଓ ଘରୋଇ ଶିଳ୍ପ ସଂସ୍ଥାଗୁଡ଼ିକର ପୃଷ୍ଠପୋଷକତାର ଅଭାବ ଯୋଗୁଁ ଅନେକ ଉଚ୍ଚାଙ୍ଗ ସାହିତ୍ୟ ପତ୍ରିକାର ବିକାଶରେ ଅନ୍ତରାୟ ସୃଷ୍ଟି ହୋଇଛି ।

'ଇସ୍ତାହାର'ର ପ୍ରକାଶନ ବନ୍ଦ କରିବା ପାଇଁ ସଂପାଦକଙ୍କ ଏ ଘୋଷଣାରେ ବ୍ୟଥିତ ହୋଇ ବହୁ ସୁଧୀ ପାଠକ ପତ୍ରିକାଟିକୁ ବଞ୍ଚାଇ ରଖିବା ପାଇଁ ତାଙ୍କ ଉପରେ ପ୍ରବଳ ଚାପ ପକାଇବାରୁ ସଂପାଦକ ସେମାନଙ୍କଠାରେ କୃତଜ୍ଞତା ଜଣାଇବା ସହ ପ୍ରତିଶ୍ରୁତି ଦେଇଥିଲେ ଯେ, 'ଇସ୍ତାହାର'ର ସ୍ଥାୟୀ ୩୦୦ ଗ୍ରାହକତା ଅବ୍ୟାହତ ରହିଲେ ପତ୍ରିକାଟି ଆର୍ଥିକ ଦିଗରୁ ମଧ୍ୟ ଚଳନକ୍ଷମ ରହିବ । (ଇସ୍ତାହାର-୯୫ତମ ସଂଖ୍ୟା-ସଂପାଦକୀୟ ଦ୍ରଷ୍ଟବ୍ୟ)

## (ଖ) ସାଂପ୍ରତିକ ଓଡ଼ିଆ ସାହିତ୍ୟର ସ୍ଥିତି ଓ ଗତିଭିତ୍ତିକ ଆଲୋଚନା:-

'ଇସ୍ତାହାର'ର ସଂପାଦକ ପ୍ରଫେସର ଶତପଥୀ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ଅଗ୍ରଗଣ୍ୟ ସମୀକ୍ଷକ ହୋଇଥିବାରୁ ତାଙ୍କ ସଂପାଦକୀୟ ପୃଷ୍ଠାମାନଙ୍କରେ ସେ ବିଭିନ୍ନ ଦିଗରୁ ବିଚାର କରି ସାଂପ୍ରତିକ ଓଡ଼ିଆ ସାହିତ୍ୟକୁ ଏକ ମର୍ଯ୍ୟାଦାଦୀପ୍ତ ସ୍ତରକୁ ଉନ୍ନୀତ କରିବା ପାଇଁ ଉଦ୍ୟମ ଚଳାଇ ଆସିଛନ୍ତି ।

ସାଂପ୍ରତିକ ଓଡ଼ିଆ କବିତାର ପ୍ରୟୋଗବାଦୀ ଦିଗ ପ୍ରତି କବିମାନଙ୍କ ଦୃଷ୍ଟି ଆକର୍ଷଣ ପାଇଁ ସେ କହନ୍ତି, ଆଜିର କବିମାନେ ସେହି ଚିରାଚରିତ ନିଜସ୍ୱ ପ୍ରେମ, ନିଃସଂଗତା, ହତାଶା, ଅତୀତ ଆମୁଖତା କିମ୍ବା ନିଜସ୍ୱ ସଂପର୍କର ଚାରଣ ଭୂମିରେ ବିଚରଣ ନ କରି ଜୀବନର ବାସ୍ତବତା ପ୍ରତି ଦୃଷ୍ଟି ଦେଇ କଲମ ଚାଳନା କରିବା ଉଚିତ୍ । ଖ୍ରୀ: ୧୯୯୯ରେ ଓଡ଼ିଶାରେ ଘଟିଯାଇଥିବା ମହାବାତ୍ୟାର ତାଣ୍ଡବଲୀଳା ଓଡ଼ିଆ କବିତାରେ ବିଶେଷଭାବେ ରୂପାୟିତ ହୋଇ ନଥିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି- "କବିମାନେ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ କରିବାକୁ ଆଗ୍ରହୀ ନୁହନ୍ତି । ଏଡ଼େବଡ଼ ବାତ୍ୟା ଓଡ଼ିଶାକୁ ଗ୍ରାସ କରିଗଲା । ଚତୁର୍ଦ୍ଦିଗରେ ହାହାକାର ଓ ବିକଳ କ୍ରନ୍ଦନର ସ୍ୱର ଶୁଣି ମଧ୍ୟ କୌଣସି କବି ତାଙ୍କ କବିତାରେ ବାତ୍ୟାର ତାଣ୍ଡବଲୀଳା, ଅସହାୟ ବିପନ୍ନଙ୍କ ଶୋକ ଓ ଦୁର୍ଗତିକୁ ନେଇ କବିତା ନ ଲେଖିବା

ସାଂପ୍ରତିକ ଓଡ଼ିଆ କବିତା ଅବକ୍ଷୟ ଆଡ଼କୁ ଗତି କରିବାର ସୂଚନା ଦିଏ ।" (ଇସ୍ତାହାର-୧୦୧/୧୦୨ ତମ ସଂଖ୍ୟା - ସଂପାଦକୀୟ)

ସେହିପରି ଓଡ଼ିଶାର ସାମାଜିକ ସ୍ଥିତିକୁ ପ୍ରତିଫଳନ କରିବାରେ ଓଡ଼ିଆ ସାହିତ୍ୟ କ୍ରମଶଃ ଅସମର୍ଥ ହୋଇପଡୁଥିବା ଲକ୍ଷ୍ୟ କରି ସେ କହିଥିଲେ- "ଓଡ଼ିଆ ସାହିତ୍ୟର ପାଣିପାଗ ଆଜି ଭାରି ଦୂଷିତ ଓ ଦିଗନ୍ତ କୁହେଳିକାଚ୍ଛନ୍ନ ××× ବଢ଼ି, ମରୁଡ଼ି, ବନ୍ୟା, ତଦୁପରି ଜନତାର ଦାରୁଣ ଅଶ୍ରୁବିଦାରକ କାହାଣୀକୁ ନେଇ ଗୋଟିଏ ହେଲେ ଶକ୍ତିଶାଳୀ ଲେଖା ଆଖିରେ ପଡୁନାହିଁ । ସାମାଜିକ ପାପ ଓ ଦୁରନ୍ତ ଅର୍ଥଲୋଭର ପଙ୍କ ଭିତରେ ଲେପଟାଇ ପଡ଼ିଥିବା ସମାଜକୁ ତେବେ ଉଠାଇବ କିଏ ? କିଏ ନୂଆ ସୃଷ୍ଟିର ମାଙ୍ଗଳିକ ଗାନ କରି ଆଶାହୀନ ଜନତାଙ୍କ ପ୍ରାଣରେ ବଞ୍ଚିବାର ଦୁର୍ବାର ବିଶ୍ୱାସ ଆଣିଦେବ ?" (ଇସ୍ତାହାର - ୨୨ଶ ସଂଖ୍ୟା - ସଂପାଦକୀୟ)

ତାଙ୍କ ଯୁକ୍ତିରେ ଭାବ ଆବେଦନ (Communication) ହିଁ କବିତାର ଶ୍ରେଷ୍ଠ ଧର୍ମ ହେବା ଉଚିତ । ନଚେତ୍ ଯେକୌଣସି ଅପାଂକ୍ତେୟ ଲେଖା ଲେଖି ବିଭିନ୍ନ ପତ୍ରିକାରେ କବିତା ଛପାଇ କବିତ୍ୱର ବାହାସ୍ଫୋଟ କରିବାକୁ 'ମନ୍ଦକବିଃ ଯଶଃ ପ୍ରାର୍ଥୀଃ' ମାନେ ଧସେଇ ପଶିବେ । ଯାହାଫଳରେ ସୁକବି ଓ ସୁକବିତା ସ୍ୱତଃ ସଂକୁଚିତ ହୋଇଯିବ । (ଇସ୍ତାହାର - ୨୪ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

'ସାହିତ୍ୟିକ ସାମ୍ବାଦିକତା' (Literary Journalism) କୁ ନେଇ ଖ୍ରୀ: ୧୯୮୬ ମାର୍ଚ୍ଚ ମାସ 'ଝଂକାର'ର ସଂପାଦକୀୟରେ ଯେଉଁ ବିତର୍କ ପ୍ରକାଶ ପାଇଥିଲା ଏବଂ ସେଥିରେ ଡଃ ହରେକୃଷ୍ଣ ମହତାବ ଯେଉଁ ଗଠନମୂଳକ ପ୍ରସ୍ତାବ ଦେଇଥିଲେ ତାକୁ ସ୍ୱାଗତ କରି ପ୍ରଫେସର ଶତପଥୀ 'ଇସ୍ତାହାର' (୩୩-୩୪ ସଂଖ୍ୟା) ସଂପାଦକୀୟରେ ଲେଖିଛନ୍ତି- ସାହିତ୍ୟିକ ସାମ୍ବାଦିକତା କହିଲେ ସମ୍ବାଦକୁ ସାହିତ୍ୟିକ ଭାଷାଶୈଳୀ ଓ ଛଟାରେ ପ୍ରକାଶ କରିବାକୁ ବୁଝାଏ । ଏ ଆଭିମୁଖ୍ୟ ପ୍ରଥମେ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ 'ସମାଜ'ର 'ଝିଟିପିଟି କହେ' ରେ ପ୍ରକଟିତ ହୋଇ କ୍ରମେ 'ପ୍ରଜାତନ୍ତ୍ର'ର 'ଗାଁ ମଜଲିସ୍', 'ସମ୍ବାଦ'ର 'ଶେଷସ୍ତମ୍ଭ' ଏବଂ ଉତ୍କଳ ସାହିତ୍ୟ, ମୁକୁର, ସହକାର, ନବଭାରତ, ଆଦି ପତ୍ରିକାରେ ଫିଚର୍ ଗୁଡ଼ିକରେ ପ୍ରକଟିତ ହୋଇଛି ।

'ସହକାର'ର 'ବିଶ୍ୱସମାଚାର' ଓ 'ନବଭାରତ'ର 'ପଲ୍ଲୀପାଠ' ନାମରେ ଯେଉଁ ସମ୍ବାଦ ପରିବେଶିତ ହେଉଥିଲା, ତାହାର ଉଚ୍ଚ ସାହିତ୍ୟିକମାନ ସର୍ବବାଦୀସମ୍ମତ । ତେଣୁ ଏହି ସଂପାଦକୀୟ ମାଧ୍ୟମରେ 'ସାହିତ୍ୟିକ ସାମ୍ବାଦିକତା' ସଂପର୍କରେ ଏକ ବିଦଗ୍ଧ ପ୍ରସ୍ତୁତି ନିମନ୍ତେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ତରଫରୁ ଏକ ଗବେଷଣା ବୃତ୍ତି ଖଞ୍ଜି ଡଃ ମହତାବଙ୍କ ତତ୍ତ୍ୱାବଧାନରେ ତାହାକୁ ପରିଚାଳିତ କରିବା ପାଇଁ ସେ ପ୍ରସ୍ତାବ ଦେଇଥିଲେ ।

ସାହିତ୍ୟର ବିକାଶ ସାଧନ ଦିଗରେ ସମାଲୋଚନା ଯେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଥାଏ- ଏହା ସର୍ବବାଦୀସମ୍ମତ ମତ । 'ବିଦଗ୍ଧ ଚିନ୍ତାମଣି'ରେ ସେଥିପାଇଁ ତ କୁହାଯାଇଛି- "ବିବେକୀ ଗ୍ରାହକ କୋଟି କବି ଆୟୁ ଘେନି / ବର୍ତ୍ତିଥିଲେ କବି କବିତ୍ୱକି ହେବ ମ୍ଳାନି ?" ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ ସମାଲୋଚନାକୁ ଏକ ବିଶିଷ୍ଟ ସ୍ଥାନ ଦିଆଯାଇଥିବାବେଳେ ଜଣେ ପ୍ରଖ୍ୟାତ ଔପନ୍ୟାସିକଙ୍କ - ସମାଲୋଚନା, ସାହିତ୍ୟର ପର୍ଯ୍ୟାୟଭୁକ୍ତ ହେବା ଉଚିତ ନୁହେଁ - ଉକ୍ତିଟି ଯଶସ୍ୱୀ ସମୀକ୍ଷକ ପ୍ରଫେସର ଶତପଥୀଙ୍କୁ ଅବାନ୍ତର ବୋଧ ହୋଇଛି । ତେଣୁ ସେ 'ଇସ୍ତାହାର' (୧୧୨ତମ ସଂଖ୍ୟା) ସଂପାଦକୀୟରେ ଏହାର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । କିନ୍ତୁ କୌଣସି ସମାଲୋଚକଙ୍କ ଦ୍ୱାରା ପ୍ରତିଷ୍ଠିତ ଲେଖକଙ୍କ ରଚନାର ମୂଲ୍ୟବୋଧ ହ୍ରାସ ପାଇବା ଲକ୍ଷ୍ୟ କଲେ ସେ ତାହାର ତୀବ୍ର ବିରୋଧ କରୁଥିଲେ । ଉଦାହରଣ ସ୍ୱରୂପ- ଖ୍ରୀ: ୧୯୭୮ ଡିସେମ୍ବର ମାସରେ 'ସମାବେଶ' ପତ୍ରିକାରେ ପ୍ରକାଶିତ ଶ୍ରୀ ସଂଜୟଙ୍କ ଉକ୍ତି- "ଫକୀର ମୋହନଙ୍କ ହାତରେ ଚମ୍ପା ସଦୃଶା ବ୍ୟକ୍ତିତ୍ୱ-ସଂପନ୍ନା ନାରୀ ନଷ୍ଟ ହୋଇଗଲା । ସେମିତି ମଧ୍ୟ ପଡ଼ିଥିଲା ତାଙ୍କ ହାତରେ ଚିତ୍ରକଳା" - ଏହି ଉକ୍ତିର ବିରୋଧ କରି ସଂପାଦକ ଶତପଥୀ ଲେଖିଲେ- "ଫକୀର ମୋହନଙ୍କ ରଚିତ ଗଳ୍ପଗୁଡ଼ିକୁ ଆଧୁନିକ ମାପକାଠିରେ ପରଖିବା ଉଚିତ୍ ନୁହେଁ । କାରଣ ଫକୀରମୋହନ ତାଙ୍କ ଉପନ୍ୟାସ ଗୁଡ଼ିକରେ ଆଧୁନିକତା ଅପେକ୍ଷା ଚିରନ୍ତନତା ଦ୍ୱାରା ଅଧିକ କବଳିତ ହୋଇଛନ୍ତି । ତେଣୁ ତାଙ୍କ ଆଖିରେ ଖଳ ଚିରଦିନ ଖଳ ହୋଇ ରହିଯାଇଛି । ସେ ମଣିଷର ଏକ ଚିରନ୍ତନ ପ୍ରବୃତ୍ତି ଲୋଭ, ପାପ, ପ୍ରତାରଣା, ଯୌନାଚାର ଆଦିର ପ୍ରତିନିଧି ମାତ୍ର ।" ('ସାହିତ୍ୟର ଆଧୁନିକତା - ବନାମ ଚିରନ୍ତନତା' - ଇସ୍ତାହାର - ୫ମ ସଂଖ୍ୟା ସଂପାଦକୀୟ)

## (ଗ) ଆଧୁନିକ ସାହିତ୍ୟର ସହଜ ଓ ସରଳ ବ୍ୟାଖ୍ୟାନ:-

ଖ୍ରୀ: ୧୯୮୦ ସେପ୍ଟେମ୍ବର ୨୯ ତାରିଖରେ ରାଉରକେଲା ଠାରେ କଲଚରାଲ୍ ଏକାଡେମୀ ଦ୍ୱାରା ଅନୁଷ୍ଠିତ ଏକ ସାହିତ୍ୟ ଆସରରେ ଯୋଗ ଦେଇ "ସମାଜରେ ସାଂସ୍କୃତିକ ସଂକଟ ଓ ସାହିତ୍ୟରେ ମୂଲ୍ୟବୋଧର ଅନ୍ୱେଷା" ବିଷୟରେ ଭାଷଣ ଦେବାକୁ ଯିବା ପୂର୍ବରୁ 'ଇସ୍ତାହାର'ର ସଂପାଦକଙ୍କୁ କିଛି ଶ୍ରୋତା ପ୍ରଶ୍ନ କରିଥିଲେ- "ଏ ଯେଉଁ ଆଧୁନିକ କବିତା ଓ ଗଳ୍ପ ଲେଖାଯାଉଛି, ସେ ସବୁ କାହିଁକି ଓ କାହାପାଇଁ ଲେଖାଯାଉଛି ? ଆମ ପାଇଁ ସାହିତ୍ୟ କାହିଁ ?" ଏହି ପ୍ରଶ୍ନ ଶୁଣି ସେ ସ୍ୱତଃ ଅନୁଭବ କରିଛନ୍ତି ଯେ, ଆଜିର କବିତା କେବଳ କେତେକ ସଚେତନ ପାଠକ, ବିଶ୍ୱବିଦ୍ୟାଳୟ ବା କଲେଜ କକ୍ଷ, କେତୋଟି ଲେଖକ-ସଂସ୍ଥା ଓ ବେଳେବେଳେ ସଭାସମିତର ବକ୍ତବ୍ୟ ମଧ୍ୟରେ ରହିଯାଉଛି । କିନ୍ତୁ ସେ ଶ୍ରୋତାମାନଙ୍କୁ ଅତି ସରଳଭାବେ ଏହାର ଉତ୍ତର ଦେଇ କହିଲେ- ଆଧୁନିକ

କବିତା ମାଧ୍ୟରେ ଆଧୁନିକ ସମାଜର ଅବିକଳ ଚେହେରାଟି ପ୍ରତିଫଳନ କରିବାକୁ ହେଲେ ଏଥିରେ ପୂର୍ବପରି ରାମ-ସୀତା, ରାଧା-କୃଷ୍ଣ ବା ଗୋପୀମାନେ ଚରିତ୍ରୀଭୂତ ନ ହୋଇ ପ୍ରତିମା ନାୟକ, ତରଙ୍ଗ, ବନିତା, ଅଳକା ସନ୍ୟାଲ, ହରେକୃଷ୍ଣ ଦାସ, ଚନ୍ଦ୍ରାବେହେରାଣୀ, ସୋଲନ୍, ବିଦ୍ୟୁଲ୍ଲତା ମାନେ ଚରିତ୍ରିତ ହେବାକୁ ବାଧ୍ୟ । ପୁଣି ଯଦି ତ୍ରିଶଙ୍କୁ, ଦୁର୍ଯ୍ୟୋଧନ, କୁବ୍‌ଜା ଆଦି ଆସନ୍ତି ସେମାନେ ଆମର ସମୟର ହେବାକୁ ବାଧ୍ୟ । ସେହିମାନେ ହିଁ ହେଉଛନ୍ତି ଏ ଯୁଗର 'କାଳପୁରୁଷ' । ଏ କଥାଟିର ଗୂଢ଼ ମର୍ମଟିକ ନ ବୁଝିଲେ ମିଥ୍, ଆର୍କିଟାଇପ୍, ପ୍ରତୀକ, ରୂପକଳ୍ପ ବହୁଳ ଆଧୁନିକ କବିତାକୁ ବୁଝିବା ନିଶ୍ଚୟ କଷ୍ଟସାଧ୍ୟ ହେବ ।

ସେହିପରି ଆଧୁନିକ ଗଳ୍ପରେ କିଛି କଳାଗତ କୃଷ୍ଟି ଫୁଟାଇବାକୁ ହେଲେ ସେଥିରେ ବ୍ୟଞ୍ଜନା, ଶ୍ଳେଷ, ବିରୋଧାଭାସ କିଛି ରହିବ । ସେଥିପାଇଁ ଫକୀର ମୋହନ, ଗୋଦାବରୀଶ, କାଳିନ୍ଦୀଚରଣଙ୍କ ସ୍ଥାନରେ ସୁରେନ୍ଦ୍ର, ଗୋପୀନାଥ, ମନୋଜ, ଅଖିଳ ମୋହନ, କିଶୋରୀଚରଣ, ନୀଳମଣି, ଶାନ୍ତନୁ କୁମାର, ରବି ପଟ୍ଟନାୟକ ଆସିଲେ ହିଁ ଗଳ୍ପକଳାରେ ଉଚ୍ଚାଙ୍ଗ ପରୀକ୍ଷା ନିରୀକ୍ଷା ହୋଇ ପଡ଼ୋଶୀ ଓ ବିଦେଶୀ ସାହିତ୍ୟସହ ସମତାଳରେ ଚାଲିହେବ । କିନ୍ତୁ ପ୍ରୟୋଗବାଦ ନାମରେ ଯେଉଁ ସ୍ୱେଚ୍ଛାଚାର ଓ ଅହଂମନ୍ୟତା ଚାଲିଛି, ତା ଦ୍ୱାରା ରସ ଗ୍ରାହକତା ଓ ସମ୍ବେଦନଶୀଳତାର ଅଭାବ ଘଟୁଛି କହି ସେ ତା'ର ଘୋର ବିରୋଧ କରିଛନ୍ତି । (ଇସ୍ତାହାର - ୧୨ଶ ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

ସାଂପ୍ରତିକ ସମୟର କେତେଜଣ ଯୁବଗାଳ୍ପିକଙ୍କ କୃତିତ୍ୱରେ 'ଇସ୍ତାହାର'ର ସଂପାଦକ ଆସ୍ଥା ପ୍ରକଟ କରିଛନ୍ତି । ଗିରୀଶ ସାହୁଙ୍କ 'ନୀଳମାଷ୍ଟ୍ରାଣୀ', ଗୌରାଙ୍ଗ ଚରଣ ଦାସଙ୍କ 'ମଲ୍ଲିକାର ଚିଠି', ରବି ପଣ୍ଡାଙ୍କ 'କେମିତି ବଦଳିଯାଏ ମଣିଷ' ଆଦି ଗଳ୍ପକୁ ତାରିଫ୍ କରି ସେ କହନ୍ତି- "ତରୁଣ ପୀଢ଼ିର ଗାଳ୍ପିକ ଯେ ଅନେକ ପ୍ରତିଷ୍ଠିତଙ୍କୁ ଅତିକ୍ରମ କରିସାରିଲେଣି 'ଇସ୍ତାହାର'ର ଏଇ ପୂଜାସଂଖ୍ୟାରେ ପ୍ରକାଶିତ ଗଳ୍ପମାନଙ୍କୁ ଅନୁଧ୍ୟାନ ନକଲେ ଅନୁରାଗୀ ପାଠକମାନେ ଅନୁଭବ କରିପାରିବେ ନାହିଁ ।" (ଇସ୍ତାହାର - ୧୦୫ତମ ସଂଖ୍ୟା, ସଂପାଦକୀୟ)

## (ଘ) ପ୍ରତିକ୍ରିୟା ଅଭିବ୍ୟକ୍ତି :

'ଇସ୍ତାହାର' ସଂପାଦକ ଜଣେ ସ୍ପଷ୍ଟବାଦୀ ଓ ନିର୍ଭୀକ ସମୀକ୍ଷକ । ଓଡ଼ିଆ ସାହିତ୍ୟର ଉନ୍ନତି ପଥରେ କୌଣସି ଅନ୍ତରାୟ ସୃଷ୍ଟି ହେବା ଲକ୍ଷ୍ୟ କଲେ ସେ ତାଙ୍କ କଲମ ମାଧ୍ୟମରେ ସ୍ୱତଃ ପ୍ରତିକ୍ରିୟାଶୀଳ ହୋଇ ଉଠନ୍ତି । ଉଦାହରଣ ସ୍ୱରୂପ - ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କୁ ଭାରତର ଅନ୍ୟ ରାଜ୍ୟମାନଙ୍କରେ ପରିଚିତ କରାଇବା ଉଦ୍ଦେଶ୍ୟ ନେଇ ଗଠିତ ହୋଇଥିବା 'ସାଂପ୍ରତିକ' ଅନୁଷ୍ଠାନର କାର୍ଯ୍ୟକାରିତା ପ୍ରତି କେତେକ ସାହିତ୍ୟିକ ସନ୍ଦେହ ପ୍ରକାଶ କରିଥିବା ଘଟଣାକୁ ଅବାନ୍ତର ମନେକରି ସେ ଲେଖିଛନ୍ତି- "ଓଡ଼ିଆ କୃତି ମାନଙ୍କର

ଇଂରାଜୀ ବା ହିନ୍ଦୀ ଅନୁବାଦ ଏବଂ ଅନ୍ୟରାଜ୍ୟର ସାହିତ୍ୟିକମାନଙ୍କ ସହ ଆଳାପ ଆଲୋଚନା- ଏ ଦୁଇଟି ନିଶ୍ଚିତଭାବେ ନିର୍ବିବାଦ ଓ ସ୍ୱାଗତଯୋଗ୍ୟ । ସନ୍ଦେହ କଲେ କୌଣସି କାର୍ଯ୍ୟ ଆରମ୍ଭ ହୋଇପାରିବ ନାହିଁ, ଅଗ୍ରଗତି କରିପାରିବ ନାହିଁ ।" (ଇସ୍ତାହାର - ୩୧ଶ ସଂଖ୍ୟା ସଂପାଦକୀୟ - ଶୀର୍ଷକ 'ଜାତୀୟ ସ୍ୱାର୍ଥ ଓ ସଂଶୟବାଦ')

'ଇସ୍ତାହାର'ର ସଂପାଦକ ପ୍ରଫେସର ଶତପଥୀ 'ପୂଜ୍ୟପୂଜା ସଂସଦ'ର ସଂପାଦକ ରହି ପ୍ରଖ୍ୟାତ ସାହିତ୍ୟିକମାନଙ୍କ ସ୍ମୃତି ରକ୍ଷା ପୂର୍ବକ ସାହିତ୍ୟିକ ପରିକ୍ରମାମାନ ପ୍ରକାଶ କରିଛନ୍ତି । ଏହି ଅନୁଷ୍ଠାନ ପକ୍ଷରୁ ନୀଳକଣ୍ଠଙ୍କ ଜନ୍ମଶତବାର୍ଷିକୀରେ ପ୍ରକାଶିତ 'ନୀଳକଣ୍ଠ ପରିକ୍ରମା'କୁ ରାଜା ରାମମୋହନ ଫାଉଣ୍ଡେସନ୍ ଟ୍ରଷ୍ଟ ଓଡ଼ିଶାର ପାଠାଗାରମାନଙ୍କ ପାଇଁ ମନୋନୀତ କରିନଥିବାରୁ ସେ କ୍ଷୋଭ ପ୍ରକାଶ କରିଛନ୍ତି- "ନୀଳକଣ୍ଠ ଶତବାର୍ଷିକ ଉତ୍ସବ କାଳରେ ପ୍ରକାଶିତ ପୁସ୍ତକ 'ନୀଳକଣ୍ଠ ପରିକ୍ରମା 'କଅଣ ଓଡ଼ିଶାର ପାଠାଗାର ମାନଙ୍କ ପାଇଁ ଉପାଦେୟ ବିବେଚିତ ହେଲା ନାହିଁ ?" (ଇସ୍ତାହାର - ୩୨ଶ ସଂଖ୍ୟା ସଂପାଦକୀୟ - "ସାଂସ୍କୃତିକ ପୃଷ୍ଠପୋଷକତା ନା ପୃଷ୍ଠଘାତକତା")

ସେହିପରି ଓଡ଼ିଆ ଭାଷାକୋଷର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଶତବାର୍ଷିକ ଜୟନ୍ତୀରେ ପୂର୍ଣ୍ଣଚନ୍ଦ୍ର-ଭାଷାକୋଷ'ର ପୁନର୍ମୁଦ୍ରଣ ପାଇଁ ସରକାରଙ୍କ ତରଫରୁ କୌଣସି ପଦକ୍ଷେପ ନିଆଯାଇନଥିବାରୁ ତୀବ୍ର ପ୍ରତିବାଦ କରି ସେ ଲେଖିଛନ୍ତି- "ବେଙ୍ଗଲ ବା ମହାରାଷ୍ଟ୍ର ପରି ରାଜ୍ୟରେ ପ୍ରହରାଜ ଜନ୍ମ ହୋଇଥିଲେ ଏହି ଜନ୍ମଶତବାର୍ଷିକୀ ଯେ କି ଉନ୍ମାଦନାର ସହ ପାଳିତ ହୋଇଥାଆନ୍ତା ତାହା କଳ୍ପନା କରି ହେବ ନାହିଁ । ଅନ୍ତତଃ ଓଡ଼ିଆ ଭାଷାର ଏ ମୂଲ୍ୟବାନ୍ ଗ୍ରନ୍ଥଗୁଡ଼ିକୁ ପୁନଃମୁଦ୍ରଣ କରି ଜନ୍ମଶତବାର୍ଷିକୀରେ ସେହି ମହାନ୍ ବ୍ୟକ୍ତିର ପୂଜା ଏ ଜାତି କରିପାରିଥାଆନ୍ତା ।" (ଇସ୍ତାହାର - ୭ମ ସଂଖ୍ୟା ସଂପାଦକୀୟ)

ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଗାଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ହେଉନଥିବାରୁ ଏହି ଅନୁଷ୍ଠାନ ଏକ ସରକାରୀ କାର୍ଯ୍ୟାଳୟ ପରି ରହି ଏହାର ମର୍ଯ୍ୟାଦା କିପରି ହ୍ରାସ ପାଉଚି ସେଥିପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରି ସଂପାଦକ ଶତପଥୀ କହନ୍ତି, ସାହିତ୍ୟ ଏକାଡେମୀର ଅପଶାସନ ଯୋଗୁ ସାହିତ୍ୟିକ ଅପରାରମାନ ପ୍ରସାର ଲାଭ କରୁଛି ଏବଂ ସାହିତ୍ୟର ବିଭିନ୍ନ ବିଭାଗରେ ଦିଆଯାଉଥିବା ପୁରସ୍କାରର ଚୟନରେ ତ୍ରୁଟି ବିଚ୍ୟୁତି ରହିଯାଉଛି । (ଇସ୍ତାହାର - ୩୫ଶ ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

ସେ ପୁଣି ଇସ୍ତାହାର (୧୦୫ତମ ସଂଖ୍ୟା)ର 'ବିଶେଷ କଥା'ରେ 'ହତଭାଗ୍ୟ ଏକାଡେମୀ' ଶୀର୍ଷକ ଲେଖାରେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ନିର୍ବାଚନରେ ଅସନ୍ତୋଷ ବ୍ୟକ୍ତ କରିଛନ୍ତି । ତାଙ୍କ ଯୁକ୍ତିରେ, ଯେଉଁଠି ସଭାପତି ଭାବେ ଏକଦା ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ହରେକୃଷ୍ଣ ମହତାବ, ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଔପନ୍ୟାସିକ

ସୁରେନ୍ଦ୍ର ମହାନ୍ତି, ଗାଳ୍ପିକ କିଶୋରୀ ଚରଣ ଦାସ, କବି ଦୀପକ ମିଶ୍ର ଏକାଡେମୀର ଆସନ ଅଳଂକୃତ କରିଥିଲେ ସେଠି ଗତ କେତେବର୍ଷ ଧରି ଯେଉଁ ମନୋମୁଖୀ ଚୟନ ହେଉଛି ତାହା ସାହିତ୍ୟିକମାନଙ୍କୁ ବ୍ୟଥିତ କରିବା କଥା । କିନ୍ତୁ ଅବଶୋଷର ବିଷୟ, ବରିଷ୍ଠ ସାହିତ୍ୟିକମାନେ ଏଥିରେ ପାଟି ନ ଫିଟାଇ ଚୁପ୍ ରହୁଛନ୍ତି ।

ସେହିପରି ଓଡ଼ିଆ ସାହିତ୍ୟରେ ପିଏଚ୍.ଡି. ଓ ଡି.ଲିଟ୍. ଡିଗ୍ରୀର ମାନ ହ୍ରାସ ପାଉଥିବା ଲକ୍ଷ୍ୟ କରି ସେ ପ୍ରସ୍ତାବ ଦେଇଛନ୍ତି- 'ଏପରି ଅଯତ୍ନ ବର୍ଦ୍ଧିତ ପିଏଚ୍.ଡି. ଓ ଡି.ଲିଟ୍ ସନ୍ଦର୍ଭଗୁଡ଼ିକ ପ୍ରକାଶିତ ହୋଇ ଦିବାଲୋକକୁ ଆସିଲେ ପାଠକବର୍ଗ ତା'ର ଦୋଷ ଦୁର୍ବଳତା ଜାଣିବାକୁ ସୁଯୋଗ ପାଇପାରନ୍ତେ ।" (ଇସ୍ତାହାର - ୩୦ଶ ସଂଖ୍ୟା ସଂପାଦକୀୟ)

## (ଡ) ଗ୍ରନ୍ଥାନୁଶୀଳନ :

କେହି ଲେଖକ ତାଙ୍କ ରଚିତ କୌଣସି ଗ୍ରନ୍ଥ ଲାଗି ଜାତୀୟ ସ୍ତରର ପୁରସ୍କାର ଲାଭ କଲାବେଳେ ବା କୌଣସି ଗୌରବଜନକ ଉପାଧିରେ ଭୂଷିତ ହେଲାବେଳେ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରେ ଡକ୍ଟର ଶତପଥୀ ଉକ୍ତ ଗ୍ରନ୍ଥର ଏକ ମାର୍ମିକ ଅନୁଶୀଳନ କରିବା ପାଇଁ ଭୁଲନ୍ତି ନାହିଁ । ଏହି ଦୃଷ୍ଟିରୁ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରେ ଅନେକ ଗ୍ରନ୍ଥର ସମୀକ୍ଷାଧର୍ମୀ ଅନୁଶୀଳନ ଦେଖିବାକୁ ମିଳେ ।

ଖ୍ରୀ: ୧୯୯୨ରେ କବି ରମାକାନ୍ତ ରଥ 'ସରସ୍ୱତୀ ସମ୍ମାନ'ରେ ଭୂଷିତ ହେବା ଫଳରେ ଓଡ଼ିଆ ଜାତିର କିପରି ଗୌରବ ବୃଦ୍ଧି ପାଇଛି ଏବଂ ଓଡ଼ିଆ ସାହିତ୍ୟର ଶକ୍ତି ଓ ସାମର୍ଥ୍ୟ କିପରି ପ୍ରମାଣିତ ହୋଇଛି ତାହା ବର୍ଣ୍ଣନା କରିବା ସହ ସଂପାଦକ ଶତପଥୀ କବି ରମାକାନ୍ତଙ୍କ ଶ୍ରେଷ୍ଠ କୃତି 'ଶ୍ରୀରାଧା'ର ଏକ ମାର୍ମିକ ମୂଲ୍ୟାଙ୍କନ କରି କହନ୍ତି; ଏ କାବ୍ୟରେ ମିଥ୍‌କୁ ଏକ କ୍ଷୀଣ ଓ ଦୁର୍ବଳ ପଞ୍ଜର ଭାବେ ଗ୍ରହଣ କରାଯାଇଥିଲେ ହେଁ ଅସଲରେ କବିଙ୍କ ନିଜସ୍ୱ ପ୍ରେମାନୁଭୂତି, ନିଃସଂଗତା ଓ ଅକୁଳାନ ପଣିଆ କାବ୍ୟର ଦୈର୍ଘ୍ୟ ଓ ପ୍ରସ୍ଥକୁ ଆବୋରି ବସିଛି । ବୈଷ୍ଣବ କବିତାର ଆବେଗ, ଅନୁଭବ, ଚିତ୍ରକଳ୍ପ କେତେକ ସ୍ଥାନରେ ଦୃଶ୍ୟ ହେଉଥିଲେ ହେଁ ପର ମୁହୂର୍ତ୍ତରେ ମୁଣ୍ଡ ଟେକିଛି ଏକାନ୍ତ ପ୍ରେମବିହ୍ୱଳ ବିମର୍ଷ, ଶୋକାତୁର ପ୍ରାଣସରାଟିଏ ଯାହା ରାଧା ଭାବରେ ଉଚ୍ଚାଟିତ ଓ ଉଦ୍‌ବିଗ୍ନ । ତାଙ୍କ ଭାଷାରେ- "ପ୍ରେମାନୁଭୂତିରେ ଜୁଡୁବୁଡୁ କବି ଶ୍ରୀରାଧାଙ୍କ ମାଧମରେ ହିଁ ପ୍ରେମର ଏ ଗଭୀରତାକୁ ଆକଳନ କରିଛନ୍ତି ଏବଂ ଅଭିନବ କାବ୍ୟଭାଷା (Idiom) ଓ ହୃଦୟାବେଗ ସହ ପ୍ରକାଶ କରିଛନ୍ତି ।" (ଇସ୍ତାହାର - ୫୭ତମ ସଂଖ୍ୟା ସଂପାଦକୀୟ)

ସେ ପୁଣି ଖ୍ରୀ: ୧୯୮୭ରେ ୮ମ ଶାରଳା ପୁରସ୍କାର ଲାଭ କରିଥିବା ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଶକୁନ୍ତଳା' ପୁସ୍ତକର ଅନୁଶୀଳନ କରି ମତ ଦିଅନ୍ତି; - ଶାନ୍ତନୁ ଆଚାର୍ଯ୍ୟଙ୍କ ଉପନ୍ୟାସ ଗୁଡ଼ିକର ବିଷୟବସ୍ତୁ ଗତାନୁଗତିକ ନୁହେଁ; କିମ୍ବା ଶସ୍ତା ଧରଣର

ପ୍ରେମ କାହାଣୀ ସମ୍ବଳିତ ନୁହେଁ। ପ୍ରତ୍ୟେକ ଉପନ୍ୟାସ ତାଙ୍କର ଗଭୀର ଉପଲବ୍ଧି ଓ ପୋଖତ ଶୈଳୀର ପରିଚାୟକ । ତାଙ୍କ ରଚିତ 'ଶକୁନ୍ତଳା' ଭାରତୀୟ ଜୀବନଧାରାର ଏକ ଐତିହାସିକ ଚିତ୍ର ବହନ କରେ। ସ୍ୱାଧୀନତା ପରେ ଦେଶ ଯେଉଁ ରାଜନୀତିକ ସମସ୍ୟାର ସମ୍ମୁଖୀନ ହୋଇଛି ତନ୍ମଧ୍ୟରେ ଖ୍ରୀ: ୧୯୫୧ର ନକ୍ସଲବାଦୀ ଆନ୍ଦୋଳନ ଓ ଯୋଜନା ନାମରେ କେତେକ ପୁଞ୍ଜିପତିଙ୍କ ଶୋଷଣଜାଲ ଏ ଉପନ୍ୟାସର ଅନ୍ୟତମ ଘଟଣା ସ୍ରୋତ । କିନ୍ତୁ ଭାରତ ମାଟିରେ ତା'ର ଐତିହ୍ୟ ଓ ସଂସ୍କୃତିକୁ ଅସ୍ୱୀକାର କରିବା ପରି କୌଣସି ବିପ୍ଳବ ଉଧାଇ ପାରିବ ନାହିଁ । ଏ ଯୁଗର ଶକୁନ୍ତଳା ଧର୍ଷିତା ହେଲେ ମଧ୍ୟ ସନାତନ ଭାରତବର୍ଷ ଯେ ତା'ର ଧର୍ମର ଗଣ୍ଡି ଭିତରୁ ବାହାରି ଯାଇପାରେ ନାହିଁ - ଏହି ବିଶ୍ୱାସ ନେଇ ଔପନ୍ୟାସିକ ଲେଖିଛନ୍ତି, 'ଏଠି ଧର୍ମ ଅର୍ଥ- ଚର୍ଚ୍ଚ, ମସ୍‌ଜିଦ୍, ମନ୍ଦିର ବା ପାଗୋଡ଼ା ନୁହେଁ, ତା'ଠାରୁ ଢେର୍ ବେଶି - ଅନ୍ୟକିଛି । ତାକୁ କେବଳ ଏପରି କହିପାର- ଯେମିତି କଦମ୍ବ ବା ଶକୁନ୍ତଳା ଏହିପରି କିଛି । (ଇସ୍ତାହାର - ୩୮ଶ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ଅଧ୍ୟାପିକା ଡକ୍ଟର ସୁଲୋଚନା ଦାସଙ୍କ ରଚିତ ଲୋକସଭାର ପୂର୍ବତନ ବାଚସ୍ପତି ରବିରାୟଙ୍କ ଜୀବନୀ - 'ମାଟିରୁ ଆକାଶ' ଗ୍ରନ୍ଥର ଉନ୍ମୋଚନ ସଭାରେ ଉକ୍ତ ଗ୍ରନ୍ଥର ସମୀକ୍ଷକଭାବେ ପ୍ରଫେସର ଶତପଥୀ ଯେଉଁ ଭାଷଣ ପ୍ରଦାନ କରିଥିଲେ ତାହା 'ଇସ୍ତାହାର' (୧୦୦ତମ ସଂଖ୍ୟା)ର ସଂପାଦକୀୟରେ ପ୍ରକାଶିତ ହୋଇଅଛି । ଏହି ଗ୍ରନ୍ଥର ଆଲୋଚନା ପ୍ରସଙ୍ଗରେ ସେ କହିଛନ୍ତି- "ମାଟିରୁ ଆକାଶ" - ଏହି ନାମକରଣ ମାଧ୍ୟମରେ ସମଗ୍ର ପୁସ୍ତକର ବିଷୟ (Theme) କୁ ଇଂଗିତରେ ବା ପ୍ରତୀକରେ ସୂଚାଇ ଦିଆଯାଇଛି । କେତେ ତଳ ସ୍ତରରୁ ବା ସାଧାରଣ ପରିବେଶ ଓ ପରିସ୍ଥିତି ମଧ୍ୟରୁ ଜନ୍ମ ନେଇ ଜଣେ ବ୍ୟକ୍ତି ନିଜର ନିଷ୍ଠା, ସାଧୁତା ଓ ସାଧନା ବଳରେ ଆକାଶସ୍ପର୍ଶୀ ବ୍ୟକ୍ତିତ୍ୱର ଅଧିକାରୀ ହୋଇପାରେ ତାହାହିଁ ରବିରାୟଙ୍କ ଜୀବନର ରହସ୍ୟ । ××× ପାହାଚ୍ ପରେ ପାହାଚ୍ ଅତିକ୍ରମ କରି ଶ୍ରୀ ରାୟ ପାର୍ଲାମେଣ୍ଟରେ ସୋସାଲିଷ୍ଟ ପାର୍ଟିର ନେତା, ଖ୍ରୀ: ୧୯୭୭ ବେଳକୁ ଜନତା ସରକାରରେ ଲୋକଦଳର ପାର୍ଲାମେଣ୍ଟାରୀ ନେତା; ପୁଣି ସେଇ ସରକାରରେ ପ୍ରାୟ ବର୍ଷକ ପାଇଁ ଭାରତର ସ୍ୱାସ୍ଥ୍ୟମନ୍ତ୍ରୀ ଏବଂ ଶେଷକୁ ଲୋକସଭାକୁ ଖ୍ରୀ: ୧୯୯୯ ଡିସେମ୍ବରରେ ନିର୍ବାଚିତ ହୋଇ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଗଠିତ ସରକାରରେ ଲୋକସଭାର ବାଚସ୍ପତି - ଏହାହିଁ ଲେଖିକାଙ୍କ ଚେତନାରେ 'ମାଟିରୁ ଆକାଶକୁ ଯାତ୍ରା' । (ଇସ୍ତାହାର - ୧୦୦ତମ ସଂଖ୍ୟା ସଂପାଦକୀୟ)

ଶ୍ରୀମତୀ କଞ୍ଚନା କୁମାରୀ ଦେବୀଙ୍କ ରଚିତ ଉପନ୍ୟାସ - "ଅଚିହ୍ନା ବାସଭୂମି"କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିବା ପରେ ସାହିତ୍ୟିକ ମହଲରେ ସୃଷ୍ଟି ହୋଇଥିବା ବିବାଦର ପ୍ରତ୍ୟୁତ୍ତରରେ ଡକ୍ଟର ଶତପଥୀ ମତ ଦେଇଛନ୍ତି- ଏହା ଏକ ପୁରସ୍କାର ପାଇବା ଯୋଗ୍ୟ ଉପନ୍ୟାସ । ପୁସ୍ତକଟିର ପରିପାଟୀ କେବଳ ସୁଦୃଶ୍ୟ ନୁହେଁ, ଏହାର ବିଷୟବସ୍ତୁ-

ଉତ୍ତର ଆଧୁନିକ ଚେତନାର ବାମାବାଦୀ ଦୃଷ୍ଟିଭଂଗୀ ନାୟିକା (ନଳିନାକ୍ଷୀ) ଚରିତ୍ର ମାଧ୍ୟମରେ ଅଭିନବ ଭାବେ ରୂପାୟିତ ହୋଇଛି । ଉପନ୍ୟାସଟି ଦୁଇଟି ପୀଢ଼ିର ଘଟଣା ଓ ଚିନ୍ତା ସଂଘର୍ଷ ଉପରେ ପ୍ରତିଷ୍ଠିତ । ତାଙ୍କ ବିଋରରେ 'ଅଚିହ୍ନା ବାସଭୂମି' ହେଉଛି ନାରୀର ଭାଗ୍ୟ । ତେଣୁ ଉପନ୍ୟାସର ଶୀର୍ଷକ ଖୁବ୍ ପ୍ରତୀକଧର୍ମୀ । ନାରୀଟିଏ କେଉଁଠୁ ଆସି କେଉଁଠି ଜୀବନ ବଂଚେ; ତା'ର ସ୍ୱପ୍ନ ଚୁରମାର ହୋଇଯାଏ ଏଇ ଅଚିହ୍ନା ବାସଭୂମିର ବିଋରଧାରା ପାଖରେ । (ଇସ୍ତାହାର - ୧୨୨ତମ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ସଚ୍ଚିଦାନନ୍ଦ ବାତ୍ସାୟନ (ଅଜ୍ଞେୟ)ଙ୍କ ଗୀତିନାଟ୍ୟ- 'ଉତ୍ତର ପ୍ରିୟଦର୍ଶୀ'ର ଏକ ତାତ୍ତ୍ୱିକ ଅନୁଶୀଳନ କରି 'ଇସ୍ତାହାର'ର ସଂପାଦକ ମତ ରଖନ୍ତି ଯେ, ସମ୍ରାଟ ଅଶୋକ ସିଂହାସନାରୂଢ଼ ହେବା ସମୟରେ ପ୍ରାଣୀମାନଙ୍କୁ ଯନ୍ତ୍ରଣା ଦେବାପାଇଁ ରାଜପ୍ରାସାଦର ଉତ୍ତର ଦିଗରେ ଏକ ନର୍କ ନିର୍ମାଣ କରିଥିଲେ - ଏହି ଐତିହାସିକ କିମ୍ବଦନ୍ତୀକୁ ଭିତ୍ତି କରି 'ଉତ୍ତର ପ୍ରିୟଦର୍ଶୀ' ରଚିତ ହୋଇଥିଲେ ହେଁ ଏଥିରେ ସାହିତ୍ୟିକ କଳ୍ପନା ବେଳେବେଳେ ଖୁବ୍ ମନୋଜ୍ଞ ଓ ଶ୍ରୀ ସଂପନ୍ନ ହୋଇପାରିଛି । କଳାକାରର ଉଦାର ମାନବିକ ସମ୍ବେଦନଶୀଳତାରେ ଏ ନାଟକର ଶେଷରେ ଲେଖକ ଯେପରି ଘୋଷଣା କରୁଛନ୍ତି- ମୃତ୍ୟୁର ସାକ୍ଷାତ ବ୍ୟତୀତ ଅମରତ୍ୱ ଉପଲବ୍ଧି ହୁଏ ନାହିଁ । ନର୍କରେ ପ୍ରବେଶ ନକଲେ ନର୍କରୁ ମୁକ୍ତି ମିଳେ ନାହିଁ । ବିଜୟ ଲାଭ ପରେ ପ୍ରଥମେ ଅହଂକାର ବିଲୟ ପରେ ନୂଆ ମୂଲ୍ୟବୋଧ ପ୍ରତି ଅଂଗୀକାର - ଏହାହିଁ ଚଣ୍ଡାଶୋକରୁ ଧର୍ମାଶୋକକୁ ପରିବର୍ତ୍ତନର ଏକ ତାତ୍ତ୍ୱିକ ଓ ତାର୍କିକ ଭାବ କଳ୍ପନା । (ଇସ୍ତାହାର - ୧୧୧ଶ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

## (ଚ) ପୁରସ୍କାର ପ୍ରାପ୍ତ ପୁସ୍ତକ ଓ ତାହାର ରଚୟିତାଙ୍କୁ ଅଭିନନ୍ଦନ :

ଉନ୍ନତ ମାନର ସାହିତ୍ୟ ସୃଷ୍ଟି ଲାଗି ଲେଖକମାନଙ୍କୁ ରାଜ୍ୟସ୍ତରରେ, ଜାତୀୟ ସ୍ତରରେ ଓ ଆନ୍ତର୍ଜାତୀୟ ସ୍ତରରେ ପୁରସ୍କୃତ କରି ଉତ୍ସାହିତ କରିବା ଏକ ସାହିତ୍ୟିକ ପରଂପରା । ଏହି ପୁରସ୍କାରପ୍ରାପ୍ତ ସ୍ରଷ୍ଟା ଓ ତାଙ୍କ ସୃଷ୍ଟି ପ୍ରତିଭାକୁ ଅଭିନନ୍ଦନ ଜଣାଇବାକୁ ପତ୍ରପତ୍ରିକାର ସଂପାଦକମାନେ ନିଜର କର୍ତ୍ତବ୍ୟ ମନେକରିଥାଆନ୍ତି । ସେହି ଅନୁକ୍ରମେ 'ଇସ୍ତାହାର'ର ସଂପାଦକ ପୁରସ୍କାର ପ୍ରାପ୍ତ ସ୍ରଷ୍ଟାମାନଙ୍କୁ ଅଭିନନ୍ଦନ ଜଣାଇବା ସହ ସେମାନଙ୍କ ରଚନା ସମ୍ଭାରର ବୈଶିଷ୍ଟ୍ୟ ପାଠକଙ୍କ ସମ୍ମୁଖରେ ଉପସ୍ଥାପନ କରିଛନ୍ତି । କେତୋଟି ସଂପାଦକୀୟ ଆଲୋଚନାରୁ ଏହାର ଦୃଷ୍ଟାନ୍ତ ଦିଆଯାଇପାରେ ।

ଖ୍ରୀ: ୧୯୭୫-୭୬ ବର୍ଷ ପାଇଁ କବି ରମାକାନ୍ତ ରଥଙ୍କ 'ସପ୍ତମ ଋତୁ' କବିତା ସଂକଳନ କେନ୍ଦ୍ରସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିବାରୁ ସଂପାଦକ ଶତପଥୀ କବି ରମାକାନ୍ତଙ୍କୁ ସଂବର୍ଦ୍ଧନା ଜଣାଇବା ସହ 'ସପ୍ତମ ଋତୁ' ଗ୍ରନ୍ଥ ସଂପର୍କରେ ମନ୍ତବ୍ୟ ଦେଇ କହନ୍ତି- "ଏଥିରେ ସମୟ, ସୀମିତ ଜୀବନ, ମୃତ୍ୟୁ, ସମୟହୀନତା ଓ ଆତ୍ମାର ଉତ୍ତରଣ ବା ଏକ ଇନ୍ଦ୍ରିୟୋତ୍ତର ଉପଲବ୍ଧିର ବାର୍ତ୍ତା ସାମଗ୍ରିକ ଭାବେ ପ୍ରକଟିତ ହୋଇଛି ।

ନିଃସଂଗ ଓ ପରିତ୍ୟକ୍ତ ମନୁଷ୍ୟଟି ହୋଇପାରେ ଆଧୁନିକ ମଣିଷର ମୃତ୍ୟୁଚେତନା ଓ ନିଃସଂଗତା ବୋଧର ପ୍ରତିନିଧି ।" (ଇସ୍ତାହାର - ୫ମ ସଂଖ୍ୟା ସଂପାଦକୀୟ)

ପୁଣି ବାମପନ୍ଥୀ କବି ଅନନ୍ତ ପଟ୍ଟନାୟକଙ୍କ 'ଅବାନ୍ତର' କବିତା ଗ୍ରନ୍ଥ ଖ୍ରୀ: ୧୯୮୦ ପାଇଁ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବା ସମୟରେ ସେ ନିଜର ପ୍ରତିକ୍ରିୟା ପ୍ରକାଶ କରି ଲେଖିଲେ - "ଖ୍ରୀ: ୧୯୭୮ରେ ପ୍ରକାଶିତ କବିତା ଗ୍ରନ୍ଥ 'ଅବାନ୍ତର' ସୁଧୀ ପାଠକ ଓ ବିଚାରକ ବର୍ଗଙ୍କ ଦୃଷ୍ଟି ଯେ ଆକର୍ଷଣ କରିପାରିଛି - ଏହା ନିଷ୍ଚିତଭାବେ ଜଣେ ସାରସ୍ୱତ ସାଧକଙ୍କ ଜୀବନବ୍ୟାପୀ ସାଧନା ନିମନ୍ତେ ବିଳମ୍ବରେ ହେଲେବି ଏକ ଆନ୍ତରିକ ସ୍ୱୀକୃତିର ଫଳ ।" (ଇସ୍ତାହାର - ୧୩ଶ ସଂଖ୍ୟା ସଂପାଦକୀୟ)

ଖ୍ରୀ: ୧୯୮୧ ଜନରାଜ୍ୟ ଦିବସରେ ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ଔପନ୍ୟାସିକ ତଥା ଜ୍ଞାନପୀଠ ପୁରସ୍କାର ବିଜେତା ଗୋପୀନାଥ ମହାନ୍ତି ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଭୂଷଣ' ଉପାଧିରେ ସମ୍ମାନିତ ହୋଇଥିବାରୁ 'ଇସ୍ତାହାର'ର ସଂପାଦକ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇବା ସହ ତାଙ୍କ କାଳଜୟୀ ଉପନ୍ୟାସ କଳାର ଆକଳନ କରି ଲେଖିଛନ୍ତି- "ତାଙ୍କ ଉପନ୍ୟାସ ମାନଙ୍କରେ ସମାଜ, ସାହିତ୍ୟ ଓ ସଂସ୍କୃତିର ସମସ୍ୟାବଳୀକୁ ଅତି ଗଭୀର ଭାବେ ଅନୁଧ୍ୟାନ କରି ଅସହାୟ ମଣିଷକୁ ଆତ୍ମବିଶ୍ୱାସର ବିପୁଳ ଅସ୍ତ୍ରଟି ଧରାଇ ଦେଇ ସମସ୍ତ କ୍ଷୟକ୍ଷତି, ନୈରାଶ୍ୟ ଓ ବିଫଳତା ମଧ୍ୟରେ ଜୀବନ ଯୁଦ୍ଧରେ ଆଗେଇ ଯିବା ପାଇଁ ସେ ଯେଉଁ ଆଶାୟିତ ଆହ୍ୱାନ ଶୁଣାଇଛନ୍ତି, ବୈଦିକ ଋଷିର ଉଦାତ୍ତ କଣ୍ଠସ୍ୱର ପରି ତାହା ଅବକ୍ଷୟ ଗ୍ରସ୍ତ ମଣଷ ସମାଜକୁ ଅଚଳାୟତନ ବିଶ୍ୱାସର ମନ୍ତ୍ରରେ ଉଚାଟିତ କରିଥାଏ ।" (ଇସ୍ତାହାର - ୧୩ଶ ସଂଖ୍ୟା ସଂପାଦକୀୟ)

'ଇସ୍ତାହାର'ର ସଂପାଦକ ପ୍ରଫେସର ଶତପଥୀଙ୍କ ଉଦ୍ୟମ ଫଳରେ ଇମ୍ପା ଶିଳ୍ପ ସଂସ୍ଥା ଦ୍ୱାରା ଶାରଳା ପୁରସ୍କାର କମିଟି ଗଠନ କରାଯାଇ ଖ୍ରୀ: ୧୯୭୯ ମସିହାଠାରୁ ପ୍ରତିବର୍ଷ ଯୋଗ୍ୟ ବିବେଚିତ ସାହିତ୍ୟ ସ୍ରଷ୍ଟାଙ୍କୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରାଯାଉଛି । ଏହି ପୁରସ୍କୃତ ସ୍ରଷ୍ଟାଙ୍କୁ ଅଭିନନ୍ଦନ ଜଣାଇବା ସହ ତାଙ୍କ ସାହିତ୍ୟିକ ପ୍ରତିଭା ସହ ପାଠକଙ୍କୁ ପରିଚିତ କରାଇବା ପାଇଁ ସେ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରେ ତାଙ୍କର ଲେଖନୀ ଚାଳନ କରିବା ଅବ୍ୟାହତ ରଖିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ- ଖ୍ରୀ: ୧୯୮୧ରେ ମନୋଜ ଦାସଙ୍କୁ ଶାରଳା ପୁରସ୍କାର ପ୍ରଦତ୍ତ ହେବା ଅବସରରେ ସେ ତାଙ୍କ ସାରସ୍ୱତ ପ୍ରତିଭାର ଆକଳନ କରି ଲେଖିଛନ୍ତି - "ଦୀର୍ଘ ତିରିଶ ବର୍ଷ ଧରି ସେ ଧାରାବାହିକ ଭାବେ ମଣିଷର ଓ ସମସାମୟିକ ସମାଜର ତଥାକଥିତ ଆଟୋପ ତଥା ଆବରଣକୁ ଉନ୍ମୁକ୍ତ କରିଦେଇଛନ୍ତି । ଏପରିକି ତାଙ୍କ ଉଦ୍ଭଟ ଗଳ୍ପ ଗୁଡ଼ିକରେ ବି ସେ ତୀକ୍ଷ୍ଣ ବୁଦ୍ଧିମତ୍ତା ଓ ପ୍ରଚଣ୍ଡ ବିଦ୍ରୂପାତ୍ମକ ହାତୁଡ଼ିଟିଏ ପିଟି ଏ ଅନ୍ଧସମାଜକୁ ଓ ରାଜନୀତିକ ଅନାଚାରକୁ ପଦାରେ ପକାଇ ଦେଇଛନ୍ତି ।" (ଇସ୍ତାହାର - ୧୫ଶ ସଂଖ୍ୟା ସଂପାଦକୀୟ)

ସେହିପରି 'ଅଭିଶପ୍ତ ଗନ୍ଧର୍ବ' ପୁସ୍ତକ ପାଇଁ ଖ୍ରୀ: ୧୯୮୩ରେ ଶାରଳା ପୁସ୍ତକ ଲାଭ କରିଥିବା ଗାଳ୍ପିକ ମହାପାତ୍ର ନୀଳମଣି ସାହୁଙ୍କ ସାହିତ୍ୟିକ ଅବଦାନ ସଂପର୍କରେ ସୂଚନା ପ୍ରଦାନ କରି ସେ କହନ୍ତି, ଭାବଭୂମିରୁ ତାଙ୍କ କଥାସାହିତ୍ୟ ଯେଉଁପରି ବ୍ୟାପ୍ତିଭିତ୍ତିକ, ଆଙ୍ଗିକ ଦୃଷ୍ଟିରୁ ସେହିପରି ବିବିଧ ଓ ବିଚିତ୍ର । ଆପାତଃ ହାସ୍ୟରସ ଅନ୍ତରାଳରେ ନିବିଡ଼ କାରୁଣ୍ୟର ପ୍ରଭାବ ତାଙ୍କ ଗଳ୍ପର ପ୍ରାଣସତ୍ତାକୁ ଆର୍ଦ୍ର କରେ; ପାଠକର ହୃଦୟକୁ ଦୋହଲାଇଦିଏ । (ଇସ୍ତାହାର - ୨୩ଶ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ଖ୍ରୀ: ୧୯୯୪ରେ ଶାରଳା ପୁରସ୍କାର ପ୍ରାପ୍ତ ଭୁବନେଶ୍ୱର ବେହେରାଙ୍କ "ଗାଁ'ର ଡାକ" ଗ୍ରନ୍ଥ ସଂପର୍କରେ ସଂପାଦକ ଶତପଥୀଙ୍କ ମନ୍ତବ୍ୟଟି ଏହିପରି - "ଗାଁ'ର ଡାକ" ଆପାତତଃ ଚରିତ ଉପନ୍ୟାସଟିଏ ପରି ପ୍ରତୀତ ହେଉଥିଲେ ବି ତାହା ପ୍ରଫେସର ବେହେରାଙ୍କ ଆତ୍ମଜୀବନୀ ମାତ୍ର । କିନ୍ତୁ ଏତେ ରସାଳ ଉପନ୍ୟାସ ସୁଲଭ ଭଂଗୀରେ ଏ ଆତ୍ମଜୀବନୀଟି ରଚିତ ଯେ, ଏହାକୁ ଧରିବା ମାତ୍ରେ ପାଠକ ଶେଷ ନକରି ରହିପାରିବ ନାହିଁ । (ଇସ୍ତାହାର - ୬୨ତମ ସଂଖ୍ୟା ସଂପାଦକୀୟ)

ପୁଣି ଖ୍ରୀ: ୧୯୯୨ରେ କବି ରମାକାନ୍ତ 'ସରସ୍ୱତୀ ସମ୍ମାନ' ପାଇବା ଏବଂ ଖ୍ରୀ: ୧୯୯୩ ପାଇଁ କବି ସୀତାକାନ୍ତ 'ଜ୍ଞାନପୀଠ' ପୁରସ୍କାର ପାଇବା ଏ ଦୁଇଟିକୁ ଓଡ଼ିଆ ସାହିତ୍ୟ ପାଇଁ ଦୁଇଟି ସୁବର୍ଣ୍ଣ ତାରିଖ ଭାବେ ସ୍ମରଣ କରି ସେ କହନ୍ତି- "ସମଗ୍ର ଭାରତୀୟ ସାହିତ୍ୟରେ ଲାଗ ଲାଗ ଓଡ଼ିଆ କବିତାର ଏ ସ୍ୱୀକୃତି ଅତି ନିର୍ବିବାଦରେ ଓଡ଼ିଆ କବିତାର ଅଗ୍ରଗଣ୍ୟ କାବ୍ୟିକ ଉଚ୍ଚତାକୁ ହିଁ ଚିହ୍ନାଇ ଦେଇଛି ।" (ଇସ୍ତାହାର - ୬୧ତମ ସଂଖ୍ୟା ସଂପାଦକୀୟ)

କେବେ କେବେ କୌଣସି ପୁସ୍ତକ ଜାତୀୟ ପୁରସ୍କାର ଲାଭ କରିବାକୁ ନେଇ ଯେଉଁ ବିବାଦ ସୃଷ୍ଟି ହେଉଛି ସେଥିରେ ପ୍ରତିକ୍ରିୟା ପ୍ରକାଶ କରି ସଂପାଦକ ଶତପଥୀ ସାହିତ୍ୟିକମାନଙ୍କୁ, ଏପରି ବିବାଦରୁ ଦୂରେଇ ରହିବାକୁ ଅନୁରୋଧ କରିଛନ୍ତି । କିନ୍ତୁ ବିତର୍କ ସୃଷ୍ଟି ମାଧ୍ୟମରେ ଗ୍ରନ୍ଥଟିର ଭଲମନ୍ଦ ବିଚାର କରିବା ଓ ତୁଳନାତ୍ମକ ବିବରଣୀ ଦେବାରେ ସାହିତ୍ୟ ସମାଲୋଚକଙ୍କ ଅଧିକାର ରହିଛି ବୋଲି ସେ ଦୃଢ଼ ମତ ପୋଷଣ କରନ୍ତି । ସେ ନିଜେ ମଧ୍ୟ ମନୋଜ ଦାସଙ୍କ ରଚିତ 'ଅମୃତ ଫଳ' ପାଠ କରି ମନ୍ତବ୍ୟ ଦେଇଥିଲେ - "ଜଣେ ସମାଲୋଚକ ଭାବେ ମୁଁ ଯେଉଁ ବ୍ୟାପ୍ତି ଓ ବିସ୍ତାରଣ ଓ ଉପନ୍ୟାସରୁ ଆଶା କରୁଥିଲି ତାହା ପାଇଲି ନାହିଁ । ତେଣୁ ମୋ ଅନୁଭବକୁ ଲୁଚେଇ ନ ରଖି ମୁଁ କହିଥିଲି - ମୁଁ ବିଶେଷ ଉଦ୍‌ବୁଦ୍ଧ ହୋଇ ପାରିଲି ନାହିଁ । ଏ ମନ୍ତବ୍ୟକୁ ନେଇ କୌଣସି ବିବାଦ ସୃଷ୍ଟି ହେବା ଉଚିତ ନୁହେଁ ।" କାରଣ ତାଙ୍କ ଯୁକ୍ତିରେ, ମନୋଜବାବୁ 'ଅମୃତଫଳ' ପାଇଁ କିମ୍ବା ରମାକାନ୍ତ 'ଶ୍ରୀରାଧା' ପାଇଁ ସରସ୍ୱତୀ ସମ୍ମାନ ପାଇନାହାନ୍ତି କିମ୍ବା ଅନନ୍ତ ପଟ୍ଟନାୟକ 'ଅବାନ୍ତର' ବା ରାଧାମୋହନ ଗଡ଼ନାୟକ 'ସୂର୍ଯ୍ୟ ଓ ଅନ୍ଧକାର' କବିତା

ଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇ ନାହାନ୍ତି । ଏହି ଜାତୀୟ ପୁରସ୍କାର ଗୁଡ଼ିକ କବି ବା ଲେଖକର ଜୀବନ ବ୍ୟାପୀ ସାଧନାକୁ ହିଁ ବିଚାରକୁ ନେଇ ନିର୍ଣ୍ଣିତ ହୋଇଥାଏ । (ଇସ୍ତାହାର - ୮୪ତମ ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

## (ଛ) ସତ୍ୟବାଦୀଯୁଗୀୟ ଚିନ୍ତା ଓ ଚେତନା ପ୍ରତି ଅନୁରାଗ :

ପ୍ରଫେସର ନିତ୍ୟାନନ୍ଦ ଶତପଥୀ ସତ୍ୟବାଦୀ ଯୁଗୋତ୍ତର ସାହିତ୍ୟ ବିଶେଷ କରି କାବ୍ୟ ସମୀକ୍ଷା କ୍ଷେତ୍ରରେ ବିପୁଳ କୃତିତ୍ୱ ଦର୍ଶାଇ ଥିଲେ ହେଁ ତାଙ୍କ ସାହିତ୍ୟିକ ଆଭିମୁଖ୍ୟ ସତ୍ୟବାଦୀ ଯୁଗୀୟ ଚିନ୍ତା ଓ ଚେତନା ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଅଛି । ତେଣୁ ସେ ସତ୍ୟବାଦୀର ପଞ୍ଚସଖାଙ୍କ ସ୍ମୃତି ରକ୍ଷା ଦିଗରେ କିଛି କରିବା ପାଇଁ ସର୍ବଦା କ୍ରିୟାଶୀଳ ହୋଇଛନ୍ତି ।

ଖ୍ରୀ: ୧୯୭୭ରେ ପଣ୍ଡିତ ଗୋପବନ୍ଧୁଙ୍କ ଶତବାର୍ଷିକ ଜୟନ୍ତୀ ପାଳନ ସମୟରୁ ହିଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ 'ସତ୍ୟବାଦୀ ଚେୟାର' ସ୍ଥାପନ ଲାଗି ଉଦ୍ୟମ କରି ଆସିଥିଲେ । ଖ୍ରୀ: ୧୯୮୫ରେ ପୂଜ୍ୟପୂଜା ସଂସଦ ଦ୍ୱାରା 'ନୀଳକଣ୍ଠ ପରିକ୍ରମା' ପୁସ୍ତକ ଉନ୍ମୋଚନ କରି 'ସମାଜ' ସଂପାଦକ ରାଧାନାଥ ରଥ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗୋପବନ୍ଧୁ ଚେୟାର ପ୍ରତିଷ୍ଠା ପାଇଁ ଦୁଇ ଲକ୍ଷ ଟଙ୍କାର ଏକ ଚେକ୍ ପ୍ରଦାନ ପାଇଁ ଘୋଷଣା କରିଥିଲେ । ପୁଣି ନୀଳକଣ୍ଠ ସ୍ମୃତି ସମିତି ନୀଳକଣ୍ଠଙ୍କ ସାହିତ୍ୟ ଓ ଦର୍ଶନର ଗବେଷଣା ପାଇଁ ବିଶ୍ୱବିଦ୍ୟାଳୟକୁ ବାସ୍ତରୀ ହଜାର ଟଙ୍କା ଦେଇଥିଲେ । ଏ ଉଭୟ ଅର୍ଥରାଶିକୁ 'ସତ୍ୟବାଦୀ ଚେୟାର' ପ୍ରତିଷ୍ଠା ଦିଗରେ ବିନିଯୋଗ କରିବା ପାଇଁ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରି ଡକ୍ଟର ଶତପଥୀ 'ଇସ୍ତାହାର'ର ସଂପାଦକୀୟରେ ଲେଖିଥିଲେ- "ଗୋପବନ୍ଧୁ ଓ ସତ୍ୟବାଦୀ ଗୋଷ୍ଠୀଙ୍କ ଚିନ୍ତାଧାରା ଏକ ଓ ଅଭିନ୍ନ । ଯେଉଁ ସଖାମାନଙ୍କ ବ୍ୟକ୍ତିଗତ ତ୍ୟାଗ, ଶ୍ରମନିଷ୍ଠା ପାଇଁ ସତ୍ୟବାଦୀ ସାହିତ୍ୟ, ଦର୍ଶନ ଓ କର୍ମଧାରା ଜାତିର ପ୍ରାଣ ପ୍ରବାହ ମଧ୍ୟରେ ଏକ ଯୁଗର ଚିହ୍ନ ରଖିଯାଇଛି, ସେଇ ସାଥୀମାନଙ୍କୁ ବିଛିନ୍ନ ଭାବେ ଏ ଜାତି କେବେ ଦେଖିନାହିଁ ।" (ଇସ୍ତାହାର - ୩୧୫ଶ ସଂଖ୍ୟା)

ଶେଷରେ ପ୍ରଫେସର ଶତପଥୀଙ୍କ ଉଦ୍ୟମ, ଫଳପ୍ରଦ ହେଲା । ଉତ୍କଳ ବିଶ୍ୱବିଦ୍ୟାଳୟରେ 'ସତ୍ୟବାଦୀ ଚେୟାର' ପ୍ରତିଷ୍ଠିତ ହୋଇ ସେହି ଚେୟାରର ପ୍ରଥମ ପ୍ରଫେସର ରୂପେ ସେ ନିଯୁକ୍ତ ହୋଇଥିବାରୁ 'ଇସ୍ତାହାର' ସଂପାଦକୀୟରେ କୃତଜ୍ଞତା ପ୍ରକାଶ କରି ଲେଖିଲେ- "ଅତି ଆନନ୍ଦର ବିଷୟ ଯେ, ବିଳମ୍ବରେ ହେଲେ ମଧ୍ୟ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଶତବାର୍ଷିକ ଜୟନ୍ତୀ ଉତ୍ସବର ଆଠବର୍ଷ ପରେ ତାଙ୍କର ଅନ୍ୟତମ ସଖା ଓ ସତୀର୍ଥ ଗୋଦାବରୀଶଙ୍କ ଶତବାର୍ଷିକ ଜୟନ୍ତୀ ଉତ୍ସବ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏହି 'ସତ୍ୟବାଦୀ ଚେୟାର' ପ୍ରତିଷ୍ଠିତ ହୋଇଛି । ଲୋକସେବକ ମଣ୍ଡଳୀର ସଭାପତି, 'ସମାଜ' ସଂପାଦକଙ୍କ ସର୍ବାଧିକ ଆନୁଷ୍ଠାନିକ ଦାନ, ନୀଳକଣ୍ଠ ସ୍ମୃତି ସମିତିର ଦାନ,

ଓଡ଼ିଶା ସରକାରଙ୍କ ଅନୁଦାନ ଓ 'ଇମ୍ପା' ଶିକ୍ଷାନୁଷ୍ଠାନର ଦାନ ଯୋଗେ ଏହି ଚେୟାର ପ୍ରତିଷ୍ଠା ସମ୍ଭବ ହୋଇଛି ।" (ଇସ୍ତାହାର - ୩୩-୩୪ ସଂଖ୍ୟା ସଂପାଦକୀୟ)

ଏହି ମହତ କାର୍ଯ୍ୟରେ ଲୋକସେବକ ମଣ୍ଡଳର ସଭାପତି ରାଧାନାଥ ରଥ ଓ ଓଡ଼ିଶାର ତତ୍‌କାଳୀନ ଅର୍ଥ ଓ ଆଇନ୍ ବିଭାଗର ମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଅକୁଣ୍ଠ ଉଦ୍ୟମକୁ ସେ ଭୂରି ଭୂରି ପ୍ରଶଂସା କରିଛନ୍ତି ।

ପୂଜ୍ୟପୂଜାରେ ଅବହେଳା ପ୍ରଫେସର ଶତପଥୀଙ୍କୁ ଅସହ୍ୟବୋଧ ହୁଏ । ତେଣୁ ପଣ୍ଡିତ ନୀଳକଣ୍ଠଙ୍କ ରାଜ୍ୟସ୍ତରୀୟ ଜନ୍ମଶତବାର୍ଷିକ ପାଳନ ପାଇଁ ସରକାରୀ ସ୍ତରରେ କୌଣସି ଉତ୍ସାହଜନକ ଆୟୋଜନ ନଥିବା ଲକ୍ଷ୍ୟ କରି ସେ କ୍ଷୋଭ ପ୍ରକାଶ କରି ଲେଖିଲେ- "ନୀଳକଣ୍ଠଙ୍କ ବିଦ୍‌ବତ୍ତା, ବ୍ୟକ୍ତିତ୍ୱ, ମନୀଷା, ସ୍ୱାଧୀନ ସ୍ପୃହା ଓ ଜାତୀୟ ସ୍ୱାଭିମାନ ଉତ୍ତର ପୁରୁଷ ପାଇଁ ଇତିହାସର ସାମଗ୍ରୀ ଭାବେ ବିବେଚିତ ହେବ । ଅଥଚ୍ ଆମମାନଙ୍କ ଦୁର୍ଭାଗ୍ୟ ଯେ, ଏ ଜାତିର ପୁରୁଷକାର ଓ ଗଣଚୈତନ୍ୟ ଏ ସବୁକୁ ଅବହେଳା କରି ନୂତନ ସମାଜ ଗଠନର ସ୍ପର୍ଦ୍ଧା ଓ ସ୍ୱପ୍ନକୁ ଭୁଲି କ୍ଷୁଦ୍ର ରାଜନୈତିକ କ୍ଷମତା ପ୍ରମତ୍ତ ଅଳୀକ ଆସକ୍ତିରେ ମୋହାଚ୍ଛନ୍ନ ହୋଇପଡ଼ିଛି ।" (ଇସ୍ତାହାର - ୨୫୩ ସଂଖ୍ୟା ସଂପାଦକୀୟ)

କିନ୍ତୁ ଏକବର୍ଷ ଲାଗି (ଅକ୍ଟୋବର ଖ୍ରୀ: ୧୯୮୫ ରୁ ଖ୍ରୀ: ୧୯୮୬) ଯେତେବେଳେ ପଣ୍ଡିତ ଗୋଦାବରୀଶଙ୍କ ଶତବାର୍ଷିକ ଜୟନ୍ତୀ ଉତ୍ସବ ସେହି ସମୟର ଅର୍ଥମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଅଧକ୍ଷତାରେ ଗଠିତ ଗୋଦାବରୀଶ ସ୍ମୃତି ସଂସଦ ଦ୍ୱାରା ମହାସମାରୋହରେ ପାଳିତ ହେଲା ସେଥିରେ 'ଇସ୍ତାହାର'ର ସଂପାଦକ ଉଚ୍ଛ୍ୱସିତ ଆନନ୍ଦ ପ୍ରକାଶ କରି ଅର୍ଥମନ୍ତ୍ରୀଙ୍କଠାରେ କୃତଜ୍ଞତା ଜଣାଇ ଲେଖିଲେ- "ଏଥିପାଇଁ ଆମେ ସତ୍ୟବାଦୀ ଚିନ୍ତାଧାରା ଓ କର୍ମପ୍ରେରଣାରେ ଉଦ୍‌ବୁଦ୍ଧ ବିଶିଷ୍ଟ ଜନସେବୀ ରାଜନୀତିକ ନେତା ଶ୍ରୀଯୁକ୍ତ ମହାପାତ୍ରଙ୍କୁ ସାଧୁବାଦ ଜ୍ଞାପନ କରୁଛୁ ।" (ଇସ୍ତାହାର - ୩୬୦ ସଂଖ୍ୟା ସଂପାଦକୀୟ)

ଏହି ଜୟନ୍ତୀ ଅବସରରେ ସେ ପ୍ରସ୍ତାବ ଦେଇଥିଲେ- ସରକାରୀ ଉଦ୍ୟମରେ ରାଜ୍ୟର ରାଜଧାନୀରେ ଗୋଟିଏ 'ସତ୍ୟବାଦୀ ଗବେଷଣାକେନ୍ଦ୍ର' ବା 'ପଞ୍ଚସଖା ଭବନ' ନିର୍ମିତ ହୋଇପାରିଲେ ସତ୍ୟବାଦୀ ଚିନ୍ତା, ଚେତନା, ଦର୍ଶନ, ସାହିତ୍ୟ, ରାଜନୈତିକ ଆଦର୍ଶ ଓ ସମାଜ ସେବା ଦିଗରେ ସକ୍ରିୟ ଗବେଷଣା ସହ ଏଠାରେ ନୂତନ ଓଡ଼ିଶାର ନିର୍ମାତା ମନୀଷୀମାନଙ୍କ ସ୍ମୃତି ସଂରକ୍ଷିତ ହୋଇ ଏହାକୁ ଏକ ପର୍ଯ୍ୟଟନ କେନ୍ଦ୍ରର ଗୌରବ ଦିଆଯାଇପାରନ୍ତା । (ଇସ୍ତାହାର - ୩୬ ସଂଖ୍ୟା ଶାରଦୀୟ ବିଶେଷାଙ୍କ ସଂପାଦକୀୟ ଦ୍ରଷ୍ଟବ୍ୟ) ଏ ସମ୍ବାଦ ଶୁଣି ପାଠକେ ଖୁସି ହେବେ ଯେ ଡକ୍ଟର ଶତପଥୀ ରହୁଥିବା ଶୈଳଶ୍ରୀ ବିହାରରେ ଏବେ ପଞ୍ଚସଖା ଭବନ ନାମରେ ସଭାଗୃହଟିଏ ନିର୍ମିତ ହେଉଛି । ସେଥିପାଇଁ ସେ କେବଳ ଲାଗି ନାହାନ୍ତି ନିଜେ ଏକଲକ୍ଷ ଟଙ୍କା ମଧ ଦାନ କରିଛନ୍ତି ।

ଅତୀତର ଗୌରବ ଗାନ କରି ବର୍ତ୍ତମାନକୁ ଉଜ୍ଜୀବିତ କରିବା ଥିଲା ସତ୍ୟବାଦୀ ଯୁଗୀୟ ସ୍ରଷ୍ଟାଗଣଙ୍କ ସାହିତ୍ୟିକ ଆଭିମୁଖ୍ୟ । 'ଇସ୍ତାହାର'ର ସଂପାଦକ ମଧ୍ୟ ଓଡ଼ିଆ ସାହିତ୍ୟକୁ ସରସ, ସୁନ୍ଦର ଓ ଜୀବନ୍ତ କରି ସଂପ୍ରସାରିତ କରିବାରେ ଅତୀତରେ ସାହିତ୍ୟସ୍ରଷ୍ଟା, ସାହିତ୍ୟିକ ଅନୁଷ୍ଠାନ ଓ ସୁଧୀ ପାଠକଙ୍କ ମଧ୍ୟରେ ଯେପରି ଆଗ୍ରହ ପ୍ରକାଶ ପାଉଥିଲା ସେହିପରି ଏକ ଜୀବନ୍ତ ସାହିତ୍ୟିକ ପରିବେଶ ସୃଷ୍ଟି ଲାଗି ଏ ସମୟର ସାହିତ୍ୟ ସ୍ରଷ୍ଟା ଓ ସାହିତ୍ୟପ୍ରେମୀଙ୍କୁ 'ଇସ୍ତାହାର'ର ବିଭିନ୍ନ ସଂପାଦକୀୟ ପୃଷ୍ଠା ମାଧ୍ୟମରେ ଆହ୍ୱାନ କରିଛନ୍ତି । ଉଦାହରଣ ସ୍ୱରୂପ ଖ୍ରୀ: ୨୦୧୪ରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ୬୫ତମ ବିଷୁବ ମିଳନ ଉତ୍ସବରେ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବିପୁଳ ଅବଦାନ ଲାଗି ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କୁ 'ବିଷୁବ ପୁରସ୍କାର' ପ୍ରଦାନ କରାଯିବା ଅବସରରେ ତା'ର ପ୍ରତ୍ୟୁତ୍ତର ରଖି ସେ ଯେଉଁ ଭାଷଣ ପ୍ରଦାନ କରିଥିଲେ ତାହା 'ଇସ୍ତାହାର' (୧୨୯-୧୩୦ ସଂଖ୍ୟା)ର ସଂପାଦକୀୟରେ ପ୍ରକାଶ ପାଇଛି । ସେହି ଭାଷଣରେ ସେ ଡକ୍ଟର ହରେକୃଷ୍ଣ ମହତାବଙ୍କ ସମୟରେ କିପରି ଏହି ବିଷୁବ ମିଳନ ଓଡ଼ିଆ ସାହିତ୍ୟର ଏକ ଆକର୍ଷଣୀୟ ବାର୍ଷିକ ସମାବର୍ତ୍ତନ ଉତ୍ସବ ରୂପେ ପାଳିତ ହେଉଥିଲା ତାହାର ସ୍ମୃତି ଶ୍ରୋତାମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଛନ୍ତି ।

'ଇସ୍ତାହାର'ର ସଂପାଦକୀୟରୁ ସେହି ସ୍ମୃତିର କିଛି ଅଂଶ ଏଠାରେ ଉଦ୍ଧାର କରାଯାଇପାରେ- "ସେତେବେଳେ ଡକ୍ଟର ହରେକୃଷ୍ଣ ମହତାବ ଥିଲେ ଆକର୍ଷଣର ମଧ୍ୟମଣି । ତାଙ୍କ ବ୍ୟକ୍ତିତ୍ୱ ସ୍ୱତଃ ପ୍ରମୁଖ ସାହିତ୍ୟିକମାନଙ୍କୁ ଏ ବିଷୁବ ପରିସରକୁ ଟାଣି ଆଣୁଥିଲା । ନିମନ୍ତ୍ରଣ ପତ୍ର ପାଆନ୍ତୁ ବା ନ ପାଆନ୍ତୁ । ଯେଉଁ ଯେଉଁ ଭାରତୀୟ ସାହିତ୍ୟିକମାନଙ୍କୁ ଆମେ ଜୀବଦ୍ଦଶାରେ ଦେଖିବାର ସୁଯୋଗ ପାଇ ନଥା'ନ୍ତୁ ସେମାନଙ୍କୁ ବିଷୁବ ମଣ୍ଡପକୁ ନିମନ୍ତ୍ରଣ କରିଆଣି ସେ ଓଡ଼ିଆ ସାହିତ୍ୟକୁ ସଂପ୍ରସାରିତ କରୁଥିଲେ । ଅତି ଆକର୍ଷଣୀୟ ଭାବେ ବିଦ୍ୱାନ ଓ ବିଦୂଷୀମାନଙ୍କ ଲେଖାରେ ଭରପୂର ହୋଇ 'ଝଂକାର'ର ବିଷୁବ ସଂଖ୍ୟା ପ୍ରକାଶ ପାଉଥିଲା । ×× ଡକ୍ଟର ମହତାବଙ୍କ ମୁହଁରୁ ପଦେ କଥା ଶୁଣିବାକୁ ସମସ୍ତେ ଉତ୍ସୁକ ହୋଇ ରହିଁ ବସୁଥିଲେ । ସେ ସବୁବେଳେ କିଛି ନୂଆ କଥା କହୁଥିଲେ । ତାଙ୍କ ଉଦ୍ୟମରେ ଅନୁଷ୍ଠାନଟି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରାଣପିଣ୍ଡକୁ ଗଢୁଥିଲା ।" (ଇସ୍ତାହାର - ୧୨୯-୧୩୦ ସଂଖ୍ୟା - ସଂପାଦକୀୟ)

## (ଜ) ଯଶସ୍ୱୀ ସାହିତ୍ୟିକଙ୍କ ସ୍ମୃତିଚାରଣ :

ସାହିତ୍ୟ ଜଗତରେ ପୂଜ୍ୟପୂଜା ପରଂପରା ଅବ୍ୟାହତ ରଖିବା ପାଇଁ ପ୍ରଫେସର ଶତପଥୀ ସର୍ବଦା ଉଦ୍ୟମଶୀଳ ହୋଇ ଆସିଛନ୍ତି । ତେଣୁ 'ଇସ୍ତାହାର'ର ସଂପାଦକ ଭାବେ କୌଣସି ବରିଷ୍ଠ ସାହିତ୍ୟିକ ପୁରସ୍କୃତ ହେବାବେଳେ ସେ ଯେପରି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଛନ୍ତି ସେହିପରି ଯଶସ୍ୱୀ ସାହିତ୍ୟିକଙ୍କ ମହାପ୍ରୟାଣରେ ତାଙ୍କ ସାହିତ୍ୟିକ ପ୍ରତିଭାର ସ୍ମୃତିଚାରଣ କରି ତାଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଇଛନ୍ତି ।

ଓଡ଼ିଆ ସାହିତ୍ୟାକାଶରୁ କଥାକାର ସୁରେନ୍ଦ୍ର ମହାନ୍ତି, ସାହିତ୍ୟ ଗବେଷକ ବଂଶୀଧର ମହାନ୍ତି ଓ ଦେବେନ୍ଦ୍ର ମହାନ୍ତି, କବି ଗୋପାଳ ମିଶ୍ର, କବି, ଗାଳ୍ପିକ ଓ ଔପନ୍ୟାସିକ କାଳିନ୍ଦୀଚରଣ ପାଣିଗ୍ରାହୀ, ନାଟ୍ୟକାର ବସନ୍ତ ମହାପାତ୍ର, କଥାକାର ରବି ପଟ୍ଟନାୟକ ପ୍ରମୁଖ ସାହିତ୍ୟ ରଥୀ ଗୋଟିକ ପରେ ଗୋଟିଏ ଟଳି ପଡ଼ିବାରେ ବ୍ୟଥିତ ହୋଇ ପ୍ରଫେସର ଶତପଥୀ "ଓଡ଼ିଆ ସାହିତ୍ୟକୁ ବିପତ୍ତି" ଶୀର୍ଷକ ସଂପାଦକୀୟରେ ସେମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ଲେଖିଲେ- "ଏଇ କେତେ ମାସ ଧରି ଓଡ଼ିଆ ସାହିତ୍ୟକୁ ନାହିଁ ନଥିବା ବିପତ୍ତି ପଡ଼ିଛି । ଆମ ଆଖିଆଗରେ ମହାନ୍ ମହାନ୍ ସାହିତ୍ୟରଥୀମାନେ ମହାନିଦ୍ରାରେ ଶୋଇଯାଉଛନ୍ତି ।" (ଇସ୍ତାହାର - ୪୯-୫୦ ସଂଖ୍ୟା)

ସେହିପରି 'ଜ୍ଞାନପୀଠ' ପୁରସ୍କାର ବିଜେତା କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ପରଲୋକ ପରେ ପରେ କବି ଗୁରୁପ୍ରସାଦଙ୍କ ତିରୋଧାନ ଘଟିଯିବା ପରେ ସଂପାଦକ ଶତପଥୀ ଦୁଃଖାଭିଭୂତ ହୋଇପଡ଼ିଛନ୍ତି । ଗୁରୁପ୍ରସାଦଙ୍କୁ ଆମ ସମୟର କାଳପୁରୁଷ ଭାବେ ସ୍ମରଣ କରି ସେ ଲେଖିଛନ୍ତି- "ତୁମେ ହିଁ ଥିଲ ଆମ ସମୟର ସବୁଠାରୁ ସ୍ପନ୍ଦନଶୀଳ କବି - କାଳଖଣ୍ଡର ମହାନ୍ ମଣିଷ - କାଳପୁରୁଷ । ସମୟକୁ ଓ ତା'ର ଦର୍ଶନକୁ ଚିହ୍ନିଥିଲ । ଅନୁଭବ କରିଥିଲ । ତେଣୁ ପ୍ରେମରେ ଢଳିଯିବା ବା ଢାଳିଦେବାର କଥା କିଛି ନଥିଲା ତୁମ ଚେତନାରେ । ତୁମ ପ୍ରେମିକ ଥିଲା ନିପଟ ଗୋବର ଗଣେଶଟିଏ । ××× ମନରେ ଥିଲା କେବଳ ପତ୍ରଝଡ଼ା ଥୁଣ୍ଟାଗଛର ଅନୁଭବ । ତୁମେ ହିଁ ବୁଝିଥିଲ କିପରି ଏ ସମୟ ଭୟ ଓ ପାପରେ ଅନ୍ତଃସତ୍ତ୍ୱା ହୋଇ ରହିଛି, ତୁମେ ଦେଖୁଥିଲ ସେଇ ଅଭିଶପ୍ତ ମଣିଷର ପାପ ଓ ପ୍ରେତାତ୍ମାକୁ । ଶୁଣୁଥିଲ ସମୟର ପାଦଶବ୍ଦ ଓ ଚୁପ୍‌ଚାପ୍ କଥା ।" (ଇସ୍ତାହାର - ୯୪ତମ ସଂଖ୍ୟା ସଂପାଦକୀୟ - 'ହେ କାଳପୁରୁଷ')

ସକ୍ରେଟିସ୍‌ଙ୍କ ପରି ସତ୍ୟଦ୍ରଷ୍ଟା ଓ ସ୍ପଷ୍ଟବାକ୍ ପ୍ରାବନ୍ଧିକ ଶରତ କୁମାର ମହାନ୍ତିଙ୍କ ଅକାଳ ବିୟୋଗରେ ହତାଶ ହୋଇ ସଂପାଦକ ଶତପଥୀ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇଛନ୍ତି- "ଏତେ ବିଦ୍‌ବତ୍ତା ଓ ପ୍ରଜ୍ଞାକୁ ସମୟ ବୋଧହୁଏ ସହିପାରେନି । ×× ଓଡ଼ିଆ ସାହିତ୍ୟ ଗଗନରୁ ଦୀପ୍ତ ତାରକାଟିଏ ଖସିଗଲା ଓ ଅନେକ ଦିନ ପର୍ଯ୍ୟନ୍ତ ଝୁରି ହେବାକୁ ରଖିଦେଇଗଲା କେବଳ ଦୀର୍ଘଶ୍ୱାସ ।" (ଇସ୍ତାହାର -୧୦୦ତମ ସଂଖ୍ୟା ସଂପାଦକୀୟ)

ପୁଣି, ସମଗ୍ର ଉତ୍ତର ଓଡ଼ିଶାରେ ସାହିତ୍ୟିକ ନେତୃତ୍ୱ ନେଉଥିବା କବି ବ୍ରଜନାଥ ରଥଙ୍କ ବିୟୋଗର ତାଙ୍କ କବି ପ୍ରତିଭାର ସ୍ୱତିଷ୍ଠରଣ କରି ସେ ଲେଖିଲେ - "ତାଙ୍କୁ ମୁଁ ରୋମାଣ୍ଟିକ୍ ମାନବବାଦୀ ଓ କ୍ରାନ୍ତିର କବି ଭାବେ ଚିହ୍ନିତ କରିଛି । ଏଇ କ୍ରାନ୍ତି ଶବ୍ଦ ମଧ୍ୟରେ ତାଙ୍କ ବାମପନ୍ଥୀ ଓ ବିରୋଧୀ ବ୍ୟକ୍ତିତ୍ୱ ଚିହ୍ନିତ ହୋଇପାରିବ । ×× ବ୍ୟକ୍ତିଗତ ଜୀବନର ମାନଚିତ୍ରରୁ ମହାଜୀବନର ପରିବ୍ୟାପ୍ତି ମଧ୍ୟକୁ ଶ୍ରୀ ରଥଙ୍କ କବିତାର ଏଇ ମୁକ୍ତ ଓ ଅବାରିତ ଗତି ତାଙ୍କ ବୟସ ଓ ବିଷୟର ପାଦଚିହ୍ନ ବହନ କରେ । ତାଙ୍କ ଦୃଷ୍ଟିରେ ଏ

ପୃଥିବୀ ଏକ ମହାଜୀବନର ରଙ୍ଗଶାଳା ଯାହା ମଣିଷ ଓ ମଣିଷୋତ୍ତର ଜୀବନର ଭାରସାମ୍ୟକୁ ଧରି ରଖିଛି ।" (ଇସ୍ତାହାର - ୧୩୧-୧୩୨ ସଂଖ୍ୟା ସଂପାଦକୀୟ)

ଶେଷରେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଯଶସ୍ୱୀ ସାହିତ୍ୟିକ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦେହାନ୍ତରେ ତାଙ୍କ ରାଜନୈତିକ ତଥା ସାହିତ୍ୟିକ ବ୍ୟକ୍ତିତ୍ୱର ମହନୀୟତା ଦର୍ଶାଇବା ସହ ତାଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ସେ ଲେଖିଛନ୍ତି "କଂଗ୍ରେସ ରାଜନୀତିରୁ ସଂପୂର୍ଣ୍ଣ ଭାବେ ଦୂରେଇ ଯାଇ ସେ କେବଳ ସୃଷ୍ଟିଶୀଳତା ଭିତରେ ନିମଜ୍ଜିତ ରହିପାରିଥିଲେ ଓଡ଼ିଆ ସାହିତ୍ୟ ଅଧିକ କିଛି ପାଇପାରିଥାଆନ୍ତା । 'ସିନ୍ଧୁ ଉପତ୍ୟକା' ପରି ଆଉ କେତୋଟି କବିତା ପୁସ୍ତକ ଆମେ ପାଇପାରିଥାଆନ୍ତୁ । ଏବେ ସମ୍ଭବତଃ ସେ ଛାଡ଼ିଯାଇଥିବା 'ଶ୍ରୀମଦ୍ ଭାଗବତ', 'ରାମାୟଣ' ଓ 'ମହାଭାରତ'ର ଗଦ୍ୟାନୁବାଦ ଅଧିକରୁ ଅଧିକ ପରିଚୟ ବଳୟକୁ ଆସିବ ଓ ତାହାହିଁ ତାଙ୍କୁ ଯଶସ୍ୱୀ କରି ରଖିବ ।" ('ଏକ ଦିବ୍ୟଜୀବନର ଅବସାନ' - ଇସ୍ତାହାର-୧୩୩-୧୩୪ ସଂପାଦକୀୟ)

'ଇସ୍ତାହାର'- ୧୩୯-୧୪୦ତମ ସଂଖ୍ୟାର ସଂପାଦକୀୟ ପୃଷ୍ଠାରେ ପ୍ରଫେସର ଶତପଥୀ ଅଳ୍ପଦିନ ବ୍ୟବଧାନରେ ପରଲୋକ ଗମନ କରିଥିବା ତିନିଜଣ ପ୍ରଥିତଯଶା ସାହିତ୍ୟିକ - ମହାପାତ୍ର ନୀଳମଣି ସାହୁ, ନରେନ୍ଦ୍ର ନାଥ ମିଶ୍ର ଓ ଦିନନାଥ ପାଠୀଙ୍କ ସୃଷ୍ଟି ପ୍ରତିଭାର ସ୍ମୃତିଚାରଣ କରିଛନ୍ତି ।

ପ୍ରଜ୍ଞାପୁରୁଷ ନୀଳମଣି ସାହୁଙ୍କ ବିସ୍ମୟକର ଗାଳ୍ପିକ ପ୍ରତିଭା ଭାବେ ସ୍ମରଣ କରି ସେ ଲେଖିଛନ୍ତି- "ଓଡ଼ିଆ ଗଳ୍ପଜଗତକୁ ମହାପାତ୍ର ନୀଳମଣିଙ୍କ ଅବଦାନ ଯେତିକି ପ୍ରାଜ୍ଞିକ ସେତିକି ବିସ୍ମୟକର । ଜୀବଦ୍ଦଶାରେ ସେ ୨୧ଟି ଗଳ୍ପ ପୁସ୍ତକ ରଚନା କରିବା କମ୍ ସାଧାତୀତ ବ୍ୟାପାର ନୁହେଁ । ପ୍ରତ୍ୟେକ ଗଳ୍ପ ତା'ର ଆତ୍ମିକ ଓ ଆଂଗିକରେ ଅନ୍ୟ ଗଳ୍ପଟି ଠାରୁ ଭିନ୍ନ । ×× ଅଧିକାଂଶ ଗଳ୍ପରେ ସେ ନିଜେ ହିଁ ନାୟକ ।"

ସେହିପରି ସମାଲୋଚକ ନରେନ୍ଦ୍ରନାଥ ମିଶ୍ରଙ୍କ ଅମର ଆତ୍ମା ପ୍ରତି 'ଇସ୍ତାହାର' ପକ୍ଷରୁ ଶ୍ରଦ୍ଧାଞ୍ଜଳି ଜଣାଇବା ସହ ତାଙ୍କର ଅନବଦ୍ୟ କୃତି - "ଆଧୁନିକ ଓଡ଼ିଆ କାବ୍ୟଧାରା - ଆଦିଯୁଗ ଓ ନବଜାଗରଣଯୁଗ"- ର ଆଲୋଚନା ପ୍ରସଙ୍ଗରେ ସଂପାଦକ ଶତପଥୀ ମତ ଦିଅନ୍ତି- "ତାଙ୍କ ଆଲୋଚନାର ପୃଷ୍ଠଭୂମି ଭାବେ ଊନବିଂଶ ଶତାବ୍ଦୀ ଓଡ଼ିଶାର ସମାଜ ଜୀବନ, ଗ୍ରାମ୍ୟ ଅର୍ଥନୀତି, ନଅଙ୍କ ଦୁର୍ଭିକ୍ଷରେ ଦାରୁଣ ପରିସ୍ଥିତି ଓ ଇଂରେଜ ଶାସନର ଶୋଷଣ ବିଷୟରେ ଅନେକ ପରିଚ୍ଛନ୍ନ ଚିତ୍ର ମିଳେ । ×× ନିଜ ଯୁକ୍ତିକୁ ସାବ୍ୟସ୍ତ କରିବାକୁ ଡକ୍ଟର ମିଶ୍ର ଯେଉଁ ଉଦ୍ଧୃତି ଓ ଉପାଦାନ ପ୍ରଦାନ କରିଛନ୍ତି ତାହା ତାଙ୍କ ସର୍ଜନଶୀଳ ମାନସିକତାର ପୂର୍ଣ୍ଣ ପରିଚୟ ବହନ କରେ ।"

ତା୨୯।୮।୨୦୧୬ରେ ଇହଲୀଳା ସମ୍ବରଣ କରିଥିବା ଯଶସ୍ୱୀ ଚିତ୍ରଶିଳ୍ପୀ ତଥା ଔପନ୍ୟାସିକ ଦିନନାଥ ପାଠୀଙ୍କ ସ୍ମୃତିଚାରଣ କରି ପ୍ରଫେସର ଶତପଥୀ କହନ୍ତି- ଏହି ପ୍ରଖ୍ୟାତ ଚିତ୍ରକର, କଳା ସମୀକ୍ଷକ, ସମାଲୋଚକ ଓ ସୁସାହିତ୍ୟିକ କୌଣସି ପ୍ରାପ୍ତିର

ପ୍ରତ୍ୟାଶା ନରଖି ଇହଜଗତରୁ ବିଦାୟ ନେଇଛନ୍ତି । ଜଣେ ଭିନ୍ନ ଭାବନାର ଶିଳ୍ପୀ ଭାବେ ନିଜ ଅସପନ୍ ପ୍ରତିଷ୍ଠା ଓଡ଼ିଆ ସାହିତ୍ୟରେ ଛାଡ଼ି ଯାଇଥିଲେ ବି ଦିଗ୍‌ଗଜ ବିଚାରକମାନେ ତାଙ୍କୁ ପୁରସ୍କାର ପ୍ରଦାନରେ ଉଦାରତା ଦେଖାଇ ନାହାନ୍ତି ।"

## (୯) ରାଜନୀତି ସଂପର୍କିତ ଅଭିବ୍ୟକ୍ତି :

ପ୍ରଫେସର ନିତ୍ୟାନନ୍ଦ ଶତପଥୀ ବୃତ୍ତିଗତ ଜୀବନରେ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ ହୋଇଥିଲେ ହେଁ, ରାଜନୀତି କ୍ଷେତ୍ରରେ ପ୍ରବେଶ କରିବା ପାଇଁ କିଛିଦିନ ତାଙ୍କର ପ୍ରବୃତ୍ତି ଜାତ ହୋଇଥିଲା । ସେଥିପାଇଁ ସେ ପାରାଦୀପ, କୁଜଙ୍ଗ, ଏରସମା ପ୍ରଭୃତି ଅଂଚଳରେ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । କିନ୍ତୁ ଖ୍ରୀ: ୧୯୮୦ରେ କୋଣାର୍କ ପ୍ରାର୍ଥୀ - ବିଚାର ବୈଠକରେ ଏରସମା କିମ୍ବା ପାରାଦ୍ୱୀପ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେବା ପାଇଁ କଂଗ୍ରେସଦଳ ପକ୍ଷରୁ ତାଙ୍କୁ ଟିକଟ ନ ମିଳିବାରୁ ତାଙ୍କର ରାଜନୀତି କ୍ଷେତ୍ରରେ ପ୍ରବେଶ କରିବାର ମୋହ ଭାଙ୍ଗି ଯାଇଥିଲା । ତାଙ୍କ ଭାଷାରେ- "କିନ୍ତୁ ମୁଁ ଏତେବେଳକୁ ଏତେ ମୋହଭ୍ରଷ୍ଟ ହୋଇ ବସିଥିଲି ଯେ ଆଉ ଏଥିରେ ପ୍ରତାରିତ ନହୋଇ କ୍ଲାସ୍‌ରେ ପାଠ ପଢ଼ାଇବାରେ ମନ ନିବିଷ୍ଟ କଲି ।" ('ଶୈଶବରୁ ଅବସର' - ପୃ-୧୭୮)

ତାଙ୍କର ରାଜନୀତି ସଂପର୍କରେ ଯେଉଁ ଅଭିଜ୍ଞତା ଓ ଦଳୀୟ ରାଜନୀତି ସଂପର୍କରେ ଯେଉଁ ବିତୃଷ୍ଣା ଜାତ ହୋଇଥିଲା ତାହା 'ଇସ୍ତାହାର'ର ବିଭିନ୍ନ ସଂପାଦକୀୟ ପୃଷ୍ଠାରେ ପ୍ରକାଶ ପାଇଛି ।

ଦଳୀୟ ରାଜନୀତିରେ ବାରମ୍ବାର ଅନିଶ୍ଚିତତା ଦେଖାଦେବାର କାରଣ ଦର୍ଶାଇ ସେ କହନ୍ତି, ଯଦି ଦଳର ହାଇକମାଣ୍ଡଙ୍କ ହାତରେ ନିରଙ୍କୁଶ କ୍ଷମତା ରହେ ଓ ବ୍ୟକ୍ତିଗତ କାରଣରୁ ସେ ମୁଖ୍ୟମନ୍ତ୍ରୀମାନଙ୍କୁ ବଦଳାଇ ଦେବାର ଅଧିକାର ସାବ୍ୟସ୍ତ କରନ୍ତି ତେବେ ରାଜ୍ୟର ବିଧାୟକ ମାନଙ୍କର ମଧ୍ୟ ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଆସ୍ଥା ଓ ଆନୁଗତ୍ୟ ରହିବ ନାହିଁ । (ଇସ୍ତାହାର - ୨୩ଶ ସଂଖ୍ୟା ସଂପାଦକୀୟ)

ପୁଣି କୌଣସି ସରକାରଙ୍କ ସ୍ଥାୟିତ୍ୱ ସଂପର୍କରେ ତାଙ୍କର ଯୁକ୍ତି ହେଉଛି, ଶାସନ କ୍ଷମତାରେ ଥିବା ଦଳ ଯଦି ଲୋକହିତକର ଯୋଜନାକୁ କ୍ଷିପ୍ରଗତିରେ ଦୃଢ଼ତାର ସହ କାର୍ଯ୍ୟକାରୀ କରିପାରିବେ ତେବେ ଯାଇ ସେ ସ୍ଥାୟୀ ହେବେ, ନଚେତ୍ ଲୋକ ବିଚଳିତ ଓ ବ୍ୟତିବ୍ୟସ୍ତ ହୋଇ ଦଳୀୟ ନୀତି ଓ ଆଦର୍ଶ ନିର୍ବିଶେଷରେ ଭିନ୍ନ ମତ ପୋଷଣ କରିବେ ଓ ଭୋଟ୍ ବାକ୍ସରେ ବାରମ୍ବାର ପରିବର୍ତ୍ତନ ଘଟିବ । (ଇସ୍ତାହାର - ୯ମ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ସାଂପ୍ରତିକ କାଳର ରାଜନୀତି କ୍ଷେତ୍ରରେ ବ୍ୟକ୍ତିତ୍ୱର ଯେଉଁ ସଂକଟ ଦେଖାଦେଇଛି ସେ ସଂପର୍କରେ ଆଲୋଚନା କରିବାକୁ ଯାଇ 'ଇସ୍ତାହାର' ସଂପାଦକ ପ୍ରାକ୍ ସ୍ୱାଧୀନତା କାଳର ରାଜନୈତିକ ବ୍ୟକ୍ତି ଓ ଏବର ନେତାଙ୍କ ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ଲେଖିଛନ୍ତ- "ପ୍ରାକ୍ ସ୍ୱାଧୀନତା କାଳରେ ଯେଉଁମାନେ ରାଜନୀତି କ୍ଷେତ୍ରକୁ ଆସୁଥିଲେ ସେମାନଙ୍କୁ

Intellectual Giant କୁହାଯାଉଥିଲା । ଲେଖା ଓ ଚିନ୍ତାଧାରାରେ ସେମାନେ ଯେଉଁ ଦାର୍ଶନିକ ଅଭିବ୍ୟକ୍ତି ପ୍ରକାଶ କରୁଥିଲେ ତାହା ପ୍ରଭାବ-ଜ୍ଞାପକ ଥିଲା । କାରାଗାରକୁ ସେମାନେ ଅଧ୍ୟୟନ କକ୍ଷରେ ପରିଣତ କରିଥିଲେ । କିନ୍ତୁ ଏବେ ରାଜନୈତିକ ନେତାମାନଙ୍କ ମଧ୍ୟରେ ସେଭଳି କୌଣସି ଚିନ୍ତା ବା ଆଦର୍ଶ ପ୍ରକାଶ ପାଉନାହିଁ । ବରଂ ସାମାନ୍ୟ କିଛି ଅର୍ଥ ବା ପଦ ପଦବୀର ମୋହରେ ସେମାନେ ଜାତୀୟ ଜୀବନରେ କଳଙ୍କର ଟୀକା ପିନ୍ଧାଇଛନ୍ତି । - ଏହା ଅତି ପରିତାପର ବିଷୟ ।" (ଇସ୍ତାହାର - ୨୮ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ 'ଓଡ଼ିଆ ଭାଷାର ସାଂପ୍ରତିକ ସ୍ଥିତି ଓ ଭାଷିକ ସମନ୍ୱୟ' ଶୀର୍ଷକ ପାଠଚକ୍ରରେ କୋଶଳୀ ଭାଷାଭାଷୀଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ସଂପର୍କରେ ଯେଉଁ ପ୍ରସ୍ତାବ କେତେଜଣ ପ୍ରାବନ୍ଧିକଙ୍କ ଦ୍ୱାରା ଉପସ୍ଥାପିତ ହୋଇଥିଲା ତାହାର ଘୋର ବିରୋଧ କରି ସଂପାଦକ ଶତପଥୀ ଲେଖିଲେ- "ବିଶ୍ୱବିଦ୍ୟାଳୟ ଓ ବିଭିନ୍ନ କଲେଜରେ ଓଡ଼ିଆ ସାହିତ୍ୟ ଅଧ୍ୟାପନା କରୁଥିବା ଅଧ୍ୟାପକମାନେ ରାଜନୈତିକ ନେତାମାନଙ୍କ ସଂକୀର୍ଣ୍ଣ ଉଦ୍ଦେଶ୍ୟର ଶିକାର ନହୋଇ କଥାଟିକୁ ଇତିହାସ ଓ ଭବିଷ୍ୟତ ଦୃଷ୍ଟିରୁ ବିଚାର କରିବା କଥା । ××× ଗୋଟିଏ ଅଞ୍ଚଳର ମାତୃଭାଷାକୁ ନେଇ ରାଜ୍ୟ ବା ଦେଶ ପାଇଁ ଦାବୀ କରି ସମସ୍ୟା ସୃଷ୍ଟି କରିବାରୁ ଚିନ୍ତାଶୀଳ ଲେଖକମାନେ ନିବୃତ୍ତ ହେବା ଉଚିତ । ରାଜନେତାମାନେ ସବୁ ଭାଂଗିଦେବାକୁ ଲାଗିଥିବାବେଳେ ସାହିତ୍ୟିକମାନେ ସବୁ ଯୋଡ଼ିବାକୁ ପ୍ରୟାସ ନ ରଖିଲେ ଆମର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହୋଇଯିବ ନାହିଁକି ?" (ଇସ୍ତାହାର - ୭୯ତମ ସଂଖ୍ୟା ସଂପାଦକୀୟ)

ଭାରତ ସ୍ୱାଧୀନତାର ୫୦ତମ ବର୍ଷ ପୂର୍ତ୍ତି ବା ସୁବର୍ଣ୍ଣ ଜୟନ୍ତୀ ଅବସରରେ ସଂପାଦକଙ୍କ ମନରେ ଆମ ଗଣତନ୍ତ୍ରର ବ୍ୟବସ୍ଥାକୁ ଲକ୍ଷ୍ୟ କରି ଯେଉଁ ଅନୁଶୋଚନା ଜାତ ହୋଇଛି ତାହା ସେ ନିମ୍ନୋକ୍ତ ଭାବେ ପ୍ରକାଶ କରିଛନ୍ତି- "ଗଣତନ୍ତ୍ର ଆଉ କେତଦିନ ସୁନାହରିଣର ସ୍ୱପ୍ନ ଦେଖାଇ ତ୍ରସ୍ତ ହରିଣୀ ମାନଙ୍କୁ ଚହଲ ବିକଳ କରୁଥିବ ? ଏଥିରୁ ମୁକ୍ତି ପାଇଁ ନୂଆ ଏକ ସ୍ୱାଧୀନତା ସଂଗ୍ରାମର ସମୟ ଆସୁଛି । ଭାରତରେ ଆରମ୍ଭ ହୋଇଥିବା ଲୁଣ୍ଠନ ପର୍ବର ଶେଷ ନ ହେବା ପର୍ଯ୍ୟନ୍ତ ଏ ସଂଗ୍ରାମ ଅବ୍ୟାହତ ରହିବ ।" (ଇସ୍ତାହାର - ୭୦ତମ ସଂଖ୍ୟା ସଂପାଦକୀୟ)

ମିଶନାରୀ ଗ୍ରାହମ୍ ଷ୍ଟେନ୍‌ଙ୍କ ହତ୍ୟା ଜନିତ ଏକ କଳଙ୍କିତ ଘଟଣାକୁ ଭିତ୍ତିକରି ସଂପାଦକ ଶତପଥୀ କହନ୍ତି, ଆମ ରାଜନୀତିକ ନେତାମାନେ ସଂଖ୍ୟାଲଘୁଙ୍କ ଭୋଟ୍‌କୁ ଆୟତ୍ତ କରିବା ପାଇଁ ପ୍ରତ୍ୟେକ ଘଟଣା ଉପରେ ସାଂପ୍ରଦାୟିକତାର ଆରୋପ କରିବା ଏକ ଜଘନ୍ୟ ଅପରାଧ । ତାଙ୍କ ଭାଷାରେ- "ସାଂପ୍ରଦାୟିକତା ଏ ଦେଶ ପାଇଁ ପେଡ଼ିରେ ସୁପ୍ତ ଏକ ସାପ ପରି । ଏ ସାପ ତା' କୁଣ୍ଡଳିନୀ ଶଯ୍ୟାରୁ ଥରେ ଜାଗ୍ରତ ହେଲେ ଯାହାକୁ ପାରିବ ତାକୁ ଚ୍ଛେଟ ମାରିବ । (ଇସ୍ତାହାର - ୭୫-୭୬ ସଂଖ୍ୟା ସଂପାଦକୀୟ)

ବାଲାଂଦେଶର ବିଖ୍ୟାତ ଲେଖିକା ତସଲିମା ନସରିନ୍ ତାଙ୍କ ଦେଶରେ ମୌଳବାଦୀଙ୍କ ଦ୍ୱାରା ନିର୍ଯ୍ୟାତିତ ହେବାପରେ ଭାରତରେ ସ୍ଥାୟୀ ନାଗରିକ ଅଧିକାର ପାଇ ପାରୁନଥିବା ଘଟଣାଟି ମାନବବାଦୀ ସଂପାଦକ ପ୍ରଫେସର ଶତପଥୀଙ୍କ ମନରେ ଯେଉଁ କ୍ଷୋଭ ସୃଷ୍ଟି କରିଛି, ତାହା ସେ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରେ ପ୍ରକାଶ କରିଛନ୍ତି- "ଏହି ଲେଖିକାଙ୍କ ପ୍ରତି ସେ ଦେଶରେ ଯେଉଁ ଅତ୍ୟାଚାର ହୋଇଛି ତାହା ମାନବିକତାର ହତ୍ୟା ଛଡ଼ା ଅନ୍ୟ କିଛି ନୁହେଁ । ଏ ଦେଶର ଲେଖକମାନେ କେବେ ଆଉ ତସଲିମାଙ୍କ ପାଇଁ ଭାରତ ସରକାରଙ୍କ ପାଖରେ ଦାବି ଉପସ୍ଥାପନ କରିବେ ? ଭାରତୀୟ ନାଗରିକତ୍ୱ ପ୍ରାପ୍ତି ମାନବିକତା ଦୃଷ୍ଟିରୁ ତାଙ୍କର ହକ୍ ଓ ତାହା ଯେତେ ଚଞ୍ଚଳ ସେ ପାଇବେ ତାହା 'ଅତୁଲ୍ୟ ଭାରତ' ପାଇଁ ସେତେ ଗୌରବର କଥା ହୋଇ ରହିବ ।" (ଇସ୍ତାହାର - ୧୦୩ ତମ ସଂଖ୍ୟା ସଂପାଦକୀୟ)

## (ଝ) ଶିକ୍ଷାନୀତି ଭିତ୍ତିକ ଅଭିବ୍ୟକ୍ତି :

ଓଡ଼ିଶାରେ ଜଣେ ଅଭିଜ୍ଞ ଓ ପ୍ରବୀଣ ଶିକ୍ଷାବିଦ୍ ଭାବରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କର ଖୁବ୍ ପ୍ରତିଷ୍ଠା ରହିଛି । ତେଣୁ ଶିକ୍ଷାର ବିକାଶ କ୍ଷେତ୍ରରେ କିଛି ତ୍ରୁଟି ବିଚ୍ୟୁତି ଲକ୍ଷ୍ୟ କଲେ କିମ୍ବା ଶିକ୍ଷକମାନଙ୍କ ପ୍ରତି କିଛି ଅନ୍ୟାୟ ହେବାର ଦେଖିଲେ କିମ୍ବା ଶିକ୍ଷାୟତନ ଗୁଡ଼ିକର ପରିଚାଳନା କ୍ଷେତ୍ରରେ ଦକ୍ଷତାର ଅଭାବ ରହିଲେ ସେ ଖୋଲାଖୋଲି ରୂପେ ସେହି ବିଷୟକୁ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାରେ ଉପସ୍ଥାପନ କରି ତାହାର ସମାଧାନ ପାଇଁ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି ।

ଶିକ୍ଷା ବିଭାଗର ଓଡ଼ିଆ ପୁସ୍ତକ କ୍ରୟ ବ୍ୟବସ୍ଥା ସଂପର୍କରେ ମନ୍ତବ୍ୟ ଦେଇ ସେ କହନ୍ତି, ଓଡ଼ିଶାର ସ୍କୁଲ୍ କଲେଜ ପାଇଁ ଶିକ୍ଷା ବିଭାଗର ପୁସ୍ତକ କ୍ରୟ ସଂସ୍ଥା ଓ ରାଜା ରାମମୋହନ ଲାଇବ୍ରେରୀ ଫାଉଣ୍ଡେସନ୍ ଟ୍ରଷ୍ଟ୍ ସାହାଯ୍ୟକ୍ରମେ ଗ୍ରାମମାନଙ୍କ ପାଇଁ ପୁସ୍ତକ କ୍ରୟ ନିମନ୍ତେ ଦୁଇଟି କମିଟି ରହିଛି । ଏହି କ୍ରୟ ସଂସ୍ଥା (Purchase Commitee) ଏକ ସୁସ୍ପଷ୍ଟ ଓ ସୁଚିନ୍ତିତ ନୀତି ପ୍ରଣୟନ କରି କେଉଁ ପୁସ୍ତକ କିଣାଯିବା ଉଚିତ ହେବ ଓ ତା'ଦ୍ୱାରା ଓଡ଼ିଆ ସାହିତ୍ୟ ବିକାଶରେ ଅନ୍ତରାୟ ସୃଷ୍ଟି ହେବନାହିଁ ତାହା ବିଚାର କରିବା ଉଚିତ । ('ଇସ୍ତାହାର' - ୨୬ଶ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ସେହିପରି ଓଡ଼ିଶାର ଅଭିଭାବକମାନେ ନିଜ ନିଜ ପିଲାମାନଙ୍କୁ ପ୍ରଥମରୁ ଇଂରାଜୀ ମାଧ୍ୟମ ସ୍କୁଲ୍‌ରେ ପଢ଼ାଇବା ଦ୍ୱାରା ଓଡ଼ିଆ ଭାଷା ଉପରକୁ କିପରି ବିପତ୍ତି ମାଡ଼ି ଆସୁଛି ତା'ର ଆଲୋଚନା କରି ସଂପାଦକ ଶତପଥୀ କହନ୍ତି; ଏହାଦ୍ୱାରା ନିଜ ମାତୃଭାଷା ପ୍ରତି ଛାତ୍ରଛାତ୍ରୀଙ୍କ ଆବେଗ ଓ ଆସ୍ପୃହା କମି କମି ଯାଉଛି । ଏମାନେ କଲେଜକୁ ଯାଇ ଆଧୁନିକ ଭାରତୀୟ ଭାଷା (M.I.L) ଭାବେ ଓଡ଼ିଆ ନ ନେଇ ଇଂରାଜୀ (Alternative English) ପଢ଼ିବାକୁ ବାଧ୍ୟ ହେଉଛନ୍ତି । ତାଙ୍କ ଯୁକ୍ତିରେ, ଯେଉଁ ପିଲା ପ୍ରଥମରୁ ମାତୃଭାଷା

ଶିକ୍ଷାରେ ଦୁର୍ବଳ ସେ-ଯେ କୌଣସି ଅନ୍ୟ ଭାଷାରେ ଦୁର୍ବଳ ରହିବ ହିଁ ରହିବ । ('ଇସ୍ତାହାର' - ୭୭-୭୮ ତମ ସଂଖ୍ୟା ସଂପାଦକୀୟ ଦ୍ରଷ୍ଟବ୍ୟ)

ପୁଣି ମଣ୍ଡଳ କମିଶନ ସୁପାରିଶକୁ ଭିତ୍ତିକରି ୫୦ ଭାଗ ସରକାରୀ ବୃତ୍ତି, ମେଧା ଭିତ୍ତିରେ ପୂରଣ ନ ହୋଇ ଜାତି ଭିତ୍ତିରେ ପୂରଣ ହେବ ବୋଲି ସରାକାରୀ ସ୍ତରରେ ଯେଉଁ ନିଷ୍ପତ୍ତି ନିଆଗଲା ଏବଂ ତା'ର ପ୍ରତିକ୍ରିୟାରେ ଯୁବଗୋଷ୍ଠୀ ଯେପରି ଶହେକୋଟି ଟଙ୍କାର ଜାତୀୟ ସଂପତ୍ତି ପୋଡ଼ି ନଷ୍ଟ କରିଦେଲେ ସେଥିରେ ବ୍ୟଥିତ ହୋଇ ପ୍ରଫେସର ଶତପଥୀ 'ମେଧାମେଧ ଯଜ୍ଞ' ଶୀର୍ଷକ ସଂପାଦକୀୟରେ ଲେଖିଲେ- "ଜାତି କଥାଟାକୁ ବାରମ୍ବାର ବିଭିନ୍ନ ଫୋରମ୍‌ରେ ଏତେ ଗୁରୁତ୍ୱ ଦିଆଯାଉଛି ଯେ, ସମ୍ବିଧାନର ମୌଳିକ ଅଧିକାର ଉପରେ ଓ ଦେଶର ଭବିଷ୍ୟତ ଉପରେ ସନ୍ଦେହର ପ୍ରଶ୍ନ ଉଠିଲାଣି ।" (ଇସ୍ତାହାର - ୫୪ତମ ସଂଖ୍ୟା) ତାଙ୍କ ଯୁକ୍ତିରେ, ଏକ ପକ୍ଷରେ ସ୍ଥାନ ସଂରକ୍ଷଣ ଓ ଅପର ପକ୍ଷରେ ମେଧା ଅପସାରଣ ସମ୍ବିଧାନ ଦୃଷ୍ଟିରୁ କେଉଁଟି ଦେଶ ପାଇଁ ଗ୍ରହଣୀୟ ଓ ଗ୍ରହଣୀୟ ହେଲେ ତାହାର ପରିସର କେତେ ସଂପର୍କରେ ଉଚ୍ଚତମ ନ୍ୟାୟାଳୟ ମତ ସାବ୍ୟସ୍ତ କରିବା ଉଚିତ୍ ।

ପ୍ରଫେସର ଶତପଥୀ ଜଣେ ସ୍ପଷ୍ଟବାଦୀ ସମୀକ୍ଷକ ଓ ସଂପାଦକ । ତେଣୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଥିବା ସମୟରେ ଏହାର ଶିକ୍ଷାବ୍ୟବସ୍ଥା, ପ୍ରଶାସନ ଦକ୍ଷତା ଓ ଗବେଷଣା କାର୍ଯ୍ୟରେ କ୍ରମଅଧୋଗତି ଲକ୍ଷ୍ୟ କରି ଏଥିପାଇଁ ଖୋଲାଖୋଲି ଭାବେ କୁଳପତିଙ୍କୁ ଦାୟୀ କରି 'ଇସ୍ତାହାର'ର 'ସଂପାଦକୀୟ'ରେ କହିଛନ୍ତି- "ମୋଟ୍ ଉପରେ କୁଳପତି ହିଁ ବିଶ୍ୱବିଦ୍ୟାଳୟରେ ଘଟୁଥିବା ସମସ୍ତ ପ୍ରଶାସନିକ ତ୍ରୁଟି ପାଇଁ ନୈତିକ ଭାବରେ ଦାୟୀ ।" (ଇସ୍ତାହାର - ୫୫-୫୬ ସଂଖ୍ୟା)

ସେ ପୁଣି ପୁନା ବିଶ୍ୱବିଦ୍ୟାଳୟରେ କିଛିଦିନ ଅବସ୍ଥାନ କରିବା ସମୟରେ ସେଠାର ଶୃଙ୍ଖଳା-ବଦ୍ଧ କାର୍ଯ୍ୟଧାରା ଦେଖି ମୁଗ୍ଧ ହୋଇଛନ୍ତି । ଏବଂ ନିଜ ପ୍ରତ୍ୟକ୍ଷ ଅନୁଭୂତିରୁ ଲେଖିଛନ୍ତି- "ନିର୍ଦ୍ଧାରିତ ସମୟରେ ସବୁ ଠିକ୍ ଠିକ୍ ହେଉଛି, କେହି କାହାକୁ ଅପେକ୍ଷା କରୁନାହାନ୍ତି । ସମସ୍ତେ କାର୍ଯ୍ୟରତ । ରାସ୍ତା, ଅଗଣା, ବାରଣ୍ଡା, ଡାଇନିଂ ହଲ୍, ରିଡ଼ିଙ୍ଗ୍ ରୁମ୍, ସଭାଗୃହ, କେଉଁଠି କାଗଜ ଟୁକୁରା ବା କଣ ଜାଗାରେ ପାନ ପିକ ପଡ଼ିବାର ଦୃଶ୍ୟ ଆଖିରେ ପଡ଼ିବ ନାହିଁ । ତୁଳନାତ୍ମକ ଭାବେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପରିସରକୁ ଲକ୍ଷ୍ୟ କରି କହନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ଏପରି କୌଣସି କଥା ନାହିଁ ଯେଉଁଠି କଣ ଜାଗାମାନଙ୍କରେ ପାନପିକ ଓ ବୋଳର ପ୍ରସ୍ତ ପ୍ରସ୍ତ ଆସ୍ତରଣ ଜମି କୁତ୍ସିତ ଦୃଶ୍ୟ ସୃଷ୍ଟି କରୁନାହିଁ । (ଇସ୍ତାହାର - ୬୫ତମ ସଂଖ୍ୟା - ସଂପାଦକୀୟ ଦ୍ରଷ୍ଟବ୍ୟ)

ଶେଷରେ ଏତିକି କୁହାଯାଇପାରେ ଯେ, ଏହି ଅଭିନ୍ନ ଶିକ୍ଷାବିଦ୍‌ଙ୍କ ରଚିତ 'ଇସ୍ତାହାର'ର ସଂପାଦକୀୟ ପୃଷ୍ଠାଗୁଡ଼ିକୁ ବିଷୟାନୁକ୍ରମେ ସଂକଳିତ କରାଯାଇ ପାରିଲେ ପାଠକମାନେ ବହୁଭାବେ ଉପକୃତ ହୋଇପାରିବେ ।

■ *୪୩୬, ଶହୀଦ୍ ନଗର, ଭୁବନେଶ୍ୱର*

# 'ସବୁଜରୁ ସାଂପ୍ରତିକ' ଏକ ସମାଲୋଚ଼କୀୟ ବିମର୍ଶ

♦ ଡକ୍ଟର ବେଣୁଧର ପାଢ଼ୀ

ସମାଲୋଚନାର ସମୃଦ୍ଧ ଧାରାଟିଏ ଥିଲା ଓଡ଼ିଆ ସାହିତ୍ୟର ଇତିହାସରେ । ତେବେ ସମାଲୋଚନାର ପରଂପରାଟି ଥିଲା ସ୍ଥୂଳ ଓ ସମୀକ୍ଷାମୂଳକ । ପ୍ରାଚୀନ ସାହିତ୍ୟକୁ ଆଧାର କରି ଓଡ଼ିଆ ସମାଲୋଚନାର କ୍ଷେତ୍ରଟି ବସ୍ତୁତଃ ଥିଲା ସୀମାବଦ୍ଧ ! ରାଧାନାଥ ଯୁଗରୁ ଆରମ୍ଭ କରି ସ୍ୱାଧୀନତାର ପରବର୍ତ୍ତୀ କାଳ ଯାଏ ଏହି ବିଶେଷ ରୀତିଟି ଥିଲା ଅବ୍ୟାହତ । ଓଡ଼ିଆ ସମାଲୋଚନାର ପାରଂପରିକତାକୁ ଅତିକ୍ରମ କରି, ଆଧୁନିକ ସାହିତ୍ୟର ଦୃଷ୍ଟିଭଂଗୀରେ ଆଣିଲେ ପରିବର୍ତ୍ତନ, ପ୍ରଥମ କରି ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ସମାଲୋଚନା ସାହିତ୍ୟକୁ ଶୁଦ୍ଧ ଓ ପ୍ରତିଷ୍ଠା ପରିପାଟିଟିଏ ପ୍ରଦାନ ପୂର୍ବକ ସମାଲୋଚ଼କ ଶ୍ରୀଯୁକ୍ତ ଶତପଥୀ ପ୍ରଶସ୍ତ କଲେ ଯେଉଁ ଅଭିନବ ସମାଲୋଚନାର ଭିତ୍ତିଭୂମି, ତାହାହିଁ ସ୍ୱାଧୀନତା ପରବର୍ତ୍ତୀ ସମାଲୋଚନାର ପରିଧିକୁ ଏକ ପରିବ୍ୟାପ୍ତ ପୃଷ୍ଠଭୂମି ପ୍ରଦାନ କଲା । ସ୍ୱାଧୀନତା ପରବର୍ତ୍ତୀ କବିତାକୁ ପ୍ରାଥମିକତା ପ୍ରଦାନ ପୂର୍ବକ ସେ ଆରମ୍ଭ କଲେ ଯେଉଁ ସାରସ୍ୱତ ଅନୁଶୀଳନର ମାର୍ଗ, ତାହା ସମାଲୋଚନା ପରଂପରାରେ ଉନ୍ମୋଚିତ କରିଦେଲା ଏକ ଅନୁପମ ଦିଗନ୍ତ ।

ସମାଲୋଚନାର ଯେଉଁ ବିଶିଷ୍ଟ ଶିଳ୍ପରୂପଟିଏ ନିର୍ମାଣ କରିଦେଲେ ପ୍ରଫେସର ଶତପଥୀ, ତାହା ଆଧୁନିକ ସାରସ୍ୱତ ଇତିହାସରେ ଯେ ଏକ ଆଦର୍ଶ (model) ପାଲଟିଗଲା ସେ କଥା ନୁହେଁ; ଅଧିକନ୍ତୁ ଏକ ଅଭିନବ ସାରସ୍ୱତ ଅଧ୍ୟୟନର କ୍ଷେତ୍ର ପ୍ରସ୍ତୁତି ଦିଗରେ ବହନ କଲା ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା । ଆଦର୍ଶ ଆଲୋଚନାର ଏକ ପାରଦର୍ଶୀ ପ୍ରତ୍ୟୟ ରୂପେ ଆତ୍ମପ୍ରକାଶ କଲା ତାଙ୍କର ଅନନ୍ୟ ଆୟାସପ୍ରସୂତ ଯେଉଁ ଅବିକଳ୍ପ ସୃଷ୍ଟି ତାହା ଓଡ଼ିଆ ସାହିତ୍ୟର ଅଧ୍ୟାପକ ଓ ଛାତ୍ର-ଛାତ୍ରୀଙ୍କ ନିକଟରେ ପାଲଟିଗଲା ଆଧୁନିକ ସମାଲୋଚନାର ସର୍ବୋତ୍ତମ ସମ୍ବଳ । ଆଜିବି ଆଧୁନିକ କାବ୍ୟପରଂପରାର ଆଲୋଚନା କାଳରେ ଲୋଡ଼ା ପଡ଼େ ପ୍ରଥମ ପ୍ରତିଶ୍ରୁତିର ବ୍ୟୁତ୍ପନ୍ନ ଦର୍ଶିକା (reference) ରୂପେ ଯେଉଁ ଉତ୍କର୍ଷ ଆଲେଖ୍ୟର ସଂକଳନ ତାହା ହେଉଛି 'ସବୁଜରୁ ସାଂପ୍ରତିକ' । ସମାଲୋଚନା ଜଗତର ଏକ ମାଇଲଖୁଣ୍ଟ ପ୍ରତିଷ୍ଠା ଦିଗରେ ଏହାର ଯେ ରହିଛି ଏକ ଉଲ୍ଲେଖନୀୟ ଐତିହାସିକ ଭୂମିକା, ଏହା ନିଃସନ୍ଦେହରେ କୁହାଯାଇପାରେ ।

ଆଧୁନିକ କାବ୍ୟ ସମାଲୋଚନାର 'ମୁଖଶାଳା' ରୂପେ 'ସବୁଜରୁ ସାଂପ୍ରତିକ' ଗଢ଼ି ତୋଳିଛି ଯେଉଁ ଅନୁଶୀଳନାତ୍ମକ ପ୍ରତ୍ୟୟ, ତାହା ପଟାନ୍ତରହୀନ । ସମାଲୋଚନା କହିଲେ

କେବଳ ମାତ୍ର 'ପାଠ୍ୟ' ନିଷ୍କର୍ଷ ନୁହେଁ କିମ୍ବା ବିଷୟଗତ ସମୀକ୍ଷା ନୁହେଁ । ସମାଲୋଚନା ମଧ୍ୟ ପ୍ରସଂଗତଃ ଅନୁଶୀଳନର ଏକ ଲେଖକୀୟ ଅଭିମତ ନୁହେଁ । ଅଧିକନ୍ତୁ ସମାଲୋଚନା ହେଉଛି ଏକ ଆବିଷ୍କାର, ଯାହା ମୌଳିକ ସୃଷ୍ଟିର ଅନ୍ତର୍ନିହିତ ଆବେଦନକୁ କରିଥାଏ ଉନ୍ମୋଚିତ। ସୃଜନ କ୍ରିୟାର ଏହା ହେଉଛି ଏକ କଳାତ୍ମକ ଆକଳନ । ଆଲୋଚ୍ୟ ସୃଷ୍ଟିର ଅବଦାନ ଓ ପ୍ରାସଂଗିକତାର ଯଥାର୍ଥତା ପ୍ରତିପାଦନ ସହିତ, ସମାଲୋଚନା ହିଁ ଉପସ୍ଥାପିତ କରିଥାଏ ଲେଖକୀୟ ବିଶେଷତ୍ୱ; ଯାହା ସ୍ରଷ୍ଟାର ପ୍ରତିଭା ଓ ପରିଚିତିକୁ କରିଥାଏ ପରିବ୍ୟାପ୍ତ । ସମାଲୋଚନା ପୁଣି ହେଉଛି ଏମିତି ଏକ ସାରସ୍ୱତ ପ୍ରକ୍ରିୟା, ଯାହା ନିଗୂଢ଼ ଭାବବସ୍ତୁକୁ ପ୍ରଦାନ କରିଥାଏ ଏକ ଅର୍ଥପୂର୍ଣ୍ଣ ପୁରୋଦୃଷ୍ଟି । ପ୍ରତିଭାକୁ ପ୍ରଖ୍ୟାପିତ କରିବାର ଏକ ଶକ୍ତିଶାଳୀ ସୃଜନର ଆଧାର ହେଉଛି ସମାଲୋଚନା । ଏହାର ମୌଳିକ ଆଭିମୁଖ୍ୟ ହେଉଛି ସାରସ୍ୱତ ଇତିହାସର ପରଂପରାକୁ ସୁବିନ୍ୟସ୍ତ ପ୍ରତିରୂପଟିଏ ପ୍ରଦାନ କରିବା । ସାହିତ୍ୟର ଅନ୍ତରାଳରେ ଆତ୍ମଗୋପନ କରିଥିବା ଇତିହାସ ସମେତ ସମସାମୟିକ ଜୀବନବୋଧର ବାସ୍ତବତା ନିରୂପଣ କରିବା । ସାରସ୍ୱତ ଜଗତରେ ତେଣୁ ସମାଲୋଚକର ଭୂମିକା ହେଉଛି ଅତି ମହତ୍ତ୍ୱପୂର୍ଣ୍ଣ । ଜଣେ ଦାୟିତ୍ୱସଂପନ୍ନ ଚିକିତ୍ସକ ସଦୃଶ ବସ୍ତୁତଃ ସମାଲୋଚକ ହିଁ ତା'ର ଅନବଦ୍ୟ ଶୁଶ୍ରୂଷାରେ, ସାହିତ୍ୟର ଇତିହାସକୁ ପ୍ରଦାନ କରିଥାଏ ଏକ ନିରାମୟତାର ପ୍ରତିଶ୍ରୁତି ।

ସମାଲୋଚନାର ଏତାଦୃଶ ଭୂମିରେ ବିଦ୍ୟମାନ ଶ୍ରୀଯୁକ୍ତ ଶତପଥୀ ହିଁ ସମାଲୋଚନାର ପରିଭାଷାରେ ଆଣିଲେ ଅଭୂତପୂର୍ବ ପରିବର୍ତ୍ତନ । 'ସବୁଜରୁ ସାଂପ୍ରତିକ' ପରେ ହିଁ ବଦଳିଗଲା ପ୍ରଚଳିତ ସମାଲୋଚକୀୟ ଦୃଷ୍ଟିଭଂଗୀ । ଆଧୁନିକ କବିତାର ଦିଗନ୍ତକୁ ସେ ପ୍ରଦାନ କଲେ ଏକ ଅଭିନବ ପରିପାଟୀ । ସମାଲୋଚନାର ଧାରା ପରିବର୍ତ୍ତନ କ୍ଷେତ୍ରରେ 'ସବୁଜରୁ ସାଂପ୍ରତିକ' ହେଉଛି ତେଣୁ ଏକ ଅଭିନବ ସାରସ୍ୱତ ପ୍ରୟାସ । ବିଭିନ୍ନ ଦିଗ ଓ ଦୃଷ୍ଟିକୋଣରୁ ବସ୍ତୁତଃ 'ସବୁଜରୁ ସାଂପ୍ରତିକ' ହେଉଛି ସ୍ୱତନ୍ତ୍ର ଏକ ବୈଶିଷ୍ଟ୍ୟ । ପ୍ରଫେସର ଶତପଥୀଙ୍କ ଅଭିନବ ସମାଲୋଚକୀୟ ଶିଳ୍ପ ରୂପର ଏକ ପରିପୂର୍ଣ୍ଣ ଓ ଅନନ୍ୟ ପରିପ୍ରକାଶ ରୂପେ ଏହା ବହନ କରେ ଯେଉଁ ମୌଳିକତାର ଆବେଦନ; ତାହାହିଁ ଏହି ଆଲୋଚନାର ପ୍ରମୁଖ ପ୍ରସଂଗ ହୋଇପାରେ ସତ - ମାତ୍ର ସେହି ବିଶାଳ ପ୍ରତିଭାର ଆକଳନ ଦିଗରେ କେବେବି ମୋର ଏ ସାମର୍ଥ୍ୟ ଯଥେଷ୍ଟ ହେବ ନାହିଁ; ସେ କଥା ମୁଁ ଜାଣେ ।

## (କ) ବ୍ୟଞ୍ଜନାତ୍ମକ ଗଦ୍ୟରୂପ :

ସମାଲୋଚନା ଧାରାରେ 'ସବୁଜରୁ ସାଂପ୍ରତିକ' ସଂଯୋଜିତ କରିଛି ଯେଉଁ ସ୍ୱତନ୍ତ୍ର ଗଦ୍ୟଶିଳ୍ପର ଅଭିନବତା, ତାହାର ଗୋଟିଏ ରୂପ ହେଉଛି ଭାଷିକ ବ୍ୟଞ୍ଜନାର ଶାଣିତ, ଉପସ୍ଥାପନ କୌଶଳ । ନିରସ ଗଦ୍ୟ ରୀତିର ସମତଳ (Flat) ଉପସ୍ଥାପନା ପଦ୍ଧତିକୁ ପରିହାରପୂର୍ବକ ନିର୍ମାଣ କଲେ ଶ୍ରୀଯୁକ୍ତ ଶତପଥୀ ଅନୁପମ ଶିଳ୍ପକଳାର ଏକ ଭିନ୍ନ ଗଦ୍ୟରୀତି,

ଯାହାର ମୁଖ୍ୟ ଦିଗଟି ଥିଲା ବ୍ୟଞ୍ଜନା । କାବ୍ୟିକ ବ୍ୟଞ୍ଜନାର ଆରୋପିତ କୁଶଳତା ତାଙ୍କ ଗଦ୍ୟଭୂମିକୁ ପ୍ରଦାନ କଲା ଯେଉଁ ଅପରୂପ ସୌଷ୍ଠବ, ସେଥିରେ ନିହିତ ଥିଲା ଶାଣିତ ଭାବାବେଗର ଉଚ୍ଛ୍ୱାସ । ଭାଷାକୁ ପ୍ରଦାନ କରେ ଏହା ଅଲୌକିକ ଉଦ୍ଦୀପନା ଓ ବ୍ୟଞ୍ଜନାର ନିବିଡ଼ତମ ଆବେଦନ ଗଦ୍ୟରୀତିରେ ସୃଷ୍ଟିକରେ ଆବେଗିକ ମନ୍ମୟତା । ଏଥିରେ ଥାଏ ପୁଣି ଶ୍ଳେଷ ଆଉ ମଧୁର ଆକ୍ଷେପ, ଯାହା ପ୍ରତିପକ୍ଷକୁ କ୍ଷତାକ୍ତ କରେନା । କିନ୍ତୁ ଦୁର୍ବଳତାକୁ ପ୍ରମାଣିତ କରିଦିଏ । ଥାଏ ପୁଣି ଯୁଗଚେତନାକୁ ନେଇ ଉଦାତ୍ତ ଆହ୍ୱାନ ଏଥିରେ । ଅଧିକନ୍ତୁ ନିଜସ୍ୱ ଯୁକ୍ତିକୁ ପ୍ରତିଷ୍ଠିତ କରିବାର ଔଦାର୍ଯ୍ୟ ପ୍ରତିପାଦିତ ହୋଇଥାଏ । ପ୍ରଗତିବାଦୀ ଯୁଗର ବୈଶିଷ୍ଟ୍ୟ ଆଲୋଚନା ପ୍ରସଂଗରେ ଗୋଟିଏ ଉଦାହରଣ ଏଠାରେ ଉଲ୍ଲେଖ କରାଯାଇପାରେ:- "'ନବଯୁଗ ସାହିତ୍ୟ ସଂସଦ'ର ପ୍ରତିଷ୍ଠା ବସ୍ତୁତଃ ସବୁଜର ମଣିମୟ ମିନାର 'ସବୁଜ ସାହିତ୍ୟ ସଂସଦ' ପ୍ରତି ଏକ ସର୍ତ୍ତହୀନ ଯୁଦ୍ଧଘୋଷଣା ।"××× "ଯୁଗବୀଣା ଯେଉଁ ଯୁଗର ଧ୍ୱନିକୁ ତା'ର ତନ୍ତ୍ରୀରେ ପ୍ରକାଶ କରିପାରିନଥିଲା, 'ଆଧୁନିକ' ସେଠି ତାର ଦୃଢ଼ ପଦକ୍ଷେପକୁ ଶୁଣାଇ ଯୁଗଚେତନାର ସମସ୍ତ କ୍ଲୀବତାକୁ ଭାଙ୍ଗିଦେବାକୁ ଅଗ୍ରସର ହୋଇଥିଲା ।" (ସବୁଜରୁ ସାଂପ୍ରତିକ, ୫ମ ସଂସ୍କରଣ - ୨୦୦୮, ପୃଷ୍ଠା-୨୦)

ଯୁଗଚେତନାକୁ ନିର୍ଦ୍ଦିଷ୍ଟ ଭାବରେ ଓ ବିଶେଷତ୍ୱର ଆଧାରରେ ପ୍ରତିପାଦନ କରିବାର ଏହି ଗଦ୍ୟଭଂଗୀଟି କେବଳ ଏକ ଆଧୁନିକ ଶିଳ୍ପରୀତିର ଅଭିନବ ଉପସ୍ଥାପନ କଳାକୁ ସ୍ୱତନ୍ତ୍ର ପରିପାଟୀଟିଏ ପ୍ରଦାନ କରୁଛି ସେକଥା ନୁହେଁ, ଅଧିକନ୍ତୁ ବ୍ୟଞ୍ଜନାତ୍ମକ ସମାଲୋଚନାର ସଂସ୍ଥାପିତ ପ୍ରତିରୂପଟିଏ ମଧ୍ୟ ଗଢ଼ି ତୋଳିବା ଦିଗରେ ହୋଇଛି ସମର୍ଥ । ଦୁଇଟି ଭିନ୍ନ ଯୁଗୀୟ ସୃଜନ ଆବେଦନ ମଧ୍ୟରେ ନିହିତ ଥିବା ପ୍ରଭାବଗତ ପାର୍ଥକ୍ୟକୁ ଏହି ରୂପେ ଏକ ଭାବନିଷ୍ଠ ଆବେଗିକ ଶବ୍ଦ ସଂଯୋଜନାର କୌଶଳ ହେଉଛି ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସ୍ୱତନ୍ତ୍ର ଗଦ୍ୟଶିଳ୍ପର ଅଭିନବତା । ବ୍ୟଥା ଓ ବ୍ୟଞ୍ଜନାର ସମ୍ପର୍କ ପୁଣି ଅତି ନିବିଡ଼ । ସୃଜନସମ୍ଭବା କବି ପ୍ରତି ସମାଲୋଚକର ଗଭୀର ସହାନୁଭୂତି ସୃଷ୍ଟି କରିଥାଏ ଯେଉଁ ଦରଦ, ତାହା ବିକ୍ଷୁବ୍ଧ ହୋଇଉଠେ ସେତେବେଳେ; ଯେତେବେଳେ ସେହି ନିରବ ସାଧକ ପ୍ରତି ହୋଇଥିବା ଅବିଚାର ଆଉ ପକ୍ଷପାତର ଦାରୁଣ ପରିଣତିକୁ ଉପଲବ୍ଧି କରିଥାଏ ଶ୍ରୀଯୁକ୍ତ ଶତପଥୀଙ୍କ ସମ୍ବେଦୀ ସ୍ରଷ୍ଟା ମାନସ । କବି ପ୍ରତି ଏହି ଆତ୍ମୀୟତା ଟିକକ ହେଉଛି ଜଣେ ଦାୟିତ୍ୱସଂପନ୍ନ ସମାଲୋଚକର ସବୁଠୁ ବଡ଼ ସମ୍ବଳ । ଏହି ପୃଷ୍ଠଭୂମିରେ ଗୋଟିଏ ଉଦାହରଣ, ଯୁକ୍ତିଛଳରେ ଉପସ୍ଥାପିତ କରାଯାଇପାରେ-

"କେବେ ହେଲେ କବି ପ୍ରସିଦ୍ଧି, ଉପାୟନ ବା ଉପଢୌକନ ଦାବି କରିନାହାନ୍ତି । ସେ ନିଭୃତର ଶିଳ୍ପୀ- ସେଥିପାଇଁ ସମାଲୋଚନାର ରୁଗ୍ଣ ଦୃଷ୍ଟିବଳୟ ଭିତରେ ଏହି ଅମିତ ଶକ୍ତିଧର ବାମପନ୍ଥୀ ସାରସ୍ୱତ କାବ୍ୟମାନସର ସ୍ଥାନ ଏବେବି ଅନୁଚ୍ଚରିତ ଓ ଅନିରୂପିତ" (ସ. ସାଂପ୍ରତିକ - ୩୧୭) । କାମଳ ସମାଲୋଚନା କଦାପି ନିରପେକ୍ଷ

ହୋଇପାରେନା । ପ୍ରଶସ୍ତି ଗାନ କରିବା ଅଥବା ପ୍ରତିପତ୍ତିର ପତିଆରା ନିକଟରେ ଆନୁଗତ୍ୟ ପ୍ରଦର୍ଶନ କରିବା, ସମାଲୋଚକର ଧର୍ମ ନୁହେଁ । ନିରପେକ୍ଷତା ହେଉଛି ଜଣେ ଉତ୍ତମ ସମାଲୋଚକର ସାରସ୍ୱତ ଧର୍ମ । ଏହି ଧର୍ମ ପାଳନ ନ କଲେ, ସମାଲୋଚନା ହୋଇଥାଏ ରୁଗ୍ଣ ଏବଂ ବିଡ଼ମ୍ବିତ । ପ୍ରଗତିବାଦୀ କବି ରଘୁନାଥ ଦାସଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ସେ ରହିଯାଇଛନ୍ତି ସମସାମୟିକ ସମାଲୋଚନାର ଦୃଷ୍ଟି ଆଢୁଆଳରେ, ଯାହା ବ୍ୟଥିତ କରିଦେଇଛି ସମାଲୋଚକ ଶତପଥୀଙ୍କ ଦରଦୀପ୍ରାଣକୁ ବୋଲି; ସେ ବିଦ୍ରୋହ ଘୋଷଣା କରିଛନ୍ତି ଅତି ସ୍ୱାଭାବିକ ଭାବରେ ।

କବି ସଚ୍ଚି ରାଉତରାଙ୍କ କାବ୍ୟଚେତନାର ଉତ୍‌ଥାନ ଆଉ ପତନର ନିର୍ଭୁଲ୍ ଅନୁଶୀଳନ କାଳରେ ଯେଉଁ ଅନ୍ତର୍ଭେଦୀ ସ୍ୱରୂପଟିକୁ ଉନ୍ମୋଚନ କରିଛନ୍ତି ସମାଲୋଚକ ଶ୍ରୀଯୁକ୍ତ ଶତପଥୀ, ତାହା ପ୍ରତିପାଦିତ କରିଛି ଏକ ଐତିହାସିକ ବାସ୍ତବତାର ପୃଷ୍ଠଭୂମି । "୫୨ରୁ ୬୨ ମଧ୍ୟରେ ତାଙ୍କ କାବ୍ୟସ୍ୱରରେ ଆଉ ସାଧାରଣ କବିତାର ଆତ୍ମା ଓ ଆକୁଳତା ସହିତ ସାଙ୍ଗୀକରଣ ନାହିଁ; ଅଛି ଏକ ଭିନ୍ନ ପରିଧିର ଓ ଭିନ୍ନ ଦେଶର ଚିତ୍ର, ଯାହା କବି ନିଜ ଅଲକ୍ଷରେ 'ସ୍ୱଗତ-୨' କବିତାରେ ହୁଏତ ପ୍ରକାଶ କରିଦେଇଛନ୍ତି" (ପୃ-୨୭୪) । ଶାଣିତ ଓ ଅନ୍ତର୍ଦୃଷ୍ଟି ସଂପନ୍ନ ଅନୁଧ୍ୟାନର ଗଭୀରତା କେତେ ନିବିଡ଼ ଆଉ ଶାଣିତ, ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ସମାଲୋଚନାରେ ପକ୍ଷପାତିତା ତ' ଦୂରର କଥା, ମାତ୍ର ମୁହଁ ମୁଲାଜାର ସାମାନ୍ୟତମ ବି ଦୁର୍ବଳତାର ବଶବର୍ତ୍ତୀ ହୁଅନ୍ତି ନାହିଁ ଆଦୌ ସମାଲୋଚକ ଶ୍ରୀଯୁକ୍ତ ଶତପଥୀ । ସଚ୍ଚି ରାଉତରାୟଙ୍କ ଭଳି ଜଣେ ବିଶିଷ୍ଟ କବିଙ୍କୁ ଆଲୋଚନା କାଳରେ କେବଳ ସେହିଁ ଦେଇପାରନ୍ତି ଏଭଳି ନିର୍ଭୀକ ମନ୍ତବ୍ୟ । "ଏହି ପର୍ଯ୍ୟାୟରେ କବି ସ୍ୱପ୍ନର ଝରଣ ଭାବେ ମାଟିର ବନ୍ଧନ ତ୍ୟାଗ କରି ପଳାୟନ କରିଛନ୍ତି ଓ ଦୁନିଆଁକୁ ମୁହାଁମୁହିଁ ରହିଁବାର ଦୁର୍ବାର ସାମର୍ଥ୍ୟ ହରାଇ ବସିଛନ୍ତି । ଜୀବନ ଅତ୍ୟନ୍ତ ଦୁର୍ଗମ, ଶିଳା ଆଉ କଙ୍କରମୟ । ତାକୁ ସାମ୍ନା କରିବା ଅପେକ୍ଷା ତାକୁ ଏଡ଼େଇ ଦେଇ ନିଦ୍ରା ହୁଏତ ଯାଇହବ, ଯାହା ଅତ୍ୟନ୍ତ ଆମୋଦ ଦାୟକ (ପୃ-୨୭୪) ।" କେତେ ନିର୍ମମ ଆଉ ନିଷ୍ଠୁର ଏହି ସମାଲୋଚକୀୟ ଯଥାର୍ଥତା ! କେତେ ପୁଣି ଯୁକ୍ତିନିଷ୍ଠ ଓ ବାସ୍ତବ ଏହାର ପୁରୋଦୃଷ୍ଟି । "ଏହାର କାରଣ ସ୍ୱରୂପ ୧୯୫୨ ମସିହାରେ ଶ୍ରମିକ-କଲ୍ୟାଣ ଅଫିସର ପଦରୁ ବିରଳାଙ୍କ କେଶୋରାମ୍ କଟନ୍ ମିଲ୍‌ସର ଏକ୍‌ଜିକ୍ୟୁଟିଭ୍ ଅଫିସର ପାହ୍ୟାରେ ତାଙ୍କର ପଦୋନ୍ନତିକୁ ହୁଏତ ଚିହ୍ନିତ କରାଯାଇପାରେ (ପୃ-୨୭୫)" ବୋଲି ନିଜର ଅଭିମତକୁ ସ୍ପଷ୍ଟ କରି ଦେଇଛନ୍ତି ସମାଲୋଚକ ।

ସଚ୍ଚି ରାଉତରାୟଙ୍କ କାବ୍ୟସମୀକ୍ଷା କାଳରେ ପ୍ରତିପାଦିତ ହୋଇଥିବା ସମାଲୋଚକର ଅନ୍ୟ ଏକ ଦିଗକୁ ମଧ୍ୟ ଆଲୋଚନା ପ୍ରସଂଗରେ ଉଦ୍ଧାର କରାଯାଇପାରେ । "ପ୍ରେମ, ପ୍ରଣୟ ଓ ବାସ୍ତବବାଦୀ ରୋମାଣ୍ଟିକ୍ ଭାବଚେତନାକୁ ନେଇ ଏଇ ପର୍ଯ୍ୟାୟରେ

ସଂଗଠିତ ତାଙ୍କ କାବ୍ୟ ମନନ ତେଣୁ ଝରଣା ପରି ଆଉ ଛଳ ଛଳ ବା ନଦୀ ପରି କଳତାନ ନୁହେଁ; ବରଂ ବୁଦ୍ଧିବାଦର ପ୍ରଦର୍ଶନରେ ବେଶ୍ ବୁଦ୍ଧିଦୀପ୍ତ, ପ୍ରୟୋଗବାଦୀତାରେ ପରିପୃକ୍ତ (ପୃ-୨୭୫)।" ସମାଲୋଚ଼କ ହିସାବରେ ଏହି ଯେଉଁ ପ୍ରତିଭାର ଅନୁଶୀଳନ, ସେଥିରେ ନାହିଁ ବ୍ୟକ୍ତିଗତ ଅସୂୟା କି ପରଶ୍ରୀକାତର ଦୋଷ ! ବ୍ୟକ୍ତିବୋଧର ଉର୍ଦ୍ଧ୍ୱକୁ ଉଠି ନ ପାରିଲେ ଜଣେ କେବେବି ସଫଳ ସମାଲୋଚ଼କ ହୋଇପାରିବ ନାହିଁ। ସମାଲୋଚ଼କ ସେଇଥିପାଇଁ ତ' ହୋଇଥାଏ ଜଣେ ସବ୍ୟସାଚ଼ୀ ! ସମାଲୋଚ଼କର ଶର ସନ୍ଧାନ କାଳରେ, କେବଳ ପ୍ରତୀତ ହୁଏ ଯେଉଁ ଦିଗ ପ୍ରସଙ୍ଗ; ତାହା ହିଁ ଅର୍ଜୁନର ବିନ୍ଧାଣୀ ଦୃଷ୍ଟିରେ ପକ୍ଷୀର ଚକ୍ଷୁଟି ମାତ୍ର ! କେବଳ ସେଇ ଆଖିଟି ତାର ଲକ୍ଷ୍ୟ ! ଗୋଟାପଣେ ଚଢ଼େଇ ନୁହଁ। ଚଢ଼େଇର ଗୋଡ଼, ପର କି ତା'ର ଉଡ଼ାଣ କୌଶଳ ବି ନୁହଁ।

ସମାଲୋଚନାର ଆୟୁଧ ଯୋଖିଲାବେଳେ ଠିକ୍ ସେମିତି ଶ୍ରୀଯୁକ୍ତ ଶତପଥୀଙ୍କ ଦୃଷ୍ଟିର ନିଶାଣଟି ନିବଦ୍ଧ ଥାଏ, ସେଇ ବିନ୍ଦୁରେ... ସେଇ ପ୍ରସଙ୍ଗରେ କେବଳ। ସେଥିପାଇଁ ତାଙ୍କ ନାରାଚ଼ ଲକ୍ଷ୍ୟଭ୍ରଷ୍ଟ ହୁଏ ନାହିଁ କି କେବେବି ବିଚ୍ୟୁତ ହୁଏ ନାହିଁ ତାଙ୍କ ବିନ୍ଧାଣୀପଣ। ବ୍ୟକ୍ତିଗତ ସଂପର୍କ କି ସାରସ୍ୱତ ବିବାଦର ଉର୍ଦ୍ଧ୍ୱରେ ତାଙ୍କ ସମାଲୋଚ଼କୀୟ ଉଡ଼ାଣ ହୋଇଥାଏ ସଦା ଏକାଗ୍ର ଓ ଏକନିଷ୍ଠତାରେ ନିରପେକ୍ଷ। କବି ଜ୍ଞାନୀନ୍ଦ୍ର ବର୍ମାଙ୍କ କବିତ୍ୱର ମୂଲ୍ୟାୟନ ପ୍ରସଙ୍ଗରେ ସମାଲୋଚ଼କ ଶତପଥୀଙ୍କ ସମାଲୋଚ଼କୀୟ ପୁରୋଦୃଷ୍ଟିର ଅନ୍ୟ ଏକ ଦିଗକୁ ଆବିଷ୍କାର କରାଯାଇପାରେ। ପୁରାଣ ଚରିତ୍ରଟିଏ ବେଳେବେଳେ କବିର ଲୌକିକ ନ୍ୟାୟର ମାନଦଣ୍ଡରେ ଉପେକ୍ଷିତ ହୋଇ ତାର ମହତ୍ତ୍ୱ ହରାଇବସେ। ମୂଳ ପୁରାଣର ପ୍ରସଙ୍ଗ ଦୃଷ୍ଟିରୁ ସେହି ଚରିତ୍ରଟି ପ୍ରତି ଅନ୍ୟାୟ କରାଯାଇଥିବାର ଉପଲବ୍ଧି କଲେ, ସେଇଠି ଜଣେ ସହାନୁଭୂତିସଂପନ୍ନ କବିର ପ୍ରାଣ ବିଚ଼ଳିତ ହୋଇଉଠେ ! ନ୍ୟାୟାଧୀଶର ଆସନରେ ଅଧିଷ୍ଠିତ ହେଲାଭଳି ସେତେବେଳେ ପ୍ରତିପନ୍ନ ହୁଏ କବିକୁ ! ଇତିହାସର କାଠଗଡ଼ାରେ ଦଣ୍ଡାୟମାନ ସେହି ଅସହାୟ ଚରିତ୍ରଟି ସପକ୍ଷରେ ନିଜର ବିଚାର ଘୋଷଣା କରିଥାଏ କବି ! କବିର ସେହି ଦାୟିତ୍ୱସଂପନ୍ନ ଗରିମାଟିକକୁ 'ସମାଜ' ସପକ୍ଷରେ ଉପସ୍ଥାପିତ କରିବାକୁ ଋହେଁ। ତେଣୁ ସମାଲୋଚ଼କ ଶତପଥୀଙ୍କ ହୃଦୟଭେଦୀ ବିଚାରଦୃଷ୍ଟି !

ମାନବିକତାର ମୂଲ୍ୟବୋଧ ପ୍ରତିଷ୍ଠା ଦିଗରେ ଏତାଦୃଶ ସମାଲୋଚ଼ନାର ଏକ ଅଭିନବ ଅବଧାରଣା (concept) ଗଢ଼ି ତୋଳିବାର ପ୍ରୟାସରେ ଶ୍ରୀଯୁକ୍ତ ଶତପଥୀ 'ହରିବଂଶ'ର ଅବହେଳିତ ଚରିତ୍ର 'ଚନ୍ଦ୍ରସେଣା' ପ୍ରତି ପ୍ରଦତ୍ତ ହୋଇଥିବା ନ୍ୟାୟ (କବି ଜ୍ଞାନୀନ୍ଦ୍ର ବର୍ମାଙ୍କ କବିତା 'ଚନ୍ଦ୍ରସେଣାର ବାର୍ତ୍ତା')କୁ ସମର୍ଥନ କରିନାହାନ୍ତି କେବଳ, ଅଧିକନ୍ତୁ ଇତିହାସର ପୃଷ୍ଠଭୂମିରେ ଅବହେଳିତ ସେହି ଗୋଷ୍ଠୀଟି ପ୍ରତି ପ୍ରକଟିତ କରିଛନ୍ତି ପ୍ରଗାଢ଼ ସମାଲୋଚ଼କୀୟ ସହାନୁଭୂତି। "ହରିବଂଶର ଏକ ଚରିତ୍ର ଚନ୍ଦ୍ରସେଣା କବିଙ୍କ ଯୁକ୍ତିରେ ନପୁଂସକ ନୁହେଁ। ରାଧା ସନ୍ତାନବତୀ ହୋଇ ନାହାନ୍ତି ବୋଲି ଏ ଅଭିଯୋଗ

ଚନ୍ଦ୍ରସେଣା ପ୍ରତି ଘୋର ଅନ୍ୟାୟମୂଳକ, କିନ୍ତୁ ପୌରୁଷର ଅଧିକାର ମାଗି ସେ ବାରମ୍ବାର ରାଧାଦ୍ୱାରା ମାନସିକ ଆଘାତ ପାଇଛି । ରାଧା କୃଷ୍ଣ ପାଇଁ ପାଗଳ । ସେଥିପାଇଁ ଚନ୍ଦ୍ରସେଣାକୁ ପୁରାଣ ଜାଣିଶୁଣି ନପୁଂସକ ଆଖ୍ୟା ଦେଇଛି (ପୃ-୩୮୩)" ଲାଞ୍ଛିତ ଚରିତ୍ରର ଦୁର୍ଗତ ଜୀବନ ପ୍ରତି ଏହି ସହାନୁଭୂତି ହିଁ ପ୍ରଚଳିତ ପୌରାଣିକ ଆଖ୍ୟାନ ବିରୁଦ୍ଧରେ ସମାଲୋଚ଼କୀୟ ବିଦ୍ରୋହ ମାତ୍ର ନୁହେଁ; ପରନ୍ତୁ ମାନବୀୟ ପରାକାଷ୍ଠା ଓ ମୂଲ୍ୟବୋଧର ପ୍ରତିଷ୍ଠା ଦିଗରେ ଏକ ସାରସ୍ୱତ ଆହ୍ୱାନ ହୁଏତ ହୋଇପାରେ ।

କବି ଜ୍ଞାନୀନ୍ଦ୍ର ବର୍ମାଙ୍କର ଅନ୍ୟ ଏକ କାବ୍ୟ ଚରିତ୍ର ହେଉଛି 'କଳାପାହାଡ଼', ଯିଏ ନିନ୍ଦିତ ହୋଇଛି ଇତିହାସର ପୃଷ୍ଠାରେ । କଳାପାହାଡ଼ର ଆବେଗ ଆଉ ଆକୁଳତା ପ୍ରତି ସେଦିନ ମଧ୍ୟ କମ୍ ଅବିଚାର କରାଯାଇନାହିଁ । ତା'ର ବିଦ୍ରୋହ ଭିତରେ ଲୁଚ଼ି ରହିଥିବା କାରଣଟିକୁ ମଧ୍ୟ କେହି ଖୋଜି ନାହିଁ । କେହି ବି ଜାଣିବାକୁ ଚାହିଁ ନାହିଁ ଏମିତି କାହିଁକି ହେଲା ? କାହିଁକି ହେଲା କଳାପାହାଡ଼ ଧ୍ୱଂସମୁଖୀ ? ସେଇଥିପାଇଁ ତ ସ୍ୱର ମିଳାଇଛନ୍ତି ସମାଲୋଚ଼କ ଶତପଥୀ କବି ଜ୍ଞାନୀନ୍ଦ୍ର ବର୍ମାଙ୍କ ସହିତ, ଆଉ ତାଙ୍କର ପକ୍ଷ ସମର୍ଥନ କରିବାକୁ ଯାଇ ଜଣେ ସନ୍ନିଷ୍ଠ ସମାଲୋଚ଼କର ଧର୍ମ ପାଳନ କରିଛନ୍ତି ସମାଲୋଚ଼କ ଶତପଥୀ ଓ ଏହି ପ୍ରସଙ୍ଗର ମହତ୍ତ୍ୱକୁ ନିଜସ୍ୱ ଦୃଷ୍ଟିକୋଣରୁ ପ୍ରତିପାଦିତ କରିଛନ୍ତି । "ଯୁଗେ ଯୁଗେ କବି, ଶାସ୍ତ୍ର ଓ ସାଧକମାନେ ଭଗବାନଙ୍କ ସମ୍ପର୍କରେ ଅନେକ କଳ୍ପିତ କଥା କହିଛନ୍ତି । ସେ ଭଗବାନ ଆସି ଦରିଦ୍ରର ଦୁଃଖ ମୋଚ଼ନ କରି ନାହାନ୍ତି । ××× ସବୁ ଖାଲି ତା' ପାଇଁ ଉପହାସ ଓ ପ୍ରହେଳିକାରେ ପରିଣତ ହୋଇଥାଏ । ଜୀବନ ପାଇଁ ଏଇ ଅତୀନ୍ଦ୍ରିୟ ଜ୍ଞାନର ମିଥ୍ୟା ଅଭିକର୍ଷଣ ଆଉ ଲୋଡ଼ାନାହିଁ । ତେଣୁ ସର୍‌ରିଆଲିଷ୍ଟ କବିଙ୍କ ସହିତ ସ୍ୱର ମିଳେଇ ଶ୍ରୀ ବର୍ମା ମଧ୍ୟ କହିଛନ୍ତି, ଏଣିକି ରାତ୍ରିର ସଙ୍ଗୀତ ଗାନ କରିବାକୁ ହେବ; ଏ ଯୁଗର କବିକୁ ଜୀବନର ସ୍ପଷ୍ଟ ପରିଚ଼ୟ ଦେବାକୁ ହେବ । (ସବୁଜରୁ ସାଂପ୍ରତିକ, ପୃ-୩୮୩)"

ସମାଲୋଚ଼କ କେବଳ ସାହିତ୍ୟର ସମୀକ୍ଷକ ନୁହେଁ । ସାହିତ୍ୟ ସହିତ ନିବିଡ଼ ଭାବରେ ଜଡ଼ିତ 'ଜୀବନ'ର ସେ ହେଉଛନ୍ତି ଅନନ୍ୟ ଭାଷ୍ୟକାର । ସାହିତ୍ୟ ସୃଷ୍ଟି ମଧ୍ୟରେ ନିହିତ ଥିବା ଜୀବନର ଏହି ଐତିହାସିକ 'ସତ୍ୟ'ର ପ୍ରତିଷ୍ଠା କରିଥାଏ - ଜଣେ ଦାୟିତ୍ୱସଂପନ୍ନ ସମାଲୋଚ଼କ; ଯାହା ପ୍ରମାଣିତ ହୋଇଛି 'ସବୁଜରୁ ସାଂପ୍ରତିକ' ସମାଲୋଚନା ଗ୍ରନ୍ଥରେ । ଜୀବନର ଏହି ନିଗୂଢ଼ ଆବେଦନ ଏବଂ ସଭ୍ୟତାର ସ୍ୱପ୍ନକୁ ପ୍ରତିପାଦିତ କରିବାର ଏକ ସାରସ୍ୱତ ପ୍ରୟାସର ନାମ ହେଉଛି ସମାଲୋଚ଼ନା । କବି ଜ୍ଞାନୀନ୍ଦ୍ର ବର୍ମା ସମାଲୋଚ଼କର ଦୃଷ୍ଟି ଆଢୁଆଳରେ ଅନାମଧେୟ ଓ ଅନାଲୋଚ଼ିତ । ସେହି ଅଲୋଡ଼ା କବିପଣର ମୂଲ୍ୟାୟନକୁ ପ୍ରାଧାନ୍ୟ ଦେଇଛନ୍ତି ସମାଲୋଚ଼କ ଶତପଥୀ କେବଳ ଏହି ଗୋଟିଏ କାରଣରୁ । କବିତାରେ ସେ କଳ୍ପଲୋକର ବାହୁଲ୍ୟ ବର୍ଣ୍ଣନା କରି

ନାହାନ୍ତି । ପ୍ରେମ ଓ ପ୍ରଣୟର ଆବେଗଭରା ପଦ ସଂଯୋଜନାରେ ସେ ସୃଷ୍ଟି କରିନାହାନ୍ତି ଭାବପ୍ରବଣତାର ଅମରାବତୀ। ସେ ଜୀବନ ସନ୍ଧାନୀ.. ସେ ମୂଲ୍ୟବୋଧର ପ୍ରବକ୍ତା। ସେ ସଭ୍ୟତାର ସଂସ୍ଥାପକ ।

ଜ୍ଞାନୀନ୍ଦ୍ର କବିତାରୁ ଆଉ ଗୋଟିଏ ପ୍ରସଙ୍ଗ, ଏହି ପୃଷ୍ଠଭୂମିରେ ଉଦ୍ଧାର କରାଯାଇପାରେ । ପୁରାଣର ଅନ୍ୟଜଣେ ଅପନାୟକ (Anti-Hero) ହେଉଛି ହିରଣ୍ୟକଶ୍ୟପୁ । ଅନେକ ଘୃଣା, ଅନେକ ଲାଞ୍ଛନାର ଅପନିନ୍ଦାକୁ ନେଇ ଉଜ୍ଜୀବିତ ହୋଇ ରହିଛି ଏହି ଚରିତ୍ରଟି ଆଜି ବି ଏକ କଳଙ୍କିତ ପରିଚୟ ନେଇ । କିନ୍ତୁ ସେହି ଚରିତ୍ରର ଯେଉଁ ଐତିହାସିକ ଭୂମିକାଟିଏ ବିଦ୍ୟମାନ; ଧର୍ମାନ୍ଧ ସାମନ୍ତବାଦୀ ପରମ୍ପରା ବିରୁଦ୍ଧରେ ହିରଣ୍ୟକଶ୍ୟପୁର ଯେଉଁ ମହତ୍ତ୍ୱପୂର୍ଣ୍ଣ ଆହ୍ୱାନ, ସେ ଦିଗଟିକୁ ଆଖି ବୁଜି ଦେଇଛି ତମାମ୍ ଇତିହାସ । ଦେଖିବା ହେଉନ୍ତୁ କବି ବର୍ମା ଓ ସମାଲୋଚକ ଶତପଥୀଙ୍କୁ ଟିକିଏ ଏହି ପ୍ରେକ୍ଷାପଟରେ- "ଭଗବାନଙ୍କ ପରି ଶୂନ୍ୟ ଏକ କାଳ୍ପନିକ ସ୍ଥିତିର ବିଶ୍ୱାସ ବିରୁଦ୍ଧରେ ହିରଣ୍ୟକଶ୍ୟପୁ ମନରେ ଦୃଢ଼ ସଂଶୟ ଆସିଥିଲା । ଆଜି କୋଟି କୋଟି ଲୋକ ଏଇ ବିଶ୍ୱାସ ନେଇ ବିନା ପ୍ରତିବାଦରେ ଭାଗ୍ୟର ସମସ୍ତ ବିଦ୍ରୂପକୁ ସହି ନେଉଛନ୍ତି । ହିରଣ୍ୟକଶ୍ୟପୁ କିନ୍ତୁ ଜୀବନ ସହିତ ଏପରି ରଫାନାମା (compromise) ର ଘୋର ପରିପନ୍ଥୀ । ତେଣୁ ଏପରି ଏକ ମୂଲ୍ୟହୀନ ବିଶ୍ୱାସ ଭିତ୍ତିକ ଆବିଳ ସୃଷ୍ଟିର ଧ୍ୱଂସ ତାର କାମ୍ୟ ଥିଲା (୩୮୩) ।"

ସମାଲୋଚନା ହେଉଛି ଏକ ସର୍ଜନାତ୍ମକ ଅନୁସନ୍ଧାନ । ସାହିତ୍ୟର ଅନୁଶୀଳନ ହେଉଛି କେବଳମାତ୍ର ଅବଲମ୍ବନ, ଯାହା ପହଞ୍ଚାଇଦିଏ ପାଠକମାନଙ୍କୁ ସଭ୍ୟତାର ସେହି ଦୋଛକିରେ; ଯେଉଁଠି ଅପେକ୍ଷା କରିଥାଏ ଏକ ସିଦ୍ଧାନ୍ତ । ଲେଖକର ପଶାପାଲିରେ ହାର୍ ଜିତ୍‌ର ଦୁର୍ଭାଗ୍ୟ ଆଉ ଇତିହାସର ବିଡ଼ମ୍ବନା ସହି ବଞ୍ଚିରହିଥିବା କାଳ୍ପନିକ ଚରିତ୍ର ହିଁ ସମାଲୋଚକ ପାଇଁ ବହନ କରନ୍ତି ଅନେକ ସାକ୍ଷ୍ୟ ପ୍ରମାଣ। ସମାଲୋଚନା ତେଣୁ ହେଉଛି ଏକ ଯୁକ୍ତି ପ୍ରତିଯୁକ୍ତିର ଜବାବ୍ ସୁଆଲ୍ । ସମାଲୋଚକ ହେଉଛନ୍ତି ଜଣେ ବିଚାରକ। ଆଲୋଚନାର ତୁଳାଦଣ୍ଡରେ ସେ ତଉଲନ୍ତି ପକ୍ଷ-ପ୍ରତିପକ୍ଷର ଦୋଷ-ଗୁଣ । ସମାଲୋଚକର ଇଜ୍‌ଲାସରେ ତେଣୁ ପ୍ରଦତ୍ତ ହୋଇଥାଏ ଜୀବନର ନିଷ୍କର୍ଷ। ସମାଲୋଚନାର ବାହାନାରେ ତେଣୁ ମାନବ ସମାଜର ଇତିହାସକୁ ସେ କରିଥାଏ ପୁନର୍ମୂଲ୍ୟାୟନ । ଅନ୍ତତଃ ସମାଲୋଚକର କାନ୍ଧରେ ନ୍ୟସ୍ତ ଥିବା ଏହି ଗୁରୁଦାୟିତ୍ୱଟିକୁ ଅନେକ ଭୁଲିଯାଆନ୍ତି ସମ୍ଭବତଃ । ଶ୍ରୀଯୁକ୍ତ ଶତପଥୀ କିନ୍ତୁ ନିଜସ୍ୱ ଦାୟିତ୍ୱ ସଂପର୍କରେ ସଦା ସଚେତନ ।

ଏ କଥା ସତ ଯେ, କୌଣସି ବିଶେଷ ଆଦର୍ଶ, ଦର୍ଶନ କିମ୍ବା ତତ୍ତ୍ୱର ନିଗଡ଼ରେ ବନ୍ଧା ପଡ଼େ ନାହିଁ ସମାଲୋଚକ । ସମାଲୋଚକ ପାଇଁ ତେଣୁ 'ଦର୍ଶନ' ଏକ ମାନଦଣ୍ଡ (Parametre) ନୁହେଁ । ଉଲ୍ଲିଖିତ ଆଲୋଚନାରୁ ହୁଏତ କେହି କହିପାରନ୍ତି ଯେ,

ସମାଲୋଚକ ଶତପଥୀ ହେଉଛନ୍ତି 'ପିତୁଳା' ପୂଜାର ବିରୋଧୀ। କେହି କେହି ବି ତାଙ୍କୁ ସାମ୍ୟବାଦୀ ଭାବେ ଅଭିହିତ କରିପାରନ୍ତି। ମାତ୍ର ସେ କମ୍ୟୁନିଷ୍ଟ ନୁହନ୍ତି କି ସେ ନାସ୍ତିକ ନୁହନ୍ତି। ଦର୍ଶନ ତାଙ୍କର ଧେୟ ନୁହେଁ। ସେ ନୁହନ୍ତି କୌଣସି ଆଦର୍ଶର ଅନୁଗାମୀ। ଜୀବନର ପ୍ରୟୋଜନରେ, ଇତିହାସର ଆବଶ୍ୟକତାକୁ ଦୃଷ୍ଟିରେ ରଖି ସେ କେବଳ ମାନବୀୟ ମୂଲ୍ୟବୋଧର ମହତ୍ତ୍ୱ ପ୍ରତିପାଦନ ପାଇଁ ପ୍ରୟାସ କରିଛନ୍ତି- ତାଙ୍କ ପ୍ରସ୍ତୁତ ପ୍ରତ୍ୟେକଟି ସମାଲୋଚନାରେ। ସବୁ ବାଦବିବାଦର ଊର୍ଦ୍ଧ୍ୱରେ ସେ ମାନବତାବାଦର ଦର୍ଶନକୁ ହିଁ ଉପସ୍ଥାପିତ କରିଛନ୍ତି- 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥରେ।

ସାହିତ୍ୟରେ ପ୍ରଗତିବାଦୀ ଚେତନାର ଅଧ୍ୟୟନ ଓ ଅନୁଧ୍ୟାନ ପ୍ରସଂଗରେ ପ୍ରଫେସର ଶତପଥୀଙ୍କ ଏହି ମାନବୀୟ ଦୃଷ୍ଟିଭଂଗୀଟିର ସ୍ପଷ୍ଟ ପରିଚୟ ମିଳିଥାଏ। ସମାଲୋଚକର ଦୃଷ୍ଟିରେ କବି ହେଉଛନ୍ତି କବି। ସେ ସୃଜନର ଆଧାର। ସକଳ ସମ୍ଭାବନା ଓ ସ୍ୱପ୍ନର ସେ ଏକ ସାମାଜିକ ପ୍ରତିରୂପ। ସମାଜର ଆର୍ତ୍ତ ଆକୁଳତା, ଜୀବନର ଦୁଃଖ ଯାତନା ସହିତ, ଯାବତୀୟ ଦୁର୍ଗତି ଓ ଦୁର୍ଦ୍ଦିନ ଭିତରୁ ନିଷ୍କୃତିର ରାହାଟିଏ ଖୋଜୁଥାଏ କବି। ଭାବ ଅନୁସାରେ ଭାଷାର ଚୟନ ତେଣୁ ତା'ର କବିତାକୁ ପ୍ରଦାନ କରିଥାଏ ଭିନ୍ନ ଭିନ୍ନ ରୂପବିଭବ। ଯେଉଁଠି ପୁଣି ଯେଉଁ କବିତାରେ ସାମାଜିକ ଆବେଦନଟି ହୋଇଥାଏ ତୀବ୍ର ଆଉ ନିବିଡ଼ ସେଇଠି ତାହା କେବେ ସଂଗ୍ରାମର ଆହ୍ୱାନରେ ହୋଇଥାଏ ଭାବଗମ୍ଭୀର ଆଉ ଚେତନା ଉଦ୍ଦୀପକ। କବିତା ଯେଣୁ ସ୍ୱତଃସ୍ଫୂର୍ତ୍ତ ଓ ସ୍ୱଚ୍ଛନ୍ଦ ଆବେଗର କଳାତ୍ମକ ପରିପ୍ରକାଶ। ସେହେତୁ କବିର ଭୂମିକାଟି ଏ କ୍ଷେତ୍ରରେ ହେଉଛି ଏକ ଆଧାରଭୂମି ମାତ୍ର। ତେଣୁ କବିତାର ଦୋଷ ଗୁଣ ବାଛିବା ଆଳରେ ସ୍ରଷ୍ଟାପୁରୁଷଙ୍କୁ କୁତ୍ସିତ କରିବା ହୁଏନା ଆଦୌ କୌଣସି ଦୃଷ୍ଟିରୁ ସ୍ପୃହଣୀୟ।

ପ୍ରଗତିବାଦୀ ଯୁଗର କବିମାନଙ୍କୁ "ତେଣୁ Angry ବା Hungry ବୋଲି କହି ଓଡ଼ିଆ କବିତାର ଏହି ବାମପନ୍ଥୀ ଚେତନାର ସ୍ରୋତକୁ ଭିନ୍ନମୁଖୀ କରାଯିବାର ପ୍ରଚେଷ୍ଟା କେବଳ ପ୍ରତିକ୍ରିୟାଶୀଳ ମନୋବୃତ୍ତିର ଯେ ପରିଚୟ ଦିଏ, ଏଥିରେ ସନ୍ଦେହ ନାହିଁ। ଏକ ସୁଖୀ, ସମୃଦ୍ଧ, ସାମାଜିକ ବ୍ୟବସ୍ଥା ପାଇଁ ଏହି କବିତାଗୁଡ଼ିକର ଉପଯୋଗିତାକୁ ଏକ ବିକାଶମୁଖୀ ରାଷ୍ଟ୍ରରେ ଅସ୍ୱୀକାର କରାଯାଇପାରିବ ନାହିଁ, ବା ଏହାକୁ ଶସ୍ତା ସ୍ଲୋଗାନ କିମ୍ବା ପ୍ରଚାର ବୋଲି କହି ତଥାକଥିତ ସତ୍ୟ-ଶିବ-ସୁନ୍ଦରର ଉପାସନା ବା କାଳର ଶାଶ୍ୱତ ମୂଲ୍ୟବୋଧ ନାମରେ ଉପେକ୍ଷା ମଧ୍ୟ କରାଯାଇପାରିବ ନାହିଁ (ପୃ-୪୭୦)।" - ଏହାହିଁ ଶତପଥୀଙ୍କ ଦୁର୍ବାର ଦୃଷ୍ଟିକୋଣ।

## ସ୍ପର୍ଦ୍ଧିତ ସମାଲୋଚକୀୟ ଆହ୍ୱାନ :

ସମାଲୋଚନାର ପରଂପରାରେ ଅନ୍ୟ ଏକ ଭିନ୍ନ ବିଶେଷତ୍ୱ ହେଉଛି- ଆଲୋଚିତ କୌଣସି ପ୍ରସଂଗ ଅଥବା ପରବର୍ତ୍ତୀ ସମାଲୋଚକର ମନ୍ତବ୍ୟକୁ ଯୁକ୍ତିସିଦ୍ଧ ଭାବରେ ଆହ୍ୱାନ

(Challenge) କରିବା । ଆଲୋଚ୍ଚକ ଯେତେବି ପ୍ରତିଭାସଂପନ୍ନ କିମ୍ବା ପ୍ରତିଷ୍ଠିତ ହେଇଥାଉନ୍ତୁ ନା କାହିଁକି, ତ୍ରୁଟିପୂର୍ଣ୍ଣ ଅନୁଶୀଳନକୁ ସମାଲୋଚ୍ଚକ ଶତପଥୀ ସ୍ପର୍ଦ୍ଧାର ସହିତ ଖଣ୍ଡନ କରିଥାନ୍ତି । ବିଭ୍ରାନ୍ତିକର ସମାଲୋଚ୍ଚନାକୁ ଶିରୋଧାର୍ଯ୍ୟ କରିନେବା ଅଥବା ସମ୍ମାନନୀୟ ଅନ୍ୟ ସମାଲୋଚ୍ଚକର ଯୁକ୍ତିକୁ ଆଖିବୁଜି ସମର୍ଥନ ଜଣାଇବାରେ ସେ ଆଦୌ ପକ୍ଷପାତୀ ନୁହନ୍ତି । ନିରପେକ୍ଷତାର ମାନଦଣ୍ଡରେ କୌଣସି ସ୍ରଷ୍ଟାର ମୂଲ୍ୟାୟନ କାଳରେ ନିଜସ୍ୱ ସିଦ୍ଧାନ୍ତ ପ୍ରତିପାଦନ କ୍ଷେତ୍ରରେ ଅନ୍ୟ ସମାଲୋଚ୍ଚକର ଦୋଷ ଦୁର୍ବଳତାକୁ ନିର୍ଭୀକତାର ସହିତ ପ୍ରତିବାଦ ଜଣାଇବା ଦିଗରେ ପ୍ରଫେସର ଶତପଥୀ ହେଉଛନ୍ତି ଜଣେ ଅନନ୍ୟ ଦୁଃସାହସିକ ସମାଲୋଚ୍ଚକ ।

ସମାଲୋଚ୍ଚନା ଦୋଷଦୃଷ୍ଟ ହେଲେ ସାରସ୍ୱତ ପରଂପରାରେ ସୃଷ୍ଟି ହୁଏ ବିଭ୍ରାଟ । ସମାଲୋଚ୍ଚନାର ଏତାଦୃଶ ଧାରା ସୃଷ୍ଟି କରିଥାଏ ପକ୍ଷପାତର ଭୟାନକ ବିଡ଼ମ୍ବନା । ରୁଗ୍ଣ ସମୀକ୍ଷା ରୀତିଟି ପୁଣି ପ୍ରତିଷ୍ଠା କରେ ଯେଉଁ ଅନୁଶୀଳନର ତ୍ରୁଟିପୂର୍ଣ୍ଣ ପରଂପରା, ତାହା ପାଠକୀୟ ଚେତନାକୁ ମଧ୍ୟ ବିଭ୍ରାନ୍ତ କରିଥାଏ । ଫଳରେ ଜଣେ ମୌଳିକ ସ୍ରଷ୍ଟାର ସୃଜନ ସମ୍ଭାବନାକୁ ନେଇ ଗଢ଼ି ଉଠେ ଏମିତି ଏକ ଭ୍ରାନ୍ତ ଅବଧାରଣା, ଯାହା ଲେଖକୀୟ ଆବେଦନକୁ କରିଦିଏ ଭୂଲୁଣ୍ଠିତ ପରାହତ । କବିର ଶ୍ରମ ଓ ସାଧନାର ଯଥାର୍ଥ ଆକଳନର ଅଭାବ ସୃଷ୍ଟି କରିଥାଏ ସାରସ୍ୱତ ଇତିହାସରେ ଭୟାବହ ବିଡ଼ମ୍ବନା । ପରିଣତିରେ ଏକ ଜାତୀୟ ଜୀବନର ଆଶା ଆକାଂକ୍ଷା ସମୂହ ହୋଇଥାଏ ଦିଗ୍‌ହୀନ ଓ ବିପର୍ଯ୍ୟସ୍ତ । ଖଣ୍ଡାଧାରରେ ବାଟ ଚାଲିବା ପରି ସମାଲୋଚ୍ଚକର ଦାୟିତ୍ୱ ହେଉଛି ତେଣୁ ଅତି ମହତ୍ୱପୂର୍ଣ୍ଣ । ସୁଯୋଗ୍ୟ ସମାଲୋଚ୍ଚକ ହାତରେ ନ୍ୟସ୍ତ ଥାଏ ସାରସ୍ୱତ ସୃଜନର ସୁରକ୍ଷା ଦାୟିତ୍ୱ । ଯଥାର୍ଥ ସାହିତ୍ୟର ମୂଲ୍ୟାୟନ ଦ୍ୱାରା ନିର୍ମିତ ହୋଇଥାଏ- ଜାତୀୟ ଜୀବନର ପ୍ରକୃତ ଆତ୍ମପରିଚ୍ଚୟ । ଯେହେତୁ 'ସାହିତ୍ୟ କେବଳ ମନୋରଞ୍ଜନର କଳାରୂପଟିଏ ମାତ୍ର ନୁହେଁ, ବରଂ ଏହା ବହନ କରିଥାଏ ଏକ ପ୍ରାଚୀନ ଜାତିର ସାଂସ୍କୃତିକ ପ୍ରାଣସ୍ପନ୍ଦନ ଓ ସାମାଜିକ ବାସ୍ତବତାର ପ୍ରାମାଣିକ ରୂପଚିତ୍ର । ସମାଲୋଚ୍ଚକୀୟ ସଯତ୍ନ ଶୁଶ୍ରୂଷା ବଳରେ ହିଁ ଅତୁଟ ରହିଥାଏ ସେହି ଭାଷା ଓ ଜାତିର ମୌଳିକ ଅସ୍ମିତାବୋଧ ।

ସମାଲୋଚ୍ଚନା ସାହିତ୍ୟର ଏହି ଦାୟିତ୍ୱଟି ପ୍ରତି ସର୍ବଦା ଥିଲେ ପ୍ରଫେସର ଶତପଥୀ ସଚ୍ଚେତନ । ଯେ କୌଣସି କାମଳ ସମାଲୋଚ୍ଚନାକୁ ସେ ନିଜସ୍ୱ ଆଲୋଚ୍ଚନାରେ ଖଣ୍ଡନ କରୁଥିଲେ । ପରିଣତି ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲା କି ପ୍ରାପ୍ତି-ଅପ୍ରାପ୍ତି ଜନିତ କୌଣସି ଲାଭ କ୍ଷତିର ଆଶା ନଥିଲା । କେବଳ ଏହି କାରଣ ଯୋଗୁଁ ସେ କୌଣସି ବଡ଼ ବଡ଼ ଅନୁଷ୍ଠାନରୁ ପୁରସ୍କୃତ ହୋଇନାହାନ୍ତି ଏଯାବତ୍ । ପୁରସ୍କାର ଓ ପ୍ରଶସ୍ତିର ଆଶା ନେଇ ସେ ଯେଉଁ ଲେଖନୀ ଧାରଣ କରିନାହାନ୍ତି, ସେଥିପାଇଁ ଅବିଚଳିତ ଭାବରେ ସେ ଜାରି ରଖିଛନ୍ତି ତାଙ୍କ ନିରପେକ୍ଷ ସମାଲୋଚ୍ଚନାର ଧାରା ଏବଂ ସୁଚାରୁରୂପେ ପାଳନ କରିଛନ୍ତି ଜଣେ

ସଚ୍ଚା ସମାଲୋଚକର ଧର୍ମ । 'ସବୁଜରୁ ସାଂପ୍ରତିକ' ହେଉଛି ସେହି ନିୟତ ପ୍ରତିବଦ୍ଧତାର ଏକ ଅମଳିନ ଆଲେଖ୍ୟ । ଯେଉଁ ଦୁର୍ବାର ସାହସ ଓ ତଥ୍ୟଗତ ଯୁକ୍ତିରେ ସେ ସବୁଜକୁ ଏକ ଯୁଗ ନୁହେଁ ଯୁଗାଭାସ ବୋଲି ସ୍ଥାପନ କଲେ ତାହା ପାଠକ ଓ ସମାଲୋଚକମାନଙ୍କୁ ସମ୍ଭବତଃ ସ୍ତବ୍ଧ କରିଦେଲା । ପ୍ରତିଷ୍ଠିତ କବି ଓ ସମାଲୋଚକ ଡଃ ମାୟାଧର ମାନସିଂହଙ୍କ ଠାରୁ ହିଁ ଆରମ୍ଭ କରିବା, ନିର୍ଭୀକତାର ନିତ୍ୟାନନ୍ଦୀୟ ଦର୍ପିତ ସମାଲୋଚନାର ସେହି ଉଦାତ୍ତ ଆହ୍ୱାନ । "ମୁଁ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତା ମାୟାଧର ମାନସିଂହଙ୍କ ମନ୍ତବ୍ୟ ସହିତ ଆଦୌ ଏକମତ ହୋଇପାରୁ ନାହିଁ ଯେ, 'କାଳିନ୍ଦୀଚରଣ ତାଙ୍କ କବିତାକୁ ବୌଦ୍ଧିକ ମର୍ଯ୍ୟାଦା ଦେବାକୁ ଚେଷ୍ଟା କରି ତାକୁ କେବଳ ଶସ୍ତା ଓ ଦୁର୍ବଳ ପ୍ରୋପାଗଣ୍ଡାରେ ପରିଣତ କରିଛନ୍ତି । ଏବଂ ତାଙ୍କ କବିତା ପ୍ରାୟ ଉଷ୍ମ ସ୍ପର୍ଶହୀନ ଓ ଅସାବଲୀଳ' । ଏହି ଏକଦେଶଦେର୍ଶୀ ମନ୍ତବ୍ୟ କାଳିନ୍ଦୀ କାବ୍ୟ-ସାଧନ ପ୍ରତି ସମାଲୋଚକର ଏକ ଆକ୍ରୋଶମୂଳକ କଳନା ପରି ମନେହୁଏ ।" ସେଥିପାଇଁ ତାଙ୍କର ଏ ପ୍ରଥମ ଅଧ୍ୟାୟ ଦୀର୍ଘ ଆଲେଖ୍ୟ ଏକ ଐତିହାସିକ ଉପାଦେୟତାର ଭାବଭୂମି । ସମଗ୍ର ପୁସ୍ତକଟି ଆଧୁନିକ କବିତାର ଭିତ୍ତିଭୂମି ବୋଲି ଅନାୟାସରେ କୁହାଯାଇପାରେ । ସାହିତ୍ୟ ସମାଲୋଚନାରେ ଅସୂୟା ଆକ୍ରୋଶ ସୃଷ୍ଟିକରେ ଯେଉଁ ବିଭ୍ରାଟ ତାହା ପ୍ରତିଷ୍ଠା କରିଥାଏ ଏକ ପରିପନ୍ଥୀ ପରଂପରା, ଯାହା ସାହିତ୍ୟର ଧାରା ପାଇଁ ଆଦୌ ଶୁଭଙ୍କର ନୁହଁ । କବି କାଳିନ୍ଦୀ ଚରଣଙ୍କ ପକ୍ଷ ସମର୍ଥନ କରିବାକୁ ଯାଇ ତେଣୁ ଏହି ପୃଷ୍ଠଭୂମିରେ ସମାଲୋଚକ ଶତପଥୀଙ୍କୁ ପ୍ରତିସ୍ପର୍ଦ୍ଧାର ଆହ୍ୱାନ ଉଠାଇବାକୁ ପଡ଼ିଛି ।

ଅନୁରୂପ ଏକ ପ୍ରସଙ୍ଗ ବୈକୁଣ୍ଠନାଥଙ୍କ ପରିପ୍ରେକ୍ଷୀରେ ଉଲ୍ଲେଖ କରିବାକୁ ଚାହିଁ ବି, ଯେଉଁଠି ପୁନଶ୍ଚ ପ୍ରତିଧ୍ୱନିତ ହୋଇଛି ଶ୍ରୀଯୁକ୍ତ ଶତପଥୀଙ୍କ ସାରସ୍ୱତ ପ୍ରତିବାଦର ଆହ୍ୱାନ । ଏଠାରେ ମଧ୍ୟ ରହିଛି ଡକ୍ଟର ମାନସିଂହ କଟାକ୍ଷ ବିରୋଧରେ ସମାଲୋଚକର ଗଠନମୂଳକ ପ୍ରତିକ୍ରିୟା । କବି ବୈକୁଣ୍ଠନାଥଙ୍କ କବିତାକୁ ଐତିହାସିକ ମାନସିଂହ (Dogrel) ଭାବରେ ଆଖ୍ୟାୟିତ କରିବାର ଘଟଣା, ଶ୍ରୀଯୁକ୍ତ ଶତପଥୀଙ୍କୁ ଗଭୀର ଭାବରେ ମର୍ମାହତ କରିଛି । ଡଗ୍ରେଲ୍ କହିଲେ ବାଜେ କବିତା ବା ଚଲୁ କବିତାକୁ ବୁଝାଏ । ବୈକୁଣ୍ଠନାଥ କ'ଣ କେବଳ ପଦକୁ ପଦ ମିଳେଇ ରଚନା କରିଛନ୍ତି ଗୁଡ଼ାଏ ମାମୁଲି କବିତା ? ସୃଜନକଳା ଦୃଷ୍ଟିରୁ କ'ଣ ସତରେ ସର୍ବାଦୌ ମହତ୍ତ୍ୱପୂର୍ଣ୍ଣ ହୋଇପାରେ ନାହିଁ ଏହି ପ୍ରଖ୍ୟାତ ସବୁଜ କବିଙ୍କ କାବ୍ୟସମ୍ଭାର ? କିଛି ବି ବୈଚିତ୍ର୍ୟ ନାହିଁ ତାଙ୍କର କୌଣସି କବିତାରେ ? ?

"ଏହି (ବୈକୁଣ୍ଠ) କାବ୍ୟମାନସର ଗତିଶୀଳତା ଓ ବୈଚିତ୍ର୍ୟକୁ ଅନୁଧ୍ୟାନ ନ କରି ଓ ଏହା ଉପରେ ଥିବା ଘଟଣା ପ୍ରବାହର ଇତିହାସକୁ ଉପଲବ୍ଧି ନ କରି ତାଙ୍କ କବିତାକୁ 'ଡଗ୍ରେଲ୍' କହିଦେଲେ ଆମ କଳନା (Estimation) ର ଭାରସାମ୍ୟହୀନ ଏକଦେଶଦର୍ଶିତା ହିଁ ପ୍ରକାଶ ପାଇବ (ପୃଷ୍ଠା-୩୬)" । କବିତାର ମହତ୍ତ୍ୱ ଖାଲି ପରିପାଟୀରେ

ନଥାଏ, ଥାଏ ତା'ର ଭାବପକ୍ଷରେ ବି । ଯେଉଁ ପୃଷ୍ଠଭୂମି ଓ ପ୍ରସଂଗକୁ ପ୍ରତିଫଳିତ କରୁଛି ଗୋଟିଏ କବିତା ତାହାହିଁ ହେଉଛି ଗୋଟିଏ ଭଲ କବିତାର ମୂଳ ଗୌରବ । ଭାବବସ୍ତୁକୁ ବିଚାରକୁ ନ ନେଇ ଆଙ୍ଗୀକର ଆଧାରରେ କେବଳ କବିତାର ମୂଲ୍ୟାୟନ କାର୍ଯ୍ୟଟି ନିଶ୍ଚୟ ହେବ ଅପରିଣାମଦର୍ଶିତାର ଦୋଷରେ ପକ୍ଷପାତପୂର୍ଣ୍ଣ ଓ ଏକଦେଶଦର୍ଶୀ । ଖୁବ୍ ରୋକ୍ ଠୋକ୍... ଭାରି କଠୋର, ଏଭଳି କ୍ଷେତ୍ରରେ ସମାଲୋଚକ ଶ୍ରୀଯୁକ୍ତ ଶତପଥୀ ।

ଦିଗ୍‌ଗଜ କବି ସଚ୍ଚି ରାଉତରାୟଙ୍କ କେତେକ କବିତାର ଆଲୋଚନା ପ୍ରସଂଗରେ ବି ସମାଲୋଚକ ଶତପଥୀଙ୍କ କଠୋର ଚେତାବନୀ ଶୁଣାଯାଏ । କବିଟିଏ ମଧ ତା'ର ସୀମା ଓ ଦାୟିତ୍ୱ ସଂପର୍କରେ ସଚେତନ ହେବା ଉଚିତ । କବିତା ନାଁରେ କୌଣସି ପ୍ରକାର ଅପକୌଶଳ ମଧ କବିତାର ସ୍ୱଚ୍ଛନ୍ଦ ଗତିରେ ସୃଷ୍ଟି କରିଥାଏ- ଅଯଥା ସ୍ୱୈରାଚାରୀ ସ୍ଖଳନ । କବିତା କୌଶଳ ନୁହେଁ କଳା । ଶ୍ରମ ନୁହେଁ ସାଧନା । ସ୍ୱଚ୍ଛନ୍ଦତା ଏହାର ଧର୍ମ, ପ୍ରୟୋଗ ଓ ପରୀକ୍ଷା ନିରୀକ୍ଷାର ବୌଦ୍ଧିକ ଆୟାସ, କବିତାର ସାବଲୀଳତାରେ ସୃଷ୍ଟି କରେ ଜଟିଳତା । ସମାଲୋଚକର ଦାୟିତ୍ୱବୋଧଟି ମଧ ଏହି ଦିଗରେ ସଚେତନ ନ ରହିଲେ, କବିତାର ଧାରାରେ ସୃଷ୍ଟି ହୁଏ ଯଥେଚ୍ଛାଚାର । କବିତା ୧୯୬୨ରେ ସନ୍ନିହିତ (ଦର୍ପଣ) ଏବଂ 'ସ୍ୱଗତ' ର 'ଶୀତ' କବିତା ପ୍ରସଂଗରେ ନିଜର ପ୍ରତିକ୍ରିୟା ପ୍ରକାଶ କରିବାକୁ ଯାଇ ସମାଲୋଚ୍ କହିଛନ୍ତି, "ଏହା ଏକ ମନନଶୀଳ କାବ୍ୟପ୍ରତ୍ୟୟ ନାଁ ପାଠକ ପ୍ରତି ଏକ ଅତ୍ୟାଚାର- ତାହା ବୁଝିହୁଏନା (ପୃଷ୍ଠା-୨୭୬) ।"

ଭଲ କବିତାର ପକ୍ଷରେ ଥାଇ ରୁଗ୍‌ଣ ସମାଲୋଚନାର ବିରୁଦ୍ଧରେ ଯେମିତି ସମାଲୋଚକ ଶତପଥୀ ଯୁଦ୍ଧଂଦେହୀ ଆହ୍ୱାନ ଦିଅନ୍ତି, ଠିକ୍ ସେମିତି 'କବିତା' ନାଁରେ 'ଅକବିତା' ରଚନାର ଆସ୍ପର୍ଦ୍ଧା ବିରୁଦ୍ଧରେ ବି ସେମିତି ଶୁଣାଇଥାନ୍ତି କଠୋର ଚେତାବନୀ, ତାହା ପୁଣି ପ୍ରତିଷ୍ଠିତ କବିଙ୍କର ଏତାଦୃଶ ଅପକୌଶଳ ବିରୁଦ୍ଧରେ । ସଚ୍ଚି ରାଉତରାୟଙ୍କ କବିତା-୧୯୬୨ରେ ସ୍ଥାନିତ କେତେକ କବିତାର ସମୀକ୍ଷା କାଳରେ ତାଙ୍କର ସ୍ପର୍ଦ୍ଧିତ ମନ୍ତବ୍ୟ ଅବଶ୍ୟ ଉଲ୍ଲେଖନୀୟ, "ଏପରି ଭାଷଣପ୍ରଧାନ ଶୈଳୀରେ ପ୍ରବନ୍ଧ ବା ସଭାମଞ୍ଚରେ ବକ୍ତବ୍ୟ ଦିଆଯାଇପାରେ; କିନ୍ତୁ କବିତା ଉତୁରିବା କଷ୍ଟ । ××× ଏହା ଶୁଷ୍କ ଗଦ୍ୟର ଏତେ ନିକଟବର୍ତ୍ତୀ ଯେ ଗଦ୍ୟ ଓ ପଦ୍ୟର ସମସ୍ତ ବ୍ୟବଧାନକୁ ଏହା ଭାଂଗିଦିଏ । ବାକ୍‌ରୀତିକୁ ସିଧା ପ୍ରକାଶ କରିଦେବା କବିତା ନୁହେଁ (ପୃ-୨୭୭)" ।

କବି ପ୍ରତିଭା ପ୍ରତି ଯେଉଁଠି ପୁଣି ଅବିଚାର କରିଛି ସାହିତ୍ୟର ଆଲୋଚକ, ସେଇଠି ଏଭଳି ଚିହ୍ନିକି ଆସୁଛି ପ୍ରଫେସର ଶତପଥୀଙ୍କ ପ୍ରତିପକ୍ଷ ପ୍ରତି ଲେଖନୀର ତେଜସ୍ୱୀ ପ୍ରତିବାଦ; ଯେମିତିକି କବିପଣକୁ ସୁରକ୍ଷା ପ୍ରଦାନ କରିବାର ଦାୟିତ୍ୱ ନ୍ୟସ୍ତ କରିଛି ଇତିହାସ- ତାଙ୍କରି କାନ୍ଧରେ । ସେଇଠି ସେ ଭୁଲିଯାଇଛନ୍ତି ପ୍ରତିଷ୍ଠା ଓ ପ୍ରତିପତ୍ତିର ସବୁ ପ୍ରତିଆକ୍ରମଣାତ୍ମକ ପରିଣତି । ଭୁଲି ଯାଇଛନ୍ତି ସବୁ ମୁହଁ ମୁଲାଜାର ସଂପର୍କ । କବି ରଘୁନାଥ ଦାସଙ୍କୁ ଆମର

ଇତିହାସ କରି ଆସିଥିବା ଅବହେଳା ପ୍ରତି ତେଣୁ ଜବାବ ଦେବାକୁ ଯାଇ ସେ ଘୋଷଣା କରିଛନ୍ତି ତାଙ୍କ 'ସବୁଜରୁ ଓ ସାଂପ୍ରତିକ' ପୁସ୍ତକର ପୃଷ୍ଠାରେ କେମିତି ଦେଖନ୍ତୁ- "ଭାବ ଓ ଶୈଳୀର ଚମତ୍କାର କଳାତ୍ମକ ସମନ୍ୱୟରେ ତାଙ୍କର (ରଘୁନାଥ ଦାସ) ପ୍ରତିଟି କବିତା ପାଠକ ମନରେ ସ୍ଥାୟୀ ପ୍ରଭାବ ସୃଷ୍ଟି କରିବାକୁ ସକ୍ଷମ । ଅଥଚ୍ ଆଶ୍ଚର୍ଯ୍ୟର ବିଷୟ ହେଉଛି, ଏହିପରି ଜଣେ ଶକ୍ତିଶାଳୀ କବିଙ୍କ ସଂପର୍କରେ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତା ଡକ୍ଟର ମାୟାଧର ମାନସିଂହ ଓ ତରୁଣ ସମାଲୋଚ଼କ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ (ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚ଼ୟ) ସଂପୂର୍ଣ୍ଣ ନିରବତା ଅବଲମ୍ବନ କରିଛନ୍ତି । ଓଡ଼ିଆ ସାହିତ୍ୟର ଏହି ଇତିହାସଗୁଡ଼ିକ ଏକ ବଳିଷ୍ଠ କାବ୍ୟଧାରାର ନିଷ୍ଠାପର ଅଗ୍ରଦୂତଙ୍କୁ ଲୋକଲୋଚ଼ନକୁ ଆଣି ନପାରି ନିଜର ଅପୂର୍ଣ୍ଣତା ସ୍ୱତଃ ପ୍ରତିପାଦିତ କରିଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ (ପୃ-୩୧୯) ।"

ଅନ୍ୟଜଣେ ଅନାଲୋଚ଼ିତ କାବ୍ୟପ୍ରତିଭା ହେଉଛନ୍ତି କବି ବିନୋଦ ଚନ୍ଦ୍ର ନାୟକ, ଯାହଙ୍କ ସୃଜନ ଶିଳ୍ପର ଯଥାର୍ଥ ମୂଲ୍ୟାୟନ ଦିଗରେ ଅସମର୍ଥ ହୋଇଛି ଓଡ଼ିଆ ସମାଲୋଚ଼ନା ସାହିତ୍ୟର ପରମ୍ପରା । ଏତାଦୃଶ ଅବହେଳା ଓ ବିମୁଖତା ବିରୁଦ୍ଧରେ ତେଣୁ ଅତି ସ୍ୱାଭାବିକ ଭାବରେ ଶ୍ରୀଯୁକ୍ତ ଶତପଥୀ ସମାଲୋଚ଼କୀୟ ପ୍ରତିକ୍ରିୟା, ବିନୋଦଙ୍କ ସୃଜନ ସଂଭାବନାର ସପକ୍ଷରେ ଦୃଢ଼ତାର ସହିତ ହୋଇଛି ଦଣ୍ଡାୟମାନ । କବିପ୍ରତିଭା ପ୍ରତି ଯଥାର୍ଥ ନ୍ୟାୟ (Justice) ପ୍ରଦାନ ଦିଗରେ ଏହି ଯେଉଁ ଉଦ୍ୟମ, ତାହା ଏକ ସୁସ୍ଥ ଓ ବ୍ୟବସ୍ଥିତ ସମାଲୋଚ଼ନା ପଦ୍ଧତିର ଭିତ୍ତିଭୂମି ପ୍ରତିଷ୍ଠା କ୍ଷେତ୍ରରେ ହୋଇଛି ସହାୟକ । ଏକଥା ସତ ଯେ ଏମିତି ଅନେକ ଅଛନ୍ତି କବିପ୍ରତିଭା, ଯେଉଁମାନେ କି ଉପେକ୍ଷିତ ହୋଇ ରହିଛନ୍ତି ସମାଲୋଚ଼କର ଦୃଷ୍ଟି ଉହାଡ଼ରେ, ଆଉ ଦୁର୍ଭାଗ୍ୟ ଦୁଃଖକୁ ଆବୋରି ସାରସ୍ୱତ ଅବହେଳାର କାରଣରୁ ହଜାଇ ବସିଛନ୍ତି ସେମାନଙ୍କ ଯଥାର୍ଥ ପ୍ରାପ୍ୟ-ଇତିହାସର ବିଡ଼ମ୍ବିତ ଅଧ୍ୟାୟରେ ।

"ଡକ୍ଟର ମାନସିଂହଙ୍କ ଅଭିଯୋଗ ଓ ସୁରେନ୍ଦ୍ର ମହାନ୍ତିଙ୍କ କବିପକ୍ଷ ସମର୍ଥନ - ଏଇ ଦୁଇ ବିବଦମାନ ଚିନ୍ତାଧାରା ଭିତରେ ଶ୍ରୀ ନାୟକଙ୍କ କବିତାର ଯଥାଯଥ କଳନା ହୋଇପାରି ନଥିବା ତାଙ୍କ କାବ୍ୟ ପରିକ୍ରମାରୁ ସ୍ପଷ୍ଟ ହୁଏ । ସେ ତାଙ୍କ କବିତାରେ ଯେତିକି ସ୍ୱପ୍ନ ପ୍ରବଣ ରୋମାଣ୍ଟିକ୍, ପରିଣତ ବୟସର ରଚ଼ନାରେ ସେତିକି ବାସ୍ତବତା ସଚ଼େତନ ଓ ସମାହିତ । ତାଙ୍କୁ ନିଛକ 'ବୈଦେଶିକୀ' କହିବା ଯେପରି ତ୍ରୁଟିପୂର୍ଣ୍ଣ, ତାଙ୍କ କବିତାରେ ପ୍ରକାଶ ପାଇଥିବା ପଳାୟନର ସ୍ୱର, ସମୟର ପ୍ରୟୋଜନୀୟତା ବୋଲି କହିବା ସେହିପରି ଆସକ୍ତି ସୂଚ଼କ (ପୃ-୩୭୦) ।" ଆସକ୍ତ ଓ ନିରାସକ୍ତ ଭାବଟି ତେଣୁ ସଦା ସୁସ୍ଥ ସମାଲୋଚନାର ପରିପନ୍ଥୀ ବୋଲି ଏହି ପ୍ରସଙ୍ଗରେ ପ୍ରମାଣିତ କରିବାକୁ ଚାହିଁଛନ୍ତି ଶ୍ରୀଯୁକ୍ତ ଶତପଥୀ । ପ୍ରତିଷ୍ଠିତ ସମାଲୋଚ଼କ ସୁରେନ୍ଦ୍ର ମହାନ୍ତି ହେଉନ୍ତୁ କି ଡ. ମାୟାଧର ମାନସିଂହ ଅଥବା ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ପ୍ରତ୍ୟେକଙ୍କ ସମାଲୋଚ଼କୀୟ ଦୃଷ୍ଟିଭଂଗୀକୁ ଦୃଢ଼ତାର

ସହିତ ସମାଲୋଚ଼ନାର କାଠଗଡ଼ାରେ ଠିଆ କରାଇ, ଜଣେ ସାରସ୍ୱତ ଅଧିବକ୍ତା' (Advocate) ଭାବରେ ସେ କରିଛନ୍ତି ରୀତିମତ ଜବାବ ସୁଆଲ ।

ପ୍ରଥିତଯଶା କବି ଗୁରୁପ୍ରସାଦଙ୍କ କବିତାର ଆଲୋଚ଼ନା କାଳରେ ଅନୁରୂପ ପ୍ରତିକ୍ରିୟା ପ୍ରକାଶ ମଧ କରିଛନ୍ତି ସମାଲୋଚ଼କ ଶତପଥୀ । ଆଧୁନିକ ଓଡ଼ିଆ ସାହିତ୍ୟ ସମାଲୋଚ଼ନାର ଅନ୍ୟତମ ସ୍ରଷ୍ଟାପୁରୁଷ ଶ୍ରୀଯୁକ୍ତ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ତ୍ରୁଟିପୂର୍ଣ୍ଣ ମନ୍ତବ୍ୟ କ୍ଷେତ୍ରରେ ସେ ନିରବ ରହିନାହାନ୍ତି । ସ୍ୱାଭାବିକ ଭାବରେ ସେ ଏହାର ପ୍ରତିବାଦ କରିବାକୁ ଯାଇ ଉଲ୍ଲେଖ କରିଛନ୍ତି ଏ ରୂପେ- "କିନ୍ତୁ ସମାଲୋଚ଼କ ଶ୍ରୀ ମହାନ୍ତି (ଯତୀନ୍ଦ୍ର ମୋହନ) ବୋଧହୁଏ ଅତିରିକ୍ତ ଆସକ୍ତି ହେତୁ ତାଙ୍କ ମନ୍ତବ୍ୟରେ ନିରପେକ୍ଷତା ରକ୍ଷା କରି ପାରିଥିବା ମନେହୁଏ ନାହିଁ । କାରଣ ସେ ଯାହାକୁ 'ପ୍ରୋପାଗଣ୍ଡା ଆର୍ଟ' ବା 'ପଦ୍ମଭୁକ୍' ସାହିତ୍ୟ ଆଖ୍ୟା ଦେଇଛନ୍ତି- ତାର ପରବର୍ତ୍ତୀ ପଦକ୍ଷେପ କେଉଁପରି ଭାବରେ ଆଧୁନିକ ଓଡ଼ିଆ କବିତାର ସାଂପ୍ରତିକ ସ୍ୱରକୁ ନିୟନ୍ତିତ କରିଛି - ତାହା ପ୍ରତି ସେ ସଂପୂର୍ଣ୍ଣ ଉଦାସୀନତା ପ୍ରକାଶ କରିଛନ୍ତି (ପୃ-୪୮୩) ।"

ଯଥାସମ୍ଭବ ତେଣୁ ନିରପେକ୍ଷତାର ମାର୍ଗ ଅନୁସରଣ କରିଥାଏ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚ଼ନାର ପ୍ରବର୍ତ୍ତିତ ଧାରା । ସମାଲୋଚନା ପାଇଁ ଲେଖନୀ ଧାରଣ କରିବା ମାତ୍ରକେ ସେ ଭାବପ୍ରବଣତାର ପରିଧି ଉର୍ଦ୍ଧ୍ୱକୁ ଅତିକ୍ରମ କରିଯିବାର ପ୍ରୟାସ କରନ୍ତି । ସମାଲୋଚ଼ନାର ଏଭଳି ପ୍ରୟାସ ଏକ କଠିନତର ବ୍ୟାପାର । ମଣିଷ ମାତ୍ରକେ ପୁଣି ଥାଏ କିଛି ନା କିଛି ଆବେଗିକ ଦୁର୍ବଳତା, ଯାହାକୁ ଏଡ଼ିଯିବା ଆଦୌ ସହଜସାଧ କଥା ନୁହେଁ । ମାତ୍ର ସମାଲୋଚ଼ନା କାଳରେ ସେ ସର୍ବଦା ନିଜକୁ ଅଧିଷ୍ଠିତ କରିଦିଅନ୍ତି ଜଣେ ନିଷ୍ପାପର ନ୍ୟାୟଧୀଶ ଆସନରେ । ଆଖିରେ ବାନ୍ଧି ଦିଅନ୍ତି ନ୍ୟାୟଦେବୀଙ୍କ ଅନ୍ଧପୁଚୁଳି, ଯାହାକୁ ଅତିକ୍ରମ କରି ସେ ସବୁ ସଂପର୍କ ଓ ମୋହବତ୍‌ର ଆବେଗିକ ଭାବବନ୍ଧନକୁ ସହଜରେ ଟାଳି ଦେଇପାରନ୍ତି । ଏଭଳି ନିରପେକ୍ଷ ସମାଲୋଚ଼ନା କେବଳ ପ୍ରଫେସର ଶତପଥୀଙ୍କ ଦ୍ୱାରା ସମ୍ଭବ ହୋଇପାରେ । ସେଇଥିପାଇଁ ସେ ସଦା ସ୍ୱତନ୍ତ୍ର ଓ ଅଭିନବ - ଓଡ଼ିଆ ସାହିତ୍ୟର ଇତିହାସରେ ।

## କାବ୍ୟିକ ନ୍ୟାୟ:

ସମାଲୋଚ଼ନାର ଏକ ବଡ଼ ଦିଗ ହେଉଛି 'କାବ୍ୟିକ ନ୍ୟାୟ' (Poetic Justice) । ଅର୍ଥାତ୍ ସାରସ୍ୱତ ସ୍ରଷ୍ଟାର ଶ୍ରମ ଓ ସାଧନାକୁ ପ୍ରାପ୍ତ ହୋଇ ନଥାଏ ପାର୍ଥିବ ପ୍ରାପ୍ୟ କିଛିବି । ପ୍ରାପ୍ତିର ବି ଆଶା ନଥାଏ ଜଣେ ସୃଜନଶିଳ୍ପୀର ଆଦୌ । ସୃଜନ କ୍ରିୟା ହେଉଛି ଏକ ଆବେଗିକ ଉଦ୍‌ବୋଧନ । ସାରସ୍ୱତ ବିଦ୍ୟାର ଏହି ସାଧନା ହିଁ ହେଉଛି ଏକ କଳାତ୍ମକ ତପସ୍ୟା କେବଳ । ଗଣଜୀବନର କଲ୍ୟାଣ, ସାମାଜିକ ପରିବର୍ତ୍ତନ ତଥା ସାଂସ୍କୃତିକ ଆବେଦନର ସଂସ୍ଥିତି ସାଧନ ଅଭିଳାଷରୁ ହିଁ ଆତ୍ମପ୍ରକାଶ କରିଥାଏ- ସାହିତ୍ୟ

ସୃଷ୍ଟି । ଫଳସ୍ୱରୂପ, ସମସ୍ତ ସାଂସାରିକ ଦାବି ଏବଂ ବସ୍ତୁବାଦୀ ପ୍ରୟୋଜନର ପରିପୂରଣ କ୍ଷେତ୍ରରେ ସେ ହୋଇଥାଏ ସଦା ବଞ୍ଚିତ । ପ୍ରାପ୍ତି ଅପେକ୍ଷା ଅପ୍ରାପ୍ତିର ନିୟତିଟି ହେଉଛି ଏକାନ୍ତ ଅବଧାରିତ ତେଣୁ ଜଣେ ସ୍ରଷ୍ଟାର ଜୀବନରେ । ଅଥଚ୍ ତାର ଏହି ଜାଗତିକ ନିଃସ୍ୱତାର ଏକମାତ୍ର କ୍ଷତିପୂରଣ ସ୍ୱରୂପ ଲେଖକଟିଏ ତାର ସାରସ୍ୱତ ସୃଷ୍ଟି ନିମନ୍ତେ ଯଥାଯଥ ମୂଲ୍ୟାୟନର ଅପେକ୍ଷା ରଖିଥାଏ । ସୃଷ୍ଟିର ଯଥାର୍ଥ ମୂଲ୍ୟାୟନ ହେଉଛି ତାର ଏକମାତ୍ର ପ୍ରାପ୍ୟ । ସ୍ରଷ୍ଟାର ଏହି ପ୍ରାପ୍ୟଟିକୁ ପ୍ରଦାନ କରିଥାଏ ଜଣେ ସନ୍ନିଷ୍ଠ ସମାଲୋଚକ କେବଳ । ଏତାଦୃଶ କାବ୍ୟିକ ନ୍ୟାୟ ହିଁ ସ୍ରଷ୍ଟାକୁ ପ୍ରଦାନ କରିଥାଏ ସର୍ବଶ୍ରେଷ୍ଠ ଆତ୍ମିକ ସନ୍ତୋଷ । ସାରସ୍ୱତ ସ୍ରଷ୍ଟାର ସାମଗ୍ରିକ ଶ୍ରେୟ ଟିକକ ତେଣୁ ନିହିତ ଥାଏ ସୁଯୋଗ୍ୟ ସମାଲୋଚକର କାବ୍ୟିକ ନ୍ୟାୟ ପ୍ରତିପାଦନ ଜନିତ ସମର୍ଥ କଳା କୌଶଳ ଭିତରେ ।

ସବୁଜ ଯୁଗର ବିଶିଷ୍ଟ ପ୍ରବକ୍ତା କବି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ କାବ୍ୟଚେତନାର ବୈଶିଷ୍ଟ୍ୟ ନିରୂପଣ କାଳରେ ସମାଲୋଚକ ନିତ୍ୟାନନ୍ଦ ଶତପଥୀ ଯେଉଁ ଯୁକ୍ତି ଉପସ୍ଥାପନ କରିଛନ୍ତି, ତାହା ଏହି ପୃଷ୍ଠଭୂମିରେ ଅନନ୍ୟ ଓ ପଟାନ୍ତରହୀନ । କାଳିନ୍ଦୀ କାବ୍ୟମାନସର ସେଇ ଅନବଦ୍ୟ ସ୍ୱାତନ୍ତ୍ର୍ୟ ଟିକକ ହେଉଛି, ତାଙ୍କ ସୃଜନ ସମ୍ଭାବନାର ସମ୍ୱଳ; ଯାହାକୁ ଅତି ସତର୍କତାର ସହିତ ଆବିଷ୍କାର କରିଛନ୍ତି ଶ୍ରୀଯୁକ୍ତ ଶତପଥୀ । "କବି କାଳିନ୍ଦୀ ଚରଣ ମୁକ୍ତଛନ୍ଦ ପ୍ରୟୋଗ କରି କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ବହୁ ଆଗରୁ ଆଧୁନିକ ଓଡ଼ିଆ କବିତାକୁ ଏକ ନୂତନ ମାନଚିତ୍ର ଦେଖାଇଛନ୍ତି - ଏକଥା ସ୍ୱୀକାର କରିବାକୁ ହେବ । ପୁନଶ୍ଚ 'ପୁରୀ ମନ୍ଦିର' କବିତାରେ ସେ ଯେଉଁ ଓଲଟ ତ୍ରିଭୁଜ ପରି ମୁକ୍ତଛନ୍ଦ ପ୍ରୟୋଗ କରିଛନ୍ତି, ତାହା ଏବେବି ଅନତିକ୍ରମଣୀୟ ହୋଇ ରହିଛି (ପୃ-୪୦) ।" କବିତାରେ ମୁକ୍ତଛନ୍ଦର ପ୍ରବର୍ତ୍ତକ ତେଣୁ ସଚ୍ଚିରାଉତରାୟ ହୋଇ ନପାରନ୍ତି, ଅଧିକନ୍ତୁ ଛନ୍ଦଗତ ପ୍ରୟୋଗର ଅଭିନବତା କ୍ଷେତ୍ରରେ କାଳିନ୍ଦୀଙ୍କ ଅବଦାନ ହେଉଛି ଅଧିକ ସ୍ୱତନ୍ତ୍ର ! ମୁକ୍ତଛନ୍ଦ ପ୍ରଣୟନର ଶ୍ରେୟ ତେଣୁ କାଳିନ୍ଦୀଙ୍କର ହିଁ ପ୍ରାପ୍ୟ ।

କବିର ମୌଳିକ ବିଶେଷତ୍ୱ ଅନୁସନ୍ଧାନ, ଏବଂ କାବ୍ୟଧାରା ପ୍ରତିଷ୍ଠା ଦିଗରେ ତାଙ୍କର ଅନବଦ୍ୟ ଅବଦାନଟିକୁ ହିଁ ଅତି ସତର୍କତାର ସହିତ, ଆପଣା ବିଚକ୍ଷଣ ଅନୁସନ୍ଧିତ୍ସାର ଉପଯୋଗ ପୂର୍ବକ; ପ୍ରତିପାଦିତ କରିବା କ୍ଷେତ୍ରରେ ସମାଲୋଚକ ଶତପଥୀଙ୍କର ସ୍ଥାନ ହେଉଛି ଓଡ଼ିଆ ସାହିତ୍ୟର ଇତିହାସରେ ଏକାବେଳକେ ଭିନ୍ନ ଓ ସ୍ୱତନ୍ତ୍ର; ଉପର ଠାଉରିଆ (Superficial) ସମାଲୋଚନାର ସେ ପକ୍ଷପାତୀ ନୁହନ୍ତି କଦାପି । ତାଙ୍କ ସମାଲୋଚନାର ଏଣ୍ଡୋସ୍କୋପିକ୍ ଦୃଷ୍ଟି ଆଲୋଚ୍ୟ ସୃଜନଶିଳ୍ପର ଗଭୀରତମ ପ୍ରଦେଶକୁ ଅନୁପ୍ରବେଶ କରିବା ସହିତ, ତନ୍ନତନ୍ନ ଅନୁଧାନର ନିଷ୍କର୍ଷରେ ହୋଇଥାଏ ପ୍ରମାଣସିଦ୍ଧ । ସତ୍ୟବାଦୀ ଯୁଗର ଅନ୍ୟତମ ଓ ଅନନ୍ୟ କାବ୍ୟପ୍ରତିଭା କବି ଗୋଦାବରୀଶ ମହାପାତ୍ରଙ୍କ ସୃଷ୍ଟିର ଆକଳନ କ୍ଷେତ୍ରରେ ଏହି ସତ୍ୟଟି ହିଁ ଅଧିକତର ଭାବରେ ଓ ସ୍ପଷ୍ଟ ରୂପେ ପ୍ରମାଣିତ ହୋଇଛି ।

'ବଙ୍କା ଓ ସିଧା' କବିତା ସଂକଳନର ଅନୁଶୀଳନ କାଳରେ ସମାଲୋଚକ ଶ୍ରୀଯୁକ୍ତ ଶତପଥୀ, ଗୋଦାବରୀଶ ଚେତନାରେ ଆତ୍ମଗୋପନ କରିଥିବା ତାଙ୍କ କବିପଣର ଚୂଡ଼ାନ୍ତ ସାର୍ଥକତାଟିକୁ ଉନ୍ମୋଚିତ କରିଛନ୍ତି । କବିଙ୍କୁ ବିଚ୍ଚର କଲାବେଳେ ତାଙ୍କ କବିତାରେ ଏହି ଆଭିମୁଖ୍ୟ "(ଜାତିର ଚିନ୍ତାଧାରା ନିୟନ୍ତ୍ରିତ କରିବାରେ ଏ ସବୁ କବିତା ଜନମତକୁ କେତେଦୂର ପ୍ରଭାବିତ ଓ ପଲ୍ଲବିତ କରିପାରିଛି - ମୁଖବନ୍ଧ)ର ଭାବସତୀତ୍ୱ ପ୍ରତି ସହାନୁଭୂତିଶୀଳ ହେବାକୁ ପଡ଼ିବ ଏବଂ ତନ୍ମଧ୍ୟରେ କେତେଦୂର ସାର୍ବଜନୀନ ସତ୍ୟର ବିକାଶ ଘଟିଛି, ତାହା ପରୀକ୍ଷା କରିବାକୁ ହେବ । ଲେଖକଙ୍କ ଦୃଷ୍ଟିରେ ଅବହେଳିତ, ଅବଜ୍ଞାତ ଓ ବିଜ୍ଞାପିତ, ବିରାଟ, ସବୁ ବିଷୟବସ୍ତୁ ତା'ର ମୌଳିକ ରୂପ ନେଇ ଧରା ଦେଇଛନ୍ତି ଏବଂ ଜଣେ ଅଭିଜ୍ଞ ଆନାଟମିଷ୍ଟ ଭାବରେ ସେ ପ୍ରତ୍ୟେକ ଘଟଣାର ବିଶ୍ଳେଷଣ ଓ ବ୍ୟବଚ୍ଛେଦ କରି ତା'ର ନଗ୍ନ (crude) ରୂପକୁ ପ୍ରତିଭାତ କରିଛନ୍ତି (ପୃ-୮୫) ।"

ଗୋଦାବରୀଶଙ୍କ କବିତାର ଏହି ଅନ୍ତର୍ନିହିତ ସ୍ୱରୂପ ଉଦ୍‌ଘାଟନ କରିବାକୁ ଯାଇ ସ୍ୱୟଂ ସମାଲୋଚକ ଆପଣାକୁ ଜଣେ ସୁଦକ୍ଷ ଆନାଟମିଷ୍ଟ (ବ୍ୟବଚ୍ଛେଦକ) ଭାବରେ ହିଁ ଉପସ୍ଥାପିତ କରିଛନ୍ତି । ଅନ୍ତର୍ଭେଦୀ ଅନୁଶୀଳନର ଏତାଦୃଶ ପରଂପରାଟିଏ ପ୍ରତିଷ୍ଠା ଦିଗରେ ସିଏ ତେଣୁ ପାଳନ କରିଛନ୍ତି ଅଗ୍ରସାଧକର ଭୂମିକା । ଗୋଦାବରୀଶଙ୍କ କବିତାର ବିଶେଷତ୍ୱ ପ୍ରତିପାଦନ କାଳରେ ଶ୍ରୀଯୁକ୍ତ ଶତପଥୀଙ୍କ ବ୍ୟବଚ୍ଛେଦୀ ଆକଳନର ଅନ୍ୟଏକ ଦୃଷ୍ଟାନ୍ତ ଉଲ୍ଲେଖ କରିବାକୁ ସମୀଚୀନ ମନେକରୁଛି ମୁଁ ଏହି ପୃଷ୍ଠଭୂମିରେ । "ଯୁଗେ ଯୁଗେ କବି ଯନ୍ତ୍ରଣା-ଜର୍ଜର ହୋଇ ବି ମାନବସମାଜ ପାଇଁ ସ୍ନେହ-ପ୍ରେମ ଓ ମମତାର ବାଣୀ ପ୍ରଚ୍ଚର କରିଛି ଓ ସାରସ୍ୱତ ସନ୍ଧାନରେ ବ୍ରତୀ ହୋଇଛି । ଏକ ତୀବ୍ର କର୍ତ୍ତବ୍ୟବୋଧରେ ତା'ର ସୌନ୍ଦର୍ଯ୍ୟ ସନ୍ଧାନୀ କବି-ପ୍ରକୃତି ତେଣୁ ସ୍ୱାଭାବିକ ଭାବରେ ପ୍ରତିହତ ହୋଇଛି । ଅତିରିକ୍ତ ଆବେଗପ୍ରବଣତା ଭିତରୁ ଏହି କାବ୍ୟମାନସର ଜନ୍ମ; କିନ୍ତୁ ସାମାଜିକ ବିଧି-ବ୍ୟବସ୍ଥା ଉପରେ ଆଘାତ ହାଣିବାରେ ତା'ର ପରିଣତି । ଆବେଗରେ ସେ ପ୍ରଗଲ୍‌ଭ; କିନ୍ତୁ ଅନୁଶୀଳନରେ ସେ ସ୍ଥିର ଲକ୍ଷ୍ୟ (ପୃ-୯୪) ।"

କବିତାର ଅନ୍ତଃସ୍ୱର ହିଁ ହେଉଛି କବିତାର ପ୍ରାଣସ୍ପନ୍ଦନ ଏବଂ କବିତାପଣର ଆତ୍ମିକ ବୈଶିଷ୍ଟ୍ୟ । ଯେଉଁଠି ଲିପିବଦ୍ଧ ହୋଇଛି ସୃଜନର ସଂଗୁପ୍ତ ସ୍ୱରୂପ, ସେଇଠି ହିଁ ନିବଦ୍ଧ ହୋଇଛି ସମାଲୋଚକ ଶତପଥୀଙ୍କର ଶାଣିତ ଦୃଷ୍ଟି । ସ୍ୱଭାବ-ସିଦ୍ଧ ଭାବରେ ତେଣୁ ସେ ବୀଜାଣୁବାହୀ ମାଛିଭଳି ପୂତିଗନ୍ଧଭରା ନର୍ଦ୍ଦମାକ୍ତ ଇଲାକାରେ ବିଚ୍ରଣ କରିବାକୁ ଆଦୌ ଉଚ୍ଚିତ ମଣିନାହାନ୍ତି, ମାତ୍ର ମହୁମାଛି ଭଳି ଖୋଜି ବୁଲିଛନ୍ତି କବିପଣର ଶ୍ରେୟ ଆଉ ସ୍ୱାତନ୍ତ୍ୟ । ଯେଉଁ ମାନସିଂହଙ୍କ ପକ୍ଷପାତ-ସମାଲୋଚ୍ନାକୁ ନିର୍ମମ ଭାବରେ ଆଘାତ କରିଛି ସମାଲୋଚକ, ସେହି ମାନସିଂହଙ୍କ କବିପଣର ଉଲ୍ଲସିତ ବିଭବକୁ ସେ ଶତମୁଖରେ କରିଛନ୍ତି ଅଭିବ୍ୟକ୍ତ । "ଏ କବି ବିପ୍ଳବୀ ନୁହେଁ, ସାମ୍ୟବାଦ ତା' କବିତାର ମନ୍ତ୍ର ବା

ସାଧନ ନୁହେଁ । ରୂପ ଓ ରୂପାତୀତର ବର୍ଣ୍ଣଳ ବିଭାରେ ତା'ର କବିତା ମୁଖ୍ୟତଃ ରମଣୀୟ ଓ ରସୋତ୍ତୀର୍ଣ୍ଣ । ××× ମାନବିକତାର ଅମ୍ଳାନ ଚିରନ୍ତନତାରେ ଏ ସ୍ୱର ଅତି ମାତ୍ରାରେ ସାର୍ବଜନୀନ । ଏହା ଝଡ଼ର ଝଂକାର ବା ବାତ୍ୟାର ବିକ୍ଷୋଭ ନ ହୋଇପାରେ; କିନ୍ତୁ ଏହି କାବ୍ୟପୁରୁଷର ଏହି ଅଭିବ୍ୟକ୍ତିରେ ଭରି ରହିଛି ଏହି ଅପାଂକ୍ତେୟ ମଣିଷମାନଙ୍କ ପାଇଁ ଆନ୍ତରିକ ସମ୍ବେଦନା- ଏହା ଭୁଲିବାର ନୁହଁ (ପୃ-୧୦୮) । (ମାନସିଂହଙ୍କ 'ତଳିଆ ଜୀବର ବିଳାପ')

ସମାଲୋଚନାରେ ସିଦ୍ଧ ଶିଳ୍ପୀ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ପର୍ଯ୍ୟାଲୋଚନାର ପରିଧି ପୁଣି ନିର୍ଦ୍ଦିଷ୍ଟ କି ସୀମାବଦ୍ଧ ନୁହଁ । ଗୋଟିଏ ଦିଗ କି କ୍ଷେତ୍ରର ଅନୁଶୀଳନରେ ତାଙ୍କର ଅନୁଶୀଳନ ଆଦୌ ସଂକୁଚିତ ନୁହେଁ । ସୃଜନର ବିଶେଷତ୍ୱ ବହନ କରୁଥିବା ପ୍ରତିଟି ଦିଗକୁ ହିଁ ସଂପ୍ରସାରିତ ହୋଇଥାଏ- ତାଙ୍କ ଆଲୋଚନାର ସଂବେଗିକ ଦୃଷ୍ଟିବଳୟ । ଯେଉଁଠି ଯାହାବି ଯେତେ ସ୍ୱଚ୍ଛ ହେଉଥାଉନା କାହିଁକି, କବିପଣର ଗାରିମାଟିକୁ ସାବ୍ୟସ୍ତ କରିବାରେ ହିଁ ନିହିତ ଥାଏ ତାଙ୍କ ସମାଲୋଚକୀୟ ସଂକଳ୍ପ । ରାଧାମୋହନ ଗଡ଼ନାୟକଙ୍କ କବିତ୍ୱର ବିସ୍ତାର ଭୂମିକୁ ସେ ବିଶ୍ଳେଷିତ କରିଛନ୍ତି ବିଭିନ୍ନ ଦିଗରୁ ଆଉ ଦୃଷ୍ଟିକୋଣରୁ । ମାତ୍ର ତାଙ୍କ ସବୁଠାରୁ ଉତ୍କର୍ଷ ପୁଣି ଅଲୌକିକ ସଫଳତାର ଉତ୍ସଟିକୁ ହିଁ ସେ ଏକ ବିଶେଷ ଦିଗରୁ କରିଛନ୍ତି ପ୍ରତିପାଦିତ, ଯାହା ତାଙ୍କର ମୌଳିକତା ଓ ତାଙ୍କ କାବ୍ୟସଂପଦର ସବୁଠୁ ବଡ଼ ଐଶ୍ୱର୍ଯ୍ୟ; ତାହାହିଁ ହେଉଛି ତାଙ୍କ ଛନ୍ଦୋଗତ ସୌକୁମାର୍ଯ୍ୟ । "ସମସାମୟିକ ବହୁ ପ୍ରଚଳିତ ଅକ୍ଷର ବୃତ୍ତ ଛନ୍ଦରୁ ମାତ୍ରା ବୃତ୍ତର ଛନ୍ଦକୁ ବ୍ୟାପକ ଗତି କବି ଗଡ଼ନାୟକଙ୍କ ଛାନ୍ଦସିକତାର ଅନବଦ୍ୟ ପରିଚୟ । ××× ବେଳେବେଳେ ଏ ଛନ୍ଦ ଅତି ନାଟକୀୟ ଭାବରେ ସତେଯେପରି ସଂଳାପ, ସଂଗୀତ, ବାଦ୍ୟ ଓ ନୃତ୍ୟର ସମାବେଶ କରେ ଏବଂ ଧ୍ୱନି ଓ ଦୋଳନରେ ପାଠକକୁ ଉଦ୍‌ବୁଦ୍ଧ କରିଦିଏ । ପୁଣି ବେଦ ପରି ଏ ଛନ୍ଦ ବେଳେବେଳେ ଉଦାତ୍ତ, ଅନୁଦାତ ଓ ସ୍ୱରିତ - ଯେଉଁପରି ମନ୍ଦ୍ରଗଭୀର, ସେହିପରି ଲଳିତ ଓ କଲ୍ଲୋଳିତ ମଧ୍ୟ ।" (ପୃ-୧୩୩)

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ଓଡ଼ିଆ ସାହିତ୍ୟର ଇତିହାସରେ ଏଯାବତ୍ ଉପଲବ୍ଧ ହୋଇନାହିଁ ତାଙ୍କ କବିତ୍ୱର ଯଥାର୍ଥ ସିଦ୍ଧି ଓ ଶ୍ରେୟ । ମାତ୍ର ସମାଲୋଚକ ଶ୍ରୀଯୁକ୍ତ ଶତପଥୀଙ୍କ ଦୃଷ୍ଟି ଏଡ଼ିଯାଇ ନାହିଁ ଏହି ଅନାଲୋଚିତ ପ୍ରତିଭା । "ମଣିଷ ସମାଜର ସବୁ ଦୁଃଖ ଓ ଦୁର୍ଗତିକୁ ସେ ନୀଳକଣ୍ଠ ପରି ପାନ କରି ତାଙ୍କ କବିତାର ସେହି ମଣିଷ ପାଇଁ ଉଚ୍ଚ ଆଦର୍ଶବାଦୀତାର ସ୍ୱର ଉତ୍ତୋଳନ କରିଛନ୍ତି । ମଣିଷର ମଙ୍ଗଳ ଓ ଆନନ୍ଦ ଯେପରି ତାଙ୍କର ଏକମାତ୍ର ଅନୁଧ୍ୟେୟ ଆତ୍ମିକ ସନନ୍ଦ (ପୃ-୧୪୧) ।" କବିତାରେ ଆବେଦନ ଭିତରେ ଲିପିବଦ୍ଧ ହୋଇଥାଏ କବିର ଶୋଣିତ ସ୍ୱାକ୍ଷର, ଆତ୍ମାର ଆକୁଳତା ଆଉ ଆବେଗିକ ଉଚ୍ଛ୍ୱାସର ଅନାବିଳ ପ୍ରାଣସ୍ପନ୍ଦନ । ସାତତାଳ ପାଣି ଆଉ ପଙ୍କ ତଳେ ଲୁଚି ରହିଥିବା

ଚୋପ ଚଉରା... ତା' ଭିତରେ ସୁନାର ଫଗୁଆ ଭଳି କବିତାର ଝଲମଲ ସ୍ୱପ୍ନ ଟିକକ କଡ଼ ଲେଉଟାଉଥାଏ... ଭାବବୋଧର ଭଅଁର ଡେଣାରେ, ଯାହାକୁ ପରସ୍ତ ପରସ୍ତ କଳାପାଟବତାର ଆବରଣ ଭିତରୁ ହିଁ ଠାବ କରିଥାଏ ଜଣେ ଅନୁସନ୍ଧିତ୍ସୁ ସମାଲୋଚକ । ସେହିଭଳି ସମାଲୋଚକର ଶ୍ରେୟ ତେଣୁ ପ୍ରାପ୍ୟ କେବଳ ନିତ୍ୟାନନ୍ଦ ଶତପଥୀଙ୍କର ।

କବି ସଚ୍ଚି ରାଉତରାୟଙ୍କ କାବ୍ୟିକ ଉଦ୍‌ବୋଧନକୁ ଭିନ୍ନ ଭିନ୍ନ ଦିଗରୁ ଯେପରି ଉଦ୍‌ଘାଟିତ କରିଛନ୍ତି ସମାଲୋଚକ ଶତପଥୀ, ତାହାର ଦୁଇଟି ଉଦାହରଣ ଏଠାରେ ଉପସ୍ଥାପନ କରାଯାଇପାରେ । ପଲ୍ଲୀକବିତା ରଚନା କ୍ଷେତ୍ରରେ ଉତ୍ତୁଙ୍ଗ ପାରଦର୍ଶିତା, ଯେଉଁଠି ପଲ୍ଲୀକବିଙ୍କ ଉତ୍କର୍ଷକୁ ବି ଅତିକ୍ରମ କରିଯାଏ, ସେଇଠି ଉଦ୍‌ଘୋଷିତ ହୁଏ ଶ୍ରୀଯୁକ୍ତ ଶତପଥୀଙ୍କ ପ୍ରଥମ ଉଦ୍‌ବୋଧନ- "ଯେଉଁଠି ସେ ସ୍ୱର ଅପେକ୍ଷା ଆତ୍ମାକୁ ଖୋଜିଛନ୍ତି, ସେଠାରେ ତାଙ୍କ କବିତା ଚିରନ୍ତନ ମାନବିକ ଅନୁଭୂତିକୁ ଅବଲମ୍ବନ କରି ଏକ ଶାଶ୍ୱତ ଆବେଗର ଉତ୍ସ ସୃଷ୍ଟି କରିପାରିଛି । ମୋଟ୍ ଉପରେ ପଲ୍ଲୀଚିତ୍ର ପ୍ରଦାନରେ ଆନୁପାତିକତା ରକ୍ଷା କରି ଘଟଣାର ବ୍ୟାପକତା ମଧ୍ୟରେ ରସୋତ୍ତୀର୍ଣ୍ଣ କାବ୍ୟିକ ମର୍ଯ୍ୟାଦାକୁ ଅବଧାରିତ କରିବାରେ 'ପଲ୍ଲିଶ୍ରୀ' କବିତାଗୁଡ଼ିକର ଆସାମାନ୍ୟ ସଫଳତା ପାଠକ ମାତ୍ରେଇ ଉପଲବ୍ଧି କରିପାରିବେ । ××× ଗ୍ରାମକୁ ଏତେ ମାତ୍ରାରେ ଭଲ ନପାଇଲେ ଗ୍ରାମ-ଜୀବନର ପ୍ରତିଟି ଚିତ୍ରକୁ ଏତେ ଜୀବନ୍ତ ଓ ନିଖୁଣ ଭାବରେ ପ୍ରକାଶ କରିବା ସମ୍ଭବ ହେବ ନାହିଁ (୨୬୦) ।"

'ପଲ୍ଲିଶ୍ରୀ'ରୁ 'ପାଣ୍ଡୁଲିପି' ଯାଏଁ ପ୍ରଲମ୍ବିତ ସଚ୍ଚିରାଉତରାୟ ସୁଦୀର୍ଘ ଯାତ୍ରାପଥ, ସେହି ପରିବ୍ୟାପ୍ତ ସାରସ୍ୱତ ପରିଧି, ବହନ କରିଛି ଯେଉଁ ବିଶାଳ-ବିଦଗ୍ଧ-ବିସ୍ତୃତିର ବିସ୍ମୟ ଜନକ ଉତ୍ତୁଙ୍ଗତା; ଯାହା ତାଙ୍କ କାବ୍ୟଜୀବନର ସର୍ବୋତ୍ତମ ସିଦ୍ଧି ଭାବରେ ହିଁ ହୋଇଥାଏ- ସଂସ୍ଥାପିତ । "୧୯୩୯ ଠାରୁ ୪୭ ମଧ୍ୟରେ ରଚିତ କବିତାକୁ ନେଇ 'ପାଣ୍ଡୁଲିପି' (୧୯୪୭)ରେ ××× ଏକ ବିପ୍ଳବୀ ସମାଜବାଦୀ ବ୍ୟକ୍ତିତ୍ୱକୁ ଅନୁଭବ କରିହୁଏ । ଏହି ସ୍ତରରେ ମଣିଷ ପ୍ରତି ତାଙ୍କର ଶ୍ରଦ୍ଧା, ସହାନୁଭୂତି, ଶାନ୍ତି ପାଇଁ ଜାଗ୍ରତ ଆକୁଳତା, ଯୁଦ୍ଧ ବିରୁଦ୍ଧରେ ଏକ ଚିରନ୍ତନୀ ଯୁଗୁପ୍ସା, ଯୁଦ୍ଧ-ଆହତ ମଣିଷ ସମାଜର ମହଲଣ ଚିତ୍ର, ପୁଣି ବଂଚିବା ପାଇଁ ଆଗ୍ନେୟ ବିଶ୍ୱାସ ସୃଷ୍ଟି କରିବାରେ ତାଙ୍କ କାବ୍ୟର ସଫଳ ବିସ୍ଫୋରଣ ତାଙ୍କୁ ଏକ ବିପୁଳ କବି-ପ୍ରଶସ୍ତି ପ୍ରଦାନ କରିଛି (୧୯୬୫) ।" ସମାଲୋଚର ସତର୍କ ଦୃଷ୍ଟି ନିବଦ୍ଧ ହୋଇଛି ସେଇଠି, ଯେଉଁଠି ନିହିତ ରହିଛି କବିପଣର କିଛି ନା କିଛି ସଫଳତା, କିଛି ସ୍ୱାତନ୍ତ୍ର୍ୟ ଅର୍ଥ ବା ପ୍ରଚଣ୍ଡ ସାମାଜିକ ଆବେଦନର ନିବିଡ଼ତା ।

ସଚ୍ଚିରାଉତରାୟଙ୍କ ନିରବଚ୍ଛିନ୍ନ ସୃଜନକ୍ରିୟା ସଂପର୍କରେ ଆଉଠାଏ ଦେଖିବା ସମାଲୋଚକ ଶ୍ରୀଯୁକ୍ତ ଶତପଥୀଙ୍କ ଶ୍ରେୟଶୀଳ ମନ୍ତବ୍ୟ । "ନିୟତ ସାଧନାରତ ଏହି କାବ୍ୟପ୍ରତିଭା ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ବ୍ୟାପୀ ଓଡ଼ିଆ ସାହିତ୍ୟରେ ଏକ ବିସ୍ମୟଦୀପ୍ତ ଅଧ୍ୟାୟ, ଏବେ ମଧ୍ୟ ଯାହା ସୃଷ୍ଟିଶୀଳ ଓ ସଚେତନ (ପୃ-୨୮୨) ।" ଯାହାଙ୍କୁ ଯାହାର

ପ୍ରାପ୍ୟ, ଯେମିତି ଭାବରେ ଓ ଭାଷାରେ, ଠିକ୍ ସେମିତି ସେମାନଙ୍କ ପ୍ରତି ନ୍ୟାୟ ପ୍ରଦାନ ଦିଗରେ ସଚେଷ୍ଟ ହୋଇଛନ୍ତି ସମାଲୋଚକ । କବି ରଘୁନାଥ ଦାସଙ୍କୁ ଯେଉଁ ଅବହେଳାର ଶିକାର ହେବାକୁ ପଡ଼ିଛି ତତ୍କାଳୀନ ସମାଲୋଚନାର ପରଂପରାରେ, ତାହା ମଧ୍ୟ ବ୍ୟଥିତ କରିଛି ସମାଲୋଚକ ଶତପଥୀଙ୍କୁ । ବିଡ଼ମ୍ବନାକୁ ଆଦରି ତଥାପି ସାଧନାରେ ମଗ୍ନ କାବ୍ୟଶିଳ୍ପୀଙ୍କ ପ୍ରତି ତେଣୁ ସୃଷ୍ଟି ହେଇଛି ଅସୀମ ଶ୍ରଦ୍ଧା ଆଉ ସହାନୁଭୂତି । ସୁଯୋଗ୍ୟ କବି ପ୍ରତିଭା ପ୍ରତି ଏହି ଉପେକ୍ଷାରେ ମର୍ମାହତ ସମାଲୋଚକ ସତେକି ହୋଇଉଠିଛି, ସର୍ଜନଶୀଳ ସଂସ୍ଥାପନାର ସ୍ୱପ୍ନରେ ବ୍ୟାକୁଳ ଆଉ ଇତିହାସର ପୃଷ୍ଠଭୂମିରେ ଦଣ୍ଡାୟମାନ ହୋଇ ଦାବି କରିଛି ତାଙ୍କ ପାଇଁ ଉପଯୁକ୍ତ ନ୍ୟାୟ । "କବି ନଜରୁଲ୍ (କାଜୀ ନଜରୁଲ୍ ଇସ୍‌ଲାମ୍)ଙ୍କ ସହିତ ସେ ତୁଳନୀୟ ହେବାକୁ ଯୋଗ୍ୟ (ପୃ-୩୧୭)" ବୋଲି ସ୍ପର୍ଦ୍ଧାର ସହିତ ଘୋଷଣା କରିଛନ୍ତି ସମାଲୋଚକ ।

ବିଭିନ୍ନ ପାରିପାର୍ଶ୍ୱିକତାର ପ୍ରଭାବରୁ ହଠାତ୍ ତରକୀ ଯାଇଥିବା କାବ୍ୟପୁରୁଷର ପୁନର୍ ଅଭ୍ୟୁଦୟ ଘଟଣା, ସୃଷ୍ଟି କରିଛି ପୁଣି ଯେଉଁ ଅକଳନ୍ତି ସମ୍ଭାବନା, ତାହା ସମାଲୋଚର ଦରଦୀ ଆତ୍ମାକୁ ମଧ୍ୟ ଉଦ୍‌ବେଳିତ କରିଦେଇଛି । କବି ରଘୁନାଥ ଦାସଙ୍କ ସର୍ଜନାତ୍ମକ ଅଭ୍ୟୁତ୍‌ଥାନ ହିଁ ପ୍ରତିଷ୍ଠା କରିଛି ଏକ ପ୍ରତ୍ୟାଶିତ ପର୍ବର ଆଲୋକଦୀପ୍ତ ଅଧ୍ୟାୟ, ତାହା ଯେମିତି ସମ୍ଭାବନାମୟ ସେତିକି ପରିଣତ ହୋଇଛି ଆଞ୍ଜୁଳାଏ ପ୍ରାର୍ଥିତ ପ୍ରତିଶ୍ରୁତି ରୂପେ-ସମାଲୋଚକର ଉଚ୍ଛ୍ୱସିତ ଆକଳନରେ । "ପାଉଁଶ ତଳେ ଲୁଚି ରହିଥିବା ନିଆଁକୁ ଉଖାରି ଦେଲେ ସେ ଯେପରି ପୁନର୍ବାର ତା'ର ସ୍ଫୁଲିଙ୍ଗ ପ୍ରକାଶ କରେ, ଠିକ୍ ସେହିପରି ୧୯୭୪ର ଆଦ୍ୟଭାଗରେ ଶ୍ରୀ ରଘୁନାଥ ଦାସଙ୍କ 'ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା' ସଂକଳନ ପ୍ରକାଶର ଅବ୍ୟବହିତ ପରେ ଏହି ଶକ୍ତିଶାଳୀ କାବ୍ୟମାନସ ଭଗ୍ନପକ୍ଷ 'ଜଟାୟୁ' ପୁଣି ଥରେ ପ୍ରାଣବାନ୍ ହୋଇଉଠିଛି (ପୃ-୩୧୮) ।"

ଅନାଦୃତି, ହତାଦର ଓ ଉପେକ୍ଷାର ଦୁର୍ଭାଗ୍ୟ ବରଣ କରି, ଗଭୀର ବେଦନାବୋଧରେ ପ୍ରପୀଡ଼ିତ କବିଗଣଙ୍କ ପାଇଁ ସତେକି ସଂକଳ୍ପର କାରୁଣ୍ୟୋଚିତ ସୃଜନ ଭୂମିଟିଏ ନିର୍ମାଣ କରିବାକୁ ଚାହିଁଛନ୍ତି ସମାଲୋଚକ । ଶତ ଲାଞ୍ଛିତଙ୍କ ପାଇଁ ଦଗ୍ଧ କବିପ୍ରାଣରୁ ନିଗିଡ଼ି ଆସିଥାଏ ଯେଉଁ ରକ୍ତକ୍ଷରା ଆକୁଳତାର କଳାତ୍ମକ ଧାରାପ୍ରବାହ, ତାହା ସଭ୍ୟତା ଓ ସଂସ୍କୃତିର ଦେଇପିଣ୍ଡିକୁ ପ୍ରଦାନ କରିଥାଏ ଅନୁପମ ଏକ କାବ୍ୟନୈବେଦ୍ୟ; ଯାହା ଜାତୀୟ ଜୀବନର ହୁଏତ ବହନ କରିଥାଏ ଏକ ନିଖୁଣ ଆତ୍ମପରିଚୟ । ଜାତିର ଅସ୍ମିତାକୁ ଜର୍ଜରିତ କରି ରଖିବା ଦିଗରେ ଐତିହାସିକ ଅବଦାନ ରଖୁଥିବା ସେହି ସାରସ୍ୱତ ସାଧକଗଣ ଯଦି ଅଲୋଡ଼ା ମନେହୁଅନ୍ତି, ବର୍ତ୍ତମାନର ଜାତୀୟ ଜୀବନରେ; ତେବେ ତା'ଠାରୁ ଅଧିକ ମର୍ମନ୍ତୁଦ ଦୁଃଖ ଆଉ ଥାଇପାରେ କ'ଣ ? ସେହି ଦୁର୍ଦ୍ଦଶା ଓ ଦୁର୍ଦ୍ଦିନର ଦରିଆ ଭିତରୁ ତେଣୁ ସମର୍ଥ ସମାଲୋଚକ ଲୋଡ଼ିଛନ୍ତି ସେହିମାନଙ୍କୁ ଓ ପ୍ରଦାନ କରିଛନ୍ତି ତାଙ୍କ 'ସବୁଜର ସାଂପ୍ରତିକ'ରେ ଯଥାଯୋଗ୍ୟ କାବ୍ୟିକ ନ୍ୟାୟ ଓ ନୈବେଦ୍ୟ ।

ନ୍ୟାୟ ପୁଣି ଭିକ୍ଷା କରାଯାଏ ନାହିଁ, ସାବ୍ୟସ୍ତ କରିବାକୁ ହୁଏ। ଅଧିକାର, ସମ୍ମାନ ଓ ମର୍ଯ୍ୟାଦାବଞ୍ଚିତ କବିପୁରୁଷ ପ୍ରତି ଶ୍ରଦ୍ଧା ସୂଚକ 'ଅର୍ଘ୍ୟ'ରେ ଏ ରୂପେ ପରିଣତ ହୋଇଛି, ଶ୍ରୀଯୁକ୍ତ ଶତପଥୀଙ୍କ ଯୁକ୍ତିସିଦ୍ଧ ସମାଲୋଚନା, ଓଡ଼ିଆ ସାହିତ୍ୟର ଇତିହାସରେ ପ୍ରାୟତଃ। କବି କୁଞ୍ଜବିହାରୀ ଦାଶଙ୍କୁ ପ୍ରତ୍ୟାର୍ପିତ ତାଙ୍କ ସମାଲୋଚକୀୟ ଶ୍ରଦ୍ଧାଞ୍ଜଳିର ସ୍ୱରୂପଟିକୁ ଉଲ୍ଲେଖ କରିବା ଏଇଠି। 'ବୀରଶ୍ରୀ' ଠାରୁ 'ନବମାଳିକା' ଏକ ଅଖଣ୍ଡ କାବ୍ୟ ଆବେଗରେ ସଂଗଠିତ; ଯେଉଁ ଆବେଗ ଜାତୀୟ ଜୀବନ ଓ ସ୍ୱଦେଶାନୁବ୍ରତର ନିଷ୍ଠାକୁ ଉଦ୍ବେଳିତ କରିବାରେ ଭାବ ଓ କଳା ଉଭୟ ଦୃଷ୍ଟିରୁ ଚମତ୍କାର ସହଯୋଗିତା ରକ୍ଷା କରିପାରିଛି। ଏହାରି ଅନ୍ତରାଳରୁ ଏକ ଦୁରନ୍ତ ଜାତୀୟ ଅଭିମାନର ଉଦ୍ଧତ ସ୍ୱର ଶୁଣାଯାଏ- ସେ ସ୍ୱର କବି କୁଞ୍ଜବିହାରୀଙ୍କର (୩୪୨)।" ନିଃସର୍ଗ ଭାବର ନିଖୁଣ ଶିଳ୍ପପ୍ରତି ଏହାଠାରୁ ଆଉ ବଡ଼ ଶ୍ରଦ୍ଧାଞ୍ଜଳି ଥାଇପାରେ କ'ଣ?

ହରେକୃଷ୍ଣ ମହତାବଙ୍କୁ କବିର ପରିଚୟରେ ହୁଏତ ଜାଣନ୍ତି ନାହିଁ ଅନେକ। କବିତ୍ୱର ପ୍ରସିଦ୍ଧି ମଧ୍ୟ ତାଙ୍କର ଊଣା ନୁହେଁ ଉପନ୍ୟାସ କି ରାଜନୀତି ଠାରୁ! ମହତାବଙ୍କୁ ଇତିହାସ ଓ ଉପନ୍ୟାସକୁ ନେଇ ରଚିତ ହୁଏ ଅନେକ ଆଲୋଚନା, ଯାହାର ଉହାଡ଼ରେ ହଜିଯାଏ ତାଙ୍କର କବିତ୍ୱର ଆତ୍ମା ଓ ଆର୍ତ୍ତନାଦ। ବିସ୍ତୃତ ଭାବରେ ତେଣୁ ତାଙ୍କ କବିତାର ପର୍ଯ୍ୟାଲୋଚନା କରିଛନ୍ତି ସମାଲୋଚକ ଶତପଥୀ ଓ ଯଥାସମ୍ଭବ ପ୍ରଦାନ କରିଛନ୍ତି ତାଙ୍କୁ ତାଙ୍କର ସାରସ୍ୱତ ହକ୍। "ଉପନ୍ୟାସର ଗୁରୁଗୌରବ ନିକଟରେ ଫକୀର ମୋହନଙ୍କ ସାହିତ୍ୟିକ କାବ୍ୟିକ ବିକାଶ ଯେପରି ମଳିନ, ରାଜନୈତିକ ପ୍ରତିଷ୍ଠା ତଳେ ଡକ୍ଟର ମହତାବଙ୍କ କବିଜୀବନର ସ୍ମୃତି ସେହିପରି ଅପସୃୟମାନ। ××× ତଥାପି ତାଙ୍କ କବିତାରେ ସ୍ୱର ଓ ରସ ଅପେକ୍ଷା ଅର୍ଥ ଓ ଉଦ୍ଦେଶ୍ୟ ଅଧିକ ପ୍ରକଟିତ (ପୃ-୩୯୪)।"

କବିକୁ ଯଥୋଚିତ ନ୍ୟାୟ ପ୍ରଦାନ ଦିଗରେ ଯେଉଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ପାଳନ କରିଛନ୍ତି, ସମାଲୋଚକ ନିତ୍ୟାନନ୍ଦ ଶତପଥୀ ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସରେ ତାହାର ପଟାନ୍ତର ନାହିଁ। ଆଧୁନିକ କବିମାନଙ୍କ ପ୍ରତିଭାର ମୂଲ୍ୟାୟନ ପୁଣି ଏମିତି ଏକ ଆୟାସସାଧ୍ୟ ବ୍ୟାପାର ଯେ, ସେଥିକୁ ସମାଲୋଚକ ନିକଟରେ ଉପଲବ୍ଧ ହୁଏନାହିଁ କୌଣସି ପୂର୍ବ ପ୍ରସ୍ତୁତି ମାନଦଣ୍ଡ! ଆଧୁନିକ ସାହିତ୍ୟ (ବିଶ୍ଳେଷଣତଃ କାବ୍ୟଧାରା)ର ଇତିହାସରେ, ସମାଲୋଚନାର କ୍ଷେତ୍ର ପ୍ରସ୍ତୁତି ଦିଗରେ ଯେଉଁ ସୁଦୃଢ଼ ଭିତ୍ତିଭୂମିଟିଏ ଗଢ଼ି ତୋଳିଛନ୍ତି ଶ୍ରୀଯୁକ୍ତ ଶତପଥୀ; ତାହାର ଏକ ପାରଦର୍ଶୀ ନମୂନା ହେଉଛି 'ସବୁଜରୁ ସାଂପ୍ରତିକ'।

## ଐତିହାସିକ ପୁରୋଦୃଷ୍ଟି :

ଆଦର୍ଶ ଆଲୋଚନା ସର୍ବଦା ପ୍ରସ୍ତୁତ ହୋଇଥାଏ ଐତିହାସିକ ପୃଷ୍ଠଭୂମିକୁ ଆଧାରକରି। କାହିଁକି ନା କୌଣସି ସୃଜନକଳାର ବିଶେଷତ୍ୱଟି ହିଁ ଆତ୍ମପ୍ରକାଶ କରିଥାଏ,

ଏକ ନିର୍ଦ୍ଦିଷ୍ଟ ସାମାଜିକ ବେଷ୍ଟନୀ ଓ ତା'ର ଅବିଚ୍ଛିନ୍ନ କାଳପ୍ରବାହର ପରିଣତିକୁ ବହନ କରି । ସମୟର ସୂକ୍ଷ୍ମ ପଦଧ୍ୱନି ତେଣୁ ନିନାଦିତ ହୋଇଥାଏ ସାହିତ୍ୟର ଆତ୍ମିକ ଆବେଦନରେ । ସମୟ ଓ ସମାଜର ସମାନ୍ତରାଳ ସଂଘାତରୁ ହିଁ ଜନ୍ମ ନେଇଥାଏ ଉଚ୍ଚତର ସାରସ୍ୱତ ସୃଷ୍ଟି । ସେହି ବିଶେଷ ଇତିହାସର ଅନ୍ତରଙ୍ଗ ଅନୁବୀକ୍ଷଣ ବିନା ଗଢ଼ି ଉଠିପାରେନା କଦାପି ଏକ ନିରପେକ୍ଷ ସମାଲୋଚନାର ପୁରୋଦୃଷ୍ଟି । ସମାଲୋଚକ ନିତ୍ୟାନନ୍ଦଙ୍କ ସମାଲୋଚନାର ଆଧାରଭୂମି ହେଉଛି ଏହି ଐତିହାସିକ ପୃଷ୍ଠଭୂମି ଯାହା ତାଙ୍କ ସାରସ୍ୱତ ଆକଳନର ହେଉଛି ପ୍ରମୁଖ ମାନଦଣ୍ଡ ।

ସବୁଜ କବି ବୈକୁଣ୍ଠନାଥଙ୍କ ରହସ୍ୟବାଦୀ 'କାବ୍ୟଚେତନା'ଟି ଆଦୌ ଏକ ତାତ୍କାଳିକତାର ପରିପ୍ରକାଶ ନୁହେଁ ଅଥବା ଏହା ପ୍ରାନ୍ତୀୟ (ବଙ୍ଗଳା) ସାହିତ୍ୟର ମଧ ପ୍ରଭାବ କି ପରିଣତି ମଧ ନୁହେଁ । ଉତ୍କଳୀୟ ଆଧ୍ୟାତ୍ମିକ ପରଂପରାର ଏହା ହେଉଛି ଏକ ଅଭିନବ କାବ୍ୟରୂପ । "ଏହି ଚେତନା ଆମ ସାହିତ୍ୟରେ ନବମ-ଦଶମ ଶତାବ୍ଦୀର ଶୂନ୍ୟବାଦୀ ସାହିତ୍ୟ ବୌଦ୍ଧଗାନ ଦୋହା ଠାରୁ ଷୋଡ଼ଶ ଶତାବ୍ଦୀର ପିଣ୍ଡ ବ୍ରହ୍ମାଣ୍ଡ ଆଦି ବୈଷ୍ଣବ ଦର୍ଶନ ବାଟ ଦେଇ ଆଧୁନିକ ଯୁଗର ଭୀମଭୋଇ, ମଧୁସୂଦନ, କୁନ୍ତଳା କୁମାରୀ, କାନ୍ତକବି ଲକ୍ଷ୍ମୀକାନ୍ତ ଓ ବୈକୁଣ୍ଠନାଥଙ୍କ ପର୍ଯ୍ୟନ୍ତ ସଂପ୍ରସାରିତ (ପୃ-୨୯)" । ଗୋଟିଏ ବିଶେଷ ମାନଦଣ୍ଡ ଅଥବା ଯୁଗ ତାର ପରବର୍ତ୍ତୀ ଇତିହାସ ଠାରୁ ଆଦୌ ବିଚ୍ଛିନ୍ନ କିମ୍ବା ସ୍ୱତନ୍ତ୍ର ନୁହଁ, ଯେହେତୁ ଜୀବନ ହେଉଛି ଏକ ନିରବଚ୍ଛିନ୍ନ ଧାରାପ୍ରବାହ; ଯାହା ଅତୀତରୁ ଭବିଷ୍ୟତ ପର୍ଯ୍ୟନ୍ତ ଏକ କ୍ରମାନ୍ୱୟ ଉତ୍ତରଣ ପ୍ରକ୍ରିୟାରେ ଅବଧାରିତ ବର୍ତ୍ତମାନକୁ ନେଇ ହୋଇଥାଏ ଉପଜୀବ୍ୟ । ଅତୀତର ଏକ ସ୍ୱଭାବସିଦ୍ଧ ରୂପାନ୍ତରଣ ଯେମିତି ନିତ୍ୟ ବର୍ତ୍ତମାନ, ଠିକ୍ ସେମିତି ଭବିଷ୍ୟତର ସମ୍ଭାବ୍ୟ ପ୍ରତ୍ୟୟ ଓ ପ୍ରତିଶ୍ରୁତିରେ ହୋଇଥାଏ ବିଦ୍ୟମାନ-ପ୍ରତିଟି ମୁହୂର୍ତ୍ତ ।

ସତ୍ୟବାଦୀ ଯୁଗର ପ୍ରଭାବଶାଳୀ କାବ୍ୟପୁରୁଷ ଗୋଦାବରୀଶ ମହାପାତ୍ରଙ୍କ ସୃଜନ ସମୀକ୍ଷାର ଅନ୍ୟ ଏକ ପ୍ରସଂଗ ଉପରେ ଠିକ୍ ଏହି ପୃଷ୍ଠଭୂମିରେ ହିଁ ଆଲୋକପାତ କରାଯାଉ । 'ମୁକୁଟର ପରାଜୟ' (ଉଠ କଙ୍କାଳ)ର ମୂଲ୍ୟାୟନ କାଳରେ ସମାଲୋଚକ ଶତପଥୀଙ୍କ ସାରସ୍ୱତ ଦୃଷ୍ଟି, ଅତୀତରୁ ଭବିଷ୍ୟତ ଆଡ଼କୁ ସଂପ୍ରସାରିତ ହେବା ସହ, ଏକ ନିର୍ଦ୍ଦିଷ୍ଟ ଇତିହାସର ଭୂମିକୁ ଆବିଷ୍କାର କରିଛି । "କବି ତେଣୁ ଆଶଙ୍କା କରିଛନ୍ତି ଯେ; ସାମନ୍ତବାଦର ସିନା ଲୋପ ହେଲା, ପଚିଶଟି ଗଡ଼ଜାତର ରାଜଶାସନ ସିନା ଲୋପ ହେଲା; କିନ୍ତୁ ତା' ସ୍ଥାନରେ ପଚିଶଟି ବିରଳା ଓ ଯାଯୋଡ଼ିଆ ମୁଣ୍ଡ ଟେକିଲେଣି । ଏଣିକି ନୂତନ ରୂପରେ ପୁଞ୍ଜିପତିର ଶୋଷଣ ଚାଲିବ ଓ ହାଟ ବଜାରରେ ରାଜନୀତି କିଣାବିକା ହେବ (ପୃ-୮୭) ।" ସମାଲୋଚକୀୟ ଦିବ୍ୟଦର୍ଶିତା ଓ ବିଚକ୍ଷଣ ଯୁକ୍ତିସିଦ୍ଧ ପର୍ଯ୍ୟାଲୋଚନାର ନିଷ୍କର୍ଷ କେବଳ ଏମିତି ସ୍ପଷ୍ଟ ଏବଂ ନିର୍ଦ୍ଦିଷ୍ଟ ହୋଇପାରେ, ଯାହା ସମାଲୋଚକ ଶତପଥୀଙ୍କ ଆଲୋଚନାର ସବୁଠୁ ବଡ଼ ସ୍ୱାତନ୍ତ୍ର୍ୟ ।

ତେଣେ କବି ରାଧାମୋହନ ଗଡ଼ି ତୋଳିଲେ ଗାଥା କବିତାର ଯେଉଁ ସୁରମ୍ୟ ସୌଧ, ତାହା ବି ନଥିଲା ଛିନ୍ନମୂଳ ବର୍ତ୍ତମାନରେ ଏକ ସ୍ୱତନ୍ତ୍ର ପରିପ୍ରକାଶ । ଉତ୍ତରିତ କାବ୍ୟରୀତିର ଏକ ବିକଶିତ ପୁଣି ସ୍ୱଚ୍ଛନ୍ଦ ପରିଣତି ହେଉଛି ରାଧାମୋହନଙ୍କ ସୃଜନଶୀଳ ଶିଳ୍ପର ଅଭିନବତା ମାତ୍ର । ସମାଲୋଚ଼କଙ୍କ ମନ୍ତବ୍ୟକୁ ଉଦ୍ଧାର କରିବା ଏହି ପ୍ରସଙ୍ଗରେ ତେଣୁ:- "ଏ ଧାରା ଫକୀର ମୋହନ - ଗୋଦାବରୀଶ ମିଶ୍ର - ପଦ୍ମଚରଣଙ୍କ କାବ୍ୟଧାରା ସହିତ ସଂଯୋଗ ସେତୁ ସ୍ଥାପନ କରି ଓଡ଼ିଆ ଗାଥା କବିତାର ଏକ କ୍ରମାବିଲୁପ୍ତ ଆଭିମୁଖ୍ୟକୁ ବଳିଷ୍ଠ କରିପାରିଛି ଏବଂ କବିଙ୍କୁ ସଫଳତାର ସ୍ୱୀକୃତି ଦେଇପାରିଛି (ପୃ-୧୨୦) ।" ଇତିହାସର ଅବବୋଧକୁ ନେଇ ସ୍ୱଚ୍ଛତା ନଥିଲେ, ପରଂପରା ମଧ୍ୟରେ ଅନ୍ତର୍ନିହିତ ସମୟର ଆହ୍ୱାନ ପ୍ରତି ସମ୍ବେଦନଶୀଳ ଉପଲବ୍ଧି ନଥିଲେ- ସାହିତ୍ୟର ଏତାଦୃଶ ମୂଲ୍ୟାୟନ କେବେବି ସମ୍ଭବ ନୁହଁ । ସାହିତ୍ୟ ହେଉଛି ପୁଣି ଅତୀତର ଏକ କମନୀୟ ଓ କଳାତ୍ମକ ପୁନର୍ବିନ୍ୟାସ, ଯାହା ସମୟାନ୍ତରରେ ଭିନ୍ନ ଭିନ୍ନ ରୂପବିଭବ, ଭିନ୍ନ ପରିପାଟୀ ନେଇ ଆତ୍ମପ୍ରକାଶ କରିଥାଏ ।

ସମୟାନୁକ୍ରମିକ ପରିବର୍ତ୍ତନ ପୁଣି ଯେମିତି ଅବଧାରିତ, ସେମିତି ଆପୋଷକାମୀ (compromising) । ବର୍ତ୍ତମାନର ସ୍ୱରୂପଟି ହେଉଛି ଅତି ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ । ସାମନ୍ତବାଦୀ ବ୍ୟବସ୍ଥା ଓ ପୁଞ୍ଜିବାଦୀ ଆଧିପତ୍ୟ ଭିତରେ ଜନ୍ମ ନେଇଥିଲା ଏକଦା ଯେଉଁ ମାନସିକ ସଂକଟ; ତାହାର ଏକ ସଫଳ କାବ୍ୟରୂପ ହେଉଛି 'ଭାନୁମତୀର ଦେଶ' । 'ଭାନୁମତୀର ଦେଶ'କୁ କଳ୍ପନାର ଅଳୀକ ବିନ୍ୟାସ ରୂପେ ତେଣୁ ବିଚାର କରିନାହାନ୍ତି ସମାଲୋଚ଼କ ଶତପଥୀ । ଏକ ଯୁଗସନ୍ଧିର ଶଂକାକୁଳ ପ୍ରତିଚିତ୍ର ପାଲଟି ଯାଇଛି ଏହି କାବ୍ୟ, ଯାହା ବିଶ୍ୱସ୍ତ ଭାବରେ ତୋଳିଧରିଛି ଏକ ବିଶେଷ ସମୟର ବିପନ୍ନ ଅଥଚ଼ ବିଦଗ୍ଧ ଜୀବନର କାରୁଚିତ୍ରକୁ । 'ଭାନୁମତୀର ଦେଶ'ର ମୁଖ୍ୟ କାବ୍ୟ ସଂଘର୍ଷଟି ସହରର ଜୀବନ ଓ ମଫସଲ ଜୀବନକୁ କେନ୍ଦ୍ର କରି ସଂଗଠିତ । ××× ଏ ଦୁଇ ବିପରୀତ ଭାବନାର ଦୁଇଟି ମଣିଷଙ୍କ ମଧ୍ୟରେ ଜୀବନବ୍ୟାପୀ ଏକ ବୁଝାମଣା ସଂପୂର୍ଣ୍ଣ ଅସମ୍ଭବ ହୋଇଥାନ୍ତା । ×× ଏହି ପ୍ରତୀକଧର୍ମୀ ଭାବଚେତନାରେ କବି ସ୍ପଷ୍ଟଭାବେ ଆଧୁନିକ ଜୀବନର ସଂକଟର ଚିତ୍ର ଦେଇଛନ୍ତି । ××× ତା'ରି ମଧ୍ୟରେ ଯେତେ ବାଦ ଓ ବିସମ୍ବାଦର ସୂତ୍ରପାତ ହୋଇଛି, ସହର ଜୀବନର ଧକ୍‌କାରେ ତଥା ନୂଆ ମୂଲ୍ୟବୋଧର ପ୍ରତିଘାତରେ ପୂର୍ବତନ ମୂଲ୍ୟବୋଧ ଭାଂଗିପଡୁଛି ତାସ୍‌ର ଘରପରି (ପୃ-୨୭୧) ।"

ମୂଲ୍ୟବୋଧଜନିତ ସଂକଟ ଏବଂ ସାଂସ୍କୃତିକ ଅବକ୍ଷୟର ପ୍ରେକ୍ଷାପଟରେ ବିଦ୍ୟମାନ ଇତିହାସର ବାସ୍ତବ ରୂପଟିକୁ ଆପଣାର ଗଭୀର ଅନ୍ତର୍ଦୃଷ୍ଟି ବଳରେ ହିଁ- ଅତି ନିଖୁଣ ଭାବରେ ପ୍ରତିପାଦିତ କରିଛନ୍ତି ସମାଲୋଚ଼କ । ଗାନ୍ଧିଜୀଙ୍କ ରାମରାଜ୍ୟର ସ୍ୱପ୍ନ ସହିତ ଗଅଁଠେଇ ହୋଇ ରହିଥିବା ସେତେବେଳର ତେତିଶି କୋଟି ଭାରତୀୟଙ୍କ ଆଶା ଓ

ଅଭିଳାଷ ଟିକକ ଯେତେ ଭୁଷୁଡ଼ି ପଡ଼ିବାରେ ଲାଗିଛି । ନେହେରୁଙ୍କ ସମାଜବାଦୀ ମିଶ୍ର ଅର୍ଥନୀତିର ପରିଣତି, ଯେତେ ସୃଷ୍ଟି କରିଛି ବୈଷମ୍ୟର ଅର୍ଥନୀତିକ ବିବାଦ । ଘିଅ, ମହୁରେ ଭାସିଯିବାର ସମ୍ଭାବ୍ୟ ଜୀବନବୋଧଟି ଯେବେ ଭୂଲୁଣ୍ଠିତ ହୋଇଛି । ଯେବେ ବଢ଼ିଚାଲିଛି ବେକାରୀ, ଦାରିଦ୍ର୍ୟ ଓ କ୍ଷୁଧା; ସେତେବେଳେ ସେହି ବିଡ଼ମ୍ବନାର ଉପସ୍ଥିତ କାରଣଟିକୁ ଅନ୍ୱେଷଣ କରିଛନ୍ତି କାବ୍ୟପୁରୁଷ ଅନନ୍ତ ପଟ୍ଟନାୟକ ଏବଂ ସମାଲୋଚକର ପୁରୋଦୃଷ୍ଟି ସେହି ସତ୍ୟଟିକୁ ଉନ୍ମୋଚିତ କରିଛି, ଆଲୋଚନାର ଅବକାଶରେ କେମିତି ଦେଖନ୍ତୁ:-

"କାଲି ଯେ ଥିଲା ସତ୍ୟାଗ୍ରହୀ ଜନସେବୀ, ଆଜି ସେ ଉପଭୋଗ ପ୍ରଦତ୍ତ ××× ଜୀବନର ବଡ଼ଦାଣ୍ଡରେ ବସି ଖଞ୍ଜଣି ବଜାଉଥିବା ଏହିପରି ଅସଂଖ୍ୟ ଅସହାୟ ମଣିଷର ଦୁଃଖ ଦୂର ହୋଇନାହିଁ । ମଣିଷ କୁକୁର ପରି ଅଇଁଠାପତ୍ର ଓ କୋଡୁଆରୁ ସାଉଁଟି ଆହାର ଲୋଡୁଛି । ××× ଆମ ସମାଜର ଆର୍ଥନୀତିକ ବିଭାଜନ ରେଖା ଉପରେ ଠିଆ ହୋଇ କବି ଯେଉଁ ଦୃଶ୍ୟ ଉପଲବ୍ଧି କରିଛନ୍ତି, ତାହାହିଁ ସନ୍ତାପର ସହିତ ଉଲ୍ଲେଖ କରିଛନ୍ତି (ପୃ-୨୯୫) ।" କ୍ଷମତା ରାଜନୀତିର ଭ୍ରଷ୍ଟାଚାର ଭିତରେ ନିଃଶେଷ ହୋଇଯାଉଥିବା ଭାରତୀୟ ଜୀବନର ଦୁରବସ୍ଥା ଓ ତା'ର ପୃଷ୍ଠଭୂମିଟିକୁ ଏ ରୂପେ ଆବିଷ୍କାର କରିଛି ସମାଲୋଚକ ଶତପଥୀଙ୍କ ଏଣ୍ଡୋସ୍କୋପିକ୍ ଅନ୍ତର୍ଭେଦୀ ଦୃଷ୍ଟି ।

ଐତିହାସିକ ଉଦ୍‌ବର୍ତ୍ତନର ପରିଣତିଟି ପୁଣି ନିଷ୍ଚିତ ଓ ଅବଧାରିତ । ପରିବର୍ତ୍ତନ ହେଉଛି ସୃଷ୍ଟିର ଧର୍ମ ! ପରିବର୍ତ୍ତନରେ ଏହି ପ୍ରକ୍ରିୟାରେ ଗାନ୍ଧିଙ୍କ ଅହିଂସା ଯଦି ଡାକିଆଣେ ବ୍ୟର୍ଥତା, ତେବେ ସାର୍ଥକତାର ବିକଳ୍ପ ମାର୍ଗ ସନ୍ଧାନରେ ଦିନେ ନା ଦିନେ ବ୍ରତୀ ହେବ- ଏ ଦେଶର ଅଗଣିତ ଜନତା ! ବିଫଳତା ହେଉଛି ପୁଣି ସଫଳତାର ଅନନ୍ୟ ସୋପାନ । କବି କୁଞ୍ଜବିହାରୀ ଦାଶଙ୍କ କାବ୍ୟଧାରାର ଆକଳନ ପ୍ରସଙ୍ଗରେ ସଭ୍ୟତାର ଏହି ମହାନ ସତ୍ୟଟିକୁ ହିଁ ଉନ୍ମୋଚିତ କରିଛନ୍ତି ସମାଲୋଚକ । "ଯଦି ଶୋଷକ ଗୋଷ୍ଠୀର ଚିତ୍ତରେ ପରିବର୍ତ୍ତନ ନ ଆସେ ତେବେ କ୍ରୁଦ୍ଧ-ଜନତା ଯେ କୌଣସି ସମୟରେ ହିଂସ୍ର ହୋଇଉଠିବ ଏଥିରେ ସନ୍ଦେହ ନାହିଁ । ସେ'ଠି ଗାନ୍ଧିବାଦର ପ୍ରତିନିଧି ସତବାଜିର ସମସ୍ତ ଉଦ୍ୟମ ହୁଏତ ପଣ୍ଡ ହେବ କିମ୍ବା ଉପଯୁକ୍ତ ନେତୃତ୍ୱ ବିହୀନ ଜନତା ସେମାନଙ୍କ ଦୁଃଖ ଦୂରୀକରଣ ପନ୍ଥା ନିଜେ ହିଁ ବାଛିନେବେ (ପୃ-୩୪୫) ।" କ୍ରିୟାର ପ୍ରତିକ୍ରିୟା ଓ ଶୋଷଣରୁ ମୁକ୍ତିର ପନ୍ଥାଟି ହେଉଛି ଅବଶ୍ୟମ୍ଭାବୀ ପୁଣି ସୁନିଶ୍ଚିତ ! ଗାନ୍ଧିବାଦ ଯଦି ମୁକ୍ତିର ପଥପ୍ରଦର୍ଶନ କରିବାରେ ଅକ୍ଷମ, ତେବେ ବି ବିବଶ ହେବନାହିଁ ଭାରତୀୟ । ବିକଳ୍ପର ସନ୍ଧାନ ପାଇଁ ନିଜକୁ ସେ ପ୍ରସ୍ତୁତ କରିବ ଓ ପ୍ରଶ୍ନ ପଚାରିବ କବି କୁଞ୍ଜବିହାରୀଙ୍କର କାବ୍ୟନାୟକ ଅତି ସହଜ ଓ ସ୍ୱାଭାବିକ ଭାବରେ ତେଣୁ:-

କାହିଁକି ଥିଲାବାଲାମାନେ କ୍ଷୀର ଓ ମହୁରେ, ଭୋଗ ଓ ଭାଗ୍ୟରେ ଭାସୁଥିଲାବେଳେ ଏଇ ନିଦରବୀ ଅମୃତର ସନ୍ତାନମାନେ ଲୁହରେ ଭାସିଯିବେ ? ××× ଏ ସ୍ୱର କଂକାଳର

ନୁହେଁ- ମରମୀ କବି କୁଞ୍ଜବିହାରୀଙ୍କର (ପୃ-୩୪୩) ।" କୁଞ୍ଜବିହାରୀଙ୍କ ଠାରୁ ଆରମ୍ଭ କରି କବି ନିତ୍ୟାନନ୍ଦ ମହାପାତ୍ରଙ୍କ କବିତା ଯାଏଁ, ସବୁଠି ସମାଲୋଚକୀୟ ସନ୍ଧାନ; ତାଙ୍କ ସବୁଜରୁ ସାଂପ୍ରତିକକୁ ପ୍ରଦାନ କରିଛି ଏକ ବଳିଷ୍ଠ ଐତିହାସିକ ଅନୁବୀକ୍ଷଣର ଆବେଦନ । ନିଷ୍ଠୁର ସତ୍ୟର ନିଖୁଣ ସ୍ୱରୂପଟିକୁ ଭିନ୍ନ ଭିନ୍ନ କବିତାର ଭାବବସ୍ତୁରୁ ଖୋଜି ବାହାର କରିଛନ୍ତି ସମାଲୋଚକ ଶ୍ରୀଯୁକ୍ତ ଶତପଥୀ । ବିଡ଼ମ୍ବନାର ଉତ୍ସଟିକୁ ବି ଠାବ କରିଛି ସ୍ରଷ୍ଟାପୁରୁଷ, ଯାହା ରାଜନୀତିର ସମୀକ୍ଷାରେ ପ୍ରତିପନ୍ନ ନୁହେଁ । ସ୍ୱାଧୀନ ଭାରତବର୍ଷରେ ଗାନ୍ଧିବାଦର ବ୍ୟର୍ଥତା ଯେତିକି ନୁହେଁ ତତୋଧିକ ଭୟାବହ ହେଉଛି ରାଜନୈତିକ୍ ଦାଓପେଞ୍ଚର କାର୍ସାଦୀ ! ଗାନ୍ଧୀଙ୍କୁ ହତ୍ୟା କରିଛି ସେହି ଅନୁଷ୍ଠାନ, ଯାହା ଥିଲା ଏକଦା ଜାତୀୟ ଆନ୍ଦୋଳନର ଅନନ୍ୟ ମଞ୍ଚ ! ଗାନ୍ଧିଙ୍କ ହାତଗଢ଼ା ସେହି ସଂଗଠନଟି କିନ୍ତୁ ଇତିହାସର ବିଡ଼ମ୍ବନାରେ ହସ୍ତାନ୍ତରିତ ହୋଇଯାଇଛି । କ୍ଷମତାଲିପ୍ସୁ ପୁଞ୍ଜିପତି ଶ୍ରେଣୀୟ ପ୍ରତିନିଧିତ୍ୱ କରୁଥିବା ନେତୃତ୍ୱର ହାତମୁଠାକୁ । କ୍ଷମତା ପ୍ରମତ୍ତ ସେହି ମୁଷ୍ଟିମେୟ ରାଜନେତାଗଣ, କଳେ ବଳେ କୌଶଳରେ ଗାନ୍ଧିଙ୍କୁ ଦୂରେଇ ଦେଇଛନ୍ତି- ସ୍ୱାଧୀନ ଦେଶର ଇତିହାସରୁ । ବିଡ଼ମ୍ବିତ ସ୍ୱାଧୀନ ଭାରତବର୍ଷର ଇତିହାସରେ ଯା'ଠାରୁ ଆଉ ବଡ଼ ଦୁଃଖଦ ସତ୍ୟ କ'ଣ ଥାଇପାରେ ? ନିତ୍ୟାନନ୍ଦ ମହାପାତ୍ରଙ୍କ କବିତାର ଅନ୍ତରାତ୍ମା ଭିତରୁ ସେହି ନିଗୂଢ଼ ବାସ୍ତବତାଟିକୁ ଉପସ୍ଥାପିତ କରିଛନ୍ତି ସମାଲୋଚକ ଶ୍ରୀଯୁକ୍ତ ଶତପଥୀ ।

"ବାସ୍ତବିକ୍ ଗାନ୍ଧିର ହତ୍ୟାକାରୀ ଗଡ୍‌ସେ ନୁହେଁ- ଗାନ୍ଧିର ହତ୍ୟାକାରୀ ତାଙ୍କରି ପଟ୍ଟଶିଷ୍ୟଗଣ; ଯେଉଁମାନେ କଥାକଥାକେ ଗାନ୍ଧିର ନାମଧରି, ଗାନ୍ଧିର ଜୟଗାନ କରି କୋଟି କୋଟି ଲୋକଙ୍କୁ ଭଣ୍ଡି ଭୋଟ୍ ନେଇ, ଗାନ୍ଧିର ସମସ୍ତ ହିତୋପଦେଶକୁ ହତ୍ୟା କରୁଛନ୍ତି ପ୍ରତିକ୍ଷଣରେ- ସେଇମାନେ । ସେଇମାନେ ହିଁ ଗାନ୍ଧିତ୍ୱର କୃତଘ୍ନ ଘାତକ । ଗାନ୍ଧି କୁଟୀରଶିଳ୍ପ କଥା କହିଥିଲା ବେଳେ ଭାରତର ଆକାଶରେ କ୍ରମେ ଚିମିନୀର କଳାଧୂଆଁ ତାଙ୍କୁ ପରିହାସ କରି ଉର୍ଦ୍ଧ୍ୱାୟିତ ହୋଇଅଛି (ପୃ-୪୩୮) ।" କ୍ଷମତା ରାଜନୀତି ପାଇଁ ଯେମିତି ଜରୁରୀ ଥିଲା ଗାନ୍ଧିଙ୍କୁ ହତ୍ୟାକରିବା, ସେମିତି ବି ଅପରିହାର୍ଯ୍ୟତା ଥିଲା ଗାନ୍ଧିବାଦର ମୌଳିକ ଦର୍ଶନକୁ ପଦଦଳିତ କରିବାର ଘଟଣାକ୍ରମ ! ବସ୍ତୁତଃ "ଗାନ୍ଧିଙ୍କ ପ୍ରତିମୂର୍ତ୍ତିକୁ ପୂଜା କରି ଆମେ ତାଙ୍କ ନୀତି ଓ ପନ୍ଥା ଉପରେ ଇଚ୍ଛାମତେ ଛୁରୀ ଚଳେଇ ଆସିଛେ - ଏହା ଏ ମହାଜାତି ପାଇଁ ଏକ ଐତିହାସିକ ବିଡ଼ମ୍ବନା ଭାବେ ଭବିଷ୍ୟତର ଇତିହାସରେ ଲିପିବଦ୍ଧ ରହିବ (ପୃ-୪୪୩) ।"

ଏ କଥାକୁ କିଏ ଅସ୍ୱୀକାର କରିବ ଯେ, ସାହିତ୍ୟର ପ୍ରାଣସ୍ପନ୍ଦନ ହେଉଛି ଇତିହାସ ବୋଲି ? ଇତିହାସର ଏକ କଳାତ୍ମକ ରୂପାନ୍ତରଣର ଅନ୍ୟ ଏକ ରୂପ ହେଉଛି ସାହିତ୍ୟ ! ଅନେକ ସମାଲୋଚକ ସାହିତ୍ୟର ଆଲୋଚନା କାଳରେ, ଏହି ମୌଳିକ ସତ୍ୟଟିକୁ ଏକାବେଳକେ ଆଖିବୁଜି ଦିଅନ୍ତି । ଏ କଥା ସତ ଯେ, ଚଳନ୍ତି କାଳର ସାହିତ୍ୟ ହେଉଛ

ବର୍ତ୍ତମାନର ଇତିହାସ ଏବଂ ଯାହାକୁ ଆମ ଇତିହାସ ବୋଲି ବିବେଚ଼ନା କରୁ; ତାହା ହେଉଛି ଆମ ଗତକାଲିର ସାହିତ୍ୟ। ସାହିତ୍ୟରୁ କଳ୍ପନାର ଆଭୂଷଣଟିକୁ ଓହ୍ଲାଇଦେଲେ, ତାହା ପାଲଟିଯାଏ ଇତିହାସ ଯେମିତି, ସେମିତି 'ଇତିହାସ'ରେ ଟିକିଏ କଳ୍ପନାର କଳା ଲେପନ କରିଦେଲେ- ତାହା ପରିଣତ ହୁଏ ସାହିତ୍ୟରେ । ସାହିତ୍ୟ ଓ ଇତିହାସ ହେଉଛି ପରସ୍ପରର ପରିପୂରକ, ଯାହାର ସଂପର୍କ ନିରୂପଣ କରିବା ହେଉଛି ସମାଲୋଚ଼କର ବଡ଼ ଦାୟିତ୍ୱ ।

**ସୁନିର୍ଦ୍ଦିଷ୍ଟ ସିଦ୍ଧାନ୍ତ :**

ଯେ କୌଣସି ବିଶେଷ କାବ୍ୟରୀତିକୁ ସଠିକ୍ ଭାବରେ ଆକଳନ କରିବା ଯେମିତି ସହଜକଥା ନୁହେଁ, ସେମିତି କୌଣସି ପ୍ରତିଭା ଓ ସୃଷ୍ଟିର ସ୍ୱରୂପ ସଂପର୍କରେ ସୁନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବା ମଧ୍ୟ ଅନାୟାସ ସମାଲୋଚ଼ନାର କ୍ଷେତ୍ରରେ ଆଦୌ ସମ୍ଭବପର ନୁହେଁ । ଦେଶ-କାଳ-ପାତ୍ରର ଯଥାର୍ଥ ବିଚ଼ାର-ଅନୁଶୀଳନ ବିନା ଏଭଳି ନିଷ୍କର୍ଷରେ ପହଞ୍ଚିବା, ପ୍ରାୟତଃ ଅନେକ ସମାଲୋଚ଼କଙ୍କ କ୍ଷେତ୍ରରେ ହୋଇଥାଏ ସାଧ୍ୟାତୀତ ବ୍ୟାପାର । ତେବେ ଏ କ୍ଷେତ୍ରରେ ସମାଲୋଚ଼କ ନିତ୍ୟାନନ୍ଦ ଶତପଥୀ ହେଉଛନ୍ତି ଏକ ବ୍ୟତିକ୍ରମ। ଉପର ଠାଉରିଆ ସମାଲୋଚ଼ନାର ସେ ପକ୍ଷପାତୀ ନୁହନ୍ତି । ସମାଲୋଚ଼ନା ତାଙ୍କ ପାଇଁ ଏକ ସଂକଳ୍ପ ଆଉ ସାଧନା। ଉପଯୁକ୍ତ ଅନ୍ୱେଷା ଓ ସ୍ଥିର ନିଶ୍ଚିତ ସିଦ୍ଧାନ୍ତ ହେଉଛି ତାଙ୍କ ଏକନିଷ୍ଠ ସମାଲୋଚ଼ନାର ବିଶେଷତ୍ୱ । କ୍ଷୀରରୁ ଦହି ପୁଣି ଦହିରୁ ଘିଅ କାଢ଼ିବାଯାଏ, ସମାଲୋଚ଼ନାର ପ୍ରକ୍ରିୟା ତାଙ୍କର ରହେ ଅବ୍ୟାହତ । ସିଦ୍ଧାନ୍ତରେ ନ ପହଞ୍ଚିଲା ପର୍ଯ୍ୟନ୍ତ, ଉପସଂହାରରେ ଉପନୀତ ହୁଏ ନାହିଁ କେବେବି ଶ୍ରୀଯୁକ୍ତ ଶତପଥୀଙ୍କ ସୃଜନ ଅନୁଶୀଳନର ପ୍ରକ୍ରିୟା । ତାଙ୍କ ସମାଲୋଚ଼କୀୟ ସ୍ୱାତନ୍ତ୍ର୍ୟର ଏହି ଦିଗଟିକୁ ପ୍ରତିପାଦିତ କରିବାକୁ ଯାଇ ସାମାନ୍ୟ କେତୋଟି ଉଦାହରଣର ଉଲ୍ଲେଖ କରାଯିବ ଏ ଉକ୍ତି ପ୍ରସଂଗରେ ।

ସବୁଜ କବି ବୈକୁଣ୍ଠନାଥଙ୍କ ରହସ୍ୟବାଦର ସ୍ୱରୂପକୁ ଏକ ଦ୍ୱିମୁଖୀ (Binary) ବିଶେଷତ୍ୱର ଭିତ୍ତି ଉପରେ ହିଁ ପ୍ରତିପାଦନ କରିଛନ୍ତି ସମାଲୋଚ଼କ । 'ରହସ୍ୟବାଦ' ସର୍ବଦା ଆଧିଭୌତିକ ଅନୁଭୂତିକୁ ଉପସ୍ଥାପିତ କରେ ନାହିଁ, ଅଧିକନ୍ତୁ ଆତ୍ମିକ ବିମର୍ଷବୋଧକୁ ମଧ୍ୟ ଚିତ୍ରାୟିତ କରିଥାଏ; ଯାହାକୁ ନିଜସ୍ୱ ଯୁକ୍ତି ଛଳରେ ପ୍ରମାଣିତ କରିଛନ୍ତି ସମାଲୋଚ଼କ ଏରୂପେ- "କବି ବୈକୁଣ୍ଠନାଥଙ୍କ କବିତାରେ ଏହି ରହସ୍ୟବାଦୀ ଚେତନା କେତେବେଳେ ପ୍ରକୃତିର ବିପୁଳ ବିଭୂତିର ସନ୍ଦର୍ଶନରେ ତ କେତେବେଳେ ଆତ୍ମଦୁଃଖ ଓ ଅନୁଶୋଚ଼ନାର ପରିଣତିରେ ରୂପାୟିତ ହୋଇଥାଏ ( ୨୯ ) ।" ଶାଣିତ ସମାଲୋଚ଼ନାର ସ୍ପଷ୍ଟ ପୁଣି ସୁନିର୍ଦ୍ଦିଷ୍ଟ ଭିତ୍ତିଭୂମିଟିଏ ଗଢ଼ିତୋଳିବା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ରଖିଥିବା ସମାଲୋଚ଼କ ଶତପଥୀଙ୍କର ସ୍ଥାନ ହେଉଛି ତେଣୁ ଓଡ଼ିଆ ସାହିତ୍ୟର ଇତିହାସରେ ଅନନ୍ୟ ଓ ସ୍ୱତନ୍ତ୍ର ।

ଗୋଦାବରୀଶ ମହାପାତ୍ରଙ୍କ କବିତା ସଂପର୍କରେ ଏତାଦୃଶ ସିଦ୍ଧାନ୍ତଟିଏ ନିଦର୍ଶନ ସ୍ୱରୂପ ଏଠାରେ ଉପସ୍ଥାପନ କରାଯାଇପାରେ । "ତାଙ୍କ କବିତାରେ ଦ୍ୱନ୍ଦ୍ୱହୀନ ଆଭିମୁଖ୍ୟ, ଗଭୀର ଦେଶପ୍ରେମ, ଜାତୀୟତାବୋଧ ଓ ମାନବିକତାର ଜୟକାରରେ ଉଚ୍ଛ୍ୱସିତ (୮୨) ।" ଅଥଚ୍ ସେ ସାମ୍ୟବାଦୀ ନୁହନ୍ତି । ପରିବର୍ତ୍ତନର ଆହ୍ୱାନ ତାଙ୍କ କବିତାକୁ ବିଦ୍ରୋହର ଉଦାତ୍ତ ଭିତ୍ତିଟିଏ ପ୍ରଦାନ କରିବା ସତ୍ତ୍ୱେ, ଆଦର୍ଶଗତ ଦିଗରୁ - ସେ ମାନବତାବାଦୀ, "କବି ମହାପାତ୍ରଙ୍କ କାବ୍ୟ କବିତାରେ ସାମ୍ୟବାଦୀ ଚେତନାର ଏହି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଏକ ପ୍ରଚଣ୍ଡ ମାନବିକତାବୋଧ ଉପରେ ସଂଗଠିତ । ତେଣୁ ତାଙ୍କୁ ସାମ୍ୟବାଦୀ କବି ନ କହି ମାନବବାଦୀ କବି କହିଲେ ବୋଧହୁଏ ଯଥାର୍ଥ ହେବ । କାରଣ ଯେଉଁଠି ସାମ୍ୟବାଦୀ ବିପ୍ଳବର ପନ୍ଥା ଐତିହ୍ୟକୁ ଅସ୍ୱୀକାର କରେ, ସେଇଠି ମାନବବାଦୀ କବି ଐତିହ୍ୟର ପ୍ରତିଷ୍ଠା ଦାବି କରେ (ପୃ-୮୩) ।" ଇତିହାସ ପ୍ରତି ଥିବା ଦୃଷ୍ଟିଭଂଗୀର ଭିନ୍ନତା ଟିକକ ହେଉଛି ଏ ଉଭୟ ଦର୍ଶନ ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟ । ଇତିହାସର ଭୂମିକା ନେଇ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଅବବୋଧ ନଥିଲେ, ଏଭଳି ସିଦ୍ଧାନ୍ତ ପ୍ରଦାନ ଆଦୌ ସମ୍ଭବ ହୁଏ ନାହିଁ ।

ଗୋଦାବରୀଶ ମହାପାତ୍ରଙ୍କ କବିତ୍ୱର ଅନ୍ୟ ଏକ ବିଶିଷ୍ଟ ଦିଗକୁ ଏ ରୂପେ ଶ୍ରୀଯୁକ୍ତ ଶତପଥୀ ପ୍ରଦାନ କରିଛନ୍ତି ଅନନ୍ୟତାର ପ୍ରାମାଣିକ ପରିଚିତି । ଜାତୀୟ ଜୀବନ ସହିତ ସଂଶ୍ଳିଷ୍ଟ କାବ୍ୟଚେତନାର ଅନ୍ତରଙ୍ଗ ଆବେଦନ ସଂପର୍କରେ ତେଣୁ ସମାଲୋଚକ ନିଜର ବଳିଷ୍ଠ ଯୁକ୍ତି ଉପସ୍ଥାପନ ପୂର୍ବକ ଉଲ୍ଲେଖ କରନ୍ତି- "ସମୃଦ୍ଧିଶାଳୀ ଉତ୍କଳର ଅତୀତ ସ୍ମୃତିରେ ଯେତିକି ଉଲ୍ଲସିତ ହୋଇ ଉଠିଛନ୍ତି, ବର୍ତ୍ତମାନର ଦୁରବସ୍ଥାରେ ବିବ୍ରତ ନ ହୋଇ ଭବିଷ୍ୟତକୁ ଗଢ଼ିବାରେ ସେତିକି ଦିଗ୍‌ଦର୍ଶନ ଦେଇଛନ୍ତି । ମଣିଷର ନୀଚ୍‌ତା ଓ ଲୋଲୁପତା ଉପରେ ଆଘାତ କରି କରି ସେ କ୍ଳାନ୍ତ ହୋଇ ପଡ଼ିଛନ୍ତି । ଦେହ ଥକି ପଡ଼ିଲେ ବି ମନ ଓ ଲେଖନୀ ଥମି ନାହିଁ । ବିପ୍ଳବର ମନ୍ତ୍ରରେ ଚିର ଦୀକ୍ଷିତ ତାଙ୍କର ଏ ଲେଖନୀ ମୃତ୍ୟୁ ପର୍ଯ୍ୟନ୍ତ ଏକଇ ରାହାର ଉପାସକ । "ସୁଧାରିବାକୁ ହେବ, ସଜାଡ଼ିବାକୁ ହେବ"- ଏହାହିଁ ଯେପରି ତାଙ୍କର ବଜ୍ର ଶପଥ (ପୃ-୯୦) ।"

କବି ପ୍ରତିଭାକୁ ତଉଲିବାର ଏହି ନିର୍ଭୀକତା ଆଉ ମୂଲ୍ୟାୟନଗତ ସାମର୍ଥ୍ୟ, ଯେଉଁ ନିରପେକ୍ଷ, ଅବିଚ୍‌ଳ ସମାଲୋଚ୍‌କୀୟ ସନ୍ନିଷ୍ଠତାର ପରଂପରାଟିଏ ଗଢ଼ି ତୋଳିଛି; ତାହା ସାହିତ୍ୟର ପରଂପରାକୁ ପ୍ରଦାନ କରିଛି ଏକ ଉତ୍ତୁଙ୍ଗ ଅନନ୍ୟତା । ମାୟାଧର ମାନସିଂହଙ୍କ କାବ୍ୟରୀତିର ଅନୁଶୀଳନ ପ୍ରେକ୍ଷାପଟରେ, ସମାଲୋଚ୍‌କଙ୍କ ଏତାଦୃଶ ଶାଣିତ ଯୁକ୍ତିର ଆଉ ଏକ ନିଦର୍ଶନ ଉଦ୍ଧୃତି ଏଠାରେ ଉପସ୍ଥାପନ କରାଯାଇପାରେ । "ସ୍ୱଦେଶ ପ୍ରୀତିର ରୋମାଣ୍ଟିକ୍ ଦିଗ୍‌ବଳୟଠାରୁ ପଲ୍ଲୀଜୀବନର ଅସଂଖ୍ୟ ଭାବାନୁଭୂତି ଓ ରୂପଭଙ୍ଗର ବାଟଦେଇ ଆର୍ତ୍ତମାନବାତ୍ମାର ସ୍ୱର ପ୍ରକାଶ ଓ ଆଧିଭୌତିକ ଉତ୍ତରଣରେ

ତାଙ୍କ କବିତା ଦୀର୍ଘ ୪୦ ବର୍ଷ ଧରି ବହୁଭାବ ଓ ମାର୍ଗ ଅନୁସରଣ କରି ବିବିଧତାର ପରିଚୟ ଦେଇଛି (୧୦୩) ।"

ମାନସିଂହଙ୍କ 'ପ୍ରେମ'ର ପାର୍ଥିବ ବିଳାସ ଯେତିକି ଗଭୀର ପୁଣି ସେତିକି ନିବିଡ଼ । ପ୍ରେମର ପବିତ୍ର ପରିଭାଷାରେ ରୂପାନ୍ତରିତ ହୋଇଛି ସତେକି କବି ମାନସିଂହଙ୍କ କାବ୍ୟଜଗତ । ପ୍ରେମର ସ୍ୱରୂପ ଓ ଏହାର ସମ୍ବେଦୀ ସ୍ୱପ୍ନ ତଥା ସୂକ୍ଷ୍ମ ସଂଭାବନାକୁ ନିଜସ୍ୱ ମାର୍ମିକ ମନୀଷାରେ ହିଁ ସୁନିଶ୍ଚିତ ରୂପରେଖଟିଏ ପ୍ରଦାନ କରିଛନ୍ତି- ସମାଲୋଚକ ଶ୍ରୀଯୁକ୍ତ ଶତପଥୀ । "ଏଇ କବିର ପ୍ରେମଚିନ୍ତା 'ଧୂପ'ରେ ଯେପରି ଉଦ୍ଦାମ ଓ ଉଦ୍‌ବେଳ, 'ହେମ ଶସ୍ୟ'ରେ ସେହିପରି ଶାନ୍ତ ଓ ସମାହିତ । ତେଣୁ ତାଙ୍କ ପ୍ରଣୟ ଚେତନାର ପୃଷ୍ଠଭୂମିରେ ପରିବର୍ତ୍ତନର କୌଣସି ବିପର୍ଯ୍ୟୟ ଆସି ନାହିଁ । ସତେଯେପରି ଏକଇ କଣ୍ଠରୁ 'ଧୂପ' ଓ 'ହେମଶସ୍ୟ'ର ସଙ୍ଗୀତ ସମାନ ଆବେଗ, ଯତି ଓ ସମତାଳରେ ନିଃସୃତ ହୋଇ ଆସିଛି । ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତିକୁ ଏତେ ସାର୍ଥକ ଭାବରେ ଓ ସମାନ ଭାବରେ ଧରି ରଖିପାରିଥିବା କାବ୍ୟାନୁଚିନ୍ତା ଓଡ଼ିଆ ସାହିତ୍ୟରେ ବିରଳ (୧୧୧) ।" ସମାଲୋଚନାର ଏ ଆବେଗିକ ଉଦ୍‌ବୋଧନ; ସୂକ୍ଷ୍ମ ରୂପକଳ୍ପୀୟ ଉପସ୍ଥାପନାରେ ଯେଉଁ ସର୍ଜନଶୀଳ ସିଦ୍ଧାନ୍ତଟିଏ ନିରୂପିତ କରେ; ତାହା ମାନସିଂଙ୍କ କାବ୍ୟପ୍ରତିଭା ପ୍ରତି ସୃଷ୍ଟିକରେ ସାରସ୍ୱତ ଶ୍ରଦ୍ଧାର ବିପୁଳ ପାଠକୀୟ ପ୍ରତିବେଦନ ।

ଅନୁରୂପ ଶ୍ରଦ୍ଧାର ନୈବେଦ୍ୟ ପ୍ରତ୍ୟାର୍ପିତ ହୋଇଛି କବି ରାଧାମୋହନ ଗଡ଼ନାୟକଙ୍କ ନାନ୍ଦନିକ ଶିଳ୍ପ ରୂପର ଆକଳନ ଅବକାଶରେ ଓ ପ୍ରତିପାଦିତ ସମାଲୋଚନାର ସଂବେଗିକ ଭୂମିଟିଏ ଗଢ଼ି ତୋଳିବାକୁ ହୋଇଛି ସମର୍ଥ । କବିତାର ସମାଲୋଚନା କାଳରେ ସମାଲୋଚକର ହୃଦୟରେ କୋମଳ କବିପ୍ରାଣର ଦରଦୀ ଆବେଗ ସଂବେଦୀ ଶ୍ରଦ୍ଧାର ମମତ୍ୱ ଉକୁଟି ନ ଉଠିଲେ, ସମାଲୋଚନା ହୋଇଥାଏ ନିରସ ଓ ରୁକ୍ଷ । ତାତ୍ତ୍ୱିକ ବ୍ୟାଖ୍ୟା ଓ ବିବୃତିରେ ଭାରାକ୍ରାନ୍ତ ହୁଏ ଅନୁଶୀଳନର ଆଧାରଶିଳା । ସମାଲୋଚନାର ଏହି ଦିଗଟି ପ୍ରତି ସଦା ସତର୍କ ଓ ସଚେତନ ରହି ଲେଖନୀ ଧାରଣ କରୁଥିଲେ ସମାଲୋଚକ ଶ୍ରୀଯୁକ୍ତ ଶତପଥୀ, ଯାହାର ଅନେକ ଉଦାହରଣ 'ସବୁଜରୁ ସାଂପ୍ରତିକ'କୁ ପ୍ରଦାନ କରିଛି ଏକ ବୁଦ୍ଧିମନ୍ତ ପାରଦର୍ଶିତା ।

ରାଧାମୋହନ ଗଡ଼ନାୟକଙ୍କ କବି ପ୍ରତିଭା ସଂପର୍କିତ କେତୋଟି ଅଭିମତକୁ ଏ ପ୍ରସଙ୍ଗରେ ଅବଶ୍ୟ ଉଲ୍ଲେଖ କରିବା । (୧) "ତାଙ୍କ ଗୋପବାଳାର କୃଷ୍ଣ ସତେଯେପରି ଆମ ଗାଁର ଗଉଡ଼ପୁଅ, ତାଙ୍କ ବିଭୀଷଣ ଲଙ୍କାର ନୁହେଁ ଆମରି ମେଳରେ ଥିବା ବୋଧବାନ୍ ଉଲ୍ଲାସ ଓ ଆକୁଳତା (୧୨୩) ।" (୨) "କାବ୍ୟମାନସର ବିଚାର ବେଳେ ସମାଲୋଚକମାନେ ଅନ୍ତତଃ ଗୋଟିଏ ସତ୍ୟରେ ଏକମତ ହେବେ ଯେ, ଗଡ଼ନାୟକ କାବ୍ୟ-ଆତ୍ମିକ ଇତିହାସର ସତ୍ୟ ନିଷ୍ଠାରେ ନିର୍ଜିତ ହେଉ ବା ନ ହେଉ, ଇତିହାସର

କଙ୍କାଳ ଉପରେ ପ୍ରତିଷ୍ଠିତ ଏକ ରମଣୀୟ କାବ୍ୟ ସୌଧ ଭାବରେ ପାଠକର ଦୃଷ୍ଟିକୁ ଏହାର ବିଚିତ୍ର କାରୁକଳାରେ ସମ୍ମୋହିତ କରିପାରିଛି (୧୨୪)।" (୩) "ତଥାପି କହିବାକୁ ହେବ ଯେ, ନିଜପ୍ରତି ଚିର ଅଯତ୍ନଶୀଳ, ଶୃଙ୍ଖଳାହୀନ ଓ ସୌଭାଗ୍ୟ ଅର୍ଜନରେ ବୀତସ୍ପୃହ କବି ଗଡ଼ନାୟକ ମୌସୁମୀ ପରି ହୋଇପାରନ୍ତି ଦୁର୍ଦ୍ଧର୍ଷ; କିନ୍ତୁ ମେଘମହ୍ଲାର ପରି ସ୍ୱଚ୍ଛଳ ଓ ମରମୀ (୧୩୦) ମଧ୍ୟ।"

କବି ଅନନ୍ତ ପଟ୍ଟନାୟକଙ୍କ କାବ୍ୟଭୂମିର କର୍ଷଣ କରିବାକୁ ଯାଇ ସମାଲୋଚକ ଶ୍ରୀଯୁକ୍ତ ଶତପଥୀ ଯେଉଁ ବିଶ୍ୱଜନୀନ ଆଦର୍ଶର ପ୍ରସଙ୍ଗଟିକୁ ନିର୍ଦ୍ଦେଶ କରିଛନ୍ତି, ତାହା ତାଙ୍କ କ୍ରାନ୍ତିଦର୍ଶିତାର ପରିଚୟ ବହନ କରେ। ଜଗତୀକରଣ (Globalization) ର ଉତ୍ତର ଆଧୁନିକ ଦର୍ଶନ ସହିତ ଏହି ଦର୍ଶନର ଆବେଦନଟି ଏତେ ନିକଟବର୍ତ୍ତୀ ଯେ, ଆଜିର ପୃଷ୍ଠଭୂମିରେ ତାହାର ପ୍ରାସଙ୍ଗିକତାକୁ ମଧ୍ୟ ଅସ୍ୱୀକାର କରାଯାଇ ନପାରେ। ଯେଉଁ ସମରର ପରିକଳ୍ପନା ପ୍ରକଟିତ ହୋଇଛି ବାମପନ୍ଥୀ ଚିନ୍ତକ ଓ କବି ଅନନ୍ତ ପଟ୍ଟନାୟକଙ୍କ କାବ୍ୟପରିଧିରେ, ସେ ସମରର ଏକ ଚୂଡ଼ାନ୍ତ ପରିଣତିକୁ ଏବେ ବି ଅପେକ୍ଷା କରେ ନିପୀଡ଼ିତ ମଣିଷର ବିଶ୍ୱ। "ଏ ସମର ତେଣୁ ପୃଥିବୀର କୌଣସି ଭୌଗୋଳିକ ଭୂଖଣ୍ଡର ସ୍ୱାଧୀନତା ପ୍ରାପ୍ତିରେ ସୀମିତ ନୁହେଁ; ସମଗ୍ର ମାନବ ଜାତିର ମୁକ୍ତି ପ୍ରତି ଏହା ଅଭିପ୍ରେତ। ସମଗ୍ର ବିଶ୍ୱଜନତା ଯେଉଁଠି ସମାନ ଏବଂ ମଣିଷର ମଥା ଉର୍ଦ୍ଧ୍ୱକୁ ଉତ୍ତୋଳିତ - ଏହିପରି ଏକ ବିଶ୍ୱଜୀନନ ଆଦର୍ଶର ସ୍ୱପ୍ନରେ ତାଙ୍କ ସାମ୍ୟବାଦୀ କାବ୍ୟଚେତନା ପରିପୁଷ୍ଟ। (୨୮୯)।"

ଅନ୍ୟତମ ବାମପନ୍ଥୀ ଧାରାର କାବ୍ୟଶିଳ୍ପୀ ମନମୋହନଙ୍କ ପ୍ରତିଭାର ମହତ୍ତ୍ୱ ପ୍ରତିପାଦନ ପୃଷ୍ଠଭୂମିରେ ସମାଲୋଚକଙ୍କ ଭିନ୍ନ ଦୃଷ୍ଟିଭଂଗୀର ସ୍ୱରୂପଟି ସ୍ୱତଃ ସ୍ପଷ୍ଟ ହୋଇଉଠେ। 'କବିତା'ରୁ 'କବି' ଓ କବିର ବ୍ୟକ୍ତିତ୍ୱକୁ ବିଶେଷ ପରିଚିତି (identity) ଟିଏ ପ୍ରଦାନ କରିବାର ସମାଲୋଚକୀୟ ସ୍ପର୍ଦ୍ଧା ପୋଷଣ କରିବାର ଅନୁପମ ସମୀକ୍ଷକ ହେଉଛନ୍ତି ପ୍ର. ନିତ୍ୟାନନ୍ଦ ଶତପଥୀ, ଯାହା ପ୍ରାୟ ଅନ୍ୟାନ୍ୟ ସମାଲୋଚକଙ୍କ ଠାରେ ବସ୍ତୁତଃ ପରିଲକ୍ଷିତ ହୁଏ ନାହିଁ। ଗୋଟିଏ ମାତ୍ର ବାକ୍ୟରେ ବିପୁଳାଢ଼ ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ପ୍ରତିପାଦନର ପ୍ରୟାସ ତେଣୁ ଏକାବେଳକେ ଅନନ୍ୟ ପୁଣି ଅସାଧାରଣ। ଏହି ପୃଷ୍ଠଭୂମିରେ କବି ମନମୋହନଙ୍କ ସଂପର୍କିତ ତାଙ୍କର ବକ୍ତବ୍ୟଟିକୁ ଦେଖିବା- "ସେ ପ୍ରଥମେ କମ୍ୟୁନିଷ୍ଟ ଓ ପରେ ଭାରତୀୟ ମୁକ୍ତି ସଂଗ୍ରାମୀ (୨୯୮)।" ଅନ୍ୟାନ୍ୟ ସାଧାରଣ ସ୍ୱାଧୀନତା ସଂଗ୍ରାମୀଙ୍କ ଠାରୁ ଯେଉଁ ନିର୍ଦ୍ଦିଷ୍ଟ ଦିଗରୁ ଭିନ୍ନ ହେଉଛନ୍ତି କବି ମନମୋହନ, ତାହାର ଏକ ନିବିଡ଼ ମନ୍ତବ୍ୟ ହେଉଛି ଏହି ଗୋଟିଏ ମାତ୍ର ଧାଡ଼ିର ଅଭିମତ; ଯାହା ବିସ୍ତୃତ ଏକ ଆଲୋଚନାଠାରୁ ଅଧିକ ବଳିଷ୍ଠ ପୁଣି ଭାବଦ୍ୟୋତକ ଓ ସାନ୍ଦ୍ରତାରେ ଶାଣିତ।

ରୋମାଣ୍ଟିକ୍ କବି ବିନୋଦଚନ୍ଦ୍ର ନାୟକଙ୍କ ଶୈଳ୍ପିକ ସ୍ୱାତନ୍ତ୍ର୍ୟ ପ୍ରତିପାଦନ କ୍ଷେତ୍ରରେ ସମାଲୋଚକ ଶତପଥୀଙ୍କର ଅନ୍ୟ ଏକ ମନ୍ତବ୍ୟକୁ ଏ ପ୍ରସଙ୍ଗରେ ଉଲ୍ଲେଖ

କରାଯାଇପାରେ । "କଳାର ଉଚ୍ଚାଟନରେ ସେ କଳାକାର; ଶିଳ୍ପର ଉଦ୍ଦୀପନାରେ ସେ ଶିଳ୍ପୀ (୩୭୨) ।" କବିର କଳାପ୍ରାଣତା ପୁଣି ତା'ର ଶିଳ୍ପ ବିଭବ ଜନିତ ଅଭିନବତା, କବିକୁ କିଭଳି ପ୍ରଦାନ କରିଥାଏ କାବ୍ୟିକ ଶ୍ରେୟ; ଯା'ଠାରୁ ଆଉ କିଛି ଭିନ୍ନ ଦୃଷ୍ଟାନ୍ତ ହୁଏତ ଥାଇ ନ ପାରେ- ଓଡ଼ିଆ ସାହିତ୍ୟର ଇତିହାସରେ । ଓଡ଼ିଆ ଜାତି ଓ ଜାତୀୟତାବାଦର ପ୍ରେକ୍ଷାପଟରେ ଉତ୍କଳମଣି ଗୋପବନ୍ଧୁଙ୍କର ରହିଛି ଏକ ଐତିହାସିକ ତଥା ମହତ୍ତ୍ୱପୂର୍ଣ୍ଣ ଭୂମିକା । ଅଥଚ୍ କବିଙ୍କ କାଳଜୟୀ କବିତ୍ୱର ପରାକାଷ୍ଠା ଓ ପାରଦର୍ଶିତାର ପରିଚ୍ୟକୁ ଉନ୍ମୋଚ୍ଚିତ କରିବା ଦିଗରେ, ରାଶି ରାଶି ସମାଲୋଚ୍ନା ମଧ୍ୟ ଅସମର୍ଥ ହୋଇଛି । ମାତ୍ର ଗୋପବନ୍ଧୁଙ୍କ ସାରସ୍ୱତ ସ୍ରଷ୍ଟାପଣ ଓ ସୃଜନ ଆଭିମୁଖ୍ୟର ଅନୁଧ୍ୟାନ, ସମାଲୋଚ୍କ ଶତପଥୀଙ୍କ ଆକଳନକୁ ପ୍ରଦାନ କରିଛି ଏକ ମର୍ଯ୍ୟାଦାଜନକ ଭିତ୍ତିଭୂମି । "'କାରା କବିତା'ର ବିଭିନ୍ନ କବିତା ଏକ ମହାକାବ୍ୟର ବିଷୟ ପରି ଚିରନ୍ତନ ଚେତନାର ସ୍ତରକୁ ଛୁଇଁପାରିଛି ଓ କ୍ଲାସିକ୍ ସାହିତ୍ୟ ପରି ମୋଖତ ଭାଷା ଓ ସମୃଦ୍ଧ ଭାବନାର ପରିଚ୍ୟ ବହନ କରିଛି । ପୁନଶ୍ଚ ଜଣେ କ୍ଲାସିକ୍ ସ୍ରଷ୍ଟାପରି ଅତିମାତ୍ରାରେ ପରମ୍ପରାଧର୍ମୀ ହୋଇଥିଲେ ମଧ୍ୟ ଓ ଆଦର୍ଶ, ନୀତିବକ୍ତା, ରୁଚିନିର୍ମଳ ଆଚାର-ବିଚାର ପ୍ରତି ଧ୍ୟାନନିଷ୍ଠ ହୋଇଥିଲେ ମଧ୍ୟ ଏ କବିତା ଗୁଡ଼ିକରେ ଉଦାର ପ୍ରଗତିପନ୍ଥୀ ବୈପ୍ଳବିକ ଚେତନାର ଅଭାବ ନାହିଁ । (୪୨୬) ।"

କବି ବାଞ୍ଛାନିଧିଙ୍କ କବିତ୍ୱର ମୂଲ୍ୟାୟନ କାଳରେ ମଧ୍ୟ ଏଭଳି ସୁନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ପ୍ରତିପାଦନର ସ୍ପର୍ଦ୍ଧା ପୋଷଣ କରନ୍ତି ସମାଲୋଚ୍କ ଶତପଥୀ, ଯାହା ବାଞ୍ଛାନିଧି କାବ୍ୟମାନସ ପ୍ରତି ସର୍ବଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ବୋଲି କୁହାଯାଇପାରେ । "ଆଧୁନିକ ଓଡ଼ିଆ କାବ୍ୟଧାରା ଠାରୁ ସେ ସଚ୍ଚେତନ ଦୂରତା ରକ୍ଷା କରିଥିଲେ ବି ସ୍ୱରାଜ ଆନ୍ଦୋଳନ କାଳରେ ତାଙ୍କ କବିତାରେ ଅବାରିତ ଜାତୀୟ ଭାବଚେତନା ତାଙ୍କୁ ଜାତୀୟ କବି ବୀରକିଶୋରଙ୍କ ସମଧର୍ମୀ ଭାବେ ଯଥାର୍ଥରେ ଅନ୍ୟତମ ଜାତୀୟ କବିର ଆସନ ପ୍ରଦାନ କରିବ (୪୪୦) ।" କଥାଶିଳ୍ପୀରେ ମନୋଜ ଦାସଙ୍କ ଖ୍ୟାତି, ଆନ୍ତର୍ଜାତୀୟ ସଫଳତାର ଉତ୍ତୁଙ୍ଗତାକୁ ଅତିକ୍ରମ କରିଛି ସତ; ମାତ୍ର କବିତାରେ ବି ରହିଛି ତାଙ୍କର ଏକ ବଳିଷ୍ଠ କଳାତ୍ମକ ଉତ୍କର୍ଷ - ଏ କଥା ହୁଏତ ଅନେକ ସମାଲୋଚ୍କଙ୍କୁ ବିଦିତ ନୁହେଁ । ଅଥଚ୍ କଥାରେ ତାଙ୍କର ଯେପରି ବଳିଷ୍ଠ ଆତ୍ମପ୍ରତ୍ୟୟ ଓ ଆବେଦନଗତ ଐଶ୍ୱର୍ଯ୍ୟ ନିହିତ, ଅବିକଳ ସେହିପରି କବିତାରେ ବି ପ୍ରତିନିୟତ ହୋଇଛି ମନୋଜଙ୍କ କାବ୍ୟପ୍ରତିଭାର ଅନନ୍ୟ ନିଦର୍ଶନ ଏହି ଅନାଲୋଚ୍ତି ସଫଳତାର ଦିଗଟିକୁ ଅନାବୃତ କରିବା ସହିତ, କବି ପ୍ରତିଭାକୁ ପ୍ରଦାନ କରନ୍ତି ସମାଲୋଚ୍କ ଶ୍ରୀଯୁକ୍ତ ଶତପଥୀ ତାଙ୍କ ସୃଜନପ୍ରତିଭାର ଯଥାର୍ଥ ନୈବେଦ୍ୟ- "ଶ୍ରୀ ଦାସଙ୍କ କବିତାରେ ଏହି ଭାବନା ସାମ୍ୟବାଦର ଏକ ବୈଜ୍ଞାନିକ ସଜ୍ଞା ପରି ବେଶ୍ ପ୍ରଖର ଓ ମୁଖର । ତାଙ୍କ କବିତାରେ ସାମ୍ୟବାଦର ଦୃପ୍ତ ନିଶାଣ 'ରକ୍ତପତାକା'ର ଚିତ୍ର ବହୁବାର ଚିତ୍ରିତ ହୋଇଥିଲେ ମଧ୍ୟ ଏହି କବିତା ଗୁଡ଼ିକ କେବଳ ଦଳୀୟ ପ୍ରୋପାଗଣ୍ଡା ନୁହେଁ । ନିଜସ୍ୱ କଳା-ସମୃଦ୍ଧିରେ

ଶ୍ରୀ ଦାସଙ୍କ କାବ୍ୟସ୍ୱରର ବଳିଷ୍ଠତା ଓ ଆଭିମୁଖ୍ୟର ଉଗ୍ରତା ପ୍ରତ୍ୟେକ କବିତାରୁ ପ୍ରତିଭାତ ହୁଏ (୪୬୦) ।"

ତନ୍ନ ତନ୍ନ ଅଧ୍ୟୟନ ଓ ମଗ୍ନ ଅନୁଶୀଳନରେ ସମାଲୋଚକ ଶତପଥୀଙ୍କ କାବ୍ୟିକ ବୀକ୍ଷା ଓ ନିରୀକ୍ଷା ବହନ କରେ ଯେଉଁ ଭିନ୍ନତାର ପ୍ରତିରୂପ, ତାହା ଓଡ଼ିଆ ସାହିତ୍ୟର ଇତିହାସରେ ଦାବି କରେ ଏକ ମହତ୍ତ୍ୱପୂର୍ଣ୍ଣ ଧାରା (Trend) ପ୍ରବର୍ତ୍ତନର ଶ୍ରେୟ । ଗତାନୁଗତିକ ସମାଲୋଚନାର ପରମ୍ପରାରେ ସେ ତେଣୁ ଏକ ଦୃପ୍ତ ଆହ୍ୱାନ ଓ ଏକ ଉଦାତ୍ତ ପ୍ରତିବେଦନ, ଯିଏ ନିଜସ୍ୱ ସୃଜନ ସମ୍ଭାବନାର ଏକନିଷ୍ଠ ସାଧନାରେ ନିର୍ମାଣ କରନ୍ତି ଏକ ଅଭିନବ ଅଥଚ ଆଧୁନିକ ସମାଲୋଚନାର ସୁଦୃଢ଼ ଭିତ୍ତିଭୂମି ।

## ଅବିଚଳ ନିରପେକ୍ଷତା :

କବିପଣର ସ୍ୱଚ୍ଛତା ଆଉ ପାରଦର୍ଶିତା ପାଇଁ ଯେମିତି ଉଚ୍ଛ୍ୱସିତ ପ୍ରଶସ୍ତିରେ ଶତମୁଖ ହୋଇ ଉଠନ୍ତି ସମାଲୋଚକ ଶତପଥୀ, ଠିକ୍ ସେମିତି କାବ୍ୟିକ ତ୍ରୁଟି ବିଚ୍ୟୁତି କ୍ଷେତ୍ରରେ ପ୍ରଦାନ କରନ୍ତି ନିଷ୍ଠୁର କଟୂକ୍ତି । ଭଲକୁ ଭଲ, ମନ୍ଦପଣରେ ସେ ନୁହନ୍ତି ଆଦୌ କାହାପାଇଁ ବି ନିଜର । ନିଜ-ପରର ସଂପର୍କଟିକୁ ଆଖିବୁଜି ଦିଅନ୍ତି ସେ ସମାଲୋଚନା ପାଇଁ ମାନସିକ ପ୍ରସ୍ତୁତିର ପୃଷ୍ଠଭୂମିରେ । ଏକାବେଳକେ ନିରପେକ୍ଷତାର ତରାଜୁରେ ନ୍ୟାୟବନ୍ତ ବିଚାରକ ଭଳି ତଉଲିବାକୁ ଆରମ୍ଭ କରନ୍ତି, ତନ୍ନ ତନ୍ନ କରି- ପୋଖତ ବଣିଆ ବାପୁଡ଼ା ପରି 'କଷଟି'ରେ କଷି, ଘଷି ପାରୁପର୍ଯ୍ୟନ୍ତ ଓ ବିବେକର ଜବାବ ସୁଆଲ ପରେ ଯାଇ ସେ ଶୁଣାନ୍ତି ତାଙ୍କ ସମାଲୋଚକୀୟ ରାୟ । ସମାଲୋଚକର ଆସନରେ ଅଧିଷ୍ଠିତ ହେବା ପରେ ସେ ଭୁଲିଯାଆନ୍ତି ସଂପର୍କ ଯେମିତି, ସେମିତି କବିର ପ୍ରତିପତ୍ତି, ପତିଆରା ଆଉ କ୍ଷମତାର ଦୁର୍ଦ୍ଦଣ୍ଡପଣ ସମେତ ପ୍ରତିପକ୍ଷର ନାଲି ଆଖି ଆଉ ପ୍ରତିଆକ୍ରମଣର ପରିଣତିକୁ ! "ଆଖି ନାହିଁ କାନ ନାହିଁ, ବାଜିଗଲେ ଦୋଷ ନାହିଁ'ର ସେ ଆପ୍ତବାକ୍ୟ ହୁଏ ତାଙ୍କର ଧର୍ମ ଓ ନିର୍ଭୀକତାର ଲେଖନୀକୁ ଶାଣିତ କରି ସେ ଆରମ୍ଭ କରନ୍ତି ତାଙ୍କ ଅବ୍ୟର୍ଥ ନିଶାଣ ! ଶର ସନ୍ଧାନରେ ସେ ପୁଣି ସବ୍ୟସାଚୀ ଯାହାର ଲକ୍ଷ୍ୟ ହୋଇଥାଏ ଅବ୍ୟର୍ଥ ସର୍ବଦା ଓ ସ୍ୱର୍ଦ୍ଧିତ ସୃଜନପଣରେ ସେ ପ୍ରତିପାଦିତ କରନ୍ତି ତାଙ୍କ ଦୁଃସାହସ, ଯାହା ଦେଖିବାକୁ ମିଳେ ନାହିଁ ଅଧିକାଂଶ ସମାଲୋଚକଙ୍କ ଜନ୍ମଜାତକରେ ଏବେବି ।

ସମାଲୋଚନାର ସବୁଠୁ ବଡ଼ ଶକ୍ତି ଓ ସାର୍ଥକତା ହେଉଛି ଏହି ନିରପେକ୍ଷତା ଓ ସମାଲୋଚକ ଶତପଥୀଙ୍କ ସୃଜନକ୍ରିୟାର ପୁଣି ତାହା ହେଉଛି ମୌଳିକ ଆଧାର । ଲୁହା ଦେଖି ପାଣି ଦେବାରେ ତେଣୁ ସେ ଧୂରନ୍ଧର ଓ ସୁଦକ୍ଷ ସର୍ବଦା, ସମାଲୋଚକୀୟ ଶସ୍ତ୍ର ଚାଳନା କାଳରେ । କବିତାର ବିଭବଟିକୁ ଯେମିତି ସେ ଉଖାରି ନିଖାରି ଖୋଜନ୍ତି, ସେମିତି କଳକୌଶଳ ପ୍ରୟୋଗ ପୂର୍ବକ ସେ ଆବିଷ୍କାର କରନ୍ତି ତମାମ୍ ଲେଖକୀୟ ଦୁର୍ବଳତା !

ଏହି ଦୁର୍ବଳତାର ସନ୍ଧାନ ପୁଣି ଆକ୍ରୋଶମୂଳକ ନୁହଁ, ପରନ୍ତୁ ସୁସ୍ଥ ସାହିତ୍ୟ ପରଂପରାରେ ପାଲଟିଯାଏ ସାରସ୍ୱତ ମାର୍ଗଦର୍ଶନ । ଅଳ୍ପ କେତୋଟି ଉଦାହରଣର ଉପସ୍ଥାପନ କରିବା ଏତାଦୃଶ ସମାଲୋଚକୀୟ ବୈଶିଷ୍ଟ୍ୟ ପ୍ରତିପାଦନ ନିମନ୍ତେ କେବଳ ।

ସବୁଜ ସାହିତ୍ୟର ଯେଉଁ କେତୋଟି ଦୁର୍ବଳ ଦିଗ, ତାଙ୍କ ଦୃଷ୍ଟିପଥାରୂଢ଼ ହୋଇଛି, ତାହାକୁ ସେ ଉଲ୍ଲେଖ କରିଛନ୍ତି ନିର୍ଭୀକତାର ସହିତ ଏ ରୂପେ । (୧) "ସବୁଜ ସାହିତ୍ୟର ମୂଳ ଦୁର୍ବଳତା ହେଉଛି ଚିନ୍ତାର ଅସମାହିତତା (ପୃ-୪୦) ।" (୨) "ସବୁଜ କବିତାର ଅନ୍ୟତମ ଦୁର୍ବଳତା ହେଉଛି, ଏହାର ବାସ୍ତବ-ବିମୁଖ ସ୍ୱର ବା ପଳାୟନ ମନୋବୃତ୍ତି (ତତ୍ରୈବ) ।" (୩) "ରାଧାନାଥ ଯୁଗର ପ୍ରଭାବରୁ ମୁକ୍ତ ହେବାକୁ ଚେଷ୍ଟା କରି ସେମାନେ ଆଉ ଗୋଟିଏ ଶକ୍ତିଶାଳୀ ପ୍ରଭାବର ମାୟାଜାଲରେ ଛନ୍ଦି ହୋଇଯାଇଛନ୍ତି । ବଙ୍ଗୀୟ ପ୍ରଭାବ ହେଉଛି ସେହି ମାୟାଜାଲ ।" (୪) "ଛନ୍ଦ ପ୍ରୟୋଗରେ ଏମାନେ ଆମ ପରଂପରାକୁ ଲଂଘନ କରି ନୂତନ ନାମରେ ବଙ୍ଗୀୟ ଛନ୍ଦକୁ ହିଁ ବହୁତ ବେଶୀ ଅନୁଶରଣ କରିଛନ୍ତି (ତତ୍ରୈବ) ।" ୧୯୪୭ ରୁ ୧୯୬୦ ମଧ୍ୟରେ ରଚିତ କେତେକ କବିତା ଯାହା 'ବିନ୍ଦୁ ଓ ସିନ୍ଧୁ' ନାମରେ ସଂକଳିତ ହୋଇଛି, ତାହା କବି ମାୟାଧର ମାନସିଂହଙ୍କ ସୃଜନ ସମ୍ଭାବନାକୁ ଅତୁଟ ରଖି ପାରିନାହିଁ । "ଏସବୁ କବିତାରେ ଦାର୍ଶନିକ ମନନଶୀଳତା ଓ ପ୍ରଜ୍ଞାବାଦ ଅଧିକ ପରିଲକ୍ଷିତ ହେଲେବି ପୂର୍ବର ପ୍ରାଣପ୍ରାଚୁର୍ଯ୍ୟ ନାହିଁ (୧୧୬) ।" କବିତା ଦର୍ଶନ ନୁହଁ କିମ୍ବା ପ୍ରଜ୍ଞାର ସାରସ୍ୱତ ଦସ୍ତାବିଜ୍ ନୁହେଁ । କେଉଁଠି ତତ୍ତ୍ୱ ଓ ଦର୍ଶନର ଆୟାସ, ସେଇଠି କବିତା ନ ଥାଏ, ଥିଲେବି ସେଥିରେ ପ୍ରାଣପ୍ରାଚୁର୍ଯ୍ୟ ନ ଥାଏ- ଏକଥା ଯେମିତି ମିଛ ନୁହଁ, ସେମିତି ସମାଲୋଚକ ଶତପଥୀଙ୍କ ସିଦ୍ଧାନ୍ତ ମଧ୍ୟ ହୋଇନପାରେ ତ୍ରୁଟିଯୁକ୍ତ, କସ୍ମିନ୍‌କାଳେ କେବେବି ସମାଲୋଚନା ସାହିତ୍ୟର ପରଂପରାରେ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ଶ୍ରୀଯୁକ୍ତ ଶତପଥୀ । ତାଙ୍କୁ ଦରଦୀ କବି ଓ ମାନବବାଦୀ କାବ୍ୟଶିଳ୍ପୀ ଭାବରେ ମଧ୍ୟ ଅଭିନୀତ କରିଛନ୍ତି । ବିଭିନ୍ନ ଦିଗରୁ, ବିଶେଷକରି କବିତାର ଆବେଦନଗତ ବୈଶିଷ୍ଟ୍ୟ ଦୃଷ୍ଟିରୁ ନାନା ଭାବରେ ସେ ପ୍ରଶଂସିତ କରିଛନ୍ତି । କିନ୍ତୁ ଗୋଟିଏ ଦୁର୍ବଳତା ତାଙ୍କୁ ମର୍ମାହତ କରିଛି ଯେତେବେଳେ, ସେତେବେଳେ ନିସୃତ ହୋଇଛି ସମାଲୋଚକର ଲେଖନୀରୁ ଅତି ନିଷ୍ଠୁର ମନ୍ତବ୍ୟ । କବି କୃଷ୍ଣଚନ୍ଦ୍ରଙ୍କ "ଅନେକ ପଂକ୍ତିରେ ଏହି ଗଦ୍ୟସୁଲଭ ଶବ୍ଦପ୍ରୟୋଗ ଓ ତଦ୍ଦ୍ୱାରା ଛନ୍ଦବିଚ୍ୟୁତି ଲକ୍ଷ୍ୟ କରାଯିବ । ଆଗରୁ ସୂଚୀତ ହୋଇଛି ଯେ, ଅତି କଥନ ତାଙ୍କ କାବ୍ୟ ଚିନ୍ତାରେ ଏକ ଚରମ କଳାଗତ ବିଲକ୍ଷଣ । କିନ୍ତୁ ଶେଷପର୍ଯ୍ୟନ୍ତ ସେ ଏଥିରୁ ଆପଣାକୁ ସୁଧାରି ପାରି ନାହାନ୍ତି (୧୪୯) ।"

ସଚ୍ଚି ରାଉତରାୟଙ୍କ କାବ୍ୟଜୀବନର ଦ୍ୱିତୀୟାର୍ଦ୍ଧ ଚେତନାଗତ ଅବକ୍ଷୟର ଏକ ଅବରୋହ ପର୍ବ ! ସେଇଠି ଉତରଣ ନାହିଁ କି ପ୍ରତିବଦ୍ଧତାର ଉଚ୍ଚାରଣ ନାହିଁ । ସୃଜନକ୍ରିୟାର

ଏହି ବିଡ଼ମ୍ବିତ ପରିଣତିଟି କବିଙ୍କୁ ଯେମିତି ମର୍ମାହତ କରିନାହିଁ, ତା'ଠୁ ଅଧିକ ବ୍ୟଥିତ ହୋଇଛନ୍ତି ସମାଲୋଚ଼କ । ଅଥଚ଼ ଅଧୋଗତିର ଏହି ଦୁର୍ଦ୍ଦଶା ପାଇଁ ସେ କୌଣସି ଯୁକ୍ତି ବା ବାହାନାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି । "ଯେଉଁ କବି କନ୍ୟାର ଜନ୍ମଦିବସରେ 'ନବଜାତକ'କୁ ଏକ ବିପୁଳ ଆଦର୍ଶବାଦୀ ସ୍ୱର ଶୁଣାଇ ସର୍ବହରା ଗଳାରେ ବରଣମାଳା ଦେବାକୁ ନିର୍ଦ୍ଦେଶ ଦେଇଥିଲେ, ସେ ଯେ ଘଟଣାଚକ୍ରରେ ନିଜ ବ୍ୟକ୍ତିଗତ ଜୀବନରେ ସେପରି ସାମ୍ୟବାଦୀ ସଂଘର ପଥରୁ ନିରାପଦ ଦୂରତ୍ୱରେ ଏକ ବସ୍ତୁବାଦୀ ଆଟୋପ ଭିତରେ ବୁଡ଼ି ରହିଲେ- ଏହା ତାଙ୍କ ପରବର୍ତ୍ତୀ କାବ୍ୟ ପ୍ରୟାସରୁ ସ୍ପଷ୍ଟ ପ୍ରତିପାଦିତ ହୁଏ । ତେଣୁ ଏହି ପରିବେଶରେ ତାଙ୍କ ପୂର୍ବ କାବ୍ୟଚିନ୍ତାର ସ୍ୱାଭାବିକ ମୃତ୍ୟୁ ଘଟିବା ସଂଗେ ସଂଗେ ଏକ ନୂତନ ଚୈତନିକ ଅଭିବୃଦ୍ଧି ଘଟିଛି- ଯାହା ତାଙ୍କ ବିଦ୍ରୋହୀ ଓ ବିଦ୍ରୂପାତ୍ମକ କାବ୍ୟଚେତନାର କ୍ଷତିପୂରଣ ସ୍ୱରୂପ ଏକ ଅନ୍ତର୍ମଗ୍ନ ଭାବବିଳାସର ସଂଘର ପଥରେ ଭ୍ରାମ୍ୟମାଣ (୨୭୩) ।"

ସଚ୍ଚି ରାଉତରାୟଙ୍କ କାବ୍ୟପ୍ରତିଭାର ବିପର୍ଯ୍ୟୟ ଓ ତା'ର କାରଣ ନିର୍ଣ୍ଣୟ ମଧ୍ୟରେ ସମାଲୋଚ଼କର ନିରପେକ୍ଷ ଦୃଷ୍ଟି ଦିଗନ୍ତଟି କିନ୍ତୁ ଶିଥିଳ ନୁହଁ କି ନିରସ୍ତ ନୁହିଁ । ଆଲୋକିତ ପକ୍ଷର ସ୍ୱର୍ଣ୍ଣିମ ଶିହରଣକୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନାରେ ଯେମିତି ସେ ଆତ୍ମହରା, ସେମିତି ଅନ୍ଧାର ପକ୍ଷର ମର୍ମନ୍ତୁଦ ବେଦନାବୋଧରେ ମ୍ରିୟମାଣ । ଉଭୟ ପକ୍ଷକୁ ନେଇ ତେଣୁ ସଂଚରିତ ହୋଇଥାଏ ଅତି ସତର୍କ ଭାବରେ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚ଼ନାର ଗତିପଥ । ଭାବପ୍ରବଣତାର ବଶବର୍ତ୍ତୀ ହେବା କିମ୍ବା ଆବେଗ ବଶତଃ ଦୁର୍ବଳତାର ଜଖମ ଟିକକୁ ଆଖି ବୁଜିଦେବା ଭଳି ଧୃଷ୍ଟତାର ଶିକାର ହେବାଭଳି ଟିକିଏ ବି ସୁଯୋଗ ନଥାଏ ତାଙ୍କ ସମାଲୋଚ଼କୀୟ ଇଜ୍‌ଲାସ୍‌ରେ ଆଦୌ । "ଏହି ପରିସ୍ଥିତିରେ କବି କାବ୍ୟର ନିଜସ୍ୱ ଆତ୍ମା ଅପେକ୍ଷା ତା'ର ଅଙ୍ଗସଜ୍ଜା ପ୍ରତି ଅଧିକ ଧ୍ୟାନ ନିବିଷ୍ଟ ହୋଇଛନ୍ତି, ଏହି ସଚେତନତା ହେତୁ ତାଙ୍କ କାବ୍ୟ ବହୁ ଭାବଚେତନା, ବହୁ ବାଦ ଓ ପରୀକ୍ଷାରେ କ୍ରମେ ବୁଦ୍ଧିବାଦୀ ଓ ଜଟିଳ ହୋଇପଡ଼ିଛି । xxx ତେଣୁ ସେ ପାଠକ ଠାରୁ କ୍ରମେ ଯୋଗସୂତ୍ର ହରେଇ କେବଳ ସ୍ୱଗତୋକ୍ତି ହିଁ କରିଛନ୍ତି । ପ୍ରେମ, ପ୍ରଣୟ ଓ ବାସ୍ତବବାଦୀ ରୋମାଣ୍ଟିକ୍ ଭାବଚେତନାକୁ ନେଇ ଏହି ପର୍ଯ୍ୟାୟରେ ସଂଗଠିତ ତାଙ୍କ କାବ୍ୟମନନ ତେଣୁ ଝରଣା ପରି ଆଉ ଛଳଛଳ ବା ନଦୀପରି କଳତାନ ନୁହେଁ; ବରଂ ବୁଦ୍ଧିବାଦର ପ୍ରଦର୍ଶନରେ ବେଶ୍ ବୁଦ୍ଧିଦୀପ୍ତ, ପ୍ରୟୋଗବାଦୀତାରେ ପରିପୁକ୍ତ (୨୭୫) ।" କାବ୍ୟମାନସର ପରିବର୍ତ୍ତନ ଏକ ଅବଧାରିତ ପ୍ରକ୍ରିୟା । ଆଦର୍ଶଗତ ଏକନିଷ୍ଠତାର ଅଭାବ । ପାରିପାର୍ଶ୍ୱିକତାର କଠୋର ପ୍ରତିକୂଳ ପରିସ୍ଥିତି ଆକସ୍ମିକ ସଂଘାତଜନିତ ବିପର୍ଯ୍ୟୟର କାରଣରୁ ଅନେକ ସମୟରେ କାବ୍ୟଚେତନାଟି ବିବଶ ହୋଇପଡ଼େ ଅଥବା ବ୍ୟବସ୍ଥା (Establishment) ସହ ସାଲିସ୍ କରିବାର ବାଧବାଧକତା, ସୃଷ୍ଟିକରେ ସ୍ରଷ୍ଟାର ଭାବଜଗତରେ ଯେଉଁ ବିମର୍ଷବୋଧ;

ତାହାହିଁ ତା'ର ସୃଜନ କ୍ରିୟାକୁ - ପରିଣତ ବୟସରେ ନିୟନ୍ତ୍ରିତ କରିଥାଏ । ଅଧିକାଂଶ ବିପ୍ଳବୀ କବିଙ୍କ ଭାଗ୍ୟରେ ଏଭଳି ନିଷ୍ଠୁର ପରିଣତିଟି ଦେଖିବାକୁ ମିଳିଛି ପ୍ରାୟତଃ ଆମ ସାହିତ୍ୟରେ । ସଚ୍ଚିରାଉତରାୟ ହେଉଛନ୍ତି ଏହାର ଜ୍ୱଳନ୍ତ ନିଦର୍ଶନ ।

ଅନ୍ୟତମ ପ୍ରଗତିବାଦର ସ୍ୱର୍ଦ୍ଧିତ କାବ୍ୟସ୍ୱରଟି ହେଉଛି ଅନନ୍ତ ପଟ୍ଟନାୟକଙ୍କର ଯାହାଙ୍କ କାବ୍ୟଚେତନାଟି ପ୍ରାୟତଃ ମୂଳ ବିଦ୍ରୋହୀ ଦର୍ଶନ ଠାରୁ ଦୂରେଇ ଯିବାକୁ ଆରମ୍ଭ କରିଥିଲା । ସମାଲୋଚକଙ୍କ ଅଭିବ୍ୟକ୍ତିଟି ଏ ପ୍ରସଂଗରେ ଅବଶ୍ୟ ପ୍ରଣିଧାନଯୋଗ୍ୟ । "କବି ପଟ୍ଟନାୟକ ତାଙ୍କ କବିତାର ବିପ୍ଳବାତ୍ମକ ଆଭିମୁଖ୍ୟ ତଥା ସ୍ଥିତିବାଦୀ ଚେତନାକୁ ପରିହାର କରି ଏକ ବାସ୍ତବବାଦୀ ରୋମାଣ୍ଟିକ୍ ଭାବବିଳାସ ଭିତରେ ଆତ୍ମମଗ୍ନ ହୋଇଛନ୍ତି; ଏଥିରେ ବିସ୍ମିତ ହେବାରେ କିଛି ନାହିଁ । ହୁଏତ ଏହା ହୋଇପାରେ ରଣକ୍ଲାନ୍ତ ସୈନିକର ଏକ ବିଶେଷ ମୁହୂର୍ତ୍ତରେ ପଛଘୁଞ୍ଚା (retreat) କିମ୍ବା ସ୍ୱାଧୀନତା ପରବର୍ତ୍ତୀ ସାମାଜିକ ଜୀବନର ବାସ୍ତବ ଚିତ୍ରଦର୍ଶନ ଜନିତ ବିତୃଷ୍ଣା ଓ ବୈରାଗ୍ୟ (୨୯୨) ।" ଶ୍ରୀଯୁକ୍ତ ପଟ୍ଟନାୟକଙ୍କ କବିତାରେ ଦେଖିବାକୁ ମିଳେ ଅନାବଶ୍ୟକ ଶବ୍ଦସଂଯୋଜନାର ପ୍ରାଚୁର୍ଯ୍ୟ, ଯାହା କବିତାର ସାବଲୀଳତାର ଧାରା ପ୍ରବାହରେ ସୃଷ୍ଟି କରିଥାଏ ପ୍ରତିବନ୍ଧକ । ଜଣେ ସଫଳ କବି ତେଣୁ ଶବ୍ଦ ସଂଯୋଜନାର ପାରଦର୍ଶୀ ଭୂମିକା ପ୍ରତି ସଦା ସଚେତନ ହୋଇଥାଏ । ଶବ୍ଦର ମୋହରେ ବନ୍ଧା ପଡ଼ିଲେ, କବିତା ହୁଏ ଭାରାକ୍ରାନ୍ତ । "ଏହିପରି ରାଶି ରାଶି ଶବ୍ଦଚୟନ କବିତା ପାଇଁ ଏକ ସାଂଗୀତିକ ଇଫେକ୍ଟ ଦେଉଥିଲେ ମଧ୍ୟ ଅତ୍ୟନ୍ତ ଅପ୍ରାସଂଗିକ ଓ ଅବୋଧ ମନେହେଉଛି; ଫଳରେ ଭାଷାର ଚମତ୍କାରିତାରେ ଭାବର ପ୍ରତିପାଦ୍ୟତା ଅନ୍ୟମନସ୍କ ହୋଇପଡ଼ିଛି (୨୯୬) ।"

ଜ୍ଞାନୀନ୍ଦ୍ର ବର୍ମାଙ୍କ କବିତାର ଆକଳନ କାଳରେ ଏହି ପ୍ରକାର ଦୁର୍ବଳତାଟି ଆବିଷ୍କାର କରିଛନ୍ତି ସମାଲୋଚକ । କବି ବର୍ମାଙ୍କ 'ଜଡ଼ବାଦ' କବିତା ଆଲୋଚନା ପ୍ରସଂଗରେ ନିଜର ଅଭିମତ ଉପସ୍ଥାପନ ପୂର୍ବକ ଶ୍ରୀଯୁକ୍ତ ଶତପଥୀ ଉଲ୍ଲେଖ କରିଛନ୍ତି ଯେ, "ଏହି ରଚନାଟି କବିତା ଅପେକ୍ଷା ଏକ ଦୀର୍ଘ ପ୍ରବନ୍ଧ ପରି ମନେହୁଏ । ଯେଉଁ ମିତବାକ୍ ଭାବ ସାନ୍ଦ୍ରତା ଆଧୁନିକ କବିତାର ଅନ୍ୟତମ ଗୁଣ ଭାବେ ସ୍ୱୀକୃତ ତାହା ଏଠାରେ ନିର୍ବାସିତ (୩୮୨) ।" ଅନ୍ୟ କେତେକ କବିତା କ୍ଷେତ୍ରରେ ମଧ୍ୟ କବିତାର ଏହି ବିଭବଟିର ଅନୁପସ୍ଥିତିକୁ ଲକ୍ଷ୍ୟ କରି ଅନ୍ୟତ୍ର ଏକ ପ୍ରସଂଗରେ ଅନୁରୂପ ମନ୍ତବ୍ୟ ପ୍ରଦାନ କରନ୍ତି ସମାଲୋଚକ, "ଏ କବିତା ଗୁଡ଼ିକରେ ପରିମିତତା (brevity) ର ଅଭାବ ହେତୁ ପାଠକ ଉଦ୍‌ବୁଦ୍ଧ ହୋଇପାରେ ନାହିଁ । ଏହି ବିଶ୍ଳେଷଣାତ୍ମକ ତଥା ବର୍ଣ୍ଣନାତ୍ମକ ରୀତି ବା ବାବଦୁକତା ଶ୍ରୀ ବର୍ମାଙ୍କ କବିତାର ଏକ ମୁଖ୍ୟ ଦୁର୍ବଳତା ବୋଲି ସ୍ୱୀକାର କରିବାକୁ ହେବ (୩୮୪) ।"

ଏକଥା ସତ ଯେ, ପାଠକୀୟ ଉଦ୍‌ବୋଧନର ସାମର୍ଥ୍ୟ ନ ରହିଲେ, କବିତା ହରାଇବସେ ତା'ର ମୌଳିକ ଆବେଦନ । ଯେହେତୁ କବିତା କେବଳ ଏକ ଶବ୍ଦର

ଭୋଜବାଜ ନୁହେଁ, କିମ୍ବା ଚତୁର୍ଯ୍ୟର ନିରସ କାରିଗରୀ ନୁହଁ । କାରଣ କବିତାର ପ୍ରାଣସ୍ପନ୍ଦନ ଟିକକ ହେଉଛି ତା'ର ଭାବଗତ ସାବଲୀଳତାର ଛନ୍ଦୋବଦ୍ଧ ସୃଜନକର୍ମ, ଯାହାର ଅଭାବରେ କବିତା ଗଦ୍ୟର ଅନାବଶ୍ୟକ ଗାମ୍ଭୀର୍ଯ୍ୟକୁ ବରଣ କରିନେବାକୁ ହୋଇଥାଏ ବାଧ ଓ ବିବଶ । ଡକ୍ଟର ହରେକୃଷ୍ଣ ମହତାବଙ୍କ କାବ୍ୟସୃଷ୍ଟି, କେତେକ କ୍ଷେତ୍ରରେ ହୋଇଛି ଏତାଦୃଶ ଦୋଷଦୁଷ୍ଟ ବୋଲି ସମାଲୋଚକ ନିଜର ଆଲୋଚକୀୟ ଅସନ୍ତୋଷ ବ୍ୟକ୍ତ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । "ତାଙ୍କ କାବ୍ୟର ଭାଷା, କଥନଭଙ୍ଗୀକୁ ଅବଲମ୍ବନ କରିଥିଲେବି ଗଦ୍ୟଛନ୍ଦ ଠାରୁ ଦୂରତା ରକ୍ଷା କରିଛି । ତଥାପି ଏହା ସ୍ପଷ୍ଟଭାବେ କୁହାଯାଇପାରେ ଯେ, କବି ମହତାବଙ୍କ କାବ୍ୟର ବିକାଶ ବା ପରିଣତି ନାହିଁ; ବରଂ ବେଳେବେଳେ ଏହା ଅତି ମନ୍ଥର ଓ ନିର୍ବିଚଳ (୩୯୭) ।"

ଏହି ପୃଷ୍ଠଭୂମିରେ କବି ନିତ୍ୟାନନ୍ଦ ମହାପାତ୍ରଙ୍କ କବିତାର ଦୁର୍ବଳ ଦିଗ ଓ ସମାଲୋଚକ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚକୀୟ ସ୍ପଷ୍ଟବାଦୀତାର ଅନ୍ୟ କେତୋଟି ଉଦାହରଣ ଉପସ୍ଥାପନ କରିବା । "୧୯୫୪ ପରେ ଅର୍ଥାତ୍ 'କାଳରତ୍ରି'ର ପ୍ରକାଶନ ପରେ ସେ ତାଙ୍କ କବିତାର ଆଙ୍ଗିକ ପରିବର୍ତ୍ତନ କରି ସଂପୂର୍ଣ୍ଣ ଗଦ୍ୟଶୈଳୀକୁ ଅବଲମ୍ବନ କରିଛନ୍ତି । ଏ ଶୈଳୀରେ ଆବେଗ ନାହିଁ, ଅଛି ପ୍ରଜ୍ଞାର ପ୍ରଦର୍ଶନ, ମନୋଜ୍ଞତା ନାହିଁ, ଅଛି ଅତିରିକ୍ତ ମନନଶୀଳତା" (୪୩୮) । "ବକ୍ତବ୍ୟମୁଖୀ ଏହି ଶୈଳୀ ଏତେ ମୁକ୍ତ ଓ ନିରାଭରଣ ଯେ, ପାଠକ ପାଇଁ ଆଉ କୌଣସି ପ୍ରଚ୍ଛନ୍ନତା ରଖେନାହିଁ; ବରଂ ଏ କବିତା ଦୁଇଟି ଶୁଷ୍କ ଗଦ୍ୟର ଶବ୍ଦାଡ଼ମ୍ବରପୂର୍ଣ୍ଣ ସଚେତନ ଚତୁର ବିକୃତି ପରି ମନେହୁଏ (୪୩୮/ ୪୩୯) ।" "ସାମାଜିକ ଓ ରାଜନୈତିକ ଜୀବନରେ ବହୁଧା ବିଭକ୍ତ ଓ ବିଚଳିତ ଏହି କବି, କବିତା ପରି ଏକ ସୁକୁମାର କଳାର ଲାଳନାରେ ଘୋର ଅବହେଳା ପ୍ରକାଶ କରି ସ୍ୱାଧୀନତା ଉତ୍ତର କାଳରେ କ୍ରମକ୍ଷୟଶୀଳତାର ସମ୍ମୁଖୀନ ହୋଇଛନ୍ତି ଓ ଏହି କ୍ଷୟଶୀଳତା ୧୯୬୦ ବେଳକୁ ଚୂଡ଼ାନ୍ତ ହୋଇଯାଇଛି (୪୩୯) ।"

ଅଧିକାଂଶ ପ୍ରଥିତଯଶା କବି ମଧ୍ୟ ସମାଲୋଚକଙ୍କ ଏହି ନିଶାଣରୁ ବାଦ୍ ପଡ଼ିନାହାନ୍ତି । କବିତାରୁ 'ଗୁଣ' ଓ 'ଖୁଣ' କାଢ଼ିବା ଦିଗରେ ତାଙ୍କର ନିଷ୍ଠାପରତା ଯେଉଁ ବିଚକ୍ଷଣ ପାରଦର୍ଶିତାର ପ୍ରମାଣ ବହନ କରେ, ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସରେ ସତକୁସତ ତା'ର କୌଣସି ପଟାନ୍ତର ନାହିଁ । ଦିଗ୍‌ଗଜ କବି ରମାକାନ୍ତଙ୍କ 'ଜହ୍ନରାତି'ର ଆଲୋଚନା କାଳରେ ଆତ୍ମହରା ହୋଇ ଉଠିଥିବା ସମାଲୋଚକର ପ୍ରାଣ, ତାଙ୍କ ବିପୁଳ ପ୍ରୟୋଗବାଦୀ କବିତାର ବୌଦ୍ଧିକ ଦୁର୍ବହତାରେ ଅକସ୍ମାତ ମର୍ମାହତ ହୋଇଉଠିଛି । 'ଜହ୍ନରାତି' ଯଦି କାବ୍ୟମାନସର ଶ୍ରେଷ୍ଠତାର ନିଦର୍ଶନ ହୁଏ, ତେବେ ଅନ୍ୟ ରାଶି ରାଶି କବିତାକୁ କ'ଣ ନିକୃଷ୍ଟତାର କଳାରୂପ ବୋଲି କୁହାଯିବ ନାହିଁ କି? "ତେଣୁ ସ୍ୱତଃ ଭାବନା ଆସେ ଏଇ କବି ଭିତରେ ଥିବା ଅମିତ ସୁପ୍ତ ଶକ୍ତି (potential energy) କୁ

ସେ ଅଯଥା ବୌଦ୍ଧିକ ଜଟିଳତା ଓ ପରୋକ୍ଷ ପ୍ରକାଶୋକ୍ତି ମଧ୍ୟରୁ ସତର୍କତାର ସହିତ ଦୂରେଇ ରଖି ଠିକ୍ ଭାବରେ ନିୟୋଜିତ କରିପାରିଥିଲେ ୧୯୬୭ ବେଳକୁ ଆଧୁନିକ କବିତାର ଶ୍ରେଷ୍ଠ ଶକ୍ତିଧର ଶିଳ୍ପୀର ସମ୍ମାନ ପାଇପାରିଥାନ୍ତେ (୫୩୯)।"

ପରବର୍ତ୍ତୀ କାଳରେ ସମ୍ଭବତଃ ସମାଲୋଚକ ଶତପଥୀଙ୍କ କଠୋର ସମାଲୋଚନାର ପ୍ରଭାବ, ତାଙ୍କ କାବ୍ୟଚେତନାରେ ଆଣିଛି ଏକ ମନୋଜ୍ଞ ଘଟାନ୍ତର, ଯେଉଁ ସତ୍ୟଟିକୁ ମଧ 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥରେ ଉଲ୍ଲେଖ କରିବାକୁ ଭୁଲିଯାଇନାହାନ୍ତି ସ୍ୱୟଂ ସମାଲୋଚକ। "ମନେହୁଏ ସ୍ପର୍ଶକାତର କବି ଏପରି ତୀବ୍ର ସମାଲୋଚନାଦ୍ୱାରା ଅନେକ ପରିମାଣରେ ଲାଭବାନ ହୋଇଛନ୍ତି ଓ ୧୯୬୮-୭୮ ମଧ୍ୟରେ ତାଙ୍କ କାବ୍ୟ-ସରଣୀକୁ ସମ୍ପୂର୍ଣ୍ଣ ପରିବର୍ତ୍ତିତ କରିଛନ୍ତି (୩୫୯)।" ସମାଲୋଚନା ହେଉଛି ଏକ ସାରସ୍ୱତ ଶୁଶ୍ରୂଷା, ଯାହା ସୃଜନ ପରଂପରାକୁ ପ୍ରଦାନ କରିଥାଏ କଲ୍ୟାଣକର ଓ ସମୃଦ୍ଧିର ସମ୍ଭାବ୍ୟ ପରିଚୟକ। ରମାକାନ୍ତ ରଥଙ୍କ ଠାରୁ ଫେରିବା ଏଇ ପ୍ରସଙ୍ଗରେ ଅନ୍ୟତମ ଶ୍ରେଷ୍ଠକବି ସୀତାକାନ୍ତ ମହାପାତ୍ରଙ୍କ ନିକଟକୁ। ଅନେକ ସମ୍ଭାବନାର ଅପେକ୍ଷା ରଖୁଥିବା ଏହି କବିଙ୍କର ଅନୁରୂପ ତ୍ରୁଟି ପ୍ରତି ପ୍ରଦାନ କରିଛନ୍ତି ସମାଲୋଚକ ଶତପଥୀ ତାଙ୍କ ଗତାନୁଗତିକ କଟାକ୍ଷ କିଭଳି ଦେଖନ୍ତୁ। "ସୀତାକାନ୍ତଙ୍କ କବିତାରେ ବେଳେବେଳେ କବିତାର ସାମଗ୍ରିକ ଭାବନାକୁ ଦାର୍ଶନିକତା ଆବୋରି ବସେ। କବି ମଧୁସୂଦନଙ୍କ ପରି ଜୀବନ ଓ ମୃତ୍ୟୁ ବିଷୟରେ ସେ ଅନେକ ସରମନାଇଜେସନ୍ ପ୍ରକାଶ କରନ୍ତି। ଫଳରେ କବିତାର ସୌନ୍ଦର୍ଯ୍ୟବୋଧ ବ୍ୟାହତ ହୋଇ କେବଳ ଦର୍ଶନ ସେ ସ୍ଥାନ ଅଧିକାର କରିନିଏ (୫୫୧)।"

ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚନାର ମୂଳ ଆଧାରଟି ହେଉଛି ନିରପେକ୍ଷତା। ନିରପେକ୍ଷତା ଯେଣୁ ହେଉଛି ଶୁଦ୍ଧ-ଆଲୋଚନାର ମହତ୍ତ୍ୱପୂର୍ଣ୍ଣ ବିଭବ। ଏହି ଟିକକର ଅଭାବରେ ସମାଲୋଚନା ହୋଇଥାଏ କାମଳ ବ୍ୟାଧି ପୀଡ଼ିତ ଓ ନିନ୍ଦା-ପ୍ରଶଂସାର ଅଳୀକ ଉପସ୍ଥାପନ। ସମାଲୋଚକର ଯାତ୍ରାପଥ ହେଉଛି ତେଣୁ କଣ୍ଟକିତ ଓ ଦୁର୍ଗମ। ସୁସ୍ଥ ସମାଲୋଚନାର କ୍ଷେତ୍ରଟି ହେଉଛି ଆମ ସାହିତ୍ୟରେ ଅତି ସୀମିତ ପୁଣି ସଂକୁଚିତ। ସେଥିପାଇଁ ସାହିତ୍ୟର ମୁଖ୍ୟସ୍ରୋତରୁ ବିଚ୍ଛିନ୍ନ ହୋଇ ପଡ଼ିଛି ଆମ ସମାଲୋଚନାର ପରମ୍ପରା। ଅବହେଳା, ଉପେକ୍ଷା ଓ ଅନାଦୃତିର ଦୁର୍ଭାଗ୍ୟ ଆଦରି, ମନ୍ଥର ଓ ମୁମୂର୍ଷୁ ଭାବରେ ଏହା ଆପଣା ସ୍ଥିତି ସମ୍ଭାଳିବାରେ ତଥାପି ନିୟୋଜିତ। ସର୍ଜନାତ୍ମକ ସାହିତ୍ୟ ପରି ସମାଲୋଚନାକୁ ତେଣୁ ଆଜି ମଧ ପ୍ରାପ୍ତ ହୋଇ ନାହିଁ ଏକ ମର୍ଯ୍ୟାଦାଜନକ ଆସନ।

**ଭାଷିକ ବୈଚିତ୍ର୍ୟ :**

ଭାଷା ହେଉଛି ଶକ୍ତିଶାଳୀ ସମାଲୋଚନାର ପ୍ରମୁଖ ଐଶ୍ୱର୍ଯ୍ୟ। ସମାଲୋଚନାର ପ୍ରାଣପ୍ରାଚୁର୍ଯ୍ୟ ପ୍ରକଟିତ ହୋଇଥାଏ ଉପଯୁକ୍ତ 'ଭାଷା'ର କଳାତ୍ମକ ଉପସ୍ଥାପନ ଜରିଆରେ।

ଭାଷା କ୍ଷେତ୍ରରେ ଦୁର୍ବଳତା ରହିଲେ, ସମାଲୋଚ଼ନା ହୋଇଥାଏ ନିଗୃହିତ ଓ ନିରର୍ଥକ । ଅଭିବ୍ୟକ୍ତିକୁ ଏହା ପୁଣି ପ୍ରଦାନ କରିଥାଏ ସ୍ପଷ୍ଟତାର ପରିଚ୍ଛନ୍ନ ଦ୍ୟୋତନା । ମୌଳିକ ସୃଷ୍ଟିର ମହତ୍ତ୍ୱ ପୁଣି ସଂପ୍ରସାରିତ ହୋଇଥାଏ ଯଥାର୍ଥ ଭାଷାର କାରିଗରୀକୁ ଭିତ୍ତି କରି । ଶବ୍ଦ ବସାଣର କଳା ତେଣୁ ଏକ ସର୍ଜନଶୀଳ ସାଧନା । ସାହିତ୍ୟର ଯେ କୌଣସି ବିଭାଗ ବି ହେଉପଛେ, ସବୁଠି ସଫଳତାର ସୂତ୍ରଟି ନିହିତ ଥାଏ ଭାଷା ସଂଯୋଜନାର ପାରଦର୍ଶୀ ସୃଜନ କ୍ଷମତା ନିକଟରେ । 'ସବୁଜରୁ ସାଂପ୍ରତିକ' ସମାଲୋଚ଼ନା ଗ୍ରନ୍ଥଟି ଅନୁରୂପ ଭାଷିକ ସାମର୍ଥ୍ୟର ଏକ ଉଚ୍ଚକୋଟୀର ନିଦର୍ଶନ । ପ୍ରସଙ୍ଗର ଗୁରୁତ୍ୱ ଓ ଅନୁଶୀଳନର ଭିନ୍ନ ଭିନ୍ନ ଦିଗକୁ ଶ୍ରୀଯୁକ୍ତ ଶତପଥୀଙ୍କ ଭାଷା ବିନ୍ୟାସଗତ ଚାତୁର୍ଯ୍ୟ ପ୍ରଦାନ କରିଥାଏ ଏକ ଅଭିନବ ଐଶ୍ୱର୍ଯ୍ୟ । କାନ୍ତକବିଙ୍କ 'ମେଘବିଳାସ'ର କାବ୍ୟିକ କାରୁକାର୍ଯ୍ୟ ଉପସ୍ଥାପନ କାଳରେ ସମାଲୋଚ଼କଙ୍କ ଭାଷିକ ବୈଚିତ୍ର୍ୟର ନିପୁଣତାକୁ ଅବତାରଣା କରାଯାଇପାରେ ପ୍ରଥମେ । "ରବୀନ୍ଦ୍ରନାଥ ଯେଉଁ ଚିନ୍ମୟର ସ୍ପର୍ଶ ପାଇଁ ଝଡ଼ବର୍ଷା ବିକ୍ଷୁବ୍ଧ ଅନ୍ଧକାର ରାତ୍ରିରେ ଉନ୍ନିଦ୍ର ହୋଇ ଚାହିଁ ରହିଛନ୍ତି; ଯାହାର ଅଭିସାର ପାଇଁ କବି ବାସକସଜ୍ଜା ନାୟିକା ପରି ପ୍ରତୀକ୍ଷାମଗ୍ନ; ଲକ୍ଷ୍ମୀକାନ୍ତ ମଧ୍ୟ ମେଘାୟିତ କଳା ରାତିରେ ତାହାରି ଚିନ୍ତାରେ ପ୍ରପୀଡ଼ିତ (୬୮) ।"

ମାତ୍ର ଗୋଟିଏ ଧାଡ଼ିରେ ସବୁଜକବି ଗୋଦାବରୀଶ ମହାପାତ୍ରଙ୍କ କବିତ୍ୱ ମୂଲ୍ୟାୟନ ଅବକାଶରେ ସମାଲୋଚ଼କ ଶତପଥୀଙ୍କର ଭାଷାଗତ ଗାମ୍ଭୀର୍ଯ୍ୟ କେତେ ବେଶି ହୋଇପାରେ ଶାଣିତ ଓ ବ୍ୟଞ୍ଜନାତ୍ମକ ତାହାର ଗୋଟିଏ ମାତ୍ର ଉଦାହରଣ ଏଠାରେ ଉଲ୍ଲେଖ କରାଯାଇପାରେ । "ମାନବିକ ସ୍ନିଗ୍ଧତା ଓ ପୌରୁଷୋଚିତ ବୈପ୍ଳବିକ ଭୂମିକାରେ ତାଙ୍କ କବିତାର ଭାଷା ଓ ଭାବ ବିଦ୍ରୋହର ଶର ବର୍ଷଣ କରେ (୯୫) ।" ଭାଷାର ବିଦଗ୍ଧପଣ ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚ଼ନାକୁ ଏ ରୂପେ ପ୍ରଦାନ କରିଥାଏ ଏକ ଅଭିନବ ସ୍ୱାତନ୍ତ୍ର୍ୟ, ଯାହା ବିଶ୍ୱନାଥ କର, ଦାଶରଥି ଦାସ ଏବଂ ଭଗବାନ ଜୟସିଂହଙ୍କ କେତେକ ଆଲୋଚନାରେ ପରିଦୃଶ୍ୟମାନ ହୁଏ । ମାୟାଧର ମାନସିଂହଙ୍କ କବିତ୍ୱର ଅପୂର୍ବ କଳ୍ପନାପ୍ରବଣତା ମୂଳରେ ବିଦ୍ୟମାନ ବାସ୍ତବତାକୁ ଅନ୍ୟତ୍ର ଅନୁରୂପ ଭାବରେ କେମିତି ଉପସ୍ଥାପନ କରାଯାଇଛି, ତାହାର ଗୋଟିଏ ନମୂନା ଦେଖିବା- "ତାଙ୍କ କବିତାରେ ଜାତୀୟ ତୀର୍ଥ ବା ଜାତୀୟ ଗୌରବାବହ ଅତୀତ କେବଳ ଏକ ପୀଠିକା ମାତ୍ର । ତହିଁରେ ରୂପପ୍ରାଣ ରୋମାଣ୍ଟିକ୍ ଚେତନାର ଦୂରଗାମୀ ପରିକଳ୍ପନାରେ ଚମତ୍କାର କାବ୍ୟହର୍ମ୍ୟ ନିର୍ମାଣ କରାଯାଇଛି । ଫଳରେ ତାଙ୍କର ପରିକଳ୍ପନାରେ ଏକ ଜାତୀୟ ଅବସୋସର କ୍ଷତିପୂରଣ ରୂପେ ଅପ୍ସରୀମାନେ ଆସି ଚନ୍ଦ୍ରାୟିତ ରଜନୀରେ କୋଣାର୍କର ସେଇ ଭଗ୍ନବିସ୍ତାର ପାଖରେ ନୃତ୍ୟ ଉଚ୍ଛଳ ହୋଇଛନ୍ତି (୧୦୩) ।"

କବି ମାନସିଂହଙ୍କ ବିଶିଷ୍ଟ କାବ୍ୟ 'ଧୂପ' ଓ 'ହେମଶସ୍ୟ' ପରିପ୍ରେକ୍ଷୀରେ ଉଚ୍ଚାରିତ ହୋଇଥିବା ସମାଲୋଚ଼କଙ୍କ ଭାଷାଚାତୁର୍ଯ୍ୟର ଅନ୍ୟ ଏକ ଉପସ୍ଥାପନଗତ ଅନନ୍ୟତାକୁ

ପ୍ରତିପାଦିତ କରାଯାଇପାରେ- "ଧୂପର ପ୍ରେମ ସ୍ରୋତ ଯଦି ହୁଏ ଏକ ବର୍ଷାକାଳୀନ ନଦୀ ପ୍ରବାହ ପରି ଉଦ୍‌ବେଳ ଓ ଖରସ୍ରୋତା, ହେମଶସ୍ୟର ପ୍ରଣୟାନୁଭୂତି ହୋଇପାରେ ଶରତକାଳୀନ ନଦୀଧାରା ପରି ନିର୍ମଳ ଓ ମୃଦୁ ପ୍ରବାହିନୀ, (୧୧୨)।" କବିତାକୁ ବି ବେଳେବେଳେ ଅତିକ୍ରମ କରାଯାଇଛି କବିଙ୍କ ଭାଷାଚାତୁର୍ଯ୍ୟର ଛନ୍ଦୋବନ୍ଧ ଲାଳିତ୍ୟ। କବିତାକୁ କରିଛି ଅଧିକ ମହିମାନ୍ୱିତ ଓ ଭାବୋଦ୍ଦୀପକ, ଶ୍ରୀଯୁକ୍ତ ଶତପଥୀଙ୍କ ଭାଷିକ ଭାବନ୍ୟାସର ଶିଳ୍ପରୂପ। 'ମୌସୁମୀ' କବିତାର ମୂଲ୍ୟାୟନ କରିବାକୁ ଯାଇ ରାଧାମୋହନଙ୍କ କାବ୍ୟିକ ପାରଦର୍ଶିତାର ଉପସ୍ଥାପନ ଆଳରେ, ସମାଲୋଚକ ଶତପଥୀଙ୍କ ଗଦ୍ୟର ଭାଷା ମଧ୍ୟ ରୂପାନ୍ତରିତ ହୋଇଛି ଅଧିକ କାବ୍ୟିକ ପାଟବତାର କଳାକାରିଗରିରେ ଆବେଗିକ କେମିତି ଦେଖନ୍ତୁ:- "ରୌଦ୍ରଦଗ୍ଧ ଶୀର୍ଣ୍ଣ ପାଣ୍ଡୁର ପୃଥିବୀର ଆହ୍ୱାନରେ ଆସିଛି ମୌସୁମୀ। ଶୈବଳିନୀର ସୈକତ ବୁକୁରେ ରସର ରେଖା ଶୁଖିଯାଇଛି। ନୀଳ ସୁନ୍ଦର ଶୈଳପୁଞ୍ଜ ଓ ଅଟବୀ କୁଞ୍ଜ ଦାବଦହନରେ ଜଳିଯାଇଛି। ତୃଷାକାତର ଚାତକ କଣ୍ଠ ଫାଟି ଯାଉଛି ଏବଂ ଶୂନ୍ୟକୁ ଚାହିଁ ରହିଛି ବିଦୀର୍ଣ୍ଣ ମା' ବସୁଧା। ଏହି ହାହାକାରର ରୁଦ୍ରତା ଭିତରେ ମୌସୁମୀର ଆଗମନ ତପକ୍ଲିଷ୍ଟ ସନ୍ନ୍ୟାସୀ ପରି କେଡ଼େ ବାଞ୍ଛିତ ଓ ଆସ୍ୱାଦିତ (୧୨୬/୧୨୭)।"

ଅବିକଳ ଏହି ଭାଷା, କବିତା ପରି ଛଳଛଳ ଓ ଆବେଗଶିକ୍ତ ଢଳଢଳ ପୁଣି ଉଚ୍ଛ୍ୱସିତ ପ୍ରବେଗରେ ହୋଇଉଠିଛି କେମିତି ପ୍ରାଣବନ୍ତ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ପ୍ରତିଭାର ଆକଳନ ଅବକାଶରେ; ଯାହା ଶତପଥୀୟ ଅଭିନବତାରେ ପ୍ରତିଷ୍ଠା କରିଛି ଗଦ୍ୟ ପରଂପରାରେ ଏକ ଅପୂର୍ବ ଅଧ୍ୟାୟ। "କୃଷ୍ଣଚନ୍ଦ୍ର ଥିଲେ ଜଣେ ଖାଣ୍ଟି କବି ତେଣୁ କବି ହିସାବରେ ତାଙ୍କ ମନର ଅରଖ ନୂଆ ସିଲଟରେ କେତେ ବ୍ୟକ୍ତିଗତ ପ୍ରେମପ୍ରଣୟ, ସ୍ମୃତି ଓ ବିଳୟର ଦାଗ ଯେ ସୃଷ୍ଟି ନ ହୋଇଛି ତା' ନୁହେଁ। କେତେବେଳେ କେଉଁ କିଶୋରୀର ସୋହାଗ ଚଞ୍ଚଳ ମନକୁ ଛୁଇଁବାକୁ ବ୍ୟାକୁଳତା ତ କେତେବେଳେ ପ୍ରିୟାର ପଣତ ତଳେ ଆତ୍ମଗୋପନ କରି ଦୁଃଖ କଷ୍ଟକୁ ଭୁଲିବାର ଦୁର୍ବାର ଆକାଂକ୍ଷା (୧୪୪)।" କବି ବିନୋଦ ନାୟକଙ୍କ କବିତାର ଅନୁଶୀଳନ କାଳରେ ମଧ୍ୟ ସଂଯୋଜିତ ହୋଇଛି ଏମିତି ଅନେକ ଭାବନ୍ୟାସିକ ଶବ୍ଦ, ମେଦୁରିତ ଗଦ୍ୟରୂପ, ଯାହା ଛନ୍ଦୋବଦ୍ଧ କବିତା ପରି ଲଳିତ ଓ କମନୀୟ ମନେ ହେଉଥାଏ:-

(୧) "ଯେତେବେଳେ ଖାଇବର ଗିରିପଥରେ ସଂଧ୍ୟା ନଇଁଆସେ ଓ ତୁଷାର ଝଟିକା ମାଡ଼ିଆସେ, ସେତେବେଳେ ଇରାକ୍‌ର କେଉଁ ଏକ ମରୁଝରରୁ କଳସୀ ଭର୍ତ୍ତିକରି ମୌୟାଁ ଫେରିଆସେ। ତା'ର ଗତିପଥରେ ଓମାର ରୁବାୟତର ଗୀତ କଳସ୍ୱନା ହୋଇଉଠେ। ଏହିପରି ଅବସ୍ଥାରେ ତା'ର ଛନ୍ଦ ଚପଳ ଅଳସ ପଦପାତକୁ କୌଣସି ଇରାକୀ ତରୁଣ ଚାହିଁ ରହିଥାଏ (୩୬୧)।" (୨) "ଯେଉଁଠି ଅଫିମର ଫୁଲ ମହକ ଭରିଦିଏ, ଅଙ୍ଗୁର

କ୍ଷେତ ଓ ପପ୍ଲାର୍ ତରୁର ନୀଳଛାୟା ଦୀର୍ଘ ସମୟ ପାଇଁ ଲାଗିରହେ, ସେହି ବେଦୁଇନ୍‌ର ଦେଶରେ ନୀଡ଼ ରଚ଼ନା କରିବାକୁ କବି ସଖୀକୁ ଆହ୍ୱାନ କରନ୍ତି (୩୬୨) ।" (୩) "ଦୂର ବାଲିଚରରେ ଚକୋଇର ଲଘୁସ୍ୱର; ବିରହିଣୀ ନାୟିକାର ଆଖିର ଅଶ୍ରୁଧାର ପରି ବାହାରେ ବର୍ଷାର ଧାରା । ପାଲଟା ଶାଢ଼ୀର ଉତପ୍ତ ସୌରଭ ପରି ଗଙ୍ଗଶିଉଳୀର ଉଗ୍ର ଭିଜା ଗନ୍ଧ ବାୟୁରେ ସଞ୍ଚରିଯାଏ (୩୬୩) ।"

ବିପ୍ଳବୀ କବି ରବିସିଂଙ୍କ 'ପଥପ୍ରାନ୍ତର କବିତା' ତେଣୁ "ସେହି ବିଦଗ୍ଧ ଜୀବନର ଅସହାୟ ଯାତ୍ରାପଥରେ ଏକ ମର୍ମରିତ କରୁଣ ଆତ୍ମଲିପି । ଏ ଆତ୍ମଲିପି ଖାଲି ଏକ ଜର୍ଜରିତ କବିମାନସର ସ୍ୱତଃସ୍ଫୂର୍ତ୍ତ ହୃଦୟାବେଗ ନୁହେଁ, ଏଥିରେ ଏହି ସ୍ୱାର୍ଥଲିପ୍ସୁ ନିଷ୍କରୁଣ ସମାଜର ଶୋଷଣ ବ୍ୟୂହ ତଳେ ଅଗଣିତ ଅସହାୟ 'ଅଭିମନ୍ୟୁ'ର କାତର କଣ୍ଠର ପ୍ରତିଧ୍ୱନିତ  ବାଣୀ (୪୬୭) ।" ଚିନ୍ତାମଣି ବେହେରାଙ୍କ 'ହେ ବୈଦେହୀ ଭୁଲିଯାଅ' କବିତା ସଂକଳନର ଭାବଭୂମି ଅନୁଶୀଳନ କରିବାକୁ ଯାଇ ସମାଲୋଚ଼କ ଗଢ଼ିତୋଳିଛନ୍ତି ଯେଉଁ ଶବ୍ଦ ସଂଯୋଜନାର ଅନୁପମ ଗଦ୍ୟବିଭବ, ତାହା ଯେତିକି ଭାବ ଅନୁଗତ, ପୁଣି ସେତିକି କଳାଗତ ଆବେଦନରେ ଧୀମନ୍ତ । "ପ୍ରିୟା ଉଦ୍ଦେଶ୍ୟରେ କବି ଯୁଗେ ଯୁଗେ ପ୍ରଣୟର ଦେବାୟତନ ନିର୍ମାଣ କରିଛି । ହୁଏତ ସେହି ଦେବାଳୟରେ ସେ ହୋଇପାରେ ଏକାନ୍ତ ନିଃସ୍ୱ ଜଣେ ପୂଜାରୀ । କେତେ ସ୍ୱପ୍ନ ଓ କଳ୍ପନା, କେତେ ଅତନ୍ଦ୍ରିତ ରାତିର ବେଦନା, କେତେ ଗ୍ଳାନି ଓ କୁଣ୍ଠାକୁ ଏକାକାର କରି ସେହି ଶାଶ୍ୱତ ଅନୁଭୂତି ପଛରେ କବି ପାଗଳ ଭଳି ଧାଇଁଥାଏ । କେଉଁଠି ପ୍ରିୟାର ସାମାନ୍ୟତମ ଅଭିମାନରେ ତା'ର ଧୈର୍ଯ୍ୟର ପାହାଡ଼ ଟଳିପଡ଼େ, କେଉଁଠି ସାମାନ୍ୟତମ ଆଦରରେ ନବବଧୂ ପରି କବିର ଅନ୍ତର ଆର୍ଦ୍ର ହୋଇଉଠେ, ଦେହସାରା ଖେଳିଯାଏ କଦମ୍ବର କୋରକିତ ରୋମାଞ୍ଚ (୫୨୬) ।"

କାବ୍ୟିକ ଭାଷା ନିର୍ମାଣ କରିପାରେ ଭବ୍ୟ ଭାବଦ୍ୟୋତନାର ସୁରମ୍ୟ ସମାଲୋଚ଼ନା, ଏହା ପ୍ରମାଣିତ କରିଦେଲେ ସମାଲୋଚ଼କ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥୀ । ସେ ପ୍ରମାଣିତ ବି କରିଦେଲେ ଯେ, ସମାଲୋଚ଼ନା କେବଳ ସୃଷ୍ଟ ସମୀକ୍ଷାର ଏକ ଗଦ୍ୟରୂପ ନୁହେଁ, ଅଧିକନ୍ତୁ ମୌଳିକ ସୃଜନର ଏକ ଭିନ୍ନ ପରିଧି । ଭାଷାର ଶକ୍ତି ହିଁ ସମାଲୋଚ଼ନାର ସମ୍ବେଗିକ ଭୂମିକୁ ପ୍ରଦାନ କରିପାରେ ଏକ ଗରିମା ମଣ୍ଡିତ ଦୀପ୍ତି । ବୌଦ୍ଧିକ ଗାମ୍ଭୀର୍ଯ୍ୟ କିମ୍ବା ଅଭିଜାତ ଶବ୍ଦବସାଣ ରୀତିଠାରୁ ଅଧିକ ଉତ୍କର୍ଷ ହୋଇଥାଏ, କାବ୍ୟ ଅନୁରୂପ ସ୍ୱଚ୍ଛନ୍ଦ ଭାଷାର କଳାତ୍ମକ ବିଦଗ୍ଧତା ବୋଲି, ପ୍ରତିପାଦିତ କଲେ ପ୍ରଫେସର ଶତପଥୀ ଓ ପ୍ରସ୍ତୁତ କଲେ ସମାଲୋଚ଼ନା ଧାରାରେ ଏକ ନୂତନ ଶିଳ୍ପରୂପ; ଯାହା ପାଠକୀୟ ଶ୍ରଦ୍ଧା ଏବଂ ଆଦୃତି ଲାଭ କରିବା ଦିଗରେ ହୋଇଛି ଅନେକାଂଶରେ ସଫଳକାମ ।

## ସୃଜନ ସଂସ୍ଥିତି :

ଜଣେ ସମାଲୋଚକ କବିତାକୁ ଅନୁଶୀଳନ ପୂର୍ବକ ସମୀକ୍ଷାଟିଏ ପ୍ରସ୍ତୁତ କରେନାହିଁ । ବ୍ୟାଖ୍ୟା ଓ ଅନୁଧ୍ୟାନର ଊର୍ଦ୍ଧ୍ୱରେ ଉଚ୍ଚତର ସମାଲୋଚନା କବିତାକୁ ଭିନ୍ନ ଭିନ୍ନ ଦୃଷ୍ଟି ଓ ପୃଷ୍ଠଭୂମିରେ ମଧ୍ୟ ସଂଜ୍ଞାୟିତ କରେ । ସମାଲୋଚନା ଯଦି ମୌଳିକ ଓ ସର୍ଜନାତ୍ମକ (creative) ହୁଏ, ତେବେ ସେଇଠି ଆଲୋଚନାର ଦାୟରେ ପ୍ରସ୍ତୁତ ହୋଇଥାଏ ସାରସ୍ୱତ କ୍ରିୟା କର୍ମର ଭିନ୍ନ ଭିନ୍ନ ପରିଭାଷା । ସୃଜନ କ୍ରିୟାର ଉପସର୍ଗ ଓ ଆଭିମୁଖ୍ୟକୁ ସମାଲୋଚକ ପ୍ରତିପାଦିତ କରିବା କାଳରେ ହିଁ କବିତାର ପରିଚିତିକୁ ନିଜସ୍ୱ ଦୃଷ୍ଟିକୋଣରୁ ଉନ୍ମୋଚିତ କରିଥାଏ, ଯାହାକୁ ସମାଲୋଚକର ସୃଜନସଂସ୍ଥିତି ଭାବରେ ଅବିହିତ କରାଯାଇପାରେ । କବି କର୍ମ ଓ କାବ୍ୟଧର୍ମ ସମ୍ପର୍କରେ ଯେଉଁ ମହତ୍ତ୍ୱପୂର୍ଣ୍ଣ ଅଭିମତଟିଏ ଉପସ୍ଥାପିତ କରେ ପାରଦର୍ଶୀ ସମାଲୋଚକ, ତାହା ପରିଣତ ହୋଇଥାଏ ସୃଜନ କ୍ଷମତାର ଏକ ଉଚ୍ଚକୋଟୀର ସାରସ୍ୱତ ପରିଭାଷାରେ ।

'ସବୁଜରୁ ସାଂପ୍ରତିକ' ନିବନ୍ଧରୁ ପ୍ରସଙ୍ଗକ୍ରମେ ଆମେ ସମାଲୋଚକ ଶତପଥୀଙ୍କ ଏହି ସୃଜନ ସଂକଳ୍ପର ମୌଳିକ ଅବଧାରଣା (concept) ଟିକୁ ପ୍ରତିପାଦିତ କରିବା, ଯାହାକୁ ସାରସ୍ୱତ ସଂହିତା ଅଥବା ସୃଜନ ତତ୍ତ୍ୱର ଏକ ମୌଳିକ ପ୍ରତିବେଦନ ରୂପେ ମଧ୍ୟ ସାହିତ୍ୟ ପରଂପରାରେ ଗ୍ରହଣ କରାଯାଇପାରେ । ସୃଜନ କ୍ରିୟାର ମାର୍ଗଦର୍ଶିକା ରୂପେ ସମାଲୋଚକର ଏହି ସୃଜନସଂସ୍ଥିତିକୁ ପୁଣି ଦୁଇଟି ଭିନ୍ନ ଦିଗରୁ ଉପସ୍ଥାପନ କରିବା, ଯାହା ସମାଲୋଚକୀୟ ପାରଦର୍ଶୀପଣ ଓ ସାମର୍ଥ୍ୟ ଉପରେ ବସ୍ତୁତଃ ହୋଇଛି ପର୍ଯ୍ୟବସିତ । ଗୋଟିଏ ଦିଗରେ ସୃଜନସ୍ୱପ୍ନ ଓ ସଂଭାବନାର ପାରିଭାଷିକ ଅଭିମତର ମୌଳିକତା ନିରୂପଣ ଓ ଅପର ପକ୍ଷରେ, ସାରସ୍ୱତ ପରଂପରା ଓ ଇତିହାସ ସଂପର୍କିତ ସାର୍ବଜନୀନ ପ୍ରତିବେଦନର ସ୍ୱରୂପ ଉପସ୍ଥାପନ ।

ସତ୍ୟବାଦୀ ସାହିତ୍ୟର ବିଶିଷ୍ଟ ସୃଜନ ସ୍ୱାତନ୍ତ୍ର୍ୟର ଅନୁଶୀଳନ ଓ କବି ଗୋଦାବରୀଶ ମହାପାତ୍ରଙ୍କ କବିତାର ଗଢ଼ଣ ମଧ୍ୟରେ ଅନ୍ତର୍ନିହିତ କାବ୍ୟଉପାଦାନର ସନ୍ଧାନ କାଳରେ ଯେଉଁ ଉପଲକ୍ଷ୍ୟର ଆବିଷ୍କାର କରିଛନ୍ତି ସମାଲୋଚକ ତାହାର ଏକ-ତାତ୍ତ୍ୱିକ ଅବବୋଧକୁ ପାରିଭାଷିକ ପ୍ରତିକୃତିଟିଏ ପ୍ରଦାନ କରିଛନ୍ତି ଏ ରୂପେ; ଯାହା କବିତାର ଏକ ବିଶିଷ୍ଟ ସଂଜ୍ଞାକୁ ଉପସ୍ଥାପିତ କରେ । "କବିତା କବି ମନର ତରଙ୍ଗାୟିତ ପ୍ରବାହ, ଭାବନାର ଶିହରଣ, ରୋମାଞ୍ଚ ଏବଂ ଆବିଷ୍କାର ଯାହା- କବିତାର ଆଶ୍ଚର୍ଯ୍ୟ ପ୍ରକିୟା ମଧ୍ୟରେ ପ୍ରତିଦିନର ବସ୍ତୁଜଗତଟିକୁ ପୁନରାବିଷ୍କୃତ କରିଥାଏ (୮୯) ।" ସାହିତ୍ୟ ତତ୍ତ୍ୱର ପ୍ରବକ୍ତା ଓ ସୃଜନକ୍ରିୟାର ମୌଳିକ ତଥ୍ୟର ପ୍ରବର୍ତ୍ତକ ଭାବରେ ସମାଲୋଚକ ଶ୍ରୀଯୁକ୍ତ ଶତପଥୀଙ୍କର ଏହି ଅଭିବ୍ୟକ୍ତି ଏକ ଉଚ୍ଚତର ଭାଷ୍ୟକାରର ସ୍ତରକୁ ଉନ୍ନୀତ ହୋଇଛି ବୋଲି କୁହାଯାଇପାରେ ।

ସମାଲୋଚନାର ପ୍ରକାର୍ଯ୍ୟ ଓ ପ୍ରକରଣ ଭିତରେ କବିତାର ମୌଳିକ ବିଲକ୍ଷଣ ତଥା ବିଶେଷତ୍ୱର ଉପସ୍ଥାପନ କାର୍ଯ୍ୟଟି ହେଉଛି ଏକ ଅତିରିକ୍ତ ସୃଜନପଣର ମୌଳିକ ସାମର୍ଥ୍ୟ । ଯାହା ପ୍ରଦର୍ଶିତ ହୋଇଛି ଶ୍ରୀଯୁକ୍ତ ଶତପଥୀଙ୍କ ସମାଲୋଚନାର ପୃଷ୍ଠଭୂମିରେ । ଆଲୋଚନାର ଏହି ସ୍ଥିତିରେ ସେ ତେଣୁ ଏକାଧାରରେ ଜଣେ ସୁଦକ୍ଷ ସମାଲୋଚକ ଓ ତତ୍ତ୍ୱକାର ଭାବରେ ଆବିର୍ଭୂତ ହୋଇଛନ୍ତି । କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ଆପଣା ଆଲୋଚନା ଓ ଅନୁଶୀଳନର ଇଥରାଇଜଡ଼ର ଟେବୁଲ୍ ଉପରେ ଥୋଇ, ସୃଜନ ସାମର୍ଥ୍ୟର ଆକଳନ ଅବକାଶରେ, ସମାଲୋଚକ ଶତପଥୀ ଆବିଷ୍କାର କରିଛନ୍ତି କବିତା ପାଇଁ ଅନ୍ୟ ଏକ ସୁନିର୍ଦ୍ଦିଷ୍ଟ ପରିଭାଷା- କିପରି ଭାବରେ ଦେଖିବା ହେଉନ୍ତୁ:- "ଆତ୍ମାର ଆବେଗଭରା ସୁନ୍ଦର ଉଚ୍ଚାରଣ ହିଁ କବିତା । କବିର ସ୍ୱର ସାଧାରଣ ହୃଦୟକୁ ତେଣୁ କରେ ରସସିକ୍ତ ଓ ସଂକ୍ରମିତ (୧୪୭) ।"

କବିତାର ଆତ୍ମା (idea) ଏବଂ ପରିପାଟୀ (Form) ର ସଂପର୍କ ନିର୍ଦ୍ଧାରଣ ତଥା ହେତୁଗତ ପରିପୂରକତାକୁ ଏକ ବିଶେଷ ଭାଷିକ ଢାଞ୍ଚା ପ୍ରଦାନ କରିଛନ୍ତି ସମାଲୋଚକ, ସଚ୍ଚିରାଉତରାୟଙ୍କ କାବ୍ୟିକ ବୈଶିଷ୍ଟ୍ୟର ପ୍ରତିପାଦନ ପୃଷ୍ଠଭୂମିରେ । ଜଣେ କବି ହିଁ କେବଳ କଳିପାରେ କବିତାର ଗୁଣଧର୍ମ ସଂପର୍କିତ ତତ୍ତ୍ୱର ଆଧାର ଓ ଉପାଦାନ ସଂପର୍କରେ । ମା' ହୋଇନଥିବା ନାରୀଟିଏ ଯେମିତି ଆଦୌ ବଖାଣିପାରେ ନାହିଁ ଗର୍ଭବେଦନା ଆଉ ପ୍ରସବର ଯନ୍ତ୍ରଣାସିକ୍ତ ଅନୁଭୂତି ସଂପର୍କରେ, ଠିକ୍ ସେମିତି କବିପଣର ଉପଲବ୍ଧି ନଥିଲେ ଜଣେ ସମାଲୋଚକ ମଧ୍ୟ କସ୍ମିନ୍‌କାଳେ ପ୍ରଦାନ କରିପାରେ ନାହିଁ କବିତାକୁ ନେଇ ଏକ ବିଶେଷ ସଜ୍ଞା କି ପରିଭାଷା । କବି ଓ ସମାଲୋଚକ ମଧ୍ୟରେ ମୌଳିକ ପାର୍ଥକ୍ୟଟି ଏଇଠାରେ ହିଁ ନିହିତ । କବି ଜଣେ କେବଳ ନିରୋଳା କବି । ମାତ୍ର ସମାଲୋଚକ ହେଉଛି ଆଗେ କବି ଓ ପରେ ସମାଲୋଚକ । ମାତୃତ୍ୱ ଓ ଧାତ୍ରୀପଣର ଏକ ଯୁଗଳବନ୍ଦୀ ହେଉଚି ଉଚ୍ଚାଙ୍ଗ ସମାଲୋଚନାର କର୍ମ ତେଣୁ । ଶ୍ରୀଯୁକ୍ତ ଶପଥୀଙ୍କ ସମନ୍ୱିତ ସୃଜନର ସ୍ୱରୂପଟିକୁ ଦେଖନ୍ତୁ:-

"ଦୃଷ୍ଟିଭଂଗୀ ଯଦି କବିତାର ପ୍ରାଣ ବା ଆତ୍ମା ସହିତ ଜଡ଼ିତ, ଠାଣି ପୋଷାକ ମାତ୍ର (୨୭୬) ।" ଭାବବସ୍ତୁ ହେଉଛି କବିତାର ପ୍ରାଣ, ମାତ୍ର ତାର ପରିପାଟୀ ହେଉଛି ଏକ ବହିରାବରଣ । କବିତାର ଭୂଷଣ ହେଉଛି ତାର ଠାଣି, ଯାହା ଭାବବସ୍ତୁ ପାଇଁ ପ୍ରସ୍ତୁତ କରିଥାଏ ଏକ ସୂକ୍ଷ୍ମ ଅଥଚ୍ କମନୀୟ ଆଭରଣ । କାରୁଖଚିତ ମହୁଫେଣାଟି ଯେମିତି ସଞ୍ଚିତ କରି ରଖିଥାଏ ସାନ୍ଦ୍ର ନିବିଡ଼ ଓ ସୁମିଷ୍ଟ ମହୁର ଗହନ ସ୍ୱାଦ, ସେମିତି ସମ୍ଭାଳି ଧରିଥାଏ କବିତାର ଭାବପକ୍ଷକୁ ତାର କମନୀୟ କଳାରୂପ । କବିତାର 'ଭାବ' ଉପକରଣ ଓ ବିଦଗ୍ଧପ୍ରାଣର ବେପଥୁକୁ ନିର୍ଭର କରି ନିର୍ମାଣ କରିଥାଏ ଯେଉଁ ଶବ୍ଦରୂପ, ତାହା ହିଁ କବିତା । କବିତା ଏକ ଭାବଜଗତର ଶିଳ୍ପରୂପ, ଯାହା ମୂର୍ତ୍ତିମନ୍ତ ହୋଇଥାଏ

ଶବ୍ଦର ବିଗ୍ରହ ରୂପରେ । ଭାବ ସାନ୍ଦ୍ର ହେଲେ, ଅନୁଭୂତି ହେଲେ ନିବିଡ଼, ତାହା କ୍ରମଶଃ ପ୍ରସ୍ତୁତ କରିଥାଏ ସୃଜନର ଭିତ୍ତିଭୂମି; ଯେଉଁଠି ଆତ୍ମପ୍ରକାଶ କରିଥାଏ କଳାର କାରିଗରୀରେ କବିତାର ଅପୂର୍ବ ବିନ୍ୟାସ । ଦୁଃଖ ହେଉଛି କାରଣ ଓ ବ୍ୟଥା ହେଉଛି ଏହାର କ୍ରିୟା, ସମ୍ବେଦନା ଓ ଆକୁଳତା ହେଉଛି ସୃଜନକ୍ରିୟାର ଅନନ୍ୟ ରେଚ଼କ (chemical) । କବିତା ସଂପର୍କିତ ଏହି ସତ୍ୟ ଓ ତାର ତାତ୍ତ୍ୱିକ ଅବବୋଧକୁ ସମାଲୋଚ଼କ ଶତପଥୀଙ୍କ ରୂପକଳ୍ପୀୟ ଉପସ୍ଥାପନ ହିଁ ପ୍ରତିଷ୍ଠା କରେ ଯେଉଁ ଭିନ୍ନ ସୃଜନଭୂମି; ତାହାର ସ୍ୱରୂପଟି ଏହିପରି ହୁଏତ ହୋଇପାରେ:-

"କଢ଼ିଟିଏ ଫୁଟିଲେ, ପରଦୁଃଖରେ ଆଖିରୁ ଟୋପିଏ ଅଶ୍ରୁ ବହିଗଲେ, ଅପନ୍ତରା ଗହୀର କାନ୍ତାରରେ ପ୍ରାଣ ଲାଗି ପ୍ରାଣ ବୋହିଗଲେ କବିର ଦୁନିଆର ସମସ୍ତ ବିଷାକ୍ତ ପରିବେଶ ଓ ସମୟର ଅଭିକ୍ଷେପ ମଧ୍ୟରେ ଯେଉଁ ବିଶ୍ୱାସ ଫେରିପାଏ, ତାହା ତାର କବିତାର ଚିରନ୍ତନ ଭାବଉତ୍ସ (୩୫୫) ।" ଛାତିର କ୍ଷତ, କେବେ କୋହ ହୋଇ ମୁକୁଳି ପ୍ରାଣର ହାହାକାରକୁ ଆଂଜୁଳିରେ ଧରି, ପଞ୍ଜରା ଥରେଇ କେଇଟା ଦୀର୍ଘଶ୍ୱାସର ଦମକାଏ ପବନରେ; ତ କେବେ ଢଳଢଳ ବୁନ୍ଦାଏ ଲୁହରେ ଚମକୁଥାଏ - ବିବଶପ୍ରାଣର ଯେଉଁ ଆର୍ତ୍ତନାଦ; ତାହା କବିତାର ଶବ୍ଦରେ ଫୁଲ ହୋଇ ଫୁଟେ... ବୃନ୍ତରେ ବୃନ୍ତରେ... ଓ ଝୁଲୁଥାଏ ସେଇଠି କବିପଣର ଉଚ୍ଛ୍ୱାସ ନୁହେଁ? ଗୋଟିଏ ଛାତିର ଦୁଃଖ ପୁଣି ଭିନ୍ନ ନୁହଁ ଆଦୌ ଅନୁକୋଟି ମଣିଷର ବେଦନାକ୍ତ ଅନୁଭବ ଠୁଁ, ଯଦି ଏକ ହୋଇଥାଏ କଷଣର ଭୂମି ଓ ଅଭିନ୍ନ ହୋଇଥାଏ ସମାଜର ବେଷ୍ଟନୀ; ତାହା ପୃଥିବୀର ଯେ କୌଣସି କୋଣ ଅନୁକୋଣରେ ବି ହୋଇଥାଉ ପଛକେ ।

"କବିର ହୃଦୟ ଓ ମନର ଗଭୀରତମ ପ୍ରଦେଶରୁ ଯେଉଁ ସ୍ୱପ୍ନ, ଅଶ୍ରୁ ଓ ବେଦନାର ଉଚ୍ଛ୍ୱାସ ଆସେ ତାରି ଭିତରେ ଯୁଗେ ଯୁଗେ କବି ଖୋଜିଥାଏ ଯାହା କିଛି ସାର୍ବଜନୀନ ଓ ଚିରନ୍ତନ (୫୪୫) ।" କବି ଜଣେ ମଣିଷ ଓ ମଣିଷ ଭଳି ତାର ବି ଥାଏ ଗୋଟେ ସଂସାର, ଆଂଜୁଳାଏ ଆଶା ଓ ପାପୁଲିଏ ସ୍ୱପ୍ନକୁ ମୁଠେଇ; ସେ ବି ବଞ୍ଚୁଥାଏ ଅଭାବ-କଷଣର ଦୋସମାଳି ଭୂଇଁରେ । ସାଧାରଣର ଦୁଃଖ ଭଳି କବିର ଦୁଃଖ ବି ଅବିକଳ, ଭିନ୍ନ ନୁହେଁ ଯେଣୁ ସଂସାରର ସାରା ଫୈହଦୀ ଭିତରେ; ତେବେ କି ଦୁଃଖ ଓ ସ୍ୱପ୍ନକୁ ନେଇ ଗଢ଼ା ହେଉଥିବା କବିତାର କାରିଗରୀ ମୂଳରେ ନିହିତ ଥାଏ ସେହି ସାର୍ବଜନୀନତାବୋଧ - ଯାହା ପ୍ରତିଟି କାଳଜୟୀ ସୃଷ୍ଟିର ହେଉଚି ମୂଳ ସମ୍ପଦ । "କବି ଯୁଗେ ଯୁଗେ ଭାବଜୀବୀ । ତାର ସ୍ନେହ ସଜଳ ମନରେ ନିଖିଳ ପାଇଁ ବ୍ୟଥାର ଆର୍ତ୍ତି, ବ୍ୟକ୍ତିବିଶେଷ ପାଇଁ ପ୍ରାଣଉଛୁଳା ଆବେଗ ଓ ଚିନ୍ତାରେ ଚିରନ୍ତନ ଆଦର୍ଶ ପ୍ରତିଷ୍ଠା ପାଇଁ ଆକାଙ୍‌କ୍ଷା (୨୮୦)" ହିଁ କବିତା ପାଇଁ ନିର୍ବାହ କରିଥାଏ ସ୍ରଷ୍ଟାର ଭୂମିକା ।

ବ୍ୟଥା, ଆବେଗ ଓ ଆକୁଳତାକୁ ସଂବେଦନାର ଆବେଗ, ମଣିଷକୁ ରୂପାନ୍ତରିତ କରିଦିଏ କବିରେ; ଯେମିତି ନିଉଛୁଣା ଜୀବନର କଦର୍ଥନା ଭିତରେ ମ୍ରିୟମାଣ ସଅଁବାଳୁଆର ଚେନାଏ ସ୍ୱପ୍ନ - ଉଡ଼ି ବୁଲିବାର ଆକୁଳତାକୁ ଆଣିଦିଏ ଏକ ଭିନ୍ନ ପ୍ରଜନ୍ମ । ସଅଁବାଳୁଆର ପ୍ରଜାପତିର ରଙ୍ଗପକ୍ଷର ପୃଥିବୀଯାଏ ଯେତିକି ଦୂରତା, ଠିକ୍ ସେତିକି ଫରକ୍ ଥାଏ ତେଣୁ ସଂସାରୀ ମଣିଷ ଓ କବିଟିଏ ଭିତରେ । କବିର ଏହି ଦ୍ୱୈତ ଜୀବନ, ସଂସାର ଓ ସ୍ୱପ୍ନସମ୍ଭବା ଅମରାବତୀ ଭିତରେ ନିର୍ମାଣ କରେ ସୃଜନର ଏକ ସୂକ୍ଷ୍ମ ଅଥଚ୍ ଲଳିତ ସେତୁ । ବାସ୍ତବତାରୁ ସମ୍ଭାବନା, ବର୍ତ୍ତମାନରୁ ଭବିଷ୍ୟତ, ବ୍ୟବସ୍ଥାରୁ ବିପ୍ଳବ - ବିଦ୍ୟମାନ ଯେଉଁ ଚରାଚର ପୃଥ୍ୱୀ; ସେଇଠି କବିପଣର ଗରଜକୁ ବି ସମାଲୋଚ୍‌କୀୟ ଉପ୍ରୋଧରେ ହିଁ ଉପସ୍ଥାପିତ କରନ୍ତି ଶ୍ରୀଯୁକ୍ତ ଶତପଥୀ ଅନ୍ୟ ଏକ ଦିଗ ଓ ଦୃଷ୍ଟିକୋଣରୁ ।

ପ୍ରେମ ଓ ପ୍ରଣୟ ହେଉଛି ପୁଣି କବିତ୍ୱ ଉନ୍ମେଷର ପ୍ରଥମ ଚିନ୍ମୟୀ ଚେତନା । ପ୍ରେମ ହିଁ କବିକୁ ପ୍ରାଣବନ୍ତ ପରିଚ୍‌ୟଟିଏ ପ୍ରଦାନ କରେ । ପ୍ରେମର ପ୍ରତିଭୂରେ ପରିଣତ ହୁଏ କବି-ସୃଜନର ସମ୍ଭାବ୍ୟ ପଥରେ ତାର କଳାତ୍ମକ ପ୍ରବର୍ଜ୍ୟାର ଅନାହତ ଅଭିଯାନର ପରିଣତି ସ୍ୱରୂପ । ସେ ପ୍ରେମ ପାର୍ଥିବ ହେଉ କି ପରମାର୍ଥିକ ବି ହେଉପଛେ, ତାହା ଏକ ଅନାବିଳ ଆତ୍ମସନ୍ତୋଷର ହୋଇଥାଏ ଆଧାର । ବ୍ୟକ୍ତିରୁ ସମଷ୍ଟି ଆଡ଼କୁ ସଂପ୍ରସାରିତ ହେଲେ, ପ୍ରେମର ମହିମା ହୁଏ ସଂଚରଣଶୀଳ ଓ ପରିବ୍ୟାପ୍ତ । ପ୍ରତିଟି କାବ୍ୟର ପ୍ରମୁଖ ପ୍ରାରମ୍ଭ ହେଉଛି ତେଣୁ ଏହି ଦିବ୍ୟ ଅନୁଭବର ସୂକ୍ଷ୍ମ ସଂବେଗ; ଯାହାର ଅନ୍ୟ ନାମ ପ୍ରେମ । ପ୍ରେମାର୍ତ୍ତ ହୃଦୟ ହେଉଚି କବିତ୍ୱର ଐଶ୍ୱରୀୟ ଏକ୍ତୁତିଶାଳ । ଅନୁଭବର ଶ୍ରେଷ୍ଠ ବିଭୂତି, ଭାବର ପ୍ରାଣପିଣ୍ଡ ଓ ସ୍ୱପ୍ନର ସୁନା ସକାଳଟିଏ ହେଉଛି ଏହି ପ୍ରେମର ପ୍ରମୂର୍ତ୍ତି ପ୍ରବାହ । ସୁତରାଂ "ବିପ୍ଳବୀ କବି ବି ପ୍ରଣୟ ଋହେଁ, ସ୍ନେହ ଓ ମମତ୍ୱ ଲୋଡ଼େ । କାରଣ ଦେହର ଭୋକକୁ ଇସ୍ପାତ-ମନର ଧାରୁଆ ଛୁରୀ ସବୁବେଳେ କାଟିଦେଇ ପାରେନା । ବେଳେବେଳେ ମନ ଦେହର ଦେହଳୀରେ ଧରାଦିଏ । ସେଠାରେ ବିପ୍ଳବୀ ତାର ଶପଥ ଭୁଲେ; ତ୍ୟାଗୀ ସନ୍ୟାସୀ ଗୈରିକ ବସ୍ତ୍ର ଛାଡ଼େ, ଭୁଲେ ନିଃସଂଗତାର ନିର୍ଜନତା (୨୮୧) ।"

ପ୍ରେମ ତେଣୁ ପ୍ରତିଶ୍ରୁତି ଓ ପ୍ରତ୍ୟୟର ପ୍ରତ୍ୟାଶିତ ପ୍ରାଚୁର୍ଯ୍ୟ, ଯାହା ମଣିଷକୁ କରେ କବି ଓ କବିକୁ ପରିଣତ କରିଦିଏ ବିଦ୍ରୋହୀ ବୈତାଳିକରେ । ପ୍ରେମ ହେଉଛି ପ୍ରସ୍ତୁତ ସ୍ୱପ୍ନର ପାଥେୟ । ପ୍ରେମର ପ୍ରତିଷ୍ଠା ଓ ପ୍ରେମାସ୍ପଦର କଲ୍ୟାଣରେ ହିଁ କବିତ୍ୱର ସିଦ୍ଧି ଆଉ ସକଳ ସମ୍ଭାବନା ଥାଏ ନିହିତ । ପ୍ରେମର ପ୍ରଚୁରତାରୁ ସମାଜନିଷ୍ଠ କରେ କବି ଓ ଶୋଷଣ ତଥା ବିସଙ୍ଗତି ବିରୋଧରେ ବିଦ୍ରୋହ କରେ । ସ୍ୱପ୍ନରୁ ସଂଗ୍ରାମଯାଏ ସବୁଠି ତେଣୁ ଲିପିବଦ୍ଧ ହୋଇଥାଏ ପ୍ରୋମର୍ତ୍ତ ଜୀବନର ସ୍ୱାକ୍ଷର । ପ୍ରେମ ପ୍ରଣବ ନୁହଁ କି ପ୍ରବଣତା ବି ନୁହଁ, ଅଧିକନ୍ତୁ ଏହା ହେଉଛି ଏକ ପ୍ରାର୍ଥନା ହୁଏତ ।

ସନ୍ନିଷ୍ଠ ସଂଗ୍ରାମ ପାଇଁ ପ୍ରେମ ହୋଇଥାଏ ପ୍ରସ୍ତୁତିର ପର୍ବ । କବିର ସଂପର୍କ ତେଣୁ ପ୍ରେମରୁ ପ୍ରତିରୋଧ ପର୍ଯ୍ୟନ୍ତ ପରିବ୍ୟାପ୍ତ । ସଂଘର୍ଷ ଓ ସଂଗ୍ରାମର କ୍ଷତରେ ପ୍ରଣୋଦିତ ପ୍ରତିଜ୍ଞାଟି ତେଣୁ ପ୍ରାପ୍ତ ହୋଇଥାଏ କବିକୁ, ପ୍ରାର୍ଥିତ ପ୍ରେମର ପ୍ରଚ୍ଣ୍ଡତା ଭିତରୁ । "ନିଜର ଜୀବନକୁ ସଂଗ୍ରାମ ମଧ୍ୟରେ ଜଡ଼ାଇ ନଦେଲେ, ସମାଜର ଏ ସମସ୍ୟା ଗୁଡ଼ିକୁ ନେଇ ଭଲ କବିତା ଲେଖିବା ଅସମ୍ଭବ ହେବ । ପୁନଶ୍ଚ କେବଳ ସଂଗ୍ରାମ ପାଇଁ ସଂଗ୍ରାମରେ ଜଡ଼ିତ ହେଲେ ହୁଏନାହିଁ, ସେହି ସଂଗ୍ରାମକୁ ଆଗେଇ ନେବାପାଇଁ ତାର ଦିଗ୍‌ଦର୍ଶକ ଦର୍ଶନକୁ ମଧ୍ୟ କାୟମନୋବାକ୍ୟରେ ନିଜର ଆଚ଼ରଣରେ ଅବଲମ୍ବନ କରିବା ଦରକାର, ନଚ଼େତ ସିଦ୍ଧିଲାଭ ଅସମ୍ଭବ (୩୦୦) ।" ଆଚ଼ରଣ ଓ ଉଚ୍ଚାରଣ ମଧ୍ୟରେ ପାର୍ଥକ୍ୟ ରହିଲେ ଫିକା ପଡ଼ିଯାଏ କବିତାର ଶକ୍ତି, କବି ହୁଏ ପ୍ରବଞ୍ଚକ (hypocrate) କବିତା ସେଇଠି ହୁଏ ଚତୁରପଣର କଳାକର୍ମ । ଜୀବନର ଅନ୍ୟନାମ ଯଦି ଯୁଦ୍ଧ ହୁଏ, ତେବେ ସେହି ଯୁଦ୍ଧରେ ଲୋମହର୍ଷକ ଦୃଶ୍ୟ; ମହାକାବ୍ୟର କଥନିକାର ପରିକଳ୍ପନାକୁ ବି ପରିପୁଷ୍ଟ କରିଥାଏ । ଯୁଦ୍ଧ ପୁଣି ପ୍ରୟୋଜନ ପଡ଼େ ଶାନ୍ତିର ପ୍ରତିଷ୍ଠା ପାଇଁ ଯେଣୁ, ତେଣୁ ଦୁଇ ଭିନ୍ନ ମେରୁର ସଂଯୁକ୍ତ ଭୂମିରେ କବି ହୁଏ ଦଣ୍ଡାୟମାନ; ଜୀବନର ଜୟଗାନ ପାଇଁ । ଶାନ୍ତି ଓ ଯୁଦ୍ଧର ମଝାମଝି ମୂଳକରେ ହିଁ ପ୍ରସ୍ତୁତ ହୋଇଥାଏ କବିର ଆଖଡ଼ାଘର ।

"ଯୁଦ୍ଧ ଓ ଶାନ୍ତି ଯେପରି ଗୋଟିଏ ମୁଦ୍ରାର ଦୁଇଟି ପାଖ । ଯେଉଁ ଯୁଦ୍ଧ ମଣିଷର ଇତିହାସକୁ ଲହୁଲୁହରେ କଳଂକିତ କରେ, କୃଷି ଓ କୃଷ୍ଟିକୁ ଧ୍ୱଂସ କରେ, ସଭ୍ୟତାର ଅଗ୍ରଗତିକୁ ପଙ୍ଗୁ କରିଦିଏ, ଏପରି ଯୁଦ୍ଧକୁ ପୃଥିବୀର କୌଣସି କବି କେବେ ସ୍ୱାଗତ କରିଛି କି ? ଜୀବନରେ ସୃଜନର ସ୍ୱପ୍ନ ମାଦକତା, ସ୍ମୃତି ଓ ଅନୁଭୂତିର ଉଚ୍ଛ୍ୱାସ, ନିତ୍ୟ ନୂତନ ସବୁଜର ଆଶାର ଆଶାବରୀ କିଏ ଶୁଣିବାକୁ ଚାହେଁ ନାହିଁ ? ଏପରିକି ସଂଗ୍ରାମୀ କବି ମଧ୍ୟ ମୁହୂର୍ତ୍ତକ ପାଇଁ ଯୁଦ୍ଧକ୍ଷେତ୍ରରେ ଜୀବନର ସବୁଜ ସ୍ୱପ୍ନର ଅଧୀର ହୋଇଉଠେ (୩୧୬) ।" କେହି ନଜାଣିଲେ ବି କବି ଜାଣେ ଅନ୍ଧାରର ମହତ୍ତ୍ୱ ସତରେ କେଡ଼େ ଅଧିକ, ଆଲୁଅର ଆକୁଳତାକୁ ଉଜ୍ଜୀବିତ କରି ରଖିବା କ୍ଷେତ୍ରରେ । ଉଆଁସ ପକ୍ଷର ଉପସ୍ଥିତି ତେଣୁ ସୃଷ୍ଟି କରି ପୂନେଇଁ ପକ୍ଷ ପାଇଁ ପ୍ରାଣାନ୍ତକ ବ୍ୟାକୁଳତା । ଯୁଦ୍ଧ ନଥିଲେ, ରକ୍ତପାତ ନଥିଲେ, ନଥିଲେ ଦ୍ୱନ୍ଦ୍ୱ ଓ ସଂଘାତ; ହୁଏତ ପ୍ରତିପାଦିତ ହୁଅନ୍ତା ନାହିଁ ଆଦୌ ଜୀବନର ଘନୀଭୂତ ମାଦକତା ପ୍ରକୃତରେ କେତେ ଜରୁରୀ - ମାନବ ସଭ୍ୟତାର ବିକାଶ ଇତିହାସରେ ।

ଜୀବନର ମହତ୍ତର ସତ୍ୟଟି ଯେଉଁଠି ବି ସନ୍ଦୀପିତ ହୋଇଥାଉନା କାହିଁକି, କବିତାର ଭାବବସ୍ତୁରୁ ସେ ସବୁକୁ ଆବିଷ୍କାର କରିଛନ୍ତି ସମାଲୋଚ଼କ; ତାଙ୍କ ଅନୁସନ୍ଧିତ୍ସାର ଆକୁଳ ସତୃଷ୍ଣ ଏଷଣାଲବ୍ଧ ଆୟାସବଳରେ । କବିତାର ନିର୍ଯ୍ୟାସକୁ ସମାଲୋଚ଼ନାର ସମ୍ବେଦୀ ଅସ୍ପୃହା, ତନ୍ନ ତନ୍ନ କରି ଖୋଜି ବାହାର କରିଛି ସନ୍ନିହିତ କାବ୍ୟଭୂମିର

ବିଶେଷତ୍ୱ । ନିଜସ୍ୱ ଲୋଡ଼ିବାପଣରେ ସେ ହତାଦର କରିନାହାନ୍ତି କାହାକୁ, ଉପେକ୍ଷା କରିବାର ଧୃଷ୍ଟତା ବି ପୋଷଣ କରିନାହାନ୍ତି, କବିତାର ଦାବି ପ୍ରତି ସେ ଉଦାସୀନ ରହିନାହାନ୍ତି କି ଆଖି ବୁଜିଦେଇ ନାହାନ୍ତି ଅନ୍ତର୍ନିହିତ ଆବେଦନର ନିଭୃତ ନିର୍ଯ୍ୟାସ ଟିକକୁ । ଯେତିକି ଯାହାର ପ୍ରାପ୍ୟ, ଯାହାବି ଯାହାର ଶ୍ରେୟ, ସେତକୁ ସେ ନିରପେକ୍ଷ ଭାବରେ ପ୍ରତିପାଦନ କରିଛନ୍ତି ଓ ପ୍ରତ୍ୟର୍ପିତ କରିଛନ୍ତି ତାଙ୍କର ସମାଲୋଚ଼କୀୟ ଶ୍ରଦ୍ଧା ନୈବେଦ୍ୟ ।

ଓଡ଼ିଆ ସମାଲୋଚ଼ନା ସାହିତ୍ୟରେ ତେଣୁ ଶ୍ରୀଯୁକ୍ତ ନିତ୍ୟାନନ୍ଦ ଶତପଥୀ ହେଉଛନ୍ତି ଜଣେ ସିଦ୍ଧ ସାଧକ । ଗଦ୍ୟଶିଳ୍ପର ଅଭିବୃଦ୍ଧି ଓ ପୁନର୍ବିନ୍ୟାସ କ୍ଷେତ୍ରରେ ତେଣୁ ତାଙ୍କର ଅବଦାନ ଅନନ୍ୟ ଓ ଅନସ୍ୱୀକାର୍ଯ୍ୟ । ସମାଲୋଚ଼କୀୟ ପରାକାଷ୍ଠା ପ୍ରଦର୍ଶନ ଦିଗରେ ତାଙ୍କର ଏକନିଷ୍ଠ ଭୂମିକା ପାଳନ କରେ ଏକ ଐତିହାସିକ ଓ ଅନିବାର୍ଯ୍ୟ ଉତ୍ତରଦାୟିତ୍ୱ । 'ସବୁଜରୁ ସାଂପ୍ରତିକ' ତାଙ୍କ ସୃଜନ ସମ୍ଭାବନାର ଏକ ଅଲୌକିକ ଅବଦାନ, ଯାହାର ରହିଛି ଓଡ଼ିଆ ସମାଲୋଚ଼ନାର ପରଂପରାରେ ଏକ ଉଲ୍ଲେଖନୀୟ ତଥା ମର୍ଯ୍ୟାଦାଜନକ ସ୍ଥାନ । କବି, ଛାତ୍ର, ଗବେଷକ, ଅଧ୍ୟାପକ ଓ ଶେଷକୁ ନିମଗ୍ନ ପାଠକ ସମସ୍ତଙ୍କ ପାଇଁ ହୋଇଯାଇଛି ଏ ବହିଟି ଏକ ସତ୍ୟ, ଅତ୍ୟାବଶ୍ୟକୀୟ ଉପାଦାନ ବହୁଳ ମାର୍ଗପ୍ରଦର୍ଶକ ସୃଷ୍ଟି ଓ ଆଧୁନିକ କବିତାର ଉପାଦେୟ ଉପକ୍ରମଣିକା ଯାହାକୁ ଆଜି ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରୁଛନ୍ତି ।

■ *ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ*
*ୟୁ. ଏନ୍. କଲେଜ୍, ଅଡ଼ଶପୁର, କଟକ*
*ପିନ୍-୭୫୪୦୧୧*

# ନିତ୍ୟାନନ୍ଦ ଶତପଥୀଙ୍କ କବିତା ସମୀକ୍ଷଣ

♦ ଡକ୍ଟର ଶତ୍ରୁଘ୍ନ ପାଣ୍ଡବ

ପ୍ରବନ୍ଧ ଓ ସମାଲୋଚନାର ସ୍ୱତନ୍ତ୍ର ପରିଚିତି ଓ ଅସ୍ତିତ୍ୱ ଥିଲେ ବି ପ୍ରବନ୍ଧ ସାହିତ୍ୟର ଏକ ସ୍ୱତନ୍ତ୍ର ଦିଗ ହେଉଛି ସମାଲୋଚନା ବା ସମୀକ୍ଷଣ । ଏହାକୁ ସମାଲୋଚନା ସାହିତ୍ୟ ବା ସାହିତ୍ୟ ସମାଲୋଚନା ବୋଲି ନାମିତ କରାଯାଇଛି । ବିଭିନ୍ନ ବିଦ୍ୟା ବା ଶାସ୍ତ୍ରର ବିଶେଷଜ୍ଞ ଥିବାପରି ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବିଶେଷଜ୍ଞ ବା ତଦ୍‌ବିତ୍ ରହିଛନ୍ତି: କାବ୍ୟ କବିତା, କଥା ସାହିତ୍ୟ, ନାଟ୍ୟ ସାହିତ୍ୟ, ପ୍ରବନ୍ଧ କ୍ଷେତ୍ରରେ ପୁଣି ପ୍ରାଚୀନ, ମଧ୍ୟଯୁଗ, ଆଧୁନିକ, ଭାଷା ଗବେଷଣା, ଲୋକସଂସ୍କୃତି ଆଦି ଯୁଗ ଓ ପ୍ରକରଣ ଭେଦରେ । ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ କ୍ଷେତ୍ରରେ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କୁ ଆଧୁନିକ କବିତାର ଜଣେ ତଦ୍‌ବିତ୍ ବା ବିଶେଷଜ୍ଞ ଭାବରେ ଗ୍ରହଣ କରାଯାଏ । ବିଗତ ଅର୍ଦ୍ଧଶତାବ୍ଦୀ (୧୯୬୫-୨୦୧୬) ଅବଧି ସେ ମୁଖ୍ୟତଃ ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ ନେଇ ପ୍ରତିବଦ୍ଧ ଓ କ୍ରିୟାଶୀଳ । ଏମିତିରେ ସେ ସାରଳା ଦାସଙ୍କ କାବ୍ୟକବିତାକୁ ନୂତନ ଦୃଷ୍ଟିରେ ପର୍ଯ୍ୟାଲୋଚନା କରିଛନ୍ତି, ଭିନ୍ନ ସୃଷ୍ଟିରେ ଭଂଜ କବିଙ୍କୁ ମୂଲ୍ୟାୟିତ କରିଛନ୍ତି । ନବନାଟ୍ୟ ଆନ୍ଦୋଳନ ସଂପର୍କରେ ଚର୍ଚ୍ଚା ଲେଖିବା ସହିତ ଗଳ୍ପ, ଉପନ୍ୟାସ ଆଦିର ସମୀକ୍ଷାରେ ମଧ ହାତ ଦେଇଛନ୍ତି । ଗଳ୍ପଚର୍ଚ୍ଚା ସଂପର୍କରେ ନିତ୍ୟାନନ୍ଦଙ୍କ ସମୀକ୍ଷା ଗ୍ରନ୍ଥ 'ଗଳ୍ପ ଓ ଗାଳ୍ପିକ' (୧ମ ଭାଗ : ୧୯୮୬) । ବୃହତ୍ତର କଳେବର ସଂପନ୍ନ ପାଞ୍ଚଗୋଟି ଓଡ଼ିଆ ଉପନ୍ୟାସକୁ ନାତି ଦୀର୍ଘ କଳେବର ସଂପନ୍ନ କରି ତା' ଉପରେ ଆଲୋକପାତ କରିଛନ୍ତି ମେଗା ଓଡ଼ିଆ ଉପନ୍ୟାସ ବୀକ୍ଷା ଓ ସମୀକ୍ଷା (୨୦୧୫) ଶିରୋନାମାରେ ।

ଆଲୋଚକ ନିତ୍ୟାନନ୍ଦଙ୍କର ସାହିତ୍ୟ ସାଧନା ପର୍ବର ଆଦ୍ୟ ଅଭିସାର ଥିଲା କବିତା । ତା'ର ଫଳସ୍ୱରୂପ ୧୯୬୨ ମସିହାରେ ପ୍ରକାଶିତ ଯୁଗ୍ମ କବିତା ସଂକଳନ 'ଆମ କବିତା'ର ଗୋଟିଏ ଭାଗ ଥିଲା ତାଙ୍କର, ଆର ଭାଗଟି ଥିଲା ବିବାହ ବନ୍ଧନରେ ଆବଦ୍ଧ ହେବାକୁ ଯାଉଥିବା ପତ୍ନୀ କବି ପ୍ରତିଭା ଶତପଥୀଙ୍କର । ନିଜ ସାହିତ୍ୟ ସାଧନା ମଝିରେ କବିତାର ଯେଉଁ ପ୍ରେରଣା ଆସିଛି ତା'ର ଫଳଶ୍ରୁତି ନିକଟ ଅତୀତରେ ପ୍ରକାଶିତ କବିତାଗ୍ରନ୍ଥ 'ସବା ସାନ ପ୍ରେମିକା' । ବିଭିନ୍ନ ସମୟରେ ବହୁ ଗ୍ରନ୍ଥ ସଂପାଦନା ସହିତ ପୂଜ୍ୟପୂଜା ସଂସଦ ପ୍ରକାଶିତ ବିଭିନ୍ନ ଉଲ୍ଲେଖଯୋଗ୍ୟ ବିଶେଷାଙ୍କ ଗ୍ରନ୍ଥ ଓ ପାଖାପାଖି ଚାରିଦଶନ୍ଧି ଧରି ସୃଜନଶୀଳ ସମୀକ୍ଷା ସମୃଦ୍ଧ ତ୍ରୈମାସିକୀ ପତ୍ରିକା 'ଇସ୍ତାହାର'ର ସଂପାଦନା ତାଙ୍କ ଅଧ୍ୟୟନ, ମନନ, ଅବବୋଧ, ନିଷ୍ଠା ଓ ପ୍ରତିବଦ୍ଧତାକୁ ସାବ୍ୟସ୍ତ କରେ । ବିଭିନ୍ନ ସଂପାଦକୀୟ ଓ

ମୌଳିକ ପ୍ରବନ୍ଧର ପ୍ରକାଶନ ସହିତ ନିତ୍ୟାନନ୍ଦଙ୍କର ପ୍ରକାଶିତ ହୋଇଛି ଏକାଧିକ ଆତ୍ମଜୀବନୀ ଗ୍ରନ୍ଥ, ଭ୍ରମଣ କାହାଣୀ : 'ୟୁରୋପ : ସଂସ୍କୃତି ଓ ବିସ୍ମୟ' ଉପନ୍ୟାସ 'ଅନିକେତ' (୧୯୯୦), ଗଳ୍ପ ସଂକଳନ 'କାଳକର୍ଣ୍ଣିକା', 'ଯେ ନଦୀ ମରୁପଥେ', ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଜୀବନଗାଥା 'ହେ ସାଥି! ହେ ସାରଥି!' । ଏହା ନିତ୍ୟାନନ୍ଦଙ୍କ ମୌଳିକ ସୃଜନଶୀଳତାର ନାନା ଉତ୍ସ ଉନ୍ମୋଚନ କରେ । ଏପରି ଜଣେ ସର୍ଜନଶୀଳ ସାହିତ୍ୟ ସ୍ରଷ୍ଟା କବିତା ସମୀକ୍ଷଣକୁ ସ୍ୱକୀୟ ସାଧନାର ମୁଖ୍ୟ ଧାରା ବୋଲି ଗ୍ରହଣ କଲେ ସମୀକ୍ଷାରେ ସୃଷ୍ଟିଶୀଳତାର ବହୁଧା ସ୍ପର୍ଶ ଯେ ଅବଶ୍ୟମ୍ଭାବୀ ଏହା ସ୍ୱୀକାର କରିବାକୁ ହେବ । ଏଠାରେ ଚର୍ଚ୍ଚା ନିମିତ୍ତ ନିତ୍ୟାନନ୍ଦଙ୍କ କବିତା ସମୀକ୍ଷଣକୁ ହିଁ ନିଆଯାଇଛି । ନିତ୍ୟାନନ୍ଦଙ୍କ ଆଦ୍ୟ କବିତା ସମୀକ୍ଷା ଗ୍ରନ୍ଥ 'କବିତା ଯୁଗେ ଯୁଗେ' (୧୯୭୬) ବିଭିନ୍ନ ସମୟର କବିତାର ସମୀକ୍ଷା ହୋଇଥିବା ସ୍ଥଳେ 'ଆଧୁନିକ ସାହିତ୍ୟ : ଚିନ୍ତା ଓ ଚେତନା' (୧୯୮୪) ସାହିତ୍ୟର ବିଭିନ୍ନ ବିଭାବର ମୂଲ୍ୟାୟନ । ତେବେ ମୋ ଚର୍ଚ୍ଚାରେ ନିତ୍ୟାନନ୍ଦଙ୍କ କବିତା ସଂପର୍କିତ ଗବେଷଣା ଗ୍ରନ୍ଥ 'ସବୁଜରୁ ସାଂପ୍ରତିକ' (ପ୍ରଥମ ସଂସ୍କରଣ : ୧୯୭୯), 'ସତୁରୀରୁ ସହସ୍ରାବ୍ଦୀ' (୨୦୦୩), 'କବିତା-ସେତୁ' (୨୦୦୯), 'କାବ୍ୟ ଦୃଷ୍ଟି ଓ କାବ୍ୟ ବିଚାର' (୨୦୧୫) କୁ ଗ୍ରହଣ କରିଛି । ଏଠାରେ ସୂଚାଇ ଦେବା ପ୍ରାସଂଗିକ ଯେ ତାଙ୍କ ରଚିତ ପ୍ରମୁଖ କବି କତିପୟ (୧୯୮୫), 'ସତ୍ୟବାଦୀ ଯୁଗ : ସ୍ରଷ୍ଟା ଓ ସୃଷ୍ଟି' / 'ସବୁଜରୁ ସାଂପ୍ରତିକ' ଓ 'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥର ସହାୟତାରେ ବିସ୍ତାରିତ ଉପସ୍ଥାପନ । 'କାବ୍ୟ ଦୃଷ୍ଟି ଓ କାବ୍ୟ ବିଚାର' ଗ୍ରନ୍ଥଟି ୧୯୯୩ରେ ପ୍ରକାଶିତ 'କାବ୍ୟ ପ୍ରକରଣ'ର ପରିବର୍ଦ୍ଧିତ ନୂତନ ସଂସ୍କରଣ ।

ନିତ୍ୟାନନ୍ଦ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମୀକ୍ଷା ତତ୍ତ୍ୱ ଓ ଧାରା ଅବଗାହୀ । ତାଙ୍କ କବିତା ସମୀକ୍ଷା ପରିସର ମୁଖ୍ୟତଃ କବି ରାଧାନାଥ ରାୟଙ୍କଠୁ ସମକାଳର କବି ଆଶୁତୋଷ ପରିଡ଼ାଙ୍କ ଯାଏ ପରିବ୍ୟାପ୍ତ । ପ୍ରମୁଖ ସମୀକ୍ଷା ଗ୍ରନ୍ଥ 'ସବୁଜରୁ ସାଂପ୍ରତିକ'ରୁ 'କବିତା-ସେତୁ' ପର୍ଯ୍ୟନ୍ତ ୧୯୧୦ ରୁ ୨୦୧୦ ଯାଏ କବିତାର ମୂଲ୍ୟାୟନ । ଅର୍ଥାତ୍ ବିଂଶ ଶତାବ୍ଦୀର କବିତା । ସେଥିରେ ଊନବିଂଶ ଶତାବ୍ଦୀ ଅଛି, ଅଛି ବି ଏକବିଂଶ ଶତାବ୍ଦୀର ଆଦ୍ୟଭାଗ । କିନ୍ତୁ ଏହାର ସମୀକ୍ଷା ପରିଧି ଚର୍ଯ୍ୟା ସାହିତ୍ୟଠୁଁ ସମକାଳ ଯାଏ ପ୍ରସାରିତ । ସମୀକ୍ଷାକର୍ମର ଆଦର୍ଶ ଭାବେ ସେ ଡକ୍ଟର ନଟବର ସାମନ୍ତରାୟଙ୍କୁ ବିଶେଷ ମାନ୍ୟତା ଦିଅନ୍ତି । ସମୀକ୍ଷଣର ବିଭିନ୍ନ ପର୍ଯ୍ୟାୟରେ ଯେଉଁ ଯେଉଁ ଆଲୋଚକଗଣ କାବ୍ୟ କବିତା ଉପରେ ବିଶେଷ ଅଭିମତ ରଖିଛନ୍ତି ସେଥିରୁ ନିର୍ଯ୍ୟାସ ବା ଉଦ୍ଧୃତି ଉଲ୍ଲେଖ କରି ନିତ୍ୟାନନ୍ଦ ଯୁକ୍ତିନିଷ୍ଠ ଭାବରେ ସ୍ୱକୀୟ ମତ ବାଢ଼ିଛନ୍ତି, ମତ ପ୍ରତିଷ୍ଠା ଦିଗରେ ବ୍ରତୀ ହୋଇଛନ୍ତି ।

'ସବୁଜରୁ ସାଂପ୍ରତିକ' (୧୯୭୬, ପ୍ରକାଶ କାଳ : ୧୯୭୯) ପ୍ରକାଶନ ବେଳକୁ ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ ଖୁବ୍ ବେଶି ନିର୍ଦ୍ଦିଷ୍ଟ ଓ ବ୍ୟାପକ ହୋଇନଥିଲା । କବ

ମାୟାଧର ମାନସିଂହ 'ଓଡ଼ିଆ ସାହିତ୍ୟର ଇତିହାସ' ରଚନା କରି କାବ୍ୟସ୍ରଷ୍ଟାଙ୍କ ଉପରେ ବହୁ ମୌଳିକ ତାତ୍ପର୍ଯ୍ୟପୂର୍ଣ୍ଣ ଅଭିମତ ରଖିଥିଲେ । ଡ. ନଟବର ସାମନ୍ତରାୟ, ଡ. ନରେନ୍ଦ୍ର ନାଥ ମିଶ୍ର ଆଧୁନିକ କବିତା ଚର୍ଚ୍ଚାର ଭିତ୍ତିସ୍ଥାପନ କରିଥିଲେ । ପତ୍ରପତ୍ରିକା ପୃଷ୍ଠାରେ ବିଭିନ୍ନ ସାମୟିକ ମତାମତ ଭିନ୍ନ ଚିନ୍ତାମଣି ବେହେରାଙ୍କ ବିଧିବଦ୍ଧ ଚର୍ଚ୍ଚା ପତ୍ରିକା ଓ ଗ୍ରନ୍ଥମଣ୍ଡନ କରିଥିଲା । କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ବିଭିନ୍ନ ପ୍ରବନ୍ଧ ଭିନ୍ନ 'କବିତା ୧୯୬୨'ର ଆଧୁନିକ କବିତା ସଂପର୍କିତ ଚର୍ଚ୍ଚା ବହୁ ନୂତନତା ବହନ କରିଥିଲା । ପ୍ରକାଶ ପାଇଥିଲା ସମାଲୋଚକ ଡ. ଦାଶରଥି ଦାସଙ୍କ 'କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ' ଏବଂ ପରେ 'ମୃତ୍ୟୁଲୋକରେ ଋତୁ ସପ୍ତମ' ଗ୍ରନ୍ଥ । ଯତୀନ୍ଦ୍ର ମୋହନ ମହାନ୍ତି ଓ ସୌରୀନ୍ଦ୍ର ବାରିକଙ୍କ କବିତା ଚର୍ଚ୍ଚା କତିପୟ କବି ଓ କାବ୍ୟବିଭବକୁ ଆଲୋଡ଼ିତ କରିଥିଲା । ଅବଶ୍ୟ ରାଧାନାଥଙ୍କ ସମକାଳର କାବ୍ୟଯୁଗ, ସତ୍ୟବାଦୀ ଓ ସବୁଜ ସଂପର୍କରେ ଚର୍ଚ୍ଚା ଓ କିଛି ଭାବେ ପ୍ରଗତିବାଦୀ ଚେତନାର ଚର୍ଚ୍ଚାକୁ ଆଧୁନିକ କବିତାର ଚର୍ଚ୍ଚା ବୋଲି କୁହାଯାଉଥିଲା । 'ସବୁଜରୁ ସାଂପ୍ରତିକ', 'ମୁଖଶାଳା'ରେ ନିତ୍ୟାନନ୍ଦ କହନ୍ତି- "xxx ସତ୍ୟବାଦୀ ସାହିତ୍ୟଯୁଗ ତା'ର ଐକାନ୍ତିକ ଆତ୍ମନିଷ୍ଠା ଓ ମୂଲ୍ୟବୋଧ ନେଇ ୧୯୦୯ ଠାରୁ ୧୯୨୦ ପର୍ଯ୍ୟନ୍ତ ପ୍ରତିଷ୍ଠିତ । ଡ. ନଟବର ସାମନ୍ତରାୟ ତାଙ୍କ ଗବେଷଣା ନିବନ୍ଧ "ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)" ରେ ଏଇ ପର୍ଯ୍ୟନ୍ତ ଦୃଷ୍ଟିପାତ କରିଛନ୍ତି । ଡ. ନରେନ୍ଦ୍ର ନାଥ ମିଶ୍ର 'ଆଧୁନିକ ଓଡ଼ିଆ କାବ୍ୟଧାରା' ନବଜାଗରଣ ପର୍ବରେ 'ସତ୍ୟବାଦୀ ସାହିତ୍ୟଯୁଗ' ମଧ୍ୟରେ ତାଙ୍କ ଆଲୋଚନା ଧାରାକୁ ସୀମାୟିତ କରିଛନ୍ତି । ତେଣୁ ଏ ନିବନ୍ଧରେ ମୁଁ ୧୯୨୦ ଠାରୁ ୧୯୬୭ ପର୍ଯ୍ୟନ୍ତ ସମୟର କାବ୍ୟଧାରାକୁ ଅନୁଧାନ କରିବାକୁ ଉଦ୍ୟମ କରିଛି । ଏହାକୁ 'ସବୁଜରୁ-ସାଂପ୍ରତିକ' ଭାବରେ ନାମିତ କରାଯାଇପାରେ ।"

ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନା ହେତୁ ଡ. ନିତ୍ୟାନନ୍ଦ ଶତପଥୀଙ୍କୁ ସହଜାତ ଭାବରେ କାବ୍ୟ କବିତାର ଐତିହାସିକ ଧାରା ସହ ଏହାର ପ୍ରକୃତି ଓ ପ୍ରବୃତ୍ତି, କବିମାନସର ଉନ୍ମେଷ ଓ ବିବର୍ତ୍ତନର ଅଧ୍ୟୟନ କରିବାକୁ ପଡ଼ିଛି ଏବଂ ଆଧୁନିକ କବିତା ସଂପର୍କିତ ବିଶେଷ ପତ୍ରର ବୀକ୍ଷଣ ପାଇଁ ଉଭୟ ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ ରୀତି ଅନୁସରଣ କରିବାକୁ ପଡ଼ିଛି । ବିଭିନ୍ନ ସମୀକ୍ଷା ବା ସମାଲୋଚନା ଗ୍ରନ୍ଥର ଭୂମିକାରେ ଏହା ସଂପର୍କରେ ସେ ସୂଚନା ପ୍ରଦାନ କରିଛନ୍ତି । କବିତା ସମୀକ୍ଷା କ୍ଷେତ୍ରରେ କବିତାର ଅର୍ଥ ଓ ଆବେଦନକୁ ଆବିଷ୍କାର କରିବା, ସ୍ଥାନ ଓ କାଳ ପରିପ୍ରେକ୍ଷୀରେ ତା'ର ତାତ୍ପର୍ଯ୍ୟକୁ ଚିହ୍ନିତ କରିବା ପାଇଁ ଯେଉଁ ସମୀକ୍ଷା ପଦ୍ଧତି ବା ଧାରା ସହଜାତ ତାକୁ ନିତ୍ୟାନନ୍ଦ ଆପଣାଇଛନ୍ତି । ସେଥିରେ ନିର୍ଦ୍ଦିଷ୍ଟତା ଖୋଜିବା ପ୍ରାସଂଗିକ ମନେହୁଏନା । ସେଥିରେ ଲେଖାଟିର ପ୍ରକାଶନ କାଳ ଆଧାରିତ ଐତିହାସିକ ସମୀକ୍ଷା ଧାରା, କବିତାର ନିର୍ଯ୍ୟାସକୁ ଉତ୍‌ଖାତ କରିବା ପାଇଁ

ବିଶ୍ଳେଷଣାତ୍ମକ ସମୀକ୍ଷା ଧାରା, କବିତାର ତାତ୍ପର୍ଯ୍ୟ, ବ୍ୟାପ୍ତି ଓ ନୂତନତାକୁ ଚିହ୍ନାଇବା ପାଇଁ ତୁଳନାତ୍ମକ ସମୀକ୍ଷଣ, ସାହିତ୍ୟିକ ବାଦ ଓ ତତ୍ତ୍ୱର ପ୍ରୟୋଗକୁ ଦର୍ଶାଇବା ପାଇଁ ପ୍ରାୟୋଗିକ ମୂଲ୍ୟାୟନ ଧାରା ସମ୍ମିଳିତ ଭାବେ ଅନୁସୃତ ହୋଇଛି, ହେବା ସହଜାତ । ଏବକୁ ପଚିଶି/ତିରିଶି ବର୍ଷ ଧରି ବିଶ୍ୱ ସମୀକ୍ଷା ଧାରାରେ ନାନା ପରିବର୍ତ୍ତନ ଓ ପଦ୍ଧତି ଆସିଲାଣି । ୧୯୭୦-୭୫ ସମୟ ପରିସରର କଥା ନିଆରା । ତେବେ ବିଭିନ୍ନ କବି ଓ କବିତା ଗ୍ରନ୍ଥର ବିଚାର ପର୍ଯ୍ୟାୟରେ ଏକକ କବିତାର ପ୍ରାୟୋଗିକ ବିଚାର କରି ତା'ର ସ୍ଥାନ ଓ ତାତ୍ପର୍ଯ୍ୟ, ଦୁର୍ବଳତା ଓ ବୈଶିଷ୍ଟ୍ୟ ନିରୂପଣ ମଧ୍ୟ ପ୍ରାଧାନ୍ୟ ପାଇଛି । କୌଣସି କାଳର କବି ଓ କବିତାର ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିର ଅବତାରଣା ମଧ୍ୟ ନିତ୍ୟାନନ୍ଦଙ୍କ କବିତା ଚର୍ଚ୍ଚାରେ ସହମତ ଭାବେ ପରିଲକ୍ଷିତ । କବିର ଆହରଣ ଓ ପ୍ରେରଣାର ଉତ୍ସକୁ ଖୋଜିବା ସହିତ କ୍ଷେତ୍ର ବିଶେଷରେ କାବ୍ୟକୃତିକୁ ପ୍ରାଚୀନ କାବ୍ୟଧାରା, ପାଶ୍ଚାତ୍ୟ ତଥା ପ୍ରାନ୍ତୀୟ କାବ୍ୟଧାରା ସହିତ ଏକ ତୁଳନାତ୍ମକ ବିଚାର ବିମର୍ଶ ସେ ତିଆରି କରିଛନ୍ତି ।

କବିତା ସମୀକ୍ଷଣ ପରିପ୍ରେକ୍ଷୀରେ କୌଣସି ନିର୍ଦ୍ଦିଷ୍ଟ ଯୁଗ ବା ସମୟର ଅବଦାନ ରହିଛି; କିନ୍ତୁ ତାହା ଜଣେ କାବ୍ୟସ୍ରଷ୍ଟାର ବୈୟକ୍ତିକ ଅବଦାନରେ ସମୃଦ୍ଧ । ଏଣୁ ଏକକ କବିଙ୍କର ସାମଗ୍ରିକ ଅଧ୍ୟୟନ ହିଁ ନିତ୍ୟାନନ୍ଦଙ୍କ ସମୀକ୍ଷା ଧାରାରେ ବିଶେଷ ଭାବେ ପରିଲକ୍ଷିତ ହୁଏ । ଏହା ସତ୍ତ୍ୱେ ସେ ତତ୍କାଳର ସାହିତ୍ୟ ଧାରା ଓ ତା'ର ତାତ୍ତ୍ୱିକ ଦିଗକୁ ଚର୍ଚ୍ଚା କରି ଗୋଟିଏ ସମୟଖଣ୍ଡର ନିଷ୍କର୍ଷ ବା ନିର୍ଯ୍ୟାସକୁ ଉପସ୍ଥାପିତ କରନ୍ତି । ଆମ ସମୀକ୍ଷା ଧାରାରେ ପ୍ରଚଳିତ ବିଭିନ୍ନ ମୌଳିକ ତତ୍ତ୍ୱର ସଂଜ୍ଞା, ସ୍ୱରୂପ ତଥା ଓଡ଼ିଆ କବିତାରେ ତା'ର ପ୍ରୟୋଗ-ବିଶେଷତାକୁ ସେ ଦର୍ଶାଇଛନ୍ତି । ଏତଦ୍‌ଭିନ୍ନ ଓଡ଼ିଆ କବିତାର ଭାବଜଗତ ଓ କଳାକାରିଗରିରେ ପରିଦୃଶ୍ୟମାନ ବିବିଧତାକୁ ବିଶ୍ଳେଷଣ କରି ତା'ର ନୂତନତା ଓ ଅର୍ଥବହତାକୁ ପ୍ରକାଶ କରିଛନ୍ତି । ଏହି ଦୃଷ୍ଟିରୁ 'ସବୁଜରୁ ସାଂପ୍ରତିକ', 'ସତୁରୀରୁ ସହସ୍ରାବ୍ଦୀ', 'କବିତା-ସେତୁ' ଗୋଟିଏ ଧାରାର । 'କାବ୍ୟପ୍ରକରଣ'ର ପରିବର୍ଦ୍ଧିତ ରୂପ 'କାବ୍ୟ ଦୃଷ୍ଟି କାବ୍ୟ ବିଚାର' ଗ୍ରନ୍ଥ ବିଭିନ୍ନ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱର ଚର୍ଚ୍ଚା ଓ ତା'ର ପ୍ରାୟୋଗିକ ମୂଲ୍ୟାୟନ ବିଷୟକ । ୧୯୬୦ ପରବର୍ତ୍ତୀ ସୃଷ୍ଟିଶୀଳ କାବ୍ୟସ୍ରଷ୍ଟାଙ୍କ କୃତି ଉପରେ ଅନେକ କ୍ଷେତ୍ରରେ ଏକ ଅନ୍ତିମ ନିର୍ଣ୍ଣୟାତ୍ମକ ମତ ରଖିବା ସମ୍ଭବ ହୋଇନାହିଁ । ଯଦିଓ କାବ୍ୟଗ୍ରନ୍ଥ ଓ ଏକକ କବିତାର ବିଶେଷତା ଉପରେ ନିର୍ଦ୍ଦିଷ୍ଟ ମତ ରହିଛି । କବିତାର କାବ୍ୟ ପରଂପରା ଆଧାରରେ ତା'ର ନିଜସ୍ୱତା, ମୌଳିକତା ଓ ନୂତନତା ସଂପର୍କରେ ଅଜସ୍ର ଉଦ୍ଧୃତିଯୋଗ୍ୟ ମତ ନିତ୍ୟାନନ୍ଦଙ୍କ ସମୀକ୍ଷାକୁ ମଣ୍ଡନ କରିଛି ।

ନିତ୍ୟାନନ୍ଦ ମୂଳତଃ ଏକ ସର୍ଜନଶୀଳ ସତ୍ତା ବା ସ୍ରଷ୍ଟା ହୋଇଥିବାରୁ ତାଙ୍କ ସମୀକ୍ଷାରେ ଦୃଷ୍ଟିଭଙ୍ଗୀ ଓ ଭାଷା ସର୍ଜନାତ୍ମକ (creative) । ଏ ପ୍ରକାର ସର୍ଜନାତ୍ମକତା ଓଡ଼ିଆ ସମୀକ୍ଷା ଧାରାରେ ମାନସିଂହ, କୁଞ୍ଜବିହାରୀ ଦାଶ, ସୁରେନ୍ଦ୍ର ମହାନ୍ତି, ଚିନ୍ତାମଣି ବେହେରା, ଦାଶରଥ

ଦାସ, ଆଦିକନ୍ଦ ସାହୁ, ହରପ୍ରସାଦ ଦାସ ପ୍ରଭୃତିଙ୍କ ଲେଖାରେ ପରିଲକ୍ଷିତ ହୁଏ । ନିତ୍ୟାନନ୍ଦଙ୍କ ସମୀକ୍ଷଣରେ ସର୍ଜନଶୀଳତା ପରିପ୍ରେକ୍ଷୀରେ କହିହେବ ଯେ କୌଣସି କବିଙ୍କ କୃତିର ବ୍ୟାଖ୍ୟା କଲାବେଳେ ତା'ର ରସବୋଧ ଓ ମାଧୁର୍ଯ୍ୟ ସହ ସେ ଏକାତ୍ମ ହୋଇଯାଇଛନ୍ତି ଏବଂ ଅଭିମତ ରଖିଲାବେଳେ ଏକ ଅନାସକ୍ତ ଦ୍ରଷ୍ଟାର ଭୂମିକାକୁ ଓହ୍ଲାଇ ଆସିଛନ୍ତି ।

କ୍ଷେତ୍ର ବିଶେଷରେ କୌଣସି ନିର୍ଦ୍ଦିଷ୍ଟ ଲେଖାର ଅନନ୍ୟତା ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତା'ର ଯଥାଯୋଗ୍ୟ ସ୍ଥାନଟିଏ ରହିଛି ବୋଲି ଅଭିମତଟିଏ ପ୍ରଦାନ କରିବାର ଦକ୍ଷତା ଓ ମନୋଭାବ ସେ ପ୍ରଦର୍ଶନ କରିଛନ୍ତି । ପୂର୍ବ ସମୀକ୍ଷକଙ୍କ ମତରେ ସାରବତ୍ତା ବା ତାତ୍ପର୍ଯ୍ୟ ଦର୍ଶାଇଲା ବେଳେ ତାଙ୍କର ଅଭାବ ଓ ଏକଦର୍ଶିତାକୁ ନିତ୍ୟାନନ୍ଦ ବିନମ୍ରଭାବେ ପ୍ରକାଶ କରିବାର ଉଦାରତା ଓ ସ୍ପର୍ଦ୍ଧା ମଧ୍ୟ ପୋଷଣ କରିଛନ୍ତି । ତାଙ୍କର ଅନ୍ୟୂନ ଅଢ଼େଇ ହଜାର ପୃଷ୍ଠା (ଡିମାଇ ସାଇଜ୍‌ର) କବିତା ସମୀକ୍ଷଣର ସମୀକ୍ଷା ଏକାଧିକ ବିଶେଷ ସନ୍ଦର୍ଭର ଅପେକ୍ଷା ରଖେ । ଏ ପ୍ରସଂଗରେ ଆଉ ଏକ କଥା ଉଲ୍ଲେଖ କରିବା ପ୍ରାସଂଗିକ ହେବ ଯେ ନିତ୍ୟାନନ୍ଦ କବି ରାଧାନାଥ ରାୟଙ୍କଠୁ ଦିବଂଗତ ସଚ୍ଚିରାଉତରାୟଙ୍କ ପର୍ଯ୍ୟନ୍ତ କାବ୍ୟସ୍ରଷ୍ଟାଙ୍କ ସାମଗ୍ରିକ ଓ ପୂର୍ଣ୍ଣାଙ୍ଗ ମୂଲ୍ୟାୟନ ପାଇଁ ଉଦ୍ୟମ କରିଛନ୍ତି । ଉଦାହରଣ ସ୍ୱରୂପ ତାଙ୍କର ତିନିଗୋଟି ଚର୍ଚ୍ଚା ଗ୍ରନ୍ଥରେ ସଚ୍ଚିରାଉତରାୟଙ୍କ ସଂପର୍କରେ ଶତାଧିକ ପୃଷ୍ଠାର ଚର୍ଚ୍ଚା ରହିଛି । ଏହି କ୍ରମରେ କବି ଗୁରୁପ୍ରସାଦ, ଭାନୁଜୀ, ରଘୁନାଥ, ରମାକାନ୍ତ, ସୀତାକାନ୍ତ, ସୌରୀନ୍ଦ୍ର, ଚିନ୍ତାମଣି, ବ୍ରଜନାଥ, ଦୀପକ, ଜଗନ୍ନାଥ ପ୍ରସାଦ, ପ୍ରତିଭା, ରଜନୀକାନ୍ତ ଦାସ, ପ୍ରମୋଦ ମହାନ୍ତି ପ୍ରମୁଖଙ୍କ ସଦ୍ୟତମ ଗ୍ରନ୍ଥକୁ ଯଥାସମ୍ଭବ ନିଜ ଆକଳନ କରିବାର ନିଷ୍ଠା ଓ ସ୍ପର୍ଦ୍ଧା ପ୍ରଦର୍ଶନ କରିଛନ୍ତି । ସାଂପ୍ରତିକ ପରିଭାଷାରେ up date କରିବା ମାନସିକତା । ଭାବ ଓ କଳାକାରୀଗତ ବିଭବ ନେଇ ସେ ଅନେକଙ୍କର ଚର୍ଚ୍ଚା କରିଥିଲେ ବି କିଛି କାବ୍ୟଶିଳ୍ପୀ ତାଙ୍କ ଚର୍ଚ୍ଚା ଆଢୁଆଳରେ ରହିଯାଇଛନ୍ତି । ଓଡ଼ିଆ କବିତାରେ ବିଭିନ୍ନ ସମୟରେ ଆସିଥିବା ବିଭିନ୍ନ 'ବାଦ' (ରୋମାଣ୍ଟିସିଜିମ୍ ଠାରୁ ଉତ୍ତର ଆଧୁନିକତା ପର୍ଯ୍ୟନ୍ତ)ର ପ୍ରୟୋଗଗତ ତାତ୍ପର୍ଯ୍ୟକୁ ଚିହ୍ନିତ କରିବା ମଧ୍ୟ ତାଙ୍କର ଏକକ ପ୍ରୟାସ ବୋଲି ମନେହୋଇଥାଏ ।

ନିତ୍ୟାନନ୍ଦଙ୍କ କବିତା ସମୀକ୍ଷଣର ଚର୍ଚ୍ଚାନିମିତ୍ତ ତାଙ୍କ ଦୁଇ ବୃହତ୍ତମ ଗ୍ରନ୍ଥ 'ସବୁଜରୁ ସାଂପ୍ରତିକ' ଓ 'ସତୁରୀରୁ ସହସ୍ରାବ୍ଦୀ'ର ବିଶେଷ ବ୍ୟାଖ୍ୟା କରିବା ସ୍ଥଳେ 'କବିତା-ସେତୁ' ଓ 'କାବ୍ୟଦୃଷ୍ଟି କାବ୍ୟବିଚାର' ସୂଚନାତ୍ମକ ଚର୍ଚ୍ଚା କରିଛି । ୧୯୭୬ରେ ଗବେଷଣା ନିବନ୍ଧ ଭାବେ ସ୍ୱୀକୃତ 'ସବୁଜରୁ ସାଂପ୍ରତିକ' ୧୯୭୯ରେ ପ୍ରକାଶିତ ହୁଏ । ଏ ଗ୍ରନ୍ଥରେ ରହିଛି ଏଗାର ଗୋଟି ସ୍ୱତନ୍ତ୍ର ପରିଚ୍ଛେଦ ଏବଂ ଏହା ଗବେଷଣା ସନ୍ଦର୍ଭର ଗୁଣ ଓ ପଦ୍ଧତିକୁ କେତେ ଭାବେ ଚରିତାର୍ଥ କରିଛି ତାହା ମୋ ପାଇଁ ପ୍ରାସଙ୍ଗିକ ନୁହେଁ । ଏ ଗ୍ରନ୍ଥଟିରେ କବିତା ସଂପର୍କିତ ପ୍ରାଥମିକ ତଥ୍ୟ ମସିହା ମାସ ଭିତ୍ତିକ ହୋଇ ତତ୍‌କାଳର ପତ୍ରପତ୍ରିକାର

ବହୁ ଆୟାସରେ ସଂଗୃହୀତ ହୋଇଛି ଏବଂ ସେଇ ଆଧାରରେ କବିର ବୈଶିଷ୍ଟ୍ୟ, ବିକାଶ-ଉତ୍ତରଣ ଓ କାବ୍ୟଧାରାର ସାମଗ୍ରିକ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିବାରେ ଗ୍ରନ୍ଥଟି ସବୁଠୁଁ ପ୍ରାମାଣିକ ମନେହୁଏ । ନଟବର ସାମନ୍ତରାୟଙ୍କ "ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)" ପରେ ଏଇ ଧାରା ଓ ପାଟବର ଗ୍ରନ୍ଥଟିଏ ଓଡ଼ିଆ ଗବେଷଣା ଓ ସମୀକ୍ଷା କ୍ଷେତ୍ରରେ ଅମିଳକ- ଏହା ସ୍ୱୀକାର କରିବାକୁ ହେବ । ଏହାକୁ ଛାତ୍ରସେବା ଓ ଏକାଡେମୀକ କହିବା ଧୃଷ୍ଟତା ହେବ ଯଦିଓ ଗ୍ରନ୍ଥର ସପ୍ତମ ସଂସ୍କରଣ ପ୍ରକାଶିତ ଏବଂ ଛାତ୍ର ଓ ଅଧ୍ୟାପକ ସମାଜ ପାଇଁ କବିତାର ଅବବୋଧ ଓ ଇତିହାସ ଜାଣିବା ଲାଗି ଏହା ସର୍ବୋତ୍ତମ ସହାୟକ ଗ୍ରନ୍ଥ । ସାତଗୋଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ପରିଶରୁ ଉର୍ଦ୍ଧ୍ୱ ପ୍ରମୁଖ କବିଙ୍କ କାବ୍ୟଜଗତ, ଚାଳିଶରୁ ଉର୍ଦ୍ଧ୍ୱ ସୁପରିଚିତ ଓ ଗୌଣ କବିଙ୍କ ମୂଲ୍ୟାୟନ ଏ ଗ୍ରନ୍ଥର କଳେବର ମଣ୍ଡନ କରିଛି । ସବୁଜ କାବ୍ୟଶିଳ୍ପୀଙ୍କ ଠାରୁ ଯଦିଓ ଚର୍ଚ୍ଚାର ଆରମ୍ଭ ଘଟିଛି, ସ୍ୱରାଜ୍ୟ ଆନ୍ଦୋଳନର ଧାରା ଭିତରେ ଅବଧାରିତ ଭାବେ ସତ୍ୟବାଦୀ ଯୁଗର ଗୋପବନ୍ଧୁ ଚର୍ଚ୍ଚା ପରିସରକୁ ଆସୁଛନ୍ତି । ଆମ ସମୀକ୍ଷଣରେ ସବୁଜ ସାହିତ୍ୟ ଧାରାକୁ ସ୍ଥୁଳଭାବେ ଯୁଗଟିଏ ବୋଲି କୁହାଯାଇଛି ଏବଂ ଏବେବି ଏହା ଯୁଗ ପରିଭାଷାରେ ନାମିତ, କିଂତୁ ଏହାକୁ ଯୁଗ ନୁହେଁ; ଯୁଗାଭାସ କହିବାର ଯୁକ୍ତି ସମ୍ମତ ନିର୍ଣ୍ଣୟାତ୍ମକ ସର୍ବପ୍ରଥମେ ନିତ୍ୟାନନ୍ଦ ହିଁ ଅବତାରଣା କରିଛନ୍ତି । "ଏମାନଙ୍କ ମଧ୍ୟରେ ଯେତେ ଥିଲା ବଂଧୁତାର ବଂଧନ, ସେତେ ପ୍ରକୃତରେ ସାହିତ୍ୟିକ ଚେତନାର ଦୃଷ୍ଟିଗତ ବନ୍ଧନ ନଥିଲା ।" (ପୃ:୨) "ଅଥଚ୍ ଅତି ବିସ୍ମୟର କଥାହେଉଚ୍ଛି ଏହି ଯେ, ସବୁଜ ଗୋଷ୍ଠୀର କବିମାନେ ସମୟ, ଜାତି, ଆନ୍ତର୍ଜାତିକ - ଏ ସମସ୍ତ ଅଗ୍ରଗାମୀ ଭାବଧାରା ଓ ଆହ୍ୱାନ ପ୍ରତି ଆଖି ବୁଜି ଦେଇଥିଲେ । ଏହି ପରିବେଶରୁ ଖାପଛଡ଼ା ରହି ସ୍ୱପ୍ନପ୍ରଣୟ ଓ କଳ୍ପନାର ପରୀରାଜ୍ୟରେ ସେମାନେ କେତେଦିନ ବିଚ୍ରଣ କରିପାରିଥାନ୍ତେ ? (ପୃ:୫) ସବୁଜ ଠାରୁ ଦୂରତାରେ ରହି ସମସାମୟିକ ସ୍ରଷ୍ଟାଭାବେ ଏକକ ପ୍ରତିଷ୍ଠା ପାଇଥିବା ପଦ୍ମଚରଣ, କୁନ୍ତଳାକୁମାରୀ, କାନ୍ତକବି, ମାୟାଧର ମାନସିଂହ, ଗଡ଼ନାୟକ ଓ ଗୋଦାବରୀଶ ମହାପାତ୍ର କେଉଁ ଯୁଗ ଆଧାରରେ ଚିହ୍ନିତ ହୁଅନ୍ତେ ବୋଲି ପ୍ରଶ୍ନଟିଏ ଏଇ ଚର୍ଚ୍ଚାରୁ ଉଦ୍‌ଭୂତ ହୁଏ । ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ସବୁଜ କବିତାର ସବୁଗୁଣ ଓ ବିଭବ କବି ପଦ୍ମଚରଣଙ୍କ କବିତାରେ ପୂର୍ବରୁ ସ୍ୱତଃ ପରିଦୃଷ୍ଟ ହୁଏ ବୋଲି ନିତ୍ୟାନନ୍ଦ ଉଲ୍ଲେଖ କରିବା ତାଙ୍କ ଗରିମା ଓ ଅବଦାନକୁ ଯଥାର୍ଥରେ ଏକ ଐତିହାସିକ ମାନ୍ୟତା ଦେବ । ଅଭିମତଟିଏ ଏ ପ୍ରସଙ୍ଗରେ ଏହିପରି; "କବି ପଦ୍ମଚରଣଙ୍କ କବିତାରେ ଯେଉଁ ସମୟୋଚିତ ଅଙ୍ଗୀକାର ପ୍ରକାଶ ପାଇଛି ସେ ସ୍ୱର ସବୁଜ ଗୋଷ୍ଠୀର ଆଲେଖ୍ୟ ସମୟର କବିତାରେ ଏକାନ୍ତ ଦୁର୍ଲଭ । ଜାତୀୟ ଆଶା ଆକାଂକ୍ଷାଠାରୁ ଦୂରେଇ ଯାଇ ସବୁଜ କବିମାନେ ନୂଆ ସୃଷ୍ଟିର ମୋହରେ ବେଶୀଦୂର ଅଗ୍ରସର ହୋଇପାରିଥିବା ମନେ ହୁଏ ନାହିଁ ।" (ପୃ:୪) ଏକଦା ସମାଲୋଚ୍ଚକ ଦାଶରଥି ଦାସ ସବୁଜ ସଂପର୍କରେ

କହିଥିଲେ- "ସବୁଜ କାବ୍ୟକୁମ୍ଭର ସମସ୍ତ ଜଳ ରବିତୀର୍ଥରୁ ସଂଗୃହୀତ" (ସାହିତ୍ୟେ ସଂଧାନ) । ଅର୍ଥାତ୍ ରବୀନ୍ଦ୍ରନାଥଙ୍କ ପ୍ରଭାବ ।

ସବୁଜ କବିତା ପରିପ୍ରେକ୍ଷୀରେ ପ୍ରମୁଖ ସବୁଜ ସାଧକ ତ୍ରୟ ଅନ୍ନଦାଶଙ୍କର, କାଳିନ୍ଦୀ ଓ ବୈକୁଣ୍ଠନାଥଙ୍କ କାବ୍ୟଧାରାର ବିଶଦ ଆଲୋଚ଼ନା ଏଠାରେ ପରିସ୍ଫୁଟ । ଅନ୍ନଦାଶଙ୍କରଙ୍କ ଦ୍ୱନ୍ଦ୍ୱ ଓ ବଙ୍ଗଳା ସାହିତ୍ୟକୁ ତାଙ୍କର ପଳାୟନ କଥା ଉଲ୍ଲେଖ କରି ସେ କବିତାରେ ଧାବମାନ ଛନ୍ଦ ଓ ମାତ୍ରା ବୃତ୍ତଛନ୍ଦର ପ୍ରୟୋଗରେ ଅଗ୍ରଭୂମିକା ଗ୍ରହଣ କରିଥିବା ତଥା କବିତା ଅପେକ୍ଷା ରମ୍ୟରଚ଼ନା ଓ ସମାଲୋଚ଼ନା କ୍ଷେତ୍ରରେ ଅଧିକ ସିଦ୍ଧିର ଅଧିକାରୀ ବୋଲି ନିତ୍ୟାନନ୍ଦ ଉଲ୍ଲେଖ କରନ୍ତି । ସବୁଜର କାଳିନ୍ଦୀଚରଣଙ୍କ ସଂପର୍କରେ ସମାଲୋଚ଼କଙ୍କ ଅଭିମତ ଶୁଣନ୍ତୁ : "କାଳିନ୍ଦୀଚରଣଙ୍କ କାବ୍ୟଜୀବନର ପ୍ରାରମ୍ଭ ଓ ବିକାଶ ଅଛି, ପରିଣତି ନାହିଁ । ତଥାପି ସବୁଜ ଗୋଷ୍ଠୀ ମଧ୍ୟରେ କବି କାଳିନ୍ଦୀଚରଣ ସବୁଠାରୁ ଅଧିକ ସଚେତନ ଶିଳ୍ପୀ । ××× ଯେଉଁ କବି କାବ୍ୟଜୀବନର ଉନ୍ମେଷରେ ଥିଲେ ରୋମାଣ୍ଟିକ୍ ଓ ରୂପପ୍ରାଣ, ସେଇ କବି ଜୀବନର ମଧ୍ୟାହ୍ନରେ ଏକ ମାନବବାଦୀ, ବୈପ୍ଳବିକ ଚିନ୍ତାଧାରା ଅନୁସରଣ କରିବାରେ ବିଚିତ୍ରତା ନିଶ୍ଚୟ ଅଛି । ଏହାହିଁ କାଳିନ୍ଦୀ-କାବ୍ୟ-ସାଧନାର ଏକ ଚମତ୍କାର ଉତ୍ତରଣ ।" (ପୃ:୧୫) ବୈକୁଣ୍ଠନାଥଙ୍କର କାବ୍ୟଜୀବନରେ ବିକାଶ ଓ ପରିଣତି ଥିଲେବି ସେଥିରେ ଗତିଶୀଳତା ନାହିଁ ବୋଲି ସୂଚ଼ାଇ ସମୀକ୍ଷକ ବହୁ ନିର୍ଣ୍ଣୟାତ୍ମକ ଅଭିମତ ରଖିଛନ୍ତି । ଗୋଟିଏ ଦୁଇଟି ଉଦାହରଣ ନିମ୍ନମତେ : "ଅବଶ୍ୟ ଏକଥା ସତ୍ୟ ଯେ, ବୈକୁଣ୍ଠନାଥ ଭୀମଭୋଇଙ୍କ ପରି ଶୂନ୍ୟବାଦୀ ନୁହନ୍ତି ବା ମଧୁସୂଦନଙ୍କ ପରି ବ୍ରହ୍ମଉପାସନାର ଚିତ୍ର ଦେଇନାହାନ୍ତି । ସାକାର ଈଶ୍ୱରଙ୍କ ସ୍ଥିତି ପ୍ରତି ତାଙ୍କ ଚିନ୍ତାରେ ରହିଛି ବିପୁଳ ବିଶ୍ୱାସ; କିଂତୁ ଏହି ବିଶ୍ୱାସର ଧାରା ବେଳେବେଳେ ଅତ୍ୟନ୍ତ ପ୍ରଚ୍ଛନ୍ନ । କେବଳ ଅନୁଭୂତି ହିଁ ତା'ର ଉପଲବ୍ଧି ।"(ପୃ:୨୯) ଅଥବା, "××× ଅନେକ କବିତାରେ ବୁଦ୍ଧଦେବଙ୍କ ଜୀବନର ଅଶ୍ରୁ କରୁଣ ଅନୁଭୂତି ପୂରିରହିଛି ଓ ତା'ର କରୁଣ ଭାବସତ୍ତା ଏକ ଚିରନ୍ତନ କାଳୋତ୍ତୀର୍ଣ୍ଣ ଆବେଗରେ ପାଠକର ପ୍ରାଣ ଓ ମନକୁ ଦୋହଲେଇ ଦେଇଛି । ବୈକୁଣ୍ଠନାଥ ଅନ୍ୟ କୌଣସି କବିତା ନ ଲେଖି ଏଇ କେତୋଟି ଗାଥା କବିତା ପାଇଁ ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ହୋଇପାରିଥାନ୍ତେ ।" (ପୃ:୩୨) ସବୁଜ ଧରା ସହିତ ଆହରଣ, ଅନୁସରଣ ଓ ସାମ୍ୟକ୍ରମରେ ନିତ୍ୟାନନ୍ଦ କବି ଓମର ଖାୟାମ, ବ୍ଲେକ, ସେଲି, ଓ୍ୱଡସ୍‌ଓ୍ୱର୍ଥ, କାଡ଼ିନାଲ ନିଉମ୍ୟାନ୍, ଜନ୍ ମେସଫିଲ୍ଡ, ଏଲିଅଟ୍ ମାୟକୋଭସ୍କି ଆଦି ପାଶ୍ଚାତ୍ୟ ଭୂଖଣ୍ଡର ସାହିତ୍ୟଶିଳ୍ପୀ, ରବୀନ୍ଦ୍ରନାଥ, ନିରାଲା, ମହାଦେବୀ ଆଦି ଭାରତୀୟ କବି ତଥା ପୂର୍ବପିଢ଼ିର ଓଡ଼ିଆ କବିଙ୍କ ଚର୍ଚ୍ଚା କରିଛନ୍ତି । ସବୁଜ ଧାରାର ସମସାମୟିକ ଅନ୍ୟ ପ୍ରାନ୍ତୀୟ ଭାଷାରେ ବିକଶିତ କଲ୍ଲୋଳଯୁଗ (ବଙ୍ଗଳା), ଛାୟାବାଦୀଯୁଗ (ହିନ୍ଦି), ରବିକିରଣ ମଣ୍ଡଳ (ମରାଠୀ)ର ତୁଳନା ଓଡ଼ିଆ ସମୀକ୍ଷଣ ପରିପ୍ରେକ୍ଷୀରେ ନୂତନ

ଓ ତାତ୍ପର୍ଯ୍ୟପୂର୍ଣ୍ଣ । ବୈକୁଣ୍ଠନାଥଙ୍କ ସଂପର୍କରେ ମାନସିଂହଙ୍କ ମନ୍ତବ୍ୟକୁ ନିତ୍ୟାନନ୍ଦ କିପରି ନମ୍ରଭାବେ ବିରୋଧ କରୁଛନ୍ତି ଲକ୍ଷ୍ୟ କରନ୍ତୁ : "ମୋଟ ଉପରେ ମାନସିଂହଙ୍କ ରୁଷ୍ଟ ମନ୍ତବ୍ୟ 'ଡଗରେଲ' ଏପରି ଏକ ପୌରାଣିକ କୃତିଠାରେ ଯେ ପ୍ରତିହତ ହୋଇ ଫେରିଆସିବ - ଏଥିରେ ମୁଁ ନିଶ୍ଚିତ । ଅନ୍ତତଃ ଓଡ଼ିଆ ସାହିତ୍ୟର ଏଇ ଉଦାର ମାନବବାଦୀ କବିଙ୍କୁ ଅଧିକ ଅନୁଧ୍ୟାନ କରିବା ପାଇଁ ମାନସିଂହ ଯେ ସମୟ ପାଇନାହାନ୍ତି, ଏହାହିଁ ତାଙ୍କ ମନ୍ତବ୍ୟରୁ ସ୍ପଷ୍ଟ ହୁଏ ।" (ପୃ-୩୩)

ସବୁଜ କବିତାର ବୈଶିଷ୍ଟ୍ୟ ଓ ଦୁର୍ବଳତାକୁ ଦର୍ଶାଇବା ସହିତ ନିତ୍ୟାନନ୍ଦ ସବୁଜ ସମସାମୟିକ ଓଡ଼ିଆ କବିତାର ଦୁଇଟି ପ୍ରମୁଖ ଦିଗ ଜାତୀୟବାଦୀ ଚେତନା ଓ ଆଧିଭୌତିକ ରହସ୍ୟବାଦୀ ସ୍ୱର ପରିପ୍ରେକ୍ଷୀରେ କବି କୁନ୍ତଳାକୁମାରୀ ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କୁ ଚର୍ଚ୍ଚା କରିଛନ୍ତି । ଏ ଚର୍ଚ୍ଚାରେ ସମାଲୋଚକ ଏହାର ସାମାଜିକ ପୃଷ୍ଠଭୂମି, ବ୍ୟକ୍ତିଗତ ଜୀବନଧାରା ତଥା ଏମାନଙ୍କ ପୂର୍ବପିଢ଼ିର ବେଶ୍ କିଛି କାବ୍ୟସ୍ୱରକୁ ଉଲ୍ଲେଖ ଓ ଚର୍ଚ୍ଚା କରିଛନ୍ତି । କବି କୁନ୍ତଳାକୁମାରୀଙ୍କୁ କୀଟ୍‌ସ ଓ ମଧୁସୂଦନଙ୍କ ସହ ତୁଳନାତ୍ମକ ମତ ରଖିଛନ୍ତି ତାହା ନିମ୍ନମତେ : "ମାତ୍ର ଛ'ଟି ଓଡ୍ ରଚନା କରି କୀଟ୍‌ସ ଯେପରି ଇଂରାଜୀ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ଆସନର ଅଧିକାରୀ କୁନ୍ତଳାକୁମାରୀଙ୍କ 'ଉଚ୍ଛ୍ୱାସ'ର ଏଇ ଛ'ଟି ଓଡ୍ ସେଇ ସମ୍ମାନ ଦାବିକରେ । ଏ କବିତାଗୁଡ଼ିକର କାରୁଣ୍ୟ, ନମନୀୟତା, ହୃଦୟବତ୍ତା ଓ ସର୍ବୋପରି ସମ୍ମୋହିତ ଆତ୍ମଜିଜ୍ଞାସା ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଓଡ୍‌ଶିଳ୍ପୀ ମଧୁସୂଦନଙ୍କ ପରେ କୁନ୍ତଳାକୁମାରୀଙ୍କୁ ହିଁ ପ୍ରତିଷ୍ଠା ଦେଇପାରିଛି । ମଧୁସୂଦନଙ୍କ କାବ୍ୟମାନସ ଅଧିକ ତତ୍ତ୍ୱ ଓ ଦର୍ଶନାଭିଳାଷୀ; ତେଣୁ ଓଜଃ ଓ ପ୍ରଶାନ୍ତିରେ ମହିମାନ୍ୱିତ । କିନ୍ତୁ କୁନ୍ତଳାକୁମାରୀଙ୍କ ଓଡ୍ ଗୁଡ଼ିକ ଆତ୍ମାନୁଭୂତିରେ ଶବଳିତ, ଅଶ୍ରୁ ଉଚ୍ଛ୍ୱାସରେ ବିଧୌତ, ପ୍ରେମ ପୁଲକରେ ଉଚ୍ଛକିତ; ତେଣୁ ଆବେଗଧର୍ମୀ ଓ ପ୍ରାଣବନ୍ତ ××" (ପୃ-୫୫) କୁନ୍ତଳାକୁମାରୀଙ୍କ କାବ୍ୟଚେତନା ନିର୍ଦ୍ଦିଷ୍ଟ କମିଟ୍‌ମେଣ୍ଟ ଅପେକ୍ଷା ବିବିଧତାସଂପନ୍ନ ବୋଲି ନିତ୍ୟାନନ୍ଦ ଦର୍ଶାଇଛନ୍ତି । ତୁଳନାତ୍ମକ ଚର୍ଚ୍ଚା କ୍ରମରେ କାନ୍ତକବିଙ୍କ 'ଜୀବନସଙ୍ଗୀତ' ଓ ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି'ର ଚର୍ଚ୍ଚା ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଅଭିମତଟିଏ ଏହିପରି : "ରବୀନ୍ଦ୍ରନାଥଙ୍କ କାବ୍ୟସ୍ୱରର କାରୁଣ୍ୟ ଆନନ୍ଦ ଓ ଆବେଗର ଆଧିକ୍ୟରୁ ସଂଜାତ; କିଂତୁ ଲକ୍ଷ୍ମୀକାନ୍ତଙ୍କ କାବ୍ୟସ୍ୱର ଦୁଃଖ ଓ ଯଂତ୍ରଣାର ଅନ୍ଧକାର ମଧ୍ୟରୁ କାରୁଣ୍ୟମୟ ।" (ପୃ:୭୬)

ସବୁଜ ସମସାମୟିକ କାବ୍ୟଶିଳ୍ପୀ ଭାବରେ ନିତ୍ୟାନନ୍ଦ ପ୍ରମୁଖ ଭାବରେ ପଦ୍ମଚରଣ, ମାନସିଂହ, ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସୁବିସ୍ତୃତ ଚର୍ଚ୍ଚା କରିଛନ୍ତି । କାବ୍ୟଧାରାର ପ୍ରାରମ୍ଭଠୁଁ ଉତ୍ତରଣ ଯାଏ ଦର୍ଶାଇବା ଅଥବା ବହୁବିଧ ଭାବଚେତନାର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ସମୀକ୍ଷକଙ୍କର ସମୀକ୍ଷା ଧାରାରେ ଅନୁସୃତ । ଓଡ଼ିଆ ସାହିତ୍ୟର ଇତିହାସରେ ପଦ୍ମଚରଣ ସତ୍ୟବାଦୀ ଯୁଗ ଓ ସବୁଜ କାବ୍ୟଚେତନା ମଧ୍ୟରେ ଏକ ସଂଯୋଗ ସେତୁ

ଭାବେ ଠିଆହେବେ ବୋଲି ସୂଚଉଛନ୍ତି । (ପୃ:୭୩) ନିତ୍ୟାନନ୍ଦଙ୍କ ସମାଲୋଚନା କିପରି ସୃଜନାତ୍ମକ ତା'ର ଉଦାହରଣ ଗୋଦାବରୀଶ ମହାପାତ୍ରଙ୍କ ପର୍ଯ୍ୟାୟରେ ଲକ୍ଷ୍ୟ କରନ୍ତୁ- "ସମାଜର ଅସହାୟ ପ୍ରତି ମାନବବାଦୀ ସହାନୁଭୂତିରେ ଓ ଦୁର୍ବିନୀତି ଉଦ୍ଧତ ପ୍ରତି ଶାଣିତ ଶ୍ଳେଷ ବର୍ଷଣରେ ତାଙ୍କ କାବ୍ୟମାନସ ଗୋଟିଏ ଧନୁର ଦୁଇଟି କୋଟୀକୁ ସ୍ପର୍ଶ କରେ । ମଝିରେ ସଂଯୋଜକ ରଜ୍ଜୁ ରୂପେ ଅବସ୍ଥାପିତ ହୁଏ ତାଙ୍କ କବିପ୍ରାଣର କରୁଣ ବିକ୍ଷୁବ୍ଧ ଜାତିପ୍ରାଣ ବ୍ୟକ୍ତିତ୍ୱର ଦୃଢ଼ ଆତ୍ମପ୍ରତ୍ୟୟ । ମାନବିକ ସ୍ନିଗ୍ଧତା ଓ ପୌରୁଷୋଚିତ୍ତ ବୈପ୍ଳବିକ ଭୂମିକାରେ ତାଙ୍କ କବିତାର ଭାଷା ଓ ଭାବ ବିଦ୍ରୋହର ଶରବର୍ଷଣ କରେ ।" (ପୃ:୯୫) ଧନୁ, ଶର, ଦୁଇକୋଟୀ ଓ ରଜ୍ଜୁ ଇତ୍ୟାଦିର ଚିତ୍ରାତ୍ମକ ପରିକଳ୍ପନା ଓ କବିତାତୁଲ୍ୟ ଭାଷା ନିତ୍ୟାନନ୍ଦୀୟ । ମାୟାଧର ମାନସିଂହଙ୍କ କବିତାର ଭାବଧାରା ଭିତ୍ତିକ ଚର୍ଚ୍ଚା କରି ତାଙ୍କ ପ୍ରେମଚେତନାର ସ୍ୱରୂପ ନିର୍ଣ୍ଣୟ କରିବାରେ ସମୀକ୍ଷକଙ୍କର ଦୃଷ୍ଟିକୋଣ ଏହିପରି : "xxx ତାଙ୍କ ପ୍ରଣୟ ଚେତନାର ପୃଷ୍ଠଭୂମିରେ ପରିବର୍ତ୍ତନର କୌଣସି ବିପର୍ଯ୍ୟୟ ଆସିନାହିଁ । ସତେଯେପରି ଏକଇ କଣ୍ଠରୁ 'ଧୂପ' ଓ 'ହେମଶସ୍ୟ'ର ସଙ୍ଗୀତ ସମାନ ଆବେଗ, ଯତି ଓ ସମତାଳରେ ନିଃସୃତ ହୋଇଛି । ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତିକୁ ଏତେ ସାର୍ଥକ ଭାବରେ ଓ ସମାନ ଭାବରେ ଧରି ରଖିଥିବା କାବ୍ୟାନୁଚିନ୍ତା ଓଡ଼ିଆ ସାହିତ୍ୟରେ ବିରଳ । ତେଣୁ ନିଃସନ୍ଦେହ ଭାବେ କୁହାଯାଇପାରିବ ଯେ ମାନସିଂହ ଆଗେ ପ୍ରେମିକ, ପରେ କବି । ତେଣୁ ପ୍ରେମ ହିଁ ତାଙ୍କ କବିତାର ଅନ୍ତର୍ନିହିତ ଉତ୍ସ । ନାରୀଠାରୁ ସେ ପ୍ରେମସାଧନା ଆରମ୍ଭ କରିଛନ୍ତି ।" (ପୃ:୧୧୧) ମାନସିଂହଙ୍କ ବୈଶିଷ୍ଟ୍ୟ ନିରୂପଣ କଲାବେଳେ ସମୀକ୍ଷଣର ଯେଉଁ ସୃଜନାତ୍ମକତା ଫୁଟିଉଠିଛି ଆମର କ୍ୱଚିତ ସମୀକ୍ଷକ ସେଇ ଉଚ୍ଚତା ଓ କଳାତ୍ମକତାକୁ ଛୁଅଁନ୍ତି । ଯଥା: "ଧୂପ'ର ପ୍ରେମସ୍ରୋତ ଯଦି ହୁଏ ବର୍ଷାକାଳୀନ ନଦୀପ୍ରବାହ ପରି ଉଦ୍‌ବେଳ ଓ ଖରସ୍ରୋତା, 'ହେମଶସ୍ୟ'ର ପ୍ରଣୟାନୁଭୂତି ଶରତକାଳୀନ ନଦୀଧାର ପରି ନିର୍ମଳ ଓ ମୃଦୁ ପ୍ରବାହିନୀ xx (ପୃ:୧୧୨) । "ଉଦ୍ଦାମ ଦେହଜ ପ୍ରଣୟରୁ ଏକ ଅତୀନ୍ଦ୍ରିୟ ଅନୁଚିନ୍ତା ଆଡ଼କୁ ଦ୍ରୁତ ପଳାୟନ ବୋଧହୁଏ ଥିଲା ତାଙ୍କ ପାଇଁ ଏକମାତ୍ର ସମାଧାନ । ତେଣୁ ପରବର୍ତ୍ତୀ କାବ୍ୟସ୍ୱରରେ ଏଇ ଯେ ଉଲଂଘନ ଓଡ଼ିଆ ସାହିତ୍ୟକୁ 'ଧୂପ'ର ଧୂନା ଓ ଅଗୁରୁ ଗନ୍ଧରେ ନୁହେଁ, ଯଜ୍ଞର ପରମ ପବିତ୍ର ହବିଃଗନ୍ଧରେ ଆମୋଦିତ କରିପାରିଛି । କବି ମାନସିଂହଙ୍କ ଏହି ପର୍ଯ୍ୟାୟରେ ଜଣେ ଯାଜ୍ଞିକ ଭାବରେ ଆତ୍ମପ୍ରକାଶ କରିଛନ୍ତି ।" (ପୃ:୧୧୫)

ସବୁଜ ସମସାମୟିକ ଏକକ କାବ୍ୟଶିଳ୍ପୀଭାବେ ରାଧାମୋହନ ଗଡ଼ନାୟକଙ୍କ ମୂଲ୍ୟାୟନ ଉଭୟ କାଳାନୁକ୍ରମିକ ଓ ଭାବଚେତନାଭିତ୍ତିକ । ତାଙ୍କ ସମ୍ପର୍କରେ ନିତ୍ୟାନନ୍ଦଙ୍କ ନିର୍ଣ୍ଣୟାତ୍ମକ ଅଭିମତ ଦୁଇଟି ଉଲ୍ଲେଖ କରେ । 'ଉତ୍କଳିକା' ପ୍ରସଙ୍ଗରେ : "ଏ ଦୃଷ୍ଟିରୁ ଅସଂଖ୍ୟ ପରିତ୍ୟକ୍ତ ଘଟଣାରାଜିକୁ ବିସ୍ମୃତିର ଅବତଳରୁ ସଂଗ୍ରହ କରି ତାକୁ କଳ୍ପନାର

ରକ୍ତ-ମାଂସ-ମେଦରେ ଜୀବନ୍ତ ଭାବରେ ଗଢ଼ିବାରେ ଗୋଦାବରୀଶ ମିଶ୍ରଙ୍କ ପରେ ବୋଧହୁଏ ଗଡ଼ନାୟକଙ୍କ ପରି ସଫଳତା ଅନ୍ୟକୌଣସି କବିଙ୍କ ଭାଗ୍ୟରେ ଘଟିନାହିଁ । ××× ତାଙ୍କ କାବ୍ୟକବିତାରେ ତେଣୁ କାଳ କଳାଭାବେ ଆତ୍ମପ୍ରକାଶ କରିଛି ଏବଂ ଏହାର ବ୍ୟାପ୍ତି ଓ ବିପୁଳତାରେ ପାଠକକୁ ଉଦ୍‌ବୁଦ୍ଧ କରିପାରିଛି ।" (ପୃ:୧୨୬) ତାଙ୍କ ଅନୁବାଦ ପ୍ରସଙ୍ଗରେ : ଗଡ଼ନାୟକ କୌଣସି ମୌଳିକ କବିତା ନ ଲେଖି ଅନୁବାଦ ମଧ୍ୟରେ ବି ଜଣେ ପ୍ରଥମ ଶ୍ରେଣୀୟ କବି ଭାବେ ପରିଚିତ ହୋଇପାରିଥାନ୍ତେ ।" (ପୃଷ୍ଠା-୧୩୩) ଗଡ଼ନାୟକଙ୍କ ପରି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସମ୍ପର୍କରେ ସୁଦୀର୍ଘ ବିଶ୍ଳେଷଣ ସହ ଅଜସ୍ର ନିର୍ଣ୍ଣୟାତ୍ମକ ମତ ତାଙ୍କ ଭାବପ୍ରସ୍ଥ ଓ ଆଙ୍ଗିକ ଦିଗକୁ ଆଲୋକିତ କରେ । ଗୋଟିଏ ଉଦାହରଣ : "ଏହି କାବ୍ୟମାନସ ଓଡ଼ିଆ ସାହିତ୍ୟରେ କୌଣସି ନୂତନ ଶଙ୍କୁ ପ୍ରତିଷ୍ଠା ନ କରିଥିଲେ ମଧ୍ୟ ଅନବରତ ସାଧନାରେ ଏହା ପ୍ରାୟ ୧୯୩୦ରୁ ୧୯୭୦ ପର୍ଯ୍ୟନ୍ତ ସମୃଦ୍ଧ ଓ ଏକନିଷ୍ଠ । ଏହି ସାଧନାକାଳ ମଧ୍ୟରେ ଜୀବନର ଅସଂଖ୍ୟ ଛୋଟବଡ଼ ଅନୁଭୂତିକୁ କାବ୍ୟିକ ରୂପ ଦେବାରେ ତାଙ୍କର ଅକୁଣ୍ଠ ପ୍ରଚେଷ୍ଟା କେଉଁଠି କେଉଁଠି ତାଙ୍କୁ ଅତିକଥନ ଓ ପୁନରାବୃତ୍ତି ଦୋଷରେ ଦୃଷ୍ଟ ଯେ ନ କରିଛି ତାହା ନୁହେଁ, ତଥାପି ଜଣେ କବିର ଅତି ଖାଣ୍ଟି ଦରଦୀ ମରମ ନେଇ ତାଙ୍କ କବିତାଗୁଡ଼ିକ ବେଶ୍ ପ୍ରାଣବନ୍ତ ଓ ପ୍ରଭାବଶାଳୀ ××× କବି ମାନସିଂହ ତାଙ୍କ ଇତିହାସରେ ସତ୍ୟବାଦୀ ପରବର୍ତ୍ତୀ ପ୍ରାୟ ସମସ୍ତ ଆଧୁନିକ କବିଙ୍କ ପ୍ରତି ଅସାମଞ୍ଜସ୍ୟପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ କରିଥିବାବେଳେ ଏହି କବିଙ୍କ ପ୍ରତି ଯେ ଅତ୍ୟନ୍ତ ପ୍ରଶଂସାମୁଖର ହୋଇ ଉଠିଛନ୍ତି - ଏହା ଅତ୍ୟନ୍ତ ତାତ୍ପର୍ଯ୍ୟ ବିଷୟ ।" (ପୃ:୧୩୫)

ସତ୍ୟବାଦୀ ଚେତନାର ଶେଷ ଦୀପଶିଖା ଭାବରେ ଆଖ୍ୟାୟିତ ଗୋଦାବରୀଶ ମହାପାତ୍ରଙ୍କ ପୂର୍ଣ୍ଣାଙ୍ଗ ଆକଳନ କରି ସମାଲୋଚକ ନିତ୍ୟାନନ୍ଦ ତାଙ୍କ ସ୍ଥାନ ଓ ବୈଶିଷ୍ଟ୍ୟ ନିରୂପଣ କରିଛନ୍ତି । ଗୋଟିଏ ଉଦ୍ଧୃତି ଦେବା : "ସବୁଜରୁ ସାଂପ୍ରତିକି ପ୍ରାୟ ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ କବିତା କ୍ଷେତ୍ରରେ ନାନା ଯୁଗର ବହୁ ବିଚାରଧାରା, ନାନା ବାଦ-ବିସମ୍ବାଦ, ବହୁ ପ୍ରୟୋଗ ଓ ପରୀକ୍ଷାର ଘନଘଟା ସୃଷ୍ଟି ହୋଇଥିଲେ ମଧ୍ୟ, ଗୋଦାବରୀଶ କୌଣସି ନିର୍ଦ୍ଦିଷ୍ଟ ଯୁଗର ଶିକ୍ଷାନୁଭୂତି ଓ ବିଶ୍ୱାସବୋଧରେ ଆତ୍ମ-ସତ୍ତା ହରାଇ ନାହାନ୍ତି କିମ୍ବା କୌଣସି ଯୁଗର ବିଶ୍ୱାସକୁ ଅସ୍ୱୀକାର ମଧ୍ୟ କରିନାହାନ୍ତି । ××× ୧୯୩୫ ମସିହା ପରେ ଓଡ଼ିଆ କବିତା କ୍ଷେତ୍ରରେ ଆସିଥିବା ବାମପନ୍ଥୀ ପ୍ରଗତିଶୀଳ ଆର୍ଭିମୁଖ୍ୟର ବହୁପୂର୍ବରୁ ଏଇ ଭାବଧାରା ପ୍ରତି ସେ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଛନ୍ତି । (ପୃ:୯୩) ସବୁଜ ସମସାମୟିକ ଗୌଣ କବି ଭାବରେ ଯେଉଁମାନଙ୍କ ଅବଦାନ ସଂପର୍କରେ ଓଡ଼ିଆ ସମାଲୋଚନା ପ୍ରାୟତଃ ନୀରବ ସେମାନଙ୍କ ସଂପର୍କରେ ନିତ୍ୟାନନ୍ଦଙ୍କ ଏକନିଷ୍ଠ ଚର୍ଚ୍ଚା ଉଲ୍ଲେଖନୀୟ । ଏ କାବ୍ୟଶିଳ୍ପୀମାନେ ହେଉଛନ୍ତି ଚନ୍ଦ୍ରଶେଖର ମିଶ୍ର, କ୍ଷିତିଶ୍ ଚନ୍ଦ୍ର ଦେ, ହରିଶ୍ଚନ୍ଦ୍ର ବଡ଼ାଳ, ନବକିଶୋର ଦାସ, କୁବେର ଦଳେଇ, ଉମରୁଧର ପରିଡ଼ା, ବଂଶୀଧର ସାମନ୍ତରାୟ,

ପ୍ରତାପ ସେନ୍, ନିର୍ମଳା ଦେବୀ, କୃଷ୍ଣଚନ୍ଦ୍ର କର ପ୍ରମୁଖ । କବି ପ୍ରତାପ ସେନ୍‌ଙ୍କୁ ଓଡ଼ିଆ ଗଦ୍ୟ କବିତାର ଆଦ୍ୟ ଉଦ୍‌ଗାତା ଭାବେ ମାନ୍ୟତା ଦେଇ ନିତ୍ୟାନନ୍ଦ ପ୍ରଶଂସାମୁଖର ହୋଇଉଠିଛନ୍ତି । "ରୂପକଳ୍ପ ଓ ପ୍ରତୀକର ନୂତନ ପ୍ରୟୋଗ ଠାରୁ ଗଦ୍ୟ କବିତା ଓ ମୁକ୍ତ ଛନ୍ଦର ପ୍ରଚଳନରେ କବି ରାଉତରାୟଙ୍କ ସହିତ ସେ ଏକ ସମାନ ଭୂମିକା ଗ୍ରହଣ କରିଥିବା ଓଡ଼ିଆ ସାହିତ୍ୟର ଇତିହାସ ପାଇଁ ଅତି ତାତ୍ପର୍ଯ୍ୟ ବିଷୟ । ମୋର ଯେପରି ମନେହୁଏ ଓଡ଼ିଆ ସାହିତ୍ୟରେ ଶ୍ରୀ ପ୍ରତାପ ସେନ୍‌ଙ୍କ ରଚିତ 'ଚତୁର୍ଥୀ' ହିଁ ପ୍ରଥମ ଗଦ୍ୟ କବିତା । ×× କିନ୍ତୁ ଏହି ବଳିଷ୍ଠ କାବ୍ୟପ୍ରତ୍ୟୟ ଧାରାବାହିକ ସୃଷ୍ଟିର ଅଭାବରୁ ଏବଂ ନିୟମିତ କାବ୍ୟନିଷ୍ଠା ଅଭାବରୁ ଝରିପଡ଼ିଥିବା ଅତି ପରିତାପର ବିଷୟ ।" (ପୃ:୧୭୮)

'ସବୁଜରୁ ଆଧୁନିକ : କ୍ରିୟା ପ୍ରତିକ୍ରିୟା' ଓ 'ସମସାମୟିକ ଓଡ଼ିଆ କବିତାରେ ରବୀନ୍ଦ୍ର କାବ୍ୟମାନସର ପ୍ରତିଫଳନ' ଶୀର୍ଷକର ଦୁଇଟି ରଚନା ଆଧୁନିକ ଓଡ଼ିଆ କବିତାର ଇତିହାସ ପରିପ୍ରେକ୍ଷୀରେ ଗୁରୁତ୍ୱପୂର୍ଣ୍ଣ । ୧୯୨୪ରେ ଗୋପବନ୍ଧୁଙ୍କ ମାର୍କସ୍‌ବାଦୀ ଆଦର୍ଶ ପ୍ରତି ଅଙ୍ଗୀକାରବଦ୍ଧତାକୁ ନିତ୍ୟାନନ୍ଦ ଚିହ୍ନିତ କରିଛନ୍ତି ଯାହା ୧୯୩୫ ମସିହାରେ ପ୍ରାଣପ୍ରତିଷ୍ଠା ପାଇଛି । ଗାନ୍ଧିଙ୍କ ଅହିଂସା ଆନ୍ଦୋଳନ ସହ ମାର୍କସ୍‌ବାଦ ମିଶି ଯେଉଁ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛି ଏହାକୁ ଦର୍ଶାଇ ଆଲୋଚ୍ୟକ ପ୍ରଗତିବାଦୀ କାବ୍ୟଚିନ୍ତନର ସଂଜ୍ଞା ସରହଦ ନିର୍ଣ୍ଣୟ କରିଛନ୍ତି । "ତେଣୁ କେବଳ ମାର୍କସୀୟ ବୈପ୍ଳବିକ ଚେତନାକୁ ପ୍ରଗତିବାଦୀ କାବ୍ୟଧାରାର ଏକମାତ୍ର ସଂଜ୍ଞା ଭାବେ ନିର୍ଣ୍ଣୟ କରାନଯାଇ ତହିଁରେ ଆତ୍ମିକ ଓ ଆଙ୍ଗିକ ସମସ୍ତ ନୂତନ ଆଭିମୁଖ୍ୟକୁ ଯୋଗ କରିବା ଯୁକ୍ତିସଂଗତ ହେବ ।" (ପୃ:୨୫୪) ସବୁଜ କବିତା ନେଇ ନିତ୍ୟାନନ୍ଦ କବି ମାନସିଂହଙ୍କ ସଂପର୍କରେ ଯେଉଁ ଅଭିମତ ବାଢ଼ନ୍ତି ତାହା ଏହିପରି : "କିନ୍ତୁ ବିସ୍ମୟର ବିଷୟ ହେଉଛି, ଯେଉଁ କବି ମାନସିଂହ ସବୁଜ କବିତାର ଭାଷା ଓ ବଙ୍ଗଳା କବିତାର ଭାଷାରେ ଏହି ମେଳ ବା ସାମଞ୍ଜସ୍ୟ କଥା ଉଲ୍ଲେଖ କରିଛନ୍ତି, ସେ ନିଜେ ତାଙ୍କ କାବ୍ୟଚିନ୍ତାରେ ରବୀନ୍ଦ୍ରନାଥଙ୍କୁ ଯେ ସବୁଠାରୁ ଅଧିକ ଅନୁସରଣ କରିଛନ୍ତି; ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ।" (ପୃ:୨୨୬)

କବି ସଚ୍ଚିଦାନନ୍ଦ ରାଉତରାୟଙ୍କ କାବ୍ୟଚେତନାର ବିକାଶ ଓ ବୈଶିଷ୍ଟ୍ୟ ଚର୍ଚ୍ଚା କରି ତାଙ୍କ କବିତା ଉପରେ ବହୁ ନିର୍ଦ୍ଦିଷ୍ଟ ଓ ନିର୍ଣ୍ଣୟାତ୍ମକ ମତ ଅବତାରଣା କରାଯାଇଛି । ଉଦାହରଣ କେତୋଟି ନିମ୍ନ ମତେ : "ପୁନଶ୍ଚ ଏଇ କ୍ରମରେ ତାଙ୍କ କବିତାର ମାର୍କସ୍ ପ୍ରବର୍ତ୍ତିତ ସାମ୍ୟବାଦ ଦର୍ଶନର ପ୍ରତିଟି ଚିନ୍ତା ଅତି ଦୃପ୍ତ ଭାବେ ପ୍ରକାଶିତ ହୋଇଥିବାରୁ ତାଙ୍କୁ ମାର୍କସୀୟ ବିପ୍ଳବୀ ଭାବଧାରାର ପ୍ରବର୍ତ୍ତକ ଭାବେ ଚିହ୍ନିତ କରିବାରେ ଅସଙ୍ଗତି ନାହିଁ ।" (ପୃ:୨୬୩) ପୁନଶ୍ଚ "'ଭାନୁମତୀର ଦେଶ'ରେ 'ଝଡ଼ରେ କୃଷ୍ଣଚୂଡ଼ା'ର ପରିକଳ୍ପନାରେ କିନ୍ତୁ କାବ୍ୟର ବିଷୟବସ୍ତୁ ଅପେକ୍ଷା ଶୈଳ୍ପିକ ସମୃଦ୍ଧି, ରୂପଚେତନା, ଉପମା, ରୂପକର ନୂତନତାରେ ଏ କାବ୍ୟଟି ଓଡ଼ିଆ କବିତା କ୍ଷେତ୍ରରେ ଏକ ଅନନ୍ୟ ପ୍ରତିଶ୍ରୁତି

ଦାବି କରେ । ଏହି ଚିତ୍ରଚେତନା ଆଧୁନିକ କାବ୍ୟମନନର ଏକ ଆଙ୍ଗିକ ଓ ଆତ୍ମିକ ଅବଲମ୍ବନ ଭାବେ ଆନ୍ତର୍ଜାତିକ କବିତା କ୍ଷେତ୍ରରେ T.E. Hulme, Ezra Pound ଆଦିଙ୍କ ଠାରୁ ଯେଉଁ ପ୍ରତିଷ୍ଠା ଲାଭ କରିଛି, ଯୁଦ୍ଧୋତ୍ତର କାଳରେ କବି ରାଉତରାୟ ତାହାରି ବ୍ୟାପକ ପ୍ରଚଳନରେ ପ୍ରୟାସୀ ହୋଇଛନ୍ତି ମାତ୍ର ।" (ପୃ:୨୭୧) ସେହିପରି ପ୍ରଗତିବାଦୀ କାବ୍ୟଚେତନାର ଦୁଇ ପ୍ରମୁଖ ସ୍ୱରଭାବେ କବି ଅନନ୍ତ ପଟ୍ଟନାୟକ ଓ ରଘୁନାଥ ଦାସଙ୍କ କାବ୍ୟଚେତନାର ଉନ୍ମେଷ ଓ ବିବର୍ତ୍ତନ ସଚ୍ଚିରାଉତରାୟଙ୍କ ଅନୁରୂପ ଚର୍ଚ୍ଚିତ ହୋଇଛି । କିନ୍ତୁ ରଘୁନାଥ ଦାସଙ୍କୁ ମାୟାଧର ମାନସିଂହ ଓ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ସେମାନଙ୍କ ସାହିତ୍ୟର ଇତିହାସ ବହିରେ ଉଲ୍ଲେଖ କରିନାହାନ୍ତି ବୋଲି ନିତ୍ୟାନନ୍ଦ କ୍ଷୋଭ ପ୍ରକାଶ କରିଛନ୍ତି । ଓଡ଼ିଆ କବିତାରେ ସବୁଜ ଓ ପ୍ରଗତିବାଦୀ କାବ୍ୟଚେତନାର ସମସାମୟିକ ମିଶ୍ରସ୍ୱର ଭାବେ କୁଞ୍ଜବିହାରୀ ଦାଶ, ବିନୋଦ ଚନ୍ଦ୍ର ନାୟକ, ଜ୍ଞାନୀନ୍ଦ୍ର ବର୍ମା, ପ୍ରାଣକୃଷ୍ଣ ସାମଲ, ହରେକୃଷ୍ଣ ମହତାବ ଓ ବିଦ୍ୟୁତ୍‌ପ୍ରଭା ଦେବୀଙ୍କୁ ବିଶେଷ ଚର୍ଚ୍ଚା କରିଛନ୍ତି । ପ୍ରଗତିବାଦୀ ଚିନ୍ତନର ଅନ୍ୟତମ ଶକ୍ତିଶାଳୀ ସ୍ୱର ମନମୋହନ ମିଶ୍ରଙ୍କ କାବ୍ୟଚେତନାର ଚର୍ଚ୍ଚା କରି ତାଙ୍କ ଭିତରେ ଥିବା ଉଗ୍ର ବିପ୍ଳବୀ ବ୍ୟକ୍ତିତ୍ୱକୁ ନିତ୍ୟାନନ୍ଦ ଠାବ କରିଛନ୍ତି । ଉଦ୍ଧୃତିଟିଏ ଦେଖନ୍ତୁ : "ଲେଖକ ସାମାଜିକ ଚିନ୍ତନରେ ରାଜନୀତିକ ମତବାଦରେ ଅତ୍ୟନ୍ତ ଉଗ୍ରପନ୍ଥୀ । ତେଣୁ ତାଙ୍କ କବିତାରେ ସାମାଜିକ ଓ ଅର୍ଥନୈତିକ ଏହି ବୈଷମ୍ୟର ଶେଷ ସମାଧାନ ରୂପେ ରକ୍ତାକ୍ତ ଯୁଦ୍ଧ ଓ ଗୋଳାବନ୍ଧୁକର ଆହ୍ୱାନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଅହିଂସ ସଂଗ୍ରାମ ମାଧ୍ୟମରେ ଗାନ୍ଧି ସ୍ୱାଧୀନତା ଆଣିଥିଲେ ବି ସାମାଜିକ ନ୍ୟାୟତନ୍ତ୍ର ଓ ଆର୍ଥନୀତିକ ସାମ୍ୟ ପ୍ରତିଷ୍ଠା ପାଇଁ ବନ୍ଧୁକ ହିଁ କବିଙ୍କ ମତରେ ଶେଷ ଅସ୍ତ୍ରଭାବେ ଗୃହୀତ ।" (ପୃ:୩୦୪)

ସମାଲୋଚକ ନିତ୍ୟାନନ୍ଦ କବି ବିନୋଦ ଚନ୍ଦ୍ର ନାୟକଙ୍କ କାବ୍ୟଚେତନାର ବିକାଶ ଓ ଉତ୍କର୍ଷକୁ ନାନାଭାବେ ପ୍ରତିପାଦନ କରି ତାଙ୍କ ସମ୍ପର୍କରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଅଭିମତ ରଖନ୍ତି ତାହା ଏହିପରି : "ତାଙ୍କ କାବ୍ୟସ୍ୱର ଯେତିକି ରୋମାଣ୍ଟିକ୍, ସେତିକି ବାସ୍ତବବାଦୀ; ଯେତିକି ଗ୍ରାମ୍ୟ, ସେତିକି ସହରୀ ଓ ଅଭିଜାତ; ଯେତିକି ଆତ୍ମମଗ୍ନ, ସେତିକି ବସ୍ତୁବାଦୀ; ଯେତିକି ଆହରଣ ସର୍ବସ୍ୱ, ସେତିକି ମୌଳିକ; ଯେତିକି ରୂପକଥାକୁ ଆଶ୍ରୟ କରି ସଂଗଠିତ, ସେତିକି ଆଧୁନିକ ଜୀବନର ସ୍ୱର ଓ ସ୍ୱାକ୍ଷରରେ ଭାସ୍ୱର ମଧ୍ୟ । ଏପରିକି ଆଙ୍ଗିକରେ ମଧ୍ୟ ତାଙ୍କ କବିତା ଯେତିକି ଗୀତିମୁଖର, ସେତିକି ଗଦ୍ୟାତ୍ମକ; ଯେତିକି ବାକ୍‌ରୀତି ପ୍ରଧାନ, ସେତିକି ମୁକ୍ତ ଓ ସ୍ୱଚ୍ଛନ୍ଦ । ଶ୍ରୀ ନାୟକ ନିର୍ଦ୍ଦିଷ୍ଟଭାବେ କୌଣସି ବାଦ (Ism) ର ଅନୁସରଣ ନ କରିଥିଲେ ମଧ୍ୟ ସମସ୍ତ ବାଦ ତାଙ୍କ କବିତାରେ ଯେତିକି ଆତ୍ମମୁଖତା ଦାବି କରେ ସେତିକି ପ୍ରତିବାଦ ମଧ୍ୟ ପ୍ରକାଶିତ ।" (ପୃ:୩୭୨) ସାମାଜିକ ପୃଷ୍ଠଭୂମି ଓ ବ୍ୟକ୍ତିଗତ ଜୀବନ ମନନ ପରିପ୍ରେକ୍ଷୀରେ ନିତ୍ୟାନନ୍ଦ ବିଦ୍ୟୁତ୍‌ପ୍ରଭାଙ୍କୁ ବିଶେଷ ମୂଲ୍ୟାୟନ କରନ୍ତି ।

ଅଭିମତଟିଏ ନିମ୍ନରେ- "ସମସାମୟିକ କବିତାର ପ୍ରୟୋଗବାଦୀ ପରୀକ୍ଷା ନିରୀକ୍ଷାରୁ ନିଜକୁ ନିରାପଦ ଦୂରତାରେ ରଖି ତଥାପି କାବ୍ୟସ୍ୱରର ଆଡ଼ୁହୀନ ଉଚ୍ଚାରଣରେ ଏହି ନାରୀକବି ମନ ଓ ହୃଦୟକୁ ଯେ ଦ୍ରବୀଭୂତ କରିଯାଇଛନ୍ତି- ତାହା ପାଠକ ସ୍ମୃତିରେ ଆଉ ଏକ ନାରୀକବି କୁନ୍ତଳାକୁମାରୀଙ୍କ ଛବିକୁ ପ୍ରତିଭାତ କରେ । ଆତ୍ମିକ ଅନୁଭବରେ ଓ ଭଗବତ ଅନୁଚିନ୍ତାରେ ଏ ଉଭୟ କବି ପ୍ରାୟ ସମାନ ଅନୁଭବ ଓ ଅଭିଳାଷ ପୋଷଣ କରିଯାଇଛନ୍ତି ।"(ପୃ:୪୦୮)

ସ୍ୱରାଜ୍ୟ ଆନ୍ଦୋଳନ ପୃଷ୍ଠଭୂମିରେ ଗାନ୍ଧି, ଗୋପବନ୍ଧୁ ଓ ମଧୁବାବୁଙ୍କ ଭୂମିକା ଓ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟକ ଚର୍ଚ୍ଚା ବେଶ୍ ସାରଗର୍ଭକ । ସମୀକ୍ଷା ବା ସମାଲୋଚନା କିପରି ପ୍ରଶ୍ନ ଓ ପ୍ରତିପ୍ରଶ୍ନ ସମ୍ବଳିତ ହୋଇ ତା' ଭିତରେ ବହୁ ପ୍ରତିପ୍ରଶ୍ନ, ଉତ୍ତର ଓ ଜିଜ୍ଞାସାବୋଧକୁ ଧରି ରଖେ ସେପରି ଉପସ୍ଥାପନା ଓଡ଼ିଆ ସମୀକ୍ଷା ଧାରାରେ ବ୍ୟତିକ୍ରମ ଓ ବିରଳ । ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା' ପ୍ରସଙ୍ଗରେ ସମାଲୋଚକୀୟ ଆତ୍ମନିମଜ୍ଜନର ଉଦାହରଣଟିଏ ଦେଖନ୍ତୁ- "ତେବେ କ'ଣ ସେ କାବ୍ୟ ଶପଥ ? କ'ଣ ସେ ଆଭିମୁଖ୍ୟ ? ଖାଲି କ'ଣ ଓଡ଼ିଶାର ଦୁର୍ଗତି ଚିନ୍ତା ଓ ଓଡ଼ିଶାବାସୀଙ୍କ ପାଇଁ ଭବିଷ୍ୟତ କର୍ମପନ୍ଥାର କେତୋଟି ଉଚ୍ଛ୍ୱସିତ ବକ୍ତବ୍ୟ ? ଭାରତର ସ୍ୱାଧୀନତା ସଂଗ୍ରାମ ଓ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନକୁ ଆଗେଇ ନେବାର ନେତାସୁଲଭ ସାରଗର୍ଭକ ଅଭିଭାଷଣ ? ସତ୍ୟ ଅହିଂସା, ସାମ୍ୟ ସଂସ୍କାର, ପରଂପରା ଓ ବିଭୁଚେତନାରେ ଦୀକ୍ଷିତ ହେବା ପାଇଁ ତାତ୍‌କାଳିକ ସମାଜ-ରାଜନୈତିକ ସ୍ୱରସଂଘର ? xxx" (ପୃ:୪୨୫-୨୬) ଏ ପ୍ରଶ୍ନ ଆହୁରି ଦୀର୍ଘ ? ଏହା ପରେ ବକ୍ତବ୍ୟ ରହିଛି । ସ୍ୱରାଜ୍ୟ ଆନ୍ଦୋଳନ ପରିପ୍ରେକ୍ଷୀରେ ଗୋପବନ୍ଧୁଙ୍କ ସଂପର୍କରେ ବହୁ ନିର୍ଦ୍ଦିଷ୍ଟ ଅଭିମତ ରହିଛି । 'ବନ୍ଦୀର ସ୍ୱଦେଶ ଚିନ୍ତା' ପ୍ରସଂଗରେ ଉଦାହରଣଟିଏ ଏହିପରି : "ଏ କବିତାରେ ମଳୟର ସ୍ୱଦେଶ ପରିକ୍ରମାରେ କବିର କେବଳ ରସିକତା ନୁହେଁ; କାବ୍ୟକଳାର ଚମତ୍କାର ସୌନ୍ଦର୍ଯ୍ୟବୋଧ ପ୍ରତିଷ୍ଠିତ ହୋଇଛି ଓ 'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାକୁ ଏକ କ୍ଲାସିକ୍ ସୃଷ୍ଟିର ମର୍ଯ୍ୟାଦା ଦେଇଛି ।" (ପୃ:୪୨୭) ସ୍ୱରାଜ୍ୟ ଆନ୍ଦୋଳନର କବିତା ବିଚାର ପର୍ଯ୍ୟାୟରେ କବି ବାଞ୍ଛାନିଧି ମହାନ୍ତି, ଜାତୀୟ କବି ବୀରକିଶୋର, ନିତ୍ୟାନନ୍ଦ ମହାପାତ୍ର ଓ ବାଞ୍ଛାନିଧି ଦାସ ସବିଶେଷ ଚର୍ଚ୍ଚିତ । ନିତ୍ୟାନନ୍ଦଙ୍କ ସମାଲୋଚନାରେ ଯେଉଁ ସର୍ଜନଶୀଳତା (Creativity) ପରିଲକ୍ଷିତ ତା'ର ଆଉ ଏକ ଉଦାହରଣ ନିତ୍ୟାନନ୍ଦ ମହାପାତ୍ରଙ୍କ କବିତା ପ୍ରସଂଗରେ ଲକ୍ଷ୍ୟ କରନ୍ତୁ : "'ମରମ' ରୁ 'ପାଞ୍ଚଜନ୍ୟ' ଆସିଲାବେଳେ ପାଠକ ଯେପରି ସଂପୂର୍ଣ୍ଣ ଏକ ବିଚ୍ଛିନ୍ନ ଇଲାକାରେ ଆସି ପହଞ୍ଚିଯାଏ, ଯେଉଁଠି ବ୍ୟକ୍ତିଗତ ପ୍ରେମକାହାଣୀ ସଂପୂର୍ଣ୍ଣ ନିର୍ବାସିତ, ଅଥଚ ତାହା ଅଗଣିତ ସଂଗ୍ରାମୀ ଜନତାର ସାଧନାଦୀପ୍ତ ଆତ୍ମବଳିରେ ଏକ ପ୍ରଚଣ୍ଡ ଜାତିପ୍ରେମରେ ରୂପାନ୍ତରିତ ଓ ବିଶ୍ୱାସର ଅଗ୍ନିଶିଖାରେ ଦେଦୀପ୍ୟମାନ ।" (ପୃ:୪୩୪)

ଆଧୁନିକ ଓଡ଼ିଆ କବିତାରେ ବାମପନ୍ଥୀ ଚେତନାର ବିକାଶ (୧୯୩୬ ରୁ ୧୯୪୭ ଓ ସ୍ୱାଧୀନତା ପରବର୍ତ୍ତୀ କାଳ) ପର୍ଯ୍ୟାୟରେ ଲକ୍ଷ୍ମୀଧର ନାୟକ, ସୁନନ୍ଦ କରଙ୍କ ଠୁ ଆରମ୍ଭ କରି ମନୋଜ ଦାସ, କୃଷ୍ଣଚରଣ ବେହେରା, ରବୀନ୍ଦ୍ରନାଥ ସିଂହ (ରବିସିଂ), ବ୍ରଜନାଥ ପ୍ରମୁଖ ବାରଜଣ କାବ୍ୟଶିଳ୍ପୀଙ୍କ ଅବଦାନ ଚିହ୍ନିତ ହୋଇଛି । ଏମାନଙ୍କ ମଧ୍ୟରୁ ଅର୍ଦ୍ଧେକ କାବ୍ୟଶିଳ୍ପୀଙ୍କ ପରବର୍ତ୍ତୀ ବିକାଶ ବେଶ୍ ସିଦ୍ଧିପ୍ରଦ । ଏ ପର୍ବରେ ବିଶେଷ ଚର୍ଚ୍ଚିତ ରବିସିଂଙ୍କ ସଂପର୍କରେ ସମାଲୋଚକର ଅଭିମତଟି ଏହିପରି : "xxx ଆଧୁନିକ ଓଡ଼ିଆ କବିତା ଉତ୍ତର ପଚାଶ କାଳରେ ଅନେକ କବି ନିଜ ନିଜର ବାମପନ୍ଥୀ ଉଗ୍ର ବୈପ୍ଳବିକ ଚେତନାକୁ ପରିହାର କରିଥିବାବେଳେ ଶ୍ରୀ ରବୀନ୍ଦ୍ରନାଥ ସିଂହ ଅମାପ ବିଶ୍ୱାସ ଓ ଅକ୍ଳାନ୍ତ ଧୈର୍ଯ୍ୟ ସହ ସେହି ନିର୍ବାତମୁଖୀ ପ୍ରଦୀପରେ ବିଶ୍ୱାସର ତୈଳ ଢାଳି ତାହାକୁ ଶିଖାୟିତ କରି ରଖିଛନ୍ତି । ଏଇ ସ୍ୱର ସହିତ ସ୍ୱର ମିଳେଇଛନ୍ତି ଶ୍ରୀ ବ୍ରଜନାଥ ରଥ ଓ ଉତ୍ତର ଷାଠିଏର ଆଉ କେତେଜଣ କବି ।" (ପୃ:୪୬୮)

'ସବୁଜରୁ ସାଂପ୍ରତିକ'ରେ ନିତ୍ୟାନନ୍ଦଙ୍କ ୧୯୬୦ ପରବର୍ତ୍ତୀ (୧୯୬୦-୬୭) କାବ୍ୟଧାରା ସଂପର୍କିତ ଚର୍ଚ୍ଚା ଅପୂର୍ଣ୍ଣାଙ୍ଗ ହେବା ସ୍ୱାଭାବିକ । କାରଣ ଏଥିରେ ଚର୍ଚ୍ଚିତ କାବ୍ୟଶିଳ୍ପୀ ମାନଙ୍କର ଅଳ୍ପ କେଇବର୍ଷର ସୃଷ୍ଟି ସ୍ୱାକ୍ଷରକୁ ବିଚାରକୁ ନିଆଯାଇଛି । ତେବେ ଏ ପର୍ଯ୍ୟାୟରେ ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚିନ୍ତାମଣି ବେହେରାଙ୍କ ସହିତ ଜାନକୀବଲ୍ଲଭ ମହାନ୍ତି, ସତ୍ୟାନନ୍ଦ ଚମ୍ପତିରାୟ, ଦୁର୍ଗାମାଧବ ମିଶ୍ର, ଦୁର୍ଗାଚରଣ ପରିଡ଼ା, ବିନୋଦ ରାଉତରାୟ ପ୍ରମୁଖ ଚର୍ଚ୍ଚିତ ହୋଇଛନ୍ତି । ଗୁରୁପ୍ରସାଦ, ବେଣୁଧରଙ୍କ ସିଦ୍ଧି ପରବର୍ତ୍ତୀ ପର୍ଯ୍ୟାୟରେ ଏତେବେଶି ସାମର୍ଥ୍ୟଯୁକ୍ତ ହୋଇନଥିବା ସ୍ଥଳେ କବି ଭାନୁଜୀ ରାଓ, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଅଧିକ ସିଦ୍ଧିର ଅଧିକାରୀ ହୋଇଛନ୍ତି । ଓଡ଼ିଆ କବିତାର ପଟପରିବର୍ତ୍ତନ ଏ ପର୍ଯ୍ୟାୟରେ ଗୁରୁତ୍ୱପୂର୍ଣ୍ଣ । ସମାଲୋଚକ ନିତ୍ୟାନନ୍ଦ କହନ୍ତି : "ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଆସିଥିବା ଅସ୍ତିତ୍ୱବାଦୀ ଭାବଧାରା ଓ ଅତିବାସ୍ତବବାଦୀ ଆଭିମୁଖ୍ୟ ଯୁଦ୍ଧ ପରବର୍ତ୍ତୀ ଓଡ଼ିଆ କବିତାକୁ କ୍ରମେ ପରଂପରାରୁ କକ୍ଷଚ୍ୟୁତ କରିଦେଇଛି, ଏହା ନିଃସନ୍ଦେହ ।" (ପୃ:୪୭୮) ଏ ପର୍ଯ୍ୟାୟରେ ବିଶେଷ ଚର୍ଚ୍ଚିତ ଗୁରୁପ୍ରସାଦଙ୍କ 'କାଳପୁରୁଷ' ସହ ଟି.ଏସ୍.ଏଲିଅଟ୍‌ଙ୍କ The Waste Land ର ସାମ୍ୟ ବୈଷମ୍ୟ ଓ ତା'ର ପ୍ରଭାବ ପ୍ରତିଫଳନ ଖୋଜାଯାଇଛି । ଏ ପରିପ୍ରେକ୍ଷୀରେ କବିଙ୍କ ଉତ୍କର୍ଷ ପ୍ରତିପାଦନ ସହିତ ତାଙ୍କ ପ୍ରତି ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ସହ କତିପୟ ସମୀକ୍ଷକଙ୍କ ଏକଦେଶଦର୍ଶୀ ଦୃଷ୍ଟିକୋଣ ଓ ଅତିରିକ୍ତ ଆସକ୍ତିକୁ ନିତ୍ୟାନନ୍ଦ ସମାଲୋଚନା କରିଛନ୍ତି । ଉଦାହରଣଟିଏ ନିମ୍ନରେ : "ପୁନଶ୍ଚ ପଣ୍ଡିତ ନୀଳକଣ୍ଠଙ୍କ ପରେ ଏପରି ଉତ୍କୃଷ୍ଟ ଓଡ଼ିଆ କବିତା ଆଉ ପ୍ରକାଶ ପାଇନାହିଁ ବୋଲି 'ପ୍ରଜ୍ଞା'ର ସଂପାଦକୀୟ ମନ୍ତବ୍ୟରେ ୧୯୧୯ ('କୋଣାର୍କ' ରଚନାକାଳ) ଠାରୁ ୧୯୬୦ ('କାଳପୁରୁଷ'ର ପ୍ରକାଶ ସମୟ) ଏହି ଚାଳିଶ ବର୍ଷର

ଗତିଶୀଳତାକୁ ସ୍ଥାଣୁ ଓ ମୂଲ୍ୟହୀନ ବୋଲି ପରୋକ୍ଷରେ ପ୍ରତିପାଦନ କରାଯାଇଛି । ଏପରି ଆରୋପିତ ମନ୍ତବ୍ୟରେ ଆଧୁନିକ ଓଡ଼ିଆ କବିତାର ବିକାଶ ଓ ଭିନ୍ନ ଭିନ୍ନ ସୋପାନ ଅତିକ୍ରମର ସମସ୍ତ ଉଦ୍ୟମ ତଥା ସାଧନାକୁ ଅସ୍ୱୀକାର କରାଯାଇଛି ।"(ପୃ:୪୯୩) ଏକଦେଶଦର୍ଶୀ ଯତୀନ୍ଦ୍ରମୋହନଙ୍କ ଏ ଆଭିମୁଖ୍ୟକୁ ସମାଲୋଚନା କରି ନିମ୍ନମତେ ତା'ର ଶୋଧନ କରାଯାଇଛି । (ପୃ:୪୯୩) "ତେଣୁ ଓଡ଼ିଆ କବିତାରେ ଶ୍ରୀ ମହାନ୍ତି (ଗୁରୁପ୍ରସାଦ)ଙ୍କୁ ଶ୍ରେଷ୍ଠ ବୋଲି ନ କହି ଜଣେ ଅନ୍ୟତମ ବିଶିଷ୍ଟ କବିଭାବେ ନାମିତ କରାଯିବା ବରଂ ସଂଗତ ହେବ ××× ।" (ପୃ:୪୯୩)

ବିଂଶ ଶତାବ୍ଦୀର ଆଦ୍ୟପାଦରୁ ଷଷ୍ଠଦଶକ ଯାଏ ଓଡ଼ିଆ କବିତାର ବିକାଶ, ବିବର୍ତ୍ତନ, ପରୀକ୍ଷା ପ୍ରୟୋଗ ସହିତ ତା'ର ସ୍ୱରୂପକୁ 'ସବୁଜରୁ ସାଂପ୍ରତିକ' ଯଥାର୍ଥ ଭାବେ ଆଲୋକିତ କରେ । ଓଡ଼ିଆ କବିତାକୁ ବିଭିନ୍ନ ବର୍ଣ୍ଣାଳୀରେ ଅଭିଷିକ୍ତ କରିଥିବା କାବ୍ୟଶିଳ୍ପୀଙ୍କୁ ପାଶ୍ଚାତ୍ୟ ତଥା ପ୍ରାନ୍ତୀୟ କାବ୍ୟଧାରା ସହ ତୁଳନୀୟ ଭାବରେ ପରଖି ଓଡ଼ିଆ କବିତାର ଇତିହାସରେ ସେମାନଙ୍କ ବୈୟକ୍ତିକ ଅବଦାନକୁ ନିତ୍ୟାନନ୍ଦ ନିରୂପିତ କରିଛନ୍ତି । ତାଙ୍କ ସମୀକ୍ଷଣରେ ବିଭିନ୍ନ ସମୀକ୍ଷା ଧାରାର ସମନ୍ୱୟ ଘଟିଛି । ସମୀକ୍ଷଣର ଭାଷା ପ୍ରାଞ୍ଜଳ, କ୍ଷେତ୍ର ବିଶେଷରେ ସର୍ଜନାତ୍ମକ ଓ ବୌଦ୍ଧିକ । ସମୀକ୍ଷକଙ୍କର ଆବେଗଧର୍ମୀ ନିମଜ୍ଜନ ଅଭିବ୍ୟକ୍ତିକୁ ଜୀବନ୍ତ କରି ଗଢ଼ି ତୋଳିଛି । ସମୀକ୍ଷକଙ୍କର ଅଜସ୍ର ନିର୍ଣ୍ଣୟାତ୍ମକ ମତ ଓ ଉଦ୍ଧୃତିଯୋଗ୍ୟ ବକ୍ତବ୍ୟ ପ୍ରତିଚର୍ଚ୍ଚା ଓ ପରବର୍ତ୍ତୀ ମୂଲ୍ୟ ଆକଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରେ । ଓଡ଼ିଆ କବିତାର ଏକ ପ୍ରାମାଣିକ ଐତିହାସିକ ମୂଲ୍ୟାୟନ ପରିପ୍ରେକ୍ଷୀରେ ଏପରି ଦ୍ୱିତୀୟ ଗ୍ରନ୍ଥ ପରିଦୃଷ୍ଟ ହୁଏନାହିଁ ।

ଏ ଚର୍ଚ୍ଚାର ପରବର୍ତ୍ତୀ 'ସତୁରୀରୁ ସହସ୍ରାବ୍ଦୀ' (୨୦୦୩) । 'ସବୁଜରୁ ସାଂପ୍ରତିକ'ରେ ଯାହା ସାଂପ୍ରତିକ ଥିଲା ତାହା ଷଷ୍ଠ ଓ ସପ୍ତମ ଦଶନ୍ଧିର ପ୍ରାରମ୍ଭ । 'ସତୁରୀରୁ ସହସ୍ରାବ୍ଦୀ' ତା'ର ପରବର୍ତ୍ତୀ ପ୍ରବାହ ଓ ପାହାଚ୍ । ଏହାର ବନ୍ଧନୀରେ ସୂଚିତ ସମୟ ଅବଧି ଉତ୍ତର ସତୁରୀ । ଏହା ଉତ୍ତର ସତୁରୀ କାବ୍ୟଚେତନା : ୧୯୭୦ରୁ ୨୦୦୧ର ନୂତନ ଶତାବ୍ଦୀ ବା ସହସ୍ରାବ୍ଦୀ । ଏ ସୁବୃହତ୍ ଗ୍ରନ୍ଥରେ ୧ମ ଭାଗରେ ସଂଯୋଜିତ ଦଶଜଣ କାବ୍ୟଶିଳ୍ପୀଙ୍କ ମୂଲ୍ୟାୟନ । ତା'ର ପରବର୍ତ୍ତୀ ପର୍ଯ୍ୟାୟରେ ପନ୍ଦରଜଣ କାବ୍ୟଶିଳ୍ପୀଙ୍କ ଅନୁରୂପ ଧାରାରେ ମୂଲ୍ୟାୟନ କରାଯିବ ବୋଲି ନିତ୍ୟାନନ୍ଦ ସୂଚାଇଛନ୍ତି । ଏ ମୂଲ୍ୟାୟନ 'ସତୁରୀରୁ ସହସ୍ରାବ୍ଦୀ'ର ସମୀକ୍ଷଣ ବା ମୂଲ୍ୟାୟନ ପୂର୍ବବତ୍ ପତ୍ରପତ୍ରିକାର ମସିହା ମାସ ଭିତ୍ତିକ ନୁହେଁ । ଏହା କାଳାନୁକ୍ରମିକ ଭାବେ ପ୍ରକାଶିତ କବିମାନଙ୍କ କବିତା ଗ୍ରନ୍ଥରେ ସ୍ଥାନିତ ଏକକ କବିତା ମାନଙ୍କର ପ୍ରାୟୋଗିକ ମୂଲ୍ୟାୟନ ଭିତ୍ତିରେ ପ୍ରସ୍ତୁତ । ଏହାବି ଏକ ଶୃଙ୍ଖଳା, ପଦ୍ଧତି ଓ ଧାରା । ଏହା ସଂପୂର୍ଣ୍ଣ ନିତ୍ୟାନନ୍ଦୀୟ କାରଣ ଏଇ ଧାରାର ସମୀକ୍ଷାପଦ୍ଧତି ଅନ୍ୟ କେହି ଆପଣେଇ ନାହାନ୍ତି । ଏ ଗ୍ରନ୍ଥରେ ଏକହଜାରରୁ ଉର୍ଦ୍ଧ୍ୱ ଏକକ କବିତାର ସୁଦୀର୍ଘ ଓ କ୍ଷେତ୍ର

ବିଶେଷରେ ସଂକ୍ଷିପ୍ତ ମୂଲ୍ୟାୟନ ହୋଇଛି । କବିତା ଗ୍ରନ୍ଥର ସାମଗ୍ରିକ ଆବେଦନ ଓ ସୌନ୍ଦର୍ଯ୍ୟବୋଧ ଆଧାରରେ କବିଙ୍କର ବ୍ୟକ୍ତିଗତ କାବ୍ୟିକ ବିବର୍ତ୍ତନ ଓ ଉତ୍ତରଣ ସର୍ବୋପରି ଅବଦାନକୁ ଚିହ୍ନିତ କରାଯାଇଛି । ଏଥିରେ ମଧ୍ୟ ଏକ ତୁଳନାତ୍ମକ ସମୀକ୍ଷା ଦୃଷ୍ଟି ଅନୁସୃତ । କବିତାର ଅବବୋଧଗତ ଜଟିଳତାକୁ ପ୍ରାଞ୍ଜଳ କରିବାର ପ୍ରଯତ୍ନରେ ସମାଲୋଚକ କ୍ଷେତ୍ର ବିଶେଷରେ କାବ୍ୟସ୍ରଷ୍ଟାଙ୍କ ସହ ବ୍ୟକ୍ତିଗତ ଆଳାପ ଆଲୋଚନା କରିଛନ୍ତି । ଅବଶ୍ୟ କାବ୍ୟସ୍ରଷ୍ଟାଙ୍କ ମତ ସହ ନିତ୍ୟାନନ୍ଦ ସବୁବେଳେ ସହମତ ହୋଇପାରି ନାହାନ୍ତି ବୋଲି ସୂଚାଇଛନ୍ତି । କାବ୍ୟସ୍ୱରର ବୈଶିଷ୍ଟ୍ୟ ଓ ବିଶେଷତା, ଦୁର୍ବଳତାକୁ ଆଲୋଚିତ କରି ଓଡ଼ିଆ କବିତା ଧାରାରେ ସେମାନଙ୍କ ସ୍ଥାନ ନିର୍ଣ୍ଣୟ ପ୍ରତି ଆଲୋଚକ ପ୍ରଯତ୍ନ ହୋଇଛନ୍ତି । 'ସବୁଜରୁ ସାଂପ୍ରତିକ'ରେ ଏହି ସ୍ରଷ୍ଟାମାନଙ୍କର ସାଧନାର ଆଦ୍ୟପର୍ଯ୍ୟାୟ ଚର୍ଚ୍ଚିତ ହୋଇଥିବା ସ୍ଥଳେ ଏଠାରେ ପରିଣତ ପର୍ଯ୍ୟାୟ ଓ ସ୍ଥଳ ବିଶେଷରେ ଅନ୍ତିମ ପର୍ଯ୍ୟାୟ ସର୍ବୋପରି ସାମଗ୍ରିକ ଅବଦାନ ଚର୍ଚ୍ଚିତ ହୋଇଛି । ଏକ ପୂର୍ଣ୍ଣାଙ୍ଗ ମୂଲ୍ୟାୟନ ପାଇଁ ଅଭିଳାଷ ଅବଶ୍ୟ ସବୁ କ୍ରିୟାଶୀଳ କବିଙ୍କୁ ନେଇ ସମ୍ଭବ ନୁହେଁ । ୨୦୦୦ ମସିହା ପରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଜଗନ୍ନାଥ ପ୍ରସାଦ ଦାସ, ପ୍ରତିଭା ଶତପଥୀ କ୍ରିୟାଶୀଳ ରହିଥିବା ସ୍ଥଳେ ରଘୁନାଥ ଦାସଙ୍କ ୧୯୮୪ରେ, ଭାନୁଜୀ ରାଓଙ୍କର ୨୦୦୧ରେ, ସଚ୍ଚିଦାନନ୍ଦ ରାଉତରାୟଙ୍କର ୨୦୦୪ରେ, ଗୁରୁପ୍ରସାଦଙ୍କର ୨୦୦୪ରେ ଦେହାନ୍ତ ହୋଇଛି । ୨୦୦୮ରେ ଦୀପକ ମିଶ୍ର ଏବଂ ୨୦୧୪ରେ ବ୍ରଜନାଥ ରଥ ଦିବଂଗତ ହୋଇଯାଇଛନ୍ତି । ପୁସ୍ତକର ଭୂମିକାରେ ଏଇ ମୂଲ୍ୟାୟନର ପୃଷ୍ଠଭୂମି ସଂପର୍କରେ ସାମ୍ନା କରିଥିବା ସମସ୍ୟା ସଂପର୍କରେ ଯେଉଁ ବକ୍ତବ୍ୟ ରଖିଛନ୍ତି ତାହା ନିମ୍ନମତେ : "ଏହି ସମୟର ବିଶିଷ୍ଟ କବିମାନଙ୍କ ଭାବପ୍ରସ୍ତକୁ ଅବଧାରଣାରେ ଆଣିଲାବେଳେ ଅନେକ ବିରୋଧାଭାସର ସମ୍ମୁଖୀନ ହେବାକୁ ହୋଇଛି । କାରଣ ବହୁ କବିଙ୍କର ବହିରାବଣରେ ଏତେ ସଂହତିହୀନତା ଓ ଉଦ୍‌ଭଟତା ରହିଛି ଯାହାର ଅଭ୍ୟନ୍ତରକୁ ପ୍ରବେଶ ଅଧିକାର ପାଇଁ ସ୍ରଷ୍ଟା କବି ବ୍ୟତୀତ ଆଉ କାହାର ଅଧିକାର ନଥିବା ପରି ମନେହୋଇଛି । କବିତାର ଗ୍ରହଣଯୋଗ୍ୟ ଅର୍ଥ ପାଇବା ପାଇଁ କବିମାନେ କୌଣସି ସୂଚନା (clue) ନିଜ କବିତାରେ ପ୍ରାୟ ଦେଇ ନାହାନ୍ତି । ତେଣୁ ଅବବୋଧର ବିବିଧତା ସମାଲୋଚକ ଓ ପାଠକଙ୍କୁ ପ୍ରାୟ ବିବ୍ରତ କରିଥାଏ ।

ପୂର୍ବରୁ ସୂଚୀତ ହୋଇଛି ଯେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଉପରେ ନିତ୍ୟାନନ୍ଦ ଶତାଧିକ ପୃଷ୍ଠାର ଏକ ନିର୍ଣ୍ଣୟାତ୍ମକ ପୂର୍ଣ୍ଣାଙ୍ଗ ମୂଲ୍ୟାୟନ କରିଛନ୍ତି । ଏ ଗ୍ରନ୍ଥରେ କବିଙ୍କ ୧୯୭୦ ପରବର୍ତ୍ତୀ ତିନିଦଶନ୍ଧିର କାବ୍ୟପର୍ବର ବିଶେଷତାକୁ ଚିହ୍ନିତ କଲାବେଳେ ତାଙ୍କ ଚେତନାର ଅବରୋହ ଓ ଅବକ୍ଷୟକୁ ଦର୍ଶାଇଛନ୍ତି । ଏଇ ପ୍ରକ୍ରିୟା ଭିତରେ ବି ତାଙ୍କ କାବ୍ୟିକ ସ୍ଫୁଲିଙ୍ଗ ବା ଝଲକର ତୀବ୍ରତାକୁ ତଥା ମୌଳିକତାକୁ ଆବିଷ୍କାର କରିବାର ବିଶେଷ ପ୍ରଯତ୍ନ କରିଛନ୍ତି । ଏଥିରେ କବିଙ୍କର ଆଦ୍ୟ ଚାରିଦଶନ୍ଧିର କବିତାଧାରାକୁ ଉତ୍ତର

ସତୁରୀ କାଳର ତିନି ଦଶନ୍ଧିର ଧାରା ସହ ତୁଳନା କରିବାର ଅବକାଶଟିଏ ମଧ୍ୟ ସୃଷ୍ଟି ହୋଇଛି । ବହୁ ଉଦ୍ଧୃତିଯୋଗ୍ୟ ଓ ନିର୍ଣ୍ଣୟାତ୍ମକ ମତରୁ ଦୁଇଟି ଉଦ୍ଧୃତିର ଅବତାରଣା କରେଁ । ଏହି ସଂକଳନ (କବିତା ୧୯୭୧) ସ୍ଥିତ 'ନାଗଭୂଷଣ', 'ରୋସ୍‌ନାରା', 'ମୁଦିବୁର ରହମାନ', 'ୟାହିଆ ଖାଁ' ଆଦି କବିତା ଏହି ପ୍ରସଙ୍ଗରେ ପଠିତବ୍ୟ । ଏସବୁ କବିତା ମନେହୁଏ ଯେପରି ସବୁଯୁଗର ଓ ସବୁକାଳର ମଣିଷ ଆତ୍ମାର ବ୍ୟଥା; ବେଦନା ଓ ହାହାକାରର ପ୍ରତିନିଧି । ମାନବାତ୍ମାର ମୁକ୍ତି ପାଇଁ ଏଇ କେତୋଟି କବିତାର ସାର୍ବଜନୀନ ଆକୁତି ଓ ଆବେଦନ ଅତି ସାର୍ଥକ ଭାବେ କାଳୋତ୍ତୀର୍ଣ୍ଣ ଓ ରସୋତ୍ତୀର୍ଣ୍ଣ ।" (ପୃ:୧୦) 'କବିତା ୧୯୯୦' ପରିପ୍ରେକ୍ଷୀରେ - "××× ଉତ୍ତର ସତୁରୀରେ ରଚିତ ତାଙ୍କର ସମସ୍ତ କବିତା ସଂକଳନ ମଧ୍ୟରେ 'କବିତା ୧୯୯୦' ସବୁଠାରୁ ସିଦ୍ଧିପ୍ରଦ ଏକ କାବ୍ୟସଂକଳନ ଯହିଁରେ ସଚ୍ଚିବାବୁଙ୍କ ପ୍ରାକ୍ ୧୯୬୨ କାବ୍ୟଚେତନାର ବହୁ ସ୍ୱର ଓ ସଂବେଦନାକୁ ଛୁଇଁହୁଏ । ××× 'କବିତା ୧୯୯୦' ପୁଣି ଥରେ ଏଇ ନିର୍ବାତମୁଖୀ ପ୍ରଦୀପର ହଠାତ୍ ଝଲକରେ ଆଲୋକିତ ହୋଇଉଠିଛି ଓ ପରିପାର୍ଶ୍ୱକୁ ଆଲୋକ ବିକିରଣ କରିଛି ମଧ୍ୟ । ତାଙ୍କ କବିତାରେ ଏଇ ସମୟରେ ପୁଣି ଫେରିଆସିଛି ସେଇ ସାମାଜିକ ପ୍ରତିବଦ୍ଧତା ×××" (ପୃ ୩୭-୩୮) । କବିଙ୍କ କବିତା ୧୯୭୧, କବିତା ୧୯୭୪, କବିତା ୧୯୮୩, କବିତା ୧୯୮୫, କବିତା ୧୯୯୦, କବିତା ୧୯୯୭ ପ୍ରଭୃତି ସଂକନର ପ୍ରାୟ ଦୁଇ ଶତାଧିକ କବିତାର ବିଶେଷତ୍ୱ ଓ ବିଫଳତାକୁ ଶ୍ରଦ୍ଧାର ସହିତ ବିଶ୍ଳେଷଣ କରାଯାଇଛି ।

'ଗୁରୁପ୍ରସାଦ : ବାସ୍ତବତା ଓ ବିପର୍ଯ୍ୟୟ' ଶୀର୍ଷକରେ ଗୁରୁପ୍ରସାଦ ମହାନ୍ତି 'ସମୁଦ୍ର ସ୍ନାନ' ପରବର୍ତ୍ତୀ 'ଆଶ୍ଚର୍ଯ୍ୟ ଅଭିସାର' (୧୯୮୫) ତଥା ତତ୍‌ପରବର୍ତ୍ତୀ କବିତା ନିତ୍ୟାନନ୍ଦଙ୍କ ଆକଳନ ପରିସରକୁ ଆସିଛି । ସମକାଳୀନ ପୃଷ୍ଠଭୂମି ତଥା ତାଙ୍କର ପୂର୍ବକବିତା ଆଧାରରେ ଉତ୍ତର ସତୁରୀର କବିତାକୁ ବିଶ୍ଳେଷଣ କରାଯାଇଛି । ବହୁ ନିର୍ଣ୍ଣୟାତ୍ମକ ଓ ଉଦ୍ଧୃତିଯୋଗ୍ୟ ଅଭିମତରୁ ଗୋଟେ ଦୁଇଟି ଉଦ୍ଧାର କରାଯାଉ । "ସମଗ୍ର 'ଆଶ୍ଚର୍ଯ୍ୟ ଅଭିସାର'ରେ ଏହିପରି ନିଃସଂଗତାର ମାନସିକ ଚିତ୍ର ସହିତ କବିମାନସର ସ୍ମୃତି, ସଂପର୍କ, ଋତୁଚକ୍ର, ସମୟ, ମୃତ୍ୟୁ ଓ ତତ୍‌କାଳୀନତା ସହିତ ଅଭିସାର ରଚନା କରେ ଏବଂ ଏହି ବିବିଧତା ହିଁ ତାଙ୍କ କବିତାର ଆଶ୍ଚର୍ଯ୍ୟ ବା ବିସ୍ମୟ ହୋଇପାରେ । ତେବେ ଆଶ୍ୱାସନାର ବିଷୟ ଏହି ଯେ କବିତାଗୁଡ଼ିକ ପୂର୍ବର ବୌଦ୍ଧିକ ଜଟିଳତା ଓ ମାଳମାଳ ଅନୁଷଙ୍ଗ ପରିହାର କରି ଅଧିକ ସ୍ୱଚ୍ଛ ଓ ଅକପଟ ହେବାକୁ ଚେଷ୍ଟା କରିଛି । (ପୃ ୪୭), "ବହୁ ବାସ୍ତବତାକୁ ଛୁଇଁ କବିଙ୍କ ଏ ସମୟର କାବ୍ୟଚେତନାର ସଂଚରପଥ ବିନିର୍ମିତ ହୋଇଥିଲେ ବି ପ୍ରାକ୍-ସତୁରୀ କବିତାର ଓଜ ଓ ଦୀପ୍ତି ଯେ ହରେଇ ବସିଛି ଏ କଥା ପାଠକମାତ୍ରେ ଅନୁଭବ କରିବେ ।" (ପୃ ୬୦)

ଉତ୍ତର-ସତୁରୀ କାବ୍ୟଚେତନା ପର୍ଯ୍ୟାୟରେ 'ନଦୀ, ନାରୀ, ନକ୍ଷତ୍ରର କବି ଭାନୁଜୀ ରାଓ' ଶୀର୍ଷକଟି ବେଶ୍ ଅର୍ଥଦ୍ୟୋତକ ଏବଂ ଭାନୁଜୀରାଓଙ୍କ କବିତାର ଆତ୍ମିକ ଦିଗନ୍ତକୁ ଚିହ୍ନାଇବା ପାଇଁ ସମର୍ଥ । ପୂର୍ବରୁ 'ନୂତନ କବିତା' ଓ 'ବିଷାଦ ଏକ ଋତୁ' (୧୯୭୩)ର କତିପୟ କବିତା ଆଧାରରେ ଚର୍ଚ୍ଚିତ କବି ଭାନୁଜୀ ଏ ପର୍ଯ୍ୟାୟରେ ପୁନର୍ବାର 'ବିଷାଦ ଏକ ଋତୁ'ର ପୃଷ୍ଠଭୂମିରେ ଚର୍ଚ୍ଚାକୁ ଆସିଛନ୍ତି । ତାଙ୍କର 'ନଈ ଆରପାରି' (୧୯୮୬) ପ୍ରକାଶନ ଠାରୁ ଦେଢ଼ ଦଶନ୍ଧିର ସମୟ ଅବଧି ମଧ୍ୟରେ ଦଶଗୋଟି କବିତା ସଂକଳନରେ ଯେଉଁ ଏକ ବିସ୍ମୟୋଦ୍ଦୀପକ ସର୍ଜନଶୀଳତା ପରିଲକ୍ଷିତ ହୁଏ ସମାଲୋଚକ ନିତ୍ୟାନନ୍ଦ ସେଇ ବୈଶିଷ୍ଟ୍ୟ ଓ ଅନନ୍ୟତାକୁ ଚିହ୍ନିତ କରିଛନ୍ତି । ରୋମାଣ୍ଟିକ୍ ବାସ୍ତବବାଦୀ ଦୃଷ୍ଟିଭଂଗୀ, ଅତିବାସ୍ତବବାଦୀ ଆଭିମୁଖ୍ୟ ସହ ନିଃସଙ୍ଗତା-ମୃତ୍ୟୁବୋଧ-ସ୍ମୃତି ଓ ଅତୀତ ବିଧୂରତା, ଜହ୍ନ ଓ ନକ୍ଷତ୍ରମୟତା ଆଦି ତାଙ୍କ କବିତାର ଭାବନିର୍ଯ୍ୟାସ ଭାବେ ପରିଗଣିତ । ଭାନୁଜୀଙ୍କ ବହୁ ଏକକ କବିତା ଓ ସଂକଳନ ସଂପର୍କରେ ସମୀକ୍ଷକଙ୍କର ବହୁ ଅଭିମତ ରହିଛି । ଅନ୍ତିମ ପର୍ଯ୍ୟାୟର ଅଭିମତଟି ଏହିପରି : "ନାରୀ, ନଦୀ ଓ ନକ୍ଷତ୍ର ହିଁ ସେ କବିତାର ସଂଘରପଥ । ସମୟର ନଦୀରେ ଉବୁଟୁବୁ ହୋଇ ସେ କେଉଁ ନାରୀର ଅପାଶୋରା ସ୍ମୃତି ପାଖରେ କେବେ ଆତ୍ମସମର୍ପଣ କରନ୍ତି ତ ତେବେ ନକ୍ଷତ୍ରମାନଙ୍କ ଆଡ଼କୁ (ଚନ୍ଦ୍ର ଓ ତାରା) ହାତ ବଢ଼ାଇ ରହନ୍ତି । ତାଙ୍କ କବିତାରେ ମୁକ୍ତିର ସ୍ୱରଟି ତଥାପି ପରିଛନ୍ନ ହୁଏ ନାହିଁ । ଉତ୍ତରଣର ଅଭିଳାଷ ପ୍ରଚଣ୍ଡ ପାର୍ଥିବତା ପାଖରେ ବାରମ୍ବାର ଧକ୍କା ଖାଇ ଫେରିଆସେ । ସେ କେବଳ ଧନ୍ଦି ହୁଅନ୍ତି ଓ କାରୁଣ୍ୟ କରନ୍ତି । କିନ୍ତୁ ଏହି କାରୁଣ୍ୟର ସ୍ୱର ହିଁ ତଥାପି ମଧୁର ।" (ପୃ.୯୦)

ବିସ୍ମୃତ ହୋଇଯାଇଥିବା ବିପ୍ଳବୀ ସାମ୍ୟବାଦୀ କବି ରଘୁନାଥ ଦାସଙ୍କ ସାମଗ୍ରିକ ଆକଳନ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଉଦାସୀନତା ଓ ବିସ୍ମୃତିର ଗର୍ଭରୁ ତାଙ୍କୁ ଉଦ୍ଧାର କରି ତାଙ୍କର ବୈଶିଷ୍ଟ୍ୟ ଓ ନୂତନତାକୁ ଦର୍ଶାଇବା ଓ କାବ୍ୟଚେତନାର ରୂପାନ୍ତରକୁ ଚିହ୍ନିତ କରିବା ଗୁରୁତ୍ୱପୂର୍ଣ୍ଣ । ୧୯୭୫ର ଜାତୀୟ ଜରୁରୀକାଳୀନ ପରିସ୍ଥିତି, ବିଂଶସୂତ୍ରୀ କାର୍ଯ୍ୟକ୍ରମ, ନକସାଲ ନେତା ନାଗଭୂଷଣ ଆଦି ପ୍ରସଙ୍ଗରେ ରଘୁନାଥ ଦାସଙ୍କ ସମକାଳନିଷ୍ଠତା ଓ ଜାତୀୟ ଜୀବନର ଦୁଃସ୍ଥିତି ଓ ଦୁର୍ଗତି ପ୍ରତି ବେସାଲିସ୍ ବିଦ୍ରୋହର ସ୍ୱରକୁ ନିତ୍ୟାନନ୍ଦ ସ୍ପଷ୍ଟଭାବେ ପ୍ରକାଶ କରିଛନ୍ତି । ପ୍ରଗତିବାଦୀ ଚିନ୍ତନର ଏ ସ୍ରଷ୍ଟା କିପରି ପୁରାଣର ପ୍ରସଙ୍ଗ, ଚରିତ୍ର ଓ ଚିତ୍ରକଳ୍ପ ଆଧାରରେ ସ୍ୱବକ୍ତବ୍ୟ ବାଢ଼ିଛନ୍ତି ଓ କାବ୍ୟିକ ବିବର୍ତ୍ତନରେ ସେ ଦାର୍ଶନିକ ଭାବାପନ୍ନ ହୋଇଉଠିଛନ୍ତି ତା'ର ଆବିଷ୍କାର ଓ ଉଲ୍ଲେଖ ହିଁ ତାତ୍ପର୍ଯ୍ୟପୂର୍ଣ୍ଣ । ସେ କହନ୍ତି : "ଜୀବନର ରହସ୍ୟ, ଏପରିକି ସୃଷ୍ଟିର ରହସ୍ୟ ଓ ପ୍ରକୃତିର କୌଣସି କୌଣସି ବିଭବର ଆଦି ଓ ଆବର୍ତ୍ତନ ଅନ୍ୱେଷଣରେ ସେ ଖୁବ୍ ଗଭୀର ଚିନ୍ତା ଓ ବୌଦ୍ଧିକତାର ପରିଚୟ ଦେଇଛନ୍ତି । ଏହାହିଁ ଯଥାର୍ଥରେ ତାଙ୍କ ଚେତନାର ପରିଣତ ପର୍ବ । ଏ ସବୁ

କବିତାରେ ଭଗବତ୍ ବିଶ୍ୱାସ ଓ ଆସ୍ତିକତା ପ୍ରକାଶ ପାଇଛି ଯାହା ମାର୍କସୀୟ ଚେତନାର ଭିନ୍ନକୋଟୀରେ ଏକ ବିରୋଧାଭାସ ପରି ମନେହୁଏ । କିନ୍ତୁ କବି ମତବାଦ ଅପେକ୍ଷା ସତ୍ୟକୁ ହିଁ ଗୁରୁତ୍ୱ ଦେଇଛନ୍ତି- ନିଜର ଶେଷ ଜୀବନରେ ଅନୁଭବ ଓ ଉପଲବ୍ଧି ପ୍ରତି ଭାବ ସତୀତ୍ୱ ଦେଖାଇଛନ୍ତି ।" (ପୃ:୧୦୬)

ଅନନ୍ତ ମହାକାଳକୁ ରୂପ ଦେବାରେ କବିଙ୍କ ଅନାଲୋଚିତ ଦୀର୍ଘକବିତା 'ମହାନାଟକ' ଦାର୍ଶନିକତା ଓ ବାମପନ୍ଥୀ ଚିନ୍ତନର ସମନ୍ୱୟରେ ଓଡ଼ିଆ କବିତା କ୍ଷେତ୍ରରେ ତୁଳନାହୀନ ବୋଲି ସମୀକ୍ଷକ ସୂଚାଇଛନ୍ତି । ଜଣେ ମାର୍କସ୍‌ବାଦୀ କବିର ବିଭୁ ଆସଞ୍ଜନ ଓ ରହସ୍ୟବାଦୀ ରୂପାନ୍ତରକୁ ଦର୍ଶାଇବା ସଙ୍ଗେ ସଙ୍ଗେ କବିତାର ଇତିହାସରେ ତାଙ୍କର ଯଥାଯୋଗ୍ୟ ସ୍ଥାନ ସଂରକ୍ଷଣ ଲାଗି ଦାବି ନିତ୍ୟାନନ୍ଦଙ୍କ ସ୍ପର୍ଦ୍ଧା ଓ ପ୍ରତ୍ୟୟକୁ ବହନ କରେ ।

ପ୍ରେମ, ପ୍ରତାରଣା ଓ ନିଃସଂଗତାର କବି ଜଗନ୍ନାଥ ପ୍ରସାଦ ଦାସ ଶୀର୍ଷକର ଚର୍ଚ୍ଚାଟି ପ୍ରକୃତ ପକ୍ଷରେ ଜଗନ୍ନାଥ ପ୍ରସାଦ ଦାସଙ୍କ ଏକ ସାମଗ୍ରିକ ଆକଳନ । ପଞ୍ଚମ ଦଶକରୁ କବି ଜଗନ୍ନାଥ ପ୍ରସାଦ ଦାସଙ୍କ କାବ୍ୟଯାତ୍ରାର ଅୟମାରମ୍ଭ ଥିଲା ମାତ୍ର ୬/୭ ବର୍ଷ ଲାଗି । ତା'ର ଅନ୍ୟୂନ ଦେଢ଼ ଦଶନ୍ଧି ପରେ ଉତ୍ତର ସତୁରୀରୁ ଚାରି ଦଶନ୍ଧି ଧରି ତାଙ୍କର କାବ୍ୟଯାତ୍ରା । ସମାଲୋଚକ ନିତ୍ୟାନନ୍ଦ ତାଙ୍କର 'ପ୍ରଥମ ପୁରୁଷ' (୧୯୭୧) ରୁ 'ପରିକ୍ରମା' (୧୯୯୮) ଯାଏ କାବ୍ୟଗ୍ରନ୍ଥ ଓ ବହୁ ଏକକ କବିତାର ସମୀକ୍ଷା କରିଛନ୍ତି । କବିଙ୍କ ପ୍ରେମଚେତନା, ମୃତ୍ୟୁବୋଧ, ଅତିବାସ୍ତବବାଦୀ ଚିନ୍ତନ, ସମାଜନିଷ୍ଠତା, ସମୟ ଚେତନା ଓ ଦାର୍ଶନିକ ମନନଶୀଳତା ଆଦିକୁ ସମୀକ୍ଷଣ କ୍ଷେତ୍ର ବିଷୟରେ ସମକାଳର କାବ୍ୟସ୍ୱର ସଚ୍ଚିଦାନନ୍ଦ, ରମାକାନ୍ତ ଓ ସୀତାକାନ୍ତଙ୍କ ସହ ତୁଳନା କରି ପର୍ଯ୍ୟାଲୋଚନା କରିଛନ୍ତି । ବହୁ ନିର୍ଣ୍ଣୟାତ୍ମକ ଉଦ୍ଧାର ଓ ମତ ଅଭିମତ ବି ରହିଛି । ଅଭିମତଟିଏ ଉଦ୍ଧାର କରେ । "ଶ୍ରୀ ଦାସ ଇନ୍ଦ୍ରିୟବିଳାସୀ କବି । ଇନ୍ଦ୍ରିୟୋତ୍ତର ଚେତନା ପାଖରେ ପହଞ୍ଚିବାକୁ ଏଯାବତ୍ ତାଙ୍କ କାବ୍ୟଚେତନାରେ ଉତ୍କଣ୍ଠା ଆସିନାହିଁ- ତାହାହିଁ ତାଙ୍କ ପାଇଁ ଏକାନ୍ତ ବାସ୍ତବତା । xxx ଭାବଜୀବୀ କବି ଶ୍ରୀ ଦାସ ସତେଯେପରି ହାତବଢ଼େଇ ରହିଛନ୍ତି ଏକ ଅତୀନ୍ଦ୍ରିୟ ଅନୁଭବ ଆଡ଼କୁ ଯାହା ଏବେ ମଧ୍ୟ ରହିଛି ଅପହଞ୍ଚ । ରୂପଘେନି ମଧ୍ୟ ଘେନି ନାହିଁ । କଳି ଅବସ୍ଥାରେ ଥିବା ମନର ଉନ୍ମୁଖ କୁସୁମ ତଥାପି ବିକଶିତ ହୋଇ ନାହିଁ - କବିତାର ଅନୁଭବ ତଥାପି ଦେହ ଓ ମନର ଦେହଳୀ ଭିତରେ ହେଉଛି ଭ୍ରାମ୍ୟମାଣ । ଉତରିତ ଏକ ଅନୁଭବର ପ୍ରତ୍ୟାଶା କହେଳିକାଚ୍ଛନ୍ନ ହୁଏତ - କିନ୍ତୁ ସୂର୍ଯ୍ୟାଲୋକର ସ୍ୱର୍ଣ୍ଣିମ ବିଭା ବୋଧହୁଏ ବେଶି ଦୂରବର୍ତ୍ତୀ ନୁହେଁ । ଏକବିଂଶ ଶତାବ୍ଦୀ ହିଁ ହେବ ତା'ର ପ୍ରତିପାଦକ xxx" (ପୃ:୧୮୨) ଉଦ୍ଧରଣକୁ ଚିହ୍ନିତ କରିବା ଦିଗରେ ସମୀକ୍ଷକଙ୍କ ମନ୍ତବ୍ୟ ସହ ସମସ୍ତେ ହୁଏତ ଏକମତ ହୋଇ ନ ପାରନ୍ତି । କବି ଜଗନ୍ନାଥ ପ୍ରସାଦଙ୍କ ୨୦୦୪ରେ ପ୍ରକାଶ ପାଇଛି କବିତା ଗ୍ରନ୍ଥ 'ଅସମୟ' ଏବଂ ପରେ 'କବିତା ସମଗ୍ର' ସଂଯୋଜିତ ହୋଇଛି ନିକଟ ଅତୀତରେ ଆଉ କିଛି

କବିତା । ତାଙ୍କ ସାମଗ୍ରିକ ଆକଳନ ପାଠକଙ୍କୁ ତାଙ୍କ କବିତାର ବହୁ ଅନାଲୋଚିତ ଦିଗ ପ୍ରତି ଆମକୁ ଧ୍ୟାନନିଷ୍ଠ କରେ ।

ପ୍ରେମ, ମୃତ୍ୟୁ ଓ ନିର୍ଜନତାର କବି ରମାକାନ୍ତ ରଥ ସନ୍ଦର୍ଭଟି କବିଙ୍କ ଉତର ସତୁରୀ କାବ୍ୟଚେତନାର ମୂଲ୍ୟାୟନ : ୧୯୭୧ରେ ପ୍ରକାଶିତ 'ସନ୍ଦିଗ୍ଧ ମୃଗୟା' ଠାରୁ 'ଶ୍ରୀ ପଳାତକ' (୧୯୯୮) ଯାଏଁ ୧୪୦ ପୃଷ୍ଠାର ଚର୍ଚ୍ଚା । କବିଙ୍କ କବିତାର ମାଧୁର୍ଯ୍ୟ, ଜଟିଳତା, ବୌଦ୍ଧିକତା ଓ ଆଭିମୁଖ୍ୟ ଆଦି ନେଇ ସମୀକ୍ଷକଙ୍କର କାବ୍ୟଗ୍ରନ୍ଥ ଓ ଏକକ କବିତା ଭିତ୍ତିରେ ଏ ମୂଲ୍ୟାୟନ । କବିଙ୍କ ପ୍ରେମଚେତନାକୁ ଦେହ ଓ ବିଦେହ ଅଧ୍ୟାୟରେ ସ୍ୱକୀୟା ଓ ପରକୀୟା ଭେଦରେ ସେ ବିଭକ୍ତ କରିଛନ୍ତି । ପାଶ୍ଚାତ୍ୟ କବିତା, ସମକାଳର ଅନ୍ୟ କାବ୍ୟଶିଳ୍ପୀ, କବି ରବୀନ୍ଦ୍ରନାଥ, ଅଧ୍ୟାତ୍ମ ସତ୍ତା ଶ୍ରୀମା ଓ ସମୀକ୍ଷକମାନଙ୍କର ଅଭିମତ ଭିତ୍ତିରେ କବି ରମାକାନ୍ତଙ୍କ ପ୍ରେମଚେତନା, ମୃତ୍ୟୁବୋଧ ଓ ଦାର୍ଶନିକତାକୁ ନିତ୍ୟାନନ୍ଦ ଆବିଷ୍କାର କରିଛନ୍ତି । ଏ ଚର୍ଚ୍ଚାରେ 'ଶ୍ରୀରାଧା' ଓ 'ଶ୍ରୀପଳାତକ' ବହୁଭାବେ ଆଲୋଚିତ । 'ଶ୍ରୀପଳାତକ'ର ପୃଷ୍ଠବନ୍ଧ କବିଙ୍କ କାବ୍ୟ ଆଭିମୁଖ୍ୟ ଅନୁସାରୀ ନ ହୋଇ ତା'ର ପ୍ରାସଙ୍ଗିକତା ଯଥେଷ୍ଟ ଭାବେ ରଖୁନାହିଁ ବୋଲି ସମୀକ୍ଷକ ଯୁକ୍ତି ବାଢ଼ିଛନ୍ତି । ନିଜ ବକ୍ତବ୍ୟରେ ଠାଏ ସମୀକ୍ଷକ କହିଛନ୍ତି- "ସେଇ ଅନନ୍ୟ ପ୍ରେମଭାବନାର ସାର୍ଥକ କାବ୍ୟକୃତି 'ଶ୍ରୀରାଧା' ହିଁ ହେବ ଆମ ପରବର୍ତ୍ତୀ ଅନୁଧ୍ୟାନର ଏକ ବ୍ୟର୍ଥ ପ୍ରୟାସ । (ପୃ:୨୪୭) ଏହା ବ୍ୟର୍ଥ ପ୍ରୟାସ ବୋଲି ନିତ୍ୟାନନ୍ଦ କାହିଁକି ମତ ରଖିଛନ୍ତି ତାହା ବୁଝାପଡ଼େ ନାହିଁ । ଚର୍ଚ୍ଚାଟିରେ ଏତେ ସାରଗର୍ଭକ, ନିର୍ଣ୍ଣୟାତ୍ମକ ଓ ଉଦ୍ଧାରଯୋଗ୍ୟ ଅଭିମତ ରହିଛି ସମୀକ୍ଷକଙ୍କ ଦୃଷ୍ଟିକୋଣରୁ ଚିହ୍ନିତ କରିବା ପାଇଁ ଗୋଟେଯୋଡ଼େ ଅଭିମତକୁ ଉଦ୍ଧାର କରେ । "ସମାଲୋଚନାର ଭାଷାରେ ସେ ପ୍ରେମ ଶ୍ରୀରାଧାଙ୍କର ହୋଇପାରେ, ହୋଇପାରେ ମଧ୍ୟ ଶ୍ରୀ ରମାକାନ୍ତଙ୍କର । କାରଣ ଏଠି ଆବେଗ ଓ ଚେତନା ପରକୀୟାକୁ ଏତେବେଶୀ ମୁଠେଇ ଧରିଛି ତହିଁରୁ ନା ଶ୍ରୀରାଧା ନା ଶ୍ରୀ ରମାକାନ୍ତ ମୁକୁଳି ନିର୍ବୈକ୍ତିକ ହୋଇପାରିବେ ?" (୨୪୬) "ପୁରା ତତ୍ତ୍ୱ (myth) ବା ପୌରାଣିକ ପ୍ରସଂଗ ଓ ଚରିତ୍ରକୁ ଆଧାର କରି ଏଇ କୋଡ଼ିଏ ବର୍ଷ ଭିତରେ ଅନେକ କାବ୍ୟକବିତା ରଚିତ ହୋଇଛି ଓ ତା' ପାଠକ ସହ ସିଧାସଳଖ ଯୋଗସୂତ୍ର ସ୍ଥାପନ ପାଇଁ ଏକ ଚମତ୍କାର ମାଧ୍ୟମ ହୋଇଛି । 'ଶ୍ରୀପଳାତକ' ସେଇ ପ୍ରୟାସ ଓ ମାନସିକତାର କାବ୍ୟରୂପ... ତେଣୁ ଜଟିଳ ହେଲେବି ଆବେଦନକ୍ଷମ ଏକ ମିଥ୍‌ଧର୍ମୀ କାବ୍ୟଗ୍ରନ୍ଥ । ତାକୁ ପୃଷ୍ଠବନ୍ଧର ସାଧାରଣୀକରଣ ଓ ବିଷୟବିକ୍ଷେପ ପ୍ରୟାସରେ ପାଠକଠାରୁ ଦୂରେଇ ନେବାର ଉଦ୍ୟମକୁ କବି ପରବର୍ତ୍ତୀ ସଂସ୍କରଣରେ ଦୃଷ୍ଟି ଦେବେବୋଲି ଆମେ ଅନୁରୋଧ କରିବୁ । ପୁରାକଳ୍ପକୁ ଇତିହାସ ସହିତ ଯୋଡ଼ି ନଦେଲେ ବି ଆଧୁନିକ ଜୀବନ ପାଇଁ ତାହା ତଥାପି ପ୍ରାସଂଗିକ ହୋଇ ରହିବ । xxx 'ଶ୍ରୀପଳାତକ' କାବ୍ୟରୁ ଆଧୁନିକତାର ପ୍ରାସଂଗିକତା ବହୁଭାବେ ଲୋଡ଼ାଯାଇ ପାରିବ ।" (ପୃ:୩୨୫)

'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥର ପରବର୍ତ୍ତୀ ସନ୍ଦର୍ଭ "ଶବ୍ଦ, ସମୁଦ୍ର, ସମୟ ଓ ସଂପର୍କର କବି ସୀତାକାନ୍ତ ମହାପାତ୍ର । ପାଖାପାଖି ୧୦୦ ପୃଷ୍ଠାର ସନ୍ଦର୍ଭରେ 'ଶବ୍ଦର ଆକାଶ' (୧୯୭୧) ଠାରୁ 'କପଟପାଶା' (୨୦୦୦) ପର୍ଯ୍ୟନ୍ତ ଉତ୍ତର-ସତୁରୀ କାଳରେ ପ୍ରକାଶିତ କବିଙ୍କ ଦଶଗୋଟି କାବ୍ୟଗ୍ରନ୍ଥ ଓ ସେଥିରେ ସ୍ଥାନିତ ବହୁ ଏକକ ଓ ବିଶେଷ କବିତା ମାନଙ୍କର ମୂଲ୍ୟାୟନ । ସୀତାକାନ୍ତଙ୍କର ମିଥ୍ ପ୍ରୟୋଗ, ଦାର୍ଶନିକତା, ସୌନ୍ଦର୍ଯ୍ୟବୋଧ, ସମୟ ଚେତନା, ଶବ୍ଦ ସହିତ ଆତ୍ମୀୟତାବୋଧ, ଈଶ୍ୱର ଅନୁଚିନ୍ତନ, ନଦୀ ମନସ୍କତା, ସମକାଳନିଷ୍ଠତା ଆଦି ଏଥିରେ ବିଶେଷଭାବେ ସମୀକ୍ଷିତ । ସମୀକ୍ଷଣରେ ସବୁ କାବ୍ୟଗ୍ରନ୍ଥ ନେଇ ନିର୍ଦ୍ଦିଷ୍ଟ ଓ ନିର୍ଣ୍ଣୟାତ୍ମକ ମତ ରହିଛି । ଏଠାରେ ସମୀକ୍ଷକଙ୍କର କବିତା ନିମଜ୍ଜନ ଓ ଦ୍ରଷ୍ଟାତୁଲ୍ୟ ବୀକ୍ଷଣ ନେଇ ଉଦ୍ଧୃତିଟିଏ ଉପସ୍ଥାପନ କରେ । "ସୀତାକାନ୍ତଙ୍କ ଉତ୍ତର-ସତୁରୀ କାବ୍ୟ ଚେତନାର ବହୁ ଦିଗ ଓ ଦିଗନ୍ତ ବହୁ ବିସ୍ତାରିତ, ନାନାବିଧ, ବିଚିତ୍ର ଓ ଶବଳିତ ବୋଲି ଆଗରୁ ସୂଚ୍‌ନା ଦିଆଯାଇଛି । ସେ ଚେତନାରେ କେବେକେବେ କଳାଗତ ସାର୍ଥକତା ଅଛି; କେବେ ବା ଅଛି ଦୀର୍ଘକାୟ ବିଫଳତା କିନ୍ତୁ କବିର କାବ୍ୟଲାଳନା ରହିଛି ସବୁବେଳେ ଅବ୍ୟାହତ- ଏହାହିଁ ଆଶ୍ୱାସନାର ବିଷୟ । ଉତ୍ତର-ଷାଠିଏ ବୟସରେ ବହୁ ଓଡ଼ିଆ କବି ଅବକ୍ଷୟକୁ ଭେଟିଥିବାବେଳେ ସୀତାକାନ୍ତ ତଥାପି ଅଛନ୍ତି ସୃଷ୍ଟିପ୍ରବଣ; ହୁଏତ ସେ ମିଥ୍‌ର ଗର୍ମକୁ ହଜେଇ ବସିଛନ୍ତି କିନ୍ତୁ ଖୋଜିଛନ୍ତି ମାଟିର ଗନ୍ଧ ଓ ଆକାଶର ନୀଳ ବୈଚିତ୍ର୍ୟ ।" (ପୃ:୪୧୮)

କବି ରମାକାନ୍ତଙ୍କ ଚର୍ଚ୍ଚା ଅନୁରୂପ ଶୀର୍ଷରେ 'ପ୍ରେମ, ମୃତ୍ୟୁ ଓ ନିର୍ଜନତାର କବି ଦୀପକ ମିଶ୍ର' : କବିଙ୍କ ଉତ୍ତର ସତୁରୀ କାବ୍ୟଚିନ୍ତନକୁ ନେଇ ଷାଠିଏ ପୃଷ୍ଠାର ସନ୍ଦର୍ଭ । କବିଙ୍କ 'ନିର୍ଜନ ନକ୍ଷତ୍ର' (୧୯୭୧) ଠୁ 'ନିଦାଘ ଯାତ୍ରା' ୧୯୯୯ ପର୍ଯ୍ୟନ୍ତ ନଅଗୋଟି କାବ୍ୟଗ୍ରନ୍ଥ ଓ ତା'ର ଏକକ କବିତାକୁ ଆଧାର କରି ନିତ୍ୟାନନ୍ଦଙ୍କର ମୂଲ୍ୟାୟନ । କବିଙ୍କ ପ୍ରେମ, ଦେହବୋଧ, ମୃତ୍ୟୁଚେତନା, ସମୟ ଓ ସମକାଳନିଷ୍ଠତା, ଆତ୍ମଗତଭାବନା, ଦାର୍ଶନିକତା, ବୌଦ୍ଧିକତା, କାବ୍ୟିକ ଦୁର୍ବଳତା ସର୍ବୋପରି ପରୀକ୍ଷା ନିରୀକ୍ଷା ନେଇ ସମୀକ୍ଷକ ଚର୍ଚ୍ଚାରେ ପ୍ରଯତ୍ନ କରିଛନ୍ତି । ଏଥିରେ ବି ଅଛି ତୁଳନା, ବହୁ ନିର୍ଦ୍ଦିଷ୍ଟ ଓ ନିର୍ଣ୍ଣୟାତ୍ମକ ଅଭିମତ । ସମୀକ୍ଷକଙ୍କ ଦୃଷ୍ଟିକୋଣରୁ ଚିହ୍ନିତ କରିବା ପାଇଁ ଏଠାରେ ଗୋଟିଏ ଅଭିମତର ଅବତାରଣା "ତାଙ୍କ କବିତାରେ ନୀଳ ଶବ୍ଦର ଯଥେଚ୍ଛା ବ୍ୟବହାର - କେତେବେଳେ ସମ୍ମୋହନ ଅର୍ଥରେ, କେତେବେଳେ ଆକାଶ/ସମୁଦ୍ରର ବ୍ୟାପ୍ତି ଅର୍ଥରେ, କେତେବେଳେ ମୃତ୍ୟୁ ଅର୍ଥରେ, କେତେବେଳେ ରୋମାଣ୍ଟିକ୍ ଚେତନାକୁ ବହନ କରୁଥିବା କୌଣସି ଭାବବିନ୍ଦୁରେ ଓ ମୁକ୍ତି ଅର୍ଥରେ ପ୍ରଯୁକ୍ତ ହୋଇଛି । ନୀଳ ଶବ୍ଦ ସହିତ ସତେଯେପରି କବିଙ୍କର ଅଭେଦ ସଂପର୍କ ପ୍ରତିଷ୍ଠିତ ହୋଇଯାଇଛି । ପୁଣି ନିର୍ଜନତାବୋଧ ତାଙ୍କ କାବ୍ୟଚେତନାର ଏକ ସାମଗ୍ରିକତା ଯାହା ତାଙ୍କ କବିତାର ଦୈର୍ଘ୍ୟ ଓ ପ୍ରସ୍ଥକୁ ଆଚ୍ଛନ୍ନ କର

ରହିଛି । ସେଥିପାଇଁ ଦେହଜ ପ୍ରେମର ଉଗ୍ରତା ଓ ତାକୁ ହରାଉଥିବାର କାରୁଣ୍ୟ ମଧ୍ୟ ବହୁ କବିତାରେ ଅନାୟାସ ଲକ୍ଷ୍ୟ । ସେଥିପାଇଁ ମୁଁ ତାଙ୍କୁ ଦେହଜ ପ୍ରେମ ଓ ନୀଳ ନିର୍ଜନତାର କବି ଭାବେ ଚିହ୍ନିତ କରିଛି ।" (ପୃ:୪୭୮)

"କ୍ରାନ୍ତିକାରୀ ରୋମାଣ୍ଟିକ୍ ମାନବବାଦୀ କବି ବ୍ରଜନାଥ ରଥ" ଶୀର୍ଷକରେ କବି ବ୍ରଜନାଥ ରଥଙ୍କ ଉତ୍ତର-ସତୁରୀ କାବ୍ୟଚେତନା ବିଷୟକ ସନ୍ଦର୍ଭ ଯେଉଁଠି କବିଜୀବନର ପ୍ରାରମ୍ଭ ଗ୍ରନ୍ଥ 'ମରୁଗୋଲାପ' (୧୯୬୦)ର ସୂଚନାଧର୍ମୀ ଆକଳନଠୁ 'ନିଜସ୍ୱ ସଂଳାପ' (୧୯୬୯) ଦେଇ 'ହେ ମୋର ସ୍ୱଦେଶ' (୧୯୯୭) ଯାଏ ଚର୍ଚ୍ଚା ରହିଛି । ରହିଛି ମଧ୍ୟ ୧୯୯୩ ରୁ ୧୯୯୮ ଯାଏ ପତ୍ରପତ୍ରିକା ପ୍ରକାଶିତ କବିଙ୍କ କବିତାର ଆକଳନ । ରୋମାଣ୍ଟିକ୍ ବାସ୍ତବବାଦ ପର୍ଯ୍ୟାୟରୁ କବିଙ୍କ ସମକାଳନିଷ୍ଠତା, ବ୍ୟଙ୍ଗଜଗତ, ଦେଶ ଓ ବିଶ୍ୱ ସଂପ୍ରୀତି ଆଦି ନାନା ପ୍ରସ୍ତକୁ ସମୀକ୍ଷକ ସମାଜ-ରାଜନୀତିକ ପୃଷ୍ଠପଟ ଅଧ୍ୟାୟରେ ଉନ୍ମୋଚିତ କରିଛନ୍ତି । ବିଭିନ୍ନ କାବ୍ୟଗ୍ରନ୍ଥ ଓ ବହୁ ଏକକ କବିତା ଆଧାରରେ ପ୍ରଗତିବାଦୀ କାବ୍ୟଦର୍ଶନ ଓ ପ୍ରୟୋଗବାଦୀ ରଚ଼ନା ପାଟବ ସମନ୍ୱୟରେ ବ୍ରଜନାଥଙ୍କ କାବ୍ୟଜଗତ ଆଲୋକିତ ହୋଇଛି । ସମୀକ୍ଷକଙ୍କର ବହୁ ନିର୍ଣ୍ଣୟାତ୍ମକ ମତ ଭିତରୁ ଉଦ୍ଧୃତିଟିଏ ରଖେଁ । "ପଚାଶ ବର୍ଷର କାବ୍ୟ ସରଣୀରେ ବ୍ରଜନାଥ ନିଷ୍ଚିତଭାବେ ଜଣେ ସିଦ୍ଧିପ୍ରଦ ସଫଳ କବି । ତାଙ୍କ କାବ୍ୟସାଧନା ଯେପରି ଅବ୍ୟାହତ, କବିତାକୁ ନେଇ ବଞ୍ଚିବାର ପ୍ରୟାସ ସେହିପରି ବିସ୍ମୟକର । ସମ୍ପୂର୍ଣ୍ଣ ପ୍ରାକୃତିକ ପରିବେଶ ମଧ୍ୟରେ ବଞ୍ଚୁଥିବା ଏ କବିଙ୍କ କବିତାର ତଥାପି ଆଧ୍ୟାତ୍ମିକ ଉତ୍ତରଣ ଆସିନାହିଁ । ବୋଧହୁଏ ରୁଢ଼ ବାସ୍ତବତା ଓ ଦୃପ୍ତମାନବବାଦକୁ କବି ଏ ପର୍ଯ୍ୟନ୍ତ କାବ୍ୟଚେତନାର ଅଙ୍ଗୀକାରଭାବେ ଧରି ରଖିଥିବାରୁ ସପ୍ତମ ଋତୁ ବା ସପ୍ତମ ପୃଥିବୀ ପ୍ରତି ଦୃଷ୍ଟିପାତ କରିପାରି ନାହାନ୍ତି । ତଥାପି ତାଙ୍କ କବିତାରେ ଉତ୍ତରଣ ନ ଆସିବ କହିହେବନି ।" (ପୃ:୫୩୦) ଏ ପ୍ରସଂଗରେ ସମୀକ୍ଷକ ହୁଏତ ପ୍ରଗତିବାଦୀ କବି ରଘୁନାଥ ଦାସଙ୍କ ଅଧ୍ୟାତ୍ମ ଦୃଷ୍ଟିଭଂଗୀ କଥା ସ୍ମରଣରେ ଆଣିଥିବେ । ନିତ୍ୟାନନ୍ଦଙ୍କ ଏ ଚର୍ଚ୍ଚା ପ୍ରସ୍ତୁତି ପରେ କବିଙ୍କର ୨୦୦୭ରେ ଦୁଇଟି କାବ୍ୟଗ୍ରନ୍ଥ 'ସମୟର ଶବ୍ଦଲିପି', 'ସାମାନ୍ୟ ଅସାମାନ୍ୟ' ଶୀର୍ଷକରେ ପ୍ରକାଶିତ ହୋଇଛି ଓ ପତ୍ରପତ୍ରିକାରେ ରହିଛି ରାଶି ରାଶି କବିତା । କାବ୍ୟଚେତନାର ଉତ୍ତରଣ ଯେ ସର୍ବତ୍ର ଆଧ୍ୟାତ୍ମିକତା ସଂପନ୍ନ ଯାହା କୁହାଯାଇଛି ତାହା ଅବଶ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ଅଭିମତଟିଏ; ସବୁ କବିଙ୍କ କ୍ଷେତ୍ରରେ ଏହା ପ୍ରଯୁଜ୍ୟ ହୋଇନପାରେ ବୋଲି ମୁଁ ଭାବେ । କାବ୍ୟଚିନ୍ତନର ପରିଣତି ଓ ପରିପକ୍ୱତାର ପରିଭାଷା ବ୍ରଜନାଥ ରଥଙ୍କ ପାଇଁ ହୁଏତ ଭିନ୍ନ ହୋଇପାରେ । ସମଗ୍ର ଚର୍ଚ୍ଚା ଗ୍ରନ୍ଥରେ ରଘୁନାଥ ଦାସ ଓ ବ୍ରଜନାଥ ରଥଙ୍କ ଆଭିମୁଖ୍ୟଗତ ସ୍ୱର ସାମ୍ୟ ଥିବା ସତ୍ତ୍ୱେ ଉପସ୍ଥାପନ ଓ ଭାବକଳ୍ପରେ ରହିଛି ବହୁ ଫରକ୍ ।

ଏ ବୃହତ୍ତମ ଚର୍ଚ୍ଚା ଗ୍ରନ୍ଥର ଶେଷ ସନ୍ଦର୍ଭ ବିଷାଦ ଓ ସମ୍ମୋହନର କବି ପ୍ରତିଭା ଶତପଥୀ । କବିଙ୍କ ଗ୍ରସ୍ତ ସମୟ (୧୯୭୪) ଠୁ 'ତନ୍ମୟଧୂଳି' (୧୯୯୬) ଯାଏ କାବ୍ୟଗ୍ରନ୍ଥ

ଓ ଏକକ କବିତା ମାନଙ୍କର ଏହା ମୂଲ୍ୟାୟନ । ଚର୍ଚ୍ଚିତ ପ୍ରତିଟି କାବ୍ୟସ୍ୱରର ଭାବଗତ କିଛି ସାମ୍ୟତା ସତ୍ତ୍ୱେ ସମସ୍ତେ ସ୍ୱତନ୍ତ୍ର । ସେଇ ଦୃଷ୍ଟିରୁ ନାରୀସ୍ୱରଭାବେ ପ୍ରତିଭା ଶତପଥୀଙ୍କ କବିତା ବହୁତ ଭିନ୍ନ । ଏଇ ଭିନ୍ନତାକୁ କବିଙ୍କ ସାମାଜିକ-ଆର୍ଥନୀତିକ ପୃଷ୍ଠପଟ ଓ ନାରୀମାନସିକତା ଦୃଷ୍ଟିରୁ ମଧ୍ୟ ଚର୍ଚ୍ଚା କରାଯାଇଛି । ବିଷାଦ ସମ୍ମୋହନ ସହିତ ପ୍ରତିଭାଙ୍କ ଅସୀମ ବିଳାସ, ଅଧ୍ୟାତ୍ମ ଦୃଷ୍ଟି ଓ ସୌନ୍ଦର୍ଯ୍ୟ ଅନୁରାଗ ମଧ୍ୟ ଚର୍ଚ୍ଚାରେ ପ୍ରାଧାନ୍ୟ ପାଇଛି । କବିଙ୍କ କାବ୍ୟିକ ବିବର୍ତ୍ତନ ଓ ଉତ୍ତରଣ ପର୍ବରେ 'ଶବରୀ' (୧୯୯୧)ର ବିଶେଷ ଚର୍ଚ୍ଚା ମଧ୍ୟ ଲକ୍ଷ୍ୟଣୀୟ । ଏଥିରେ ମୀରାବାଈ, ମହାଦେବୀ ବର୍ମା, କୁନ୍ତଳା କୁମାରୀ, ରବୀନ୍ଦ୍ରନାଥ ଓ ରମାକାନ୍ତ ରଥଙ୍କ ପ୍ରସଙ୍ଗୋଚିତ ଉଲ୍ଲେଖ ଏକ ତୁଳନାତ୍ମକ ପରିମଣ୍ଡଳ ସୃଷ୍ଟି କରେ । ସମୀକ୍ଷକ ନିତ୍ୟାନନ୍ଦଙ୍କର ବହୁ ନିର୍ଣ୍ଣୟାତ୍ମକ ମତରୁ ଏଠାରେ ଗୋଟିଏ ଉଲ୍ଲେଖ କରେ । "ଧୂଳିଧୂସର ଧରଣୀର ତନ୍ମୟତାରେ ବିଭୋର ହେଉ ହେଉ କବି ଆକାଶରେ ଦେଖାଯାଉଥିବା ନକ୍ଷତ୍ରମାନଙ୍କ ଆଡ଼କୁ ହାତ ବଢ଼େଇ ରହନ୍ତି । ଜିଆ ବା ଲାଙ୍ଗୁଡ଼ାପୋକ ପରି ମାଟି ଓ ନର୍ଦ୍ଦମାରେ ଘୁଷୁରନ୍ତି ସତ; କିନ୍ତୁ ଅନ୍ତରର ସୁକୁମାର ଭାବସ୍ପନ୍ଦନଟିକୁ ସବୁବେଳେ ନାକ୍ଷତ୍ରିକ ଅଭିଳାଷରେ ପବିତ୍ରିତ କରି ରଖିଥାନ୍ତି । ମାଟି ତାଙ୍କୁ ବିଷାଦ ଦେଲେ ବି ଆକାଶ ଓ ନକ୍ଷତ୍ରମାଳା ସମ୍ମୋହନରେ ତାଙ୍କ ମାନସିକତାକୁ ଏକ ଉର୍ଦ୍ଧ୍ୱାୟିତ ଚେତନାରେ ଜାରିତ କରି ରଖେ ।" (ପୃ:୫୮୫)

'ସତୁରୀରୁ ସହସ୍ରାବ୍ଦୀ' ପ୍ରକୃତ ପକ୍ଷରେ ଦଶଜଣ ପ୍ରମୁଖ କବିଙ୍କ ସଂପର୍କରେ ଦଶଗୋଟି ସନ୍ଦର୍ଭ । କବିତାର ଆତ୍ମା ଓ ଅଭିବ୍ୟକ୍ତି ସହ ପାଠକୀୟ ସେତୁ ଯୋଡ଼ିବା ପାଇଁ ଏକ ମହତ୍ତର ପ୍ରଚେଷ୍ଟା । ଏଇ ମୂଲ୍ୟାୟନ ବହୁ ପର୍ଯ୍ୟାୟରେ ସର୍ଜନାତ୍ମକ ରହିବା ସହିତ ଏଥିରେ ଓଡ଼ିଆ କାବ୍ୟ ଐତିହ୍ୟ, ପାଶ୍ଚାତ୍ୟ ଓ ଭାରତୀୟ କାବ୍ୟଧାରାର ପ୍ରସଙ୍ଗୋଚିତ ଉଲ୍ଲେଖ, କବି ଓ କବିତାର ସାମାଜିକ-ସାଂସ୍କୃତିକ ପୃଷ୍ଠଭୂମି ଓ କ୍ଷେତ୍ର ବିଶେଷରେ ତୁଳନାତ୍ମକ ବୀକ୍ଷଣ ରହିଛି । 'ସବୁଜରୁ ସାଂପ୍ରତିକ' ପୁସ୍ତକ ପରି ବର୍ଷ ମାସ ଆଧାରରେ ପତ୍ରିକା ଜଗତରୁ କବିତା ସଂଗ୍ରହ କରି ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ କବିତାକୁ ମୂଲ୍ୟାୟନ କରିବାର ସ୍ପର୍ଦ୍ଧା ଓ ସାଧନା ସମକାଳରେ ଦ୍ୱିତୀୟ ନାହିଁ । ସେହିପରି ପ୍ରମୁଖ କାବ୍ୟଗ୍ରନ୍ଥ ଆଧାରରେ ଦଶଜଣ ବିଶିଷ୍ଟ କବିଙ୍କ ହଜାରରୁ ଉର୍ଦ୍ଧ୍ୱ ଏକକ କବିତାର ବିଶ୍ଳେଷଣ କରି କବିଙ୍କୁ ମୂଲ୍ୟାୟନ କରିବାର ଉଦାହରଣ ପାଇଁ 'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥଟି ବି ପ୍ରଥମ । ଆଧୁନିକ କବିତାକୁ ପାଠକପ୍ରିୟ କରାଇ ଦୁର୍ବୋଧ୍ୟତା ତଥା ଜଟିଳତାର ଅବବୋଧରୁ ମୁକ୍ତ କରାଇବା ପାଇଁ ଏହା ଐକାନ୍ତିକ ପ୍ରଚେଷ୍ଟା । କବିତା ଚର୍ଚ୍ଚା ନେଇ ଏଭଳି ପ୍ରତିବଦ୍ଧତା ବା ନିଷ୍ଠା ଯଥାର୍ଥରେ ବିରଳ । 'ସବୁଜରୁ ସାଂପ୍ରତିକ'ରେ କାବ୍ୟଶିଳ୍ପୀଙ୍କ ଭାବଚେତନା ସହିତ କେଉଁଠି କେଉଁଠି ଆଙ୍ଗିକ ବିଭବ ନେଇ ଚର୍ଚ୍ଚା ପରିଲକ୍ଷିତ ହେଲାବେଳେ 'ସତୁରୀରୁ ସହସ୍ରାବ୍ଦୀ'ରେ ଆତ୍ମିକ ବିଭବର ଚର୍ଚ୍ଚା ହିଁ ପ୍ରାଧାନ୍ୟ ପାଇଛି ।

ଏହି ମୂଲ୍ୟାୟନ ଧାରାରେ ଆଉ ଏକ ସଂଯୋଗ ସମାଲୋଚକ ନିତ୍ୟାନନ୍ଦ ଶତପଥୀ ବିରଚିତ 'କବିତା-ସେତୁ' (୨୦୦୯) । ଏଥିରେ ସନ୍ନିବିଷ୍ଟ ୧୨ଗୋଟି ଚର୍ଚ୍ଚା ମଧ୍ୟରୁ 'ସତୁରୀରୁ ସହସ୍ରାବ୍ଦୀ' ଧାରାର ତିନୋଟି ଚର୍ଚ୍ଚା । ଚର୍ଚ୍ଚା ଗୁଡ଼ିକର ଶୀର୍ଷକ 'କବି ରାଉତରାୟ ଶେଷତମ ଗ୍ରନ୍ଥ - କବିତା ୨୦୦୩', 'ଉତ୍ତର-ଜୀବନ ଅନୁଚିନ୍ତା - 'ସାମାନ୍ତବାସ' - ଫେରି ଚାହିଁଲେ' - ନ ଯା' ନ ଯା' କହୁ କହୁ', 'ସୀତାକାନ୍ତଙ୍କ ସାରାଜୀବନ ଲୋକଟା' । ଏ ଚର୍ଚ୍ଚାର ପ୍ରସ୍ତୁତି ପରେ ବି ରମାକାନ୍ତଙ୍କର ତିନୋଟି କବିତା ଗ୍ରନ୍ଥ ଏବଂ ସୀତାକାନ୍ତଙ୍କର ଚାରୋଟି କବିତାଗ୍ରନ୍ଥ ପ୍ରକାଶିତ ହୋଇସାରିଲାଣି । ସମକାଳର କବି ହରିହର ମିଶ୍ରଙ୍କ ବିଭିନ୍ନ କବିତା ଗ୍ରନ୍ଥ ଆଧାରରେ 'ହରିହର ମିଶ୍ରଙ୍କ କବିତାରେ ଜଗନ୍ନାଥ ଚେତନା' କବି ସୌରୀନ୍ଦ୍ର ବାରିକଙ୍କ ୭ଗୋଟି କବିତା ଗ୍ରନ୍ଥ ଆଧାରରେ 'ପ୍ରେମ, ପ୍ରକୃତି ଓ ପୌରାଣିକତାର କବି ସୌରୀନ୍ଦ୍ର ବାରିକ' ରଚନା କରିବା ସହିତ ନିତ୍ୟାନନ୍ଦ 'ଅକାତକାତ' କବିତା ଗ୍ରନ୍ଥ ଆଧାରରେ କବି ପ୍ରମୋଦ କୁମାର ମହାନ୍ତି ଏବଂ 'ରକ୍ତବର୍ଣ୍ଣ ବାଲି' ଆଧାରରେ କବି ଆଶୁତୋଷ ପରିଡ଼ାଙ୍କର ମୂଲ୍ୟାୟନ କରିଛନ୍ତି । 'ସବୁଜରୁ ସାଂପ୍ରତିକ'ରେ ଉପସ୍ଥାପିତ କବି ଚିନ୍ତାମଣି ବେହେରା ଓ ରଜନୀକାନ୍ତ ଦାସଙ୍କ ସଂପର୍କରେ ସେମାନଙ୍କ ପରବର୍ତ୍ତୀ ସଂକଳନ ମାନଙ୍କର ନିର୍ଦ୍ଦିଷ୍ଟ କବିତାକୁ ନେଇ ଦୁଇଟି ପୂର୍ଣ୍ଣାଙ୍ଗ ଚର୍ଚ୍ଚା 'ପ୍ରେମ ଓ ପରିତାପର କବି ଚିନ୍ତାମଣି ବେହେରା' ଓ 'ବିସ୍ମୃତ କବି ରଜନୀକାନ୍ତ ଦାସ', 'କବିତା-ସେତୁ' ଗ୍ରନ୍ଥରେ ସ୍ଥାନିତ । ଏ ମୂଲ୍ୟାୟନ ସେମାନଙ୍କ ସାମଗ୍ରିକ କାବ୍ୟଜଗତକୁ ଆଲୋକିତ କରିବାର ଏକନିଷ୍ଠ ପ୍ରୟାସ ।

'ଓଡ଼ିଆ ନବଜାଗରଣ ଓ କବି ରାଧାନାଥ','ଓଡ଼ିଆ କବିତାକୁ ବାଲେଶ୍ୱରର ଅବଦାନ' ଏ ଗ୍ରନ୍ଥର ଆଉ ଦୁଇଟି ସମୀକ୍ଷଣ । 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାର ଆଙ୍ଗିକ ପକ୍ଷ' ଗ୍ରନ୍ଥଟିର ଶେଷ ଚର୍ଚ୍ଚା । ଏହା ପ୍ରାଚ୍ୟ ଓ ବିଶେଷତଃ ପାଶ୍ଚାତ୍ୟ ତତ୍ତ୍ୱ ଆଧାରରେ ଓଡ଼ିଆ କବିତାର ଭାଷା, ରୂପକଳ୍ପ, ପ୍ରତୀକ, ଛନ୍ଦ, ଯୋଜନା ଆଦିର ସ୍ୱରୂପ ନିର୍ଣ୍ଣୟ । 'କବିତା-ସେତୁ'ରେ ନିତ୍ୟାନନ୍ଦୀୟ ସମୀକ୍ଷାଧାରା ଆଉ କତିପୟ କବି ଓ ଅନାଲୋକିତ ବିଭବକୁ ନୂଆଭାବେ ଆଲୋକିତ କରିଛି । କବିଙ୍କ ବୈଶିଷ୍ଟ୍ୟ ନିରୂପଣ ସହ ସେମାନଙ୍କ କାବ୍ୟକୃତି ସଂପର୍କରେ ବହୁ ନିର୍ଣ୍ଣୟାତ୍ମକ ମତପୋଷଣ ଏବଂ କ୍ଷେତ୍ର ବିଶେଷରେ ଓଡ଼ିଆ କବିତାରେ ସ୍ଥାନ ନିରୂପଣ ଏ ସବୁ ଚର୍ଚ୍ଚାରେ ଲକ୍ଷ୍ୟ କରାଯାଇପାରେ । କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଶେଷ କବିତା ଗ୍ରନ୍ଥ କବିତା ୨୦୦୩ ର ମୂଲ୍ୟାୟନ ପ୍ରସଂଗରେ ଗୋଟିଏ ମାତ୍ର ଉଦ୍ଧୃତିର ଉଲ୍ଲେଖ କରେ । "ମୋ ମତରେ ସେ ହିଁ ବିଶ୍ୱକବି ଯେ ବିଶ୍ୱର ବହୁବିଧ ସମସ୍ୟା ପ୍ରତି ଦୃଷ୍ଟି ସଂଚାଳନ କରିଥାଏ; ବିଶ୍ୱ ମାନବାତ୍ମାର ପ୍ରମୁକ୍ତି ପାଇଁ ତା'ର କବିତାରେ ଥାଏ ଦରଦ ଓ ଦର୍ଶନ; ଦେଶ କାଳର ସୀମା ସରହଦ ଭୁଲି ଯେ ବିଶ୍ୱକୁ ଆପଣାର କରି ଆଉଜେଇ ନିଏ ଏବଂ ବିଶ୍ୱମଣିଷର ଯନ୍ତ୍ରଣା ଓ ଦୁକୁଦୁକି ସହ ନିଜର ଅଶ୍ରୁ ଓ ଆକୁଳତାକୁ

ମିଶାଇ ଦେଇପାରେ । ଏ ଦୃଷ୍ଟିରୁ କବି ରାଉତରାୟଙ୍କୁ 'ବିଶ୍ୱକବି' ଭାବେ ସ୍ୱୀକୃତି ଦେବା ବୋଧହୁଏ ଅଯଥାର୍ଥ ହେବନାହିଁ ।" (ପୃ:୩୬, କବିତା-ସେତୁ) । ଏ ମତଟି କବି ରାଉତରାୟଙ୍କ ପାଇଁ ଉଦ୍ଦିଷ୍ଟ; କିନ୍ତୁ ତା' ଭିତରେ ଥିବା ଦୃଷ୍ଟିକୋଣଟି କାବ୍ୟ ସମାଲୋଚକ ନିତ୍ୟାନନ୍ଦଙ୍କର । ଏହା ଦ୍ରଷ୍ଟାସୁଲଭ ଓ ସର୍ଜନାତ୍ମକ, ମୌଳିକ ଓ ଆବେଗାତ୍ମକ' । ଏ ଚର୍ଚ୍ଚାର କଳେବରକୁ ସୀମିତ ରଖୁଥିବାରୁ 'କବିତା-ସେତୁ'ର ଏକ ପରିଚୟାତ୍ମକ ସୂଚନା ହିଁ ଉପସ୍ଥାପନ କରାଯାଇଛି ।

ମୋ ଚର୍ଚ୍ଚାର ଶେଷଗ୍ରନ୍ଥ 'କାବ୍ୟଦୃଷ୍ଟି କାବ୍ୟ ବିଚାର' (୨୦୧୫) । ଏ ଗ୍ରନ୍ଥର ୧୫ ଗୋଟି ଆଲୋଚନାରୁ ୧୨ଗୋଟି ଆଲୋଚନା ନିତ୍ୟାନନ୍ଦଙ୍କ ପୂର୍ବ ପ୍ରକାଶିତ 'କାବ୍ୟପ୍ରକରଣ' (୧୯୯୩) ଗ୍ରନ୍ଥରେ ସ୍ଥାନିତ ହୋଇଥିଲା । ସାହିତ୍ୟରେ ବିଶେଷକରି ଆଧୁନିକ କବିତାରେ ତା'ର ଆତ୍ମିକ ଦିଗନ୍ତ ଓ  କଳା କାରିଗରୀ ନେଇ ଯେଉଁ ପରିବର୍ତ୍ତନ ଓ ପରୀକ୍ଷା ନିରୀକ୍ଷାର ସୂତ୍ରପାତ  ହୋଇଥିଲା ତା'ର ଭୂମି ପାଶ୍ଚାତ୍ୟ ଜଗତ, ମୂଳତଃ ୟୁରୋପ । ଇଂଲଣ୍ଡ ଓ ଫ୍ରାନ୍ସର ଅବଦାନ ସେଥିରେ ସର୍ବାଧିକ । ଯଦିଓ ଜ୍ଞାନର ଅବଦାନ କ୍ଷେତ୍ରରେ ଗ୍ରୀସ୍, ଜର୍ମାନୀ, ଇଟାଲୀ ଆଦି ୟୁରୋପୀୟ ଦେଶର ଭୂମିକା ମଧ୍ୟ ରହିଛି । ସାହିତ୍ୟ ନେଇ ବିଭିନ୍ନ ଆନ୍ଦୋଳନ, School of thoughts ଏବଂ ତା'ର ପ୍ରଭାବରେ ବିକଶିତ ବିଭିନ୍ନ ତତ୍ତ୍ୱ ବା ବାଦ Ism ର ମୂଳ ଉତ୍ସ, ବିକାଶ ବିବର୍ତ୍ତନ ଓ ପ୍ରୟୋଗଶୀଳତାକୁ ନିତ୍ୟାନନ୍ଦ ସଂଧାନ କରିଛନ୍ତି, ଏଥିନେଇ ତାଙ୍କର ଶାସ୍ତ୍ରଦର୍ଶିତା, ତୁଳନାତ୍ମକ ଅବବୋଧ, ଓଡ଼ିଆ କବିତା ଧାରାରେ ତା'ର ପରୀକ୍ଷା ପ୍ରୟୋଗଗତ ଅନ୍ୱେଷଣ, ଆହରଣ-ସମୀକରଣ, ଅନୁଶରଣ, ଅନୁକରଣ ଏଇ ସବୁ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ସଂପର୍କରେ ଚର୍ଚ୍ଚା ଲେଖିବାକୁ ଅନୁପ୍ରେରିତ କରିଛି । ଏହାର ଫଳଶ୍ରୁତି କ୍ଳାସିସିଜିମ୍, ରୋମାଣ୍ଟିସିଜିମ୍, ପ୍ରତୀକବାଦ, କବିତାରେ ଚିତ୍ରକଳ୍ପ, ଅସ୍ତିତ୍ୱବାଦ ଓ ଓଡ଼ିଆ କବିତା ଅତିବାସ୍ତବବାଦୀ ଆଦି ରଚନା ବା ଆଲୋଚନା । ସ୍ୱତନ୍ତ୍ର ଚର୍ଚ୍ଚାର ଅପେକ୍ଷା ରଖିଥିବା ଏ ଲେଖାଗୁଡ଼ିକ ନିତ୍ୟାନନ୍ଦଙ୍କ ଅବଗାହନ, ମନନ ଓ ବିଶେଷଣକୁ ପ୍ରକାଶ କରେ ।

ପାଶ୍ଚାତ୍ୟ ତତ୍ତ୍ୱର ଘରିକାଠି ଧରି ତା'ର ପ୍ରୟୋଗ ଓ ସମୀକରଣର ସୂତ୍ର ଖୋଜିବା ଏ କ୍ଷେତ୍ରରେ ପ୍ରଧାନ କଥା । କ୍ଳାସିସିଜିମ୍ ପ୍ରସଂଗରେ କ୍ଳାସିକ୍ର ଗୁଣକୁ ସେ ମହାଯାତ୍ରା, ତପସ୍ୱିନୀ, ଛ'ମାଣ ଆଠଗୁଣ୍ଠ, ଅମୃତର ସନ୍ତାନ, ଶ୍ରୀରାଧା, ଶବରୀ ଆଦିରେ ସନ୍ଧାନ କରିଛନ୍ତି । ରୋମାଣ୍ଟିସିଜିମ୍ର ପ୍ରୟୋଗ ଓ ପ୍ରତିଫଳନ ଅର୍ଥାତ୍ ତା'ର ବିଭିନ୍ନ ବିଭବର ରୂପରାଗକୁ ରାଧାନାଥ, ଗଙ୍ଗାଧର, ମଧୁସୂଦନ, ସବୁଜ ସତୀର୍ଥଗଣ, ପଦ୍ମଚରଣ, ମାନସିଂହ, ଗଡ଼ନାୟକ, ସଚ୍ଚିଦାନନ୍ଦଙ୍କଠୁ ଆରମ୍ଭ କରି ଉତ୍ତର-ଷାଠିଏ କାଳର କାବ୍ୟସ୍ରଷ୍ଟାଙ୍କ ଲେଖାରେ ଚିହ୍ନିତ କରନ୍ତି । ଚିତ୍ରକଳ୍ପ, ପ୍ରତୀକ, ଅସ୍ତିତ୍ୱବାଦ, ଅତିବାସ୍ତବବାଦ ସଂପର୍କରେ ନିତ୍ୟାନନ୍ଦଙ୍କ ନିଜସ୍ୱ ବିଶ୍ଳେଷଣ ଓ ପର୍ଯ୍ୟବେକ୍ଷଣ ରହିଛି । ଚିତ୍ରକଳ୍ପ ଓ ପ୍ରତୀକର ଚର୍ଚ୍ଚା ପରିସରରେ ସେ

ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟଧାରା ସହିତ ସାଂପ୍ରତିକ କବିତାର ବିଶେଷ ପରିଚର୍ଚ୍ଚା କରିଛନ୍ତି । ବିଶେଷ କରି ଜଟିଳ କାବ୍ୟତତ୍ତ୍ୱ ଅତିବାସ୍ତବବାଦ ସଂପର୍କରେ ତାଙ୍କର ବିଶ୍ଳେଷଣ ବେଶ୍ ପ୍ରାଞ୍ଜଳ ଓ ଯୁକ୍ତିଯୁକ୍ତ । ସେହିପରି ଆଧୁନିକ ଓଡ଼ିଆ କବିତାରେ ଅତିଭୌତିକ/ ରହସ୍ୟବାଦୀ ଚେତନା ସମୀକ୍ଷକଙ୍କ ନିଜସ୍ୱ ମନନ ଓ ଅନୁଶୀଳନର ପରିଚ୍ଚାୟକ । ଉଦାହରଣଭାବେ ପ୍ରଦତ୍ତ କବିତା ଓ କାବ୍ୟଗ୍ରନ୍ଥର ବିଶ୍ଳେଷଣ ତାଙ୍କର ନିଜସ୍ୱ ଅବବୋଧ, ଉପଲବ୍ଧି ଓ ଦୃଷ୍ଟିକୋଣକୁ ପ୍ରକାଶ କରେ ।

'ସ୍ୱରାଜ୍ୟ ଆନ୍ଦୋଳନ ଓ ଓଡ଼ିଆ କବିତା', 'ସବୁଜରୁ ସାଂପ୍ରତିକ'ରେ ସ୍ଥାନିତ ପ୍ରସଂଗର କିଞ୍ଚିତ ବିସ୍ତାର ଓ ବିଶ୍ଳେଷଣ । ସେହିପରି ପ୍ରଗତିବାଦୀ ଓଡ଼ିଆ କାବ୍ୟଚେତନାର ଇତିହାସ ଓ ପରିସର ତାଙ୍କର 'ସବୁଜରୁ ସାଂପ୍ରତିକ' ସନ୍ଦର୍ଭ ଓ ଅନ୍ୟାନ୍ୟ ଆଲୋଚ଼ନାର ସମନ୍ୱୟରେ ଏକ ସ୍ୱତନ୍ତ୍ର ପ୍ରତିବେଦନ । 'ପରଂପରା ଓ ଆଧୁନିକତା' ଓ 'ଓଡ଼ିଆ କବିତାରେ ମୃତ୍ୟୁଚେତନା' ଶୀର୍ଷକର ଚର୍ଚ୍ଚା ଦ୍ୱୟ ନିତ୍ୟାନନ୍ଦଙ୍କ ସମୀକ୍ଷଣର ନିଜସ୍ୱ ଧାରା ଓ ଉପଲବ୍ଧିକୁ ସ୍ପଷ୍ଟ କରେ । ଗ୍ରନ୍ଥରେ ସନ୍ନିବିଷ୍ଟ ଆଧୁନିକ ଓଡ଼ିଆ କବିତା ସଂପର୍କିତ ଆଉ ତିନୋଟି ରଚ଼ନା 'ଆଧୁନିକ ଓଡ଼ିଆ କବିତାର ଭାଷା ଓ ଛନ୍ଦ', 'ଆଧୁନିକ ଓଡ଼ିଆ କବିତାର ସୀମା ଓ ସଂଜ୍ଞା', 'ସାଂପ୍ରତିକ ଓଡ଼ିଆ କବିତାର ଧାରା' ତାର ଭାବଜଗତ ଓ ଆଙ୍ଗିକ ପାଟବ ସଂପର୍କରେ ସମୀକ୍ଷକଙ୍କ ନିଜସ୍ୱ ପର୍ଯ୍ୟବେକ୍ଷଣ, ମନନ ଓ ବିଶ୍ଳେଷଣର ପରିପ୍ରକାଶ । ତେବେ 'କାବ୍ୟଦୃଷ୍ଟି କାବ୍ୟବିଚ଼ାର'ରେ ସ୍ଥାନିତ ଉପଯୁକ୍ତ ଚର୍ଚ୍ଚାମାନଙ୍କର ବିଶଦ ଆଲୋଚ଼ନା କରାଯାଇ ନିତ୍ୟାନନ୍ଦଙ୍କ ଦୃଷ୍ଟିଭଙ୍ଗୀ ଓ ଆଭିମୁଖ୍ୟକୁ ଚିହ୍ନିତ କରାଯାଇପାରିବ । ଏଠାରେ କେବଳ ଏ ଚର୍ଚ୍ଚାମାନଙ୍କର ସ୍ୱରୂପ ଓ ଆଭିମୁଖ୍ୟଗତ ପରିଚିତି ହିଁ ଉପସ୍ଥାପନ କରାଯାଇଛି ।

ଏହି ପରିପ୍ରେକ୍ଷୀରେ ଉତ୍ତର 'ଆଧୁନିକ ଓଡ଼ିଆ କବିତା' ଶୀର୍ଷକରେ ୬୦ ପୃଷ୍ଠାର ଚର୍ଚ୍ଚା କିଛି ପ୍ରଶ୍ନ ଉତ୍‌ଥାପନ କରେ । ନିତ୍ୟାନନ୍ଦଙ୍କ ବିଭିନ୍ନ ଚର୍ଚ୍ଚାରେ ଠାଏ ଠାଏ ଉତ୍ତର ଆଧୁନିକତାର ଉଲ୍ଲେଖ ରହିଛି ଏବଂ ଏ ଚର୍ଚ୍ଚାଟି ଏଇ ଧାରାରେ ଏକ ପୂର୍ଣ୍ଣାଙ୍ଗ ଆଲୋକପାତ । ପାଶ୍ଚାତ୍ୟ ସାହିତ୍ୟ ସମୀକ୍ଷଣର ତିନିଜଣ ତଦ୍‌ବିଦ୍ ହାବରମାସ୍, ଲିଓଟାର୍ଡ, ଫ୍ରେଡ୍‌ରିକ୍ ଜେମ୍‌ସନ୍‌ଙ୍କ ଉତ୍ତର ଆଧୁନିକତାର ଆଭିମୁଖ୍ୟକୁ ଉଲ୍ଲେଖ କରି ନିତ୍ୟାନନ୍ଦ କହନ୍ତି- "ଏ ସବୁ ଭାବନା ସେମାନଙ୍କ ପରିବେଶ ଅନୁଯାୟୀ ନିର୍ମିତ; ସେଥିରେ ଆମର କିବା ସଂପର୍କ ? ତେବେ କୌଣସି ସଂଜ୍ଞା ଅନୁସାରେ ନୁହେଁ ବରଂ ମୋ ମତରେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତାରେ ପ୍ରତିଫଳିତ ବିଭିନ୍ନ ଭାବଧାରା ଓ ପ୍ରସଙ୍ଗ ମଧ୍ୟରୁ ଉତ୍ତର ଆଧୁନିକତାର ଉପାଦାନକୁ ଖୋଜିବା ସବୁଠାରୁ ନିରାପଦ ହେବ ।" (ପୃ:୨୧୯) ସେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତାର ନୂତନତା ସଂପର୍କରେ ଆଲୋକପାତ କରିବାକୁ ଯାଇ ନଅଗୋଟି ବିଶେଷତ୍ୱର ଉଲ୍ଲେଖ କରିଛନ୍ତି । ପାଶ୍ଚାତ୍ୟ ଭୂମି ଓ ସଂସ୍କୃତି ଭିନ୍ନ ହେଲେ ହେଁ ଏକଦା

ଏଠାକୁ ଆସିଥିବା ଆଧୁନିକତା ପରି (ଯେଉଁଥିରେ ଅସ୍ତିତ୍ୱବାଦ ଓ ଅତିବାସ୍ତବବାଦ ପର କାବ୍ୟତତ୍ତ୍ୱକୁ ଓଡ଼ିଆ କବିତାରେ ଗୁରୁତ୍ୱ ଦିଆଯାଇଛି) ଉତ୍ତର ଆଧୁନିକତାକୁ କବିତାର ଅଂଗ ଓ ଆତ୍ମାରେ ଖୋଜିବା, ତା'ର ପରୀକ୍ଷା ଓ ପ୍ରୟୋଗ ଏଠାରେ କେତେଭାବେ ସଂପନ୍ନ ହୋଇଛି ତାକୁ ନିର୍ଦ୍ଦିଷ୍ଟ କରିବା ନିଶ୍ଚିତ ଭାବରେ ଆଉ ଏକ ବିଚାର । ସମୀକ୍ଷକ ନିତ୍ୟାନନ୍ଦଙ୍କ ଉତ୍ତର ଆଧୁନିକ ଚର୍ଚ୍ଚାରେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା ଚର୍ଚ୍ଚିତ ହେଲେହେଁ ପ୍ରଦତ୍ତ ଉଦାହରଣରୁ ବହୁ ପ୍ରସଙ୍ଗ ଏହାର ପୂର୍ବବର୍ତ୍ତୀ ସମୟର ଯଥା : ସୀତାକାନ୍ତ ମହାପାତ୍ରଙ୍କ 'ପରକୀୟା' ଦୀର୍ଘ କବିତା (ପ୍ରଥମେ 'ନବରବି'ରେ ପ୍ରକାଶିତ), 'ଆରଦୃଶ୍ୟ' (୧୯୮୧)ର ପାଞ୍ଚଗୋଟି ଗୁରୁତ୍ୱପୂର୍ଣ୍ଣ କବିତା, 'ଚିତ୍ରନଦୀ' (୧୯୭୯)ର 'ଘାସଫୁଲ' ଓ 'ବୁଢ଼ାଶିକାରୀ' କବିତା, ଶରତଚନ୍ଦ୍ର ପ୍ରଧାନଙ୍କ 'ନଈ ଆଉ ମାଛ ହଂସ ଓ ସାରସ' କବିତାଗ୍ରନ୍ଥ ଲୋକଗୀତ ଛନ୍ଦରେ ରଚିତ କବିତା, 'ଶୈଳକଚ୍ଛ' (୧୯୮୧ : ରାଜେନ୍ଦ୍ର କିଶୋର ପଣ୍ଡା)ଙ୍କ 'ଝିଅପାଇଁ ଗୋଟିଏ କବିତା', ସମୟଚେତନା ନେଇ ରମାକାନ୍ତ ରଥଙ୍କର 'ସନ୍ଦିଗ୍ଧ ମୃଗୟା' ଓ 'ସପ୍ତମ ଋତୁ' (୧୯୭୭)ର କବିତା, ପ୍ରତିଭା ଶତପଥୀଙ୍କ 'ଗ୍ରସ୍ତ ସମୟ' (୧୯୭୪)ର 'ସାବିତ୍ରୀ ଉବାଚ' କବିତା ପ୍ରଭୃତି । ଏଣୁ ଏ ଚର୍ଚ୍ଚା ୧୯୬୫-୭୦ ପରବର୍ତ୍ତୀ ୪୦ ବର୍ଷର ଓଡ଼ିଆ କବିତାର ନୂତନତାକୁ ହିଁ ସୂଚାଉଛି ।

ଆଲୋଚ୍ୟ ଚାରିଗୋଟି ଚର୍ଚ୍ଚା ବା ସମାଲୋଚନା ଗ୍ରନ୍ଥରେ ନିତ୍ୟାନନ୍ଦଙ୍କ ବିଶ୍ଳେଷଣ ଓ ଅଭିମତ ସହିତ ସମସ୍ତେ ଯେ ଏକମତ ହେବେ ଏହା ଆଶା କରାଯାଇ ନପାରେ । ଏ ସମୀକ୍ଷଣ ଭିନ୍ନମତ ଓ ପ୍ରତିଚର୍ଚ୍ଚା ସୃଷ୍ଟି କରିବାର ପରିମଣ୍ଡଳ ମଧ୍ୟ ସୃଷ୍ଟି କରେ । ମୁଖ୍ୟତଃ ବିଂଶ ଶତାବ୍ଦୀର ଓଡ଼ିଆ କବିତାର ବ୍ୟାପ୍ତି ଓ ଦୀପ୍ତିକୁ ଏହା ଆଲୋକିତ କରେ । ଏହା ପାଠକଙ୍କ ବୋଧ ଓ ଆଗ୍ରହକୁ ପ୍ରରୋଚିତ କରିବାର ବହୁ ଅବକାଶ ସୃଷ୍ଟି କରେ । କବିତାର ସମୀକ୍ଷଣରେ ସମାଲୋଚକ ନିତ୍ୟାନନ୍ଦ ଶତପଥୀଙ୍କ ନିଷ୍ଠା ଓ ପ୍ରତିବଦ୍ଧତା, ବିଶ୍ଳେଷଣ ଓ ସିଦ୍ଧାନ୍ତ ପରବର୍ତ୍ତୀ ପିଢ଼ିର କବିତା ସମୀକ୍ଷଣ ନିମିତ୍ତ ବିଶେଷ ଭୂମି ଓ ଭୂମିକା ତଥା ମାର୍ଗ ପ୍ରସ୍ତୁତ କରିଛି ବୋଲି କହିବାକୁ ହେବ ।

■ *ପୂର୍ବତନ ରିଡର୍, ଓଡ଼ିଆ ବିଭାଗ*
*କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟ*

# 'ସତୁରୀରୁ ସହସ୍ରାବ୍ଦୀ' : ସମ୍ୟକ୍ ଦୃଷ୍ଟି

♦ ଡକ୍ଟର ହୃଷୀକେଶ ମଲ୍ଲିକ

ରେଗିନାଲ୍ଡ ସେଫାର୍ଡ୍ (Reginald Shepherd) କହିଛଂତି : "To be a good writer one needs atleast some of the skills of a good critic" ଅର୍ଥାତ୍ ଭଲ ଲେଖକଟିଏ ହେବାକୁ ହେଲେ ଭଲ ସମାଲୋଚକର କିଛି ଦକ୍ଷତାର ଅଧିକାରୀ ହେବାକୁ ହେବ । ଏହାର ବିପରୀତ କଥାଟି ମଧ୍ୟ ସତ୍ୟ । ଜଣେ ଭଲ ସମାଲୋଚକ ହେବାକୁ ହେଲେ ଭଲ ଲେଖକର କେତେକ ଗୁଣ ଜଣକ ପାଖରେ ରହିବା ପ୍ରୟୋଜନୀୟ । ସମାଲୋଚନାର ପରିଭାଷା ଯଦି ସୃଜନଶୀଳ ନ ହୁଏ, ତେବେ ତାହା ପାଠକଙ୍କ ପାଖରେ ତା'ର ସୁଦୂରପ୍ରସାରୀ ଆବେଦନ ରଖିବାରେ ପ୍ରାୟତଃ ବିଫଳ ହୁଏ । ଆକାଡେମିକ୍ ସମାଲୋଚନା ଗୁଡ଼ିକ ଏହି କାରଣରୁ ସମସ୍ତ ତଥ୍ୟଗତ ପୁଂଜି ସତ୍ତ୍ୱେ ବିଦ୍ୟାର୍ଥୀ ଓ ପାଠକଙ୍କ ପକ୍ଷେ ଅସ୍ୱସ୍ତିକର ସାବ୍ୟସ୍ତ ହୁଏ । ସାହିତ୍ୟ-ସବାଲୋଚକ ଲେଖକ ଓ ପାଠକଙ୍କ ମଧ୍ୟରେ ଏକ ବିଶ୍ୱସ୍ତ ମଧ୍ୟସ୍ଥ । ତେଣୁ ଏ ମଧ୍ୟସ୍ଥି ଆକଳନ ପାଇଁ ଚୟିତ ପାଠ୍ୟକୁ ସଂଶୟହୀନ ଭାବେ ପାଠକଙ୍କ ପାଖରେ ପହଞ୍ଚାଇବା ଆବଶ୍ୟକ । ଏଥିପାଇଁ ସମାଲୋଚକ ପ୍ରଥମେ ଉଦ୍ଦିଷ୍ଟ ପାଠ୍ୟ (କବିତା ହେଉ ବା ଗଦ୍ୟ ହେଉ)କୁ ସର୍ବତୋଭାବେ ବୁଝିବା ଦରକାର ଏବଂ ବୁଝିସାରିବା ପରେ ସରଳ ତଥା ଭାବବୋଧକ ଭାଷାରେ ତାକୁ ଅଭିପ୍ରେତ ପାଠକଙ୍କ ପାଖରେ ପହଞ୍ଚାଇବା ଉଚିତ୍ । ପାଠ୍ୟ ଯଦି କବିତା ହୋଇଥାଏ, ତେବେ ସମାଲୋଚକଙ୍କୁ ଅଧିକ ମରମୀ ଓ ବିଚକ୍ଷଣ ଭାବେ 'ଅର୍ଥୀ' ହେବାକୁ ପଡ଼ିବ । କବି ଅଭିମନ୍ୟୁଙ୍କ ଭାଷାରେ କବିତାର ଅଭୀଷ୍ଟ ପାଠକକୁ ଳ 'ଅର୍ଥୀଜନ ପ୍ରବର' ଓ 'ଅର୍ଥୀଜନ ପ୍ରବର'ଙ୍କୁ ସଂବୋଧନ କରିବ ସମାଲୋଚକ । ସୁତରାଂ କବିତାର 'ଅର୍ଥ'କୁ ବୋଧକ୍ଷମ କରାଇ ପାଠକଙ୍କ ନିକଟରେ ପହଞ୍ଚାଇବାକୁ ହେଲେ ସମାଲୋଚକଙ୍କୁ 'ଅର୍ଥୀ ବିଶାରଦ' ହେବାକୁ ପଡ଼ିବ ।

କବିତା ସମାଲୋଚନା ସାଧାରଣ ଲୋକର କାମ ନୁହେଁ । ଏହା ଅତ୍ୟଂତ ଦୁରୁହ ଓ କେତେକାଂଶରେ ଜଟିଳ ମଧ୍ୟ । ତହିଁକି କବିତା ଯଦି ଆଧୁନିକ କାଳର, ତେବେ ସମାଲୋଚକର ଦାୟିତ୍ୱବୋଧ କାମଚଳା ସମାଲୋଚକଙ୍କ ଠାରୁ ବହୁଗୁଣରେ ଅଧିକ । ଏଥିପାଇଁ ସମାଲୋଚକଙ୍କୁ ଅଧିକ 'ଶ୍ରମୀ' ହେବାକୁ ହେବ । କବି ତାଙ୍କ କବିତାରେ ବ୍ୟବହାର କରୁଥିବା ନାନା ପ୍ରସଙ୍ଗ ଓ ଶୈଳୀର ତରିକାକୁ ଅନୁଧ୍ୟାନ କରିବାକୁ ହେବ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାର ଆକଳନ ପ୍ରସ୍ତକୁ ନିଘା ଦେଲେ ସମର୍ଥ ପାଞ୍ଚଜଣ ସମାଲୋଚକ ପାଇବା ମୁସ୍କିଲ୍ ହେବ, ଯେଉଁମାନେ ଆଧୁନିକ ସମାଲୋଚନା ବିଦ୍ୟାରେ

ପ୍ରଶିକ୍ଷିତ । କବିତା ସମାଲୋଚ଼ନାର ଏପରି ଏକ ପ୍ରେକ୍ଷାପଟ୍ଟରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଯେ ଜଣେ ଅବିସମ୍ବାଦିତ ସମାଲୋଚ଼କ, ଏହା ସ୍ୱୀକାର କରିବାରେ ବୋଧହୁଏ କାହାର ଦ୍ୱିଧା ରହିବ ନାହିଁ । 'ସବୁଜରୁ ସାଂପ୍ରତିକ' ଗବେଷଣା ଗ୍ରନ୍ଥରେ ଆଧୁନିକ ଓଡ଼ିଆ କବିତାକୁ ନେଇ ତାଂକର ଯେଉଁ ଅଧ୍ୟୟନ, ତାହା ଓଡ଼ିଆ କବିତା-ସମାଲୋଚ଼ନାରେ ଏକ ନୂଆ ସ୍ତର କହିଲେ ଅତ୍ୟୁକ୍ତି ହେବ ନାହିଁ । କବିତାକୁ ନେଇ ତାଂକ ଅଧ୍ୟୟନ ଓ ମନରେ ସଂକଳ୍ପ ତାଂକ ସମକାଳର କୌଣସି ସମାଲୋଚ଼କଙ୍କ ଠାରେ ପ୍ରାୟତଃ ଦେଖିବାକୁ ମିଳେ ନାହିଁ । କବିତା ଯେତେ ଦୁଃସାଧ୍ୟ, ଦୁର୍ଲିଖିତ ଓ ଜଟିଳ ହେଉ ପଛକେ, ତାକୁ ନିଷ୍ଠାର ସହ ପଢ଼ି, ବୁଝି ଓ ବୁଝାଇବାର ଯେଉଁ ରସାଳତା ତାଂକ ସମାଲୋଚ଼ନାରେ ଦେଖିବାକୁ ମିଳେ ତାହାର ଅନୁରୂପ ଦୃଷ୍ଟାନ୍ତ ନାହିଁ କହିଲେ ଚଳେ ।

'ସତୁରୀରୁ ସହସ୍ରାବ୍ଦୀ' ହେଉଛି ନିତ୍ୟାନନ୍ଦଙ୍କ ସେଇ ସମାଲୋଚନା ଗ୍ରନ୍ଥ, ଯାହାକୁ 'ସବୁଜରୁ ସାଂପ୍ରତିକ' ଗବେଷଣା ଗ୍ରନ୍ଥର ଉତ୍ତରାର୍ଦ୍ଧ କହିହେବ । ପୁସ୍ତକର ଆରମ୍ଭରେ ସେ ଲେଖିଛଂତି: "ଅନେକ ଦିନୁ 'ସବୁଜରୁ ସାଂପ୍ରତିକ' ପରବର୍ତ୍ତୀ ସମୟର ଓଡ଼ିଆ କବିତାର ଆକଳନ ପାଇଁ ଏକ ଦାୟବଦ୍ଧ ଅନୁଜ୍ଞା ମନ ଭିତରେ ଅନୁରଣିତ ହେଉଥିଲେ ବି ତାକୁ ସାକାର କରିବା ଏତେ ସହଜସାଧ୍ୟ ବ୍ୟାପାର ନୁହେଁ ବୋଲି ଅନୁଭବ କରୁଥିଲି । କାରଣ ଏଇ ତିରିଶ ବର୍ଷର (୧୯୭୦-୨୦୦୦) କବିତା ତାର ପରିମାଣ ଓ ବୈଚିତ୍ର୍ୟ ଉଭୟ ଦୃଷ୍ଟିରୁ ଖୁବ୍ ବିଶାଳ ଓ ବିସ୍ଫୋରଣମୁଖୀ ବୋଲି ଯେକେହି କହିବେ । ତେଣୁ ଏହି ସମୟର କିଛି ବିଶିଷ୍ଟ କବିଙ୍କ କାବ୍ୟଚେତନାକୁ ଦୁଇଟି ପର୍ଯ୍ୟାୟରେ ଆଲୋଚ଼ନା କରି ଗ୍ରନ୍ଥ ପ୍ରକାଶର ଅଭିଳାଷ ମୋତେ ଯେତିକି ଆହ୍ଲାଦିତ କରୁଥିଲା, ସେତିକି ଭୟଭୀତ ମଧ୍ୟ । କାରଣ ମାତ୍ର ଦୁଇଜଣଙ୍କୁ ଛାଡ଼ିଦେଲେ ଆଉ ସମସ୍ତ କବି ଜୀବିତ ।" ଏହା ସତ୍ତ୍ୱେ ଡ. ଶତପଥୀ ଗ୍ରନ୍ଥ ରଚ଼ନାରେ ମନୋନିବେଶ କରି ପୁସ୍ତକଟିକୁ ଓଡ଼ିଆ କବିତାର ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର ବିଶ୍ୱସ୍ତ ଦଲିଲରେ ପରିଣତ କରିଛନ୍ତି । ଯଦିଓ ସୁନିର୍ବାଚିତ କବିଂଙ୍କ କବିତା ବହିଟିର ଆଧାର ଓ ଏହି କାଳଖଣ୍ଡ (୧୯୭୦-୨୦୦୦)ର ବୈଚିତ୍ର୍ୟକୁ ଚିହ୍ନାଇବା ପାଇଁ ଅନ୍ୟ କେତେକ କବିଙ୍କ କବିତାର ଆଲୋଚ଼ନା ଅପରିହାର୍ଯ୍ୟ ଥିଲା, ତଥାପି ନିଜର କଳ୍ପିତ ଉଦ୍ୟମରେ ସେ ବ୍ୟର୍ଥ ହୋଇନାହାନ୍ତି ବୋଲି କହିବାକୁ ହେବ । ୨୦୦୩ରେ ପ୍ରକାଶ ପାଇଥିବା ବହିଟି ସାତବର୍ଷ ଅବଧି ଅର୍ଥାତ୍ ୨୦୧୦ରେ ଦ୍ୱିତୀୟ ସଂସ୍କରଣ ସୌଭାଗ୍ୟ ଅର୍ଜ୍ଜନ କରିଛି ଓ ଏବେ ଏହାର ତୃତୀୟ ସଂସ୍କରଣ ହେବାକୁ ଯାଉଛି । ଆଧୁନିକ କବିତା ସଂପର୍କିତ ଏକ ସମାଲୋଚ଼ନା ଗ୍ରନ୍ଥ ଯେ ସମକାଳୀନ ବିଦ୍ୱାନ୍, ଛାତ୍ରଛାତ୍ରୀ ଓ ଗବେଷକ ଗବେଷିକାଙ୍କ ଦ୍ୱାରା କିପରି ଆଦୃତ ହୋଇପାରେ, ଏହା ତାହାର ପ୍ରମାଣ ।

'ସତୁରୀରୁ ସହସ୍ରାବ୍ଦୀ' ଆଲୋଚନା ଗ୍ରନ୍ଥଟିକୁ ନିବନ୍ଧକାର ଶତପଥୀ ଦୁଇ ଭାଗରେ ବିଭକ୍ତ କରି ଲେଖିବାର ସଂକଳ୍ପ ନେଇଛନ୍ତି ଏବଂ ଆଲୋଚ୍ୟ ଖଣ୍ଡଟି ଏହାର ପ୍ରଥମ ଭାଗ, ଯାହାକୁ ଲେଖିବା ପାଇଁ ସେ ତାଂକର ବହୁମୂଲ୍ୟ ତିନିବର୍ଷ ସମୟ ବ୍ୟୟ କରିଛନ୍ତି । ଏଥିରେ ମୋଟ ୧୦ଜଣ ମୁଖ୍ୟଧାରାର କବିଙ୍କର କବିତା ଚର୍ଚ୍ଚା ହୋଇଛି । ଭାନୁଜୀ ରାଓ, ରଘୁନାଥ ଦାସ, ଜଗନ୍ନାଥ ପ୍ରସାଦ ଦାସ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଦୀପକ ମିଶ୍ର, ବ୍ରଜନାଥ ରଥ ଓ ପ୍ରତିଭା ଶତପଥୀ । କିନ୍ତୁ ଏହି ସମୟଖଣ୍ଡରେ କବିତା ଲେଖି ନିଜସ୍ୱ ସ୍ୱର ଓ ସ୍ୱାକ୍ଷରର ସ୍ୱାତନ୍ତ୍ୟ ପାଇଁ ଆଧୁନିକ ଓଡ଼ିଆ କବିତାକୁ ନାନା ବୈବିଧ ଆଣି ଦେଇଥିବା ହରିହର ମିଶ୍ର, ସୌଭାଗ୍ୟ ମିଶ୍ର, କମଳାକାନ୍ତ ଲେଂକା, ବିବେକାନନ୍ଦ ଜେନା, କୁମାର ମହାନ୍ତି, ଶରତ ଚନ୍ଦ୍ର ପ୍ରଧାନ, ରାଜେନ୍ଦ୍ର କିଶୋର ପଂଡା ଓ ବିଭୁଦତ୍ତ ମିଶ୍ର ପ୍ରମୁଖ କାହିଁକି ଯେ ଗ୍ରନ୍ଥର ବଳୟରୁ ବାଦ୍ ପଡ଼ିଛନ୍ତି, ତାହା ବିସ୍ମୟକର ମନେହୁଏ । ଭାନୁଜୀ ରାଓ ଓ ରଘୁନାଥ ଦାସଙ୍କ ଠାରୁ ଏସବୁ କବିମାନଙ୍କର ଅବଦାନ ସ୍ୱାଧୀନତା ପରବର୍ତ୍ତୀ ବିଶେଷକରି ସତୁରୀ ପରବର୍ତ୍ତୀ ଓଡ଼ିଆ କବିତାକୁ କମ୍ ସଂଗଠିତ ଓ ଶକ୍ତିଶାଳୀ କରିନାହିଁ । ତେବେ, ଏସବୁ କାରଣ ଖୋଜିବା ନେଇ ବିମର୍ଷ ହେବା ଏ ନିବନ୍ଧର ଲକ୍ଷ୍ୟ ନୁହେଁ । ଲକ୍ଷ୍ୟ, ଗ୍ରନ୍ଥସ୍ଥ ବିଷୟବସ୍ତୁର ଭାବଗତ ଓ ଭାଷାଗତ ବୈଶିଷ୍ଟ୍ୟକୁ ଠାବ କରି ସମାଲୋଚକ ଭାବେ ନିତ୍ୟାନନ୍ଦଙ୍କ ଉତ୍କର୍ଷ ବା ଅପକର୍ଷକୁ ଠାବ କରିବା । ଗ୍ରନ୍ଥକାର ଶତପଥୀ ମୂଳରୁ ସ୍ପଷ୍ଟ କରିଛଂତି ଯେ ୧) ଏହି ଗ୍ରନ୍ଥରେ ଆଲୋଚ୍ୟ କବିତା ଗୁଡ଼ିକର ପ୍ରଥମ ପ୍ରକାଶନ ତାରିଖକୁ ଗୁରୁତ୍ୱ ଦିଆଯାଇ ନାହିଁ । (ବା ଗୁରୁତ୍ୱ ଦେବାର ଅବକାଶ ପାଇ ନାହାନ୍ତି, ସମୟର ନିର୍ମମତା କାରଣରୁ ହୁଏତ), ୨) ଗ୍ରନ୍ଥରେ ସତୁରୀ ପରବର୍ତ୍ତୀ ପ୍ରକାଶିତ କବିତାଗ୍ରନ୍ଥ ଉପରେ ଗୁରୁତ୍ୱ ଦିଆଯାଇଛି, ୩) ସତୁରୀରୁ ଅଶୀ ମଧବର୍ତ୍ତୀ କବିତାର ଜଟିଳ ଗ୍ରନ୍ଥି ଉନ୍ମୋଚନ ପାଇଁ ପ୍ରୟାସ କରାଯାଇଛି, ୪) ସୃଜନଶୀଳ ସମାଲୋଚନା (creative criticism) ରେ ନିବନ୍ଧକାର ବିଶ୍ୱାସ କରନ୍ତି ଓ ତେଣୁ ପୁସ୍ତକଟି କିପରି ପାଠକମାନଙ୍କୁ ଆମୋଦିତ କରିବ, ସେ ଦିଗରେ ସେ ଧାନ ଦେଇଛନ୍ତି, ୫) ଅଶୀ ପରବର୍ତ୍ତୀ କବିତାରେ ଦୃଶ୍ୟମାନ କେତେକ ପରିବର୍ତ୍ତନର ଖିଅ ଧରି ଉତ୍ତର-ଆଧୁନିକ ଚେତନାର ବିଶ୍ଲେଷଣ ସ୍ଥାନେ ସ୍ଥାନେ କରାଯାଇଛି ।

ଏହା ଯଦି ଆଲୋଚ୍ୟ ସମାଲୋଚନା ଗ୍ରନ୍ଥର ବୟନସୂତ୍ର ହୁଏ, ତେବେ ଭାବବସ୍ତୁ ଓ ଭାଷା ଦୃଷ୍ଟିରୁ କବିତା ଗ୍ରନ୍ଥ ସମୂହର କିପରି ଆଲୋଚନା କରାଯାଇଛି, ତହିଁରେ ଏକ ଆକଳନର ଦିଶା ଓ ନିଶାକୁ ନ୍ୟସ୍ତ କରିବା ବିବେକୀ କାର୍ଯ୍ୟ ହେବ । ଆଧୁନିକ ଓଡ଼ିଆ କବିତାର ସମାଲୋଚନା କ୍ଷେତ୍ରରେ ପ୍ରଫେସର ଶତପଥୀ ଜଣେ ଉପ୍ରୋଧହୀନ ସମାଲୋଚକଭାବେ ପ୍ରତିଷ୍ଠିତ । ସମକାଳୀନ କବିଙ୍କ ଦିଶାହରା କବିତାର ଅପକର୍ଷକୁ ସେ ତାଙ୍କ ବିଶ୍ଲେଷଣରେ ଏପରି ଉନ୍ମୁକ୍ତ ଭାବେ ଦେଖାଇ ଦିଅଂତି ଯେ, ତାହାର ଶକ୍ତିଶାଳୀ

ପ୍ରଭାବ ସଂପୃକ୍ତ କବିଙ୍କ କବିତା ରଚ଼ନାର ଧାରାରେ ପ୍ରତ୍ୟାଶିତ ଶୃଙ୍ଖଳା ଓ ପରିବର୍ତ୍ତନ ଆଣିବାକୁ ବାଧ କରେ । କବିତାର ଆଲୋଚ଼ନା ବେଳେ ସେ କେବଳ ଆଲୋଚ଼ନାର ପରିସରଭୁକ୍ତ କବିତା ଗୁଡ଼ିକର ସାମର୍ଥ୍ୟକୁ ହିଁ ଆଧାର କରନ୍ତି, କବିଙ୍କର ପଦପଦବୀ ବା ପ୍ରତିଷ୍ଠାକୁ ନୁହେଁ । ଏହା ପଛାର ଜୁଗୁପ୍‌ସା ନୁହେଁ, ବରଂ ନିହିତ ଥାଏ କବିତା ପ୍ରତି ତାଂକର ଶେଷହୀନ ଶ୍ରଦ୍ଧା । ଗ୍ରନ୍ଥର ପ୍ରଥମ ବିଷୟ "କବି ସଚ୍ଚିଦାନନ୍ଦ : ଅବରୋହ ଓ ଅବକ୍ଷୟ"ର ପ୍ରଥମ ପାରାଗ୍ରାଫ୍‌ରେ ଲେଖନ୍ତି: "ପ୍ରଥମରୁ କହିରଖିବାକୁ ହେଉଛି ଯେ 'କବିତା-୧୯୭୧' ଯଶସ୍ୱୀ ପ୍ରତିଭାବାନ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ କ୍ଷୟମାଣ ସମୟର ସୃଷ୍ଟି । ତେଣୁ ଏଥିରେ 'ପାଣ୍ଡୁଲିପି'ର ଉଦ୍ଦାମ ଉଦ୍‌ବେଳ ଅନୁଭୂତି ଉଗ୍ର ସମାଜ ସଚେତନତା ଓ ବିପ୍ଳବୀ ରାଜନୈତିକ ମତବାଦ ଖୋଜିଲେ ହତାଶ ହେବାକୁ ହେବ । 'କବିତା-୧୯୬୨' ଠାରୁ 'କବିତା-୧୯୬୯' ପର୍ଯ୍ୟନ୍ତ ଏହି ପ୍ରଚଣ୍ଡ ପ୍ରତିଭାର କ୍ରମିକ ଅପମୃତ୍ୟୁ ଅତି ସାବଧାନୀ ଓ ସନ୍ଧାନୀ ପାଠକ ଦୃଷ୍ଟିରୁ ବାଦ୍ ଯିବ ନାହିଁ । ×× ଏହି ସଂକଳନର ଅଧିକାଂଶ କବିତା ପ୍ରଚ଼ାରଧର୍ମୀ, ନିରସ ଓ ବକ୍ତବ୍ୟମୂଳକ । 'ନିର୍ବାଚନ', 'ଓଡ଼ିଶା', 'ହରେକୃଷ୍ଣ', 'ଚେତନାର ବିଚ୍ଛେଦ ଅନ୍ତେ' ଆଦି କବିତାଗୁଡ଼ିକ ଏହି ପର୍ଯ୍ୟାୟଭୁକ୍ତ ।" ଆରମ୍ଭରୁ କବିଙ୍କ କବିତା ସଂପର୍କରେ ଏପରି ନକରାତ୍ମକ ମନ୍ତବ୍ୟ ରଖିବା ସତ୍ତ୍ୱେ ସଂକଳନ ସ୍ଥିତ 'ନାଗଭୂଷଣ', 'ରୋସ୍‌ନାରା', 'ମୁଜିବୁର ରହମନ', 'ୟାହିଆ ଖାଁ ପ୍ରଭୃତି କବିତାର କାଳଜୟୀ ସଫଳତାକୁ ଉଚ୍ଚକଣ୍ଠରେ ତାରିଫ୍ କରିଛନ୍ତି ଏବଂ ଏସବୁ କବିତାକୁ ସବୁ ଯୁଗର ଓ ସବୁ କାଳର ମଣିଷ ଆତ୍ମାର ବ୍ୟଥା ଓ ବେଦନାର ହାହାକାର ର ପ୍ରତିନିଧି ବୋଲି ଟିପ୍‌ପଣୀ ଦେଇଛନ୍ତି । ଆଲୋଚ଼ନାଟିକୁ ପଢ଼ିଲେ ମନେହୁଏ, ନିତ୍ୟାନନ୍ଦଙ୍କ ତୀକ୍ଷ୍ଣ ଶିକାରୀ ଦୃଷ୍ଟିରୁ ସଚ୍ଚିବାବୁଙ୍କ କବିତାର ପ୍ରଭାବୀ ପ୍ରୟୋଗ ସବୁ ଖସି ଯାଇ ନାହାନ୍ତି । ଚୟିତ ଉଦ୍ଧୃତି ଗୁଡ଼ିକରେ ସେ ସବୁକୁ ସେ ଧରି ରଖିଛନ୍ତି । 'ନାଗ ଭୂଷଣ' କବିତାରୁ ସେ ଯେଉଁ ପଙ୍‌କ୍ତିଟି ଉଦ୍ଧାର କରିଛନ୍ତି, ତାହା ହେଲା- "କିଏ ତୁମେ କୁହ' ! / ପ୍ରସ୍ଥାନର ପାଦଶବ୍ଦ ନା ଆଗାମୀର / ମସୀଦୀପ୍ତ ଏକ ହାତଲେଖା !" ଶବ୍ଦ ଚୟନରେ ଦୋରସ୍ତ ସଚ୍ଚିବାବୁ ଦୁଇଟି ଆପାତଃ ବିରୋଧୀ କଥ୍ୟକୁ ମୁହାଁମୁହିଁ କରି ନାଗଭୂଷଣଙ୍କ ବ୍ୟକ୍ତିତ୍ୱର ଯେଉଁ ପରାକାଷ୍ଠା ବ୍ୟକ୍ତ କରିବାର ପ୍ରୟାସ କରିଛନ୍ତି, ସେପରି ଉଦାହରଣ ତାଂକ ସମକାଳର ଓଡ଼ିଆ କବିତାରେ ପ୍ରାୟତଃ ଦୁର୍ଲ୍ଲଭ । 'ରୋସ୍‌ନାରା' କବିତା ସଂପର୍କରେ କବିଙ୍କର ବିଶ୍ଳେଷଣଟି ଏହିପରି - "ରୋସ୍‌ନାରା ସମଗ୍ର ବଙ୍ଗଳାଦେଶର ସ୍ୱାଧୀନତା ସଂଗ୍ରାମର ଏକ ସର୍ବଯୁଗୀୟ ପ୍ରତୀକ । ମାନବାତ୍ମାର ମୁକ୍ତି ପାଇଁ ଯୁଗେ ଯୁଗେ ଅସଂଖ୍ୟ 'ରୋସ୍‌ନାରା' ଏହିପରି ନିଜର ସତ୍ତାକୁ ସମଗ୍ରର ସତ୍ତା ଭିତରେ ବିଛାଡ଼ି ଦେଇଛନ୍ତି; ନିଜ ସୁଖ ସମ୍ଭୋଗକୁ ଭୁଲି ପ୍ରାଣପାତ କରିଛନ୍ତି । ପୁଣି ଯୁଗେଯୁଗେ ସେଇମାନଙ୍କ ଆତ୍ମାହୁତିର ଶୋଣିତ କାବ୍ୟ କବିଦ୍ୱାରା ରଚିତ ହୋଇଛି । ସେମାନଙ୍କ ପାଇଁ କବିର ଏଇ ମାନବିକ ଦୁର୍ବଳତା ଦେଶକାଳ

ଭୂଗୋଳର ସୀମା ସରହଦ ଡେଇଁ ବୃହତ୍ତର ମଣିଷ ସମାଜର ପରିକଳ୍ପନାରେ ଶତବାକ୍ ହୋଇଛି, ଅସୀମ ଯନ୍ତ୍ରଣାରେ ଦଗ୍ଧୀଭୂତ ବି ହୋଇଛି ।" (ପୃ:୧୧) । ଆକଳନର ଏ ସୁଷ୍ଠୁ ପରିଭାଷା ପଢ଼ିଲେ ସମାଲୋଚ଼ନାର ପରିଚ୍ଛେଦଟିଏ ପଢ଼ିବା ପରି ଲାଗେ ନାହିଁ, ଲାଗେ ଏହା ଯେପରି ଏକ କାଳଜୟୀ ଉପନ୍ୟାସର କାବ୍ୟିକ, ମୋହାଚ୍ଛନ୍ନ ଧାଡ଼ି; ଯେଉଁଠୁ ସମର୍ପିତ ପାଠକ ମନ କାଢ଼ି ନେଇ ପାରେ ନାହିଁ । ଏହି ଭାଷା ହିଁ ହେଉଛି ପ୍ରଫେସର ଶତପଥୀଙ୍କ ସମାଲୋଚ଼ନାର ଶକ୍ତି । ଏଥିରେ ନିଜର ମତକୁ ଜାହିର୍ କରିବାର ଏକ ପ୍ରତ୍ୟୟ ନିହିତ ଥାଏ ଯାହା ପାଠକଙ୍କୁ ବିବଶ କରେ ଆଲୋଚ୍ୟ କବିତାଟିକୁ ଖୋଜି ଲୋଡ଼ି ପଢ଼ିବାକୁ । କବିତାଟିରେ ନିହିତ କୁହୁକର ଝଲକ ସେ ତାଙ୍କର ନିର୍ବାଚିତ 'ଉଦ୍ଧୃତି'ରେ ଦେବାକୁ ଭୁଲି ନଥାନ୍ତି । ଶତପଥୀଙ୍କ ସମାଲୋଚ଼ନାର ଭାଷାରେ କେଉଁଠି ବ୍ୟକ୍ତିଗତ ଅହଂର ବଣିକୀ ଚାତୁର୍ଯ୍ୟ ନଥାଏ, ଥାଏ ବିନୀତ ଏକ ସହୃଦୟୀ ଉପସ୍ଥାପନା, ଯାହା ପାଠକଙ୍କୁ ଅଭିଭୂତ କରେ, ବିବଶ କରେ । ସଚ୍ଚିବାବୁଙ୍କ ବିଭିନ୍ନ ଗ୍ରନ୍ଥ 'କବିତା-୧୯୭୪', 'କବିତା-୧୯୮୩' ଓ 'କବିତା-୧୯୮୫' ଆଦିର ଯେପରି ନିରାସକ୍ତ ଆକଳନ କରିଛନ୍ତି, ତାଂକ ସମକାଳରେ ଓ ପରେ ଏପରି ଆକଳନ ବିରଳ । ସଚ୍ଚିଦାନନ୍ଦଙ୍କ କାବ୍ୟଗ୍ରନ୍ଥ ଚୟର ଆଲୋଚ଼ନା ସାଙ୍ଗ କରିବାକୁ ଯାଇ ନିତ୍ୟାନନ୍ଦ ଯାହା ଲେଖିବସନ୍ତି, ତାହା ସୂଚାଇଦିଏ ସଚ୍ଚିବାବୁଙ୍କୁ ଓ ତାଂକ କବିତାକୁ ସେ କେତେ ଭଲ ପାଇ ବସନ୍ତି । କବିଙ୍କ ସଂପର୍କରେ ତାଂକ ଉଦ୍‌ଯାପନୀ ବକ୍ତବ୍ୟରୁ କେଇ ଧାଡ଼ି ଉଦ୍ଧାର ନ କରି ଏ ନିବନ୍ଧକାରର ମନ କଦାପି ଶାଂତ ଓ ତୃପ୍ତ ହେବ ନାହିଁ । ନିତ୍ୟାନନ୍ଦ ଲେଖିଛଂତି: "ମନେହୁଏ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ କବି କବିତା ଲେଖିଯିବେ ଓ କବି ମାନସିଂହଙ୍କ ପରି ସମସ୍ତଙ୍କ ଅଲକ୍ଷ୍ୟରେ କେଉଁ ଡାକ୍ତରଖାନାରେ ବା ଗୋପୀନାଥଙ୍କ ପରି ବିଦେଶରେ ଆଖିବୁଜି ଦେବେ । ଆମେ ଆଧୁନିକ ଓଡ଼ିଆ କବିତାର ଏକ ଶକ୍ତିଶାଳୀ ପ୍ରଗତିବାଦୀ ଓ ପ୍ରୟୋଗବାଦୀ ଧାରାର ପ୍ରତିଷ୍ଠାତା କବିଙ୍କୁ କ୍ରମେ ଭୁଲି ବସିବୁ । ଏହା ହିଁ କୁଟିଳ କାଳର ବିଦ୍ରୂପ ଓ କ୍ରୂର ଉପହାସ - ଯାହା ମୋତେ ଜଳଜଳ ଦେଖାଯାଉଛି । ତଥାପି ଚିର ପ୍ରଦୀପ୍ତ ତାଂକ କାବ୍ୟ-ଆତ୍ମାର ଆଲୋକ ଶିଖା ଏତେ ଶୀଘ୍ର ଓଡ଼ିଆ କବିତା-ମଣ୍ଡଳରୁ ଅପସାରିତ ହେଉନାହିଁ । ସମୟର ସ୍ଖଳନ ସହିତ ପାଦ ମିଳାଇ ସେ କବି ଭାବରେ ତଥାପି ବଞ୍ଚି ରହିଛନ୍ତି - ଏ କଥା ଇତିହାସ ବାରମ୍ବାର ପୁନର୍ଲିଖନ କରିଯିବ ।" ମନେହୁଏ, ଏହା ଯେପରି ସଚ୍ଚିବାବୁ ଓ ତାଙ୍କ ରଚିତ ଅଜସ୍ର କବିତା ପ୍ରତି କବିଙ୍କର ସାମାନ୍ୟ ବିଶ୍ଳେଷଣୀ ଅଭିବ୍ୟକ୍ତି ନୁହେଁ, ତାଂକ ପ୍ରତି ଓ ତାଂକ କବିତାପ୍ରତି ଥିବା ତାଂକର ଅସାମାନ୍ୟ ସମ୍ମାନବୋଧ । ସଚ୍ଚିବାବୁଙ୍କ ତିରୋଧାନ ପରେ ମନେହୁଏ ଏହା ଯେପରି ତାଂକ ସମାଧିରେ ଖୋଦିତ ସର୍ବଶ୍ରେଷ୍ଠ ଏପିଟାଫ୍, ଯାହା କେବଳ ନିତ୍ୟାନନ୍ଦଙ୍କ ଭଳି ମରମୀ ଓ ଦରଦୀ ସମାଲୋଚ଼କ ଲେଖନୀ ଦ୍ୱାରା ହିଁ ସମ୍ଭବ ।

"ବାସ୍ତବତା ଓ ବିପର୍ଯ୍ୟୟ : କବି ଗୁରୁପ୍ରସାଦ ମହାନ୍ତି" ହେଉଛି ଗ୍ରନ୍ଥର ଦ୍ୱିତୀୟ ନିବନ୍ଧ, ଯେଉଁଥିରେ ଓଡ଼ିଆ କବିତାକୁ ବେଗବାନ୍ କରିବାରେ ଗୁରୁବାବୁଙ୍କ ଅକୁଂଠ ଯୋଗଦାନକୁ ପ୍ରାବନ୍ଧିକ ଶତପଥୀ ଭୁରୀ ଭୁରୀ ପ୍ରଶଂସା କରିବା ସହିତ ସମାନ୍ତରାଳ ଭାବେ ୧୯୭୦ ପରବର୍ତ୍ତୀ କବିତାରେ ତାଂକର ବିଫଳତାକୁ ଅତି ନିଷ୍ଠୁର ଭାବେ ଚିହ୍ନିତ କରିବାରେ ପରାଙ୍ମୁଖ ହୋଇ ନାହାନ୍ତି । ସେ ଲେଖିଛନ୍ତି: "୧୯୭୦ ପରବର୍ତ୍ତୀ ସମୟରେ କବି ଶ୍ରୀ ମହାନ୍ତି ସମୁଦାୟ ୩୬ଟି କବିତା ଲେଖିଛନ୍ତି, ଯାହା 'ଆଶ୍ଚର୍ଯ୍ୟ ଅଭିସାର' (୧୯୮୮)ରେ ସଂଯୋଜିତ ହୋଇଛି । ତେଣୁ ମନେକରିବାକୁ ହେବ ଯେ କବି ଉତ୍ତର-ସତୁରୀରେ ସର୍ବମୋଟ ୩୯ଟି କବିତା ଲେଖିଛନ୍ତି, ଯେଉଁ କବିତା ଗୁଡ଼ିକ ମଧ୍ୟରୁ ତାଙ୍କ କାବ୍ୟଚେତନାର ଅବରୋହ ଓ ଅବକ୍ଷୟ ପ୍ରାୟ ସ୍ପଷ୍ଟ ହୋଇଯାଉଛି । ଏପରିକି 'ହରେକୃଷ୍ଣ ଦାସ ୧ ଓ ୨'ରେ ସେ ଯେଉଁ ସ୍ମରଣୀୟ ଓ ଉଦ୍ଧୃତିଯୋଗ୍ୟ ପଙ୍‌କ୍ତି ସବୁ ରଖିଥିଲେ, ତାହା ଉତ୍ତର-ସତୁରୀ 'ହରେକୃଷ୍ଣ ଦାସ ୩ ଓ ୪'ରେ ପ୍ରାୟ ଦୁଷ୍ପ୍ରାପ୍ୟ । ଉତ୍ତର-ପଚ୍ଚଶରେ କବି ଶ୍ରୀ ମହାନ୍ତି ତାଙ୍କ କବିତାରେ ପ୍ରେମ, ଜୀବନ ଓ ପରିପାର୍ଶ୍ୱ ପ୍ରତି ଯେଉଁ ବିମର୍ଷ ଓ ବାସ୍ତବ ଦୃଷ୍ଟିଭଂଗୀ ଯାଦୁକରୀ ଭାଷା ଓ ଶବ୍ଦର ବ୍ୟଞ୍ଜନା ମଧ୍ୟରେ ପ୍ରକାଶ କରିଥିଲେ ଉତ୍ତର-ସତୁରୀରେ ତାହା ପ୍ରାୟ ସୁଲଭ ନୁହେଁ । ଅଧିକାଂଶ କବିତା ତାର ନାମକରଣକୁ ସାବ୍ୟସ୍ତ କରି ନ ପାରି ଅପ୍ରତ୍ୟକ୍ଷ ହୋଇ ପଡ଼ନ୍ତି ଓ କବିତା ଏକ ମାନସ-ମନ୍ଥନରେ ପରିଣତ ହୋଇଯାଏ ।" (ପୃ-୪୬) । ଡିମେଇ ସାଇଜ୍‌ରେ ଦୀର୍ଘ ୧୭ ପୃଷ୍ଠାର ଆଲୋଚନା ସତ୍ତ୍ୱେ ମନେହୁଏ ନିତ୍ୟାନନ୍ଦ କେବଳ ଗୁରୁବାବୁଙ୍କ ବିଭିନ୍ନ କବିତାର ଅନାବଶ୍ୟକ ଗଛ ହିଁ ଶୁଣାଇଛନ୍ତି । ତାଳପତ୍ର ଆଢ଼େଇ ଗୁରୁବାବୁଙ୍କ କାବ୍ୟୋଦ୍ୟାନରୁ କାଳେ କେଉଁଠୁ ସୁମିଷ୍ଟ ଫଳଟିଏ ମିଳିଯିବ, ତା'ର ନିରଳସ ଚେଷ୍ଟା କରିଛନ୍ତି । ମାତ୍ର ପରିଣତିରେ କେବଳ ଏହାହିଁ ସାବ୍ୟସ୍ତ ହୋଇଛି ଯେ 'କାଳପୁରୁଷ' ରଚନା ପରେ ଗୁରୁବାବୁ ତାଂକ ସମକାଳୀନ କବିତାରେ ଅନ୍ୟ କବିଙ୍କୁ ଅତିକ୍ରମ କରିବା ତ ଦୂରର କଥା, ନିଜକୁ ହିଁ ଅତିକ୍ରମ କରିପାରୁ ନାହାନ୍ତି ।

ଗ୍ରନ୍ଥର ତୃତୀୟ ପ୍ରବନ୍ଧ "ନଦୀ, ନାରୀ, ନକ୍ଷତ୍ରର କବି : ଭାନୁଜୀ ରାଓ", ଯେଉଁଥିରେ ସମାଲୋଚକ ଶତପଥୀ ଗତ ଶତାବ୍ଦୀର ଶେଷ ଦଶକରେ ସ୍ୱଳ୍ପ ସମୟ ବ୍ୟବଧାନରେ ପ୍ରକାଶ ପାଇଥିବା କବିଙ୍କର ୯ଖଣ୍ଡି କବିତା ପୁସ୍ତକ ଘାଣ୍ଟି ଏକ ପ୍ରାସଂଗିକ ଭାନୁଜୀଙ୍କୁ ଖୋଜିବାର ଗଳଦ୍‌ଘର୍ମ ପ୍ରୟାସ କରିଛନ୍ତି । ୧୯୭୩ରେ ପ୍ରକାଶିତ କବିଙ୍କର ଏକକ ପ୍ରଥମ କବିତାଗ୍ରନ୍ଥ 'ବିଷାଦ ଏକ ଋତୁ' ପ୍ରକାଶ ପାଇବାର ୧୩ବର୍ଷ ପରେ ୧୯୮୬ରେ ତାଙ୍କ ପ୍ରକାଶିତ 'ନଈ ଆରପାରି' (ଯାହା ଯତୀନ୍ଦ୍ର ମୋହନ ମହାନ୍ତିଙ୍କ କୃପାରୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ବୋଲି ଏଇ ଲେଖକର ଓ ଅନେକଙ୍କର ମଧ୍ୟ ବିଶ୍ୱାସ) କବିତା ଗ୍ରନ୍ଥଟିକୁ ସୁରକ୍ଷା ଦେବାକୁ ଯାଇ ପ୍ରଫେସର ଶତପଥୀ ଯେଉଁ ଉଦ୍ୟମ

କରିଛନ୍ତି, ତାହା ଫଳବତୀ ହୋଇଥିବା ପରି ମନେ ହୁଏ ନାହିଁ । ୧୯୮୬ରେ ପ୍ରକାଶିତ କବିଙ୍କର 'ନଈ ଆରପାରି' କବିତା ଗ୍ରନ୍ଥଟି ଯେତେବେଳେ ୧୯୮୯ରେ 'କେନ୍ଦ୍ର ସାହିତ୍ୟ ଏକାଡେମୀ' ପୁରସ୍କାର ଲାଭ କଲା, ସେତେବେଳେ ସେ ବହିଟି ବଜାରରେ ମିଳୁ ନଥିଲା ବୋଲି ଡ. ଶତପଥୀ ତାଙ୍କ ନିବନ୍ଧରେ ଉଲ୍ଲେଖ କରିଛନ୍ତି । ଏହି ପ୍ରସଙ୍ଗରେ ପ୍ରାବନ୍ଧିକ ଶରତ କୁମାର ମହାନ୍ତିଙ୍କ ନିବନ୍ଧ 'ଦାଦାଙ୍କ ବୋଦାଗିରି'ରୁ ଧାଡ଼ିଟିଏ ମଧ୍ୟ ଉଦ୍ଧାର କରିଛନ୍ତି, ଯହିଁରେ ଶରତବାବୁ କାଠଯୋଡ଼ି ନଦୀରେ ଜାଲ ପକାଇ ଏ ବହିଟିକୁ ଖୋଜୁଥିବା କହି ପରିହାସ କରିଛନ୍ତି । ଡ. ଶତପଥୀ ଭାନୁଜୀଙ୍କର ଏ ବହିଟି ବଜାରରେ କାହିଁକି ମିଳୁନଥିଲା, ତାର କାରଣ ଜାଣି ମଧ୍ୟ ସୌଜନ୍ୟ ଦୃଷ୍ଟିରୁ ଉଲ୍ଲେଖ କରି ନାହାନ୍ତି । କାରଣଟି ଏଠାରେ ଓଡ଼ିଆ ପାଠକ ଓ ଲେଖକଙ୍କ ଅବଗତି ପାଇଁ ଉଲ୍ଲେଖ କରିବାରେ ଏଇ ଲେଖକର ଦ୍ୱିଧା ନାହିଁ । 'କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର'ର ତତ୍କାଳୀନ ନିୟମ ଅନୁସାରେ ପୁରସ୍କୃତ ବହିଟି ପୁରସ୍କାର ଦିଆଯାଉଥିବା ବର୍ଷକୁ ଛାଡ଼ି ପୂର୍ବ ତିନିବର୍ଷ ମଧ୍ୟରେ ପ୍ରକାଶ ପାଇଥିବା ବିଧେୟ । ଅତଏବ ୧୯୮୯ରେ ଯେଉଁ ବହିଟି ପୁରସ୍କାର ପାଇବ, ସେ ବହିଟି ୧୯୮୬ରୁ ୧୯୮୮ ମଧ୍ୟରେ ପ୍ରକାଶ ପାଇଥିବା କଥା ୧୯୮୯ରେ 'କେନ୍ଦ୍ର ସାହିତ୍ୟ ଏକାଡେମୀ' ପୁରସ୍କାର ବିବେଚନା ବେଳକୁ ଭାନୁଜୀବାବୁଙ୍କର ଏଇ 'ନଈ ଆରପାରି' କବିତା ଗ୍ରନ୍ଥଟି ପ୍ରକାଶ ପାଇନଥିଲା । ତାଂକୁ ଦିଆଯାଇଥିବା ପୁରସ୍କାର ଥିଲା ଏକ ପ୍ରାୟୋଜିତ, ସ୍ୱଜନ-ସଂତୁଷ୍ଟି ପ୍ରକଳ୍ପ, ଯେଉଁଥିପାଇଁ ଉଭୟ କବି ଓ ପୁରସ୍କାର-କାରକ ଯତୀନ୍ଦ୍ରବାବୁ ନିନ୍ଦିତ ହୋଇଥିଲେ । ବହିଟିର ଉତ୍କର୍ଷ ଦର୍ଶାଇବାକୁ ଯାଇ ପ୍ରଫେସର ଶତପଥୀ ଗ୍ରନ୍ଥସ୍ଥ 'ଆମେ ସବୁ' କବିତାରୁ ଯେଉଁ ଉଦ୍ଧୃତିଟି ଦେଇଛନ୍ତି, ତାହା ଯେ କିଭଳି ଶିଳ୍ପ-ଦାରିଦ୍ର୍ୟର ଶିକାର, ତାହା ପାଠ କଲେ ବୁଝିହୁଏ । ପାଠକଙ୍କ ଅବଗତି ପାଇଁ ଉଦ୍ଧୃତିଟିକୁ ଏଠାରେ ଉଦ୍ଧାର କରାଗଲା -

"ହେ ବଞ୍ଚିତା ଭାରତବର୍ଷ; ତୁମ ପାଇଁ ଆମେ ଆମର
ପ୍ରେମିକାଙ୍କୁ ଭୁଲିବୁ
ତୁମେ ବିଶ୍ୱାସ କର / ପ୍ରେମ ବେକରେ ଦଉଡ଼ି ଦେଇଛି
କିମ୍ବା କିରାସିନୀ ବୋଲି ହୋଇ ଆତ୍ମହତ୍ୟା କରିଛି ବହୁଦିନୁ ।
ସାରା ଦେଶ ଭରିଯାଇଛି ଅଗଣିତ କୁଷ୍ଠରୋଗୀରେ ଆଜି
ଶଠତା ଓ ଲାଞ୍ଚ ପରି ଦୂଷିତ କ୍ଷତରୁ
ପୂଜ ଓ ଦୁର୍ଗନ୍ଧ ଅନବରତ ଝରୁଛି ।"

'ବିଷାଦ ଏକ ଋତୁ'କୁ ବାଦ୍ ଦେଲେ ଭାନୁଜୀଙ୍କର ଅନ୍ୟ ସମସ୍ତ କବିତାଗ୍ରନ୍ଥ (ନାମକରଣର ଚମତ୍କାରିତା ସତ୍ତ୍ୱେ) ଓଡ଼ିଆ କବିତାର ଉତ୍ତରଣ ବା ବିବର୍ତ୍ତନରେ କୌଣସି ଉଲ୍ଲେଖନୀୟ ଭୂମିକା ନିର୍ବାହ କରନ୍ତି ନାହିଁ । ଭାନୁଜୀଙ୍କ ସପକ୍ଷରେ ନିଜ ଯୁକ୍ତି ଓ ସିଦ୍ଧାଂତକୁ

ଦୃଢ଼ କରିବା ଲକ୍ଷ୍ୟରେ ପ୍ରଫେସର ଶତପଥୀ 'ଦର୍ପଣ ଆଗରେ' କବିତା ଗ୍ରନ୍ଥର ପ୍ରଚ୍ଛଦରେ ପ୍ରକାଶକ ଗିରିଜା ବଳିୟାରସିଂଙ୍କ ମନ୍ତବ୍ୟ (ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଭାନୁଜୀ ରାଓ ଏକ ନିର୍ଜ୍ଜନତମ ନକ୍ଷତ୍ର)ଟି ଉଦ୍ଧାର କରିଛନ୍ତି । 'ନିର୍ଜ୍ଜନତମ ନକ୍ଷତ୍ର'ଟି ଏକ ସୁନ୍ଦର ରୂପକଳ୍ପ ସତ୍ୟ, କିନ୍ତୁ ଭାନୁଜୀଙ୍କ କ୍ୱଚିତ୍ କବିତାରେ ଏହି ବିଷାଦିତ ସୌନ୍ଦର୍ଯ୍ୟକୁ ପ୍ରତ୍ୟକ୍ଷ କରିହୁଏ । ଅବଶ୍ୟ ଏକଥା ସତ୍ୟ ଯେ ଭାନୁଜୀଙ୍କ କବିତାର କୌଣସି କୌଣସି ପଙ୍କ୍ତି ବା ଧାଡ଼ି ବୁଦ୍ଧିଦୀପ୍ତ ସମ୍ମୋହନରେ ସଜ୍ଞାନ-ପାଠକକୁ ଯଦିଓ ଅକସ୍ମାତ୍ ଚମକାଇ ଦିଏ; ତାହାର ସାମଗ୍ରିକ ପ୍ରଭାବ ପାଠକକୁ ଅଭିଭୂତ କରେ କ୍ୱଚିତ୍ ।

ଗ୍ରନ୍ଥର ଚତୁର୍ଥ ନିବନ୍ଧଟି ହେଲା - "ବିପ୍ଳବୀ ସାମ୍ୟବାଦୀ କବି ରଘୁନାଥ ଦାସ" । 'ସବୁଜରୁ ସାଂପ୍ରତିକ' ଗବେଷଣା ଗ୍ରନ୍ଥରେ ଡ. ଶତପଥୀ ପ୍ରଥମେ ଇତିହାସର ଅଳନ୍ଧୁ ଝାଡ଼ି ଏହି କବିଙ୍କୁ ଲୋକଲୋଚନକୁ ଆଣିଥିଲେ ଓ ଓଡ଼ିଆ ସାମ୍ୟବାଦୀ କବିତାର ଅଙ୍ଗନରେ ତାଙ୍କର ବାଂଛିତ ସ୍ଥାନ ନିରୂପଣ କରିଥିଲେ । ଆଧୁନିକ ଓଡ଼ିଆ କବିତାର ସମାଲୋଚନା କ୍ରମରେ ରଘୁନାଥଙ୍କ ଆବିଷ୍କାର ତାଂକୁ ଓଡ଼ିଆ କବିତାର ସମାଲୋଚନା ଇତିହାସରେ ନିଶ୍ଚୟ ସ୍ମରଣୀୟ କରି ରଖିବ । ଗ୍ରନ୍ଥର ପଞ୍ଚମ ନିବନ୍ଧ 'ପ୍ରେମ, ପ୍ରତାରଣା ଓ ନିଃସଙ୍ଗତାର କବି ଜଗନ୍ନାଥ ପ୍ରସାଦ ଦାସ' । ଏହା ଏକ ସୁଦୀର୍ଘ ପ୍ରବନ୍ଧ, ଯାହାର ପରିସର ୬୫ ପୃଷ୍ଠା ବିଶିଷ୍ଟ । ୧୯୭୧ରେ ପ୍ରକାଶିତ କବିଙ୍କର 'ପ୍ରଥମ ପୁରୁଷ' କାବ୍ୟଗ୍ରନ୍ଥ ଠାରୁ ୧୯୯୮ରେ ପ୍ରକାଶିତ 'ପରିକ୍ରମା' ଯାଏ ମୋଟ ୯ଖଣ୍ଡି କାବ୍ୟପୁସ୍ତକର ଯେଉଁ ନାତିଦୀର୍ଘ ଆଲୋଚନା କରାଯାଇଛି, ତହିଁରେ ପ୍ରଫେସର ଶତପଥୀ କବିତାଗୁଡ଼ିକର ବିଷୟବସ୍ତୁ ଓ ଭାବ ସଂଧାନରେ ତାଂକ ଆଲୋଚନାର ଦିଶାକୁ ଦୀପ୍ତ କରିଛନ୍ତି ସମଧିକ । ଶୈଳୀ ଯଦିଓ ଆଲୋଚିତ, କିନ୍ତୁ ଆଧୁନିକ ଓଡ଼ିଆ କବିତାରେ ଜଗନ୍ନାଥଙ୍କ ବ୍ୟତିକ୍ରମୀ କାବ୍ୟଶୈଳୀକୁ ସର୍ବଶେଷ ଆଲୋକ ଦେଇ ଧରିରଖିବାରେ ସେ ହୁଏତ ପର୍ଯ୍ୟାପ୍ତ ଅବକାଶ ପାଇନାହାନ୍ତି ବା ଶୈଳୀ-ସଂଧାନ ତାଙ୍କ ପ୍ରସ୍ତାବିତ ପ୍ରକଳ୍ପର ଲକ୍ଷ୍ୟ ହୋଇନଥିବାରୁ ଏ କ୍ଷେତ୍ରରେ ସେ ଇଚ୍ଛାକୃତ ଭାବେ ଉଦାସୀନ ରହିଛନ୍ତି । କିନ୍ତୁ ନିବନ୍ଧର ନିଷ୍କର୍ଷରେ ସେ ଜେ.ପି.ଙ୍କ ସଂପର୍କରେ ଯେଉଁ ନିର୍ଣ୍ଣୟୀ ସିଦ୍ଧାଂତ ଦେଇଛଂତି, ତାହା ତାଂକ ପରିପକ୍ୱ ସମାଲୋଚକୀୟ ଅନ୍ତର୍ଦୃଷ୍ଟିର ପରିଚାୟକ । ଡ. ଶତପଥୀ ଲେଖିଛଂତି: "ଶ୍ରୀ ଦାସ ଇନ୍ଦ୍ରିୟ ବିଳାସୀ କବି । ଇନ୍ଦ୍ରିୟୋତ୍ତର ଚେତନା ପାଖରେ ପହଞ୍ଚିବାକୁ ଏଯାବତ୍ ତାଙ୍କ କାବ୍ୟ-ଚେତନାରେ ଉତ୍କଣ୍ଠା ଆସିନାହିଁ ତାହାହିଁ ତାଂକ ପାଇଁ ଏକାଂତ ବାସ୍ତବତା । କିନ୍ତୁ ଲେଖୁ ଲେଖୁ ଲେଖି ହୋଇଯାଇଛି କବିତାଟିଏ - ଯାହାର ଶୀର୍ଷକ ହେଉଛି 'ଅତୀନ୍ଦ୍ରିୟ' । କିଛି ଅମୂର୍ତ୍ତ ଚେତନାକୁ ବହନ କରେ ଏ କବିତାଟି । କବି କୁହନ୍ତି ଯେ ଆଖିର ଲୋଲୁପତା ଅନ୍ତରାଳରେ ଲୁକ୍କାୟିତ ଇଚ୍ଛାର ଆଧାତ୍ମିକତା ସବୁବେଳେ ଅଦୃଶ୍ୟ । କର୍ଣ୍ଣେନ୍ଦ୍ରିୟ ମାଧ୍ୟମରେ ହୁଏତ ହୃତ୍ସ୍ପନ୍ଦନ ବାରିହେବ । କିନ୍ତୁ ଅନ୍ତରାତ୍ମାର ମୌନ ହାହାକାର ଅକୁହା ହିଁ ରହିଯିବ । ଠିକ୍ ସେହିପର

ଦେହର ଗନ୍ଧ ହୁଏତ ଆଘ୍ରାଣ କରିହେବ କିନ୍ତୁ ଅନାଘ୍ରାତ ରହିଯିବ ଅନ୍ତରର ଉନ୍ମାଦନା । ×× ଭାବଜୀବୀ କବି ଶ୍ରୀ ଦାସ ସତେଯେପରି ହାତବଢ଼େଇ ରଖିଛନ୍ତି ଏକ ଅତୀନ୍ଦ୍ରିୟ ଅନୁଭବ ଆଡ଼କୁ । ଯାହା ଏବେବି ମଧ ରହିଛି ଅପହଞ୍ଚ । ×× ଉତ୍ତରିତ ଏକ ଅନୁଭବର ପ୍ରତ୍ୟାଶା କୁହେଳିକାଛନ୍ନ ହୁଏତ - କିଂତୁ ସୂର୍ଯ୍ୟାଲୋକର ସ୍ୱର୍ଣ୍ଣିମ ବିଭା ବୋଧହୁଏ ବେଶୀ ଦୂରବର୍ତ୍ତୀ ନୁହେଁ । ଏକବିଂଶ ଶତାବ୍ଦୀ ହିଁ ହେବ ତାର ପ୍ରତିପାଦନ ।" ଜଣେ ସମକାଳୀନ କବି ପ୍ରତି ସମାଲୋଚ଼ନାର ସଦୁକ୍ତି, ଜଣେ ସଂପନ୍ନ ଓ ସଠିକ୍ ସମାଲୋଚ଼କଠାରୁ ହିଁ କେବଳ ପ୍ରତ୍ୟାଶା କରାଯାଇପାରେ- ଏହା ତାହାର ପ୍ରତିଫଳନ ନୁହେଁ କି ?

ଗ୍ରନ୍ଥର ପରବର୍ତ୍ତୀ ପ୍ରବନ୍ଧ ହେଉଛି "ପ୍ରେମ, ମୃତ୍ୟୁ ଓ ନିର୍ଜନତାର କବି ରମାକାନ୍ତ ରଥ" । ପ୍ରଫେସର ଶତପଥୀ ତାଂକର ବିଭିନ୍ନ ଆଲୋଚ଼ନାରେ ରମାକାନ୍ତଙ୍କ କବିତାର ଯେପରି ପୁଙ୍ଖାନୁପୁଙ୍ଖ ବିଶ୍ଲେଷଣ କରିଛନ୍ତି ଓ ରମାକାନ୍ତଙ୍କ କବିତା ପ୍ରତି ସ୍ୱତଃ ଆସକ୍ତି ସତ୍ତ୍ୱେ ଆକଳନରେ ନିରପେକ୍ଷ ରହିପାରିଛନ୍ତି, ତାହା କ୍ୱଚିତ୍ ସମାଲୋଚକଙ୍କ କ୍ଷେତ୍ରରେ ଦେଖିବାକୁ ମିଳେ । ରମାକାନ୍ତଙ୍କ ପ୍ରାରମ୍ଭିକ ପର୍ଯ୍ୟାୟର କବିତାରେ ପରିଲକ୍ଷିତ ଦୁର୍ବୋଧତା ଓ ଦୁରୂହତାକୁ ନିର୍ଦ୍ଦିଷ୍ଟ କରିବାକୁ ଯାଇ ସେ କହିଛଂତି: "କବିତା ଗୁଡ଼ିକ ଭାବାନାର ଜଟିଳତାକୁ ଆଦୌ ପରିହାର କରିପାରନ୍ତି ନାହିଁ । 'ସନ୍ଦିଗ୍ଧ ମୃଗୟା' (୧୯୭୧)ରେ ସ୍ଥାନିତ 'ମାଷ୍ଟ୍ରାଣୀ', 'ହେମଲତାର ମୃତ୍ୟୁ', 'ଅତିଥି ସତ୍କାର', 'ଭିକାରୁଣୀର ବରାନୁଗମନ ଦର୍ଶନ' ଓ 'ମାଧବୀର ପଞ୍ଚତ୍ରିଂଶତମ ଜନ୍ମୋତ୍ସବ'- ଏଇ ପାଞ୍ଚୋଟି କବିତା ନିଶ୍ଚିତଭାବେ ଆବେଦନକ୍ଷମ ଓ ସ୍ମରଣୀୟ । 'ଅତିଥି ସତ୍କାର'କୁ ଛାଡ଼ିଦେଲେ ଏ କବିତା ଗୁଡ଼ିକ ବ୍ୟକ୍ତିଗତତାରୁ ମୁକ୍ତ । ତେଣୁ କ୍ଲିଷ୍ଟତାରୁ ମଧ ମୁକ୍ତ । ×× ମୋ'ର ତ ଯେପରି ମନେହୁଏ, ଏଇ ପାଞ୍ଚୋଟି କବିତା ସଂକଳନରେ ସ୍ଥାନିତ ହୋଇନଥିଲେ ସମଗ୍ର ସଂକଳନଟି ବ୍ୟକ୍ତିଗତତା ଓ କ୍ଲିଷ୍ଟ ଆଧିଭୌତିକ ଭାବନାରେ ପାଠକଠାରୁ ସମ୍ପୂର୍ଣ୍ଣ ଅପହଞ୍ଚ ଦୂରତାରେ ଅବସ୍ଥାନ କରିଥାନ୍ତା । ଦ୍ୱୈତ ଅର୍ଥବୋଧକ ଓ ଆପାତ ବିରୋଧାଭାସୀ ପଙ୍କ୍ତି ଗୁଡ଼ିକ ତାଙ୍କ କବିତାର ଜଟିଳତାର ମୁଖ୍ୟ କାରଣ ।" (ପୃ-୧୮୪-୧୮୫) ଏହି କ୍ରମରେ ସମାଲୋଚ଼କ ପାଞ୍ଚୋଟି କଷ୍ଟକଳ୍ପିତ ଚିତ୍ରଦୃଶ୍ୟର ଉଦାହରଣ ଦେଇଛନ୍ତି ନିଜ ବକ୍ତବ୍ୟକୁ ପାଠକ ପାଖରେ ଅଧିକତର ସ୍ପଷ୍ଟ କରିବାର ଲକ୍ଷ୍ୟ ନେଇ । ତହିଁରୁ ଦୁଇଟି ଉଦାହରଣ ଦିଆଯାଇପାରେ- ୧) "ହଠାତ୍ ନିର୍ମଳ ହୋଇ ଠିଆ ହେଲେ ଧଳା ଧଳା ମେଘମାନେ ଦେଖି ମୃତ ମୟୂରଙ୍କ ନାଚ୍ ।" (ହେମଲତାର ମୃତ୍ୟୁ), ୨) "ମଲା ସାଇକେଲ ଭାସେ ସୀମା ସମୁଦ୍ରରେ" (ସଂଧ୍ୟାବେଳର ଦୃଶ୍ୟ)" ଉଦ୍ଧୃତି ଗୁଡ଼ିକ ଦେଇସାରି ଡ. ଶତପଥୀ ଦୀର୍ଘଶ୍ୱାସ ପକାଇବା ଭଳି ପ୍ରଶ୍ନଟିଏ ପାଠକଙ୍କ ଉଦ୍ଦେଶ୍ୟରେ ଉଜ୍ଜୀବିତ ରଖିଛନ୍ତି ଏହିପରି - "ଉପର ଲିଖିତ ପଙ୍କ୍ତି ମାନଙ୍କରେ କବି ଯେଉଁ ବୈପରୀତ୍ୟବୋଧ ସୃଷ୍ଟି କରିଛନ୍ତି, ତାହାର ଗ୍ରନ୍ଥି ଉନ୍ମୋଚ଼ନ ପାଇଁ ପାଠକ ପାଖରେ କେଉଁ ଇଲମ ଅଛି ?" ଏ ପ୍ରଶ୍ନ ବୋଧହୁଏ

ଖୋଦ୍ କବିଙ୍କ କୈଫିୟତ ବିନା ଅନନ୍ତ କାଳକୁ ଅନୁତ୍ତରିତ ରହିଥିବ । ରମାକାନ୍ତଙ୍କ କାବ୍ୟର ଜଟିଳତା ପ୍ରସଂଗରେ ପୁଣି ସେ ତାଙ୍କର ଅଭିଯୋଗ ଦୋହରାଇ କହିଛଂତି ଯେ "ପାଠକମାତ୍ରେ ଇ ଜାଣନ୍ତି ଯେ ରମାକାନ୍ତ ଜଣେ ଖୁବ୍ ବୁଦ୍ଧିବାଦୀ ଜଟିଳ ଭାବଚେତନାର କବି । ପୁଣି ତାଂକ କବିତାରେ ବ୍ୟକ୍ତିଗତ ଭାବନା ଓ ମୁହୂର୍ତ୍ତମାନଙ୍କର ଏତେ ବେଶୀ ପରିପ୍ରକାଶ ଘଟିଥାଏ ଯାହା ସହିତ ଖୁବ୍ ସଚେତନ ପାଠକ ମଧ୍ୟ ଯୋଗାଯୋଗ ରକ୍ଷା କରିବା ଦୁରୂହ ହୋଇଉଠେ ।" (ପୃ-୧୮୭) ମଝିରେ ମଝିରେ ଅଭିଯୋଗ ଉଠେ, ଓଡ଼ିଆ ଅଧ୍ୟାପକମାନେ ବ୍ୟକ୍ତିଗତ ମନୋବାଂଛାର ସହଜ ପୂର୍ତ୍ତି ପାଇଁ ପଦସ୍ଥ କବିଙ୍କ କବିତାର ସ୍ତୁତି କରନ୍ତି । କିନ୍ତୁ ଏହିସବୁ ଅଭିଯୋଗକାରୀମାନେ ସମକାଳୀନ ପଦସ୍ଥ କବିଙ୍କ କବିତାର ବୈକଲ୍ୟକୁ ପଦାରେ ପକାଇବାରେ ସତ୍ୟସନ୍ଧ ସମାଲୋଚ଼କ ପ୍ରଫେସର ଶତପଥୀଙ୍କର ଏସବୁ ଆଲୋଚ଼ନା ପାଠକଲେ, ସେମାନଙ୍କର ମତ ଯେ ଭ୍ରାଂତ ଓ ତଥ୍ୟ ସମର୍ଥିତ ନୁହେଁ, ଏହା ଅନାୟାସେ ବୁଝି ପାରିବେ । ଏଇ ଲେଖକ ପ୍ରଫେସର ଶତପଥୀଙ୍କ ଅତି ନିକଟବର୍ତ୍ତୀ ହେବାର ସୌଭାଗ୍ୟ ଅର୍ଜନ କରିଥିବାରୁ ନିଷ୍କପଟ ଭାବେ କହିପାରେ ଯେ, ସ୍ତୁତି ନୁହେଁ, ବରଂ ଉପ୍ରୋଧହୀନ ତାଡ଼ନା ଦ୍ୱାରା ନିତ୍ୟାନନ୍ଦ ବହୁ ପଦସ୍ଥ କବିଙ୍କ ସଂଜ୍ଞା ଫେରାଇ ଆଣିବାରେ ଅଭୂତପୂର୍ବ ଭାବେ ସଫଳ ହୋଇଛନ୍ତି । ତା' ହୋଇନଥିଲେ ରମାକାନ୍ତଙ୍କ କବିତା ହୁଏତ 'ସନ୍ଦିଗ୍ଧ ମୃଗୟା'ରୁ 'ଶ୍ରୀରାଧା'କୁ ଓ ରାଜେନ୍ଦ୍ର କିଶୋର ପଂଡାଂକ କବିତା 'ଗୌଣ ଦେବତା'ରୁ 'ଶୈଳକକ୍ଷ' ବା 'ଅନ୍ୟା' ପର୍ଯ୍ୟାୟକୁ ଉନ୍ନୀତ ହେବା ବିଳଂବିତ ହୋଇଥାଂତା, ନତୁବା ଆଦୌ ସମ୍ଭବ ହୋଇ ନଥାନ୍ତା । ପ୍ରଫେସର ଶତପଥୀଙ୍କ 'କବିତା-ସମାଲୋଚ଼ନା'ର କୋଟୀ ଆକଳନ କଲାବେଳେ ଯଦି ଆଲୋଚ଼କମାନେ ତାଙ୍କ ସମାଲୋଚ଼କୀୟ ଦୃଷ୍ଟିର 'ଉଦାରତା' ଓ 'କଠୋରତା' - ଉଭୟଙ୍କୁ ସ୍ମରଣରେ ନ ରଖନ୍ତି, ତେବେ ଆଧୁନିକ ଓଡ଼ିଆ କବିତାର ସମାଲୋଚ଼ନା ଇତିହାସକୁ ତାଂକର ଅମୂଲ୍ୟ ଅବଦାନ ଚିର ଉପେକ୍ଷିତ ରହିଯିବାକୁ ବାଧ୍ୟ ହେବ । 'ସନ୍ଦିଗ୍ଧ ମୃଗୟା' ସଂପର୍କରେ ନିଜ ମତର ଯଥାର୍ଥ୍ୟକୁ ବଳିଷ୍ଠ କରିବା ପାଇଁ ଡ. ଶତପଥୀ ଗ୍ରନ୍ଥଟି ସଂପର୍କରେ ଶ୍ରୀ ସର୍ବେଶ୍ୱର ଦାଶଙ୍କର ଏକ ଉକ୍ତିକୁ ଉଦ୍ଧାର କରିଛନ୍ତି । ଉକ୍ତିଟି ହେଲା- "କେତେବେଳେ ହଠାତ୍ ଝଲସୁଛି ପାଇବାର ଉଦାମ ଅନୁଭୂତି, କେତେବେଳେ ପୁଣି ଲୋଟିଯାଉଛି ହରାଇବାର ବିଷଣ୍ଣ ଅନ୍ଧାର । ମୃଗୟା ତା'ର ଚ଼ାଲିଛି; କିନ୍ତୁ ସନ୍ଦିଗ୍ଧ ମୃଗୟା ? ସ୍ଥିର ନିଷ୍ଚିତ ଲକ୍ଷ୍ୟ ଠିକ୍ ଯେପରି ନାହିଁ । ନିଜକୁ ଖୋଜୁଛି, ରୂପ ଖୋଜୁଛି, ଭାଷା ଖୋଜୁଛି, ଛନ୍ଦ ଖୋଜୁଛି - କେବେ ବେସୁରା, କେବେ ସୁରମୟ; କେଉଁଟା ଠିକ୍ ହେବ ଜାଣିପାରୁନି ।" ଏ ଉଦ୍ଧୃତି ଯଥାର୍ଥ ଓ ପ୍ରସଂଗ-ସହାୟବାଚ଼ୀ । ରମାକାନ୍ତ ରଥଙ୍କ ବିଭିନ୍ନ କାବ୍ୟଗ୍ରନ୍ଥର ସଫଳତା ଓ ବିଫଳତା ଦର୍ଶାଇବା ଅଭିଳାଷରେ ସେ ସମକାଳୀନ ବହୁ ସମର୍ଥ ଲେଖକ ଓ ସମାଲୋଚ଼କଙ୍କ ମନ୍ତବ୍ୟର ସାହାରା ନେଇଥିଲେ ବି ରମାକାନ୍ତଙ୍କ କବିତାରେ ତାଂକର

ମୌଳିକ ଅବଗାହନ ସବୁଠିଁ ପ୍ରମୁଖ, ସେହି କାରଣରୁ ତାଂକ ଅବବୋଧରେ ରମାକାନ୍ତଙ୍କ କବିତାର ଅଂଗାର ଓ ବିଭୂତି ଉଭୟ ସମଭାବେ ସମୁଜ୍ଜ୍ୱଳ । 'ଶ୍ରୀରାଧା' ସଂପର୍କରେ ନିଜର ଆଲୋଚ଼ନାକୁ ଅଧିକ ପୁଷ୍କଳ କରିବା ପାଇଁ ଚଣ୍ଡୀଦାସ, ରବୀନ୍ଦ୍ରନାଥ, ଭାରତୀଙ୍କଠୁଁ ଆରମ୍ଭ କରି ଦେବଦୁର୍ଲ୍ଲଭ ଦାସଙ୍କ ଯାଏ ବହୁ କବିଙ୍କର ପ୍ରେମ ସଂପର୍କୀୟ ଅନୁଭବକୁ ସେ ଯେପରି ଉଦ୍ଧାର କରିଛନ୍ତି, ତାହା ସମାଲୋଚ଼ନା କ୍ଷେତ୍ରରେ ତାଙ୍କ ତୁଳନାତ୍ମକ ଦୃଷ୍ଟିର ଯେ ପରିଚ଼ୟ ଦେଇଥାଏ, ଏଥିରେ ସନ୍ଦେହ ନାହିଁ ।

ଗ୍ରନ୍ଥର ସପ୍ତମ ପ୍ରବନ୍ଧ ହେଉଛି "ଶବ୍ଦ, ସମୁଦ୍ର, ସମୟ ଓ ସଂପର୍କର କବି ସୀତାକାନ୍ତ ମହାପାତ୍ର", ଏଥିରେ ସୀତାକାନ୍ତଙ୍କ କବିତା ପ୍ରତି ତାଂକର ଆବେଦନଉନ୍ମୁଖୀ ମାନସିକତା ଉଭୟ ଅନୁକୂଳ ଓ ପ୍ରତିକୂଳ ଧାରଣାରେ ମିତ୍ର ଓ ମୁକ୍ତ । ଏହି ଆଲୋଚ଼ନା ମଧ ରମାକାନ୍ତଙ୍କ କବିତାର ଆଲୋଚ଼ନା ପରି ସ୍ଥଳବିଶେଷରେ ତୁଳନାତ୍ମକ । ଲକ୍ଷ୍ୟ କରିବାର କଥା ଯେ 'ସମୟ' ଓ 'ମୃତ୍ୟୁ'ର କବି ଭାବେ ସମକାଳୀନ କତିପୟ କବି (ସୀତାକାଂତଂକ ସମେତ) ଭାବେ ନିତ୍ୟାନନ୍ଦ ଓ କିୟତ୍ ପରିମାଣରେ ଦାଶରଥି ଦାସ ଯେଉଁ ମୋହର ପିଟିଛଂତି, ସେଇ ଆବର୍ତ୍ତରୁ ଏଯାଏ ଓଡ଼ିଆ କବିତାର ସମାଲୋଚ଼ନା ମୁକୁଳିବା କଷ୍ଟକର ହେଉଛି । ଏହାକୁ ନିତ୍ୟାନନ୍ଦଙ୍କ ସମଲୋଚକୀୟ ଟିପ୍‌ପଣୀର ଦୃଢ଼ତା ଓ ଅକାଟ୍ୟ ଅଟଳତା କୁହାଯିବ ନାହିଁ କି ? ସୀତାକାଂତଂକ ପ୍ରତିଟି ଏକକ କାବ୍ୟପୁସ୍ତକର ବିସ୍ତାରିତ ଆଲୋଚ଼ନା ପରେ ପ୍ରଫେସର ଶତପଥୀ ତାଙ୍କ ନିଷ୍କର୍ଷ-ଲେଖାରେ କହଂତି: "ସୀତାକାଂତଂକ ଉତର-ସତୁରୀ କାବ୍ୟଚେତନାର ଦିଗ ଓ ଦିଗନ୍ତ ବହୁ ବିସ୍ତାରିତ, ନାନାବିଧ, ବିଚିତ୍ର ଓ ଶବଳିତ ××। ସେ ଚେତନାରେ କେବେକେବେ କଳାଗତ ସାର୍ଥକତା ଅଛି, କେବେ ବା ଅଛି ଦୀର୍ଘକାୟ ବିଫଳତା- କିଂତୁ କବିର କାବ୍ୟାଲାଳନା ରହିଛି ସବୁବେଳେ ଅବ୍ୟାହତ - ଏହାହିଁ ଆଶ୍ୱାସନାର ବିଷୟ । ଉତର-ଷାଠିଏ ବିଷୟରେ ବହୁ ଓଡ଼ିଆ କବି ଅବକ୍ଷୟକୁ ଭେଟିଥିଲାବେଳେ ସୀତାକାଂତ ତଥାପି ଅଛନ୍ତି ସୃଷ୍ଟିପ୍ରବଣ; ହୁଏତ ସେ ମିଥ୍ର ଘର୍ମ କୁ ହକେଇ ବସିଛନ୍ତି, ଖୋଜିଛନ୍ତି ମାଟିର ଗନ୍ଧ ଓ ଆକାଶର ନୀଳ ବୈଚିତ୍ର୍ୟ ।" ସୀତାକାଂତ ସଂପର୍କରେ ଏ ଉଲ୍ଲେଖର ଉପରାନ୍ତ ନିତ୍ୟାନନ୍ଦ ଯାହା ଲେଖିଛନ୍ତି, ତାହା ତାଂକ କବିତା ସଂପର୍କରେ ଖାପଛଡ଼ା ଓ ବ୍ୟକ୍ତିଗତ, ତେଣୁ ଏଠାରେ ଅନୁଦ୍ଧୃତ ।

ଗ୍ରନ୍ଥର ଅଷ୍ଟମ ପ୍ରବନ୍ଧ "ପ୍ରେମ, ମୃତ୍ୟୁ ଓ ନିର୍ଜନତାର କବି ଦୀପକ ମିଶ୍ର" । କବିଭାବେ ନିଜ ସମୟରେ ଦୀପକ ଯେପରି ଉହ୍ୟ ଓ ସହସ୍ର ଉକ୍ତି ସତ୍ତ୍ୱେ ଅନୁକ୍ତ- ଏଭଳି ଜଣେ କବିଙ୍କୁ ଅସୀମ ଧୈର୍ଯ୍ୟରଖି ଆକଳନ କରିବା ଦ୍ୱାରା ନିତ୍ୟାନନ୍ଦ ତାଂକ ସମାଲୋଚ଼କୀୟ ସର୍ବଦର୍ଶୀ ଚେତନା ଓ ମନୋଭବର ପରିଚ଼ୟ ଦେଇଛନ୍ତି । ତାଂକ ସ୍ୱୀକାରୋକ୍ତିଟିକୁ ଲକ୍ଷ୍ୟ କରାଯାଉ । ସେ କହୁଛନ୍ତି "ଶ୍ରୀ ଦୀପକ ମିଶ୍ରଙ୍କ ତିରିଶ ବର୍ଷ (୧୯୭୦-୨୦୦୦)ର କବିତାର ଏକ ମୋଟାମୋଟି ଆକଳନ କାଳରେ ମୁଁ ତାଂକ କାବ୍ୟ-ଚେତନା ପ୍ରତି ଦୃଷ୍ଟ

ଦେଇଛି ଓ ଅନେକ କବିତାର ମଞ୍ଜି ପାଖରେ ନ ପହଂଚି ପାରୁଥିବା ପାଠକଙ୍କୁ କିଛି ପରିମାଣରେ ସାହାଯ୍ୟ କରିଛି ବୋଲି ଆଶା କରେ । "ଏଇ 'କିଛି ପରିମାଣରେ' ଉଲ୍ଲେଖଟି ସୂଚାଇଦିଏ ଯେ ଦୀପକଙ୍କ କବିତା କିପରି ଅବବୋଧ ଦୃଷ୍ଟିରୁ ଦୁରନ୍ତ ଓ ଦୁର୍ଲବ୍ଧ । କିନ୍ତୁ ପ୍ରେମ ଓ ମୃତ୍ୟୁଚେତନା ଦୃଷ୍ଟିରୁ ଶ୍ରୀ ମିଶ୍ର ଯେ ବହୁ ସ୍ମରଣୀୟ କବିତାର ସ୍ରଷ୍ଟା ଏକଥା ତାଙ୍କ ବଂଧୁ ଡକ୍ଟର ଶତପଥୀ ମୁକ୍ତକଣ୍ଠରେ ସୂଚାଇଛନ୍ତି ଓ ବହୁ ଉଦାହରଣ ଦେଇ ବୁଝାଇଛନ୍ତି ।

ପରବର୍ତ୍ତୀ ନିବନ୍ଧର ଶୀର୍ଷକ "କ୍ରାନ୍ତିକାରୀ ରୋମାଣ୍ଟିକ୍ ମାନବବାଦୀ କବି ବ୍ରଜନାଥ ରଥ" । ବ୍ରଜନାଥ ଆଧୁନିକ ଓଡ଼ିଆ କବିତାରେ ଜଣେ ବହୁପ୍ରସୂ କବି, ଯାହାଙ୍କର କବିତା ଅଧିକ ବିଷୟନିଷ୍ଠ ଓ କିଛି ପରିମାଣରେ ଶିଳ୍ପକୁଣ୍ଠ । କବିତାରେ ସର୍ବଦା ଉଚ୍ଚବାକ୍ ଏହି କବିଙ୍କୁ ଆକଳିତ କରିବାକୁ ଯାଇ ଡ. ଶତପଥୀ ତାଙ୍କୁ 'କ୍ରାନ୍ତିକାରୀ' କହିଛଂତି ସତ, କିନ୍ତୁ 'ରୋମାଣ୍ଟିକ୍' କହିବାକୁ ବିସ୍ମରି ନାହାନ୍ତି । ଆମୃତ୍ୟୁ କବିତାରେ ମସଗୁଲ୍ ଏହି କବିଂକ କବିତା ସଂପର୍କରେ ସମାଲୋଚକ ଶତପଥୀଙ୍କ ଚୂଡ଼ାନ୍ତ ଟିପ୍ପଣୀ ହେଲା- "ଶ୍ରୀ ବ୍ରଜନାଥ ରଥ ଉତ୍ତର-ଷାଠିଏରୁ ଏହିପରି ଏକ ଆଦର୍ଶ ଓ ଉଦ୍ଦେଶ୍ୟ ସହ ନିଜକୁ ସାମିଲ୍ କରି ଆସିଛନ୍ତି- ଯେଉଁ ଉଦ୍ଦେଶ୍ୟ ବି ମାନବିକ ମମତ୍ୱ ଓ ମହତ୍ତ୍ୱକୁ ଉତ୍ତୋଳନ କରି ରଖିଛି ଓ ମଣିଷକୁ ତା'ର ଅଧିକାର ପ୍ରଦାନ ପାଇଁ ସ୍ୱରାୟିତ ହୋଇଛି ।" (ପୃ-୫୩୦) ।

ଗ୍ରନ୍ଥର ସର୍ବାଶେଷ ନିବନ୍ଧଟି "ପ୍ରତିଭା ଶତପଥୀ : ଉତ୍ତର ସତୁରୀ କାବ୍ୟଚେତନା", ଯହିଁରେ ପ୍ରଫେସର ଶତପଥୀ ତାଂକୁ ଏହି ସମୟର ବଳିଷ୍ଠ ସ୍ୱର ଭାବେ ପ୍ରତିପାଦିତ କରିବାର ଉଦ୍ୟମ କରିଛନ୍ତି ଯାହାକି ଖୁବ୍ ବେଶୀ ଅମୂଳକ ନୁହେଁ । ପ୍ରତିଭାଙ୍କ କବିତା ସଂପର୍କରେ ଡ. ଶତପଥୀଙ୍କ ଅବଧାରଣାଟି ଏହିପରି : "ଶ୍ରୀମତୀ ଶତପଥୀ ସମ୍ମୋହନ ଓ ବିଷାଦର କବି । ତାଂକ କବିତା ଅଯଥା ବୁଦ୍ଧିବାଦ ଦ୍ୱାରା ଆଛନ୍ନ ନୁହେଁ, ବରଂ ହୃଦୟର ମାର୍ମିକ ଅନୁଭବରେ ତାଂକ କବିତାର ସ୍ୱର ଭାବତରଳ । ସୁରେନ୍ଦ୍ର ମହାନ୍ତିଙ୍କର ଏକ ବକ୍ତବ୍ୟ ('ଅସ୍ତଜହ୍ନର ଏଲିଜି' ପ୍ରସଙ୍ଗରେ) ଆଧାରରେ ସେ କହନ୍ତି- "ତାଙ୍କ କବିତାରେ ସ୍ଲୋଗାନ ନାହିଁ, ଅଛି ଗଭୀର ସୌନ୍ଦର୍ଯ୍ୟବୋଧ । ଇଣ୍ଟେଲେକ୍‌ଟୁଆଲିଜିମ୍ ର ଉଦ୍‌ଘୋଷଣା ନାହିଁ, ଅଛି ବହୁ ମାର୍ମିକ ଅନୁଭୂତିର ଅଭିଜ୍ଞାନ ।" କବୟିତ୍ରୀ ସମାଲୋଚକଙ୍କର ସ୍ୱପତ୍ନୀ ହୋଇଥିବାରୁ ତାଙ୍କ ସଂପର୍କରେ ଏପରି ଦୃଢ଼ ସକାରାତ୍ମକ ଦୃଷ୍ଟିକୋଣ ପୋଷଣ ଯେ ସଚେତନ ପକ୍ଷପାତିତା, ଏ ଅଭିଯୋଗ ଯେ କବୟିତ୍ରୀଙ୍କ ପ୍ରତି ଅସହନଶୀଳତା ସାବ୍ୟସ୍ତ ହେବ, ଏଥିରେ ସନ୍ଦେହ ନାହିଁ ।

ପରିଶେଷରେ ଏତକ କୁହାଯାଇପାରେ ଯେ, ଆଲୋଚ୍ୟ ପୁସ୍ତକରେ ଚୟିତ କବିମାନଙ୍କ କବିତାରେ ବିଷୟ ଓ ଭାବଗତ ଐକ୍ୟ ନଥିବା ସତ୍ତ୍ୱେ ଆଲୋଚ୍ୟ କବିଏ ସମ ସମୟଖଣ୍ଡର ହୋଇଥିବାରୁ ସମ୍ଭବତଃ ପ୍ରଫେସର ଶତପଥୀ ତାଂକ ରୁଚି ଓ ଅବବୋଧ

ଭିତିରେ ମାତ୍ର ଦଶଜଣ କବିଙ୍କୁ ତାଂକ ଆଲୋଚ଼ନା ପରିସରଭୁକ୍ତ କରିଛନ୍ତି । ସେହି ସମକାଳର ବହୁ ସମର୍ଥ କବିଙ୍କୁ ସେ କାହିଁକି ବାଦ୍ ଦେଲେ, ସେ ପ୍ରଶ୍ନ ପ୍ରାସଂଗିକ ହେଲେ ବି ନିରର୍ଥକ । ଯେଉଁ କବିମାନଙ୍କୁ ସମାଲୋଚ଼କ ଶତପଥୀ ଆଲୋଚ଼ନା ପର୍ଯ୍ୟାୟଭୁକ୍ତ କରିଛଂତି, ସେମାନେ ଯେ ସ୍ୱସମୟର ପ୍ରତିନିଧି ସ୍ଥାନୀୟ କବି, ଏକଥାକୁ ଅସ୍ୱୀକାର କରିହେବ ନାହିଁ । ସମଗ୍ର ଆଲୋଚ଼ନାଗ୍ରନ୍ଥଟି ଆଲୋଚ୍ୟ କାବ୍ୟଗ୍ରନ୍ଥର କେତେକ ଦିଗକୁ ଉଜ୍ଜ୍ୱଳ କରି ତୋଳି ଧରିଥିବା ବେଳେ ଅନ୍ୟ କେତେକ ଦିଗ ହୁଏତ ଅଣଦେଖା ରହିଥାଇପାରେ । ଯଥା: ଦୁଇ ବିପରୀତ ଅର୍ଥବାହୀ ଯୋଡ଼ି କାବ୍ୟକୁ ନୂଆ ଅର୍ଥ ଦେବା ଓ ବକ୍ତବ୍ୟକୁ ଗତିଶୀଳ କରାଇବାରେ ପ୍ରଫେସର ଶତପଥୀଙ୍କ ସମାଲୋଚ଼ନାର ଭାଷା ଯେଉଁ ଅବକାଶ ରଖେ, ତା'ର ବିକଳ୍ପ ତାଂକ ସମକାଳୀନ ବା ପୂର୍ବବର୍ତ୍ତୀ ସମାଲୋଚ଼ନା ସାହିତ୍ୟରେ ବିରଳ । ଯେପରି 'ଉଦାସୀ ବ୍ୟବଧାନ' (ପୃ: ୬୪) ଉତ୍ତୀର୍ଣ୍ଣ ଅସାର୍ଥକତା, ମାର୍ମିକ ଅପ୍ରମିତତା, ନିରଳସ, ସୌଜନ୍ୟ ଆଦି କିଛି ଶବ୍ଦ । କିନ୍ତୁ କବିପ୍ରତିଭାର ସାମଗ୍ରିକ ଆକଳନ ଦୃଷ୍ଟିରୁ ଏ ଗ୍ରନ୍ଥ ଯେ ଉତ୍ତର-ସତୂରୀ ଓଡ଼ିଆ କବିତାର ଏକ ଦିଶାଦର୍ଶୀ ପରିକଳ୍ପନା, ଏଥିରେ ସନ୍ଦେହ ନାହିଁ । ଏପରି ଏକ ପୁସ୍ତକରେ ନିଜସ୍ୱ ଅଧିକ ଉଚ୍ଚାରଣ ପାଇଁ ପ୍ରଫେସର ଶତପଥୀ ଯେ ଓଡ଼ିଆ କବିତାର ସମାଲୋଚ଼ନା ଇତିହାସରେ ଜଣେ ପ୍ରତିବଦ୍ଧ ଦିଗପାଳ ପରି ଅନେକଦିନ ଯାଏଁ ଜାଜ୍ଜ୍ୱଲ୍ୟମାନ ରହିବେ, ଏ ବିଶ୍ୱାସ ମୋର ରହିଛି । ଅନେକ କବିଙ୍କ ଦୁର୍ବୋଧ କବିତାକୁ ସେ ଜଣେ ବରିଷ୍ଠ ବ୍ୟାଖ୍ୟାକାର ଭାବେ ଅର୍ଥବୋଧ କରିବାରେ ଯେଉଁ ପ୍ରୟାସ ରଖିଛନ୍ତି ତାହା ସେ ସମୟର କବିତାକୁ ପାଠକ ପାଖରେ ପହଞ୍ଚେଇବାର ଏକ ନିରଳସ ପ୍ରଚ଼େଷ୍ଟା ବୋଲି ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ।

■ *ମିରା ପଯର, ୩୩୧/୧୯୦୫/୪୦*
*ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୧୬*
*ମୋ: ୯୮୫୩୨୮୭୭୫୫*

# ସମାଲୋଚ଼କ ନିତ୍ୟାନନ୍ଦ ଶତପଥୀ : ‘କାବ୍ୟଦୃଷ୍ଟି କାବ୍ୟବିଚ଼ାର’

♦ କୁମୁଦଚନ୍ଦ୍ର ଦାଶ

ସମାଲୋଚନା ଏକ ବ୍ୟାପକ ପ୍ରସଙ୍ଗ ଯାହା କଳାର ବିଭିନ୍ନ ରୂପ ସହିତ ସମ୍ପୃକ୍ତ । ସମାଲୋଚ଼ନା ଚିତ୍ର, ସଙ୍ଗୀତ, ନୃତ୍ୟ, ଅଭିନୟ, ଚଳଚ୍ଚିତ୍ର ଓ ଅନ୍ୟ ଅନେକ ଦିଗନ୍ତ ସହିତ ଜଡ଼ିତ । ସେହି ଧାରାରେ ସାହିତ୍ୟର ବିଚ଼ାର ଚର୍ଚ୍ଚା ସାହିତ୍ୟ-ସମାଲୋଚ଼ନା (Literary Criticism) ଭାବେ ସ୍ୱୀକୃତ, ଯାହାକୁ ସାହିତ୍ୟ କ୍ଷେତ୍ରରେ ସଂକ୍ଷେପରେ ସମାଲୋଚ଼ନା ବୋଲି କୁହାଯାଏ । ଏହି ପ୍ରସଙ୍ଗରେ ଗୋଟିଏ ପ୍ରଶ୍ନ ଉଠେ, ଏହା କେତେଦୂର ସାହିତ୍ୟ ପଦବାଚ୍ୟ । ଓଡ଼ିଶାରେ ସାହିତ୍ୟ ସମାଲୋଚ଼ନା ଯେପରି ଉପେକ୍ଷାର ଶରବ୍ୟ ହୁଏ, ସେ ଦୃଷ୍ଟିରୁ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ପରି ପ୍ରଥିତଯଶା ସମାଲୋଚ଼କମାନେ ଏପରି ପ୍ରଶ୍ନର ସମ୍ମୁଖୀନ ହୋଇଥିବା ଦେଖିବାକୁ ମିଳେ । ଅବଶ୍ୟ ଓଡ଼ିଆ ସାହିତ୍ୟରେ ସମାଲୋଚ଼ନାର ନିମ୍ନମାନ ଏପରି ଏକ ସଂଶୟର କାରଣ ବୋଲି କୁହାଯାଇପାରେ । କିନ୍ତୁ ଓଡ଼ିଶାରେ ଭଲ ଆଲୋଚ଼କ ଆଦୌ ନାହାନ୍ତି ବୋଲି ମଧ୍ୟ କୁହାଯିବା ଯଥାର୍ଥ ନୁହେଁ । ପଦପଦବୀ ବଳରେ ସାହିତ୍ୟର ସ୍ରଷ୍ଟା ରୂପେ ସ୍ୱୀକୃତ କବି, ନାଟ୍ୟକାର, ଔପନ୍ୟାସିକ ଓ ଗାଳ୍ପିକମାନେ ସମାଲୋଚ଼ମାନଙ୍କୁ ଏକ ପ୍ରକାର ବ୍ୟବହାର କରି ସାରି ଉପେକ୍ଷାର ନେପଥ୍ୟକୁ ଫିଙ୍ଗି ଦେଉଛନ୍ତି । କ୍ୱଚିତ୍ କୌଣସି ସମାଲୋଚ଼କ ଭାଗ୍ୟରେ ପୁରସ୍କାରଟିଏ ପାଇବା ସମ୍ଭବ ହେଉଛି । ଶେଷ ପର୍ଯ୍ୟନ୍ତ ସମାଲୋଚକମାନଙ୍କୁ ଡକ୍ଟର ଦାଶରଥି ଦାସଙ୍କ ଭାଷାରେ ପରଗୋଡ଼ାଣିଆ ହୋଇ ରହିଯିବାକୁ ପଡୁଛି ।

ସାହିତ୍ୟ ଜୀବନର ସମାଲୋଚ଼ନା (Criticism of Life) ହୋଇଥିବାବେଳେ ସମାଲୋଚ଼ନା ସାହିତ୍ୟ ନିର୍ଭରଶୀଳ ବିଚ଼ାର ଅନୁଶୀଳନ । ଏହି ପରିପ୍ରେକ୍ଷୀରେ ପ୍ରତ୍ୟକ୍ଷ ଜୀବନ-ଚେତନାଠାରୁ ଏହା ହୁଏତ ଆପାତତଃ ଦୂରବର୍ତ୍ତୀ । କିନ୍ତୁ ପ୍ରକୃତ ସତ୍-ସମାଲୋଚ଼କ ସାହିତ୍ୟ ସ୍ରଷ୍ଟାଙ୍କ ପରି ଏପରି ଜୀବନବୋଧର ଅଧିକାରୀ ହୋଇଥାନ୍ତି ଏବଂ ଏକ ଅତୁଳନୀୟ ଦାର୍ଶନିକ ଐକ୍ୟ ବା କେନ୍ଦ୍ରୀୟତା ପ୍ରକୃତ ସମାଲୋଚ଼କର ପରିଚୟରେ ପରିଣତ ହୁଏ । ଦର୍ଶନର ବ୍ରହ୍ମାସ୍ୱାଦ ପରି ‘ସାହିତ୍ୟର ବ୍ରହ୍ମାସ୍ୱାଦ ସହୋଦର’ ଭାବ ଯେପରି ସାଦୃଶ୍ୟ ବ୍ୟଞ୍ଜକ, ସୃଷ୍ଟି ଓ ସମାଲୋଚ଼ନା ଭିତରେ ସେହି ସମ୍ପର୍କ

ଲକ୍ଷଣୀୟ । ସୁପ୍ରାଚୀନ କାଳରୁ ବିଦଗ୍ଧ ସହୃଦୟ ଭାବେ ସମାଲୋଚକ ସ୍ୱୀକୃତି ପ୍ରାପ୍ତ । ସ୍ରଷ୍ଟାଙ୍କ ପ୍ରତିଭାକୁ 'କାରୟିତ୍ରୀ' ଓ ସମାଲୋଚକଙ୍କ ପ୍ରତିଭାକୁ 'ଭାବୟିତ୍ରୀ' କୁହାଯାଇଛି । କୌଣସିଟି ଆପେକ୍ଷିକ ଭାବେ ନ୍ୟୁନ ସ୍ତରର ନୁହେଁ । ଉଭୟ ସାହିତ୍ୟ ହେତୁ ସ୍ୱରୂପୀ ପ୍ରତିଭା ଭାବେ ଖ୍ୟାତ । କବିଙ୍କୁ 'First Critic' ବୋଲି କୁହାଯାଏ । ସମୀକ୍ଷାବୋଧ ସୃଷ୍ଟିପ୍ରକ୍ରିୟା (Creative Process) ର ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ସୃଷ୍ଟିସାଧନା ସମ୍ଭବ ନୁହେଁ । ଏଲିୟଟ ତାଙ୍କ 'Selected Essays' ବହିରେ 'Function of Criticism' ପ୍ରବନ୍ଧରେ ସୃଷ୍ଟିକୁ ସମୀକ୍ଷାତ୍ମକ (Critical) ଓ ସମୀକ୍ଷାକୁ ସର୍ଜନାତ୍ମକ (Creative) ବୋଲି କହିଛନ୍ତି । ଅବଶ୍ୟ 'ସର୍ଜନାତ୍ମକ' କହିଲେ ସେ ଯାହା ବୁଝନ୍ତି, ତାହା ବିଚ୍ଛିନ୍ନ ବା ଅଧିସଂଯୁକ୍ତ ଭାଷାଶୈଳୀ ମାତ୍ର ନୁହେଁ । ତାହା ଅତ୍ୟନ୍ତ ସୂକ୍ଷ୍ମ, ଅନ୍ତର୍ଦୃଷ୍ଟିପୂର୍ଣ୍ଣ ରସାତ୍ମବୋଧ । ଏହି ପରିପ୍ରେକ୍ଷୀରେ ସମାଲୋଚନାକୁ ଶୁଦ୍ଧ ସାହିତ୍ୟର ପର୍ଯ୍ୟାୟଭୁକ୍ତ କରିବା ଅସଙ୍ଗତ ହେବ ନାହିଁ । କବି, ନାଟ୍ୟକାର, ଔପନ୍ୟାସିକ ବା ଗାଳ୍ପିକଙ୍କ ପରି ସାହିତ୍ୟର ସମାଲୋଚକ ମଧ୍ୟ ସମତୁଲ୍ୟ ଭୂମି ଓ ଭୂମିକାରେ ଉପାସ୍ୟ । କିନ୍ତୁ ଓଡ଼ିଶାରେ ତରୁଣରୁ ତରୁଣତର ନଗଣ୍ୟ ତଥାକଥିତ ସ୍ରଷ୍ଟାଙ୍କ ସମ୍ପର୍କରେ ସ୍ତୂପୀକୃତ ନିବନ୍ଧ ରଚିତ ହେଉଥିବାବେଳେ ବିଶିଷ୍ଟ ସମାଲୋଚକଙ୍କ ସମ୍ପର୍କରେ ସେମାନଙ୍କ ଅଶୀତିପର ଜୀବନର ଅପରାହ୍ଣରେ ମଧ୍ୟ ଖୋଜିବସିଲେ ସାଧାରଣ କ୍ଷୁଦ୍ର ପ୍ରବନ୍ଧଟିଏ ମଧ୍ୟ ମିଳୁନାହିଁ । ଏହା ଏକ ଜାତୀୟ ବିଡ଼ମ୍ବନା । ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଅଦୃଷ୍ଟ ଏହାଠାରୁ ଭିନ୍ନ ହୋଇପାରିନାହିଁ ।

ସ୍ୱାଧୀନତା ପରେ ଓଡ଼ିଆ ସାହିତ୍ୟ ସମାଲୋଚନାର ଯେ ଭୂୟୋବିକାଶ ସାଧିତ ହୋଇଛି ଏଥିରେ ଆଦୌ କୌଣସି ସନ୍ଦେହ ପ୍ରକାଶ କରିବା ଠିକ୍ ହେବ ନାହିଁ । ଅବଶ୍ୟ ଏ ବିକାଶ ବହୁ ପରିମାଣରେ 'ପରିମାଣାତ୍ମକ' ବୋଲି ହୁଏତ କୁହାଯିବ । କିନ୍ତୁ ତତ୍‌ସତ୍ତ୍ୱେ ସମାଲୋଚନାର ଗୁଣାତ୍ମକ ଅଭିବୃଦ୍ଧି ବି ସାଧିତ ହୋଇଛି । ସମାଲୋଚକମାନେ ଯଥାଶକ୍ତି ସମସାମୟିକ ପାଶ୍ଚାତ୍ୟ ସମାଲୋଚନାର ସଂସ୍ପର୍ଶରେ ଆସିବାକୁ ଉନ୍ମୁଖ ହୋଇଛନ୍ତି । ଏହି ବିକାଶର ହୁଏତ ଗୋଟିଏ ପ୍ରଧାନ ହେତୁ ଉଚ୍ଚଶିକ୍ଷା କ୍ଷେତ୍ରରେ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟୟନ ଓ ଅଧ୍ୟାପନାର ବ୍ୟାପକ ବ୍ୟବସ୍ଥା । ସ୍ୱାଭାବିକ ଭାବେ ଓଡ଼ିଆ ବିଭାଗର ଅଧ୍ୟାପକ ଅଧ୍ୟାପିକାମାନେ ହିଁ ଏହି ବିକାଶର କାରଣ ହୋଇଛନ୍ତି । ଡକ୍ଟର ମାୟାଧର ମାନସିଂହ ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' (୧୯୬୭)ରେ ଓଡ଼ିଆ ଅଧ୍ୟାପକମାନଙ୍କ ଆଲୋଚନାର ନିମ୍ନମାନ ସମ୍ପର୍କରେ ଆକ୍ଷେପୋକ୍ତି ପ୍ରକାଶ କରିଥିଲେ ମଧ୍ୟ ଓଡ଼ିଆ ସମାଲୋଚନାକୁ ଏହି ଅଧ୍ୟାପକମାନଙ୍କ ଉପରେ ହିଁ ନିର୍ଭର କରିବାକୁ ପଡ଼ିଛି । ଇଂରାଜୀ ବିଭାଗର ଅଧ୍ୟାପକ ଅଧ୍ୟାପିକାମାନେ କେବେ କେବେ ଆଲୋଚନା କ୍ଷେତ୍ରରେ

ଦେଖାଦେଉଥିଲେ ମଧ୍ୟ ସେମାନଙ୍କ ପ୍ରଚେଷ୍ଟା ଖଣ୍ଡିତ ଓ ସେମାନଙ୍କ ଉପରେ ପାଠକଗୋଷ୍ଠୀର ଅସାଧାରଣ ପ୍ରତ୍ୟାଶା ପୂର୍ଣ୍ଣ ହେବାକୁ ଅକ୍ଷମ । ଉଦାହରଣସ୍ୱରୂପ ବିଶିଷ୍ଟ ଇଂରାଜୀ ପ୍ରଫେସର ଯତୀନ୍ଦ୍ରମୋହନ ମହାନ୍ତିଙ୍କ କଥା କୁହାଯାଇପାରେ । ସେ ଇଂରାଜୀରେ ଲେଖିଥିବା 'History of Oriya Literature' ଆପାତତଃ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ହେଲେ ହେଁ ସେଥିରେ ପ୍ରକୃତ ବିଚାରବୋଧଗତ ଭାରସାମ୍ୟ ନ ଥିବା ଅଭିଯୋଗ ବିଶିଷ୍ଟ ଗବେଷକମାନେ କରିଛନ୍ତି । ସ୍ୱୟଂ ଡକ୍ଟର ମାୟାଧର ମାନସିଂହ ତ ଏହାର ପୂର୍ବ ଦୃଷ୍ଟାନ୍ତ । ଚିତ୍ତରଞ୍ଜନ ଦାସ ବା ସୁରେନ୍ଦ୍ର ମହାନ୍ତିଙ୍କ ପରି ଅନ୍ୟ କ୍ଷେତ୍ରର ଆଲୋଚକ ପ୍ରାୟତଃ ଏକ ପ୍ରବିରଳ ବିଷୟ । ସ୍ୱାଧୀନତା ପରେ ଯେଉଁ ବିଶିଷ୍ଟ ଓଡ଼ିଆ ଅଧ୍ୟାପକମାନେ ଏ କ୍ଷେତ୍ରରେ ସର୍ବଶେଷ ଯଶସ୍ୱୀ ହୋଇଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ନଟବର ସାମନ୍ତରାୟ, ଚିନ୍ତାମଣି ବେହେରା, ନରେନ୍ଦ୍ରନାଥ ମିଶ୍ର, ଦାଶରଥି ଦାସ ଓ ଉପସ୍ଥିତ ଆଲୋଚକ ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କୁ ସର୍ବାଗ୍ରେ ସ୍ମରଣ କରାଯାଇପାରେ । ଏମାନଙ୍କ ମଧ୍ୟରୁ ନଟବର ସାମନ୍ତରାୟ 'ଓଡ଼ିଆ ସାହିତ୍ୟର ଇତିହାସ, ୧୯୦୩-୧୯୨୦' ଲେଖିଛନ୍ତି ଏବଂ ତାଙ୍କ ଚର୍ଚ୍ଚା ୧୯୨୦ ମସିହା ସମୟ ଅବଧିରେ ସୀମାବଦ୍ଧ । ପରବର୍ତ୍ତୀ କାଳରେ ସେ ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ ପ୍ରତି ନିବିଷ୍ଟ ହୋଇଛନ୍ତି । ଆଧୁନିକ ସାହିତ୍ୟ ବିଶେଷତଃ ଆଧୁନିକବାଦୀ କବିତା ସହିତ ସେ ସମ୍ପୂର୍ଣ୍ଣଭାବେ ଅସମ୍ପୃକ୍ତ । ଚିନ୍ତାମଣି ବେହେରା 'ଆଧୁନିକତାବାଦ'ର ଅଗ୍ରଗାମୀ ସମାଲୋଚକ ହେଲେ ହେଁ ସେ ବିଦଗ୍ଧ କବି ଓ ସମାଲୋଚନାର ଗୁଣାତ୍ମକ ଉତ୍କର୍ଷ ସତ୍ତ୍ୱେ ପରିମାଣ ଦୃଷ୍ଟିରୁ ଖଣ୍ଡିତ ସାଧନା ହିଁ କରିଛନ୍ତି । ନରେନ୍ଦ୍ରନାଥ ମିଶ୍ରଙ୍କ 'ଆଧୁନିକ ଓଡ଼ିଆ କାବ୍ୟଧାରା' ମଧ୍ୟ ଦୁଇଖଣ୍ଡରେ ପ୍ରକାଶିତ ବିରାଟ ଚର୍ଚ୍ଚାନିବନ୍ଧ ହୋଇଥିବା ସତ୍ତ୍ୱେ, ତାହା ସେହି ୧୯୨୦ ପର୍ଯ୍ୟନ୍ତ କବିତାର ବିଚାର । ୧୯୩୫ ମସିହା ପରେ ବିକଶିତ ହୋଇଥିବା ମାର୍କସବାଦୀ ଓ ଆଧୁନିକବାଦୀ ସାହିତ୍ୟ, ବିଶେଷତଃ କବିତାର ସମ୍ୟକ ଅନୁଶୀଳନ ଯେଉଁ ଦୁଇ ତୁଙ୍ଗ ଆଲୋଚକଙ୍କ ଦ୍ୱାରା ସମ୍ଭବ ହୋଇଛି ଓ ବହୁ ପରିମାଣରେ ପାଠକମାନଙ୍କ ଅଭାବ ପୂର୍ଣ୍ଣ କରିପାରିଛି, ସେମାନେ ହେଲେ ଡକ୍ଟର ଦାଶରଥି ଦାସ ଓ ଡକ୍ଟର ନିତ୍ୟାନନ୍ଦ ଶତପଥୀ ।

ଦାଶରଥି ଦାସ 'ଆଧୁନିକ କାବ୍ୟଜିଜ୍ଞାସା : ଚିତ୍ରକଳ୍ପ' ଲେଖି ଆଧୁନିକ କବିତା ଆଲୋଚନା କ୍ଷେତ୍ରରେ ବିପ୍ଳବ ସୃଷ୍ଟି କରିଛନ୍ତି । ଆଧୁନିକ କବିତାର ଦୁଇ ମହାନ୍ କାବ୍ୟପୁରୁଷ ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ରଙ୍କ ସମ୍ପର୍କରେ ସେ 'ମୃତ୍ୟୁଲୋକରେ ଋତୁ ସପ୍ତମ' ଓ 'ଚିହ୍ନାମାଟି ଅଚିହ୍ନା ଆକାଶ' (ଡିଲିଟ୍ ନିବନ୍ଧ) ଲେଖିଛନ୍ତି । ଡକ୍ଟର ନିତ୍ୟାନନ୍ଦ ଶତପଥୀ କୌଣସି କବିଙ୍କ ସମ୍ପର୍କରେ ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ ନ ଲେଖିଥିଲେ ହେଁ ତାଙ୍କର 'ସବୁଜର

ସାଂପ୍ରତିକ' ଅସାଧାରଣ ଲୋକପ୍ରିୟତା ହାସଲ କରିଥିବା ତାଙ୍କର ପିଏଚ୍.ଡି. ନିବନ୍ଧ, ଯହିଁରେ ୧୯୨୦ ରୁ ୧୯୭୦ ପର୍ଯ୍ୟନ୍ତ ଓଡ଼ିଆ କବିତାର ବିଶଦ ଅନୁଶୀଳନ ପରିଲକ୍ଷିତ ହୁଏ । ପୁଣି ତାଙ୍କର 'ସତୁରୀରୁ ସହସ୍ରାବ୍ଦୀ'ରେ ଦଶଜଣ ଆଧୁନିକ କବିଙ୍କ '୧୯୭୦ ରୁ ୨୦୦୦' ମଧ୍ୟରେ ରଚିତ କବିତାର ବିଚାରଚର୍ଚ୍ଚା ଲକ୍ଷ୍ୟ କରାଯାଏ । ଏଥିରେ ରମାକାନ୍ତ ଓ ସୀତାକାନ୍ତଙ୍କ ସମ୍ପର୍କରେ ତାଙ୍କର ଅନୁଶୀଳନ ଯେପରି ଦୀର୍ଘ, ତାହା ଏକ ଏକ ପୂର୍ଣ୍ଣାଙ୍ଗ ଗ୍ରନ୍ଥର ସଂଗୋତ୍ରୀୟ ହୋଇଅଛି । ସେହିପରି ସଂକ୍ଷିପ୍ତ ଭାବେ ହେଲେ ମଧ୍ୟ ସେ ଆଧୁନିକ କବିତାର ତାତ୍ତ୍ୱିକ ଅନୁଶୀଳନ ମଧ୍ୟ କରିଛନ୍ତି 'କାବ୍ୟପ୍ରକରଣ' ଆଦି ଗ୍ରନ୍ଥରେ । କବିତା ସମ୍ପର୍କିତ ଡକ୍ଟର ଶତପଥୀଙ୍କ ଗ୍ରନ୍ଥଗୁଡ଼ିକ ହେଲା- 'କବିତା ଯୁଗେ ଯୁଗେ', 'ସବୁଜରୁ ସାମ୍ପ୍ରତିକ', 'କାବ୍ୟପ୍ରକରଣ', 'ପ୍ରମୁଖ କବି କତିପୟ', 'ସତୁରୀରୁ ସହସ୍ରାବ୍ଦୀ' ଓ 'କାବ୍ୟଦୃଷ୍ଟି କାବ୍ୟବିଚାର' ଇତ୍ୟାଦି । ଡକ୍ଟର ନିତ୍ୟାନନ୍ଦ ଶତପଥୀ ଉତ୍ତର ଷାଠିଏର ବିଶିଷ୍ଟ ସମାଲୋଚକ ଓ ସେହିଭାବେ ଡକ୍ଟର ଦାଶରଥି ଦାସଙ୍କ ନିକଟ ସମସାମୟିକ । ଉଭୟଙ୍କ ମଧ୍ୟରେ ଦୃଷ୍ଟିଭଙ୍ଗୀଗତ ବହୁ ପାର୍ଥକ୍ୟ ଓ ସ୍ତରଭେଦ ରହିଥିଲେ ମଧ୍ୟ ଆଧୁନିକବାଦୀ କବିତାର ନିଷ୍ଠାପର ଅନୁଶୀଳନ ପ୍ରୟାସ ଦୃଷ୍ଟିରୁ ସେମାନଙ୍କୁ ଏକତ୍ର ସ୍ମରଣ କରାଯାଇପାରେ । ରବୀନ୍ଦ୍ରନାଥଙ୍କ ଶବ୍ଦ ବ୍ୟବହାର କରି କହିଲେ ଦାଶରଥି 'ବିଚିତ୍ରଗାମୀ' ହୋଇଥିବା ବେଳେ ନିତ୍ୟାନନ୍ଦ ହୋଇଛନ୍ତି 'ସର୍ବତ୍ରଗାମୀ' । ଦାଶରଥି କବିମାନଙ୍କୁ ସ୍ୱୀକୃତି ଦେବାରେ ଯେତେ ନିର୍ବାଚନଶୀଳ ନିତ୍ୟାନନ୍ଦ ତା'ଠାରୁ ଯଥେଷ୍ଟ ଭିନ୍ନ ଓ ଉଦାର । ବହୁ ତରୁଣ କବିଙ୍କ ନିତ୍ୟାନନ୍ଦ ବେଶ୍ ଉତ୍ସାହିତ କରିଛନ୍ତି । ପୁଣି ଦାଶରଥିଙ୍କ ଠାରୁ ତାଙ୍କର ଆଉ ଏକ ଭିନ୍ନତା ମାର୍କସବାଦୀ ସାହିତ୍ୟ ପ୍ରତି ଦୃଷ୍ଟିକୋଣ ନେଇ । ଦାଶରଥି ବିପ୍ଳବ-ସାହିତ୍ୟକୁ ପ୍ରାୟ ନାକଚ କରିଥିବାବେଳେ, ନିତ୍ୟାନନ୍ଦ ତାଙ୍କ ବ୍ୟକ୍ତିଗତ ଜୀବନର ସମ୍ପୃକ୍ତି ପରିପ୍ରେକ୍ଷୀରେ ବେଶ୍ ରାଜନୈତିକ ଆଗ୍ରହ ପୋଷଣ କରନ୍ତି । 'କ୍ଳାନ୍ତି ନା କ୍ରାନ୍ତି' ପ୍ରବନ୍ଧରେ ଆଧୁନିକବାଦୀ 'କ୍ଳାନ୍ତି' ନୁହେଁ ମାର୍କସବାଦୀ 'କ୍ରାନ୍ତି'ର ସେ ପକ୍ଷ ସମର୍ଥନ କରିଛନ୍ତି ।

ବିଶ୍ୱ ବା ପ୍ରକୃତି (Nature) କୃତି (Work) ଶିଳ୍ପୀ (Artist) ସହୃଦୟ (Audience) କୁ ନେଇ ସମୀକ୍ଷାତତ୍ତ୍ୱରେ ଚାରିଟି ସ୍ପଷ୍ଟ କେନ୍ଦ୍ରୀୟତା ପରିଲକ୍ଷିତ ହୁଏ । ପ୍ରସିଦ୍ଧ ସମାଲୋଚକ I.A. Richards ଙ୍କର ଜଣେ ଅନୁଗାମୀ ସମାଲୋଚକ M.H.Abrams ଏ ସମ୍ପର୍କରେ କହିଛନ୍ତି-, "Four elements is the total situation of a work of art are discriminated and made salient, by one or anther synonym, in almost all theories which aim to be comprehesive. First, there is the work, the artistic product is

self. And since this is a human product, an artiface, the second common element is the artificer, the 'artist'. Third, the work is taken to have a subject, which, directly or deviously, is derived from extisting things - to be about or signiby, of reflect something which either is or bears some relation to, an objective state or affairs. This third element, whether held to consist of people or actions, idea, of feelings, material things or events, or super sensible essences, has frequently bean denoted by that work-of-all-work, 'nature' - but let us use the more netural and copmrehnsive term, 'universe' insted. For the ferial element we have the 'audiense', the listeners, spectators or readers to whom the work is addressed or to whose attention, at any rate, it becomes available." (The mirror and the Lamp - page-6) ଏହି ଅନୁକ୍ରମେ ଚାରିପ୍ରକାର ସାହିତ୍ୟିକ ବିଚାରବୋଧ ପ୍ରକଟିତ - ଅନୁକୃତି (mimetic) ପ୍ରାୟୋଜନିକ (Pragmatic) ଅଭିବ୍ୟକ୍ତି ଭିତ୍ତିକ (Expressive) ଓ ବସ୍ତୁପରକ (objective) । ସାହିତ୍ୟ-ସମାଲୋଚନା ସାମାଜିକ ପ୍ରତିଫଳନର ବିଶ୍ଳେଷଣ କରିପାରେ, ଲୋକପ୍ରିୟତା ଅନୁଶୀଳନ କରିପାରେ, କବି ଜୀବନର ପ୍ରତିବିମ୍ବ ଅନ୍ୱେଷଣ କରିପାରେ କିମ୍ବା ସ୍ୱୟଂ କୃତିଟିର ନିରପେକ୍ଷ ବ୍ୟବଚ୍ଛେଦ କରିପାରେ । ଐତିହାସିକ ବିବର୍ତ୍ତନ କ୍ରମରେ ସତ୍ତାତତ୍ତ୍ୱ ବା ବସ୍ତୁପରକ ଦୃଷ୍ଟିଭଂଗୀ ସର୍ବାଧୁନିକ । Abramas ଏହି ବିଷୟରେ କହିଛନ୍ତି, "But there is also a fourth procedure, the 'objective orientation' which on principle regards the work of art in isolation from all these external points of reference, analysis is as a self-sufficient entity constituted by as parts of their internal relations and sets out to judge in solely by the criteria intrinsic to its mode of being. (Page-26 ibid)

ଆରିଷ୍ଟୋଟଲଙ୍କ 'Poetics'ରେ ମିଶ୍ରପଦ୍ଧତି ଭିତରେ ଏହି ତତ୍ତ୍ୱର ଆଦିରୂପ 'ଟ୍ରାଜେଡ଼ି'ର ଅନୁଶୀଳନରେ ଲକ୍ଷ୍ୟ କରାଯାଏ । ଅଷ୍ଟାଦଶ ଊନବିଂଶ ଶତାବ୍ଦୀରେ ଏହ

ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହେଲା । କବିତାର ବାହ୍ୟତା-ନିରପେକ୍ଷ ରୂପର ଉପଲବ୍ଧି ପରିଲକ୍ଷିତ ହେଲା । କ୍ୟାଣ୍ଟଙ୍କ ଚିନ୍ତାଧାରାକୁ ଭିତ୍ତି କରି କେତେକ ଜର୍ମାନୀ ଆଲୋଚ଼କ କବିତାର ସ୍ୱାଧୀନ ସତ୍ତାର ବିଶ୍ଳେଷଣ କଲେ । ଆମେରିକାର କବି ଏଡ୍‌ଗାର ଆଲେନ ପୋ ଏହି ଦୃଷ୍ଟିଭଙ୍ଗୀ ସମ୍ପର୍କରେ କହିଲେ poem 'perse' - written solely for the poems sake. "କଳା ପାଇଁ କଳାତତ୍ତ୍ୱ ସହିତ ଏହା ବୋଧହୁଏ ସମ୍ବନ୍ଧିତ ହୋଇଉଠିଲା ବିଂଶ ଶତାବ୍ଦୀର ମଧ୍ୟଭାଗରେ ଯାହା ସର୍ବଶେଷ ସ୍ୱୀକୃତ ହେଲା । ଏଲିୟଟ୍ କହିଲେ "When we are considering poetry we must consider it primarily as poetry and not another thing." ସେ ତାଙ୍କର ପ୍ରସିଦ୍ଧ "Tradition and the Individual Talent" ପ୍ରବନ୍ଧରେ କହିଛନ୍ତି, "Honest criticism and sensitive appreciati on is alivacted not upon the poet but upon the poetry." (Selected Essays - Page-17) ମ୍ୟାକଲିସ୍ କହିଲେ "A poem should not mean but be." ନୂତନ ସମାଲୋଚକ ଜନ୍ କ୍ରୋ ରାନ୍ ସମ (John crowe Ransom) କବିତାର "The autonomy of work itself as existing for its own sake" କଥା କହିଲେ । ରେନେ ୱେଲେକ୍ ଓ ଅଷ୍ଟନ୍ ୱାରେନଙ୍କ "The theory of literature" ର ଦୃଷ୍ଟିଭଙ୍ଗୀ ମଧ୍ୟ ସ୍ମର୍ତ୍ତବ୍ୟ । ସମାଲୋଚ଼କ ନିତ୍ୟାନନ୍ଦ ଶତପଥୀ ଏ ସବୁ ବିଷୟରେ ଆପାତତଃ ଖୁବ୍ ବେଶି ଧ୍ୟାନନିଷ୍ଠ ନ ହେଲେ ମଧ୍ୟ ଐତିହାସିକ ବା ନୈତିକ ସମାଲୋଚ଼ନା, ଜୀବନୀଗତ ବା ମନସ୍ତାତ୍ତ୍ୱିକ ବିଚାର ଇତ୍ୟାଦି ବହିରଙ୍ଗ ଭିତ୍ତିକ ଦୃଷ୍ଟିକୋଣକୁ ତ୍ୟାଗ କରି ମୁଖ୍ୟତଃ ଏହି ବସ୍ତୁନିଷ୍ଠ ଦୃଷ୍ଟିଭଙ୍ଗୀ ଉପରେ ଗୁରୁତ୍ୱ ଦେଇଥିବା ପରିଦୃଷ୍ଟ ହୁଏ । କବିତାର ପ୍ରାୟୋଗିକ ସମାଲୋଚ଼ନାର ପରମ୍ପରା ପ୍ରତିଷ୍ଠା କ୍ଷେତ୍ରରେ ସେ ଥିଲେ ଜଣେ ପଥିକୃତ ସାଧକ । ଏହା ନୂତନ ସମାଲୋଚନାର ଏହି ପ୍ରତିଷ୍ଠିତ ଦୃଷ୍ଟିକୋଣ ସହିତ ତାଙ୍କ ସମ୍ପୃକ୍ତିର ପରିଚାୟକ । ଏହା ତାଙ୍କ ସମାଲୋଚ଼ନାର ଆଧୁନିକତା ପ୍ରତିପାଦନ କରେ ।

'କାବ୍ୟଦୃଷ୍ଟି କାବ୍ୟବିଚାର' (୨୦୧୫) ଡକ୍ଟର ଶତପଥୀଙ୍କର ସଦ୍ୟତମ ସୃଷ୍ଟି, ଯହିଁରେ ସେ ମୁଖ୍ୟତଃ ଆଧୁନିକବାଦୀ କବିତାର କେତେକ ବିଭବ ଓ ବିଭାବକୁ ବିଶ୍ଳେଷଣ କରିଛନ୍ତି । ଏଥିରେ ନିମ୍ନୋକ୍ତ ପ୍ରସଙ୍ଗମାନ ଅନ୍ତର୍ଗର୍ଭିତ ।

୧. କ୍ଲାସିସିଜମ୍
୨. ରୋମାଣ୍ଟିସିଜମ୍
୩. କବିତାରେ ଚିତ୍ରକଳ୍ପ
୪. ପ୍ରତୀକବାଦ

୫. ଆଧୁନିକ ଓଡ଼ିଆ କବିତାରେ ଅତିଭୌତିକ / ରହସ୍ୟବାଦୀ ଚେତନା
୬. ଅତିବାସ୍ତବବାଦ
୮. ପ୍ରଗତିବାଦୀ ଓଡ଼ିଆ କାବ୍ୟଚେତନାର ଇତିହାସ ଓ ପରିସର
୯. ପରଂପରା ଓ ଆଧୁନିକତା
୧୦. ସ୍ୱରାଜ୍ୟ ଆନ୍ଦୋଳନ ଓ ଓଡ଼ିଆ କବିତା
୧୧. ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା
୧୨. ଆଧୁନିକ ଓଡ଼ିଆ କବିତାର ଭାଷା ଓ ଛନ୍ଦ
୧୩. ସାମ୍ପ୍ରତିକ ଓଡ଼ିଆ କବିତାର ଧାରା (trend)
୧୪. ଆଧୁନିକ ଓଡ଼ିଆ କବିତାର ସୀମା ଓ ସଂଜ୍ଞା
୧୫. ଉତ୍ତର ଆଧୁନିକ ଓଡ଼ିଆ କବିତା

ମୁଖ୍ୟତଃ ଆଧୁନିକବାଦୀ ଓଡ଼ିଆ କବିତାର ବିଶ୍ଳେଷଣ ସମାଲୋଚକଙ୍କ ଲକ୍ଷ୍ୟ ।

କ୍ଲାସିସିଜମ୍ ଓ ରୋମାଣ୍ଟିସିଜମ୍ ସାହିତ୍ୟର ସର୍ବାଧିକ ପ୍ରତିଷ୍ଠିତ ପ୍ରତ୍ୟୟ (concept) ବା ଧାରଣା । ସାହିତ୍ୟରେ ଗୋଟିଏ ଯୁଗ କ୍ଲାସିସିଜମ୍‌ର ହେଲେ ପରବର୍ତ୍ତୀ ଯୁଗଟି ରୋମାଣ୍ଟିସିଜମ୍‌ର ହୁଏ । ଆଧୁନିକତାବାଦୀ କବିତାର ମୂଳଉତ୍ସ ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀର ନିଓକ୍ଲାସିସିଜମ୍ ଏବଂ ଉତ୍ତର ଆଧୁନିକତା ପଛରେ ରହିଛି ରୋମାଣ୍ଟିସିଜମ୍‌ର ପ୍ରେରଣା । ରାଧାନାଥଙ୍କଠାରୁ ରାଧାମୋହନଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ କାବ୍ୟଧାରାର ମୁଖ୍ୟ ପ୍ରବୃତ୍ତି ଥିଲା ରୋମାଣ୍ଟିସିଜମ୍ ଯଦିଓ ତା'ର ଅନ୍ତରୀଣ ପ୍ରବାହ ଭାବେ କ୍ଲାସିସିଜମ୍‌ର ଧାରା ରାଧାନାଥ, ଗଙ୍ଗାଧର ଓ ଗଡ଼ନାୟକ ପ୍ରମୁଖଙ୍କୁ ଅନୁପ୍ରାଣିତ କରିଥିଲା । ଏଲିୟଟ୍ ନିଜକୁ "Classicist in Literature" ବୋଲି କହିଥିଲେ ଓ ଏଲିୟଟ୍ ପ୍ରଭାବିତ ଆଧୁନିକ ଓଡ଼ିଆ କବିତା ଜୀବନମୃତ୍ୟୁ ଭାବଧାରା 'ରୋମାଣ୍ଟିକ୍ ଆଗୋନି'ର ଐତିହ୍ୟର କଥା କହିଥାଏ । ଡକ୍ଟର ଶତପଥୀଙ୍କ ଓ ସମ୍ପର୍କିତ ପ୍ରବନ୍ଧ ଦୁଇଟି ଖୁବ୍ ଚିତ୍ତାକର୍ଷକ, ତାଙ୍କ ଆଲୋଚନାରେ ଆନୁଷ୍ଠାନିକତା (Academicism) ଓ ସୌଖୀନ (Amature) ଧାରା ଯୁଗପତ୍ ପ୍ରବାହିତ । ଏହି ପ୍ରବନ୍ଧଟିରେ କ୍ଲାସିସିଜମ୍‌ର ସଂଜ୍ଞା, ସ୍ୱରୂପ ଓ ଆଭିମୁଖ୍ୟ ପୁଣି ଗ୍ରୀକ୍ ଲାଟିନ୍ ସାହିତ୍ୟରେ ତା'ର ପ୍ରାରମ୍ଭିକ ପରମ୍ପରାର ଆଲୋଚନା ସହିତ ଅଷ୍ଟାଦଶ ଶତାବ୍ଦୀର ମୂଲ୍ୟବୋଧ (Higher values of life), ସୁରୁଚି (good taste) ସମାହିତ ସୌନ୍ଦର୍ଯ୍ୟ (serene beauty) ଶୃଙ୍ଖଳା (order) ସର୍ବସମନ୍ୱିତ ବିଭବ (integrity) ପ୍ରାଞ୍ଜଳତା (clarity) ପରିପକ୍ୱତା (maturity) ଓ ଗାମ୍ଭୀର୍ଯ୍ୟ (gravity) ଆଦି କ୍ଲାସିକାଲ୍ ବିଭାବ ଗୁଡ଼ିକୁ ସେ ଖୁବ୍ ଯାଥାର୍ଥ୍ୟର ସହିତ ବିଚାର କରିଛନ୍ତି । ପ୍ରବନ୍ଧଟିରେ ସେ ପ୍ରସଙ୍ଗ କ୍ରମେ ଏଲିୟଟଙ୍କ "What is a classic" ପ୍ରବନ୍ଧର ଅବତାରଣା କରିଛନ୍ତି । ଗ୍ରୀକ୍ ସାହିତ୍ୟର

ଅଡେ଼ସୀ, ଇଲିଆଡ୍ ଓ ରୋମାନ୍ ସାହିତ୍ୟର ଏନିଡ୍ ପରି ଭାରତୀୟ ସାହିତ୍ୟର ରାମାୟଣ ଓ ମହାଭାରତ କଥା ସମୀକ୍ଷାତ୍ମକ ଭାବେ ବିଚାର କରିଛନ୍ତି । କାଳିଦାସ ଓ ମଧ୍ୟକାଳୀନ ଭାରତୀୟ ସଂସ୍କୃତ କାବ୍ୟସାହିତ୍ୟର ମୂଲ୍ୟାୟନମୂଳକ ସିଦ୍ଧାନ୍ତ ଉପସ୍ଥାପିତ କରିଛନ୍ତି । "Paradise lost" (miton) ଠାରୁ ଆରମ୍ଭ କରି ଏଲିୟଟ୍‌ଙ୍କ "The Waste Land" ଟଲ୍‌ଷ୍ଟୟଙ୍କ "War and Peace" ଦସ୍ତୋଭସ୍କିଙ୍କ "Crime and punishment" ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି' ଆଦିର କ୍ଲାସିକ୍ ସୃଷ୍ଟି କଥା କହିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟରୁ ରାଧାନାଥଙ୍କ 'ମହାଯାତ୍ରା', ଗଙ୍ଗାଧରଙ୍କ 'ତପସ୍ୱିନୀ', ଫକୀର ମୋହନଙ୍କ 'ଛମାଣ ଆଠଗୁଣ୍ଠ', ଗୋପୀନାଥ ମହାନ୍ତିଙ୍କ 'ଅମୃତର ସନ୍ତାନ', ରମାକାନ୍ତଙ୍କ 'ଶ୍ରୀରାଧା' ଓ ପ୍ରତିଭା ଶତପଥୀଙ୍କ 'ଶବରୀ' ଆଦିକୁ କ୍ଲାସିକ୍ ସୃଷ୍ଟିର ମାନଦଣ୍ଡରେ ସମୀକ୍ଷାତ୍ମକ ଭାବେ ଉପସ୍ଥାପିତ କରିବାକୁ ଚେଷ୍ଟା କରିଛନ୍ତି । ସାହିତ୍ୟର ସମଗ୍ର ପରଂପରା ତାଙ୍କ ଆଲୋଚନା ଭିତରକୁ ଚାଲି ଆସିଛି । 'ରୋମାଣ୍ଟିସିଜମ୍' ପ୍ରବନ୍ଧଟି ଠିକ୍ ଏଇଭଳି ସାର୍ଥକ ଓ ସୁନ୍ଦର । ରୋମାଣ୍ଟିସିଜମ୍‌ର ସଂଜ୍ଞା, ରୋମାଣ୍ଟିକ୍ ଭାବନାର ବିବର୍ତ୍ତନ, ରୋମାଣ୍ଟିକ୍ ଚେତନାର ମୁଖ୍ୟ ବିଭାବ କ୍ରମରେ ଉତ୍ତୁଙ୍ଗ କଳ୍ପନା ବିଳାସ, ପ୍ରକୃତି, ଦେଶାତ୍ମବୋଧ, ପ୍ରେମଭାବନା, ବିଷାଦବୋଧ, ରହସ୍ୟବୋଧ, ବ୍ୟକ୍ତିକ ଅନୁଭୂତି ଉପରେ ଗୁରୁତ୍ୱ ଇତ୍ୟାଦି । ଆଧୁନିକ ଓଡ଼ିଆ କବିତାରେ ରୋମାଣ୍ଟିକ୍ ଧାରା ଇତ୍ୟାଦିର ତୁଳନାତ୍ମକ ଓ ବିଶ୍ଳେଷଣାତ୍ମକ ଆଲୋଚନା କରିଛନ୍ତି । ରାଧାନାଥଙ୍କଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ କବିମାନଙ୍କ ସମ୍ପର୍କରେ ତାଙ୍କର ବିଶେଷଜ୍ଞ ଜ୍ଞାନ ଏ ବିଶ୍ଳେଷଣାତ୍ମକ ବିଚାରରେ ତାଙ୍କୁ ବେଶ୍ ସହାୟତା ପ୍ରଦାନ କରିଛି । ପ୍ରସଙ୍ଗକ୍ରମେ ବହୁ ପାଶ୍ଚାତ୍ୟ କବି ଓ ସମାଲୋଚକଙ୍କ ଚିନ୍ତାଧାରାକୁ ଉଦ୍ଧୃତି ମାଧ୍ୟମରେ ଉପସ୍ଥାପିତ କରି ପ୍ରବନ୍ଧଟିକୁ ବେଶ୍ ସାରଗର୍ଭକ କରି ପାରିଛନ୍ତି । ଏ ପ୍ରବନ୍ଧ ପଢ଼ିବାବେଳେ ଚିନ୍ତାମଣି ବେହେରାଙ୍କ 'କାବ୍ୟ ଓ କଳାକାର'ର ସମ୍ପୃକ୍ତ ପ୍ରବନ୍ଧ ସ୍ମରଣକୁ ଆସେ ।

ବହୁ ପୂର୍ବେ ପ୍ରାବନ୍ଧିକ ଚିତ୍ରକଳ୍ପ ସଂପର୍କରେ ଏକ ପ୍ରବନ୍ଧ ଲେଖିଥିଲେ ଯାହା ତାଙ୍କର 'କବିତା ଯୁଗେ ଯୁଗେ'ରେ ସ୍ଥାନିତ ହୋଇଥିଲା । ଏ ଗ୍ରନ୍ଥରେ ଥିବା 'କବିତାରେ ଚିତ୍ରକଳ୍ପ' ତାହାର ଏକ ବିବର୍ତ୍ତନ ରୂପ । ଚିତ୍ରକଳ୍ପ ଆଧୁନିକ କବିତାର କେନ୍ଦ୍ରୀୟ ତତ୍ତ୍ୱ । ଏଜରା ପାଉଣ୍ଡଙ୍କ ସେହି ପ୍ରସିଦ୍ଧ ଉକ୍ତିଟି ଡଃ ଶତପଥୀ ଯଥାର୍ଥତଃ ଉଦ୍ଧାର କରିଛନ୍ତି । ତାହା ହେଲା – It is better to present one image in life time than to produce voluminous work. ବହୁ ପ୍ରାଚ୍ୟ ପାଶ୍ଚାତ୍ୟ କବି ଓ ଆଲୋଚକଙ୍କ ଉଦ୍ଧୃତି ମାଧ୍ୟମରେ ଚିତ୍ରକଳ୍ପର ସଂଜ୍ଞା, ସ୍ୱରୂପ, ଆଭିମୁଖ୍ୟ, ଇତିହାସ ଓ ମୂଲ୍ୟବୋଧ ଉପସ୍ଥାପିତ କରିଛନ୍ତି । ଓଡ଼ିଆ କବିତାରେ ଚିତ୍ରକଳ୍ପର ପ୍ରାକ୍-ପରମ୍ପରାର ସୂଚନା ଦେବା ସଙ୍ଗେ ସଙ୍ଗେ ସେ ଚିତ୍ରକଳ୍ପର ଆଦିପ୍ରବର୍ତ୍ତକ ସଚ୍ଚିରାଉତରାୟଙ୍କ ବହୁ କବିତାର ବିଚାର ବିଶ୍ଳେଷଣ ସହିତ

ବିନୋଦ ଚନ୍ଦ୍ର ନାୟକ, ଗୁରୁପ୍ରସାଦ ମହାନ୍ତି, ରାମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର ଓ ନିତ୍ୟାନନ୍ଦ ପତି ପ୍ରମୁଖ ବିଶିଷ୍ଟ ଓଡ଼ିଆ କବିଙ୍କ କବିତାର ଚିତ୍ରକଳ୍ପଗତ ପ୍ରୟୋଗଚମତ୍କାରିତା ପ୍ରଦର୍ଶନ କରିଛନ୍ତି । ଚିତ୍ରକଳ୍ପ ବିଶ୍ଳେଷଣରେ ନୂତନ ସମାଲୋଚନା (New criticism) ର ପରମ୍ପରା ସାଧାରଣ ଭାବରେ ଅବଲମ୍ବିତ ହୋଇଛି । ନୂତନ ସମାଲୋଚକମାନେ Irony, Ambiguity, Texture, Structure ଆଦି କବିତାର ଯେଉଁ ଉପାଦାନ ଗୁଡ଼ିକ ଉପରେ ଗୁରୁତ୍ୱ ଦିଅନ୍ତି, ଚିତ୍ରକଳ୍ପ (image) ତା' ଭିତରେ ଅନ୍ୟତମ । ଆଲୋଚନାରେ ତାଙ୍କ ବୌଦ୍ଧିକତା ଶିଥିଳ ନ ହୋଇ ଏକ ସକ୍ରିୟ ଚେତନାର ପରିଚୟ ପ୍ରଦାନ କରିଛି । ଚିତ୍ରକଳ୍ପ ସମ୍ପର୍କରେ ପ୍ରଖ୍ୟାତ ସମାଲୋଚକ ଦାଶରଥି ଦାସ ବିରାଟ ଏକ ଗ୍ରନ୍ଥ ଲେଖିଛନ୍ତି । କିନ୍ତୁ ଡକ୍ଟର ଶତପଥୀ ଏହି କ୍ଷୁଦ୍ର ପ୍ରବନ୍ଧରେ ଚିତ୍ରକଳ୍ପର ଯେପରି ଆଲୋଚନା କରିଛନ୍ତି ତାହା ବେଶ୍ ସାର୍ଥକ ଓ ପ୍ରୀତିପ୍ରଦ ମନେହୁଏ ।

ଆଧୁନିକ କବିତାର ଅନ୍ୟ ଏକ ବିଶିଷ୍ଟ କେନ୍ଦ୍ରୀୟ ତତ୍ତ୍ୱ ପ୍ରତୀକବାଦ (Symbolism) ଉଭର ଉନବିଂଶ ଶତାବ୍ଦୀର ଫରାସୀ ପ୍ରତୀକବାଦ ଠାରୁ ହିଁ ଆଧୁନିକବାଦର ଜୟଯାତ୍ରା ଆରମ୍ଭ ହେଲା । ପ୍ରବନ୍ଧର ସଂଗଠନ ଦୃଷ୍ଟିରୁ ଏହା ଚିତ୍ରକଳ୍ପ ପ୍ରବନ୍ଧର ସଗୋତ୍ରୀୟ । ଏହା ମଧ୍ୟ ତାଙ୍କର ପୁରୁଣା ପ୍ରବନ୍ଧର ଅଭିବୃଦ୍ଧି ବୋଧହୁଏ । ପ୍ରତୀକର ସଂଜ୍ଞା, ଇତିହାସ, ଓଡ଼ିଆ କବିତାରେ ପ୍ରତୀକ ଆଦି ପର୍ଯ୍ୟାୟରେ ପ୍ରସଂଗଟିଏ ସୁନ୍ଦର ଅବତାରଣା କରାଯାଇଛି । ମାର୍କସବାଦୀ କବିତାର ପ୍ରତୀକ ତୁଳନାନିଷ୍ଠ ଅନ୍ତର୍ଦୃଷ୍ଟି ମନୋଜ୍ଞ ଚମତ୍କାରିତା ସୃଷ୍ଟି କରିଛି । ଏ ପ୍ରବନ୍ଧ କେବଳ ଶୁଷ୍କ ତତ୍ତ୍ୱ ନିର୍ଣ୍ଣୟ ନୁହେଁ, ସମାଲୋଚକଙ୍କ ସୌନ୍ଦର୍ଯ୍ୟ ଅନ୍ୱେଷୀ ଚେତନାର ଏକ ମଧୁକୋଷ । ପ୍ରବନ୍ଧର ପ୍ରାରମ୍ଭରେ Ernst Cassirer ଙ୍କ ଏହି ମତଟି ଉପସ୍ଥାପିତ କରିଛନ୍ତି ପ୍ରାବନ୍ଧିକ - Man lives in a symbolic universe. Language, myth, art and religion are parts of this universe. They are the varied thread which weave the symbolic net." ଓଡ଼ିଆରେ ପ୍ରତୀକ ଚର୍ଚ୍ଚାର ପ୍ରାରମ୍ଭିକ କାଳରେ ଏହା ଥିଲା ଏକ ଉଲ୍ଲେଖଯୋଗ୍ୟ ରଚନା ।

'ଆଧୁନିକ ଓଡ଼ିଆ କବିତାରେ ଅତିଭୌତିକ / ରହସ୍ୟବାଦୀ ଚେତନା' ପ୍ରବନ୍ଧରେ ପରାଭୌତିକ କବିତା ବା mataphysical poetry ର ପରମ୍ପରା ଆଲୋଚିତ ହୋଇଛି । ଏହାର ଆଧ୍ୟାତ୍ମିକ ରହସ୍ୟବାଦୀ ଅର୍ଥାତ୍ ଦାର୍ଶନିକ ପରମ୍ପରା ସହିତ 'Metaphysical poet' ମାନଙ୍କ କାବ୍ୟିକ ଐତିହ୍ୟର ସାର୍ଥକ ଦୃଷ୍ଟାନ୍ତ ଓଡ଼ିଆ ସାହିତ୍ୟରେ କିପରି ରହିଛି, ତାହା ଡକ୍ଟର ଶତପଥୀ ଖୁବ୍ ସଫଳତାର ସହିତ ଉପସ୍ଥାପିତ କରିଛନ୍ତି । ପ୍ରାଚୀନ ଆଧୁନିକ, ଉତ୍ତର ଆଧୁନିକ ସବୁ ପର୍ଯ୍ୟାୟର ଓଡ଼ିଆ କବିତା ମନୋଜ୍ଞ ତର୍ଜମା ମାଧ୍ୟମରେ ଏ ପ୍ରବନ୍ଧରେ ସ୍ଥାନ ପାଇଛି ।

ଆଧୁନିକବାଦୀ କବିତାର ଆନୁଷ୍ଠାନିକ ଦର୍ଶନ (official philosophy) ହେଉଛି Existentialism ଯାହାକୁ ଓଡ଼ିଆରେ ସ୍ଥିତିବାଦ ବା ଅସ୍ତିତ୍ୱବାଦ ବୋଲି କୁହାଯାଉଛି । ପ୍ରଫେସର ଶରତ କୁମାର ମହାନ୍ତି 'ଅସ୍ତିତ୍ୱବାଦର ମର୍ମକଥା' ନାମକ ବିରାଟ ଗ୍ରନ୍ଥ ଲେଖି ଓଡ଼ିଶାରେ ଏ ଦର୍ଶନକୁ ବେଶ୍ ଲୋକପ୍ରିୟ କରାଇପାରିଛନ୍ତି । ସେ ସ୍ଥିତିବାଦର ଶ୍ରେଷ୍ଠ ଦାର୍ଶନିକ ଜାଁପଲ୍ ସାର୍ତ୍ରଙ୍କ ସମ୍ପର୍କରେ ସେଇ ନାମରେ ମଧ୍ୟ ଗ୍ରନ୍ଥଟିଏ ଲେଖିଛନ୍ତି, ଆଧୁନିକବାଦୀ କବିତାରେ ପରିଦୃଷ୍ଟ ବିଷାଦ, ଯୁଗଯନ୍ତ୍ରଣା, ମୃତ୍ୟୁବୋଧ, ବିଚ୍ଛିନ୍ନତା, ନିଃସଙ୍ଗତା, ଉଦ୍ଭଟତା, ସ୍ଥିତିବାଦୀ ଦର୍ଶନ, ଆଧୁନକବାଦ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଜନ୍ମଗ୍ରହଣ କଲାବେଳେ ଆଇନ୍ ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ (୧୯୦୫), ନିତ୍‌ସେଙ୍କ ଦର୍ଶନ ଓ ଫ୍ରେଜରଙ୍କ "Golden Bough" । ଏଥିରୁ ନିତ୍‌ସେ ହେଉଛନ୍ତି ସ୍ଥିତିବାଦୀ ଦାର୍ଶନିକ । ସ୍ଥିତିବାଦ ୧୯୪୫ ମସିହା ଅର୍ଥାତ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ୧୯୬୦ ମଧ୍ୟରେ ଆଧୁନିକବାଦର ଏକ ଅନ୍ତିମ ତରଙ୍ଗ ସୃଷ୍ଟି କରିଥିଲା । ଡଃ ନିତ୍ୟାନନ୍ଦ ଶତପଥୀ ଏହି ଦାର୍ଶନିକ ପ୍ରେରଣାର ବଶବର୍ତ୍ତୀ ହୋଇ 'ଅସ୍ତିତ୍ୱବାଦ ଓ ଓଡ଼ିଆ କବିତା' ପ୍ରବନ୍ଧ ଲେଖିଛନ୍ତି । ସେ ଏଥିରେ ସ୍ଥିତିବାଦୀ ଦର୍ଶନର ଆଭିମୁଖ୍ୟକୁ ସାଧାରଣ ଭାବରେ ବୁଝାଇବା ସଙ୍ଗେ ସଙ୍ଗେ ସାର୍ତ୍ର, କାମ୍ୟୁ, କାଫ୍‌କା ପ୍ରମୁଖଙ୍କ ସ୍ଥିତିବାଦୀ ସାହିତ୍ୟର ସାମାନ୍ୟ ପରିଚୟ ମଧ୍ୟ ପ୍ରଦାନ କରିଛନ୍ତି । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସ୍ଥିତିବାଦ ଦର୍ଶନ ଅପେକ୍ଷା ବେଶୀ ଏକ ସାହିତ୍ୟପ୍ରବଣ ଚିନ୍ତାଧାରା । ବସ୍ତୁତଃ ମାର୍କସ୍‌ବାଦ ଏକ ଦର୍ଶନ (Philosophy) ଓ ସ୍ଥିତିବାଦ ଏକ ଚିନ୍ତାଦର୍ଶ (Ideology). ୧୯୬୦ରେ ସାର୍ତ୍ର ସ୍ଥିତିବାଦର ଅଗ୍ରଗତିର ବାଟ ନ ଦେଖି ମାର୍କସ୍‌ବାଦ ପାଖରେ ଆତ୍ମସମର୍ପଣ କରିଥିଲେ । ତେବେ ଆଧୁନିକ ଓଡ଼ିଆ କବିତାକୁ ଖୁବ୍ ବେଶୀ ପ୍ରଭାବିତ କରିଥିବା ଏଲିୟଟଙ୍କ ସାହିତ୍ୟ ମଧ୍ୟ ସ୍ଥିତିବାଦୀ ବୋଲି କୁହାଯାଇପାରିବ । ଡଃ ଶତପଥୀଙ୍କ ବିଚାର ଅନୁଶୀଳନ ମୋଟାମୋଟି ସନ୍ତୋଷଜନକ । ସେ ଓଡ଼ିଆ କବିମାନଙ୍କ ମଧ୍ୟରୁ ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ପ୍ରତିଭା ଶତପଥୀ, ରାଜେନ୍ଦ୍ର କିଶୋର ପଣ୍ଡା, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ସୌଭାଗ୍ୟ କୁମାର ମିଶ୍ର, ଗୁରୁପ୍ରସାଦ ମହାନ୍ତି ପ୍ରମୁଖଙ୍କ କବିତାର ସ୍ଥିତିବାଦୀ ବ୍ୟଞ୍ଜନା ଉଦ୍‌ଘାଟନ କରିଛନ୍ତି । ରମାକାନ୍ତ ବା ସୀତାକାନ୍ତ ଏଥିରୁ ବାଦ୍ ପଡ଼ିବାର କାରଣ କ'ଣ ତାହା ବୁଝା ପଡୁନାହିଁ । ଆଧୁନିକବାଦୀ କବିତା ପୂର୍ଣ୍ଣତଃ ସ୍ଥିତିବାଦୀ । ଏହାର ବହୁମୁଖୀ ଆଲୋଚନା ହୋଇପାରେ । ମାର୍କସବାଦ ଓ ସ୍ଥିତିବାଦ ଆପାତତଃ ସମାଜ ଓ ବ୍ୟକ୍ତିଭାବନାର ଦୂରତ୍ୱ ନେଇ ବିରୋଧୀ ହେଲେ ହେଁ ଦ୍ୱିତୀୟଟି ପ୍ରଥମଟିଠାରୁ ବହୁ ଉପାଦାନ ଆହରଣ କରିଛି । ସଚ୍ଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ କବିତାରେ ଏହା ଲକ୍ଷ୍ୟ କରାଯାଇପାରେ । ଏକ କ୍ଷୁଦ୍ର ପ୍ରବନ୍ଧରେ ଏ ଦାର୍ଶନିକ ଭାବଧାରାକୁ ଡଃ ଶତପଥୀ ଯେପରି ଉପସ୍ଥାପିତ କରିଛନ୍ତି, ତାହା ପ୍ରଶଂସନୀୟ ବୋଲି ମନେହୁଏ ।

'ଅତିବାସ୍ତବବାଦ' (Surrealism) ସମ୍ପର୍କରେ ଓଡ଼ିଆରେ ବିଶେଷ ଆଲୋଚ଼ନା କରିଦୃଷ୍ଟ ହୁଏ ନାହିଁ । ସଚ୍ଚି ରାଉତରାୟ ତାଙ୍କ ଗଦ୍ୟରଚନାରେ ଏହାର ପରିଚୟ ଦେଇଥିଲେ ଏବଂ ପ୍ରଫେସର ହଳଧର ପଣ୍ଡା, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଇନ୍ଦୁ ମିଶ୍ର ପ୍ରମୁଖ ଏ ସମ୍ପର୍କରେ ପ୍ରବନ୍ଧ ଲେଖିଛନ୍ତି । ଡଃ ଶତପଥୀ ଫରାସୀ କାବ୍ୟଚେତନାର ଏହି ପ୍ରଭାବଶାଳୀ ଆନ୍ଦୋଳନର ଯଥାଯଥ ପରିଚୟ ଦେଇ ଆଧୁନିକ ଓଡ଼ିଆ କବିତାରେ ଏହାର ଅବିଚ୍ଛିନ୍ନ ପରମ୍ପରା ନିରୂପଣ କରିଛନ୍ତି । ପ୍ରସଙ୍ଗକ୍ରମେ ସେ ବହୁ ପାଶ୍ଚାତ୍ୟ କବିତାର ଅବତାରଣା କରିଛନ୍ତି, ଯାହା ତାଙ୍କ ବିଜ୍ଞତାର ପରିଚ୍ଛାୟକ । ସଚ୍ଚିରାଉତରାୟଙ୍କ କବିତାରେ ପ୍ରଥମେ ଏ ଆନ୍ଦୋଳନର ବ୍ୟାପକ ଓ ଗଭୀର ପ୍ରଭାବ ଅନୁଭୂତ ହୁଏ । ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି'ର ପଶ୍ଚୁ, ରାକ୍ଷସ, ଶରୀର ସଙ୍ଗୀତ ଆଦି କବିତାର ତାତ୍ପର୍ଯ୍ୟ ଏ ଦୃଷ୍ଟିରୁ ଆଲୋଚ଼ନା କରିଛନ୍ତି । ବସ୍ତୁତଃ ଫ୍ରୟେଡୀୟ ମନସ୍ତତ୍ତ୍ୱ ହିଁ ଅତିବାସ୍ତବବାଦର ମୂଳଉତ୍ସ, ଯାହା ଏକ ସୂକ୍ଷ୍ମ ମନସ୍ତାତ୍ତ୍ୱିକ ବାସ୍ତବତାର କଥା କହିଲା । କବିତା-୧୯୬୨ର 'ସ୍ୱଗତ' କବିତାର ବିଚ୍ଚର ମଧ୍ୟ କରାଯାଇଛି । ସେହିପରି 'ଭାନୁମତୀର ଦେଶ'ର ଯୌନ ପ୍ରତୀକବାଦର କଥା । ଅନ୍ୟ କବିମାନଙ୍କ ମଧ୍ୟରୁ ଭାନୁଜୀରାଓ, ରମାକାନ୍ତ ରଥ, ବିନୋଦ ଚନ୍ଦ୍ର ନାୟକ, ଦୀପକ ମିଶ୍ର, ଜଗନ୍ନାଥ ପ୍ରସାଦ ଦାସ, ପ୍ରମୁଖଙ୍କ କବିତା ଖୁବ୍ ସୁନ୍ଦର ଭାବେ ବିଶ୍ଳେଷିତ ହୋଇଛି । ଡଃ ଶତପଥୀ ଓ ଆନ୍ଦୋଳନର କାବ୍ୟନେତୃତ୍ୱ ଦେଇଛନ୍ତି ଆଧୁନିକ ଓଡ଼ିଆ କବିତାର ପିତୃପୁରୁଷ ମହାକବି ସଚ୍ଚିଦାନନ୍ଦ ରାଉତରାୟଙ୍କୁ । ସମ୍ପୃକ୍ତ ପ୍ରସଙ୍ଗରେ ଡଃ ଶତପଥୀଙ୍କ ଏ ପ୍ରବନ୍ଧ ଶ୍ରେଷ୍ଠ ସ୍ଥାନୀୟ ମନେହୁଏ ।

'ପ୍ରଗତିବାଦୀ ଓଡ଼ିଆ କାବ୍ୟଚେତନାର ଇତିହାସ ଓ ପରିସର' ପ୍ରବନ୍ଧ ଡଃ ଶତପଥୀଙ୍କ ଗବେଷଣା ନିବନ୍ଧ 'ସବୁଜରୁ ସାମ୍ପ୍ରତିକ'ର ଅଂଶ ବିଶେଷ । ପ୍ରଗତିବାଦ ମୁଖ୍ୟତଃ ମାର୍କସବାଦ ସହିତ ସମ୍ପୃକ୍ତ ଓ ଓଡ଼ିଶାରେ ଏ ଚେତନାର ଆଦିଉତ୍ସ ଗୋପବନ୍ଧୁ ବୋଲି ଆଲୋଚକ ପ୍ରାମାଣିକ ଭାବେ ଉପସ୍ଥାପିତ କରିଛନ୍ତି । ସେ 'ବିଶ୍ୱ କାବ୍ୟଧାରାରେ ପ୍ରଗତିବାଦୀ ଚେତନାର ଅନୁବର୍ତ୍ତନ' ଶୀର୍ଷକ ଏ ଚେତନାର ବିଶ୍ୱମୟ ଐତିହ୍ୟର ସଂକ୍ଷିପ୍ତ ସୂଚନା ଦେଇଛନ୍ତି । ସେହିପରି ଆଉ ଏକ ଶୀର୍ଷକ ହେଲା 'ଭାରତୀୟ ରାଜନୈତିକ କ୍ଷେତ୍ରରେ ରୁଷ୍ ବିପ୍ଳବର ପ୍ରଭାବ' । ଏହା ସଂକ୍ଷିପ୍ତ ଭାବେ ହେଲେ ମଧ୍ୟ ଖୁବ୍ ସାର୍ଥକ । ଅନ୍ତିମ ଶୀର୍ଷକ । ଓଡିଆ ସାହିତ୍ୟରେ ଏହି ଆଭିମୁଖର ଅନୁପ୍ରବେଶ ଓ ଅଗ୍ରଗତି । ଏ ଆଲୋଚ଼ନାର ବିବାଦାସ୍ପଦ ପ୍ରସଙ୍ଗ ହେଉଛି 'ପ୍ରଗତି'ର ଧାରଣା ବା ପ୍ରତ୍ୟୟ (concept) । 'ପ୍ରଗତି'ର ଧାରଣା ଭିତରକୁ ଓଡ଼ିଶାରେ ତାର ଆଦ୍ୟ ସାଧକମାନେ ଫ୍ରୟେଡୀୟ ମନସ୍ତତ୍ତ୍ୱ ଓ ଅନ୍ୟାନ୍ୟ ଆଧୁନିକ ଉପାଦାନକୁ ଆଣିଥିଲେ ମଧ୍ୟ ତାହା ମୁଖ୍ୟତଃ ମାର୍କସବାଦକୁ ବୁଝାଉଥିଲା । Marxism ଓ Modernism ଭିତରେ ଥିବା ସମ୍ପର୍କ ଓ ପାର୍ଥକ୍ୟ ଅନୁଧାନ

ଯୋଗ୍ୟ । ସବୁ ପ୍ରକାର ସାହିତ୍ୟିକ ନୂତନତା, ଯେପରି ଆଧୁନିକବାଦୀ କବିତାର ଚିନ୍ତାଧାରା ବା ଶିଳ୍ପାଦର୍ଶକୁ 'ପ୍ରଗତିବାଦୀ' ବୋଲି କେତେଦୂର କୁହାଯାଇପାରିବ, ତାହା ବିବେଚନାର ଯୋଗ୍ୟ । ପ୍ରକୃତରେ Marxism କୁ Modernism ର ଅନ୍ତର୍ଭୁକ୍ତ ବୋଲି କୁହାଯାଇ ପାରିବ ନାହିଁ । Modernism ର ଦର୍ଶନ ପ୍ରତିକ୍ରିୟାଶୀଳ ବ୍ୟକ୍ତି-ଦର୍ଶନ । ଡକ୍ଟର ଶତପଥୀ Modernism ର concept ପାଖକୁ ଯିବାକୁ କାହିଁକି ଚେଷ୍ଟା କରିନାହାନ୍ତି, ତାହା ଚିନ୍ତାର ବିଷୟ ।

'ପରମ୍ପରା ଓ ଆଧୁନିକତା' ଏକ ମନନଶୀଳ ମୌଳିକ ପ୍ରବନ୍ଧ । ଏଥିରେ ସମଗ୍ର ଓଡ଼ିଆ କାବ୍ୟ ପରମ୍ପରା ନାନା ଭାବେ ବିଶ୍ଳେଷିତ ହୋଇଛି । ଏଲିୟଟଙ୍କ ପ୍ରସିଦ୍ଧ "Tradition and the individual" ପ୍ରବନ୍ଧଟିର ପ୍ରାସଙ୍ଗିକ ଅବତାରଣା କରିଥିଲେ ବୋଧହୁଏ ଭଲ ହୋଇଥାନ୍ତା । ତେବେ ଏଲିୟଟ୍ ଓ ଏଜେରା ପାଉଣ୍ଡ୍ ପ୍ରମୁଖଙ୍କୁ ସେ ସ୍ମରଣ କରିଛନ୍ତି । ଆଧୁନିକ କବିତା ଯେ ପରମ୍ପରାଠାରୁ ବିଚ୍ଛିନ୍ନ ହୋଇ ମଧ୍ୟ ଜଟିଳ ସମ୍ପର୍କରେ ପରମ୍ପରା ସହିତ ସଂଶ୍ଲିଷ୍ଟ ତାହା ସେ ଉଲ୍ଲେଖ କରିଛନ୍ତି । ପ୍ରବନ୍ଧଟିର ବିଶଦତର ବିଚାର କାମ୍ୟ ମନେହୁଏ ।

'ସ୍ୱରାଜ୍ୟ ଆନ୍ଦୋଳନ ଓ ଓଡ଼ିଆ କବିତା' ତାଙ୍କ ସନ୍ଦର୍ଭରୁ ଗୃହୀତ । ଏଥିରେ ଗୋପବନ୍ଧୁ, ଲକ୍ଷ୍ମୀକାନ୍ତ, ବୀରକିଶୋର, ବାଞ୍ଛାନିଧି, ହରେକୃଷ୍ଣ ମହତାବ ଓ ନିତ୍ୟାନନ୍ଦ ମହାପାତ୍ରଙ୍କ ଜାତୀୟତାବାଦୀ କବିତାର ମନୋଜ୍ଞ ବିଚାର ସ୍ଥାନିତ ।

ପ୍ଲାଟୋ ମୃତ୍ୟୁଚେତନାକୁ ସମସ୍ତ ଦର୍ଶନର ମୂଳଉତ୍ସ ବୋଲି କହିଥିଲେ । ଆଧୁନିକ ଯୁଗରେ ଫ୍ରଏଡ୍ ମଣିଷର ମୌଳିକ ପ୍ରବୃତ୍ତି ଭାବେ Eros ଓ Thanatos ର କଥା କହିଛନ୍ତି । Eros ଯୌନପ୍ରବୃତ୍ତି ହୋଇଥିବା ବେଳେ Thanatos ହେଉଛି Death Instinct ବା ମୃତ୍ୟୁ ପ୍ରବୃତ୍ତି । ସ୍ଥିତିବାଦୀ ଦର୍ଶନରେ ମୃତ୍ୟୁକୁ ଏକ ସୀମାନ୍ତ ପରିସ୍ଥିତି (ultimate situation) ବୋଲି କୁହାଯାଇଛି । ତେବେ ମାର୍କସବାଦୀମାନେ ମୃତ୍ୟୁକୁ ନେଇ ମାତିବା ବା ମୃତ୍ୟୁବିଳାସକୁ ପୁଞ୍ଜିବାଦୀ ସଭ୍ୟତାର ଉପଜ ବୋଲି ଭାବନ୍ତି । ଏ ସବୁ ତତ୍ତ୍ୱ ଭିତରକୁ ନ ଯାଇ ଡକ୍ଟର ଶତପଥୀ 'ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁଚେତନା' ଶୀର୍ଷକ ପ୍ରବନ୍ଧ ପ୍ରଗତିବାଦୀ, ପ୍ରୟୋଗବାଦୀ ଓ ଉତ୍ତର ଆଧୁନିକ ପର୍ଯ୍ୟାୟର ଓଡ଼ିଆ କବିତାରେ ମୃତ୍ୟୁ-ଚର୍ଯ୍ୟାର ଚିତ୍ର ଓ ଚେତନାର ବିଚାର କରିଛନ୍ତି । ସଚ୍ଚି ରାଉତରାୟଙ୍କ 'ବାଜିରାଉତ'ରୁ ସିଧାସଳଖ ସେ ଆଲୋଚ଼ନା କରିଛନ୍ତି ଏବଂ ଅନନ୍ତ ପଟ୍ଟନାୟକ ଓ ରଘୁନାଥ ଦାସଙ୍କ କବିତାର ମୃତ୍ୟୁବୋଧ ବିଶ୍ଳେଷଣ କରିଛନ୍ତି । ରଘୁନାଥ ଦାସ ରାଧାମୋହନ ଗଡ଼ନାୟକଙ୍କ 'ମୃତ୍ୟୁ ହେ ତୁମେ ସେତେବେଳେ କିଆଁ ଆସ' କବିତାର ଜୀବନପ୍ରେମୀ ସବୁଜ ବିଶ୍ୱାସୀ ରୋମାଣ୍ଟିକ୍‌ତାର ବୈପ୍ଲବିକ ପ୍ରତି ସ୍ୱର କିପରି ନିଜ କବିତାରେ ଦେଇଛନ୍ତି, ତାହା ଉଲ୍ଲେଖ

କରିଛନ୍ତି । କିନ୍ତୁ ପ୍ରଗତିଶୀଳ କବିର ମୃତ୍ୟୁ ବାସ୍ତବମୃତ୍ୟୁ, ଧୂସର ଓ କଣ୍ଟକିତ ସର୍ବହରାର ଜୀବନ ସହିତ ତାହା ଜଡ଼ିତ । ସେମାନେ ସ୍ୱଭାବତଃ ମୃତ୍ୟୁଚେତନାର ବିରୋଧୀ । ସଚ୍ଚି ରାଉତରାୟ ମୃତ୍ୟୁର ଅଲଂଘ୍ୟତାକୁ କବିତାରେ ସ୍ୱୀକାର କରିଥିବା ସତ୍ତ୍ୱେ ମୃତ୍ୟୁବାଦର ବିରୋଧ କରିଛନ୍ତି ।

ନୁହେଁ ମୃତ୍ୟୁ ନୁହେଁ ଆତ୍ମହତ୍ୟା
ଅବା ନେତିତ୍ୱର ଦୀକ୍ଷା ।

ଏହା ହିଁ ମାର୍କସବାଦୀ ଦୃଷ୍ଟିକୋଣ । ପ୍ରଫେସର ସର୍ବେଶ୍ୱର ଦାଶ ତାଙ୍କ ପ୍ରିୟଛାତ୍ର ମୃତ୍ୟୁଚେତନାର ମହାକବି ରମାକାନ୍ତଙ୍କ ମୃତ୍ୟୁ ପ୍ରବଣତା ପ୍ରତି ସେଦିନ ଆକ୍ଷେପୋକ୍ତି ପ୍ରକାଶ କରିଥିଲେ । ଆଧୁନିକ କବିତାର ମୃତ୍ୟୁଚେତନା ମୁଖ୍ୟତଃ ଏକ ସ୍ଥିତିବାଦୀ ଚେତନା । ଏଲିୟଟଙ୍କ କବିତାରେ ବି ମୃତ୍ୟୁଚେତନା ଅଛି । ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତ, ଦୀପକ, ପ୍ରତିଭା, କମଳାକାନ୍ତ, ନୃସିଂହ ତ୍ରିପାଠୀ, ପ୍ରସନ୍ନ ପାଟଶାଣୀ ପ୍ରମୁଖଙ୍କ କବିତାର ମୃତ୍ୟୁଚେତନାର ମନୋଜ୍ଞ ବ୍ୟାଖ୍ୟା ପ୍ରସ୍ତୁତ କରିଛନ୍ତି ଡଃ ଶତପଥୀ । ଉତ୍ତର ସତୁରୀର କବିତାରେ ପ୍ରତିଫଳିତ ମୃତ୍ୟୁଚେତନା, ତା'ର ପୂର୍ବବର୍ତ୍ତୀ କବିତାଠାରୁ ବହୁ ଭାବେ ଭିନ୍ନ ବୋଲି ସେ ମତବ୍ୟକ୍ତ କରିଛନ୍ତି । ଏହା ସତ୍ୟ ସମ୍ଭବତଃ । କିନ୍ତୁ, ଆଜିର କବି ଆଉ ମୃତ୍ୟୁସଚେ଼ତନ ନୁହେଁ । ମୃତ୍ୟୁ ପରେ କବିର ତାହା ଏକ ସାର୍ବକାଳୀନ ଚେତନାରେ ପରିଣତ ହୋଇଛି । ସରୋଜରଞ୍ଜନ ମହାନ୍ତି ଓ ରାଜେନ୍ଦ୍ର କିଶୋର ପଣ୍ଡା ପ୍ରମୁଖ କବିମାନେ ମୃତ୍ୟୁଚେତନାର ବିରୋଧ କରିଛନ୍ତି ।

'ଆଧୁନିକ ଓଡ଼ିଆ କବିତାର ଭାଷା ଓ ଛନ୍ଦ' ଏକ ସାର୍ଥକ ପ୍ରବନ୍ଧ । ପର୍ଯ୍ୟାପ୍ତ ପାରିଭାଷିକତା ନଥିଲେ ହେଁ ଏ ପ୍ରସଙ୍ଗରେ ଡଃ ଶତପଥୀ ରୀତିକାବ୍ୟ ଓ ରୋମାଣ୍ଟିକ୍ କବିତାଠାରୁ ଆଧୁନିକ କବିତାର ଭାଷାବୋଧଗତ ଭିନ୍ନତାକୁ ପ୍ରକାଶ କରିବାକୁ ଯାଇ ବୁଦ୍ଧିଦୀପ୍ତତା (wit) ବଞ୍ଚନା (Irony) ରୁ ରୁଚିଶୀଳତା (urbanity) ଆଦିର କଥା କହିଛନ୍ତି । ସଚରାଚର ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ଯେ କବିତାର ଭାଷା ହୋଇଉଠିଛି, ତାହା ପ୍ରବନ୍ଧଟିରେ ସୁନ୍ଦର ଭାବେ ପ୍ରତିପାଦିତ ହୋଇଛି । ସେ ରୁଚି (grace) ସାବଲୀଳତା (lucidity) ଶାଣିତତା (poignancy) ଓ ସୌନ୍ଦର୍ଯ୍ୟ (eligance) ଇତ୍ୟାଦିର କଥା କହିଛନ୍ତି । ଛନ୍ଦ ଚର୍ଚ୍ଚାରେ ବି ତାଙ୍କର ଐତିହାସିକ ଅବବୋଧ ଚମତ୍କାର ତୁଳନାତ୍ମକତା ପ୍ରକାଶ କରିଛି । ଗଦ୍ୟକବିତା (prose poem) ମୁକ୍ତଛନ୍ଦ (verse libre) ଆଦି କଥା କହିଛନ୍ତି । ବାକ୍‌ରୀତି ଓ କାବ୍ୟରୀତିର ସମନ୍ୱୟରେ ସଚ୍ଚି ରାଉତରାୟଙ୍କ ଭୂମିକା ନିର୍ଦ୍ଦେଶ କରିଛନ୍ତି । ଉପଧା ବର୍ଜନ କଥା କହିଛନ୍ତି । ଆଧୁନିକ କବିତାରେ ସାଙ୍ଗୀତିକତାର ଅନ୍ତରୀଣ ଅଭିବ୍ୟକ୍ତି ଉପଧା ବର୍ଜନ କଥା କହିଛନ୍ତି । ଆଧୁନିକ କବିତାରେ ସାଙ୍ଗୀତିକତାର ଆନ୍ତରୀଣ ଅଭିବ୍ୟକ୍ତି ପ୍ରଦର୍ଶନ କରିଛନ୍ତି । କିନ୍ତୁ ଛାନ୍ଦସିକ ପ୍ରତ୍ୟାବର୍ତ୍ତନ କଥା କହି ନାହାନ୍ତି ।

'ସାଂପ୍ରତିକ ଓଡ଼ିଆ କବିତାର ଧାରା (Trend) ରେ ଆଧୁନିକ ଓଡ଼ିଆ କବିତାର ଐତିହାସିକ ଅଭିବ୍ୟକ୍ତିକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି ଡଃ ଶତପଥୀ । ପ୍ରଥମ ପର୍ଯ୍ୟାୟ ପ୍ରଗତିବାଦୀ (୧୯୩୫-୪୭+୫୦) ଦ୍ୱିତୀୟ ପର୍ଯ୍ୟାୟ ପ୍ରୟୋଗବାଦୀ (୧୯୪୭-୫୦-୧୯୭୭/୮୦), ତୃତୀୟ ପର୍ଯ୍ୟାୟ ସାଂପ୍ରତିକ ଯାହା ଅଶୀ ପରବର୍ତ୍ତୀ; ବିଶେଷଜ୍ଞ ସୁଲଭ ବିଶ୍ଳେଷଣ କରିଛନ୍ତି ଡଃ ଶତପଥୀ । ଆଧୁନିକ କବିତାର ଆଲୋଚ଼ନାରେ ପ୍ରାୟତଃ ଉପେକ୍ଷିତ ହେଉଥିବା ମାର୍କସବାଦୀ ବାମପନ୍ଥୀ ବା ପ୍ରଗତିଶୀଳ କାବ୍ୟଚେତନା ପ୍ରତି ତାଙ୍କର ଶ୍ରଦ୍ଧାର ପ୍ରମାଣ ଏ ପ୍ରବନ୍ଧରୁ ପର୍ଯ୍ୟାପ୍ତ ଭାବେ ମିଳିଥାଏ । ତେବେ ପ୍ରୟୋଗବାଦୀ କବିମାନେ ଯେ ଆକ୍ଷିପ୍ତମତେ ପୂର୍ଣ୍ଣତଃ ପରିପାର୍ଶ୍ୱ ପ୍ରତି ପ୍ରତିକ୍ରିୟାହୀନ ନୁହନ୍ତି, ତାହା ତାଙ୍କ ଆଲୋଚ଼ନାରେ ପ୍ରତିପାଦିତ ହୋଇଛି । ପ୍ରସଙ୍ଗକ୍ରମେ ସେ ରୋମାଣ୍ଟିକ୍ ବାସ୍ତବବାଦ (Romantic Realism) ର କଥା କହିଛନ୍ତି । ପ୍ରୟୋଗବାଦୀ କବିତାର ବିଭିନ୍ନ ଭାବସତ୍ତା ବିଶେଷତଃ ମୃତ୍ୟୁଚେତନାର ସ୍ୱରୂପ ଓ କ୍ରମବିବର୍ତ୍ତନର ବିଶ୍ଳେଷଣ ରହିଛି ଏ ପ୍ରବନ୍ଧରେ । ସାମ୍ପ୍ରତିକ ପର୍ଯ୍ୟାୟରେ ଦୁର୍ବୋଧତା ସଂକଟର ସମାଧାନ ଓ କବିତାର ସାମଗ୍ରିକ ପରିବର୍ତ୍ତନର ଧାରା ସୂଚିତ ହୋଇଛି ।

'ଆଧୁନିକ ଓଡ଼ିଆ କବିତାର ସୀମା ଓ ସଂଜ୍ଞା' ପ୍ରବନ୍ଧ ଏ ଦୃଷ୍ଟିରୁ ପୂର୍ବ ପ୍ରବନ୍ଧଟି ସହିତ ତୁଳନୀୟ । ଏଥିରେ 'ପରମ୍ପରା ଓ ଆଧୁନିକତା' ପ୍ରବନ୍ଧର ଭାବଧାରା ପୁନର୍ନ୍ୟାସ ଭିତ୍ତିରେ ସ୍ଥାନ ପାଇଛି ଓ ୨୦୦୦ ମସିହା ପର୍ଯ୍ୟନ୍ତ ପରିବ୍ୟାପ୍ତ ଓଡ଼ିଆ କବିତାର ସଂକ୍ଷିପ୍ତ ସୂଚନାତ୍ମକ ବିଚାର ପ୍ରଦତ୍ତ ହୋଇଛି । ପରମ୍ପରା ଓ ଆଧୁନିକତା ପ୍ରସଙ୍ଗରେ ସଚ୍ଚି ରାଉତରାୟ ଓ ପ୍ରଫେସର ବିଧୁଭୂଷଣ ଦାସଙ୍କ ଅଭିମତର ବ୍ୟାଖ୍ୟା କରିଛନ୍ତି । କିନ୍ତୁ ପରମ୍ପରା ଏ ଦୁଇ ଆଲୋଚକଙ୍କ ଦୃଷ୍ଟିକୋଣ ସମାନ ନୁହେଁ । ରାଉତରାୟଙ୍କ ଦୃଷ୍ଟି ମାର୍କସବାଦୀ ହୋଇଥିବାବେଳେ ବିଧୁଭୂଷଣ ମତର୍ଣ୍ଣିଷ୍ଟ । ତଥାପି ଆଲୋଚନାରେ ଡଃ ଶତପଥୀଙ୍କ ଦୃଷ୍ଟି ବେଶ୍ ଅନ୍ତରଙ୍ଗ ଓ ସତ୍ୟର ପାଖାପାଖି ହୋଇପାରିଛି ।

ଗ୍ରନ୍ଥର ଶେଷପ୍ରବନ୍ଧ ଦୀର୍ଘତମ ଓ ଏହା 'ଉତ୍ତର ଆଧୁନିକ ଓଡ଼ିଆ କବିତା' ନାମରେ ନାମିତ । ଏଥିରେ ଦଶଟି ପର୍ଯ୍ୟାୟ ରହିଛି । ଉତ୍ତର ଆଧୁନିକତାର ବିଦେଶୀ ପ୍ରତିମାନ ବା ଆଭିମୁଖ୍ୟ ସମ୍ପର୍କରେ ଡଃ ଶତପଥୀ ଅନାସକ୍ତି ପ୍ରକାଶ କରି ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା ଭିତରୁ ମୌଳିକ ଭାବେ ଏହି ଆଭିମୁଖ୍ୟର ସନ୍ଧାନ କରିବା ଶ୍ରେୟସ୍କର ବୋଲି ତାଙ୍କର ମତ । ଏ ପ୍ରସଙ୍ଗରେ ସେ ତାଙ୍କର ଦୁଇ ଛାତ୍ର ଓ ତରୁଣ କବି ହୃଷୀକେଶ ମଲ୍ଲିକ ଓ ଶତ୍ରୁଘ୍ନ ପାଣ୍ଡବଙ୍କ ଦୃଷ୍ଟିଭଙ୍ଗୀର ବିରୋଧାଭାସ ସୃଷ୍ଟି କରିଛନ୍ତି । ଉତ୍ତର ଆଧୁନିକତା ଧାରଣାର ଉତ୍ସ ପଶ୍ଚିମ । ତାକୁ ଛାଡ଼ି ବିଚାର କରିବା କେବେ ସମ୍ଭବ ନୁହେଁ । ଆମ କବିତାକୁ ଆମେ ତେବେ ଉତ୍ତର ଆଧୁନିକ ନ କହି ସାମ୍ପ୍ରତିକ ବା ଅନ୍ୟ କିଛି କହିବା ଉଚିତ ହେବ ।

ଯାହାହେଉ, ୧୯୮୦ ପରବର୍ତ୍ତୀ କବିତାର ପରିବର୍ତ୍ତିତ ଦୃଶ୍ୟପଟ ଯେ ପୂର୍ବବର୍ତ୍ତୀ ପ୍ରୟୋଗବାଦୀ କବିତାର ଏକ ସହଜ ଓ ସ୍ୱାଭାବିକ କ୍ରମବିବର୍ତ୍ତନ ଏହାହିଁ ଡଃ ଶତପଥୀଙ୍କ ପ୍ରକୃତ ବକ୍ତବ୍ୟ । ଉତ୍ତର ଆଧୁନିକ କବିତାର ଏହି ନଅଟି ଲକ୍ଷଣ ସେ ନିରୂପଣ କରିଛନ୍ତି । ୧- ଦୁର୍ବୋଧତା ପରିହାର, ୨- ଈଶ୍ୱରବିଶ୍ୱାସ ପରମ୍ପରାବୋଧ ଲୋକପ୍ରିୟ ଭାଷାରେ ମାଟିମନସ୍କତା, ୩- ନେତିବାଦୀ ଜୀବନଦୃଷ୍ଟି ପରିବର୍ତ୍ତେ ଅସ୍ତିବାଚକତା, ୪- ଦୃପ୍ତ ମାନବବାଦ (Radical Humanism) ଯାହାକୁ ସେ ନବ୍ୟ ମାନବବାଦ କହିଛନ୍ତି, ୫- ମିଥ୍‌ର ପୁନର୍ନ୍ୟାସ (Recreation of myth), ୬- ଲୋକ ଉପାଦାନର ବହୁଳ ବ୍ୟବହାର ୭- ବାମାବାଦ (Feminism) ୮- ସମୟ ଧାରଣାର ନୂତନତା ଓ ୯- ମୃତ୍ୟୁଚେତନାର ଭିନ୍ନଦୃଷ୍ଟି । ଏ ସବୁରେ ପୂର୍ବ କବିତାର ଆପେକ୍ଷିକତା ହିଁ ପ୍ରକଟିତ । ୮୦ ମସିହାଠାରୁ ଏ ହେଲାଣି ପ୍ରାୟ ଚାରିଦଶନ୍ଧି । ଯେଉଁ ବିଦ୍ରୋହ ଫଳରେ ଉତ୍ତର ଆଧୁନିକ କବିତା ସମ୍ଭବ ହୋଇଛି ଓ ତରୁଣତର କବିମାନେ ତାହାକୁ ଯେପରି ପ୍ରତିଷ୍ଠା କରିଛନ୍ତି, ତାର ଅନୁସନ୍ଧାନ କରାଯିବା ଆବଶ୍ୟକ । ତେବେ ଉତ୍ତର ଆଧୁନିକ ଓଡ଼ିଆ କବିତାର ଅନୁଶୀଳନ କ୍ଷେତ୍ରରେ ଡଃ ଶତପଥୀଙ୍କ ଏହି ଦୀର୍ଘ ମନୋଜ୍ଞ ପ୍ରବନ୍ଧଟିର ଏକ ଐତିହାସିକ ଭୂମିକା ରହିବ - ଏଥିରେ ସନ୍ଦେହ ନାହିଁ ।

ଡଃ ଶତପଥୀଙ୍କ ସମାଲୋଚନାର ଶ୍ରେଷ୍ଠ ଆକର୍ଷଣ ତାହାର ଭାଷାଗତ ସୌଷ୍ଠବ । ତାଙ୍କର ଶୈଳୀ ଆମୂଳଚୂଳ ସକ୍ରିୟ ଶକ୍ତିଶୀଳତାର ଏକ ବୈଦ୍ୟୁତିକ ପ୍ରବାହ । ଏହି ଅନ୍ତଃସ୍ରୋତ ପାଠକଙ୍କୁ ମୁଗ୍ଧ କରି ରଖେ । ଏହି ଶୈଳୀର ଚମତ୍କାରିତା ଯୋଗୁଁ ତାଙ୍କର ସାଧାରଣ ବକ୍ତବ୍ୟ ମଧ୍ୟ ଅସାଧାରଣ ପ୍ରତୀତ ହୁଏ । ଏହା ବୌଦ୍ଧିକ ହୋଇ ମଧ୍ୟ କାବ୍ୟଧର୍ମୀ ବା ସର୍ଜନାତ୍ମକ । ଗୋଟିଏ ଉଦାହରଣ ଦିଆଯାଇପାରେ । ରମାକାନ୍ତ ରଥଙ୍କ 'ଶ୍ରୀରାଧା' କୁ କେତେଦୂର ଏକ କ୍ଲାସିକ୍ ସୃଷ୍ଟିର ମର୍ଯ୍ୟାଦା ଦିଆଯାଇପାରିବ - ଏହି ଜିଜ୍ଞାସା କ୍ରମେ ସେ ଲେଖିଛନ୍ତି; ଏହି କ୍ରମରେ ଶ୍ରୀ ରମାକାନ୍ତ ରଥଙ୍କ 'ଶ୍ରୀରାଧା' କ୍ଲାସିକ୍ ଗୌରବ ବହନ କରିବ କି ନାହିଁ ତାହା ଚିନ୍ତାର ବିଷୟ । ଭାରତୀୟ ସାହିତ୍ୟର ଏହି ଅବିନାଶୀ ପୌରାଣିକ ଚେତନାକୁ ଯୁଗେ ଯୁଗେ କବିମାନେ ନୂତନ ଭାବ ଓ ଭାଷାର ଶକ୍ତିମତ୍ତା ମଧ୍ୟରେ ପରୀକ୍ଷା କରି ଆସିଛନ୍ତି ଓ ତଥାପି ଯେପରି ତାହାକୁ ପୂର୍ଣ୍ଣ ରୂପେ ଚିତ୍ରଣ କରିପାରି ନ ଥିବାର ଅବସାଦରେ ଆଚ୍ଛନ୍ନ ହୋଇଛନ୍ତି । ରମାକାନ୍ତ ଏପରି ଅବସାଦରୁ ମୁକ୍ତ ନୁହନ୍ତି ଓ ଏହି ଅସାମର୍ଥ୍ୟ ହିଁ 'ଶ୍ରୀରାଧା'କୁ ମୂଳରୁ ଆଚ୍ଛନ୍ନ କରି ରଖିଛି । ଭାବ ଓ ଭାଷାରେ କବି ଠାଏ ଠାଏ ଚମତ୍କାର ସୌନ୍ଦର୍ଯ୍ୟର ପରିଚୟ ହୁଏତ ଦେଇଛନ୍ତି । କିନ୍ତୁ ମୂଳରୁ ଶେଷ ଯାଏ ସଂହତି ସ୍ଥାପିତ ହୋଇପାରିଛି ବୋଲି ମନେହୁଏ ନାହିଁ । ଅର୍ଥାତ୍ କ୍ଲାସିକ୍ ସାହିତ୍ୟର ଯେଉଁ ସର୍ବସମ୍ମତି ବିଭାବ (Integrity) ପ୍ରାଞ୍ଜଳତା (clarity) ପାଠକକୁ ତନ୍ମୟ କର

ରଖେ ସାଂପ୍ରତିକ କାଳର କବିତାରେ ତାହା ସମ୍ଭବ ହୋଇ ପାରୁ ନାହିଁ । ତଥାପି ସ୍ୱଭାବୋକ୍ତି ଓ ରୂପ ସୌଷ୍ଠବ ଦୃଷ୍ଟିରୁ ଏ କାବ୍ୟଟି କ୍ଲାସିକ୍ ସୃଷ୍ଟିର ସମୀପବର୍ତ୍ତୀ ହୋଇପାରିଛି । ବିଦଗ୍ଧ ଚିନ୍ତାମଣିର ରାଧା ଯେଉଁ ଭାବରେ ପାଠକ ମନକୁ ପ୍ରେମ ଓ ବିରହର ଉତ୍ତାପରେ ଦୋହଲାଇ ଦେଇପାରନ୍ତି ରମାମାନ୍ତଙ୍କ ଶ୍ରୀରାଧା ତାହା ପାରନ୍ତିନି । ତଥାପି ଅନୁଭବର ବହୁ ଦିଗନ୍ତକୁ ସେ ଛୁଇଁ ପାରନ୍ତି ଓ ଏପରି ଏକ କଷ୍ଟସାପେକ୍ଷ ଚେତନାକୁ ରୂପାୟିତ କରିବାରେ ଆଧୁନିକ ଓଡ଼ିଆ ଭାଷାର ଶକ୍ତିମତ୍ତାକୁ ପରୀକ୍ଷା କରିପାରିଛନ୍ତି ତାହା ଆଶ୍ୱାସନାର ବିଷୟ । ନିଶ୍ଚିତ ଭାବେ ସାମ୍ପ୍ରତିକ କାଳର ଏହା ଏକ ଉଚ୍ଚକୋଟୀର ରଚ଼ନା । କିନ୍ତୁ ଏଯାବତ୍ ଏହାର ଆବେଦନ ତଥାପି ସୀମିତ ରହିଛି ଓ ସମୟର କଷଟୀରେ ପରୀକ୍ଷିତ ହୋଇନାହିଁ ।"(ପୃ:୧୮) ସମାଲୋଚନାର ଆଦର୍ଶ ଭାଷା ଦୃଷ୍ଟିରୁ ଏହା ସର୍ବଥା ସଫଳ ଭାଷାର ପରିଚ୍ଛୟକ ବୋଲି କୁହାଯାଇପାରେ ।

ଏଲିୟଟ୍ ଠାଏ କହିଛନ୍ତି: "The age of poetry is also the age of criticism." ସମାଲୋଚ଼ନାର ଶୁଦ୍ଧତା ପାଇଁ ସମକାଳୀନ କବିତାର ଅନୁଶୀଳନ ଅପରିହାର୍ଯ୍ୟ ପ୍ରଥମ ଆବଶ୍ୟକତା । ଡଃ ଶତପଥୀ ଆଧୁନିକ କବିତାର ଅନୁଶୀଳନକୁ ନିଜର ଜୀବନବ୍ୟାପୀ କ୍ଷେତ୍ର ରୂପରେ ଗ୍ରହଣ କରି ନେଇଛନ୍ତି ଏବଂ ସ୍ୱଶକ୍ତିମତେ ସଫଳ ମଧ ହୋଇଛନ୍ତି । ଏହା ତାଙ୍କର ସମାଲୋଚ଼କୀୟ ବିଜ୍ଞତା ବୋଲି କୁହାଯିବ ନିଶ୍ଚିତ ଭାବେ । ଗ୍ରନ୍ଥର ମୁଖବନ୍ଧରେ ଏହାକୁ ମୁଖ୍ୟତଃ ଛାତ୍ରମାନଙ୍କର ଉଦ୍ଦେଶ୍ୟରେ ରଚିତ ବୋଲି କହିଥିଲେ ହେଁ ଏହା ସାଧାରଣ ପାଠକ କେବଳ ନୁହେଁ, ବହୁ ସମୟରେ ବିଦଗ୍ଧ ପାଠକମାନଙ୍କୁ ମଧ ପରିତୃପ୍ତି ଆଣିଦେଇପାରେ - ଏଥିରେ ସନ୍ଦେହ ପ୍ରକାଶ କରିବାର କୌଣସି କାରଣ ଅଛି ବୋଲି ମନେ ହୁଏ ନାହିଁ । ମୋର କହିବାରେ କୌଣସି ଦ୍ୱିଧା ନାହିଁ ଯେ ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀ ଓଡ଼ିଆ ସାହିତ୍ୟର ଜଣେ ଅତି ସଫଳ ଓ ଶକ୍ତିସଂପନ୍ନ ସମାଲୋଚ଼କ ।

* ଲେଖାର ସମୟ ୧୮।୭।୧୭

■ *ଅନୁଷ୍ଟୁପ, କଲେଜପଡ଼ା, ହାକିମପଡ଼ା*
*ଅନୁଗୋଳ-୭୫୯୧୪୩*
*ମୋ: ୮୭୬୩୮୯୭୫୬୯*

# କିଛି ଅସାମାନ୍ୟ : କିଛି ସାମାନ୍ୟ କଥନ

♦ ଡକ୍ଟର ସୌଦାମିନୀ ନନ୍ଦ

"Fortunate are those who know that behind language the unsayable looms." (Rilke-translated)

କବିର କଥାରେ 'ଶବ୍ଦମାନେ' ମୁଖା ପିନ୍ଧିଥାନ୍ତି, ସାଧାରଣ ପାଠକ କଳ୍ପନା କରିବା ଭଳି ସେମାନେ ଭାବ ମାତ୍ର ନୁହନ୍ତି, ଅନୁଭବ, ଆତ୍ମାର ପ୍ରତିଟି କଥାର, ପ୍ରତି ଶ୍ୱାସଘାତରେ ସ୍ଫୁଟ ପ୍ରତିଟି ପ୍ରାଣସ୍ପନ୍ଦନକୁ ସେମାନେ ଅଲଗା ସୁରରେ ପ୍ରକାଶି ଦିଅନ୍ତି । ଆତ୍ମାର ସବୁକଥା କୁହାହେବାର ଚେଷ୍ଟା ଭିତରେ ଅକୁହା ରହେ ।

ଅର୍ଥ ସଂକେତକୁ ଧରି ଭାବରହସ୍ୟ ଭିତରେ ଡୁବୁଥିବା ଶବ୍ଦ ସଂଧାନୀ ମାନଙ୍କର ସମସ୍ୟା ଏଇଠାରୁ ହିଁ ଆରମ୍ଭ ହୁଏ ।

ସୃଜନାତ୍ମକ ସାହିତ୍ୟର ସବୁଠାରୁ କଠିନ ଧାରା ହେଉଛି ତାର କଳାତ୍ମକ ଆକଳନ । କିଛି ଲେଖିବା, ସୃଷ୍ଟି କରିବା ସହଜ ତ ନୁହେଁ । ଅନୁଭୂତି ସଂଜାତ, ଆବେଗ ଓ ଭାବକଳ୍ପନାର ଉତ୍ସଂଗରେ ଶବ୍ଦରୂପଟିଏ ନିର୍ମାଣ କରିବା ଏକ ସୂକ୍ଷ୍ମ ଗହନ କଳାକର୍ମ । ମାତ୍ର ସେ ରୂପସୃଷ୍ଟିର ପରିଚୟ ଖୋଜିବାକୁ ଯାଇ ସେଇ ଭାବ ଆବେଗ ଓ ଚିତ୍ତବୃତ୍ତି ସ୍ତରକୁ କ୍ରମ ଅପସାରିତ ହୋଇ ସ୍ରଷ୍ଟା ସତ୍ତାଟି ସହ ଏକାତ୍ମ ହୋଇପାରିଲେ ହିଁ ସେ ରଚନାର ଉହ୍ୟ ଓ ଉଚ୍ଚାରଣର ଏକ ସାମଗ୍ରିକ ଅନ୍ୱୟ ରୂପଟି ନିର୍ଦ୍ଧାରିତ ହୋଇପାରେ । ତାହା ଏକ ସ୍ୱତଂତ୍ର ଦକ୍ଷ ସାରସ୍ୱତ ପ୍ରତିଭାର ଅପେକ୍ଷା ରଖେ ।

ସେ ପ୍ରତିଭା କେବଳ ଶବ୍ଦପାରଦର୍ଶିତା ନୁହେଁ । କାବ୍ୟ-ତତ୍ତ୍ୱ ପ୍ରବୀଣତା ନୁହେ । ସେ ମଧ୍ୟ ଏକ ରମ୍ୟବୋଧ, ଭାବପ୍ରସାର ଓ ରସସଂଷ୍କରର କଳାତ୍ମକ ଅଭିବ୍ୟକ୍ତି-ସାମର୍ଥ୍ୟ । ବାଗ୍-ବୈଦଗ୍‌ଧ୍ୟ ମୂଳକ ରସାଭିବ୍ୟକ୍ତି ହିଁ ଯଥାର୍ଥ ସାହିତ୍ୟିକ ମାର୍ଗ ।

ଏହାର ସୃଷ୍ଟି କିଂତୁ ସାହିତ୍ୟର ଅନ୍ୟାନ୍ୟ ଆଙ୍ଗିକ ତୁଳନାରେ ଅପେକ୍ଷାକୃତ ଦୁଷ୍କର ବୋଲି ମୋର ବିଶ୍ୱାସ । ଏକ କଳାତ୍ମକ ସୃଷ୍ଟିର ଆଂଗିକ ଓ ଆତ୍ମିକ ଉତ୍କର୍ଷର ଅନ୍ତଃବହିଃ ବିଶ୍ଳେଷଣ ଏବଂ ତାର ସାମଗ୍ରିକ ଅନ୍ୱିତିର ସୂତ୍ର ନିର୍ଦ୍ଧାରଣ - ଏଇ ବିଶ୍ଳେଷଣ ଓ ସଂଶ୍ଳେଷଣ ଉଭୟ କ୍ରିୟା ପଦ୍ଧତିରେ ସାର୍ଥକ ପ୍ରୟୋଗ ବିରଳ ପ୍ରତିଭା ସାପେକ୍ଷ ।

ଗଦ୍ୟ କବୀନାଂ ନିକଷଂ ବଦନ୍ତି ।

ଗଦ୍ୟଶୈଳୀ ହିଁ କବିତ୍ୱର କଷଟି । ଏହା ସଂସ୍କୃତ ଅଳଂକାର ଶାସ୍ତ୍ରର ସିଦ୍ଧାନ୍ତ । କବିତାର ଭ୍ରମ ସୃଷ୍ଟି କରୁଥିବା ସରସ ଗଦ୍ୟପଙ୍କ୍ତିରୁ ଲେଖକର ଚିନ୍ତନ ମନନର ଓଜସ୍ୱୀ

ଧୀ ଫୁଟି ଉଠୁଥିବ ଓ ତା'ସହ ସାରସ୍ୱତ ରସାତ୍ମାର ବିଦଗ୍ଧତା ରମଣୀୟ ଶବ୍ଦାବଳୀ ନିହିତ ରସମାଧୁରୀ ଅନୁଷିକ୍ତ ହୋଇଥିବ, ସେହି ସାହିତ୍ୟ ହିଁ ଯଥାର୍ଥ ରମ୍ୟକଳା; ତାହା କାବ୍ୟ ନାଟକ ପ୍ରବନ୍ଧ ଯେଉଁ ନାମ ରୂପ ନେଇଥାଉ ।

ସଂସ୍କୃତ ଗଦ୍ୟକାବ୍ୟ ଦଣ୍ଡୀଙ୍କ ପ୍ରଣୀତ ଦଶକୁମାର ଚରିତମ୍, ଓଡ଼ିଆ ପ୍ରାବଂଧିକ ନୀଳକଣ୍ଠ ଦାସଙ୍କ ପ୍ରବନ୍ଧାବଳୀ, ନିତ୍ୟାନନ୍ଦ ମହାପାତ୍ରଙ୍କ ପତ୍ର ଓ ପ୍ରତିମା, ବାମାଚରଣ ମିତ୍ରଙ୍କ ଜୀବନ ସାହିତ୍ୟ ଓ କଳା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଐତିହାସିକ ପ୍ରବନ୍ଧାବଳୀ, ବେଣୁଧର ରାଉତଙ୍କ ଭିନ୍ନ ଦର୍ପଣ, ଦାଶରଥି ଦାସଙ୍କର ସମାଲୋଚନା ସାହିତ୍ୟ ପ୍ରଭୃତି ରସଚର୍ଯା ଦୃଷ୍ଟିରୁ ଗଦ୍ୟର ଆଙ୍ଗିକରେ ଆଶ୍ରିତ କବିତାର ରସ-ଆତ୍ମା; ତାର ତନୁ ବିଭା ମଧ୍ୟ କମ୍ ବର୍ଣ୍ଣାଢ଼୍ୟ ଉଜ୍ଜ୍ୱଳ ନୁହେଁ ।

ଯୁଗେ ଯୁଗେ ଓଡ଼ିଆ ସାହିତ୍ୟର ସାରସ୍ୱତ ଆକଳନର ଧାରା ଅନେକ ଅନୁକୂଳ ପ୍ରତିକୂଳ ଦୃଷ୍ଟିକୋଣ ଭିତରୁ ବହୁ କୁଶଳୀ ପ୍ରତିଭାଶାଳୀ ଆଲୋଚକଙ୍କ ସ୍ୱାକ୍ଷରରେ ଋଦ୍ଧିମନ୍ତ ହୋଇ ଆସିଛି । ସାହିତ୍ୟ ବିଚାରର ସେଇ ଧାରାରେ, ବିଶେଷକରି ଆଧୁନିକ ଓଡ଼ିଆ ନବଯୁଗ କବିତାର ବିବିଧ ଦଶନ୍ଧିର ରୂପ ବିଚାର ପ୍ରସଙ୍ଗରେ ଡ. ନିତ୍ୟାନନ୍ଦ ଶତପଥୀଙ୍କ ସ୍ୱାକ୍ଷର ବେଶ୍ ପ୍ରଗାଢ଼ ଓ ଉଜ୍ଜ୍ୱଳ ।

ଡକ୍ଟର ଶତପଥୀ ଓଡ଼ିଆ ସାହିତ୍ୟ ଜଗତର ଏକ ବିଶିଷ୍ଟ ଖ୍ୟାତନାମା କୃତୀ ଲେଖକ । କବିତା, ଉପନ୍ୟାସ, ସମାଲୋଚନା ସାହିତ୍ୟ, ଲଳିତ ନିବନ୍ଧ, ଜୀବନୀ ଓ ଆତ୍ମଜୀବନୀ ଆଦି ବିବିଧ ଆଂଗିକରେ ସଂଖ୍ୟାଧିକ ପୁସ୍ତକର ରଚୟିତା । ତାଙ୍କର ଭାଷା ଓ ଗଦ୍ୟଶୈଳୀ ଆଶ୍ଚର୍ଯ୍ୟ କ୍ଷମତାଧର ଶବ୍ଦ ଶକ୍ତିସଂପନ୍ନ ଛାତ୍ର ଓ ଜିଜ୍ଞାସୁ ମାନଙ୍କର ବହୁ ପଠିତ ତାଙ୍କର କାବ୍ୟଜିଜ୍ଞାସାମୂଳକ ଗ୍ରନ୍ଥ । ବିଶେଷକରି ସମାଲୋଚନା ସାହିତ୍ୟରେ କାବ୍ୟପ୍ରେରଣାର ଅନ୍ତସ୍ଥଳ ପର୍ଯ୍ୟନ୍ତ ଅନୁସନ୍ଧିତ୍ସା, ଲେଖକୀୟ ବ୍ୟକ୍ତିତ୍ୱ ଓ କାଳପ୍ରତି ବ୍ୟାପକ ଦୃଷ୍ଟିଭଂଗୀ କାବ୍ୟରୂପ ବିଚାରର ବିଭିନ୍ନ ଦିଗ ପ୍ରତି ସଚେତନ ରହିଥାଏ । ମନନଶୀଳତା ସହ ଆବେଗପ୍ରାଣ ସଂବେଦନଶୀଳ ହୃଦ୍ୟତା ତାଙ୍କ କାବ୍ୟୋପଲବ୍ଧିର ଏକ ମାର୍ମିକ ପାର୍ଶ୍ୱ ପ୍ରତି ଉନ୍‌ମୋଚନଶୀଳ । ତାଙ୍କର ଆକର୍ଷଣୀୟ ଗଦ୍ୟଶୈଳୀର ଏହାହିଁ ମୂଳ ହେତୁ । କବିତା ନିଜେ ସୁନ୍ଦର ବୁଝନ୍ତି ତ ହୃଦ୍ୟ କରି ବୁଝାଇ ଦିଅନ୍ତି ମଧ୍ୟ । ତାଙ୍କର ବହୁଦିଗଦର୍ଶୀ କାବ୍ୟବିଚାର, ଆଂଗିକର ରୂପସଜ୍ଜା ସହ ଅର୍ଥଗୂଢ଼ ଆନ୍ତର୍ ଭାବଜଗତର ଉନ୍‌ମୋଚନ, ବାକ୍ ବୈଦଗ୍ଧ୍ୟ, ସରସ ବାଣୀଭଂଗୀ, କୁଶଳ ଶବ୍ଦ ସଂଯୋଜନାର ଚିତ୍ରମୟ ବର୍ଣ୍ଣାଳୀ ପାଟବତାରେ ସଜ୍ଜିତ କେଉଁ କବିତାର ଅଂଗନରେ ପହଞ୍ଚି ଯାଇ ପାଠକର ମନେହୁଏ ଯେପରି ସମଗ୍ର କବିତାଟିର ଅନ୍ତରାତ୍ମାକୁ ସେ ଓହ୍ଲାଇ ପଡ଼ିଛି ଓ କବିକୁ ତାର ସେଇଠି ବିଶେଷ ଏକ ରସାବେଶମୟ ଅପୂର୍ବ ଠାଣିରେ ଉଭା ଥିବାର ଦେଖୁଛି । କବିତାର ରୂପ ଉପଭୋଗ ଭିତରେ କବିର ବି ଏକ ନୈର୍ବ୍ୟକ୍ତିକ ଆତ୍ମପରିଚୟର ଆବିଷ୍କାର ଘଟିଯାଉଛି ।

ବୋଧହୁଏ କେଉଁ ରଚନାର କଳାତ୍ମକ ରମ୍ୟବୋଧ ଆକଳନର ଏହାହିଁ ଲେଖକ / ଆଲୋଚକ / ପାଠକର ବି ନିଃଶବ୍ଦ ବାହିତ ଉପଲକ୍ଷ୍ୟଟି ରୂପେ ସନ୍ନିହିତ ଥାଏ ।

ଓଡ଼ିଆ ସାହିତ୍ୟ ଜଗତର ଏଇ କୃତୀ ସ୍ୱନାମଧନ୍ୟ ଲେଖକଙ୍କ ବହୁମୁଖୀ ପ୍ରତିଭା ଓ ବିବିଧ ସାରସ୍ୱତ କୃତିକୁ ତାଙ୍କର ଅନେକ ଗୁଣଗ୍ରାହୀ ବଂଧୁ ଛାତ୍ର ଓ ଆଲୋଚକ ଏହି ସଂକଳନରେ ଅନେକ ପ୍ରଶସ୍ତିମୂଳକ ଆଲୋଚନା କରିଥିବେ । ମୋର ଏହି ଲେଖାଟି ସେପରି ବିଭବମଣ୍ଡିତ ହୋଇପାରିନଥାଏ, ବରଂ ଏହା ଅନେକ ପରିମାଣରେ ବ୍ୟକ୍ତିଗତ; ମୋର ଏହି ଶ୍ରଦ୍ଧାଶୀଳ ମାମୁଁଙ୍କଠାରୁ ମିଳିଥିବା ସାହିତ୍ୟିକ ଅନୁପ୍ରାଣନା, ମୋର ପାଠ୍ୟ ଓ ସାହିତ୍ୟ ସୃଷ୍ଟିଶୀଳତା ଦିଗରେ ତାଙ୍କର ଅକୁଣ୍ଠ ସାହାଯ୍ୟ ଓ ଦିଗ୍‌ଦର୍ଶନ ପ୍ରତି ମୋର ଏହି ଲେଖାଟି ମୋ ହୃଦୟର କୃତଜ୍ଞତାମୂଳକ ଋଣ ସ୍ୱୀକାର ।

ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର-ପ୍ରବୀଣ ଏକ ବିଦ୍ୟାବନ୍ତ ବ୍ରାହ୍ମଣ ପରିବାରର ସନ୍ତାନ; ତାଙ୍କର ସେ ବିଦ୍ୟାବୁଦ୍ଧି ସେ ପରିବାରର ପ୍ରାୟ ସମସ୍ତଙ୍କର ଜିନ୍ ଗତ । ନିପଟ ମଫସଲ ଗ୍ରାମ ହେତୁ ଦୂର ଗ୍ରାମରେ ସ୍କୁଲ୍ ଶିକ୍ଷା ଓ ଜୀବନ ସଂଗ୍ରାମର ପଥ ଖୋଜା; ନିଜ ରାସ୍ତା ନିଜେ ଗଢ଼ିଥିବାର ଗର୍ବ ସେ କରିପାରନ୍ତି । ସୁଲେଖକ, ବାଗ୍ମୀ, ନିର୍ଭୀକ ମତବାଦୀ, ଗ୍ରାମ ଦେଶ ଓ ସମାଜ ପ୍ରତି ଦୃଢ଼ ଅଂଗୀକାରବଦ୍ଧତା ଭିତରେ ରାଜନୀତି ପ୍ରତି ପ୍ରବଳ ଆକର୍ଷଣ, ହୁଏତ କେଉଁ ଘୂର୍ଣ୍ଣିରେ ଆଉ କେଉଁଠାକୁ ଉଡ଼ିଯାଇଥାନ୍ତେ, ମାତ୍ର ଅନ୍ତଃପ୍ରବଣତାଟି ଯେ ଚିରକାଳ ସାହିତ୍ୟର, ଶବ୍ଦମୋହ ହିଁ ଆଜିପର୍ଯ୍ୟନ୍ତ ଲେଖକର ଚଉକିଠାରେ ତାଙ୍କୁ ବାନ୍ଧି ରଖିଛି ବୋଲି ମୋର ମନେହୁଏ । ସାହିତ୍ୟ ଓ ସମାଜ ପ୍ରତି ଅଂଗୀକାରବଦ୍ଧତା, - ଦୁଇ ଆଖିରେ ହିଁ ଏ ଦୁଇଟି ପାଇଁ ସମ୍ମୋହନ, ଦୁଇ ପାଦ ପାଇଁ ତାରି ଆକର୍ଷଣ, ଦୂର ଦୂରାନ୍ତର ଘୂରାଇଛି, ମଣିଷ ମେଳରେ ହଜାଇଛି, ସବୁ ଥିବା ଭିତରେ ବି ଅନ୍ତଃମଣିଷଟିର ଏକାକୀତ୍ୱ ନିଃସଙ୍ଗତାକୁ ଅନୁଭବର ଚରମ ବୋଲି ବୁଝାଇ ଦେଇଛି । ଶବ୍ଦ-ସଂଗ ମିଳୁଥିବାଯାଏ କାଳ କଟିଯିବ ।

ପାରିବାରିକ ସଂପ୍ରୀତି, ବଂଧୁ ସୌଖ୍ୟ, ଛାତ୍ରବତ୍ସଳତା ଆଉ ଉଚ୍ଚାଙ୍ଗ ସାହିତ୍ୟ ପ୍ରତି ଅଂଗୀକାରବଦ୍ଧତା ନେଇ ତାଙ୍କ ସ୍ୱଭାବ ଓ ବ୍ୟକ୍ତିତ୍ୱର ଦୃଢ଼ତା ଅନେକ ଗଠନମୂଳକ କାର୍ଯ୍ୟରେ ନିୟୋଜିତ ରହିଆସିଛି । କାର୍ଯ୍ୟ ସମାପ୍ତି ପର୍ଯ୍ୟନ୍ତ ଜିଦ୍ ବଜାୟ ରଖିବାର ଦୃଢ଼ଲଗ୍ନତା ତାଙ୍କ ସ୍ୱଭାବର ବଳିଷ୍ଠ ଦିଗ । ସାଂଗଠନିକ ଶକ୍ତି ଦ୍ୱାରା ଲୋକସମବାୟକୁ ସେ ବେଶ୍ ପ୍ରଭାବିତ କରିଥାନ୍ତି । ବ୍ୟକ୍ତିଗତ ଉଦ୍ୟମରେ ମଧ କିଛି କରିବାର ଉଦ୍ୟମରେ ନିରଳସ । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ସତ୍ୟବାଦୀ ଚେୟାର୍ ପ୍ରତିଷ୍ଠା ଦିଗରେ ସେ ବିଶେଷ ଭୂମିକା ଗ୍ରହଣ କରିଛନ୍ତି । ମାତ୍ର ଓଡ଼ିଆ ବିଭାଗର ଯେଉଁ ଅତି-ପ୍ରୟୋଜନୀୟ ଅଭାବଟି ପୂରଣ କରିବାର ସଫଳ ଉଦ୍ୟମ ସେ କରିଛନ୍ତି ତାହା ସମାଲୋଚନାକୁ ଅଗ୍ରଣୀ ରଖିବାର ଉଚ୍ଚକୋଟୀର ମର୍ଯ୍ୟାଦାବନ୍ତ ପତ୍ରିକା ପ୍ରକାଶନ : 'ଇସ୍ତାହାର' ।

ପୁଣ୍ୟାତ୍ମା ଗୋପବଂଧୁଙ୍କ ଜୀବନ 'ହେ ସାଥୀ, ହେ ସାରଥି' ଲେଖି ସେ ଏ ଜାତିର ଆତ୍ମାର ଦାରିଦ୍ର୍ୟକୁ କିଛି ଘୁଞ୍ଚାଇଛନ୍ତି । 'ପୂଜ୍ୟପୂଜା ସଂସଦ' ଗଢ଼ି ପୂଜନୀୟ ଜାତୀୟ ବ୍ୟକ୍ତିତ୍ୱଂକ କୀର୍ତ୍ତି ଓ କୃତିକୁ ଜାତିର ସ୍ମୃତିପଟରେ ଉଜ୍ଜ୍ୱଳ କରି ରଖିଛନ୍ତି । ବହୁ ମନୀଷୀ, ଜନନାୟକ ଓ ଲେଖକଙ୍କ ସମ୍ବନ୍ଧରେ ବ୍ୟକ୍ତି ଓ ବ୍ୟକ୍ତିତ୍ୱର ଆଲୋଚନାମୂଳକ ପରିକ୍ରମା ପ୍ରକାଶର ଦାୟିତ୍ୱ ବହନ କରି ଏକ ମହାଜାତୀୟ କର୍ତ୍ତବ୍ୟ ତୁଲାଇଛନ୍ତି । କ୍ଷୁଦ୍ର, ବୃହତ୍, ସାମାନ୍ୟ ଅସାମାନ୍ୟ ବିଷୟରେ ଅନେକ ଜାତୀୟ ଅଭାବ ଦୂର କରିବାକୁ ସେ ପ୍ରୟାସ କରି ଆସିଛନ୍ତି । IMFA ପ୍ରଦତ୍ତ ସାରଳା ପୁରସ୍କାରକୁ ମୁଁ ଜାଣିବାରେ ସେହିଁ ସଂଭାବିତ କରିଛନ୍ତି ।

ଇସ୍ତାହାର ଓଡ଼ିଆ ପତ୍ରିକା ଜଗତରେ ଏକ ଅନନ୍ୟ, ସମ୍ମାନଜନକ ମର୍ଯାଦାର ସ୍ଥାନ ନିଜ ପାଇଁ ଗଢ଼ି ନେଇଛି । ବର୍ଷ ବର୍ଷ ଧରି ସେଥିରେ ପ୍ରକାଶିତ ଗଳ୍ପ କବିତା ପ୍ରବନ୍ଧ ଆଦି ନିଜ ଉଚ୍ଚମାନର ଗରିମା ରକ୍ଷା କରି ତାର ରଚୟିତାମାନଙ୍କୁ ଆଜି ସୁସାହିତ୍ୟିକର ଖ୍ୟାତିସଂପନ୍ନ କରିପାରିଛି । ତାର ସଂପାଦକୀୟ ଅଗ୍ରଲେଖମାନ ଅତି ଗୁରୁତ୍ୱପୂର୍ଣ୍ଣ । ସମସାମୟିକ ଭାଷା, ସାହିତ୍ୟ, ରାଜନୀତି ଓ ସମାଜରେ ଉତ୍‌ଥାପିତ ସମସ୍ୟାକୁ ତାହା ନିର୍ଭୀକ ଅନୁଶୀଳନ କରିଛି । ଏକ ସ୍ୱାଧୀନଚେତା ବ୍ୟକ୍ତିତ୍ୱକୁ ଯେଭଳି ଆନ୍ଦୋଳିତ କରିଛି, ତାର ସମାଧାନ ଅନ୍ୱେଷଣ କରାଇଛି, ସେଥିରେ ଏକ ପ୍ରଚଣ୍ଡ ଅସ୍ତିତ୍ୱବାଦୀ ଜୀବନାବେଗର ରୂପଚେତନା ଉପଲବ୍‌ଧ ।

ସାହିତ୍ୟରେ କୃତିତ୍ୱ ପାଇଁ ସେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ପୁରସ୍କାର ଓ ସମ୍ବର୍ଦ୍ଧନାରେ ଅଭିନନ୍ଦିତ ହୋଇଛନ୍ତି, ହେଉଛନ୍ତି । ଏଠି ରାଜନୀତିର ଜଗତ କୃତଘ୍ନ-କୃପଣ ହୋଇପାରେ, ତାଙ୍କ ପାଇଁ ସାହିତ୍ୟ ଜଗତ ଅକୃତଜ୍ଞ ରହିନାହିଁ ।

ପୁନରାୟ କହିରଖେ ଯେ ଏହା ଶତପଥୀଙ୍କର ବିପୁଳାୟିତ ଜୀବନର କୃତି ଓ କୃତିତ୍ୱର ସାମଗ୍ରିକ ପରିଚୟ ନୁହେଁ । ବରଂ ଅନେକ ବ୍ୟକ୍ତିଙ୍କ କର୍ମଧାରା ଓ ଜୀବନର ପଥ-ସହାୟକ ରୂପର ସାମାନ୍ୟ ଚିତ୍ରପଟ; ବିଶେଷକରି ଅନେକ ସାହିତ୍ୟ-ପ୍ରେମୀ, କର୍ମୀ ଓ ଛାତ୍ରଙ୍କୁ ମାର୍ଗ ସଜାଡ଼ି ଦେଉଥିବା ଏକ ଦକ୍ଷ ସାରସ୍ୱତ ବିନ୍ଧାଣୀଙ୍କ ଆଭାସ-ରୂପ । ଅକୃପଣ ଉଦାରତାର ଏ ସାହାଯ୍ୟ ଜଣେ ଅନୁଭବୀର ଅନୁଭୂତିରୁ ଉଚ୍ଚାରିତ ଅଧ୍ୟାୟେ ଜୀବନଗ୍ରନ୍ଥର ସାମାନ୍ୟ କଥନ ।

ପାରିବାରିକ ସମ୍ବନ୍ଧ ସହ ସାରସ୍ୱତ ସମ୍ବନ୍ଧଟିଏ ଯୋଡ଼ି ହୋଇଗଲେ ତାହା ଏକ ବିରଳ ସଂଯୋଗ ବୋଲି ଭାବିବାକୁ ହୁଏ । ଛୋଟବେଳେ ଯାହାଙ୍କୁ କେବଳ ମାମୁଁ ବୋଲି ଚିହ୍ନିଥିଲି, ଭବିଷ୍ୟତରେ ମୋର ଶିକ୍ଷାକୈନ୍ଦ୍ରିକ କର୍ମଧାରା ଓ ସାହିତ୍ୟାନୁରାଗୀ ଚିତ୍ତପ୍ରବଣତା ସହ ତାଙ୍କର କିଛି ସଂଯୋଗ ଘଟିବ ବୋଲି ଜାଣିନଥିଲି ।

ଅଦୃଶ୍ୟ ଭାଗ୍ୟଦେବତା ଜୀବନର ଦୃଶ୍ୟମାର୍ଗ ସଜାଡ଼ିବାରେ ଯାହାଙ୍କୁ ଯେତେବେଳେ ପଥ-ସହାୟକ କରି ଆଗରେ ଠିଆ କରିଦିଅନ୍ତି, ଜୀବନ ପାଇଁ ସେଇ ହିଁ ତାଙ୍କର ଆଶୀର୍ବାଦର ସ୍ପର୍ଶ ବୋଲି ବୁଝିବାକୁ ହୁଏ ।

ସଂସାରର ଦୋଛକିରେ ଅକସ୍ମାତ୍ ଠିଆ ହୋଇ ବୁର୍ଲା ରହଣି କାଳରେ ଛେଦ ପଡ଼ିଯାଇଥିବା ପାଠକୁ ପୁନଶ୍ଚ ପଢ଼ିବାର ବାଟ ଖୋଜୁଥିବାବେଳେ ସମ୍ବଲପୁରର ଏକ ସାହିତ୍ୟ ସଭାରେ ଭାଷଣ ଦେବାକୁ ପହଞ୍ଚିଥିବା ବେଳେ ମାମୁଁ ମତେ ଆଶ୍ୱାସନା ଦେଇଥିଲେ, 'ହୋଇପାରିବ' । ମୋର ଘରୋଇ ଭାବେ ଓଡ଼ିଆରେ ସ୍ନାତକୋତ୍ତର କରିବା ଦିଗରେ ତାଙ୍କଠାରୁ ଯଥେଷ୍ଟ ସାହାଯ୍ୟ ସହଯୋଗ ମିଳିଛି ।

ତାଙ୍କ ପ୍ରଯତ୍ନରୁ ସେତେବେଳେ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗର ମୁଖ୍ୟ ପୂଜ୍ୟ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଅନୁମତି କ୍ରମେ ଓଡ଼ିଆ ଏମ୍.ଏ. ଶ୍ରେଣୀରେ ଦୁଇବର୍ଷ ପାଇଁ କାଜୁଆଲ ଛାତ୍ରୀ ଭାବରେ ଅଧ୍ୟୟନର ସୁଯୋଗ ପାଇଲି । ପ୍ରଥମ ପ୍ରସ୍ତୁତି ପର୍ବରେ ମାମୁଁ କେତେକ ଅବଶ୍ୟ ପଠନୀୟ ଉପାଦେୟ ପୁସ୍ତକର ତାଲିକା ସହ ତାଙ୍କର ବ୍ୟକ୍ତିଗତ ଲାଇବ୍ରେରୀରୁ ଅନେକ ବହି ଆଣି ଦେଇଥିଲେ । ବିଶେଷକରି ଆଧୁନିକ ଓଡ଼ିଆ କବିତା ସମ୍ବନ୍ଧିତ ଅନେକ ଉପାଦେୟ ଗ୍ରନ୍ଥ ସହ ତାଙ୍କର 'ସବୁଜରୁ ସାଂପ୍ରତିକ' ମୋର ପାଠ୍ୟ ପ୍ରସ୍ତୁତିରେ ବିଶେଷ ସହାୟକ ହୋଇଥିଲେ । ଆଧୁନିକ ଓଡ଼ିଆ କବିତାର ସମାର୍ଥ ପ୍ରବେଶ ପାଇଁ ଲୋଡ଼ା ବିଚାରବୁଦ୍ଧି, ବିଶ୍ଳେଷଣ ଦୃଷ୍ଟି ଓ ମନନତାର ବହୁ ଭାବସୂକ୍ଷ୍ମ ଦିଗନ୍ତକୁ ଉନ୍‌ମୋଚନ କରିବାର ମାର୍ଗଦର୍ଶକ ରୂପେ ଏହି ବହି ମୋର ରସାନ୍ୱେଷାକୁ ଉଜ୍ଜୀବିତ ଓ ସ୍ୱଚ୍ଛୋଜ୍ଜ୍ୱଳ କରିବାରେ ପ୍ରମୁଖ ଭୂମିକାରେ ରହି ଆସିଥିଲା ।

ସେତେବେଳେ ମୁଁ ମୋର ସମବୟସୀ କବିବଂଧୁ ଓ ମାଇଁ ଶ୍ରୀମତୀ ପ୍ରତିଭା ଶତପଥୀଙ୍କ ସାନ୍ନିଧ୍ୟରେ ଆସିଥିଲି । ଉଭୟେ ମୋର ସାହିତ୍ୟ-ଜୀବନ ଓ ବ୍ୟକ୍ତିଗତ ସଂସାର ସହ ଭାବବିନିମୟ ସୂତ୍ରରେ ଘନିଷ୍ଠ ଜଡ଼ିତ ।

ସ୍ନାତକୋତ୍ତର ପାଠ ପରେ ସରକାରୀ ଅଧ୍ୟାପନା ନିଯୁକ୍ତି କାଳରେ Ph.D. ପାଇଁ ନିବନ୍ଧର ବିଷୟବସ୍ତୁ ମନୋନୟନ କରିବାରେ ମୋର ଆଗ୍ରହ, ସାମର୍ଥ୍ୟ ଓ ରୁଚି ଅନୁକୂଳତାକୁ ବିଚାରକୁ ଆଣି ସେ ଏହାର ଦିଗ୍‌ଦର୍ଶନ ଦେବାକୁ ସମ୍ମତ ହୋଇଥିଲେ ।

ଅଣ-ପାରଂପରିକ ରହସ୍ୟବାଦ (mysticism) ଭଳି ଏକ ତତ୍ତ୍ୱ ଅନ୍ତର୍ଗତ ଦର୍ଶନ ପ୍ରଭାବିତ ସାହିତ୍ୟ ଉପରେ ଓଡ଼ିଆ ଗ୍ରନ୍ଥର ବିରଳତା ହେତୁ ଏବଂ ଶବ୍ଦାର୍ଥକୂଟ ଓ ଭାବକୁହେଳି ସମାଚ୍ଛନ୍ନ ଚତୁର୍ଯୋକ୍ତିମୂଳକ ଧର୍ମଦର୍ଶନତତ୍ତ୍ୱ ଗ୍ରନ୍ଥ ବ୍ୟତୀତ ପ୍ରକୃତ ଆଧ୍ୟାତ୍ମିକ, ଦାର୍ଶନିକ ତଥା ମନସ୍ତତ୍ତ୍ୱ ସମର୍ଥିତ ରହସ୍ୟବାଦୀ ଭାବଧାରା ଉପରେ ଆଶ୍ରିତ ବିଶ୍ୱ ସାହିତ୍ୟ ପରମ୍ପରାରେ ଆଧୁନିକ ଓଡ଼ିଆ କାବ୍ୟ କବିତାରେ ତାର ଯଥାର୍ଥ ପ୍ରୟୋଗ ଅନୁଶୀଳନ କରିବା ପାଇଁ ମୋ ଭିତରେ ଦୁର୍ମଦ ଅଭିଳାଷଟିଏ ଜାଗରିତ ଥିଲା, ମାତ୍ର ତାକୁ ନେଇ ଏକ Ph.D. Thesis କରାଯାଇପାରେ, ତାହା ସମ୍ଭବ ଲାଗିନଥିଲା ।

ମାମୁଁ ମୋର ପସନ୍ଦର ବିଷୟଟିକୁ ସ୍ୱୀକୃତି ଦେଲେ, ସେଥିପାଇଁ ସମର୍ଥନ, ଉତ୍ସାହରେ ଆଶାନ୍ୱିତ କଲେ । ଏପରିକି କାର୍ଯ୍ୟର ଆରମ୍ଭ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର ବାଣୀବିହାର ଲାଇବ୍ରେରୀରୁ ଏ ସମ୍ବନ୍ଧରେ କେତୋଟି ମୌଳିକ ଅତି ପ୍ରୟୋଜନୀୟ ଆଲୋଚନା ଗ୍ରନ୍ଥ ନିଜ ନାମରେ ଆଣି ମତେ ଦେଇଥିଲେ ।

ନିବନ୍ଧ ପ୍ରସ୍ତୁତି କାଳରେ ସେ ମୋର ଲେଖାଗୁଡ଼ିକୁ ଅଧ୍ୟାୟ ଅଧ୍ୟାୟ କରି ଆଦ୍ୟ ପ୍ରାନ୍ତ ତନ୍ନ ତନ୍ନ ପଢୁଥିଲେ । ଉଦ୍ଦିଷ୍ଟ ବିଷୟଟିକୁ ଓ ମୋର ଲେଖାଗୁଡ଼ିକୁ ସେ ଖୁବ୍ ଅନୁକୂଳ ମନ୍ତବ୍ୟ ଦେଉଥିଲେ, ସେଗୁଡ଼ିକ ଅତ୍ୟନ୍ତ ସୁପାଠ୍ୟ, ଆକର୍ଷଣୀୟ ସରସ କଳାତ୍ମକ ବୋଲି କହୁଥିଲେ । ଏ ଦିଗରେ ଉପଯୁକ୍ତ ପ୍ରସ୍ତୁତିର କ୍ଲେଶ ଉଠାଇବାରେ ସେ ମତେ ବହୁଭାବେ ଉତ୍ସାହିତ କରିଥିଲେ । ଯଥୋଚିତ ପରାମର୍ଶ, ଉପଦେଶ, ତ୍ରୁଟି ସଂଶୋଧନ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ସହାୟତାରେ ଅକୃପଣ ସମୟ ଦେଇଥିଲେ । କେବଳ ରଚନା ନୁହେଁ, ସାହିତ୍ୟର ବୁଝାମଣା ମଧ୍ୟ କମ୍ ବିଦଗ୍ଧତା, କମ୍ ରସଚର୍ଯ୍ୟାର ଅପେକ୍ଷା ରଖେ ନାହିଁ । ଉଭୟ ଶାଣିତ ଓ ଉଜ୍ଜ୍ୱଳ କରିବାର ତୀକ୍ଷ୍ଣ ଅଥଚ୍ ସ୍ନିଗ୍ଧ ଶିଳାଖଣ୍ଡ ପରି କଳାବୋଧ ବି ତାଙ୍କ ପାଖରେ ରହିଛି ।

Ph.D. କରିବାର ବର୍ଷତକରେ ମୋର ମାଇଁଙ୍କ ସହ ଘନିଷ୍ଠତର ହୋଇ ଉଠିବାର ଅବକାଶ ଆସିଥିଲା । ସମବୟଃ, ସମଚିତ୍ତତାର ସମପ୍ରୀତି (ସାହିତ୍ୟ) ଜନିତ ଭାବସୌଖ୍ୟ, ସ୍ନେହ ଶ୍ରଦ୍ଧା ମୋ ପାଇଁ ସେ ପାଠ୍ୟ ବର୍ଷ କେତୋଟିକୁ ସାହିତ୍ୟିକ ବାତାବରଣ ଦୃଷ୍ଟିରୁ ଅତ୍ୟନ୍ତ ଉପଭୋଗ୍ୟ କରି ରଖିଥିଲା । ଅନେକଥର ତାଙ୍କ ଘରେ ରହଣିକାଳରେ ଏ ନିବିଡ଼ତା ଏକ ମଧୁରାନୁଭୂତି ସ୍ନିଗ୍‌ଧ ଭାବଜଗତ ସହ ସାଂସାରିକ ଜୀବନକୁ ବାନ୍ଧି ଦେଇଥିଲା । Thesis ପ୍ରସ୍ତୁତ କରିବାର ସେ ବର୍ଷ କେତୋଟି ମୁଁ ଯେ ଏକ ଅନିର୍ବଚନୀୟ ଭାବାବେଶ ନିମଜ୍ଜି ରହିଥିବାର ଦୁର୍ଲଭ ଅନୁଭବ ପାଇଥିଲି ତାହା ଏଇ ଦଂପତିଙ୍କ ସହ ଘନିଷ୍ଠ ସ୍ମୃତି ବିଜଡ଼ିତ ।

ଦୁଇଜଣଯାକ ସରସ, ସାରସ୍ୱତ ବ୍ୟକ୍ତିତ୍ୱ । 'ସବୁଜରୁ ସାଂପ୍ରତିକ'ରୁ ମାମୁଁଙ୍କର ଗଦ୍ୟ ରଚନାର ଅମାପ ସାମର୍ଥ୍ୟ ବୁଝିଛି । ମୋର Thesis କାଳରେ ତାଙ୍କର ତୀକ୍ଷ୍ଣ ବିଚାରବୁଦ୍ଧି ଓ ମନନଶୀଳ ଗଭୀର ବୋଧଶକ୍ତିକୁ ଆବିଷ୍କାର କରିଛି । ଦୁଇଜଣଯାକଙ୍କର ଲେଖା ପଢ଼ି ମୁଁ ମୁଗ୍ଧ ହୋଇଛି । ମୋ ପାଇଁ ତ ସାହିତ୍ୟ ତା'ର ସବୁ ରୂପ ଆଙ୍ଗିକରେ ଏକ ବିଶେଷ ମନୋହାରୀ ଶବ୍ଦ-କଳା, ଗଦ୍ୟ ହେଉ ବା ପଦ୍ୟ, - ଶବ୍ଦମାନଙ୍କର ଆକର୍ଷଣ ମତେ ଅଦ୍ଭୁତ ଭାବେ ସମ୍ମୋହିତ କରେ, ଶବ୍ଦ ଅନ୍ତରାଳରୁ ନିଃଶବ୍ଦତାର ମନ୍ତ୍ର ସ୍ୱର ଶୁଭିଯାଏ । ମୁଁ ବିଭୋର ହୁଏ । ସେଥିପାଇଁ ସାହିତ୍ୟର ସବୁ ରୂପ ମତେ ଭିନ୍ନ ଭିନ୍ନ ସୁରରେ ଆଳାପ ହେଉଥିବା ସଂଗୀତ ପରି ପ୍ରଗାଢ଼ ଆବେଶମୟ ଲାଗନ୍ତି ।

ଛୋଟବେଳୁ ପ୍ରାୟତଃ କବିତା ଲେଖୁଥିବା ମୁଁ ଯେ କେବେ ଉପଯୁକ୍ତ ପ୍ରବଂଧ ରଚନା କରିପାରିବି ତାହା ମୋର ଧାରଣାତୀତ ଥିଲା । Thesis ପ୍ରସ୍ତୁତି କାଳରେ ମାମୁଁ 'ଇସ୍ତାହାର'ରେ ପ୍ରକାଶ ନିମନ୍ତେ ପ୍ରବଂଧ ଲେଖିବାକୁ ପ୍ରରୋଚିତ ଓ ଉତ୍ସାହିତ କଲେ । 'ଇସ୍ତାହାର'ରେ ମୋର କେତେକ ପ୍ରବନ୍ଧକୁ ମନୋନୟନ ଭିତ୍ତିରେ ସ୍ଥାନ ଦେଇ ଆତ୍ମବିଶ୍ୱାସ ଜାଗରିତ ଓ ଦୃଢ଼ କରିଥିଲେ । ମୋର ଲେଖାର ସେଭଳି ସମାଦର ସେ ସମୟରେ ପାଇନଥିଲେ ମୁଁ ହୁଏତ ପ୍ରବନ୍ଧକୁ ଏକ 'ରମ୍ୟକଳା' ରୂପେ ସାଧନ କରିପାରି ନଥାନ୍ତି ।

ଆଉ ଏକ ବିଶେଷ ଘଟଣା ପାଇଁ ମୁଁ ବରଂ ଆମେ ତାଙ୍କ ଋଣ ସ୍ୱୀକାର କରୁ । ଅନେକ ଗଳ୍ପ, ଏକାଂକିକା, ନାଟକ ଲେଖୁଥିବା ମୋର ସ୍ୱାମୀ ସେଗୁଡ଼ିକୁ କେବେ ପ୍ରକାଶଯୋଗ୍ୟ ବିବେଚନା କରୁନଥିବା ବେଳେ ଦିନେ ମାମୁଁ ଅକସ୍ମାତ୍ ମାନସୀ ନାଟକର ପାଣ୍ଡୁଲିପିକୁ ଆବିଷ୍କାର କରି ପ୍ରକାଶକଙ୍କୁ ଦେଇଥିଲେ । ନାଟ୍ୟକାର ଡକ୍ଟର ବିଜୟ କୁମାର ନନ୍ଦଙ୍କର ପ୍ରଥମ ପ୍ରକାଶିତ ନାଟକ ରୂପେ 'ମାନସୀ' ଏକ ସ୍ୱତନ୍ତ୍ର ସ୍ଥାନ ଆମ ପାଇଁ ରଖିଛି ଓ ତା'ପରେ ଏଇ ଧାରା ଏଯାବତ୍ ଅବ୍ୟାହତ ରହିଛି । ସବୁ ନାଟକର ପ୍ରକାଶ କାଳରେ ମାମୁଁଙ୍କର ଏଇ ଅବଦାନକୁ ସ୍ମରଣ କରାଯାଏ । ଇସ୍ତାହାରରେ ମଧ୍ୟ କିଛି ଏକାଂକିକା ପ୍ରକାଶ ପାଇଛି ।

ଭାରତୀୟ ଜୀବନଦର୍ଶନରୁ ଆହରିତ କିଛି ବିଶ୍ୱାସ ମୋର ଅସ୍ଥି ମଜ୍ଜାଗତ ରହିଆସିଛି ଯେ- ଏ ଜଗତରେ, ଶତ୍ରୁ, ମିତ୍ର ନିଜ ପର ନିର୍ବିଶେଷରେ କେହି କାହାପାଇଁ ଆକସ୍ମିକ ଆସିନଥାନ୍ତି । ସେହି ସେହି ବ୍ୟକ୍ତିମାନେ ହିଁ ଜଣଙ୍କର ଜୀବନକୁ ଏକ ନିର୍ଦ୍ଦିଷ୍ଟ ସମୟ ଖଣ୍ଡରେ ଆସନ୍ତି - ତା'ର ବାହ୍ୟ କାରଣ ଯାହା ହେଉନା କାହିଁକି ଆତ୍ମିକ ସ୍ତରରେ ତାହା ବିବର୍ତ୍ତନର ଧାରା ଭିତରୁ ଅନ୍ତଃସତ୍ତାର ପ୍ରୟୋଜନ ପାଇଁ ହିଁ ଘଟେ । ଜଣାପଡୁନଥିବା ଅନ୍ତରାତ୍ମାର ଏ ପ୍ରୟୋଜନବୋଧ, ଚେତନାର ପୂର୍ଣ୍ଣତା ପଥରେ ଜୀବନରୁ ଜୀବନାନ୍ତର ଦେଇ ଅନିବାର୍ଯ୍ୟ ଭାବେ ସଂଘଟିତ ହୋଇଥାଏ । ତେଣୁ ଏଠାରେ ସବୁ ବ୍ୟକ୍ତି, ଘଟଣା ଓ ସଂଯୋଗ ପୂର୍ବ ସ୍ଥିର, ସ୍ୱୟଂସିଦ୍ଧ ଓ ଅର୍ଥମୟ ।

ଜାଣେନା, ମାମୁଁଙ୍କର ସହଯୋଗ ମିଳିନଥିଲେ ମୋର ଶିକ୍ଷାର ପୂର୍ଣ୍ଣାଙ୍ଗତା ଓ ଭିତରର ସାହିତ୍ୟ-ଜଗତଟି କି ରୂପ ନେଇଥାନ୍ତା । ମୋର ସ୍ନାତକୋତ୍ତର ଶିକ୍ଷା, Ph.D. Thesis, ଅଧ୍ୟାପନା ବୃତ୍ତି, ଲେଖାଲେଖି, - ସାହିତ୍ୟର ରସଚର୍ଯ୍ୟାମୂଳକ ଏଇ ଭାବଶବଳିତ ଜୀବନଧାରା କେଉଁ ବାଲୁକା ପ୍ରାନ୍ତର ତଳ ଫଲ୍‌ଗୁ ସ୍ରୋତ ସଦୃଶ ପ୍ରାୟ ଅଦୃଶ୍ୟ ରହିଯାଇଥାନ୍ତା । ଏମିତି କେତେ କାହାକୁ ସେ ସାହିତ୍ୟର, ଜୀବନର ମାର୍ଗ ବତାଇଥିବେ ।

ଏ ଜଗତରେ ଆମେ କେହି ତ ମଣିଷ ରୂପେ ପରିପୂର୍ଣ୍ଣ ସତ୍ତା ନୋହୁ । ମଣିଷ ହେବାର ଅର୍ଥ ହେଉଛି ଚେତନାର ଅଧା ପାହାଚ଼ରେ ଉଭା, ଅଧା ଗଢ଼ା, ଅଦିବ୍ୟର

ଦୈବତ ଅଭିମୁଖୀ ଏକ ଅର୍ଦ୍ଧଦିବ୍ୟସତ୍ତା, - କିଛି ନା କିଛି ଅପୂର୍ଣ୍ଣତା, ଖଣ୍ଡିତ ଚେତନାର ଅସାମର୍ଥ୍ୟ ବୋଧ ଜନିତ ପୀଡ଼ାରେ ସନ୍ତୁଳିତ । ମାତ୍ର ଅତିକମ୍‌ରେ ସୁବର୍ଣ୍ଣ ହୃଦୟଟିଏ ଧରି ତ ସମସ୍ତେ ଏଠି ଧରାବତରଣ କରିଥାନ୍ତି । ଏ ପୃଥିବୀ ତାର ଚେତନାର ବିବର୍ତ୍ତନ କ୍ରିୟା ସ୍ତରରେ, ଏକ ବ୍ୟକ୍ତିର ଆଧାର ଶିଳାରେ କେଉଁ ଅନୁଭବକୁ ଏକ ପୂର୍ଣ୍ଣତା ପଥରେ ତା'ର ଅରୋହଣ ମାର୍ଗ କରି ଗଢୁଛି, ତାହା ସେ ବ୍ୟକ୍ତିର ବି ଅଜଣା । ମଣିଷ ବୁଦ୍ଧିର ବିଚାର ଭିତରେ ଏଠାରେ ଭଲ ମନ୍ଦର ଦୃଷ୍ଟିକୋଣ ବଡ଼ ଆପେକ୍ଷିକ । ବ୍ୟକ୍ତିଗତ, ସାମାଜିକ, ଧର୍ମମତ କି କୌଣସି ମତବାଦ ଦ୍ୱାରା ଆତ୍ମବିବର୍ତ୍ତନର ପଥ ଗଢ଼ା ହୋଇନଥାଏ । ଅନ୍ତରାତ୍ମାର ସେ ଏକାନ୍ତ ରହସ୍ୟକୁ ବ୍ୟକ୍ତିର ବାହ୍ୟସତ୍ତା ବି ଅବଗତ ହୋଇପାରେନା । କିଛି ଗଢ଼ି ହୋଇଯାଏ, କିଛି ଭାଙ୍ଗି ଚୂରିଯାଏ, ଭବିଷ୍ୟତକାଳ ହିଁ ଚେତନାର ଧାରା ସଜାଡ଼ି ଚାଲେ । ଏଠି କିଏ କାହାକୁ କାଠଗଡ଼ାରେ କିପରି ଠିଆ କରିବ ?

ମୋର ପ୍ରିୟ Prophetic କବି ମାରିଆ ରିଲ୍‌କେଙ୍କର Dr. Faust ଙ୍କ କାବ୍ୟଭାବକୁ ମୁଁ ପୁଣି ଥରେ ଏଠି ଉଦ୍ଧାର କରୁଛି-

"For my voice has grown into two dimensions.
One has become a clamour and a scent,
One wants to build God's distant mansions ,
be angel, vision and event.

- ଆମେ ସମସ୍ତେ ଏଠି ଏହି ବ୍ୟକ୍ତିତ୍ୱର ଦ୍ୱି-ମୁଖୀ ଉପଲବ୍ଧିର ପୁଲକ ଓ ଯନ୍ତ୍ରଣା ତ ଭୋଗିଚାଲିଛୁ ।

■ ବକ୍ସିବଜାର, କଟକ
ମୋ: ୦୬୭୧-୨୩୧୧୨୩୧

*(ଡଃ ଶତପଥୀଙ୍କ ତତ୍ତ୍ୱାବଧାନରେ ତାଙ୍କର ଏଇ ପ୍ରଥମ ଗବେଷିକା ଶ୍ରୀମତୀ ସୌଦାମିନୀ ନନ୍ଦ ଏବେ ଅଧ୍ୟାପନା ସେବାନିବୃତ୍ତ ହୋଇ ବକ୍ସିବଜାର ରୋଡ୍, କଟକଠାରେ ସ୍ୱାମୀ ଡାକ୍ତର ବିଜୟ ନନ୍ଦଙ୍କ ସହିତ ଅବସ୍ଥାନ କରୁଛନ୍ତି । ଓଡ଼ିଆ ସାହିତ୍ୟରେ ସେ ଜଣେ ଭିନ୍ନଧାରାର ପ୍ରାବନ୍ଧିକ ଯାହାର ପ୍ରବନ୍ଧ ବିନ୍ଦୁ ମଧ୍ୟରେ ସିନ୍ଧୁର ସନ୍ଧାନ ଦେଇପାରେ । - ସଂପାଦକ)*

# ସାର୍ଥକ ଜୀବନୀ : ହେ ସାଥି ! ହେ ସାରଥି !

♦ ଡକ୍ଟର ବିଦ୍ୟୁତ୍‌ପ୍ରଭା ସାହୁ

'ହେ ସାଥି! ହେ ସାରଥି!' ପୁଣ୍ୟଶ୍ଳୋକ ଗୋପବଂଧୁଙ୍କ ଜୀବନୀ ଆଧାରିତ ଏକ ଅନନ୍ୟ ଚରିତ ଗ୍ରନ୍ଥ । ଗୋପବଂଧୁ ଥିଲେ ଏକାନ୍ତ ଜାତିପ୍ରାଣ, ଏବେବି ତାଙ୍କୁ ନେଇ ଏ ଜାତି ପ୍ରବଳ ଭାବପ୍ରବଣ । ସେ ଓ ଜାତି କି ଭାବ ସୂତ୍ରରେ ବଂଧା ହୋଇଛନ୍ତି, ତାହା କଥାରେ କହିହେବ ନାହିଁ । ଜାତିକୁ ନେଇ ତାଙ୍କପରି ଜଣେ ବିଗଳିତ ପ୍ରାଣର ମଣିଷ ସମଗ୍ର ବିଶ୍ୱରେ ବିରଳ । ୧୯୬୫ ମସିହାରେ ସାକ୍ଷୀଗୋପାଳ ଠାରେ ଅନୁଷ୍ଠିତ ଉତ୍କଳମଣିଙ୍କ ଶ୍ରାଦ୍ଧ ଦିବସରେ ଏକତ୍ରିତ ଆବେଗାୟିତ ଜନତା ଋହିଁଲେ ତାଙ୍କର ଯଥାର୍ଥ ପୂର୍ଣ୍ଣାଙ୍ଗ ଜୀବନୀଟିଏ । କିଏ ସେ ଲେଖିବ ? ତାଙ୍କ ପରି ଜଣେ ଈଶ୍ୱରପ୍ରାଣ, ଜାତିପ୍ରାଣ ନୀତିନିପୁଣ, ଅଶ୍ରୁଳନୟନ, ମାନବପ୍ରେମୀ, କର୍ମବାଦୀ ତପସ୍ୱୀର କଥା, ଯାହାଙ୍କର ପବିତ୍ର ସ୍ମୃତି ଏ ମାଟିର ଶିଳା ସୈକତରେ ବି ଭରି ରହିଛି । ସମସ୍ତଙ୍କ ମର୍ମକୁ ଛୁଇଁଲାଭଳି ତାଙ୍କୁ ଭାଷାୟିତ କରିବା ଏତେ ସହଜ ନଥିଲା । ତଥାପି ବିକ୍ଷିପ୍ତ ତଥ୍ୟ, ଗ୍ରନ୍ଥ, ସ୍ମୃତି, କିମ୍ବଦନ୍ତୀ ସହିତ ନିଜର ଗଭୀର ନିଷ୍ଠା ଓ ଆନ୍ତରିକତାକୁ ଏକାକାର କରି ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଗୋପବଂଧୁଙ୍କ ଜୀବନକୁ କଲେ ଜୀବନ୍ତ, ଯାହା ହେଲା ଦୁର୍ଗତ ଓଡ଼ିଆ ଜାତିର ଜୀବନ୍ତ ଇତିହାସ । ଅତଏବ 'ହେ ସାଥି ! ହେ ସାରଥି ! ଓଡ଼ିଶାର ଏକ ଅକ୍ଷରମାଳିନୀ ଜାତୀୟ କୀର୍ତ୍ତି ।

ଜୀବନୀର ସଫଳତା ଜୀବନକାରଙ୍କ ଉପରେ ନିର୍ଭରଶୀଳ । ଶ୍ରଦ୍ଧା ଓ ଅନୁରାଗ ବିନା କୌଣସି ସମୟରେ ସାର୍ଥକ ଜୀବନୀ ସୃଷ୍ଟି ହୋଇନି । Edward Cook ଙ୍କ ଭାଷାରେ "The biographer must he honest, He must have general sympathy with his subjects for without it he can not hope to gain the insight which will enable him to understand and to interprete" (ଓଡ଼ିଆ ସାହିତ୍ୟ : ତତ୍ତ୍ୱ ଓ ତଥ୍ୟ - ଡଃ ଭୋଳାନାଥ ରାଉତ) ଡଃ ଶତପଥୀଙ୍କର ରହିଛି ଗୋପବଂଧୁଙ୍କ ପ୍ରତି ଅପ୍ରମିତ ଶ୍ରଦ୍ଧା ଓ ଐକାନ୍ତିକ ଭକ୍ତି । ତାଙ୍କରି ଭାଷାରେ "ମୋ ଆଖିରେ ଗୋପବଂଧୁ ଏକ ମହାନ କାବ୍ୟଗ୍ରନ୍ଥ, ଓଡ଼ିଶାର ଏକ ବିପୁଳ ପୌରାଣିକ ସମ୍ପତ୍ତି; ପୁରାଣପରି ତାହା ସତ୍ୟ ଓ ସନାତନ, ପ୍ରାଣର ସାର୍ବଜନୀନ ଆବେଗରେ ଓ ଜୀବନର ଶାଶ୍ୱତ ଅର୍ଘ୍ୟରେ ଏ ଜୀବନ ଓଡ଼ିଆ ଜାତିର ଖଣ୍ଡିତ ଇତିହାସରେ ଏକ ଦୃପ୍ତ ଆଗ୍ନେୟ ବିଶ୍ୱାସ । ସମୟର ବିସ୍ମୃତି ଏ ଜୀବନର ମହାନତାକୁ ଅଭିକ୍ଷେକ ଦେଇପାରିବ

ନାହିଁ । ଅପହ୍ରାସ କରିପାରିବ ନାହିଁ ।" (ହେ ସାଥ୍ ! ହେ ସାରଥ୍ !ର ପ୍ରଥମ ସଂସ୍କରଣର ବକ୍ତବ୍ୟ) । ଉପଲବ୍ଧିର ଏହି ଜୀବନୀ ଗ୍ରନ୍ଥକୁ ରୂପାୟିତ କରିବା ପାଇଁ ଲେଖକ କରିଛନ୍ତି ଅକ୍ଳାନ୍ତ ପରିଶ୍ରମ । ଏ ଦିଗରେ ଆଚାର୍ଯ୍ୟ ହରିହର (ସ୍ମୃତିରୁ), ଗୋପୀନାଥ ମହାନ୍ତି (ଉତ୍କଳମଣି), ଗୋଦାବରୀଶ (ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ), ଚନ୍ଦ୍ରଶେଖର ମିଶ୍ର (ସତ୍ୟବାଦୀରେ ସାତବର୍ଷ), ଚିନ୍ତାମଣି ଦାସ (କବି ଗୋପବନ୍ଧୁ), ସଚ୍ଚିଦାନନ୍ଦ ମହାନ୍ତି (ସ୍ମୃତିରୁ), ଶ୍ରୀରାମଚନ୍ଦ୍ର ଦାସ (Pandit Gopabandhu) ଶ୍ରୀଯୁକ୍ତ ଭାଗୀରଥି-ମହାପାତ୍ର (ସ୍ମୃତି), କୁଞ୍ଜବିହାରୀ ଦାଶ ହୋଇଛନ୍ତି ବିଶେଷ ସହାୟ ।

ଏହି ଗ୍ରନ୍ଥ ପ୍ରଥମେ ପ୍ରକାଶିତ ହୁଏ ୧୯୬୯ ମସିହାରେ । ଏହାର ବିପୁଳ ପାଠକୀୟ ଆଦୃତି ଯୋଗୁଁ ଭିନ୍ନ ଭିନ୍ନ ପ୍ରକାଶକଙ୍କ ଦ୍ୱାରା ପୁଣି ଚାରିଥର ହୋଇଛି ପୁନଃ ମୁଦ୍ରିତ । ପୁନଃ ପୁନଃ ମୁଦ୍ରଣ ଜୀବନୀର ସାର୍ଥକତାକୁ କରେ ପ୍ରତିପାଦନ । ତଥାପି ଡଃ ଶତପଥୀ ନିଜ କୃତିକୁ ନେଇ ଅସନ୍ତୁଷ୍ଟ ଓ ଅତୃପ୍ତ । ସେ କହନ୍ତି- "ସେ ମହାନ ମଣିଷର ବହୁ ମୂଲ୍ୟବାନ ମୁହୂର୍ତ୍ତ ଓ କୃତି ତଥାପି ଯେ ଅଲେଖା ନ ରହିଛି ଏହା କହିବାର ଦୁଃସାହସ ମୋର ନାହିଁ ।" ଗୋପବନ୍ଧୁଙ୍କୁ ସଂପୂର୍ଣ୍ଣ ନିଗାଡ଼ି ନ ପାରିବାର ଅଭିବ୍ୟକ୍ତି ହିଁ ପାଠକ ପ୍ରାଣରେ ମୂର୍ତ୍ତକରେ ଏହି ମହାନ ବ୍ୟକ୍ତିତ୍ୱର ବିପୁଳ ବ୍ୟାପ୍ତି । ଏହା ଜୀବନୀକାରଙ୍କ ଚରମ ସଫଳତା ନୁହେଁ କି ?

ଜୀବନୀରେ ବିଷୟ ଉପସ୍ଥାପନର ରୀତି ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏଥିରେ ରହେ ତଥ୍ୟ । ତଥ୍ୟର ସରସ ପରିବେଷଣ ହିଁ ଜୀବନୀକୁ କରେ ପ୍ରାଣବନ୍ତ । ଅନ୍ୟଥା ଜୀବନୀ ହୋଇଯାଏ ଘଟଣାବହୁଳ ନୀରସ ଇତିହାସ । ଲେଖକ ଏ ବିଷୟରେ ଆପ୍ରାଣ ଧ୍ୟାନଶୀଳ । ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ପ୍ରତ୍ୟେକ ଦିଗକୁ ନିଖୁଣ କାରିଗରୀରେ ଭରିଦେବା ପାଇଁ ତାଙ୍କ ପ୍ରଚେଷ୍ଟାର ପଟାନ୍ତରେ ନାହିଁ । ସେ ବିଷୟ ଉପସ୍ଥାପନରେ ସୁନିରୂପିତ ଘଟଣା ଉପସ୍ଥାପନ ପଦ୍ଧତିକୁ ଆପଣେଇଛନ୍ତି । ଗୋପବନ୍ଧୁଙ୍କ ବାଲ୍ୟ ଜୀବନ, କୈଶୋର, ଛାତ୍ରଜୀବନ, ବୃତ୍ତିଗତ ଜୀବନ, ପାରିବାରିକ ଜୀବନ, ଜାତୀୟ ଜୀବନ, ସଂସ୍କାର ମନୋବୃତ୍ତି, ଶିକ୍ଷାର ଦୃଷ୍ଟିଭଙ୍ଗୀ, ସମାଜ ସେବାର ସ୍ୱରୂପ, ସାଂଗଠନିକ ଦକ୍ଷତା, ସାହିତ୍ୟିକ ପ୍ରତିଭା, ହାସ୍ୟରସିକତା, ବାଗ୍ମିତା ସର୍ବୋପରି ବିଭୁ ପରାୟଣତା କାବ୍ୟିକ ଶୈଳୀରେ ହୋଇଛି ଲିପିବଦ୍ଧ । ଛୋଟ ଛୋଟ ଆକର୍ଷଣୀୟ ଶିରୋନାମାରେ ଗୋପବନ୍ଧୁଙ୍କ ଚୁମ୍ବକୀୟ ବ୍ୟକ୍ତିତ୍ୱର କାବ୍ୟିକ ଉପସ୍ଥାପନା ହିଁ 'ସେ ସାଥ୍ ! ହେ ସାରଥ୍ !'କୁ ଦେଇଛି ସାର୍ଥକ ଜୀବନୀର ସମ୍ମାନ ।

'ହେ ସାଥ୍ ! ହେ ସାରଥ୍ !'ର ପ୍ରଥମ ଚାରୋଟି ପରିଚ୍ଛେଦ - 'ବାଲ୍ୟ ଜୀବନ', 'ସ୍ମୃତିର ସରହଦରୁ', 'କମଳା ନାନୀ', 'କୈଶୋର' - ଗୋପବନ୍ଧୁଙ୍କ ଶୈଶବ ଓ କୈଶୋର ଜୀବନ ଆଧାରିତ । ଏଥିରେ ତାଙ୍କ ମାତୃହରା ବାଲ୍ୟ ଜୀବନ କିପରି

କରୁଣତାରେ ଭରି ନ ଯାଇ ପିଉସୀ କମଳାଙ୍କ ବାତ୍ସଲ୍ୟ ମମତାରେ ପରିପୂର୍ଣ୍ଣ ଥିଲା ଏବଂ ସେ କିପରି ଚପଳ ଓ କୌତୁକିଆ ବାଳକ ଥିଲେ, ତାହା ବର୍ଣ୍ଣିତ । ଗୋପବଂଧୁଙ୍କ ପିତା ଥିଲେ ମୁକ୍ତିଆର ଦୈତାରୀ ଦାସ । ମାତା ଥିଲେ (ଦୈତାରୀ ଦାସଙ୍କ ତୃତୀୟ ପତ୍ନୀ) ସ୍ୱର୍ଣ୍ଣମୟୀ ଦେବୀ । ବିଧିର ବିଡ଼ମ୍ବନା ତାଙ୍କର ଜନ୍ମ (୦୯.୧୦.୧୯୭୭) ପରେ ପରେ ଘଟିଥିଲା ମାତୃବିୟୋଗ । ସେ କମଳାନାନୀଙ୍କ କୋଳରେ ହୋଇଥିଲେ ଲାଳିତ ପାଳିତ । ପିଉସୀ ମା'ଛେଉଣ୍ଡ ପିଲାଟିକୁ ପ୍ରବୋଧନା ଦେବା ନିମନ୍ତେ ନିଜ ସ୍ତନରେ ଗାଈ କ୍ଷୀର ଧୀରେ ଧୀରେ ଢାଳି ଦେଉଥିଲେ । ସ୍ତନର ଚୂଚୂକା ବାଟେ ଶିଶୁ ଗୋପବଂଧୁ କ୍ଷୀର ପାନ କରି ମାତୃସ୍ତନ୍ୟ ପାନର ଗଭୀର ଆନନ୍ଦ ପାଉଥିଲେ । ତାଙ୍କ ପ୍ରାଣଭରା ଶୈଶବ ସ୍ମୃତି ଆଜୀବନ ରହିଥିଲା ଅଭୁଲା । କମଳା ନାନୀ ଥିଲେ ତାଙ୍କ ପାଇଁ ଭଗବାନଙ୍କ ଅମୃତ ଆଶୀର୍ବାଦ । ଗୋପବଂଧୁଙ୍କ ବିଷ୍ଣୁଭକ୍ତ ଦଦେଇ ଦୀନବଂଧୁ ଦାଶ ପିଲାଟିବେଳୁ ତାଙ୍କ ମନରେ ଧାର୍ମିକ ଭାବନା ଭରି ଦେଇଥିଲେ । ସେ ପିଲାଦିନେ ବାବାଜୀଙ୍କ ପରି କୌପୀନ ପିନ୍ଧି ବାଲିବୋଳି ହୋଇ ନାଚୁଥିଲେ । ପିତାଙ୍କ କୌପୀନ କାହିଁକି ପିନ୍ଧିଛ ପ୍ରଶ୍ନର ଉତ୍ତର ଦେଇ କହୁଥିଲେ- "ମୁଁ ବାଆଜି ହେବ, ଘରେ ରହିବିନି ।"

ଗୋପବଂଧୁଙ୍କ ଛାତ୍ରଜୀବନ ଥିଲା ଉଜ୍ଜ୍ୱଳ । ଛାତ୍ରଜୀବନରୁ ହିଁ ସେ ବହୁ ବିଷୟ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ । ଜ୍ଞାନ ଆହରଣର ଶ୍ରଦ୍ଧା ସହିତ ଦେଶର ସାହିତ୍ୟିକ ଓ ସାଂସ୍କୃତିକ ପରିବେଶ ସହିତ ରହିଥିଲା ସଂପୃକ୍ତି । ତାଙ୍କର ସ୍ୱାଭିମାନୀ ଭାବନା, ମେଧା ଶକ୍ତି, ନିରାଡ଼ମ୍ବର ଚଳଣି ସର୍ବୋପରି ରସିକତାପୂର୍ଣ୍ଣ କଥାଶୈଳୀ ସମସ୍ତଙ୍କୁ କରୁଥିଲା ଆକୃଷ୍ଟ । ସେ ବନ୍ଧୁମେଳରେ ଯେମିତି ହେଉଥିଲେ ଆଦୃତ, ଶିକ୍ଷକମାନଙ୍କର ମଧ୍ୟ ସେମିତି ଥିଲେ ପ୍ରିୟପାତ୍ର । ଛାତ୍ର ଜୀବନର ଏ ସମସ୍ତ ଦିଗକୁ ଜୀବନୀକାର ପ୍ରଫେସର ଶତପଥୀ ବିଭିନ୍ନ ଘଟଣାବଳୀ ମାଧ୍ୟମରେ କରିଛନ୍ତି ଉପସ୍ଥାପିତ । ସ୍କୁଲ୍‌ରେ ଅଧ୍ୟୟନ ସମୟରୁ ହିଁ ସେ ଥିଲେ ବହୁପାଠୀ । ନାନା ସାପ୍ତାହିକ ଆଲୋଚ଼ନାରେ କରୁଥିଲେ ଯୋଗଦାନ । ଏହି ସମୟରେ ସେ ଦେଶପ୍ରେମୀ ରାମଚନ୍ଦ୍ର ଦାସ ମୁକ୍ତିଆରଙ୍କ ଦ୍ୱାରା ହୋଇଥିଲେ ପ୍ରଭାବିତ । ତାଙ୍କର ଚଲିଚଳଣ ଓ ଆଚ଼ାର ବିଚ଼ାରରେ ତୀବ୍ର ଜାତୀୟ ଭାବ ଫୁଟି ଉଠୁଥିଲା । ସେ ତନ୍ତବୁଣା ଖଦଡ଼ ଖଦୀ ପିନ୍ଧୁଥିଲେ । ପକ୍ଷୀ କଲମରେ ଲେଖୁଥିଲେ । ନିଜ ମୁଣ୍ଡରେ ଗୋଟିଏ ଚୁଟି ରଖିଥିଲେ ।

୧୮୯୮ ମସିହାରେ ପୁରୀ ଜିଲ୍ଲା ସ୍କୁଲ୍‌ରେ ପ୍ରଥମ ଶ୍ରେଣୀରେ ଏନ୍‌ଟ୍ରାନ୍‌ସ ପାଶ୍ କରି ମାସିକ ଦଶଟଙ୍କା ବୃତ୍ତି ପାଇ ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ରେ ଏଫ୍.ଏ.ଶ୍ରେଣୀରେ ନାମ ଲେଖାଇଥିଲେ ଏବଂ ସେଠାକାର ଛାତ୍ରାବାସରେ ରହୁଥିଲେ । ଏହି ଅଧ୍ୟୟନ କାଳରେ ହିଁ ତାଙ୍କର ସାଂସ୍କୃତିକ ଚେତନା ହୋଇଥିଲା ବିକଶିତ । ପାରିବାରିକ ପ୍ରତିକୂଳ ପରିସ୍ଥିତି ଯୋଗୁଁ ୧୯୦୨ ମସିହାରେ ବି.ଏ. ପରୀକ୍ଷାରେ ହେଲେ ଅସଫଳ । ୧୯୦୩

ମସିହାରେ ସେ ଗ୍ରାଜୁଏଟ୍ ହେବାର ସୌଭାଗ୍ୟ ଲାଭ କଲେ । ତା'ପରେ ସେ କଲିକତାରେ ବି.ଏଲ୍. ପଢ଼ିଥିଲେ । କଲିକତାରେ ଅଧ୍ୟୟନ ସମୟରେ ସେଠାରେ ରହୁଥିବା ଓଡ଼ିଆଙ୍କ ଭିତରେ ଜାତୀୟ ଭାବ ସୃଷ୍ଟି କରିଥିଲେ । ବଙ୍ଗଭଙ୍ଗ ବିରୋଧରେ ବଙ୍ଗାଳୀମାନଙ୍କ ଜାତୀୟଭାବ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ।

ଗୋପବଂଧୁଙ୍କ ପାରିବାରିକ ଜୀବନ ଥିଲା ଏକପ୍ରକାର ମୋହମୁକ୍ତ, ଅନନ୍ୟ ଓ ଅନୁକରଣୀୟ । 'ବିବାହ ଓ ପିତୃତ୍ୱ', 'ଜୀବନର ଦୁଇବର୍ଷ', 'ବିବାହ ପ୍ରତ୍ୟାଖ୍ୟାନ', 'କନ୍ୟାଦାନ', 'ସାନଝିଅ କେତକୀ' ଆଦି ପର୍ଯ୍ୟାୟରେ ରହିଛି ତାଙ୍କର ପାରିବାରିକ ଜୀବନର ପରିଚ୍ୟ । ସେ ସମୟର ବାଲ୍ୟବିବାହ ରୀତି ଅନୁସାରେ ସେ ତାଙ୍କଠାରୁ ମାତ୍ର ଛଅମାସ ସାନ ବାଙ୍ଗୁରବା ଶାସନର ମୋତି ଦେବୀଙ୍କୁ ବିବାହ କରିଥିଲେ । ପୁରୀ ଜିଲ୍ଲା ସ୍କୁଲ୍‌ର ଛାତ୍ର ଥିଲେ ଏବଂ ତାଙ୍କର ବୟସ ଥିଲା ପନ୍ଦର, ସେତେବେଳେ ନବବଧୂ ମୋତି ଦେବୀ ତାଙ୍କ ଘରକୁ ପହିଲିପାଲି ଆସିଥିଲେ । ସମୟକ୍ରମେ ସେ ଚାରୋଟି ସନ୍ତାନର ପିତୃତ୍ୱ ଲାଭ କରିଥିଲେ । ପ୍ରଥମ ପୁତ୍ର ସନ୍ତାନ ମୃତ ଅବସ୍ଥାରେ ଜନ୍ମ ନେଇଥିଲା । ଦ୍ୱିତୀୟ ପୁତ୍ର ଛଅ ବର୍ଷ ବୟସରେ ରୁଗ୍ଣ ହୋଇ ମୃତ୍ୟୁବରଣ କରିଥିଲା । ଶବ ମୁହଁରେ ଅଗ୍ନି ସଂଯୋଗ କରୁ କରୁ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଥିଲେ । ବାରମ୍ବାର କହୁଥିଲେ "ଯେଉଁ କୁଳ ପ୍ରଦୀପ ଭବିଷ୍ୟତରେ ତାଙ୍କ ଶବାଧାର ସହିତ ଯାଇ ମୁଖାଗ୍ନି ସଂଯୋଗ କରିଥାନ୍ତା, ବିଧିର ବିଡ଼ମ୍ବନାରେ ତା' ପାଇଁ ବିପରୀତ ଘଟିଛି ।" (ହେ ସାଥି ! ହେ ସାରଥି - ପୃଷ୍ଠା-୧୫) ଗୋପବଂଧୁଙ୍କ ପିତୃହୃଦୟର କାରୁଣ୍ୟ ସଂବେଦନାରେ ଲେଖକ ଲେଖିଛନ୍ତି - "ସମସ୍ତ ଓଡ଼ିଶା ଯାହାର ପ୍ରାଣପିଣ୍ଡ, ଓଡ଼ିଆମାନେ ଯାହାର ସନ୍ତାନ ତାଙ୍କ ପାଇଁ ଗୋଟିଏ ପୁଅ ନୁହେଁ, କୋଟିଏ ପୁଅ ମୁଖାଗ୍ନି ଦେବାକୁ ଅଛନ୍ତି - ବୋଧହୁଏ ଏକଥା ଗୋପବଂଧୁ ସେତେବେଳେ ଚିନ୍ତା କରିପାରୁନାହାନ୍ତି ।"

ଗୋପବଂଧୁ ୨୮ ବର୍ଷ ବୟସରେ ନୀଳଗିରିରେ ଶିକ୍ଷକତା କରିବା ସମୟରେ ପ୍ରାଣସମା ପତ୍ନୀଙ୍କୁ ହରାଇଥିଲେ । ପତ୍ନୀ ବିୟୋଗର ଅବ୍ୟବହିତ ପୂର୍ବରୁ ସେ ସ୍ୱପ୍ନରେ ଦେଖିଥିଲେ- "ତାଙ୍କ ପତ୍ନୀ ପାଖରେ ଠିଆ ହୋଇ ହସି ହସି ଚାଲିଗଲେ । ଧରିବାକୁ ଚେଷ୍ଟା କଲେ ବି ଧରା ଦେଲେନି । ମୁହଁ ତାଙ୍କର କରୁଣ ଓ ବିଷଣ୍ଣ ଥିଲା । ବାଳ ମୁକୁଳା, ଆଖିରେ ଦି'ଧାର ଲୁହ । ପାଖକୁ ଡାକିଲେ ସେ କ୍ରମେ ଦୂରେଇ ଗଲେ ।" ହରିହରଙ୍କୁ ଏହି ସ୍ୱପ୍ନ ବିଷୟରେ କହିବା ସମୟରେ ଘରୁ ତା'ର ବାର୍ତ୍ତା ପହଞ୍ଚିଥିଲା ଯେ ତାଙ୍କର ସ୍ତ୍ରୀ ମରିଯାଇଛନ୍ତି ।

ଦ୍ୱିତୀୟ ବିବାହ ନିମନ୍ତେ ଭାଇ-ବଂଧୁ-କୁଟୁମ୍ବଙ୍କ ଶତ ପ୍ରରୋଚନା ସତ୍ତ୍ୱେ ଗୋପବଂଧୁ ପୁନର୍ବିବାହ କରିନଥିଲେ । ପୁଣି ବିବାହ ନ କରିବା ପଛରେ ଦୁଇଟି କାରଣ ବିଦ୍ୟମାନ ଥିଲା । ପ୍ରଥମତଃ ସେ ଜଣେ ଆଦର୍ଶ ପତି ଥିଲେ । ଦ୍ୱିତୀୟ ବିବାହ ପ୍ରଥମା ପତ୍ନୀଙ୍କ ସ୍ମୃତିକୁ

ଅପମାନ ହେବ ବୋଲି ଭାବୁଥିଲେ । ଦ୍ୱିତୀୟତଃ ଜଣେ ସଂସ୍କାରବାଦୀ ଭାବେ ତାଙ୍କ ମତ ଥିଲା- "ଯଦି ଜଣେ ବ୍ରାହ୍ମଣ ଝିଅ ବିଧବା ହେଲେ ପୁନର୍ବିବାହ କରିପାରୁନି, ତେବେ ମୁଁ କାହିଁକି ବିବାହ କରିବି । ମୁଁ ଆଗ ମରି ଯାଇଥିଲେ ମୋ ସ୍ତ୍ରୀକୁ ଦ୍ୱିତୀୟ ବିବାହ ପାଇଁ ପରାମର୍ଶ ଦିଆଯାଆନ୍ତା କି ?"

ସେ ଯୌତୁକ ବିରୋଧୀ ଥିଲେ । କନ୍ୟାମାନଙ୍କ ବିବାହରେ ଯୌତୁକ ଦେଇ ନଥିଲେ କି ବାହ୍ୟ ଆଡ଼ମ୍ବର ପ୍ରଦର୍ଶନ କରିନଥିଲେ । ବଡ଼ଝିଅ ସାରଙ୍ଗିଣୀ ପାଇଁ ଗରିବ ଅଥଚ୍ ବୁଦ୍ଧିମାନ ରତ୍ନାକର ପତିକୁ ଜ୍ୱାଇଁ ଭାବରେ ଗ୍ରହଣ କରିଥିଲେ ଏବଂ ସାନଝିଅ କେତକୀକୁ ସତ୍ୟବାଦୀର ପୁରାତନ ଛାତ୍ର ନାରାୟଣ ମିଶ୍ରଙ୍କ ସହିତ ବିବାହ ଦେଇଥିଲେ ।

ଲେଖକ କହନ୍ତି- "ଏକ ପକ୍ଷରେ ଦୈବର ବିଧାନ ଅପର ପକ୍ଷରେ ଆପଣାର ଅନାସକ୍ତ ପ୍ରବୃତ୍ତି । ଏହି ଉଭୟ ଦୃଷ୍ଟିରୁ ଗୋପବଂଧୁଙ୍କ ପାରିବାରିକ ଜୀବନ ଥିଲା ପ୍ରାୟତଃ ବଂଧନହୀନ ।"

ଗୋପବଂଧୁ ୧୯୦୬ ମସିହାରେ କଲିକତାରେ ଆଇନ ଅଧ୍ୟୟନ ସାରି କଟକ ଫେରିଲେ । ପରୀକ୍ଷାର ଫଳ ବାହାରି ନଥାଏ । ଇତ୍ୟବସରରେ ଆଚାର୍ଯ୍ୟ ହରିହରଙ୍କ ପ୍ରରୋଚ୍‌ନାରେ ନୀଳଗିରି ହାଇସ୍କୁଲ୍‌ରେ ପ୍ରଧାନ ଶିକ୍ଷକ ଭାବେ ଯୋଗଦାନ କଲେ । ଶିକ୍ଷକତା ଥିଲା ତାଙ୍କ ବୃତ୍ତିଗତ ଜୀବନର ପ୍ରଥମ ସୋପାନ । ଖୁବ୍ ଅଳ୍ପଦିନ ମଧ୍ୟରେ ଜଣେ ଆଦର୍ଶ ଶିକ୍ଷକ ଭାବେ ସୁନାମ ଅର୍ଜନ କଲେ । ଗୋପବଂଧୁଙ୍କ ଶିକ୍ଷକ ଜୀବନ ବିଷୟରେ ଲେଖକ କହିଛନ୍ତି- "ଛାତ୍ର ପ୍ରେମର ଉଜ୍ଜ୍ୱଳତାରେ ଏ ଜୀବନ ମହାର୍ଘ ଥିଲା । ଛାତ୍ରର ମନକୁ ପାଇଲା ପରି, ହୃଦ୍‌ବୋଧ ହେଲାପରି ସରଳ ତରଳ ଭାଷାରେ ବହୁ ଉଦାହରଣ ଦେଇ ଗୋପବଂଧୁ ପାଠ୍ୟ ବିଷୟକୁ ବୁଝାଇ ଦେଉଥିଲେ । ପାଠ ପଢ଼େଇବାରେ ତାଙ୍କର ନିଷ୍ଠା ଥିଲା ଅନନ୍ୟ । (ହେ ସାଥି ! ହେ ସାରଥି ! - ପୃଷ୍ଠା-୩୬)

ମାତ୍ର ତିନି ଚାରି ମାସର ଶିକ୍ଷକତା ପରେ ଗୋପବଂଧୁ କର୍ମମୟ ଜୀବନର ବ୍ୟାପକ ପରିସରରେ ପ୍ରବେଶ କଲେ । ଓକିଲାତି ପରି ଜନସେବାର ସ୍ୱାଧୀନ ଓ ବଳିଷ୍ଠ ମାଧ୍ୟମକୁ ନିଜର କର୍ମପନ୍ଥା ରୂପେ ଗ୍ରହଣ କଲେ । ପ୍ରଥମେ କଟକ ଓ ପରେ ପୁରୀ ସହରରେ କିଛିକାଳ ପାଇଁ ଓକିଲାତି କଲେ । ତତ୍‌କାଳୀନ ପ୍ରତିଷ୍ଠିତ ଓକିଲ ଗୋପବଂଧୁ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀ, ମଧୁବାବୁ ଓ ବୈକୁଣ୍ଠନାଥ ଦତ୍ତ ତାଙ୍କ ଓକିଲାତି ଜୀବନର ଅଭିଜ୍ଞତାକୁ ସମୃଦ୍ଧ କରିଥିଲେ । ଓକିଲାତି କରି ଅର୍ଥ ରୋଜଗାର କରିବାରେ ସେ ଆଗ୍ରହୀ ନଥିଲେ । ଯେଉଁ ପକ୍ଷ ପ୍ରକୃତ ସତ କଥା କହୁଥିଲେ, ସେ ସେହି ପକ୍ଷ ସପକ୍ଷରେ ଲଢୁଥିଲେ । ମାମଲା ଲଢ଼ିବା ଅପେକ୍ଷା ମୁଦାଲାମାନଙ୍କୁ ବୁଝାଇ ସୁଝାଇ ମାମଲାରୁ ନିବୃତ୍ତ କରାଉଥିଲେ ।

ସେ ୧୯୦୯ ମସିହାର ଶେଷ ଭାଗରେ ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ସରକାରୀ ଓକିଲ ଭାବେ ଯୋଗ ଦେଲେ । ତାଙ୍କର ଲକ୍ଷ୍ୟ ଥିଲା ମହାରାଜା ରାମଚନ୍ଦ୍ରଙ୍କୁ ଓଡ଼ିଶାର ଜାତୀୟ କାର୍ଯ୍ୟରେ ଅଧିକ ଉତ୍ସାହିତ କରିବା । ଗୋପବଂଧୁଙ୍କ ସାଧୁତା ଓ ନିରଳସ ବ୍ୟକ୍ତିତ୍ୱ ରାଜାଙ୍କୁ ବେଶ୍ ଆକୃଷ୍ଟ କରିଥିଲା । ସେଠାରେ ସେ ଓଡ଼ିଶୀ ସଂସ୍କୃତିର ସୁରକ୍ଷା ସହିତ ଅନାଥାଶ୍ରମ ପରି ସେବା ଆଶ୍ରମ ଓ ସାହିତ୍ୟିକ ପରିବେଶ ସୃଷ୍ଟି କରିବାରେ ବେଶ୍ ସଫଳ ହୋଇଥିଲେ । ୧୯୧୨ ମସିହାରେ ସେ ବାରିପଦାର ସରକାରୀ ଓକିଲ ପଦରୁ ଇସ୍ତଫା ଦେଇ ଓଡ଼ିଶାର ବୃହତ୍ତର ସ୍ୱାର୍ଥରେ ନିଜକୁ ଉତ୍ସର୍ଗ କଲେ । ଆତ୍ମସେବା ଅପେକ୍ଷା, ଦେଶ ସେବାକୁ ଜୀବନର ଶ୍ରେଷ୍ଠ କର୍ମ ବୋଲି ବିବେଚ୍ନା କଲେ । ଓଡ଼ିଶାରେ ଶିକ୍ଷାର ବିସ୍ତାର, ମାତୃଭାଷାର ସୁରକ୍ଷା, ଦୁର୍ଗତ ଓଡ଼ିଆଙ୍କ ସେବା ତଥା ଭାରତର ସ୍ୱାଧୀନତା ପାଇଁ ନିଜକୁ ସଂପୂର୍ଣ୍ଣ ସମର୍ପିତ କରିଦେଲେ ।

ଗୋପବଂଧୁଙ୍କର ରହିଥିଲା ଅପୂର୍ବ ସାଂଗଠନିକ ଦକ୍ଷତା ଓ ବିଚ୍ କ୍ଷଣ ବାଗ୍ମୀତା । ସେ ଜୀବନରେ ଗଢ଼ିଥିଲେ ବହୁ ଅନୁଷ୍ଠାନ ଏବଂ ବକ୍ତବ୍ୟର ହୃଦୟବତ୍ତାରେ ଅଗଣିତ ଜନତାଙ୍କୁ କରିଥିଲେ ଆପଣାର । ତାଙ୍କର ଆବେଗାୟିତ ଅଥଚ୍ ପାଣ୍ଡିତ୍ୟପୂର୍ଣ୍ଣ ତଥ୍ୟଭିତ୍ତିକ ଭାବ ପ୍ରକାଶନଭଙ୍ଗୀ, କି ଛାତ୍ର, କି ନେତା, କି ଜନତା ସମସ୍ତଙ୍କ ମରମକୁ ଦେଉଥିଲା ଅମୃତର ସ୍ପର୍ଶ । ତାଙ୍କପରି କାନ୍ଦୁରା ଜାତିପାଗଳ ମଣିଷର କଥା ବା କାହାକୁ ପାଗଳ ନ କରନ୍ତା ?

ଅଧ୍ୟୟନ ସମୟରୁ ଜୀବନର ଶେଷ ଅଧ୍ୟାୟ ପର୍ଯ୍ୟନ୍ତ ସେ ଗଢ଼ି ଚାଲିଥିଲେ ନାନା ଅନୁଷ୍ଠାନ । ସଂଗଠିତ ଭାବେ ଜାତୀୟ ଉନ୍ନତି ଥିଲା ତାଙ୍କର କାମ୍ୟ । ପରିଶେଷରେ ସେ ନିଜେ ଏକ ଅନୁଷ୍ଠାନରେ ହୋଇ ଯାଇଥିଲେ ରୂପାନ୍ତରିତ । ଏହି କଥା ଲେଖକ ବହୁ ଯଥାର୍ଥ ଉଦାହରଣ ଓ ଉଦ୍ଧୃତି ମାଧ୍ୟମରେ କରିଛନ୍ତି ଉପସ୍ଥାପିତ । ଗୋପବଂଧୁ ପୁରୀ ଜିଲ୍ଲା ସ୍କୁଲ୍‌ରେ ଅଧ୍ୟୟନ ସମୟରେ 'ପୁରୀ ସେବା ସମିତି' ନାମକ ଏକ ସ୍ୱେଚ୍ଛାସେବୀ ସଂଗଠନ ଗଢ଼ିଥିଲେ । ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ପ୍ରବଳ ହଇଜା ଯୋଗୁଁ ବହୁ ଲୋକ ମୃତ୍ୟୁବରଣ କରୁଥିଲେ । ରାସ୍ତାଘାଟରେ ମୃତକମାନଙ୍କ ଶବ ପଡ଼ି ରହୁଥିଲା । ଏହି ସମିତି ରାସ୍ତାରୁ ଶବ ଉଠାଇବା, ଦାହ କରିବା, ରୋଗୀମାନଙ୍କୁ ଔଷଧ ବାଣ୍ଟିବା, ସେମାନଙ୍କ ପାଇଁ ପାଣ୍ଠି ସଂଗ୍ରହ କରିବା ଆଦି କାର୍ଯ୍ୟ ସଂପାଦନ କରୁଥିଲେ । ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ର ଛାତ୍ରାବାସରେ ରହିଣିକାଳରେ "Young Utkal Association" ନାମକ ସାଂସ୍କୃତିକ ଅନୁଷ୍ଠାନ ଗଢ଼ି ସେଥିରେ ସମାଜସେବା ଓ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ବିଷୟରେ ଆଲୋଚ୍ନା କରୁଥିଲେ । ଏହା ସହିତ 'କର୍ତ୍ତବ୍ୟ ବୋଧିନୀ' ସମିତି ଗଢ଼ି ବଙ୍ଗଳା ଲିପିରେ ଓଡ଼ିଆ ପ୍ରଶ୍ନ ତିଆରି ହେବାର ସିଦ୍ଧାନ୍ତ ବିରୋଧରେ କରିଥିଲେ ପ୍ରତିବାଦ । ଏହି ଅନୁଷ୍ଠାନ ମଧ୍ୟ ବଢ଼ି ଅଞ୍ଚଳରେ ବୁଲି  ନିଷ୍ଠାର ସହିତ ସାହାଯ୍ୟ କରୁଥିଲେ ।

'ବିଶ୍ୱବିଦ୍ୟାଳୟ' ନାମକ ଆଲୋଚ଼ନା ଚକ୍ର ଖୋଲି ସେଠାରେ ଲିଖିତ ପ୍ରବଂଧ ପାଠ ପୂର୍ବକ ବଂଧୁମାନଙ୍କ ମଧରେ ସାଂସ୍କୃତିକ ଜାଗରଣ ଆଣିବାର ପ୍ରଯତ୍ନ ଜାରି ରଖିଥିଲେ । ବଢ଼ି ଅଞ୍ଚଳର ସାହାଯ୍ୟ ପାଇଁ "Central Young Utkal Association" ଗଢ଼ିଥିଲେ । ମୁକ୍ତ୍ୟାର ରାମଚନ୍ଦ୍ର ଦାଶଙ୍କ ପ୍ରତିଷ୍ଠିତ 'ବ୍ରାହ୍ମଣ ସମିତି ଛାତ୍ରାବାସ'ର ପରିଚାଳକ ଭାବେ ହିନ୍ଦୁଧର୍ମର ଉଦାରତା ବିଷୟରେ କରିଥିଲେ ପରିପ୍ରଚାର । ଏତଦ୍‌ଭିନ୍ନ ସେ ଶିକ୍ଷାର ଉନ୍ନତି ନିମନ୍ତେ 'ୟୁନିଭରସାଲ୍ ଏଜୁକେସନ୍ ଲିଗ୍ ଓ ସତ୍ୟବାଦୀରେ ବିଧବାଶ୍ରମ' ଗଢ଼ିଥିଲେ । ପୁରୀ କୁଷ୍ଠାଶ୍ରମର ଦାୟିତ୍ୱ ଭିତରେ ତାଙ୍କ ସେବାମୟ ଜୀବନର ପରାକାଷ୍ଠା ହୋଇଥିଲା ପ୍ରଦର୍ଶିତ । ପରବର୍ତ୍ତୀ ସମୟରେ କଲିକତାର ଶ୍ରମିକ ସଂଗଠନ, ଉତ୍କଳ ସମ୍ମିଳନୀ, ପ୍ରଦେଶ କଂଗ୍ରେସ କମିଟି, ଲୋକସେବକ ମଣ୍ଡଳ ଆଦି ସଂଗଠନ ଗୁଡ଼ିକ ସହିତ ସଂପୃକ୍ତି ତାଙ୍କ ସାଂଗଠନିକ ଦକ୍ଷତାକୁ କରିଥିଲା ପ୍ରମାଣିତ ।

କଲିକତାର ଶ୍ରମିକମାନଙ୍କୁ ସଂଗଠିତ କରି ବିଦେଶୀ ବସ୍ତ୍ର ଆମଦାନୀ ରୋକିବାରେ ସେ ବେଶ୍ ସଫଳ ହୋଇଥିଲେ । ସେହି ସଫଳତାରେ ଇଂରେଜୀ ଖବରକାଗଜରେ ବାହାରିଥିଲା- "Gopabandhu, the uncrowned king of orissa" ।

ଗୋପବଂଧୁଙ୍କ ଅଭିଭାଷଣର ହୃଦୟବତ୍ତା ଓ ବାଗ୍ମିତା ଜନସାଧାରଣଙ୍କୁ କରୁଥିଲା ବିଶେଷ ପ୍ରଭାବିତ । ଦେଶରେ ଶିକ୍ଷାର ବିସ୍ତାର, ସତ୍ୟବାଦୀର ଛାତ୍ରମାନଙ୍କ ଚରିତ୍ରଗଠନ, ଦେଶବାସୀଙ୍କୁ ଜାତିପ୍ରେମର ଦୀକ୍ଷା ଦୁର୍ଗତ ଜନତାଙ୍କ ଧୈର୍ଯ୍ୟ ରକ୍ଷା, ଉଦାସୀନ ସରକାରଙ୍କୁ ଏ ଦେଶର ସମସ୍ୟା ହୃଦ୍‌ବୋଧ କରେଇବା ପାଇଁ ସେ ବହୁ ଉଦ୍‌ବୋଧନ ଦେଇଛନ୍ତି । ଉଦ୍‌ବୋଧନର ଯଥାର୍ଥ ଅଂଶଗୁଡ଼ିକ ଉଦ୍ଧାର କରି ଜୀବନୀକାର ଗୋପବଂଧୁଙ୍କୁ ଜଣେ ଅସାଧାରଣ ବାଗ୍ମୀ ଭାବେ କରିଛନ୍ତି ଉପସ୍ଥାପିତ ।

ତାଙ୍କ ଉଦ୍‌ବୋଧନରେ ମାନବଧର୍ମ, ଜଗନ୍ନାଥ ଧର୍ମ, ହିନ୍ଦୁଧର୍ମର ପରିପୂରକତା, ମାନବସେବା ଓ ମାଧବ ସେବାର ଅଭିନ୍ନତା, ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ, ପରୋପକାରର ମହତ୍ତ୍ୱ, ଆଦି ବହୁ ମାନବବାଦୀ ସଂସ୍କୃତି ସମୃଦ୍ଧ ଚିନ୍ତାଧାରା ପ୍ରକାଶ ପାଉଥିଲା ।

ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ ବିଶ୍ଳେଷଣ ପୂର୍ବକ ଗୋପବଂଧୁ ଭାରତୀୟ ତଥା 'ବିଶ୍ୱଜନବୋଧରେ ଉତ୍କଳୀୟମାନଙ୍କୁ ଅନୁପ୍ରେରିତ ହେବା ପାଇଁ ଉଦ୍‌ବୋଧନ ଦେଇ କହିଥିଲେ- "ମନେ ରଖିବାକୁ ହେବ ଆମ୍ଭେମାନେ ପ୍ରଥମେ ମନୁଷ୍ୟ । ପରେ ଭାରତୀୟ, ସର୍ବଶେଷରେ ଓଡ଼ିଆ । ଏହି ଭାବ ମନରେ ନ ରଖିଲେ ଜାତୀୟ କ୍ରମ ବିକାଶ ଅସମ୍ଭବ × × × । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି, ମାତ୍ର ସାମାଜିକ ଭିତ୍ତି ବ୍ୟତୀତ ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏ ନାହିଁ । ସେହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନନୀ ମାନବିକତାରେ । ଜାତୀୟତାର ଲକ୍ଷ୍ୟ

ଯେ ଉଦାର ମାନବିକତା, ସମଗ୍ର ଭାରତରେ ତାହା ଓଡ଼ିଆ ହିଁ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଆର ଜାତୀୟତା, ପୂର୍ଣ୍ଣପ୍ରାଣ ଓଡ଼ିଆର ଜାତୀୟତା । ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ବଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥ ପ୍ରଣୋଦିତ ନୁହେଁ । ରାଜ୍ୟ ଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ, ଗଭୀର ଧର୍ମଭାବ ଏବଂ ଦୃଢ଼ ବିଶ୍ୱାସ ଏହାର ଭିତ୍ତି । ସାମ୍ୟ ମୈତ୍ରୀ ଓ ସ୍ୱାଧୀନତା ଏହାର ବିଗ୍ରହ ।”

ଏହି ହୃଦୟସ୍ପର୍ଶୀ ଭାବବୋଧନ ଭିନ୍ନ ୧୯୧୮ ମସିହା କଟକରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ, ୧୯୯୦ ମସିହା ବିହାର ଓଡ଼ିଶା କାଉନ୍‌ସିଲ୍‌ର ବଜେଟ୍ ଅଧିବେଶନରେ, ୧୯୨୧ ମସିହାରେ ଆସ୍କାରେ ଅନୁଷ୍ଠିତ ହରିଜନ ସମ୍ମିଳନୀରେ, ୧୯୨୬ ମସିହା ସମ୍ବଲପୁର ଟାଉନ୍‌ହଲ୍ ଠାରେ ଓ ପୁରୀ ସିଂହଦ୍ୱାର ଠାରେ ଦେଇଥିବା ଉଦ୍‌ବୋଧନ ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ଲେଖକ ପ୍ରଫେସର ଶତପଥୀ ଗୋପବଂଧୁଙ୍କୁ ଜଣେ ଦୂରଦୃଷ୍ଟି ସଂପନ୍ନ ଶିକ୍ଷାବିତ୍ ଭାବେ ଚିତ୍ରିତ କରିଛନ୍ତି । ଗୋପବଂଧୁ ଅନୁଭବ କରିଥିଲେ ଯେ ଶିକ୍ଷାବିନା ଭାରତର ମୁକ୍ତି ଓ ପ୍ରଗତି ଅସମ୍ଭବ । ଲୋକମାନଙ୍କ ଆର୍ଥିକ ସ୍ୱଚ୍ଛନ୍ଦତା ସହିତ ସଂସ୍କାର ରଚିପୂର୍ଣ୍ଣ ଜୀବନଧାରଣ ପାଇଁ ଶିକ୍ଷାର ପ୍ରସାର ବିଶେଷ ପ୍ରୟୋଜନ । ପୁସ୍ତକଗତ ଶିକ୍ଷାଠାରୁ ସେ ମଣିଷପଣିଆର ଶିକ୍ଷାକୁ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ସମାଜର ବିଭିନ୍ନ ବର୍ଗର ଓ ବିଭିନ୍ନ ଅବସ୍ଥାର ଲୋକଙ୍କ ପାଇଁ ଶିକ୍ଷାର ପରିକଳ୍ପନା କରିଛନ୍ତି । ସତ୍ୟବାଦୀ ବନବିଦ୍ୟାଳୟର ସ୍ଥାପନ, ବିଚ୍ଛିନ୍ନାଞ୍ଚଳରେ ଶିକ୍ଷାଦାନ କାର୍ଯ୍ୟକ୍ରମ ଏବଂ ପୁରୀ ଜିଲ୍ଲା ଶିକ୍ଷା ସମ୍ମିଳନୀର ଆହ୍ୱାନରେ ଗୋପବଂଧୁଙ୍କ ସୁଦୂରପ୍ରସାରୀ ଶିକ୍ଷାଦୃଷ୍ଟି ହୋଇଛି ପ୍ରତିଫଳିତ । ସେ ନିମ୍ନଶିକ୍ଷା, ମଧ୍ୟଶିକ୍ଷା, ଉଚ୍ଚଶିକ୍ଷା, ଲୋକଶିକ୍ଷା, ସାଧାରଣ ଶିକ୍ଷା, ସ୍ତ୍ରୀ ଶିକ୍ଷା, ପୁରୁଷ ଶିକ୍ଷା, ବୈଷୟିକ ଶିକ୍ଷା, ନୈତିକ ଶିକ୍ଷା ଇତ୍ୟାଦି ସବୁ ପ୍ରକାର ଶିକ୍ଷାକୁ ଆନ୍ଦୋଳନରେ ଅଙ୍ଗୀଭୂତ କରିଥିଲେ । ଶିକ୍ଷା ଆନ୍ଦୋଳନର ଲକ୍ଷ୍ୟ ଥିଲା ଭାଗବତ ମନ୍ଦିର ସଂସ୍କାର, ବିଦ୍ୟାଳୟ ସ୍ଥାପନ, ଅବନତ ବିଦ୍ୟାଳୟର ପୁନରୁଦ୍ଧାର, ଶିକ୍ଷାସମ୍ବନ୍ଧୀୟ ସମସ୍ୟା ପ୍ରତି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ, ଶିକ୍ଷାନୁଷ୍ଠାନ ମଧ୍ୟରେ ସଂପ୍ରୀତିର ବାତାବରଣ, ଶିକ୍ଷାର ପ୍ରୟୋଜନୀୟତାର ପ୍ରସାର, ଶ୍ରମଜୀବୀମାନଙ୍କ ଶିଳ୍ପ ବ୍ୟବସାୟରେ ନୂତନ ପ୍ରଣାଳୀ ପ୍ରବର୍ତ୍ତନ ଓ ଜାତୀୟ ଚରିତ୍ର ଗଠନ ।

ଶିକ୍ଷା ଆନ୍ଦୋଳନର ପରିଚାଳନା ନିମନ୍ତେ ସେ ଶିକ୍ଷା ପାଣ୍ଠି ଗଠନର ପରିକଳ୍ପନା କରିଥିଲେ । ଶିକ୍ଷା ପାଣ୍ଠି ସଂଗ୍ରହ ନିମନ୍ତେ ସେ ଜନସାଧାରଣଙ୍କ ଜାତୀୟ ଚେତନାର ଜାଗୃତି ଉପରେ ଗୁରୁତ୍ୱ ଦେଉଥିଲେ ।

ଗୋପବଂଧୁ ଜଣେ ନିର୍ଭୀକ ଓ ସତ୍ୟନିଷ୍ଠ ସଂପାଦକ ତଥା ନିଷ୍ଠାପର ଓ ଦରଦୀ ସାହିତ୍ୟିକ ଥିଲେ । ତାଙ୍କ ସାହିତ୍ୟ ସାଧନା ଓ ସଂପାଦକୀୟ ଆଦର୍ଶ ଓଡ଼ିଶାର ସାମ୍ବାଦିକ ଓ

ସାହିତ୍ୟିକମାନଙ୍କୁ ଆଜିଯାଏଁ ବାଟ ଦେଖାଉଛି । ଏହି କଥା ଜୀବନୀକାର 'ସତ୍ୟବାଦୀ ପତ୍ରିକା' (୧୯୧୫-୧୯୨୦), 'ସମାଜ' ଏକ କ୍ରାନ୍ତି, ଏକ ଚେତନା ତଥା ଘଟଣା କ୍ରମେ ଗୋପବଂଧୁଙ୍କ ରଚ଼ନାର ନାନା ଉପାଦେୟ ଅଂଶ ଉଦ୍ଧାର ପୂର୍ବକ କରିଛନ୍ତି ପ୍ରତିପାଦିତ । ୧୯୧୫ ମସିହା ମାର୍ଚ୍ଚ ମାସରେ ସତ୍ୟବାଦୀ ପତ୍ରିକା ପ୍ରଥମେ ଗୋପବଂଧୁଙ୍କ ସଂପାଦନାରେ ପ୍ରକାଶ ପାଇଥିଲା । ଏଥିରେ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ବାସୁଦେବ ପ୍ରଭୃତି ସତ୍ୟବାଦୀ ଶିକ୍ଷକମାନଙ୍କ ସହିତ ଗୋପୀନାଥ ନନ୍ଦ, ଜଗବଂଧୁ ସିଂହ, ବିରୂପାକ୍ଷ କର, ଶ୍ରୀବତ୍ସ ପଣ୍ଡା ପ୍ରଭୃତିଙ୍କ ଲେଖା ପ୍ରକାଶ ପାଉଥିଲା । ଆଲୋଚ଼ନା, ସମାଲୋଚ଼ନା, ପଲ୍ଲୀପ୍ରସଂଗ, ଛାତ୍ରଭାଗ- ଏହି ପତ୍ରିକାର ଧାରାବାହିକ ବିଷୟବସ୍ତୁ ଥିଲା । ପତ୍ରିକାର ଆରମ୍ଭରେ ବୈଦିକ ଋଷିମାନଙ୍କ ମହତ୍ ବାଣୀ ସ୍ଥାନ ପାଉଥିଲା । ଜାତୀୟତା, ଶିକ୍ଷାସଂସ୍କାର, ମାତୃଭାଷା ସାହାଯ୍ୟରେ ଶିକ୍ଷାଦାନ, ଯୁବଶକ୍ତିର ଉଦ୍‌ବୋଧନ, ସାହିତ୍ୟସେବା, ସାମୟିକ ପ୍ରସଂଗ, ମାନବିକ ସମସ୍ୟା ସମ୍ବନ୍ଧୀୟ ବହୁ ଉପାଦେୟ ପ୍ରସଂଗ ଆଲୋଚ଼ନା ହେଉଥିଲା । ବିଶେଷତଃ ଗୋପବଂଧୁ ଆଧ୍ୟାତ୍ମିକ ଚେତନା ଓ ଜାତୀୟ ଚେତନା ଉଦ୍ଦୀପକ ଲେଖାମାନ ଏଥିରେ ପ୍ରକାଶ କରୁଥିଲେ । ସତ୍ୟବାଦୀର ପ୍ରଥମବର୍ଷ ପ୍ରଥମ ସଂଖ୍ୟାରେ ଆଦର୍ଶ ଓ ଆକାଂକ୍ଷା ଶୀର୍ଷକରେ ସେ ଲେଖିଥିଲେ- "ଓଡ଼ିଆମାନଙ୍କ ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆ ଭାଷା ମୁଖରେ ବିଶ୍ୱ ଭାବରାଶିର ପ୍ରକାଶ କରିବାକୁ ହେବ । ଭିନ୍ନ ଭିନ୍ନ ଦେଶ ଓ ପ୍ରଦେଶମାନଙ୍କରେ ବିଭିନ୍ନ ସମୟରେ ମାନବ ଚିନ୍ତା ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି; ମାନବ ପ୍ରତିଭା ଯେଉଁ ଶୋଭା ପଟଳ ପରିସ୍ଫୁଟ କରିଅଛି, ମାନବ ପ୍ରଜ୍ଞା ଯେଉଁ ଆଲୋକ ପାଇଅଛି, ମାନବଜୀବନ ଯେଉଁ ଭାବ ଆଦର୍ଶ ଦେଖାଇଅଛି ସେ ସବୁକୁ ଓଡ଼ିଆ ସାହିତ୍ୟର ସମ୍ପଦୀଭୂତ କରିବାକୁ ହେବ ।" (ହେ ସାଥି ! ହେ ସାରଥି ! - ପୃ-୧୪୧)

'ସମାଜ' ୧୯୧୯ ଅକ୍ଟୋବର ୪ ତାରିଖରେ ଗୋପବଂଧୁଙ୍କ ସଂପାଦନାରେ କରିଥିଲା ଆତ୍ମପ୍ରକାଶ । ତାଙ୍କ ଜୀବନର ବହୁ ଆଶା ଆକାଂକ୍ଷା ଏଥିରେ ରୂପାୟିତ ହେଉଥିଲା । ଜନସାଧାରଣଙ୍କ ନିତିଦିନିଆ ସମସ୍ୟା ସହିତ ବନ୍ୟା, ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କ ଦୁଃଖ ଦୁର୍ଦ୍ଦଶାର ବିବରଣୀ ଧାରାବାହିକ ଭାବେ ଏଥିରେ ପ୍ରକାଶିତ ହୋଇ ସରକାର ଓ ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ସମ୍ବାଦ ପ୍ରକାଶନରେ ଗୋପବଂଧୁଙ୍କ ମୌଳିକ ଦୂରଦୃଷ୍ଟି ଓ ନିର୍ଭୀକତା ବାରି ହୋଇ ପଡୁଥିଲା । କନିକା ଅତ୍ୟାଚାରର ଲୋମହର୍ଷଣକାରୀ ବିବରଣୀ ଧାରାବାହିକ ପ୍ରକାଶ କରି କନିକା ରାଜାଙ୍କ ଅକ୍ରୋଶର ଶିକାର ହୋଇଥିଲେ ଏବଂ ଏଥିପାଇଁ ତାଙ୍କୁ ୧୯୨୨ ମସିହା ମେ ମାସ ଷୋହଳ ତାରିଖରେ ଗିରଫ୍ କରାଯାଇଥିଲା ।

ଗୋପବଂଧୁ ସମ୍ବାଦଦାତାମାନଙ୍କୁ ସୁରକ୍ଷା ଦେବାକୁ ଯାଇ ନିଜେ ଅସୁବିଧାରେ ପଡୁଥିଲେ । ୧୨.୧୧.୧୯୨୭ ମସିହାରେ 'ପାରିକୁଦରେ ପୋଲିସ୍ ଜୁଲୁମ୍' ନାମକ ଏକ ଲେଖା ପ୍ରକାଶ କରି ପାରିକୁଦ ସବ୍‌ଇନିସ୍‌ପେକ୍ଟରଙ୍କ କ୍ରୋଧର ହୋଇଥିଲେ ଶିକାର । ୧୧.୪.୨୮ ତାରିଖ ସମାଜରେ 'ଓଡ଼ିଆର ଆତ୍ମହତ୍ୟା' ଶିରୋନାମାରେ ସରକାରଙ୍କ ଉପରେ ଦୋଷାରୋପ କରି ଲେଖିଥିଲେ - ସରକାର ଲୋକଙ୍କୁ ଅଧିକ ଅବକାରୀ ଜିନିଷ ସେବନ କରିବାର ସୁଯୋଗ ଦେଇ ପରୋକ୍ଷରେ ସେମାନଙ୍କ ଚିନ୍ତାଶକ୍ତିକୁ ପଙ୍ଗୁ କରି ଦେଉଛନ୍ତି । ପରାଧୀନ ଭାରତ ବର୍ଷରେ ସେ ଏହିପରି ସ୍ୱାଧୀନ ସମ୍ବାଦ ପରିବେଷଣର ନିର୍ଭୀକ ପରଂପରା ସୃଷ୍ଟି କରିପାରିଥିଲେ ।

ସମାଜ ଓଡ଼ିଆ ଭାଷାକୁ ଲୋକାଭିମୁଖୀ କରିପାରିଥିଲା । ଏହାର ଭାଷା ଖୁବ୍ ସରଳ ଓ ପ୍ରାଞ୍ଜଳ । ଓଡ଼ିଆ ସାହିତ୍ୟର ଗଦ୍ୟଧାରାରେ ଏହା ଏକ ଆଦର୍ଶ ସୃଷ୍ଟି କରିପାରିଥିଲା ।

ଘଟଣାକ୍ରମେ ଲେଖକ ଗୋପବଂଧୁଙ୍କ ସାହିତ୍ୟ ରଚ଼ନାର ପୃଷ୍ଠଭୂମି ତାଙ୍କ ସାହିତ୍ୟର ଆଲୋଚ଼ନା ଓ କିଛି ମୌଳିକ ଅଂଶର ଉପସ୍ଥାପନା ମଧ୍ୟ କରିଛନ୍ତି ।

(ଗୋପବଂଧୁ ୧୮୯୪ ମସିହାରେ ନବମଶ୍ରେଣୀ ପଢ଼ିବା ବେଳେ ରାଧାନାଥଙ୍କ ବ୍ୟକ୍ତିତ୍ୱ ପ୍ରତି ଆକ୍ଷେପ କରି ଇନ୍ଦ୍ରଧନୁ ପତ୍ରିକାରେ ଛଦ୍ମନାମରେ ଲେଖିଥିଲେ-

"କିଛି ଦୂରେ ଛନ୍ତି ଓଡ଼ିଆ ପଣ୍ଡିତ ମନ୍ୟ
ବାଉରୀ ସାହିରେ ଶୃଗାଳ କେଶରୀ ପରି ହେଉଥାନ୍ତି ଗଣ୍ୟ ।"

ସାହିତ୍ୟରେ ଏତେ ସାହସିକତା ଖୁବ୍ କମ୍ ଲେଖକ ଦେଖାଇଛନ୍ତି, ଯାହା ଛାତ୍ର ସମୟରୁ ହିଁ ଗୋପବଂଧୁଙ୍କ ପାଖରେ ରହିଥିଲା ।

ଏତଦ୍‌ଭିନ୍ନ 'ମୋ ନାନୀ', 'କାଠଯୋଡ଼ିରେ ସାୟଂକାଳ', 'ପ୍ରାର୍ଥନା', 'କାଙ୍କଣ ଗଛ', 'ଶିବରାତ୍ରି', ମୂକ ମିନତି, ଅନାଥ କଳିକା, ବନ୍ଦୀର ଆତ୍ମକଥା, ବ୍ରାହ୍ମଣ ସମିତିର ଉଦ୍ଦେଶ୍ୟ ଓ ଆଭିମୁଖ୍ୟକୁ ନେଇ ରଚ଼ିତ କବିତାଗୁଡ଼ିକର ପୃଷ୍ଠଭୂମି । ଆଭିମୁଖ୍ୟ ଓ କିଛି ଅଂଶର ଉପସ୍ଥାପନା ପୂର୍ବକ ଗୋପବଂଧୁଙ୍କ ସାହିତ୍ୟିକ ପ୍ରତିଭାର କରାଯାଇଛି ଆକଳନ ।

ସେ ତାଙ୍କର ବନ୍ଦୀ ଜୀବନକୁ କିଭଳି ସାରସ୍ୱତ ସାଧକର ଜୀବନରେ ରୂପାନ୍ତରିତ କରିଥିଲେ ତାହାର ପରିଚ଼ୟ ଦିଏ 'ଧର୍ମପଦ', 'କାରା କବିତା', 'ନଚିକେତା ଉପାଖ୍ୟାନ' ଓ 'ଗୋ ମାହାତ୍ମ୍ୟ' ଆଦି ରଚ଼ନା ।)

ଗୋପବଂଧୁଙ୍କ ଦେଶସେବାର ଅନ୍ୟତମ ଅଙ୍ଗ ଥିଲା ସମାଜ ସଂସ୍କାର । ତାଙ୍କ ସଂସ୍କାର ଚେତନାର ମୂଳ ଭିତ୍ତି ଥିଲା ମଣିଷପଣିଆ । ସେ ଇଚ୍ଛୁଥିଲେ ମଣିଷ ଅନ୍ଧବିଶ୍ୱାସ କିମ୍ବା ଅମାନବୀୟ ସାମାଜିକ ପରଂପରା ଯୋଗୁଁ ଦୁଃଖୀ ନ ହେଉ । ପରିବାରରେ ହେଉ କି ସମାଜରେ ହେଉ ପରସ୍ପର ପରସ୍ପରଙ୍କୁ ସ୍ନେହ ଶ୍ରଦ୍ଧା ଓ ଆପଣାପଣରେ ବାଂଧି ରଖନ୍ତୁ ।

କୌଣସି ଜାତିଗତ, ବର୍ଣ୍ଣଗତ ଓ ଧର୍ମଗତ ବିଭେଦ ମଣିଷ-ମଣିଷ ଭିତରେ ପ୍ରାଚୀର ହୋଇ ଠିଆ ନ ହେଉ । ଏହି ଚେତନାକୁ ସେ ନିଜ ଜୀବନରେ ପ୍ରଥମେ ଆପଣେଇଥିଲେ ବୋଲି ଯୁବା ସମୟରେ ରାଣ୍ଡିକା ହୋଇ ମଧ ବ୍ରାହ୍ମଣ ସମାଜରେ ବିଧବା ବିବାହ ନଥିବାରୁ ନିଜେ ପୁନର୍ବିବାହ କରିଥିଲେ ଏବଂ ଯୌତୁକ ପ୍ରଥାକୁ ବିରୋଧ କରୁଥିବାରୁ ଝିଅମାନଙ୍କର ବିବାହ ବିନା ଯୌତୁକରେ କରିଥିଲେ ଏବଂ ବାଲ୍ୟ ବିଧବା କାମନାନାନୀଙ୍କ ଦୁଃଖରେ ଭାଙ୍ଗି ପଡୁଥିଲେ । ବିଧବାମାନଙ୍କ ଥଇଥାନ ପାଇଁ ବିଧବାଶ୍ରମ ଗଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଗ୍ରହଣ କରିବା ପାଇଁ ବହୁ ପ୍ରଗତିଶୀଳ ତରୁଣଙ୍କୁ ପରାମର୍ଶ ଦେଇଥିଲେ । ବିଧବାମାନେ କିପରି ସ୍ୱାଭିମାନୀ, ସ୍ୱାବଲମ୍ବନଶୀଳ, ଈଶ୍ୱରପ୍ରାଣ ହୋଇ ମାନସିକ ଶାନ୍ତିରେ ଜୀବନଯାପନ କରିବେ ସେଥିପାଇଁ ସେମାନଙ୍କୁ ସୂତାକଟା, ଲୁଗାବୁଣା, ଭାଗବତ ଚର୍ଚ୍ଚା ଆଦି କର୍ମରେ ନିୟୋଜିତ କରିବାର ବ୍ୟବସ୍ଥା ଗ୍ରହଣ କରୁଥିଲେ ।

ଏତଦ୍‌ଭିନ୍ନ ସେ ନୀଚ୍‌ଜାତି ମାନଙ୍କର ଜାତିଆଣ ସଭାରେ ଯୋଗ ଦେଉଥିଲେ ଏବଂ ବାଉରୀମାନଙ୍କର ନିଶା ଅଭ୍ୟାସ ଛଡ଼ାଇବାରେ ସଫଳ ହୋଇଥିଲେ । ଉଚ୍ଚଜାତି ମାନଙ୍କର ଅହଂକାର ଓ ନୀଚ ଜାତି ପ୍ରତି ସେମାନଙ୍କର ଦୁର୍ବ୍ୟବହାର ଲୋପ କରିବା ପାଇଁ ଗଞ୍ଜାମ ଜିଲ୍ଲା ସମ୍ମିଳନୀ ଓ ଆସ୍କା ହରିଜନ ସମ୍ମିଳନୀରେ ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କ ଉଦାହରଣ ଦେଇ (ସମସ୍ତଙ୍କୁ) ମାନବ ପ୍ରେମ ଧର୍ମରେ ଦୀକ୍ଷିତ କରିବାର ପ୍ରଯତ୍ନ କରିଥିଲେ । ଏହା ସହିତ ଗଂଜାମରେ ତେଲେଙ୍ଗା ଓ ଓଡ଼ିଆଙ୍କ ଭିତରେ ସୃଷ୍ଟି ହୋଇଥିବା ଦ୍ୱନ୍ଦ୍ୱ ଓ ବାଲେଶ୍ୱରରେ ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ଉପୁଜିଥିବା ବିବାଦକୁ ଦୂର କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

ଦୁର୍ଗତ ଜନତାର ଶ୍ରେଷ୍ଠ ବଂଧୁଭାବେ ଲେଖକ ଗୋପବଂଧୁଙ୍କୁ କରିଛନ୍ତି ରୂପାୟିତ । ତାଙ୍କ ଜୀବଦଶାରେ ଯେତେ ବନ୍ୟା ଦୁର୍ଭିକ୍ଷ ପରି ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାକୁ ଗ୍ରାସିଛି ସବୁଠି ଗୋପବଂଧୁ ଚୁଡ଼ା, ଚାଉଳ, ଲୁଗା ଧରି ଅଶ୍ରୁଳ ନୟନରେ ହୋଇଛନ୍ତି ଉପସ୍ଥିତ । ପ୍ରପୀଡ଼ିତ ଜନତାଙ୍କୁ ସାନ୍ତ୍ୱନା ବାଣୀ ଶୁଣାଇଛନ୍ତି । ତାଙ୍କର ସମଗ୍ର ଜୀବନ ବିପନ୍ନଙ୍କ ସେବାରେ ସମର୍ପିତ ହୋଇଛି । ବିଭିନ୍ନ ସମୟରେ ବା ମସିହାରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ହୋଇଥିବା ବନ୍ୟା ସମୟରେ ଦୁର୍ଗତ ଲୋକମାନଙ୍କ ପାଖରେ ଏଇ ଦରଦୀ ମଣିଷଟି ପହଞ୍ଚ ଯାଇଥିଲେ । ତାଙ୍କୁ ଦେଖି ଲୋକମାନେ ଆଶ୍ୱସ୍ତ ହେଉଥିଲେ । ସେ ସବୁବେଳେ ପ୍ରାକୃତିକ ବିପର୍ଯ୍ୟୟର ସ୍ଥାୟୀ ପ୍ରତିକାର ନିମନ୍ତେ ଚିନ୍ତା କରୁଥିଲେ । ବନ୍ୟା ଦୁର୍ଗତଙ୍କ ଅବସ୍ଥା ସବୁବେଳେ ତାଙ୍କୁ ବିଚ୍‌ଳିତ କରୁଥିଲା । ରାତି ଅଧରେ ନିଦ ଭାଙ୍ଗିଗଲେ ସେ ଭୋ ଭୋ ହୋଇ କାନ୍ଦୁଥିଲେ ବିପନ୍ନ ମଣିଷଙ୍କ କଥା ମନେପକାଇ । 'ଏଇ ଭୂତ କାନ୍ଦୁଥିଲାଣ' ପର୍ଯ୍ୟାୟରେ ଲେଖକ ଏକଥା ସ୍ଥାନୀତ କରିଛନ୍ତି । ଦୁର୍ଭିକ୍ଷ ଅଞ୍ଚଳରେ ଲୋକଙ୍କ ଅବସ୍ଥା ମନେପକାଇ ତାଙ୍କ ଦରଦୀ ପ୍ରାଣ ବିଗଳିତ ହୋଇ ପଡୁଥିଲା । ସେଥିପାଇଁ ସେ

ଭଲ ଖାଦ୍ୟ ଗ୍ରହଣ କରିପାରୁ ନଥିଲେ । ଏହା ପିଲାଙ୍କ 'ବଣଭୋଜି' ଓ 'ହାଲିଆ ଜାତି କ'ଣ ହାଲୁଆ ଖାଏ ?' ଶିରୋନାମାରେ ସ୍ଥାନିତ ହୋଇଛି । ବନ୍ୟା ଦୁର୍ଗତଙ୍କୁ ଧୈର୍ଯ୍ୟ ଧରିବା ପାଇଁ ସେ ବୁଝାଇ କହୁଥିଲେ- "ଥୟ ଧର, ଧୋଇ ଧାଇକି କାହାର ବଳ ଅଛି ? ଯାହା ଅଛି ବାଣ୍ଟି କୁଣ୍ଟି ଖାଇବା, ପରସ୍ପରକୁ ସାହାଯ୍ୟ କରିବା । ସରକାରଙ୍କୁ କହି ଅଧିକ ବ୍ୟବସ୍ଥା କରିବା । ଧୈର୍ଯ୍ୟ ଧର, ଭଙ୍ଗାଘର ପୁଣି ତୋଳା ହେବ ।" ଗୋପବଂଧୁ ଜଣେ ଏକନିଷ୍ଠ ବିରଳ ଦେଶସେବୀ । ଦେଶ ପ୍ରତି ତାଙ୍କ ମମତାର ପଟାନ୍ତର ନାହିଁ । ତାଙ୍କର ବେଶ ଭୂଷା, ଭାବନା, ଆଚରଣ ସବୁ କିଛି ଦେଶପ୍ରେମରେ ସିକ୍ତ । ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ପାଗଳ ଥିଲେ ଦେଶପ୍ରେମରେ । ମୁକ୍ତ୍ୟାରା ରାମଚନ୍ଦ୍ର ଦାସ ଥିଲେ ତାଙ୍କ ଜୀବନରେ ସ୍ୱଦେଶୀ ମନ୍ତ୍ରଦାତା । ସେ ମଧ୍ୟ ସାଥୀମାନଙ୍କୁ ଦେଶପ୍ରେମର ଦୀକ୍ଷା ଦେଇଥିଲେ । ତାଙ୍କରି ଉତ୍ସାହରେ ନୀଳକଣ୍ଠ, ଅନନ୍ତ ମିଶ୍ର ଓ ଆଚାର୍ଯ୍ୟ ହରିହର ଭାର୍ଗବୀ ନଦୀକୂଳରେ ଶପଥ ନେଇଥିଲେ- "ଆମେ ପାଠ ପଢ଼ି ସରକାରୀ ଚାକିରୀ କରିବା ନାହିଁ । ଦେଶ ପାଇଁ କିଛି କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଉଁ ତା'ଠାରୁ ଉନ୍ନତ ଦେଖି ମରିବା ।" (ହେ ସାଥି ! ହେ ସାରଥି ! - ପୃଷ୍ଠା-୩୨)

ଗୋପବଂଧୁ ବିହାର ଓଡ଼ିଶାର ବ୍ୟବସ୍ଥାପକ ସଭାର ସଦସ୍ୟ ଭାବେ ଯେପରି ଦୁର୍ଗତ ଓଡ଼ିଆମାନଙ୍କ ଦାବୀକୁ ଉପସ୍ଥାପିତ କରୁଥିଲେ, ସେଥିରୁ ତାଙ୍କ ଦେଶପ୍ରେମର ଗଭୀର ପରିଚୟ ମିଳେ । ଜନତାର ପ୍ରତିନିଧି ଭାବରେ କର୍ତ୍ତବ୍ୟର ଅବହେଳାକୁ ସେ ପାପ ବୋଲି ମନେ କରୁଥିଲେ । ଓଡ଼ିଶାର ଚାରୋଟି ମୁଖ୍ୟ ସମସ୍ୟା ପ୍ରତି ସରକାରଙ୍କ ଧ୍ୟାନ ଆକର୍ଷଣ କରିଥିଲେ । (୧) ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ଓଡ଼ିଶା ପାଇଁ ଏକ ରାଜନୈତିକ ପ୍ରଦେଶ ଗଠନ (୨) ସ୍ଥାୟୀ ବନ୍ୟା ନିରୋଧ ବ୍ୟବସ୍ଥା (୩) ଲବଣ ଆମଦାନୀ ଉପରୁ କଟକଣା ଓ ଶୁଳ୍କ ଲୋପ (୪) ସତ୍ୟବାଦୀ ବନବିଦ୍ୟାଳୟ ଢାଞ୍ଚାରେ ସାରା ଓଡ଼ିଶାରେ ଶିକ୍ଷାର ପ୍ରସାର ।

ଭାରତ ବର୍ଷର ଜଣେ ଆଗଧାଡ଼ିର ସ୍ୱାଧୀନତା ସଂଗ୍ରାମୀ ଭାବେ ଗୋପବଂଧୁ ସୁପରିଚିତ । ଅସହଯୋଗର ବାର୍ତ୍ତା ଓଡ଼ିଶାର ଘରେ ଘରେ ପହଞ୍ଚେଇବା ପାଇଁ ସେ ପ୍ରାଣପାତ ଉଦ୍ୟମ କରିଥିଲେ । ଲେଖକଙ୍କ ଭାଷାରେ- "ଗାନ୍ଧି, ତୀଳକ, ଲଜପତ, ଅରବିନ୍ଦ ପ୍ରମୁଖ ଯେଭଳି ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ ଗୋପବଂଧୁ ସେହିପରି ସାଧନାର ଆଲୋକ-ବର୍ତ୍ତିକା ଓଡ଼ିଶାରେ ଜାଳିଥିଲେ । ଓଡ଼ିଶାରୁ ଭାରତ ଆଡ଼କୁ ଓଡ଼ିଆ ପରିବାରରୁ ସମଗ୍ର ହିନ୍ଦୁ ଜାତି ଆଡ଼କୁ ତାଙ୍କ ସାଧନାର ପ୍ରାଣବାନ୍ ବନ୍ୟା ପ୍ରବାହିତ ହୋଇଥିଲା । ବିଶ୍ୱ ବ୍ୟାପକତାରେ ଏବଂ ଏକ ମହାନ ମାନବ ସମାଜର ସେବାରେ ସେ ନିଜକୁ ଉତ୍ସର୍ଗ କରିଥିଲେ ।" (ତତ୍ରୈବ, ପୃ-୧୧୯)

ନିଖିଳ ଭାରତ କଂଗ୍ରେସ କମିଟି ଓ ମହାତ୍ମାଗାନ୍ଧିଙ୍କ ଉପରେ ଗୋପବଂଧୁଙ୍କ ରହିଥିଲା ଅଟଳ ବିଶ୍ୱାସ । ସେ ଓଡ଼ିଶାରେ ଏହି ସଂଗଠନକୁ ସୁଦୃଢ଼ କରିବା ପାଇଁ ୩୦.୮.୧୯୨୦ରେ ପୁରୀରେ ପ୍ରଥମ ଜିଲ୍ଲା କମିଟି ଗଠନ କରିଥିଲେ ଓ ପ୍ରଥମ ସଭାପତି ରୂପେ ମନୋନୀତ ହୋଇଥିଲେ । ୧୯୨୦ ମସିହା ନିଖିଳ କଂଗ୍ରେସର ବିଶେଷ ଅଧିବେଶନରେ ମହାତ୍ମାଗାନ୍ଧିଙ୍କ ବ୍ୟକ୍ତିତ୍ୱର ଦୃଢ଼ତା ଏବଂ ମଧୁରତା ତାଙ୍କୁ ବିଶେଷ ପ୍ରଭାବିତ କଲା । ସେ ମହାତ୍ମାଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଝାସ ଦେଲେ । ସରକାରଙ୍କୁ ଅସହଯୋଗ ଓ ବିଦେଶୀ ଜିନିଷ ବର୍ଜନ ଆନ୍ଦୋଳନର ମୂଳମନ୍ତ୍ର ଥିଲା । ଅସହଯୋଗର ବର୍ଷକ ଭିତରେ ଦେଶ ସ୍ୱାଧୀନ ହୋଇଯିବ ବୋଲି ଗାନ୍ଧିଙ୍କ ଘୋଷଣା ଗୋପବଂଧୁଙ୍କ ସମେତ ସଂଗ୍ରାମୀମାନଙ୍କ ମନରେ ବିପୁଳ ଉନ୍ମାଦନା ଖେଳାଇଦେଲା ।

ଗୋପବଂଧୁ ଅସହଯୋଗ ଆନ୍ଦୋଳନ ପାଇଁ ନିଜକୁ ସଂପୂର୍ଣ୍ଣ ରୂପେ ପ୍ରସ୍ତୁତ କରିନେଲେ । ୧୯୨୦ ମସିହା ଅକ୍ଟୋବର ମାସରେ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାରୁ ଇସ୍ତଫା ଦେଲେ, ସତ୍ୟବାଦୀ ବନବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟ ଘୋଷଣା କଲେ ଏବଂ ଚକ୍ରଧରପୁରରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ଦେଶ ମିଶ୍ରଣ ପରିବର୍ତ୍ତେ ଭାରତର ସ୍ୱାଧୀନତା ପ୍ରାପ୍ତିକୁ ସମ୍ମିଳନୀର ପ୍ରଥମ ଆଭିମୁଖ୍ୟ ଭାବେ ଗୃହୀତ କରାଇନେଲେ । ଜାତୀୟ କଂଗ୍ରେସ ପ୍ରତି ଅନାସ୍ଥା ମଧୁବାବୁଙ୍କୁ ଅସହଯୋଗ ଆନ୍ଦୋଳନରୁ ଦୂରେଇ ରଖିଲା । ଫଳରେ ଗୋପବଂଧୁ ହିଁ ଓଡ଼ିଶାର ରାଜନୈତିକ ନେତା ଭାବରେ ଅଧିକ ସମ୍ମାନିତ ହେଲେ । ଏବଂ ଅସହଯୋଗ କାର୍ଯ୍ୟକ୍ରମକୁ ଓଡ଼ିଶାରେ ତ୍ୱରାନ୍ୱିତ କଲେ ।

ଓଡ଼ିଶାରେ ଜାତୀୟ କଂଗ୍ରେସର ଭାଗୀରଥ ଥିଲେ ଗୋପବଂଧୁ । ତାଙ୍କର ଏକନିଷ୍ଠ ଓ ନିରଳସ ଉଦ୍ୟମରେ ଓଡ଼ିଶାରେ କଂଗ୍ରେସ ସୁଦୃଢ଼ ଓ ସମର୍ଥ ହେବାକୁ ଲାଗିଲା । ଜୀବନୀକାରଙ୍କ ଭାଷାରେ- "ତାଙ୍କର ନିଷ୍ଠା ଓ ଦାୟିତ୍ୱ ଓଡ଼ିଶା କଂଗ୍ରେସର ଦ୍ୱିତୀୟ ବ୍ୟକ୍ତିଠାରେ ପ୍ରକାଶ ପାଇନାହିଁ ।" ୧୯୨୨ ମସିହାରେ ସର୍ବସମ୍ମତି କ୍ରମେ ସେ ଉତ୍କଳ ପ୍ରଦେଶ କମିଟିର ସଭାପତି ହୋଇଥିଲେ । ମହାତ୍ମାଙ୍କ ଓଡ଼ିଶା ଆଗମନ ତାଙ୍କୁ ରାଜନୈତିକ ସଂଗ୍ରାମରେ ଅଧିକ ଅଗ୍ରସର କରାଇଥିଲା । ସାରା ଓଡ଼ିଶାରେ ଗାନ୍ଧିଦିବସ ପାଳନ, କନିକା ଅତ୍ୟାଚାରର ଅଶ୍ରୁଳ କାହାଣୀ ସମାଜରେ ଧାରାବାହିକ ପ୍ରକାଶନ । କଂଗ୍ରେସ ପାଇଁ ପାଣ୍ଠି ସଂଗ୍ରହ, ହରିଜନ ଆନ୍ଦୋଳନର ସଫଳ ରୂପାୟଣ, ସୂତାକଟା, ଖଦଡ଼ ପରିଧାନ ଓ ସାଂପ୍ରଦାୟିକ ସଦ୍‌ଭାବନାର ପ୍ରଚାର ଆଦି ବିପୁଳ ଓ ବ୍ୟାପକ କାର୍ଯ୍ୟକ୍ରମ ସରକାର ଓ ସରକାରଙ୍କ ସପକ୍ଷବାଦୀଙ୍କ ମୁଣ୍ଡବ୍ୟଥାର କାରଣ ହେଲା । କନିକା ରାଜା ଗୋପବଂଧୁଙ୍କ ନାମରେ ମାନହାନୀ ମକଦ୍ଦମା ରୁଜୁ କଲେ । ୧୯୨୨ ମସିହା ମେ ମାସ ୩୧ ତାରିଖ ସକାଳେ ତାଙ୍କୁ ଗିରଫ୍ କରାଗଲା । ବନ୍ଦୀ ସମୟର ପ୍ରସନ୍ନ ବଦନ ଓ ନିରୁଦ୍‌ବେଗ ଚେହେରା ବର୍ଣ୍ଣନା କରି ଲେଖକ ତାଙ୍କ ଉଜ୍ଜ୍ୱଳ ଜାତିପ୍ରୀତିର ପରିଚୟ ଦେଇଛନ୍ତି ।

ଗୋପବଂଧୁଙ୍କ ଉପରେ ରାଜଦ୍ରୋହ ଅଭିଯୋଗର ବିଚାର ହେଲା ଏବଂ ତାଙ୍କୁ ଦୁଇବର୍ଷ କାରାଦଣ୍ଡ ମିଳିଲା । କଟକରୁ ତାଙ୍କୁ ହଜାରୀବାଗ୍ ଜେଲ୍‌କୁ ନିଆଗଲା । ଜନ୍ମଭୂମିରୁ ବିଦାୟ ତାଙ୍କୁ ମ୍ରିୟମାଣ କରୁଥିଲା । ସେଇ ଦୁଃଖ ସ୍ମୃତିରେ ସେ ଲେଖିଥିଲେ 'ବନ୍ଦୀର ଆତ୍ମକଥା' । ଏହି ଖଣ୍ଡକାବ୍ୟର ସଂକ୍ଷିପ୍ତ ଅଥଚ୍ ସାରଗର୍ଭକ ବିଶ୍ଳେଷଣ ଲେଖକଙ୍କ ଭାଷାରେ- "ଏ କବିତାଗୁଡ଼ିକ ଭିତରୁ ସମାଲୋଚକ ଯେତେ ପ୍ରାଣଉଚ୍ଛୁଳା ଭାବ ଖୋଜିଛି, ପାଇଛି, ଯେତେ ହୃଦୟବତ୍ତା ଲୋଡ଼ିଛି ପାଇଛି ।

୫.୩.୧୯୨୪ ତାରିଖରେ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ମଧୁବାବୁ ଗୋଦାବରୀଶ ଓ ଜଗବଂଧୁ ସିଂହ ଓଡ଼ିଶାର ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଦାବୀ କରିଥିଲେ । ୨୬.୬.୧୯୨୪ରେ ଗୋପବଂଧୁ ହଜାରୀବାଗ୍ ଜେଲ୍‌ରୁ ଖଲାସ ହେଲେ । ଆଚାର୍ଯ୍ୟ ହରିହର ଓ ଅନନ୍ତ ମିଶ୍ର ତାଙ୍କୁ ପାଛୋଟି ଆଣିଲେ । ପ୍ରତି ଷ୍ଟେସନରେ ଲୋକେ ତାଙ୍କୁ ଫୁଲମାଳା ଦେଇ ପାଦସ୍ପର୍ଶ କରୁଥାନ୍ତି । ମୁକ୍ତ ଗୋପବଂଧୁଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ବିରାଟ ଜନସଭାର ଆୟୋଜନ ହୋଇଥିଲା । ସଭାପତି ପ୍ରଫୁଲ୍ଲ ରାୟ କହିଥିଲେ - "ଆପଣଙ୍କ ଉତ୍କଳ ଦେଶ ଉତ୍କଳମଣିଙ୍କ ପାଇଁ ଧନ୍ୟ ହୋଇଛି ।" (ହେ ସାଥି ! ହେ ସାରଥି ! - ପୃ-୨୪୯) ତାଙ୍କ ଉପାଧି ପରିପ୍ରେକ୍ଷୀରେ ପ୍ରତ୍ୟକ୍ଷଦର୍ଶୀ ଦରଦୀ ମଣିଷଭାବେ ଜୀବନୀକାର ଲେଖିଛନ୍ତି- "ତାଙ୍କ ପ୍ରାଣରେ ଏ ଉପାଧି ଉଲ୍ଲାସ ଆଣିନଥିଲା, କାରଣ ତାଙ୍କୁ ହାତଠାରି ଏ ଜାତିର ଅଗଣିତ, ଅନାମିତ ମଣିଷ ଡାକୁଥିଲେ । ନାମହୀନ, ଗୋତ୍ରହୀନ, କାଙ୍ଗାଳମାନେ ତାଙ୍କୁ ଲୋଡୁଥିଲେ । ସେ କାକୁସ୍ଥ ପାଖରେ ଏଇ ନୂତନ ପଦବୀର ପତାକା ତାଙ୍କ ଆଖିକୁ କେତେ ମଳିନ ଦିଶୁଥିଲା ସତେ ।" ଉକ୍ତିଟିରେ ଗୋପବଂଧୁଙ୍କ ପରି ଉତ୍ସର୍ଗୀକୃତ ସେବକ ପାଇଁ ଉପାଧିର ମୂଲ୍ୟହୀନତା ଦର୍ଶାଯାଇଛି । ଏ ଦେଶକୁ ଗୋପବଂଧୁ ସାରାଜୀବନ ଦେଇ ଚାଲିଥିଲେ, କିନ୍ତୁ କିଛି ପାଇବାର ଆଶା ରଖି ନଥିଲେ । ୧୯୨୫ ମସିହାରେ ବୋଲଗଡ଼ରେ ଅନୁଷ୍ଠିତ ହୋଇଥିବା ଉତ୍କଳ କଂଗ୍ରେସ ସମ୍ମିଳନୀରେ ତାଙ୍କୁ ସଭାପତି ଦାୟିତ୍ୱରୁ ମୁକ୍ତି ଦିଆଯାଇଥିଲା । ତାଙ୍କ ଉପରେ ବଢ଼ି କଉଡ଼ି ଖାଇ ଯାଉଛନ୍ତି ବୋଲି ଅଭିଯୋଗ ଆରୋପ ହୋଇଥିଲା । ସମାଜ ନାମରେ ମାନହାନୀ ମକଦ୍ଦମା ହେଲା । କିଛି ହତଭାଗା ସିନା ଜୀବଦ୍ଦଶାରେ ଏହି ମହାମାନବକୁ ବୁଝିଲେ ନାହିଁ, କିନ୍ତୁ ବୁଝିଥିଲେ ଭାରତର ସ୍ୱାଧୀନ କଂଗ୍ରେସ ପାର୍ଟିର ନେତା ଲାଲାଜୀ । ସେ ଗୋପବଂଧୁଙ୍କ ଦୀପ୍ତ ଜାତୀୟବୋଧ ଓ ବିପୁଳ କର୍ମ ପ୍ରବାହରେ ଉତ୍ସାହିତ ହୋଇ ଓଡ଼ିଶାରେ ହିନ୍ଦୁ ଶାଖା ଖୋଲିବା ପାଇଁ ଦାୟିତ୍ୱ ଅର୍ପଣ କରିଥିଲେ । କମ୍ ଦିନ ପାଇଁ ହେଲେ ମଧ୍ୟ ସେ ଲୋକସେବକ ମଣ୍ଡଳର ଉପସଭାପତି ଦାୟିତ୍ୱ ସଠିକ୍ ଭାବେ ନିର୍ବାହ କରିଥିଲେ ।

ଜୀବନର ଶେଷ ପର୍ଯ୍ୟନ୍ତ ଦେଶ ସେବାରେ ସେ ନିଜକୁ ହଜାଇ ଦେଇଥିଲେ । ନିଜର ଅସୁସ୍ଥତା ସତ୍ତ୍ୱେ ୨.୬.୧୯୨୮ରେ ଶ୍ରମିକ ମାନଙ୍କର ସମସ୍ୟା ବୁଝିବା ପାଇଁ ସେ କଲିକତା ଯାତ୍ରା କରିଥିଲେ । ଏବଂ ସମସ୍ୟାକୁ ପ୍ରତ୍ୟକ୍ଷ ଭାବେ ଉପଲବ୍ଧିରେ ଆଣିବା ଉଦ୍ଦେଶ୍ୟରେ ଅସ୍ୱାସ୍ଥ୍ୟକର ପରିବେଶରେ ସେମାନଙ୍କ ସହିତ ରହିଥିଲେ । ତିନିଦିନର ରହଣି ଭିତରେ ବିଶେଷ ଅସୁସ୍ଥ ହୋଇ (ଜ୍ୱରରେ ଆକ୍ରାନ୍ତ ହୋଇ) ସତ୍ୟବାଦୀ ଫେରି ଆସିଥିଲେ । ରୋଗଶଯ୍ୟାରେ ବି ସେ ଦେଶ କାମରୁ ବିରତ ହୋଇନଥିଲେ । ୧୦.୬.୧୯୨୮ରେ ସମାଜର ଶେଷ ସଂପାଦକୀୟ ଲେଖିଥିଲେ ।

ଈଶ୍ୱର ସେବା, ଦେଶ ସେବା ଏବଂ ମାନବ ସେବାକୁ ସେ ଗୋଟିଏ ସୂତ୍ରରେ ଗ୍ରଥିତ କରିପାରିଥିଲେ । ଦେଶ ପାଇଁ ସେ କଇଁ କଇଁ ହୋଇ କାନ୍ଦୁଥିଲେ । ସଭାମଣ୍ଡପରେ, ଜେଲ୍ ଗଲାବେଳେ ଏପରିକି ରୋଗଶଯ୍ୟାରେ ମଧ୍ୟ ଈଶ୍ୱର ଥିଲେ ତାଙ୍କ ଚେତନାର କେନ୍ଦ୍ର । ଏପରି ଜଣେ ଦେଶପାଗଳ ମଣିଷର ଚିତ୍ର ଲେଖକଙ୍କ ଭାଷାରେ- "ନିଜ ବ୍ୟକ୍ତିଗତ ଜୀବନର ସବୁ ସୁଖ ସ୍ୱଚ୍ଛନ୍ଦ୍ୟକୁ ଯେ ଦେଶପାଇଁ ଓଜାଡ଼ି ଦେଇଥିଲେ, ନିଜକୁ ଜନସେବାରେ ଆହୂତି ଦେଇଥିଲେ- ତା'ର ନିଜର ବୋଲି ଆଉ କ'ଣ ରହିଲା ? ଦେଶବାସୀଙ୍କ ପ୍ରାଣରେ ଦୁଃଖ ଉପୁଜିଲେ ତା' ଛାତିରେ କୁନ୍ତର ଆଘାତ ଲାଗୁଥିଲା । ସେ ଅନାବିଳ ହୃଦୟର ଅସରନ୍ତି କାହାଣୀ ଆଜି ତେଣୁ ଏ ଦେଶର ଇତିହାସ ରୂପେ ଠିଆ ହୋଇଛି ।" (ତତ୍ରୈବ, ପୃ-୮୩) ବାସ୍ତବରେ ସେ ଏ ଜାତିର ଗୌରବୋଜ୍ଜ୍ୱଳ ଇତିହାସ ହୋଇଯାଇଛନ୍ତି । ତାଙ୍କ ମର ଶରୀର ଆମ ଆଗରୁ (୧୭.୬.୧୯୨୮) ତିରୋହିତ ହୋଇ ଯାଇଛି, ସ୍ମୃତି କିନ୍ତୁ ଦେଶ ଓ ଜାତିର ଚେତନାରେ ଅମର ହୋଇ ରହିଛି ।

ଜୀବନୀର ସଫଳତା ଅନେକାଂଶରେ ଭାଷା ଓ ଶୈଳୀ ନିର୍ଭର । କଳାଶକ୍ତି ବଳରେ ଜଣେ ଅସାମାଜିକ ବ୍ୟକ୍ତିର ଜୀବନୀ ମଧ୍ୟ ଆକର୍ଷଣୀୟ ହୋଇପାରେ । କଳାଶକ୍ତିର ଅଭାବରେ ଜଣେ ମହତ୍ ପୁରୁଷଙ୍କ ଜୀବନୀ ମଧ୍ୟ ସୁଖପ୍ରଦ ହୋଇନଥାଏ । 'ହେ ସାଥି ! ହେ ସାରଥି !' ଗୋପବଂଧୁ ଜୀବନୀରେ ମଣିକାଞ୍ଚନର ସଂଯୋଗ ଘଟିଛି । ଏକ ପକ୍ଷରେ ଗୋପବଂଧୁ ଏ ମାଟିର ମହାତ୍ମା, ଅପର ପକ୍ଷରେ ଜୀବନୀକାର ପ୍ରଫେସର ଶତପଥୀ ଜଣେ ସାର୍ଥକ ସାହିତ୍ୟ ସାଧକ । ଜଣେ କବି ତଥା ସମାଲୋଚକଙ୍କ ଦ୍ୱାରା ଲିଖିତ ଏକ ଦରଦୀ ମଣିଷର ଜୀବନୀ କେବଳ ସାଲ-ତାରିଖ ଦିଆ ହୋଇଥିବା ବିବରଣାତ୍ମକ ଇତିହାସ ନୁହେଁ; ବରଂ ଏକ କଳାର କୋଣାର୍କ ।

ବିଷୟବସ୍ତୁ ଦୃଷ୍ଟିରୁ ହୁଏ ତ ଜୀବନୀଟି ଖଣ୍ଡିତ ବୋଲି କୁହାଯାଇପାରେ । କିନ୍ତୁ ଏହା ଅପୂର୍ଣ୍ଣତା ସତ୍ତ୍ୱେ ଶୈଳୀଗତ ଅନନ୍ୟତା ଯୋଗୁଁ ହୋଇପାରିଛି ସରସ ଓ ସୁଖପାଠ୍ୟ । କାବ୍ୟିକ ଉଚ୍ଛାସରେ ଲିଖିତ ଜୀବନୀଟି ହୃଦୟର ଉଲ୍ଲାସରେ ପୂର୍ଣ୍ଣତା ଲାଭ କରେ । କିଛି ଲେଖିଦେଇ ଅନ୍ୟ କିଛି ଅନୁଭବରେ ଆଣିବାର ବିସ୍ତାରିତ ହୃଦୟଭୂମିଟିଏ ସୃଷ୍ଟିକରେ ପାଠକ ପ୍ରାଣରେ ।

ଯଥାର୍ଥ ନାମକରଣ, ବିଷୟଚୟନ, ଆକର୍ଷଣୀୟ ପ୍ରବଂଧ ଶୈଳୀରେ ଶୀର୍ଷକ ପ୍ରଦାନ, ସମସାମୟିକ ସାମାଜିକ, ସାଂସ୍କୃତିକ, ରାଜନୀତିକ ପରିବେଶର ଉପସ୍ଥାପନ, ସୁନ୍ଦର ପରିବେଷଣର ପ୍ରୟୋଗ, ଉଦ୍ଧୃତିର ସଂଯୋଜନା ଓ ତୁଳନାତ୍ମକ ଉପସ୍ଥାପନା 'ହେ ସାଥି ! ହେ ସାରଥି !'କୁ ଦେଇଛି ଏକ ସାର୍ଥକ ଜୀବନୀର ପରିଚୟ । ଓଡ଼ିଆ ଜୀବନୀ ସାହିତ୍ୟର ଧାରାରେ ଏହା ଏକ କାଳଜୟୀ କୀର୍ତ୍ତି ।

ବାସ୍ତବରେ ଗୋପବଂଧୁ ଥିଲେ ଓଡ଼ିଆ ଜାତି ନନ୍ଦିଘୋଷର ଯଥାର୍ଥ ସାରଥି ଏବଂ ଅଶିକ୍ଷା, ଦାରିଦ୍ର୍ୟ; ବନ୍ୟା ଦୁର୍ଭିକ୍ଷ ପ୍ରପୀଡ଼ିତ, ବିଚ୍ଛିନ୍ନ ପରାଧୀନ ଜାତିର ଚିର ସାଥି । ଏହି ଦୃଷ୍ଟିରୁ ଜୀବନୀକାର ସାର୍ଥକ ଶୀର୍ଷକ ରଖନ୍ତି । 'ହେ ସାଥି ! ହେ ସାରଥି !' ।

ଗୋପବଂଧୁଙ୍କ ସମଗ୍ର ବ୍ୟକ୍ତିତ୍ୱର ପ୍ରକାଶ ଏବଂ ଘଟଣାଗୁଡ଼ିକର ଚୟନ ପୂର୍ବକ ସେଗୁଡ଼ିକୁ ଆକର୍ଷଣୀୟ ଭାବରେ ଉପସ୍ଥାପନ କରିବାରେ ଏ ଜୀବନୀ ଗ୍ରନ୍ଥର ତୁଳନା ନାହିଁ । କେତେକ ଶୀର୍ଷକ ବିଶ୍ଳେଷଣ ଦରକାର କରେ । କେତେକ ସ୍ଥିତିସ୍ଥାପକ, କେତେକ ପ୍ରତୀକାତ୍ମକ, କେତେକ ଆନୁପ୍ରାସିକ ଓ ଆଉ କେତେକ ସଂପୂର୍ଣ୍ଣ କାବ୍ୟିକ । ବିଷୟଗତ ନାମକରଣରେ ମଧ୍ୟ ଲେଖକ ଖୁବ୍ ସତର୍କ ଦୃଷ୍ଟି ନିକ୍ଷେପ କରିଛନ୍ତି । ଜାତୀୟ ଜୀବନର ପରିଚୟ ଦେବା ପାଇଁ 'ଉତ୍କଳ ସମ୍ମିଳନୀ ଓ ଗୋପବଂଧୁ', 'ସତ୍ୟବାଦୀ – ଏକ ଜାତୀୟ ଦର୍ଶନ', 'ଉତ୍କଳ ସମ୍ମିଳନୀ ଓ ଗୋପବଂଧୁଙ୍କ ଦାବୀ', 'ଅସହଯୋଗ ଆହ୍ୱାନ', 'ସ୍ୱୟଂ ସେବକ ସଂଗ୍ରହ', 'ବିଦେଶୀ ବସ୍ତ୍ରଦାହ' ଆଦି ଶୀର୍ଷକ ସମୂହ ବେଶ୍ ସମର୍ଥ । ଗୋପବଂଧୁଙ୍କ ଦରଦୀ ହୃଦୟର ପରିଚୟ ପାଇଁ 'ଅନାବିଳ ହୃଦୟର କାହାଣୀ' ଓ 'ଏଇ ଭୂତ କାନ୍ଦୁଥିଲା' ଆଦି ଭାବାତ୍ମକ ନାମକରଣ ଉଦ୍ଦିଷ୍ଟ । ସେହିପରି ପ୍ରତୀକାତ୍ମକ ନାମକରଣ ଭିତରେ 'ଧ୍ରୁବ ନକ୍ଷତ୍ର କକ୍ଷରେ' ଓ 'କଳା, ଧଳା ଓ ପୀତ' କାବ୍ୟିକ ତଥା ଆନୁପ୍ରାସିକ ନାମକରଣ 'ବେଗ୍ ଚିରା ନା ଚିରା ବେଗ୍', 'ହାଲିଆ ଜାତି କ'ଣ ହାଲୁଆ ଖାଏ ?', 'ବନ୍ୟା, ବନ୍ୟା ପ୍ରଳୟର କନ୍ୟା', 'ଭାଇ ଭାଇ ଏକାଠାଇ', 'ଏ ଜାତି ଏବେ ମଧ୍ୟ ବଞ୍ଚିଛି' ଆଦି ବେଶ୍ ମନଛୁଆଁ ହୋଇଛି । ଏଗୁଡ଼ିକ ଭିନ୍ନ କିଛି ପର୍ଯ୍ୟାୟର ନାମକରଣ ପ୍ରସିଦ୍ଧ ସଂସ୍କୃତ ଅବା ଓଡ଼ିଆ ଆପ୍ତବାକ୍ୟ ଦ୍ୱାରା କରାଯାଇ ବିଷୟବସ୍ତୁକୁ ରୋଚକ ଢଙ୍ଗରେ ପରିବେଷଣ କରାଯାଇଛି । ଯେପରିକି ଦୁର୍ଭିକ୍ଷ ସମୟରେ ଜଣେ ପୁରୋହିତ ସାହାଯ୍ୟ କେନ୍ଦ୍ରରୁ ପାଇଥିବା ଚାଉଳକୁ ସାରା ପରିବାରକୁ ଅଣ୍ଟିବ ନାହିଁ ଭାବି ଯଜମାନ ଘରେ ରାନ୍ଧି ଖାଇବା ଏବଂ ନିଜ ଘରେ କଖାରୁ ପତ୍ର ଓ ଚକୁଣ୍ଡା ଖାଇ ପତ୍ନୀର ମୃତ୍ୟୁ ଘଟଣାକୁ ଦର୍ଶାଇବା ଉଦ୍ଦେଶ୍ୟରେ ଅଧ୍ୟାୟଟିର ନାମକରଣ କରାଯାଇଛି- 'ବୁଭୁକ୍ଷିତଃ କିଂ ନ କରୋତି ପାପଂ' । ଏହି ପର୍ଯ୍ୟାୟରେ 'କୌପୀନବନ୍ତଃ ଖଲୁ ଭାଗବ୍ୟନ୍ତଃ', 'ପରୋପକାରାୟ ସ୍ୱର୍ଗାୟ', 'ମଲାଘୋଡ଼ାର ଟାଙ୍କ' ଆଦିକୁ ଗ୍ରହଣ କରାଯାଇପାରେ ।

'ହେ ସାଥି ! ହେ ସାରଥି'ର ଭାଷା ଅନେକାଂଶରେ ସମନ୍ୱୟଧର୍ମୀ । ଏଥିରେ ଭାଷା ପ୍ରୟୋଗର ସୀମାକୁ ଲେଖକ ଅତିକ୍ରମ କରିଯାଇଥିବା ବେଶ୍ ଲକ୍ଷଣୀୟ । କାବ୍ୟଧର୍ମୀ, ପ୍ରସଂଗଧର୍ମୀ, ନାଟ୍ୟଧର୍ମୀ ଏବଂ ସମାଲୋଚନାଧର୍ମୀ ଭାଷାର ଏକତ୍ର ପ୍ରୟୋଗ ହୋଇଛି । ଗୋପବଂଧୁଙ୍କୁ ନେଇ ଲେଖକ ଆବେଗାୟିତ ହୋଇପଡ଼ିବାବେଳେ ତାଙ୍କ ଭିତରୁ ସ୍ୱତଃ ଝରିଆସେ କାବ୍ୟିକ ଭାଷା, ଘଟଣାବହୁଳ ଜୀବନକୁ ବର୍ଣ୍ଣନା କଲାବେଳେ ଲେଖିଯାଆନ୍ତି ସରଳ ଓ ପ୍ରାଞ୍ଜଳ ଭାଷାରେ ପୁଣି ପରିବେଶ, ପରିସ୍ଥିତି ଓ ପରିଣତିର ବ୍ୟାଖ୍ୟାବେଳେ ଆପେ ଆସିଯାଏ ସମାଲୋଚନା ଶୈଳୀ । ଭାବୁକ ଓ ଦାର୍ଶନିକ ପରି ମଧ ବେଳେବେଳେ ପ୍ରଶ୍ନ ପଚାରିବା ଛଳରେ ବିଷୟ ଉପସ୍ଥାପନ ପୂର୍ବକ କିଛି କିଛି ନିଜସ୍ୱ ମନ୍ତବ୍ୟ ରଖନ୍ତି ।

ଲେଖକଙ୍କର କେତେକ ସୁନ୍ଦର ବିଶେଷଣ ପ୍ରୟୋଗର ଦୃଷ୍ଟାନ୍ତ ହେଲା - ସାଧନାର ପ୍ରାଣବାନ ବନ୍ୟା, କାନ୍ଦୁରା ଜାତି ପାଗଳ ମଣିଷ, ଆଶାର ଦୁରନ୍ତ ଉତ୍ସ ଅସମାପ୍ତ ଆଶାର ମୁକୁଳ, ପୌରୁଷର ଆତ୍ମଶ୍ଳାଘାହୀନ ପ୍ରତ୍ୟୟ, ରକ୍ତ ଶୋଷକର ଉତ୍ପୀଡ଼ନ । ଗୋପବଂଧୁଙ୍କ ପରି ଦେଶପ୍ରେମୀ ପାଇଁ 'କାନ୍ଦୁରା ଜାତି ପାଗଳ ମଣିଷ'ର ବିଶେଷଣ ଓ ଅତ୍ୟାଚାରୀ କନିକା ରାଜାଙ୍କ ପ୍ରଜା ଦମନ ପରିପ୍ରେକ୍ଷୀରେ 'ରକ୍ତ ଶୋଷକର ଉତ୍ପୀଡ଼ନ' ଭାବ ଓ ବିଷୟର ଗଭୀରତାକୁ ହୃଦ୍‌ବୋଧ କରିବାରେ ବେଶ୍ ସହାୟକ ହୋଇନିକି ?

ଗୋପବଂଧୁଙ୍କ ଜୀବନକୁ ହୃଦ୍‌ବୋଧରୁ ରୂପାୟିତ କଲାବେଳେ ତାହା କାବ୍ୟିକ ଓ ସମୀକ୍ଷାତ୍ମକ ଭାଷାର ସ୍ୱରୂପ ଏହିପରି -

୧. ଗୋପବଂଧୁ ଥିଲେ ପ୍ରଦୀପ୍ତ ସୂର୍ଯ୍ୟାଲୋକ, ଦିବସ ପରି ସ୍ୱଚ୍ଛ ଓ ସୁନ୍ଦର"- (ପୃ-୧୪୦)
୨. ସମଗ୍ର ହୃଦୟ ଯେପରି ଭାଗବତ ପ୍ରୀତିରେ ଉଜ୍ଜ୍ୱଳ ଓ ଭାଗବତମୟ, (ପୃ-୮୭)
୩. ଚକ୍ଷୁ ଦୁଇଟି ଦୀପ୍ତିମନ୍ତ ଅଥଚ ଅଶ୍ରୁସିକ୍ତ ହୋଇଉଠୁଥାଏ ।
୪. ଗୋପବଂଧୁ ଆଖିରେ ଲୁହ ଆଉ ଛାତିରେ କାତ ଅକାତ ବେଦନା ନେଇ ମଣ୍ଡପରୁ ଓହ୍ଲାଇଲେ, ତାଙ୍କ ବ୍ୟକ୍ତିଗତ ସତ୍ତା ଭିତରୁ ସର୍ବତ୍ର ଜାତିପ୍ରାଣର ଚେତନା ଫିଟି ପଡୁଥିଲା ।
୫. ସମସାମୟିକ କୌଣସି ରାଜନୈତିକ ନେତା ଓ ସମାଜକର୍ମୀ ସମଗ୍ର ମନ ଓ ହୃଦୟକୁ ଏପରି ବିଭୁପ୍ରୀତିରେ ଅନୁପ୍ରାଣିତ କରିଥିବାର ଦୃଷ୍ଟାନ୍ତ ନାହିଁ ।
୬. ରାମାୟଣ ଶୁଣୁ ଶୁଣୁ ଲାବଣ୍ୟବତୀ ଚନ୍ଦ୍ରଭାନୁକୁ ଦେଖିବା ପରି ହସଉ ହସଉ ଦେଶର ଅଗଣିତ ଜନତାର ସେବା ଆଡ଼କୁ ସେ ଛାତ୍ରମାନଙ୍କୁ ଆସକ୍ତ କରିପକାନ୍ତି । ଦେଶ ହିଁ ତାଙ୍କ ବକ୍ତବ୍ୟର ଶେଷ ସୀମାରେଖା ହୋଇଯାଏ ।

ଅନେକ ସମୟରେ ଲେଖକ ଯେକୌଣସି ଘଟଣା ଅବା ବିଷୟର ବର୍ଣ୍ଣନା କରୁ କରୁ ଭାବପ୍ରବଣ, କଳ୍ପନାପ୍ରବଣ ଅଥବା ସମୀକ୍ଷକର ଭୂମିକା ନିଭାଇ ବସନ୍ତି । ଏମିତି କିଛି ଉଦାହରଣ ଏହିପରି-

(୧) ମାତୃହରା ଗୋପବଂଧୁଙ୍କୁ କମଳାନାନୀ ସ୍ନେହରେ ବଢ଼ାଇବା ପ୍ରସଙ୍ଗରେ- "ଗୋପବଂଧୁଙ୍କ ଲାଳନା ଦାୟିତ୍ୱ କମଳା ଦେବୀଙ୍କ ପ୍ରାଣର ଅବଦମିତ ମାତୃତ୍ୱ ଆପେଇ ଆବୋରି ନେଇଥିଲା । ମା'ର ହୃଦୟରେ ମାତୃହରା ସନ୍ତାନ ପାଇଁ ସୃଷ୍ଟି ହୋଇଥିଲା ଅସରନ୍ତି ସ୍ନେହର ଅବାରିତ ଫଲ୍‌ଗୁ । ସେ କେଉଁ କପୋତୀ ଭ୍ରମରେ ନିଜ ସନ୍ତାନର ମୁଣ୍ଡଛେଚ଼ି ମାରି ସାରିବା ପରେ ଯେତେବେଳେ ବୁଝିପାରିଲା ଯେ ଋଉଳରୁ କୁଣ୍ଡା ବାଦ ଦେଇ କେବଳ ଋଉଳ ଆଣି ଶାବକ ଆସିଛି - ତେଣୁ ମାଣ ପୂରି ନାହିଁ, ସେ କାନ୍ଦି କାନ୍ଦି ଗଛ ଡାଳରେ କେତେ ମୁଣ୍ଡ ବାଡ଼େଇ ହୋଇଥିବ । ପ୍ରାଣର ସନ୍ତାନ ବିୟୋଗରେ ଆଖିରୁ ତା'ର ଧାର ଧାର ଲୋତକର ବନ୍ୟା ଛୁଟି ଗଣ୍ଡ ପ୍ଲାବନ କରିଦେଇଥିବ । × × × କେତେବେଳେ ହୁଏତ କମଳାନାନୀ ରାଗରେ, ବିରକ୍ତିରେ ଗୋପବନ୍ଧୁଙ୍କୁ ଆକଟ କରି ମାରିଥିବେ । ପୁଣି ମା'-ଛେଉଣ୍ଡ ପିଲାର ବ୍ୟାକୁଳ କ୍ରନ୍ଦନରେ ତାଙ୍କ ଆଖି ଓଦା ହୋଇ ଯାଇଥିବ ।" (ପୃ-୫)

(୨) ଗୋପବଂଧୁଙ୍କ କବିପ୍ରାଣ ଓ କବିତାର ବିଶ୍ଳେଷଣ ପୃଷ୍ଠଭୂମିରେ - "ଗୋପବଂଧୁଙ୍କ ଯୁବପ୍ରାଣକୁ ଯେଉଁ ଦୃଶ୍ୟ, କାହାଣୀ ବା ଘଟଣା କ୍ଷଣିକ ପାଇଁ ଦୋହଲେଇ ଦେଇଛି ତାଙ୍କ ଲେଖନୀ ସେସବୁର ଅଙ୍ଗୀକାର କରିଛି । ପ୍ରତିଦିନର ଛୋଟ ଛୋଟ ଜିନିଷ ଉପରେ ତାଙ୍କର ଏ ସବୁ କବିତା ସେଇ ସେଇ ବସ୍ତୁର ପ୍ରାଣବାଣୀକୁ ମୁଖରିତ କରିଛି । ଛୋଟ ଜିନିଷରେ ଏ କି ଅଦ୍ଭୁତ ଅନୁଭବ, ଏ କି ଗଭୀର ମନନଶୀଳତା - କାଙ୍କଡ଼ ଗଛ କେଉଁଠି ରଙ୍ଗା ଯୋଗେ ମରିଗଲା, ଗ୍ରୀଷ୍ମ ତାପରେ କେଉଁଠି ପ୍ରିୟ ପ୍ରତିବେଶିନୀ ମାତୃକଳ୍ପା ଭାର୍ଗବୀ ଶୁଷ୍କ, କେଉଁଠି ପୁଣି କାଠଯୋଡ଼ି, କେଉଁଠି ପୁଣି ଲୁଚି଼ ରହିଲେ ଏ ଜାତିର ଅତିପ୍ରିୟ ଜଗନ୍ନାଥ ଦାସ, ସାରଳା ଦାସ, ବଳରାମ ଦାସ, ଅନଙ୍ଗଭୀମ, ଚନ୍ଦ୍ରଶେଖର ବାଜପେୟୀ- ସମସ୍ତଙ୍କ ପାଇଁ ତାଙ୍କ ଚିନ୍ତାରେ ଦରଦ, କବିତାରେ ହେଲା ସେସବୁର ଉଚ୍ଛଳ ଆତ୍ମପ୍ରକାଶ । କେଉଁଠି ପଡ଼ି ରହିଛି ଅତୀତର ମଶାଣିଗଦାରେ ସ୍ମୃତିର ସମ୍ବଳ ଧରି ଅସହାୟ ବାରବାଟୀ । ପୁଣି କେଉଁଠି ତା ସନ୍ନିଧିରେ ଋଲିଚ଼ି ଐତିହାସିକ ପୂର୍ବ ବାଲିଯାତ୍ରା, କେଉଁଠି କଟକର ଶିଳାସେତୁ ଆଉ ତା'ର ନିର୍ମାତା ମର୍କତକେଶରୀ, କେଉଁଠି ଜୈନ ବିହାର ଖଣ୍ଡଗିରି, କେଉଁଠି ରେଳ ଉପରେ ଚିଲିକାର ଶୋଭାରାଶି ତାଙ୍କ କବିପ୍ରାଣକୁ ଆଲୋଡ଼ନ କରିଛି ତ କେଉଁଠି ରେଭେନ୍‌ସା କଲେଜରୁ ବିଦାୟ, ପ୍ରାଣରେ ପ୍ରିୟ ସ୍ମୃତିର ଦାରୁଣ ବ୍ୟଥା ଦେଇଛି । ଆହା, ସେ ପଦାବଳୀ ପରି ସ୍ପଷ୍ଟ ଓ ସରଳ ଗାଥା ଆଉ କେହି ଲେଖିନାହିଁ ।" (ପୃ-୨୭)

ପ୍ରଥମ ଉଦାହରଣରେ ଲୋକ କଥାର ଚିତ୍ରକଳ୍ପ ଓ ଦ୍ୱିତୀୟ ଉଦାହରଣରେ ଗୋପବଂଧୁଙ୍କ କବିତାର ସୃଜନାତ୍ମକ ସମୀକ୍ଷା ବେଶ୍ ମର୍ମଜ୍ଞ ନୁହେଁ କି ?

'ହେ ସାଥି ! ହେ ସାରଥି !'ରେ ବିଷୟର ଅପୂର୍ବ ସଂଯୋଜନା ଓ ତୁଳନାତ୍ମକ ଉପସ୍ଥାପନା ଲେଖକଙ୍କୁ ଏକ ଶିଳ୍ପ ନିପୁଣ ସ୍ଥପତିର ଗୌରବ ଦେଇଛି । ଓଡ଼ିଆ ଜୀବନୀ ସାହିତ୍ୟରେ ଏହିପରି ଉପସ୍ଥାପନା କ୍ୱଚିତ୍ ଦେଖିବାକୁ ମିଳେ । ଏହି ମର୍ମରେ କେତେକ ଉଦାହରଣ-

୧. ଗୋପବଂଧୁ ଗୈରିକ ବସନ ପିନ୍ଧି ବାବାଜି ହେଲେ ନାହିଁ କିନ୍ତୁ ସଂସାରୀ ହୋଇବି ଦେଶ ପାଇଁ ବୈରାଗୀର ଜୀବନ ବିତାଇଲେ ଏହି ବିଷୟ ସଂଯୋଜନା ଲେଖକଙ୍କ ଭାଷାରେ- "ସେ ସହଜ ଅର୍ଥରେ ବାବାଜି ନ ହେଲେ ମଧ୍ୟ ତାଙ୍କୁ ତାଙ୍କ ପରିବାରର କୌଣସି ଆକର୍ଷଣ ବାନ୍ଧି ରଖି ପାରିନଥିଲା । ଦେଶର ଦୁର୍ଦ୍ଦଶା, ଅସଂଖ୍ୟ ଲୋକଙ୍କ ଆର୍ତ୍ତନାଦ, ହା'ଅନ୍ନ ଚିତ୍କାର ଶୁଣି ସେ ପ୍ରକୃତରେ ବାହାରକୁ ବାଆଜି ହୋଇ ବାହାରି ପଡ଼ିଲେ । ତାଙ୍କ ମନରେ ଏକ ସଂସାର ତ୍ୟାଗୀ ବୈରାଗୀର ନାହିଁ ନାହିଁ ଭାବ; ଦେହରେ ସନ୍ନ୍ୟାସର ଅଗ୍ନିପରୀକ୍ଷା । ସହଜ ପ୍ରଲୋଭନ ପ୍ରତି ଆସକ୍ତିହୀନତା ଓ ତ୍ୟାଗଶୀଳତା ତାଙ୍କ ଜୀବନର ଇତିକଥା ହୋଇ ରହିଗଲା । ଆଖିର ଲୁହରେ ଭରି ରହିଲା ସମଗ୍ର ପାଇଁ ବ୍ୟାକୁଳତା ଅନୁଯୋଗ । ସୌମ୍ୟକାନ୍ତ ବପୁରେ ନିଖିଳ ପାଇଁ ପ୍ରାଣଭରା ଆବେଦନ ଆଉ ଘନକୃଷ୍ଣ ଶ୍ମଶ୍ରୁରେ କେତେ ଦୁଃଖୀ ରଙ୍କୀ ପାଇଁ ବିପୁଳ ଆଶ୍ୱାସନା, ତୃପ୍ତିର ସ୍ୱସ୍ତ୍ୟୟନ । ଦେଶପାଇଁ ସେ ବାବାଜି ହେଲେ, ସନ୍ନ୍ୟାସ ଗ୍ରହଣ କଲେ ।" (ପୃ-୧)

୨. ଯୀଶୁଙ୍କଠାରୁ ମଧ୍ୟ ଗୋପବଂଧୁଙ୍କ ଚରିତ୍ରକୁ ଆହୁରି ମହନୀୟ କରି ଦର୍ଶାଇବା ପାଇଁ ଲେଖକ ଲେଖିଛନ୍ତି- "ମହାମାନବର ଦେହ ମଧ୍ୟ ଆରାମ ଲୋଡ଼େ, ମହାମାନବର ପେଟରେ ମଧ୍ୟ କ୍ଷୁଧାଗ୍ନି ଦାଉ ଦାଉ ହୋଇ ଜଳେ । ଆଉ ତା'ର ମଧ୍ୟ ତୃଷା ଥାଏ ।" ଯୀଶୁ କହିଥିଲେ, "ମୁଁ କ୍ଷୁଧାର୍ତ୍ତ ଥିବାବେଳେ କ୍ଷୁଧା ପାଇଁ ଅନ୍ନ ମୁଠିଏ କେହି ଦେଇ ନାହିଁ, ମୁଁ ତୃଷାର୍ତ୍ତ ହେଲାବେଳେ ତୃଷା ନିବାରଣ ପାଇଁ ପାଣି ମୁନ୍ଦିଏ ପାଇନାହିଁ - ଖାଲି 'ଗୁରୁ' ବା 'ପ୍ରଭୁ' କହିକି ଭକ୍ତି ଦେଖାଉଅଛି ?" ଅବଶ୍ୟ ଏଇ ଅନ୍ତରରେ ଅଭିଶାପ ଓ ଅଶାନ୍ତିର ସ୍ପର୍ଶ ନାହିଁ ।

ବିଷୟକୁ ପାଠକର ଗଭୀର ଓ ବ୍ୟାପକ ଅବବୋଧରେ ଆଣିବା ପାଇଁ ଲେଖକ ଯଥାର୍ଥ ଉଦ୍ଧୃତିର ସଂଯୋଜନା କରିଛନ୍ତି । ଗୋପବଂଧୁଙ୍କ କବିତାର ବହୁ ଅଂଶ ସହିତ ଆଣ୍ଡୃଜ ସାହେବ, ମଧୁବାବୁ, ଗୋପୀନାଥ ମହାନ୍ତି ଓ ରବୀନ୍ଦ୍ରଙ୍କ ପରି ଲେଖକମାନଙ୍କ କବିତା ଅବା ବକ୍ତବ୍ୟକୁ ଉଦ୍ଧାର କରାଯାଇଛି ।

୧. ଗୋପବଂଧୁଙ୍କ ପାଇଁ ଆଣ୍ଡୃଜ ସାହେବଙ୍କ ଉକ୍ତି ଥିଲା - "ଗୋପବଂଧୁଙ୍କ ପରି ସରଳ ଓ ନିଷ୍କପଟ ଜନପ୍ରିୟ ବ୍ୟକ୍ତିତ୍ୱ ମୁଁ ଅନ୍ୟତ୍ର ଦେଖିନାଇଁ । ଓଡ଼ିଶାର ଗରିବ ଲୋକଙ୍କ ସେବାରେ ନିଜକୁ ଉତ୍ସର୍ଗ କରି ସେ ନିଜର ସମସ୍ତ ସୁଖ ଓ ବିଳାସକୁ ଭୁଲିଥିଲେ ।

ଗଭୀର ଈଶ୍ୱର ଅନୁରାଗ ହେତୁ ସେ ଦୁଃସ୍ଥର ସେବା ପାଇଁ ପ୍ରବଳ ମାନସିକ ବଳ ପାଉଥିଲେ । ପ୍ରତି ସନ୍ଧ୍ୟା ଓ ସକାଳେ ସେ ତନ୍ମୟ ହୋଇ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ସେତେବେଳେ କୌଣସି ବାହ୍ୟ ଶକ୍ତି ତାଙ୍କ ଏକାଗ୍ର ଉପାସନାରେ ବାଧା ସୃଷ୍ଟି କରିପାରୁନଥିଲା । ମୋ ପ୍ରତି ତାଙ୍କର ଗଭୀର ସ୍ନେହ ଓ ମମତା ମୋ ହୃଦୟକୁ ସିକ୍ତ ଓ ଉଲ୍ଲସିତ କରିଥିଲା । ମୁଁ ଜୀବନସାରା ତାଙ୍କୁ ଭୁଲିପାରିବି ନାହିଁ ।" (ପୃ- ୨୩୩)

ଆଲୋଚ୍ୟ ଜୀବନୀରେ ଗୋପବଂଧୁଙ୍କ ସମୟର ସାମାଜିକ, ରାଜନୀତିକ ସାହିତ୍ୟିକ ଓ ସାଂସ୍କୃତିକ ପରିବେଶର ଜୀବନ୍ତ ବର୍ଣ୍ଣନା ସହିତ ତାଙ୍କ ଜୀବନ ସହିତ ସଂଶ୍ଳିଷ୍ଟ ସ୍ମରଣୀୟ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ବିଷୟରେ ସଂକ୍ଷେପରେ ଅଥଚ୍ ଚମତ୍କାର ଢଙ୍ଗରେ ବକ୍ତବ୍ୟ ରଖିଛନ୍ତି ।

ଜୀବନର ବର୍ଣ୍ଣନା କରୁ କରୁ ସାଂପ୍ରତିକ ପ୍ରତିକୂଳ ପରିବେଶ ଓ ପରିସ୍ଥିତି ପ୍ରତି ଲେଖକ ପ୍ରତିକ୍ରିୟାଶୀଳ ହୋଇ ଉଠିଛନ୍ତି । ଫଳତଃ ଅନାଦର୍ଶ ପ୍ରତି କଟାକ୍ଷ ଲକ୍ଷ୍ୟ କରାଯାଇଛି । ଏ ସବୁ ହିଁ ତ ସାର୍ଥକ ଜୀବନର ଲକ୍ଷଣୀୟ ବୈଶିଷ୍ଟ୍ୟ । ଗୋପବଂଧୁଙ୍କ ସ୍ୱପ୍ନ ଥିଲା ଓଡ଼ିଶାବାସୀ ଶିକ୍ଷିତ, ସ୍ୱାଧୀନ, ସ୍ୱାବଲମ୍ବନଶୀଳ ସ୍ୱାଭିମାନ, ଋଚିପୂର୍ଣ୍ଣ, ସଂସ୍କାରୀ, ସହନଶୀଳ, ଶ୍ରଦ୍ଧାଶୀଳ ଓ ଧର୍ମଶୀଳ ହୋଇ ଶାନ୍ତ, ସୁଖ, ସୁନ୍ଦର ଜୀବନ ନିର୍ବାହ କରନ୍ତୁ । ସେଥିପାଇଁ ତାଙ୍କ ଜୀବନର ସଂଗଠନ, ଉଦ୍‌ବୋଧନ, ସାହିତ୍ୟ ସାଧନା, ସମ୍ପାଦନା, ଆନ୍ଦୋଳନ ସର୍ବୋପରି ଉପାସନା - ଜୀବନର ଯାବତୀୟ କର୍ମ ସମର୍ପିତ ହୋଇଥିଲା । ସ୍ୱାଧୀନତାର ଏତେ ବର୍ଷ ପରେ ବି ଗୋପବଂଧୁଙ୍କ ସ୍ୱପ୍ନ ରହିଛି ଅଧୁରା । ତାଙ୍କ ପରି ଉତ୍ସର୍ଗୀକୃତ ମଣିଷର ଚିନ୍ତା ଆଜି ଜାତିର ଭାବନାରୁ ତିରୋହିତ । ପ୍ରାୟ ସମସ୍ତ ସ୍ୱାର୍ଥ ପ୍ରଣୋଦିତ । ଏହି ପରିପ୍ରେକ୍ଷୀରେ ଗୋପବଂଧୁଙ୍କ ପରି ବିରଳ ଜାତିପ୍ରାଣ ମଣିଷର ସରଳ କଥା ସାର୍ଥକ ଭାବରେ ବହନ କରିଥିବା 'ହେ ସାଥି ! ହେ ସାରଥି !' - ଏ ଜାତିର ବତୀଘର ଆଉ ସେଇ ବତୀଘରର ସ୍ରଷ୍ଟା ଆମ ପାଇଁ ଚିର ନମସ୍ୟ ହୋଇ ରହିବେ ନିଶ୍ଚୟ ।

■ *ସହକାରୀ ପ୍ରଫେସର*

*ଖଲ୍ଲିକୋଟ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର*

# ଓଡ଼ିଆ ମେଗା ଉପନ୍ୟାସ : ବୀକ୍ଷା ଓ ସମୀକ୍ଷା

♦ ଡକ୍ଟର ସୋମନାଥ ବିଷୋୟୀ

॥ ୧ ॥

ଓଡ଼ିଆ ସାହିତ୍ୟର ଏକାଧିକ ବିଭାଗରେ କଲମ ଚାଳନା କରିଥିଲେ ହେଁ ମୁଖ୍ୟତଃ ଜଣେ ସୁ-ସମୀକ୍ଷକ ଭାବରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଓଡ଼ିଆ ସାହିତ୍ୟ ସମାଜରେ ସୁପରିଚିତ । କେବଳ ସୁ-ସମୀକ୍ଷକ ନୁହଁ, ଜଣେ ସୁ-ସମାଲୋଚକ ଏବଂ ସୁ-ଗବେଷକ ଭାବରେ ତାଙ୍କର ପ୍ରତିଷ୍ଠା ନିର୍ବିବାଦରେ ସ୍ୱୀକୃତ । ସେ ଜଣେ ଏପରି ସମୀକ୍ଷକ ଯାହାଙ୍କର ପ୍ରତ୍ୟେକଟି ସମୀକ୍ଷା ସନ୍ଦର୍ଭ ଗୋଟେ ଗୋଟେ ଗବେଷଣା କହିଲେ ଅତ୍ୟୁକ୍ତି ହେବ ନାହିଁ । 'ସବୁଜରୁ ସାମ୍ପ୍ରତିକ' ତାଙ୍କର ପିଏଚ୍.ଡି. ସନ୍ଦର୍ଭ ବୋଲି ଆମେମାନେ ଜାଣୁ । କିନ୍ତୁ ଗୋଟେ ଉତ୍ତମ ଗବେଷଣା, ଗୋଟେ ଉତ୍ତମ ସମୀକ୍ଷା ହିଁ ହୋଇଥାଏ । ଉତ୍ତମ ସମୀକ୍ଷା ନ ହୋଇ, ଉତ୍ତମ ଗବେଷଣା ହୋଇପାରିବ ନାହିଁ । ଅନେକ କ୍ଷେତ୍ରରେ ଗୋଟେ ଉତ୍ତମ ସମୀକ୍ଷା ଗବେଷଣା ନ ହୋଇପାରେ; ମାତ୍ର ଗବେଷଣାର କ୍ଷେତ୍ର ପାଲଟିଯାଏ । ଏପରି ଗୋଟିଏ ସମୀକ୍ଷାଗ୍ରନ୍ଥ ହେଉଛି 'ସତ୍ତୁରୀରୁ ସହସ୍ରାବ୍ଦୀ' । ସବୁଜରୁ ସାମ୍ପ୍ରତିକକୁ ଆମେ ଯେଉଁଭଳି ଭାବରେ ଏକ ଗବେଷଣା ଗ୍ରନ୍ଥର ମାନ୍ୟତା ଦେଉ, ସତୁରୀରୁ ସହସ୍ରାବ୍ଦୀକୁ ସେଭଳି ମାନ୍ୟତା ଦେବାରେ ହୁଏତ ଆମର କିଛି ଆପତ୍ତି ରହିପାରେ, କିନ୍ତୁ ଏହା ଯେ ଗବେଷଣା ନ ହୋଇବି ଏକ ଉତ୍ତମ ଗବେଷଣାର କ୍ଷେତ୍ର ପ୍ରସ୍ତୁତ କରିପାରିଛି, ଏଥିରେ କାହାରି ଆପତ୍ତି ରହିନପାରେ ।

ସେହିଭଳି ପ୍ରଫେସର ଶତପଥୀଙ୍କର 'କବିତା ଯୁଗେ ଯୁଗେ', 'ଆଧୁନିକ ଓଡ଼ିଆ ସାହିତ୍ୟ', 'ପ୍ରମୁଖ କବି କତିପୟ', 'ଗଳ୍ପ ଓ ଗାଳ୍ପିକ', 'ସାରଳାରୁ ସଂପ୍ରତି', 'କାବ୍ୟଦୃଷ୍ଟି କାବ୍ୟବିଚାର', 'ସତ୍ୟବାଦୀଯୁଗ : ସ୍ରଷ୍ଟା ଓ ସୃଷ୍ଟି' ଗୋଟେ ଗୋଟେ ଉତ୍ତମ ସମୀକ୍ଷା ଗ୍ରନ୍ଥ ଏବଂ ସେହିହେତୁ ଗୋଟେ ଗୋଟେ ଗବେଷଣାର କ୍ଷେତ୍ର ।

ଲେଖକଙ୍କର 'ହେ ସାଥି ହେ ସାରଥି', ଗବେଷଣା ସନ୍ଦର୍ଭ ନ ହେଲେ ହେଁ ଲେଖକ ନିଜେ ସ୍ୱୀକାର କରିଛନ୍ତି, ଏହା ତାଙ୍କର 'ସବୁଜରୁ ସାଂପ୍ରତିକ' ଭଳି ଗବେଷଣା କର୍ମରୁ ହିଁ ରଚିତ ହୋଇଛି । ଏହା କମ୍ ବଡ଼ କଥା ନୁହେଁ । ଉତ୍ତମ ସମୀକ୍ଷା ଉତ୍ତମ ସମାଲୋଚନା ଏବଂ ଉତ୍ତମ ଗବେଷଣା ଏହି ତିନୋଟିଯାକ କାର୍ଯ୍ୟ ସେ ଏକାଧାରାରେ କରିପାରନ୍ତି । ଏହା ତାଙ୍କର ଗୋଟେ ଅନନ୍ୟ ସାଧାରଣ ଦକ୍ଷତା ଏବଂ ସ୍ୱତନ୍ତତା । ଏବେ ସୁଦ୍ଧା ତାଙ୍କର ସମୀକ୍ଷାଦୃଷ୍ଟିର ପଟାନ୍ତର ନାହିଁ । ସେ ଜଣେ ବହୁପାଠୀ, ବହୁଶ୍ରମୀ, ଗଭୀର

ଅଧ୍ୟବସାୟୀ, ସୂକ୍ଷ୍ମଦୃଷ୍ଟିଶୀଳ ଏବଂ ଧୈର୍ଯ୍ୟବାନ ପ୍ରାଜ୍ଞ ସମୀକ୍ଷକ । ଘଣ୍ଟା ଘଣ୍ଟା ଧରି ପଢ଼ିବା ଏବଂ ଅବିଚ୍ଛିନ୍ନ ଭାବରେ ଘଣ୍ଟା ଘଣ୍ଟା ଧରି ଲେଖିବା ତାଙ୍କର ଅଭ୍ୟାସ । ନିଶ୍ଚିତ ଭାବରେ ସେ ଆମ ସମୟର ଓଡ଼ିଆ ସମାଲୋଚ଼ନା, ସମୀକ୍ଷା ଓ ଗବେଷଣା କ୍ଷେତ୍ରରେ ଜଣେ ବିରଳ ସାଧକ ।

ଏବେ ନିକଟରେ ତାଙ୍କର ପ୍ରକାଶିତ ହୋଇଛି ଅନ୍ୟ ଏକ ଅନନ୍ୟ ସାଧାରଣ ସମୀକ୍ଷା ଗ୍ରନ୍ଥ 'ଓଡ଼ିଆ ମେଗା ଉପନ୍ୟାସ ବୀକ୍ଷା ଓ ସମୀକ୍ଷା' । ଏଥିରେ ଆଧୁନିକ ଓଡ଼ିଆ ଉପନ୍ୟାସ ଜଗତର ସୁ-ନିର୍ବାଚ଼ିତ ପାଞ୍ଚଗୋଟି ଉପନ୍ୟାସକୁ ସେ ସ୍ଥାନିତ କରିଛନ୍ତି । ତାଙ୍କ ମତରେ ଓଡ଼ିଆ ସାହିତ୍ୟରେ ଆଉ ପାଞ୍ଚ ଛ'ଟି ମେଗା ଉପନ୍ୟାସ ଅଛି । ତାଙ୍କର ଅନୁସନ୍ଧାନ ଏ କ୍ଷେତ୍ରରେ ତଥାପି ବଳବତ୍ତର ରହିଛି । ସେ ନିଜେ ସ୍ୱୀକାର କରନ୍ତି ଯେ ସବୁ ବୃହଦାକାର ଉପନ୍ୟାସକୁ ମେଗା ଉପନ୍ୟାସର ମାନ୍ୟତା ମିଳିନପାରେ । ଯଦିଓ ମେଗା ଶବ୍ଦର ଅର୍ଥ ଆମେ ସମସ୍ତେ ଜାଣୁ, ମାତ୍ର ଏହା ମେଗା ଉପନ୍ୟାସର ସଂଜ୍ଞା ଧାରଣରେ କୌଣସି ଯଥାର୍ଥତା ରଖେନାହିଁ । ସ୍ୱତନ୍ତ୍ର କିଛି ଲକ୍ଷଣ ଏଥିପାଇଁ ରହିଛି । ହୁଏତ ଏହାକୁ ମେଗା ଉପନ୍ୟାସର ଯୋଗ୍ୟତା କୁହାଯାଇପାରେ, ଗୁଣ କୁହାଯାଇପାରେ, ଉପାଦାନ କୁହାଯାଇପାରେ । ନିଜେ ପ୍ରଫେସର ଶତପଥୀ ଏହି ଗ୍ରନ୍ଥଟିର ବିଭିନ୍ନ ସ୍ଥାନରେ ଏହି ମେଗା ଉପନ୍ୟାସର ଲକ୍ଷଣକୁ ସ୍ଥାନିତ କରିଛନ୍ତି । ତାଙ୍କ ବିଚ଼ାରରେ ବର୍ଣ୍ଣନାତ୍ମକତା, ସମୟର ଦୀର୍ଘତା, ଏକାଧିକ କଥାନ୍ତରର ସଂଯୋଜନା ମେଗା ଉପନ୍ୟାସର ଗୋଟେ ଗୋଟେ ଲକ୍ଷଣ ।

ଉପନ୍ୟାସ ମାତ୍ରକେ ବହୁ ଚରିତ୍ରର ସମାବେଶ ନିଶ୍ଚୟ ରହିବ । ଗୋଟିଏ ମୁଖ୍ୟ କାହାଣୀ ସହିତ ବହୁ ଉପକାହାଣୀ ମଧ୍ୟ ରହିବ । ଗୋଟିଏ କଥାରୁ ଅନ୍ୟ ଗୋଟିଏ କଥାକୁ ହଠାତ୍ ଚ଼ାଲିଯିବାର ଉପକ୍ରମ ମଧ୍ୟ ରହିବ । ତା' ଭିତରେ ମଧ୍ୟ ବର୍ଣ୍ଣନା ଚ଼ାଲିଥିବ । କଥାର ଧାରାବାହିକତା ଅବ୍ୟାହତ ଥିବ ଏବଂ ତା'ରି ଭିତରେ ଦିନ-ମାସ-ବର୍ଷ ଅତିବାହିତ ହୋଇଯାଉଥିବ । ସାଧାରଣ ଉପନ୍ୟାସର ଧର୍ମ ଠାରୁ ମେଗା ଉପନ୍ୟାସର ଧର୍ମ ବାସ୍ତବରେ ଆଉ କିଛି ଅଲଗା ନୁହେଁ । ଆଧୁନିକ ଯୁଗରେ ଏହି ମେଗା ଉପନ୍ୟାସକୁ ଆଧୁନିକ ଗଦ୍ୟ-ମହାକାବ୍ୟ ବୋଲି କହିଲେ ହୁଏତ କିଛି ଭୁଲ୍ ହୋଇନପାରେ । ଯେଉଁଭଳି ଭାବରେ ମହାଭାରତ ଓ ରାମାୟଣକୁ ବିଶିଷ୍ଟ ସମାଲୋଚ଼କ ଚିତ୍ତରଞ୍ଜନ ଦାସ ଗୋଟେ ଗୋଟେ ପଦ୍ୟ-ଉପନ୍ୟାସ ବୋଲି ଅଭିହିତ କରିଛନ୍ତି, ସେହିଭଳି ଭାବରେ ଏହି ମେଗା ଉପନ୍ୟାସକୁ ଗଦ୍ୟ-ମହାକାବ୍ୟ କହିବାରେ କାହାରି କିଛି ଆପତ୍ତି ରହିନପାରେ ।

ଏହିଭଳି ପାଞ୍ଚୋଟି ଗଦ୍ୟ-ମହାକାବ୍ୟ ବା ମେଗା ଉପନ୍ୟାସ ନିର୍ବାଚ଼ନ କରିଛନ୍ତି ସୁ-ସମାଲୋଚ଼କ ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ଏହି ପାଞ୍ଚୋଟିଯାକ ଉପନ୍ୟାସ ଏକ ଏକ ବୃହଦାକାର ଉପନ୍ୟାସ । ପ୍ରଥମ ଉପନ୍ୟାସଟି ବିଶିଷ୍ଟ କଥାକାର କାହ୍ନୁଚରଣ ମହାନ୍ତିଙ୍କର

'ତମାସା ତୀରେ' ଏହା ହଜାରେ ଅଠେଇଶି ପୃଷ୍ଠାର ଏକ ଉପନ୍ୟାସ । ଏହି ଉପନ୍ୟାସଟି ହିଁ ଏହି ପାଞ୍ଚୋଟିଯାକ ଉପନ୍ୟାସ ମଧ୍ୟରେ ସର୍ବବୃହତ ଉପନ୍ୟାସ ।

ଏହା ପରେ ଗୋପୀନାଥ ମହାନ୍ତିଙ୍କ 'ମାଟିମଟାଳ', ପ୍ରତିଭା ରାୟଙ୍କ 'ମଗ୍ନମାଟି', ହୃଷୀକେଶ ପଣ୍ଡାଙ୍କ 'ଗର୍ବକରିବା କଥା' ଏବଂ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ 'ଜନ୍ମାଷ୍ଟମୀ'ର ବୀକ୍ଷା ଓ ସମୀକ୍ଷା କ୍ରମାନ୍ୱୟରେ ଗ୍ରନ୍ଥିତ ହୋଇଛନ୍ତି । ଏଇଠି ଗୋଟିଏ କଥା କହିବା ଯଥାର୍ଥ ହେବ ଯେ ପ୍ରଫେସର ଶତପଥୀ ଏହି ପାଞ୍ଚୋଟିଯାକ ଉପନ୍ୟାସକୁ ଏ ଗ୍ରନ୍ଥରେ କେବଳ ସମୀକ୍ଷା କରି ନାହାନ୍ତି, ଏହାର ବୀକ୍ଷା ମଧ୍ୟ ପ୍ରସ୍ତୁତ କରିଛନ୍ତି । ସେ ଏ ନେଇ କହନ୍ତି ଯେ ଏତେ ବଡ଼ ବଡ଼ ଉପନ୍ୟାସ ଆଜିକାଲି ଆଉ କେହି ପଢ଼ିବେ ନାହିଁ । ପଢ଼ିବା ପାଇଁ ମଧ୍ୟ କାହାରି ପାଖରେ ସମୟ କି ଧୈର୍ଯ୍ୟ ନାହିଁ । ତେଣୁ ଏହାର ସାରନିର୍ଯ୍ୟାସକୁ କାଢ଼ି ଗୋଟିଏ ଗୋଟିଏ ବୀକ୍ଷା ପ୍ରସ୍ତୁତ କରାଯାଇଛି । ଫଳରେ ଉପନ୍ୟାସଟି ନ ପଢ଼ି ମଧ୍ୟ ଜଣେ ପାଠକ ଏହି ବୀକ୍ଷାଟିକୁ ପଢ଼ି ସମଗ୍ର ଉପନ୍ୟାସଟିର ବିଷୟବସ୍ତୁକୁ ଏବଂ ଭାବବସ୍ତୁକୁ ଗ୍ରହଣ କରିପାରିବ । ତା'ପରେ ସମୀକ୍ଷାଟିକୁ ପଢ଼ି ଉପନ୍ୟାସର ପୂର୍ଣ୍ଣ ଅବବୋଧ ଓ ରସବୋଧ ଲାଭ କରିବା ସହିତ ଉପନ୍ୟାସର ଦୋଷ ଗୁଣକୁ ମଧ୍ୟ ଉପଲବ୍‌ଧିରେ ଆଣିପାରିବ ।

ତେଣୁ ପ୍ରଫେସର ଶତପଥୀ ପ୍ରଥମେ ନିଜ ଭାଷାରେ ପାଞ୍ଚୋଟିଯାକ ଉପନ୍ୟାସର ସଂକ୍ଷିପ୍ତ ରୂପ ପ୍ରସ୍ତୁତ କରିଛନ୍ତି । ଏହି ପାଞ୍ଚୋଟିଯାକ ସଂକ୍ଷିପ୍ତ ରୂପକୁ ଉପନ୍ୟାସର ସଂକ୍ଷିପ୍ତିକରଣ କୁହାଯାଇ ପାରିବ ନାହିଁ । ଅର୍ଥାତ୍ ଏହା ଉପନ୍ୟାସର ଆଉ ଏକ କ୍ଷୁଦ୍ର ରୂପ ବୋଲି କୁହାଯାଇ ପାରିବ ନାହିଁ । ଏହା କେବଳ ଜଣେ ସୁ-ସମୀକ୍ଷକଙ୍କ ଭାଷାରେ ଗୋଟେ ଉପନ୍ୟାସର ସଂକ୍ଷିପ୍ତ ସାରନିର୍ଯ୍ୟାସ । ଏହି ସଂକ୍ଷିପ୍ତ ସାରନିର୍ଯ୍ୟାସ ପ୍ରସ୍ତୁତ କଲାବେଳେ ମଧ୍ୟ ପ୍ରଫେସର ଶତପଥୀ ମେଗା ଉପନ୍ୟାସର ଲକ୍ଷଣମାନଙ୍କ ସଂପର୍କରେ ମଧ୍ୟେ ମଧ୍ୟେ ଅବଗତ କରାଇଛନ୍ତି । ଆହୁରି ମଧ୍ୟ ତାଙ୍କର ସମୀକ୍ଷା ଦୃଷ୍ଟିର ପରିଚୟ ଦେଇଛନ୍ତି । ଅତ୍ୟନ୍ତ ସରଳ ଓ ସୁବୋଧ ଭାଷାରେ ଏହି ପାଞ୍ଚୋଟିଯାକ ବୀକ୍ଷା ପ୍ରସ୍ତୁତ ହୋଇଛି । ବାସ୍ତବରେ ଏହି ପାଞ୍ଚୋଟିଯାକ ବୀକ୍ଷା ପଢ଼ି ଜଣେ ପାଠକ ସହସ୍ରାଧିକ ପୃଷ୍ଠାର ଗୋଟେ ଉପନ୍ୟାସକୁ ଅଙ୍ଗ ଓ ଆତ୍ମାରେ ପୂର୍ଣ୍ଣଭାବରେ ଉପଲବ୍‌ଧି କରିପାରିବ । ବଡ଼ ଆୟାସସାଧ କର୍ମଟିଏ ଇଏ । ପ୍ରଫେସର ଶତପଥୀ ଗୋଟିଏ ଉପନ୍ୟାସକୁ ଏକାଧିକଥର ପଢ଼ିଥିବାର ସ୍ୱୀକାର କରିଛନ୍ତି । ପଢ଼ିବାର ଧାରାବାହିକତା ମଧ୍ୟ ନ ରଖିଲେ ଉପନ୍ୟାସର ରସବୋଧରେ ବ୍ୟାଘାତ ଘଟିବାର ସମ୍ଭାବନା ଥିବାରୁ ସେ ଅବିଶ୍ରାନ୍ତ ଭାବରେ ଓ ଧୈର୍ଯ୍ୟ ସହକାରେ ଏହି ପାଞ୍ଚୋଟିଯାକ ମେଗା ଉପନ୍ୟାସକୁ ପଢ଼ି ଏହାର ବୀକ୍ଷା ପ୍ରସ୍ତୁତ କରିଛନ୍ତି । ପ୍ରକୃତରେ ଏହିଭଳି ଏକ ସମୀକ୍ଷାକର୍ମ ବଡ଼ କଠିନ ସାଧନା । ଏହାକୁ ପାଠ କରି ସମୀକ୍ଷାଟିଏ ପ୍ରସ୍ତୁତ କରିବା ହୁଏତ ସହଜ ହୋଇପାରେ; ମାତ୍ର ଏହାକୁ ଏକାଧିକଥର ପାଠକରି ଏବଂ ଅବିଚ୍ଛିନ୍ନ ଭାବରେ ପାଠ କରି ପୁଣି ଗଭୀର ମନୋଯୋଗ ସହକାରେ ପାଠକରି ଏହାର

ବୀକ୍ଷା ପ୍ରସ୍ତୁତ କରିବା କଦାପି ସାଧାରଣ କଥା ନୁହେଁ । ଆମକୁ ନିଶ୍ଚିତ ଭାବରେ ଏଇଠି ସ୍ୱୀକାର କରିବାକୁ ପଡ଼ିବ ଯେ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କର ଏହି ସମୀକ୍ଷା କର୍ମଟି କୌଣସି ଏକ ଉତ୍ତମ ଗବେଷଣାକର୍ମ ଠାରୁ କମ୍ ନୁହେଁ । ଏହା ପ୍ରଫେସର ଶତପଥୀଙ୍କର ନିଜସ୍ୱ ଚିନ୍ତା, ଚେତନା, ନିରପେକ୍ଷ ବିଚାରଶକ୍ତି, ରସବୋଧ, ଭାବବୋଧ, ଦର୍ଶନ, ମନସ୍ତତ୍ତ୍ୱ ଆଦି ବହୁ ସୃଜନଶକ୍ତିର ଏକ ସମନ୍ୱିତ ସାଧନକାର୍ଯ୍ୟ । ଏହା ଏକ ଗବେଷଣା ନୁହେଁ ତ ଆଉ କ'ଣ ?

।। ୨ ।।

ପ୍ରଥମ ବୀକ୍ଷା ଓ ସମୀକ୍ଷାଟି ବିଖ୍ୟାତ କଥାକାର କାହ୍ନୁଚରଣ ମହାନ୍ତିଙ୍କର 'ତମସା ତୀରେ' ଉପନ୍ୟାସ ଉପରେ ଆଧାରିତ । ଏହିଠାରୁ ହିଁ ଲେଖକଙ୍କର ସମୀକ୍ଷାଦୃଷ୍ଟିର ବିଚାର ଆରମ୍ଭ ହେଉ ।

ଏଇଠି ଆଉ ଗୋଟିଏ କଥା କହିବା ଯଥାର୍ଥ ହେବ ଯେ ଉପନ୍ୟାସର ମୂଳ ଲେଖକଙ୍କ ସମ୍ପର୍କରେ ଯଦିଓ ଆମର କିଛି କହିବାର ନାହିଁ, ପରୋକ୍ଷରେ କିନ୍ତୁ ମୂଳ ଲେଖକଙ୍କର ସୃଷ୍ଟିର ହିଁ ସମୀକ୍ଷା ଅବଶ୍ୟ ରହିବ । ଆମର କିନ୍ତୁ ମୂଳ ଲକ୍ଷ୍ୟ ପ୍ରଫେସର ଶତପଥୀଙ୍କ ସମୀକ୍ଷାଦୃଷ୍ଟିର ସମୀକ୍ଷା କରିବା । ଏହା ପ୍ରଫେସର ଶତପଥୀଙ୍କର ବିଚାର, ଚିନ୍ତାଶକ୍ତି, ରସବୋଧ, ଭାବବୋଧ, ନିରପେକ୍ଷ ନ୍ୟାୟର ଏକ ଆଲୋଚ଼ନା । କାହ୍ନୁଚରଣଙ୍କୁ ବା ଅନ୍ୟ ଉରିଜଣଙ୍କ ଉପନ୍ୟାସକୁ ସେ କେଉଁଭଳି ଭାବରେ ବୁଝିଛନ୍ତି, କେଉଁଭଳି ଭାବରେ ସେଗୁଡ଼ିକର ସମୀକ୍ଷା କରିଛନ୍ତି, କେଉଁଭଳି ଭାବରେ ସେଗୁଡ଼ିକୁ ନିଜସ୍ୱ ସମୀକ୍ଷାଦୃଷ୍ଟି ଦେଇ ଆଲୋଚ଼ନା କରିଛନ୍ତି ତାହାହିଁ ଏଠାରେ ଉପଜୀବ୍ୟ । ଯେପରି ସୂର୍ଯ୍ୟଙ୍କର କିରଣ ସିଧାସଳଖ ଭାବରେ ଚନ୍ଦ୍ର ଉପରେ ପତିତ ହୁଏ, ପ୍ରଫେସର ଶତପଥୀଙ୍କ ଉପରେ ଏହି ଉପନ୍ୟାସର କିରଣ ସେହିଭଳି ପ୍ରତୀତ ହୋଇଛି । କିନ୍ତୁ ସେହି ସୂର୍ଯ୍ୟର କିରଣ ଚନ୍ଦ୍ର ମାଧମରେ ପ୍ରତିବିମ୍ବିତ ହୋଇ ଯେତେବେଳେ ପୃଥିବୀ ପୃଷ୍ଠକୁ ଆସୁଛି, ତାହା ଆଉ ସୂର୍ଯ୍ୟକିରଣ ନ ହୋଇ ପାଲଟିଯାଉଛି ଶୀତଳ ଜ୍ୟୋସ୍ନା । ଏଠାରେ ଏହି ଆଲୋଚ଼କଙ୍କର ସମୀକ୍ଷାଟି ଠିକ୍ ଏହିଭଳି ହୋଇଛି । ଅର୍ଥାତ୍ ଉପନ୍ୟାସଟିର ସୂର୍ଯ୍ୟକିରଣ କିଭଳି ଭାବରେ ପ୍ରଫେସର ଶତପଥୀଙ୍କ ମାନସପଟରେ ଅପୂର୍ବ ଜ୍ୟୋସ୍ନାରୂପ ଲାଭ କରିଛି, ତାହାହିଁ ଏଠାରେ ବିଚାର୍ଯ୍ୟ । ଏଥିରେ ମୂଳ ଲେଖକଙ୍କର ଗୁରୁତ୍ୱ ଓ ମହାନତା ସୁରକ୍ଷିତ କେବଳ ରହିବ ନାହିଁ, ବରଂ ଅଧିକ ଦୀପ୍ତିମନ୍ତ ହୋଇଉଠିବ । ତା' ସହିତ ସମୀକ୍ଷକ ପ୍ରଫେସର ଶତପଥୀଙ୍କ ସମୀକ୍ଷା ଦୃଷ୍ଟିର ମହତ୍ତ୍ୱ ପ୍ରତିପାଦିତ ହେବ । ଏହି ଦୃଷ୍ଟିରୁ ଉଭୟ ଔପନ୍ୟାସିକ ଓ ସମୀକ୍ଷକ ଏହି ଆଲୋଚ଼ନାରେ ସମାନ ଗୁରୁତ୍ୱ ଓ ମହତ୍ତ୍ୱ ଲାଭ କରିପାରିବେ ।

ପ୍ରଥମେ 'ତମାସା ତୀରେ' ଉପନ୍ୟାସଟିର ସମୀକ୍ଷାଦୃଷ୍ଟି କଥା ଏଠାରେ ବିଚାର କରାଯାଉ । ପ୍ରଫେସର ଶତପଥୀ ଏହି ଉପନ୍ୟାସଟିକୁ ପାଠ କରି ତାଙ୍କର ଗଭୀର ଓ

ସୁନ୍ଦର ସମୀକ୍ଷାଦୃଷ୍ଟିର ପରିଚୟ ଦେଇଛନ୍ତି । ସେ ପ୍ରଥମରୁ କହିଛନ୍ତି, ଏହା ଏକ ଦୀର୍ଘ ଉପନ୍ୟାସ ହଜାରେ ଅଠେଇଶି ପୃଷ୍ଠାର । 'ତଥାପି ସମାପ୍ତି ପରେ ଯେପରି ମନେହେଉଛି ଆହୁରି କିଛି ଅପୂର୍ଣ୍ଣ ରହିଗଲା' । ଏହା ପ୍ରଫେସର ଶତପଥୀଙ୍କର ବିଚାର । ଉପନ୍ୟାସଟିଏ ପୂର୍ଣ୍ଣ ହୋଇବି ଅପୂର୍ଣ୍ଣ ରହିଯିବା ଗୋଟେ ନିଆରା ଅନୁଭବ । ଓଡ଼ିଆ ଉପନ୍ୟାସ ଜଗତରେ ଏହିଭଳି ଅନେକ ଉପନ୍ୟାସ ରହିଛି, ଯାହାକି ପୂର୍ଣ୍ଣ ହୋଇ ବି ଅପୂର୍ଣ୍ଣ ରହିଯାଇଛନ୍ତି । ଅନେକ ଉପନ୍ୟାସ ଶେଷରେ ସଂଶୟ ଓ ରହସ୍ୟାଚ୍ଛନ୍ନ ହୋଇ ରହିଯାଇଛନ୍ତି । ଏଠି ତାହାର ଦୃଷ୍ଟାନ୍ତ ଦବାର ଆବଶ୍ୟକତା ନାହିଁ । ବେଳେବେଳେ ମୁଖ୍ୟ ଚରିତ୍ରଙ୍କୁ ନେଇ ଉପନ୍ୟାସରେ ସଂଶୟ ଉପୁଜେ । ପୁଣି ଅନେକ ସମୟରେ ଘଟଣାର ପରିଣତି କଥା ପାଠକ ଯେଉଁଭଳି ଭାବରେ କଳ୍ପନା କରେ, ତାହା ହୋଇନଥାଏ । ନାନା ନାଟକୀୟତା, ଆକସ୍ମିକତା, କଥାନ୍ତରତା, ଉପନ୍ୟାସରେ ସଂଯୋଜିତ କରିବା ଔପନ୍ୟାସିକର ଧର୍ମ । ଯଦିଓ ଉପନ୍ୟାସର ଗୋଟିଏ କଙ୍କାଳ ପ୍ରସ୍ତୁତ କରି ଔପନ୍ୟାସିକ ଉପନ୍ୟାସ ଲେଖାରେ ହାତଦିଏ, କିନ୍ତୁ ଉପନ୍ୟାସର ପରିଣତି ତା' ହାତରେ ନଥାଏ । ଉପନ୍ୟାସଟି ପ୍ରକୃତରେ କେଉଁଠି ସରିବ, ଉପନ୍ୟାସଟି ସରିଲା ପରେ କେଉଁ ଚରିତ୍ରକୁ କେତେ ନ୍ୟାୟ ମିଳିବ, କେତେ ପ୍ରତିଷ୍ଠା ମିଳିବ ତାହା ଔପନ୍ୟାସିକ ଲେଖାପୂର୍ବରୁ ନିର୍ଣ୍ଣୟ କରିପାରେ ନାହିଁ । କାରଣ ସବୁ କଥା ମାପିଚୁପି ଉପନ୍ୟାସ ଲେଖି ହୁଏନି ।

ଏହିଭଳି ନାନା ଦୃଷ୍ଟିକୋଣରୁ ସମୀକ୍ଷକ ଉପନ୍ୟାସର ତର୍ଜମା କରେ । ତାହାର ଦୋଷ ଗୁଣ ବିଚାର କରିଥାଏ । ଯାହା କରିଛନ୍ତି ପ୍ରଫେସର ଶତପଥୀ । ଏହି 'ତମସା ତୀରେ' ଉପନ୍ୟାସର ସମୀକ୍ଷାରେ । ଏହାର ବର୍ଣ୍ଣନାତ୍ମକତାକୁ ଗୋଟିଏ ବିଶିଷ୍ଟ ବିଭାବ ଭାବରେ ଗ୍ରହଣ କରିଛନ୍ତି ପ୍ରଫେସର ଶତପଥୀ । ଏହି ବର୍ଣ୍ଣନାତ୍ମକତା ନାରୀ ଓ ପୁରୁଷର ରୂପ, ପ୍ରକୃତିର ରୂପ, ମଣିଷ ମନର ଭାବନାର ରୂପକୁ ଆଧାର କରି କରାଯାଇଛି । ପ୍ରଫେସର ଶତପଥୀ ଉପନ୍ୟାସଟିରୁ ବାକ୍ୟ ଓ ପାରାଗ୍ରାଫ୍‌ମାନ ଉଦ୍ଧାର କରି ଔପନ୍ୟାସିକ କାହ୍ନୁଚରଣଙ୍କର ଏହି ବର୍ଣ୍ଣନାତ୍ମକତାର ପରିଚୟ ଦେଇଛନ୍ତି । ଜଣେ ମଣିଷ ଭିତରେ ଭଲମନ୍ଦ ଉଭୟ ଗୁଣ ରହିଥାଏ । ସେ ସ୍ୱାର୍ଥପର ଚରିତ୍ରଟିଏ ହୋଇ ମଧ୍ୟ ପ୍ରକୃତିପ୍ରେମୀ ଓ ସୌନ୍ଦର୍ଯ୍ୟପ୍ରେମୀ ମଣିଷଟିଏ ବି ହୋଇପାରେ, ଯାହା ଉପନ୍ୟାସର ବିପିନ ଲିଡ଼ରଙ୍କ କ୍ଷେତ୍ରରେ ସମ୍ଭବ ହୋଇଛି । ଏହା କାହ୍ନୁଚରଣଙ୍କର ଚରିତ୍ର ଚିତ୍ରଣର ଏକ ବୈଶିଷ୍ଟ୍ୟ ବୋଲି ପ୍ରଫେସର ଶତପଥୀ କହନ୍ତି । ସେ କହନ୍ତି, "ଯେଉଁଠି ଲେଖକ ସୁଯୋଗ ପାଇଛନ୍ତି, ସେ ନଈ ହେଉ କି ପାହାଡ଼, ସମତଳ ଭୂଇଁ ହେଉ କି ଅରଣ୍ୟାନି, ସିଧା ରାସ୍ତା ହେଉ କି ସର୍ପିଳ, ସେଠାରେ ସେ ତାଙ୍କ ବର୍ଣ୍ଣନାତ୍ମକତାର କରାମତି ଦେଖାଇଛନ୍ତି ।" ଏହି ବର୍ଣ୍ଣନାତ୍ମକତାର କେତୋଟି ସୁନ୍ଦର ଉଦାହରଣ ପ୍ରଫେସର ଶତପଥୀ ଉଦ୍ଧାର କରିଛନ୍ତି ଉପନ୍ୟାସଟିରୁ । ଯଥା- ଗାୟତ୍ରୀର ରୂପବର୍ଣ୍ଣନା, ଛୋଟକାପ୍ରସି ର ବର୍ଣ୍ଣନା, ଅମିତାର ରୂପ

ବର୍ଣ୍ଣନା, ଦଣ୍ଡକାରଣ୍ୟର ବର୍ଣ୍ଣନା, ମଣିଷର ବର୍ବରତାର ବର୍ଣ୍ଣନା ଓ ପାରିପାର୍ଶ୍ୱିକ ପ୍ରକୃତିର ବର୍ଣ୍ଣନା । ଏହି ସବୁ ବର୍ଣ୍ଣନା କାହ୍ନୁଚରଣ କିଭଳି ଭାବରେ ସରଳ ଓ ଅତ୍ୟନ୍ତ ମାର୍ମିକ ଭାଷାରେ କରିଛନ୍ତି, ତାକୁ ଉଦ୍ଧାର କରିଛନ୍ତି ପ୍ରଫେସର ଶତପଥୀ । ଏହି ସବୁ ପାରାଗ୍ରାଫ୍ ମାନଙ୍କୁ ସମଗ୍ର ଉପନ୍ୟାସଟିର କଳେବର ମଧ୍ୟରେ ରହିଥିବା ଅତ୍ୟନ୍ତ କୋମଳ ଓ ସମ୍ବେଦନଶୀଳ ଅଙ୍ଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହାକୁ ଚିହ୍ନି ଚିହ୍ନେଇବା ଜଣେ ସଚ୍ଚା ସମୀକ୍ଷକର ଦାୟିତ୍ୱ । ପ୍ରଫେସର ଶତପଥୀ ହିଁ ଏହିଭଳି ଜଣେ ସଚ୍ଚା ସମୀକ୍ଷକ, ଯିଏକି ଏହି ଦାୟିତ୍ୱକୁ ନିର୍ବାହ କରିଛନ୍ତି ।

ପୁଣି ଚରିତ୍ରମାନଙ୍କର ମାନସିକ ପ୍ରତିକ୍ରିୟା ଉପନ୍ୟାସଟିକୁ ଏକ ମନସ୍ତାତ୍ତ୍ୱିକ ସଫଳତା ଆଣି ଦେଇଛି । ପ୍ରକୃତରେ ଗୋଟେ ଉପନ୍ୟାସର ସଫଳତା ଏହି ମାନସିକ ଦ୍ୱନ୍ଦ୍ୱକୁ ନେଇ ସମ୍ଭବ ହୋଇଥାଏ । କାହ୍ନୁଚରଣଙ୍କର ପ୍ରାୟ ସବୁ ଉପନ୍ୟାସରେ ମଣିଷ ମନର ଦ୍ୱନ୍ଦ୍ୱ ଓ ସଂଘାତ, କ୍ରିୟା ଓ ପ୍ରତିକ୍ରିୟା ଅତ୍ୟନ୍ତ ନିଖୁଣ ଭାବରେ ରୂପାୟିତ ହୋଇଛି । ଏହି ଉପନ୍ୟାସଟି ମଧ୍ୟ ସେହିଭଳି ମଣିଷ ମନର ଚିତ୍ର ବହନ କରିଛି । ପ୍ରଫେସର ଶତପଥୀଙ୍କ ବିଚାରରେ "ମନସ୍ତାତ୍ତ୍ୱିକତା ଓ ଅତିବାସ୍ତବବାଦୀ ଦୃଷ୍ଟିକୋଣରୁ ଏ ସବୁ ଖୁବ୍ ଆଧୁନିକ ଓ ବିଜ୍ଞାନ ମତସମ୍ମତ ମନେହୁଏ ।" ଏହି ଆଧୁନିକ ଓ ବିଜ୍ଞାନସମ୍ମତ ମନସ୍ତାତ୍ତ୍ୱିକ ଚିତ୍ରକୁ କେତୋଟି ଉଦାହରଣ ମାଧ୍ୟମରେ ପ୍ରଫେସର ଶତପଥୀ ବୁଝାଇବାକୁ ଚେଷ୍ଟା କରିଛନ୍ତି, ଯାହା କାହ୍ନୁଚରଣଙ୍କର ମୌଳିକତାର ହିଁ ପରିଚୟ ବହନ କରେ । ଏଥିରେ ରହିଛି "ଅଧରମଣ୍ଡଳଙ୍କର ମାନସିକ ପ୍ରତିକ୍ରିୟା, ବିପିନ କର୍ମକାରଙ୍କ ଆତ୍ମସମୀକ୍ଷା, ଗାୟତ୍ରୀର ମା' ବନଜାଦେବୀଙ୍କର ନୈଷ୍ଠିକତା, ଅଧମ ଚଣ୍ଡାଳ ବା ଅଧରମଣ୍ଡଳଙ୍କର ଭାବନାର ପରିବର୍ତ୍ତନ, ଉଷାରାଣୀଙ୍କ ଚରିତ୍ରର ଦ୍ୱୈତାଭାସ ।" ଏହି ସବୁ ବ୍ୟତୀତ ନାୟକ ନାୟିକାଙ୍କ ଚରିତ୍ର ଏବଂ ଚରିତ୍ରମାନଙ୍କର ଅସହାୟତା କିଭଳି ଭାବରେ ଉପନ୍ୟାସଟିକୁ ସାର୍ଥକ କରିଛି ତା'ର ସୁନ୍ଦର ଉଦାହରଣ ପ୍ରଦାନ କରିଛନ୍ତି ପ୍ରଫେସର ଶତପଥୀ । କେଉଁଭଳି ଭାବରେ କାବ୍ୟିକ ଭାଷା ପ୍ରୟୋଗ କରି ଅତ୍ୟନ୍ତ ହୃଦୟଛୁଆଁ ଶୈଳୀ ଅବଲମ୍ବନ କରି କାହ୍ନୁଚରଣ ଉପନ୍ୟାସଟିକୁ ସଫଳ ରୂପ ଦେଇପାରିଛନ୍ତି, ତା'ର ବିଚାର କରିଛନ୍ତି ପ୍ରଫେସର ଶତପଥୀ । ପ୍ରଫେସର ଶତପଥୀ କହିଛନ୍ତି ଯେ "କାହ୍ନୁଚରଣ ନିଶ୍ଚିତ ଭାବରେ ଜଣେ ସମାଜ ସଚେତନ ଲେଖକ । ସମାଜର ଚଉହଦ୍ଦୀକୁ ଅତିକ୍ରମ କରିଯିବା ତାଙ୍କ ଉପନ୍ୟାସର ନାୟକ ଓ ନାୟିକା ପକ୍ଷରେ ଏକ ଅପରିକଳ୍ପନୀୟ ବ୍ୟାପାର ଭାବେ ବିବେଚିତ ହୁଏ । ତେଣୁ ପ୍ରେମ ସବୁବେଳେ ସଂଯତ, ସୁପରିକଳ୍ପିତ ଓ ହୃଦୟଛୁଆଁ ।" ପ୍ରଫେସର ଶତପଥୀ ନିଜର ଏହି ବିଚାରକୁ ପ୍ରତିଷ୍ଠା କରିବା ପାଇଁ ଅନେକ ବର୍ଷ ପରେ ଅଧରମଣ୍ଡଳଙ୍କ ସହିତ ଅନିମାଙ୍କର ମିଳନ ମୁହୂର୍ତ୍ତ କିପରି ଥିଲା, ତା'ର ଗୋଟିଏ ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି । ଏହି ଦୃଷ୍ଟାନ୍ତଟି ଉପନ୍ୟାସର ଗୋଟିଏ ଛୋଟ ଅଂଶ । ସେହି ଅଂଶଟିକୁ ଏଠାରେ ଉଦ୍ଧାର କରି ପ୍ରଫେସର

ଶତପଥୀଙ୍କ ସମୀକ୍ଷାଦୃଷ୍ଟିକୁ ସୂଚୀତ କରୁଛି । "ଅଧରମଣ୍ଡଳ ଅନିମାଙ୍କର କେଶ ସଜାଡୁଣୁ ମୁହଁଟି ଟେକି ଧରିଲେ । ସତେକି ସେ ତାଙ୍କର ନବୋଢ଼ା ପ୍ରେୟସୀ । ନିଃଶ୍ୱାସ ଥରାଇ ଥରାଇ ଲୋତକସିକ୍ତ ଗଣ୍ଡରେ ଚୁମ୍ବନ କଲେ । ଧୀରେ ଧୀରେ କହିଲେ, ଅନିମା ଆମ ଜୀବନର ଦୁଃଖର ତାମସୀ ରାତ୍ରି ଆଉ ରହିବ ନାହିଁ । ଏତେ ପ୍ରାଣୀଙ୍କୁ ଆଶ୍ରୟ ଦେଲ । ତୁମର ସ୍ନେହର ବନ୍ଧନରେ ବାନ୍ଧି ନିଜର କଲ । ମୁଁ ତୁମର ସ୍ୱାମୀ, ମୁଁ ଅଧମ, ମୋତେ ବି ତୁମର କୁଡ଼ିଆରେ ଆଶ୍ରା ଦିଅ । ତୁମ କରୁଣାର ଭାଗୀ କର ।" ଏହା ଉପନ୍ୟାସର ମୂଳଲେଖା । ଏଥିରେ କାହ୍ନୁଚରଣଙ୍କର ହୃଦୟର ଅନୁଭବ ଘଟଣା ଓ ଚରିତ୍ରମାନଙ୍କ ମାଧ୍ୟମରେ ପ୍ରତିଫଳିତ ହୋଇଛି । ଏହାକୁ ହିଁ ପ୍ରଫେସର ଶତପଥୀ ଉଦ୍ଧାର କରିଛନ୍ତି ଏକ ସମୀକ୍ଷକର ରସସ୍ନିଗ୍ଧ ହୃଦୟ ନେଇ ।

ବାସ୍ତବରେ ଉପନ୍ୟାସଟି ଏକ ଜାତୀୟ ସଂକଟର ପୃଷ୍ଠଭୂମିରେ ରଚିତ ହୋଇଛି । ପ୍ରଥମରୁ ଶତପଥୀ ଏହାହିଁ କହିଛନ୍ତି । ମଣିଷ ସଭ୍ୟତାର ଏକ ଭୟାବହ ବିପର୍ଯ୍ୟୟ ଉପରେ ଏହା ଲିଖିତ । ଭାରତ ସ୍ୱାଧୀନତା ପାଇବା ପରେ ଉଭୟ ପୂର୍ବ-ପାକିସ୍ଥାନ ଓ ପଶ୍ଚିମ ପାକିସ୍ଥାନରେ ଯେଉଁ ସାଂପ୍ରଦାୟିକ ଦଙ୍ଗା, ରକ୍ତପାତ ଏବଂ ଏକତରଫା ଆକ୍ରମଣ ହୋଇଥିଲା, ଯେଉଁଥିରେ ବହୁ ହିନ୍ଦୁ ପୂର୍ବ-ପାକିସ୍ଥାନ ଛାଡ଼ି ଭାରତକୁ ପଳାଇ ଆସିବାକୁ ବାଧ ହୋଇଥିଲେ, ତାହାରି ପୃଷ୍ଠଭୂମି ଉପରେ ଉପନ୍ୟାସଟି ରଚିତ ହୋଇଛି । ବର୍ବର ସାଂପ୍ରଦାୟିକ ଦଙ୍ଗାକାରୀ ଅମଣିଷମାନେ ଶହ ଶହ ସଂଖ୍ୟାରେ ହିନ୍ଦୁଙ୍କୁ ହତ୍ୟା କରିବା ସହିତ ସୁନ୍ଦରୀ ଓ ତରୁଣୀ ନାରୀମାନଙ୍କୁ ଧର୍ଷଣ କରିବା ସହିତ ନିପାତ କରିଥିଲେ । ଅନେକେ ଆତ୍ମହତ୍ୟା କରିବାକୁ ବାଧ ହୋଇଥିଲେ । ଆଉ ଯେଉଁମାନେ ଭାଗ୍ୟବଳରୁ ବର୍ଞ୍ଚି ଯାଇଥିଲେ ସେମାନେ ଭାରତର ସୀମା ଭିତରକୁ ଚାଲି ଆସିଥିଲେ । ସେମାନେ ଭାରତ ସରକାରଙ୍କର ଆତିଥେୟତାରୁ ନୂତନ ଜୀବନ ବଞ୍ଚିବାର ସୁଯୋଗ ପାଇଲେ ।

ଏହି ପୃଷ୍ଠଭୂମିଟି ଉପରେ ଉପନ୍ୟାସଟି ଆରମ୍ଭ ହୋଇଛି ବୋଲି ଉପକ୍ରମଣିକା ଦେଇ ପ୍ରଫେସର ଶତପଥୀ ତାଙ୍କର ବୀକ୍ଷାଟି ପ୍ରସ୍ତୁତ କରିଛନ୍ତି । ଏହିଭଳି କେତୋଟି ପରିବାରର ଦୁର୍ବାର ଜୀବନଯାତ୍ରାକୁ ନେଇ ଏ ଉପନ୍ୟାସ ସଂଗଠିତ ହୋଇଛି ବୋଲି ପ୍ରଫେସର ଶତପଥୀ ଉଲ୍ଲେଖ କରିଛନ୍ତି । ଶତପଥୀଙ୍କର ଏହି 'ଦୁର୍ବାର ଜୀବନଯାତ୍ରା' ପଦଟି କେତେ ଗଭୀର ଅନୁଭବର ଅଭିବ୍ୟକ୍ତି ବହନ କରୁଛି, ତାହା ବାସ୍ତବରେ ବିଚାରଯୋଗ୍ୟ ।

ମୂଳ କାହାଣୀଟି ଏହିଭଳି ଗୋଟିଏ ପରିବାରକୁ ନେଇ ଆରମ୍ଭ ହୋଇଛି । ପୂର୍ବ-ପାକିସ୍ଥାନରୁ ଭାରତବର୍ଷକୁ ଚାଲିଆସିଥିବା ଗୋଟିଏ ପରିବାର ହେଉଛି ଅଧରମଣ୍ଡଳଙ୍କର ପରିବାର । ଏହି ପରିବାରକୁ କେନ୍ଦ୍ରକରି ଉପନ୍ୟାସଟି ରଚିତ ହୋଇଥିଲେ ମଧ୍ୟ ଆହୁରି ଅନେକ ପରିବାର ଏହା ସହ ସଂଯୋଜିତ ହୋଇଛନ୍ତି । ଭାରତବର୍ଷକୁ ଚାଲିଆସି ଓଡ଼ିଶାର

ପଶ୍ଚିମରେ ଅବସ୍ଥିତ ମାଲ୍‌କାନାଗିରିର ତମସା ନଦୀ କୂଳରେ ଅସ୍ଥାୟୀ ବାସଗୃହରେ ରହି ଏମାନେ ନିଜ ନିଜର ଦୁଃଖ, ଦୁର୍ଭାଗ୍ୟ ଓ ବିଡ଼ମ୍ବନାକୁ ଆଦରି ଜୀବନ ଆରମ୍ଭ କରିଛନ୍ତି । ଏହି ମୂଳ କଥାବସ୍ତୁଟି ହିଁ ଘଟଣା ପ୍ରବାହରେ ଉପନ୍ୟାସର ରୂପ ନେଇଛି । ଅନେକ କଥାନ୍ତର, ଦୀର୍ଘ ସମୟର ବର୍ଣ୍ଣନା, ଅନେକ ଚରିତ୍ର ଓ ଘଟଣା, ପ୍ରକୃତି ଓ ମଣିଷର ବାହ୍ୟ ଓ ଅନ୍ତଃରୂପର ବର୍ଣ୍ଣନା, ମଣିଷର ଦୁଃଖ, ଦୁର୍ଭାଗ୍ୟ, ବିଡ଼ମ୍ବନା, ଅସହାୟତା, ପ୍ରେମ, ପ୍ରତାରଣା, ଠକାମୀ, ଭଣ୍ଡାମୀ, ପ୍ରବଞ୍ଚନା, ଆର୍ତ୍ତି, ଆକୁଳତା, ସୁଖ, ସୌଭାଗ୍ୟ ଆଦି ଅନେକ ଅନେକ ଉପାଦାନ ବହନ କରି ଉପନ୍ୟାସଟି ପୂର୍ଣ୍ଣାଙ୍ଗ ହୋଇଛି । ପୂର୍ଣ୍ଣାଙ୍ଗ ହୋଇ ମଧ୍ୟ ତଥାପି ଅପୂର୍ଣ୍ଣ ହୋଇ ରହିଛି ବୋଲି ପ୍ରଫେସର ଶତପଥୀ ମତବ୍ୟକ୍ତ କରିଛନ୍ତି । ଏହା ତାଙ୍କର ମୌଳିକ ସମୀକ୍ଷାଦୃଷ୍ଟିର ହିଁ ପରିଚ଼ୟ ବହନ କରେ ।

## ।। ୩ ।।

ପ୍ରଫେସର ଶତପଥୀଙ୍କର ଦ୍ୱିତୀୟ 'ବୀକ୍ଷା ଓ ସମୀକ୍ଷା'ଟି ପ୍ରସ୍ତୁତ ହୋଇଛି ଓଡ଼ିଶାର ପ୍ରଖ୍ୟାତ କଥାକାର ଗୋପୀନାଥ ମହାନ୍ତିଙ୍କ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଉପନ୍ୟାସ 'ମାଟିମଟାଳ' ଉପରେ । ଏହା ପାଖାପାଖି ହଜାର ପୃଷ୍ଠାର ଏକ ଉପନ୍ୟାସ । ନିର୍ଦ୍ୱନ୍ଦ୍ୱରେ ଏହାକୁ ଏକ କ୍ରାନ୍ତିକାରୀ ଉପନ୍ୟାସ ଭାବରେ ଗ୍ରହଣ କରିବାରେ ସାମାନ୍ୟତମ ଦ୍ୱିଧା ବି କାହାର ନାହିଁ । ଏହା କେବଳ ଓଡ଼ିଶାର ନୁହେଁ, ସମଗ୍ର ବିଶ୍ୱସାହିତ୍ୟର ଏକ କାଳଜୟୀ ରଚ଼ନା । ପ୍ରଫେସର ଶତପଥୀ ଏହିପରି ଏକ ଶ୍ରେଷ୍ଠ କୃତି ଉପରେ ନିଜର ସମୀକ୍ଷାତ୍ମକ ବିଚ଼ାରଧାରା ପ୍ରୟୋଗ କରି ଏକ ମହତ୍ତମ ଦାୟିତ୍ୱବୋଧର ପରିଚ଼ୟ ଦେଇଛନ୍ତି । ଏହା ଏକ ଆୟାସସାଧ୍ୟ କାର୍ଯ୍ୟ । ଏକାଧିକଥର ଗୋଟିଏ ବୃହଦାକାର ଗ୍ରନ୍ଥକୁ ପାଠ କରି ତା'ର ସମୀକ୍ଷା ପ୍ରସ୍ତୁତ କରିବା ଗୋଟେ ଅସୀମ ଧୈର୍ଯ୍ୟର ପରୀକ୍ଷା କହିଲେ ଅତ୍ୟୁକ୍ତି ହେବନାହିଁ । ଜଣେ ସୁ-ସମୀକ୍ଷକ ନିକଟରେ ଏହି ଧୈର୍ଯ୍ୟ ରହିବା ଏକାନ୍ତ ଅପରିହାର୍ଯ୍ୟ । ପ୍ରଫେସର ଶତପଥୀ ଏହିଭଳି ଜଣେ ଧୈର୍ଯ୍ୟବାନ୍ ଓ ନିଷ୍ଠାପର ସମୀକ୍ଷକ । ସେ ଏହି ଉପନ୍ୟାସଟିକୁ ଅତ୍ୟନ୍ତ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚ଼ାର କରି ସମୀକ୍ଷାଟି ପ୍ରସ୍ତୁତ କରିଛନ୍ତି । ଦୁଇବର୍ଷରୁ ଅଧିକ କାଳ ହେଉଛି ଏହି ଉପନ୍ୟାସର ଅବଧି । କଥାନ୍ତର ମଧ୍ୟ ଏହାର ଅନ୍ୟତମ ପ୍ରଧାନ ଉପାଦାନ । ଏଥିରେ ପାଞ୍ଚୋଟି କଥାନ୍ତର ରହିଛି । ଏତଦ୍‌ବ୍ୟତୀତ ବର୍ଣ୍ଣନାତ୍ମକତା ଏହାର ଅନ୍ୟତମ ପ୍ରମୁଖ ଉପାଦାନ । ଏହି ତିନୋଟି ଉପାଦାନକୁ ବିଚ଼ାରର ମାନଦଣ୍ଡ ଭାବରେ ଗ୍ରହଣ କରି ପ୍ରଫେସର ଶତପଥୀ ଉପନ୍ୟାସଟିର ଆକଳନ କରିଛନ୍ତି । ତାଙ୍କ ବିଚ଼ାରରେ "ଦୀର୍ଘକାଳକୁ କୁକ୍ଷୀଗତ କରିଥିବାରୁ ଏହାର କଳେବର ସ୍ଫୀତ ଓ ନାନାଦି ପ୍ରସଙ୍ଗର ଅବତାରଣାରେ ଉପନ୍ୟାସଟି ବିଚ଼ିତ୍ରବର୍ଣ୍ଣା ହେବାକୁ ବାଧ୍ୟ ।"

ପୁଣି ଶତପଥୀ କଥାନ୍ତରମାନଙ୍କୁ ବିଚାରକରି କହିଛନ୍ତି ଯେ "ଏସବୁ କଥାନ୍ତର ନଥିଲେ ଉପନ୍ୟାସର ମୂଳ ଉପାଦାନରେ କୌଣସି ବ୍ୟତିକ୍ରମ ଆସିନଥାନ୍ତା, କିନ୍ତୁ ତାହା ମେଗା ଉପନ୍ୟାସଭାବେ ଚିହ୍ନିତ ହୋଇଥାନ୍ତା କି ନାହିଁ ବହୁ ତର୍କର ଅପେକ୍ଷା ରଖେ ।" ଏଠି ନିର୍ଦ୍ଦିଷ୍ଟ ଭାବରେ କୌଣସି ନିର୍ଣ୍ଣୟ ରଖିନାହାନ୍ତି ଡ. ଶତପଥୀ । କଥାନ୍ତରମାନ ଉପନ୍ୟାସକୁ ସ୍ଫୀତ କରିଥାଏ ଏବଂ ଏହି କଥାନ୍ତରମାନ ମୂଳକଥା ସହିତ ସଂପର୍କ ରଖିଲେ ନିଶ୍ଚିତ ଭାବରେ ଉପନ୍ୟାସଟି ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇପାରନ୍ତା । ମୂଳ କଥା ସହିତ ସଂପର୍କଚ୍ୟୁତ ହେବା କାରଣରୁ ପ୍ରଫେସର ଶତପଥୀ ଏପରି ମନ୍ତବ୍ୟ ପ୍ରଦାନ କରିଛନ୍ତି । ତେଣୁ ସେ କହନ୍ତି "ଉପନ୍ୟାସର ଆରମ୍ଭରେ ଏ ସବୁ କଥା ପରିମିତତା ମଧ୍ୟରେ କୁହାଯାଇଥିଲେ ଅଧିକ ଗ୍ରହଣୀୟ ହୋଇଥାନ୍ତା ।"

ଏହାପରେ ଡ. ଶତପଥୀ ବର୍ଣ୍ଣନାତ୍ମକତା ଉପରେ ନିଜର ବିଚାର ଉପସ୍ଥାପନ କରିଛନ୍ତି । ଏହାକୁ ମେଗା ଉପନ୍ୟାସର ଏକ ଅନ୍ୟତମ ବୈଭବିକ ଗୁଣ ବୋଲି ସେ ମତବ୍ୟକ୍ତ କରିଛନ୍ତି । ତାଙ୍କ ମତରେ "ବର୍ଣ୍ଣନା ମଧ୍ୟରେ ଫୁଟି ଉଠେ ଲେଖକର ଧୀ, ପ୍ରଜ୍ଞା, କାବ୍ୟିକତା ଓ ଆବେଗିକତା । ଏ ଉପନ୍ୟାସରେ ସବୁ ସ୍ତରରେ ବର୍ଣ୍ଣନା ବେଳେ ଗୋପୀନାଥ ଅଧିକ ଦାର୍ଶନିକ ହୋଇ ଉଠିଛନ୍ତି । ଏ ସଂପର୍କରେ ଉଦାହରଣ ଦେଲେ କେତେ ଶହ ପୃଷ୍ଠା ବ୍ୟାପୀ ତାହା ମାଡ଼ି ରହିବ- ଏହାକୁ ଉପଲବ୍ଧି କରିବାକୁ ରସିକ ପାଠକତାର ଆବଶ୍ୟକତା ଅଧିକ । ଏ ବର୍ଣ୍ଣନାତ୍ମକତା କେତେବେଳେ ବାସ୍ତବ ତ କେତେବେଳେ ଆଣୁବୀକ୍ଷଣିକ, କେତେବେଳେ ଦାର୍ଶନିକ ଓ କେତେବେଳେ କାବ୍ୟିକ । ମୋ ବିଚାରରେ ମେଗା ଉପନ୍ୟାସର ଶ୍ରେଷ୍ଠ ସମ୍ବଳଭାବେ ଏଇ ବର୍ଣ୍ଣନାତ୍ମକତାକୁ ହିଁ ଗ୍ରହଣ କରାଯିବ ।" ତେଣୁ ପ୍ରଫେସର ଶତପଥୀ ଏହି ବର୍ଣ୍ଣନାତ୍ମକତାକୁ ଗୁରୁତ୍ୱ ଦେଇ ସମୀକ୍ଷାର ଧାରାକୁ ଆଗେଇ ନେଇଛନ୍ତି । ଗୋପୀନାଥଙ୍କ ଉପନ୍ୟାସ କଳା, ଭାଷାଶୈଳୀ, ମଣିଷ ମନର ଚିତ୍ର କିପରି ଭାବରେ ଅତ୍ୟନ୍ତ ଗ୍ରାହ୍ୟ ହୋଇଉଠିଛି, ସେ ତା'ର ବିଚାର କରିଛନ୍ତି । ସେ କହନ୍ତି "ସବୁଠାରେ ଏ ପ୍ରକ୍ରିୟା ଗୋପୀନାଥଙ୍କ କଥା-ନିର୍ମାଣ-କୌଶଳର ଯାଦୁକାରୀତାକୁ ହିଁ ପ୍ରତିପନ୍ନ କରିଛି । ଗେଣ୍ଡା, ଜିଆ, ପିମ୍ପୁଡ଼ି, ଜାତି ଜାତି ଚଢ଼େଇ, କୁକୁର, ଗଛବୃଛ, ଆକାଶ, ନଦୀ, ବଢ଼ି - ଏସବୁ ଦୃଶ୍ୟ ଭିତରେ ସେ ଜୀବନ ସଂଚାର କରିଛନ୍ତି । ପୃଷ୍ଠା ପୃଷ୍ଠା ବ୍ୟାପୀ ଏ ବର୍ଣ୍ଣନା ପାଠକକୁ ଉତ୍ପୀଡ଼ିତ କରେ ନାହିଁ, କ୍ଲାନ୍ତି ଆଣେ ନାହିଁ । × × × ସବୁଠାରେ ବର୍ଣ୍ଣନା, ଗଭୀର ଅନୁଭବର ଭାଷା, ଅନ୍ତରଙ୍ଗ ଉପଲବ୍ଧିରେ ଏ ବର୍ଣ୍ଣନା ଜାରିତ ।"

ଏହି ବର୍ଣ୍ଣନାକାରୀତାକୁ ଉଦାହରଣ ମାଧ୍ୟମରେ ପାଠକମାନଙ୍କ ଉପଲବ୍ଧି ନିମନ୍ତେ ସେ ଉଦ୍ଧାର କରିଛନ୍ତି । ଗୋଟିଏ ମାତ୍ର କ୍ଷୁଦ୍ର ଦୃଷ୍ଟାନ୍ତ କେବଳ ଏଠି ପ୍ରଦାନ କରାଯିବା ଉଚିତ୍ ବୋଲି ଭାବୁଛି । ଗୋପୀନାଥ ୪୧୭ ପୃଷ୍ଠାରେ ଗୋଟିଏ ବାକ୍ୟ ଲେଖିଛନ୍ତି-

"ଆଉ ବସନ୍ତରା ହାଣ୍ଡିରୁ ପାଣି ନିଗିଡ଼ିଲା ପରି ଶୂନ୍ୟ ଉପରେ ସମୟ ବୋହି ପଡୁଚି ଥପ୍ ଥପ୍ ହୋଇ, ନିଗିଡ଼ିଲାଗିଛି, ବୋହିଯାଉଛି ।" ଏହି ବାକ୍ୟଟିକୁ ଦୃଷ୍ଟାନ୍ତ ସ୍ୱରୂପ ଉଦ୍ଧାର କରି ପ୍ରଫେସର ଶତପଥୀ କହନ୍ତି- "ଚମତ୍କାର ରୂପକଳ୍ପଟିଏ ନୁହେଁ କି ?"

ପ୍ରକୃତରେ ଏହିଭଳି ଅସଂଖ୍ୟ ଚମତ୍କାର ରୂପକଳ୍ପ ଉପନ୍ୟାସର ଅଙ୍ଗ ପ୍ରତ୍ୟଙ୍ଗରେ ପୂରି ରହିଛି । ଜଣେ ରସଗ୍ରାହୀ ପାଠକ ଭାବରେ ଡ. ଶତପଥୀ ଏହାକୁ ଆସ୍ୱାଦନ କରିଛନ୍ତି । ସେ ହିଁ ଜାଣନ୍ତି ଉପନ୍ୟାସ ପାଠର ରସାସ୍ୱାଦନର ମୂଲ୍ୟ । ତାଙ୍କ ସମୀକ୍ଷାରୁ ହିଁ ପ୍ରମାଣିତ ହେଉଛି ସେ କେତେ ଆଗ୍ରହ ଓ ଆନନ୍ଦର ସହିତ ଉପନ୍ୟାସଟିକୁ ପାଠ କରି ତାହାର ସମୀକ୍ଷାଟି ପ୍ରସ୍ତୁତ କରିଛନ୍ତି । ଏଥିରେ ଥିବା ଆନ୍ତରୀଣତା, ସାଂକେତିକ ଭାଷାର ପ୍ରୟୋଗ, କାବ୍ୟିକ ଭାଷାର ପ୍ରୟୋଗ, ଗ୍ରାମ୍ୟ ଓ ଅଭିଜାତ ଭାଷାର ପ୍ରୟୋଗ, ଦାର୍ଶନିକ ଓ ମନ୍ତ୍ରଭାଷାର ପ୍ରୟୋଗ କିଭଳି ଭାବରେ ଉପନ୍ୟାସଟିକୁ ଏକ ସମ୍ଭ୍ରାନ୍ତ ଓ ଉଚ୍ଚକୋଟୀର ସୃଷ୍ଟିରେ ପରିଣତ କରିପାରିଛି ପ୍ରଫେସର ଶତପଥୀ ତାଙ୍କର ସମୀକ୍ଷାରେ ତାହାହିଁ ଉପସ୍ଥାପନ କରିଛନ୍ତି ।

ଶେଷରେ ଗୋଟିଏ ଚମତ୍କାର କଥା କରିଛନ୍ତି ସମୀକ୍ଷକ ଡ. ଶତପଥୀ । ଏହା ତାଙ୍କର ଗୋଟେ ସ୍ୱତଃ ଆବେଗିକ କାର୍ଯ୍ୟ । ଏହା ଉପନ୍ୟାସଟିର ପ୍ରଭାବରୁ ବା ଆଚ୍ଛନ୍ନତାରୁ ଘଟିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେପରି ନିଜେ ଗୋପୀନାଥ ମହାନ୍ତି ତାଙ୍କର ମତ ଦେଇ କାଳେସୀ ଲାଗିବା ପ୍ରସଂଗଟିକୁ ତାଙ୍କର 'କଳାଶକ୍ତି' ପ୍ରବନ୍ଧରେ ଅବତାରଣା କରିଛନ୍ତି, ସେଇ କାଳେସୀ ଲାଗିବାର ଶକ୍ତିରୁ କିଛି ଛିଟିକି ପଡ଼ିଛି ପ୍ରଫେସର ଶତପଥୀଙ୍କ ଉପରେ । ସେ ନିଜର ଉଦ୍‌ଗତ ଭାବୋଚ୍ଛ୍ୱାସକୁ ରୋକିନପାରି ଦିବଂଗତ ଆତ୍ମାଠୁ ଅନୁମତି ଆଣି ସେ ଏପରି କରିଛନ୍ତି । ଅର୍ଥାତ୍ ଗୋଟିଏ ପାରାଗ୍ରାଫ୍ ନିଜ ଭିତରୁ ସୃଷ୍ଟି କରି ସିଏ ସଂଯୋଜିତ କରିଦେଇଛନ୍ତି । ଯେଉଁଠି ଉପନ୍ୟାସଟି ସରିଛି ସେଇଠି ପାଠକମାନଙ୍କର ଗୋଟେ ଉଦ୍‌ଗତ ଆକାଂକ୍ଷା ରହିଯାଉଛି । ତାହା ପୂର୍ଣ୍ଣତା ଲାଭ କରିପାରୁନାହିଁ । ତେଣୁ ରବି ଛବିଙ୍କୁ ଶେଷରେ ମିଶେଇ ଦେଇଛନ୍ତି କେଇ ମୁହୂର୍ତ୍ତ ପାଇଁ । ସତେଯେମିତି ସେ କହିବାକୁ ଚାହାନ୍ତି, ହେ ଶ୍ରେଷ୍ଠ ସାଧକ ! ଏତେବଡ଼ ସାରସ୍ୱତ କୋଣାର୍କ ନିର୍ମାଣ କଲ, ଏତିକି ଟିକିଏ ପୂର୍ଣ୍ଣତା କାହିଁକି ଛାଡ଼ିଗଲ ! ମୁଁ ସେଇ ପୂର୍ଣ୍ଣତା ଟିକକ ଆପଣଙ୍କ ପ୍ରତିନିଧି ସ୍ୱରୂପ ଟାଣିଦେବାରେ ଟିକିଏ ଧୃଷ୍ଟତା କରୁଛି । ଦୋଷ ହେଲେ କ୍ଷମା ଦେବ ।

## || ୪ ||

ପରବର୍ତ୍ତୀ ସମୀକ୍ଷାଟି ପ୍ରଖ୍ୟାତ ଲେଖିକା ଜ୍ଞାନପୀଠ ବିଜୟିନୀ ପ୍ରତିଭା ରାୟଙ୍କ ମେଗା ଉପନ୍ୟାସ 'ମଗ୍ନମାଟି' ଉପରେ ଆଧାରିତ । ଏଇଠି ଗୋଟିଏ କଥା ଜାଣିରଖିବା ଉଚିତ୍ ଯେ ଉପନ୍ୟାସଗୁଡ଼ିକର ବିଷୟବସ୍ତୁକୁ ପ୍ରଫେସର ଶତପଥୀ ନିଜ ଭାଷାରେ ସଂକ୍ଷିପ୍ତ ରୂପ କେବଳ ଦେଇନାହାନ୍ତି, ତା'ରି ଭିତରେ ମଝିରେ ମଝିରେ ସେ ତାଙ୍କର ସମୀକ୍ଷା ଦୃଷ୍ଟିଟିକୁ

ବିଚ୍ଛୁରିତ କରି ରଖିଛନ୍ତି । ସେଥିପାଇଁ ବୋଧେ ସିଏ ଲେଖାଗୁଡ଼ିକର ନାମକରଣ କରିଛନ୍ତି 'ବୀକ୍ଷା ଓ ସମୀକ୍ଷା' । ତେଣୁ ଆମୂଳଚୂଳ ଲେଖାଗୁଡ଼ିକ ପାଠ କଲେ ହିଁ ଲେଖକଙ୍କର ସମୀକ୍ଷା ଦୃଷ୍ଟିର ସମ୍ପୂର୍ଣ୍ଣ ସ୍ୱରୂପଟିକୁ ଜାଣିହେବ ।

ଏଠି 'ମଗ୍ନମାଟି' ଉପରେ ଲେଖକଙ୍କର ସମୀକ୍ଷାଦୃଷ୍ଟି ପୂର୍ବର ସମୀକ୍ଷାଦୃଷ୍ଟି ପରି ସେହି ତିନୋଟି ମୁଖ୍ୟ ଉପାଦାନକୁ ନେଇ ହିଁ କରାଯାଇଛି । ବର୍ଣ୍ଣନା, କଥାନ୍ତର ଓ ଉପନ୍ୟାସର କାଳ ଅବଧି । ଏହି ତିନୋଟି ଉପାଦାନ ହିଁ ମେଗା ଉପନ୍ୟାସକୁ ନିର୍ଣ୍ଣୟ କରିବାରେ ମୁଖ୍ୟ ମାନଦଣ୍ଡ । ଏହି ତିନୋଟି ପାଇଁ ହିଁ ଗୋଟେ ଉପନ୍ୟାସ ମେଗା ଉପନ୍ୟାସର ପରିଚୟ ବହନ କରିଥାଏ ।

ମଗ୍ନମାଟି ନିଶ୍ଚିତ ଭାବରେ ଗୋଟେ ମେଗା ଉପନ୍ୟାସ । ଏଥିରେ ସମୟର ଦୀର୍ଘତା ଅଛି । ବର୍ଣ୍ଣନାର ବାହୁଲ୍ୟ ଅଛି । ଏକାଧିକ କଥାନ୍ତର ରହିଛନ୍ତି । ପ୍ରଫେସର ଶତପଥୀ ଏହି ଉପନ୍ୟାସରେ କଥାନ୍ତର ମାନଙ୍କର ସଂଯୋଗକୁ ବିଚାର କରି ଦେଖିଛନ୍ତି ଯେ ଏହି କଥାନ୍ତରଗୁଡ଼ିକ ଅନେକ କ୍ଷେତ୍ରରେ ଉପନ୍ୟାସର ଦୀର୍ଘତା ବୃଦ୍ଧି କରିଛି କେବଳ । ଏ ସବୁ ନଥିଲେ ହୁଏତ ଉପନ୍ୟାସର କିଛି ବି କ୍ଷତି ହୋଇନଥାନ୍ତା । କିଛି କିଛି କଥାନ୍ତର ଅବଶ୍ୟ ଉପନ୍ୟାସର ତାତ୍ପର୍ଯ୍ୟ ବୃଦ୍ଧି କରିଥାନ୍ତି, ମାତ୍ର ଆଉ କିଛି କଥାନ୍ତର ଉପନ୍ୟାସର ମହତ୍ତ୍ୱ ହାନି କରିଥାନ୍ତି । ପକ୍ଷାନ୍ତରେ ଏହି କଥା ହିଁ ପ୍ରଫେସର ଶତପଥୀ କହିବାକୁ ଚାହାନ୍ତି । ତେଣୁ ମହତ୍ତ୍ୱ ହାନି କରୁଥିବା କଥାନ୍ତର ଏଭଳି ଉପନ୍ୟାସ ପାଇଁ ଅନାବଶ୍ୟକ । 'ମଗ୍ନମାଟି'ରେ ଏହିଭଳି କେତୋଟି କଥାନ୍ତର ଅଛି ଯାହାକୁ ପ୍ରଫେର ଶତପଥୀ ସୂଚାଇତ କରିଛନ୍ତି ତାଙ୍କର ଏହି ସମୀକ୍ଷା ଗ୍ରନ୍ଥରେ ।

ବର୍ଣ୍ଣନାତ୍ମକତା ଉପରେ ମଧ ଡକ୍ଟର ଶତପଥୀ କହନ୍ତି- "ବର୍ଣ୍ଣନାତ୍ମକତା ମେଗା ଉପନ୍ୟାସ ପାଇଁ ଆବଶ୍ୟକୀୟ ଉପାଦାନ ହେଲେବି ଆଧୁନିକ ପାଠକପାଇଁ କ୍ଳାନ୍ତିପ୍ରଦ ହୋଇପାରେ ।" ଏହି ଉକ୍ତି ମଧରେ ସେ ପ୍ରାଞ୍ଜଳ କରିଦେବାକୁ ଚାହାନ୍ତି ଯେ ଉପଯୋଗୀ ଏବଂ ହୃଦୟଗ୍ରାହୀ ବର୍ଣ୍ଣନା ମେଗା ଉପନ୍ୟାସର ଦୀର୍ଘତା ସତ୍ତ୍ୱେ ପାଠକର କ୍ଳାନ୍ତି ଦୂର କରିପାରେ । ଆମେ ନିଶ୍ଚିତଭାବରେ ଜାଣୁ ଯେ, ବର୍ତ୍ତମାନ ମେଗା ଉପନ୍ୟାସ ପଢ଼ିବାର ଧୈର୍ଯ୍ୟ କାହାରି ପାଖରେ ନାହିଁ । ବର୍ତ୍ତମାନର ସମୟ ଓ ପରିସ୍ଥିତି ମେଗା ଉପନ୍ୟାସର ପାଠକମାନଙ୍କ ସଂଖ୍ୟାକୁ ଭୟଙ୍କର ଭାବରେ ସୀମିତ କରିଦେଇଛି । ଏଥିପାଇଁ କାହାକୁ ଦାୟୀ କରାଯାଇ ପାରିବ ନାହିଁ । ଏହା ବର୍ତ୍ତମାନ ଆମ ସମୟର ବିଡ଼ମ୍ବନା । ଏଇମିତି ବର୍ତ୍ତମାନର କିଛି ଅବଶ୍ୟମ୍ଭାବୀ କାରଣରୁ ମେଗା ଉପନ୍ୟାସ ରଚନାର ଆବଶ୍ୟକତା ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ଦୀର୍ଘ ବର୍ଣ୍ଣନାର, ବହୁ କଥାନ୍ତରର, ଦୀର୍ଘ ସୂତ୍ରୀ କାହାଣୀର ପଠନ ପାଠନ ନିମନ୍ତେ ସମୟ ହିଁ ନାହିଁ । ସାହିତ୍ୟ ତେଣୁ ତା'ର କଳେବରରେ ବେଳକୁବେଳ ସଂକୀର୍ଣ୍ଣ ହୋଇଯିବାକୁ ବାଧ ହେଉଛି ।

ଗୋଟିଏ ମେଗା ଉପନ୍ୟାସ ବରାବର ଗୋଟିଏ ମହାକାବ୍ୟ ପରି । ଯଦି ପାଠକକୁ ବାନ୍ଧି ରଖିବାଭଳି ଶୈଳୀ, ଭାଷା, ଭାବ, ବିଷୟବସ୍ତୁ ଇତ୍ୟାଦି ନାନା ଦିଗରୁ ଉପନ୍ୟାସଟି ସୁ-ସଂଯୋଜିତ ହୋଇଥିବ ଏବଂ ତାହା ବର୍ତ୍ତମାନର ସମୟ ଓ ମଣିଷର ସ୍ପନ୍ଦନକୁ ସଂଜୀବିତ କରି ରଖୁଥିବ, ତେବେ ହୁଏତ ସେ ଉପନ୍ୟାସଟି ଦୀର୍ଘ ହେଲେବି ପାଠକ ନିମନ୍ତେ କ୍ଲାନ୍ତିପ୍ରଦ ହେବ ନାହିଁ ।

ଏହି ଦୃଷ୍ଟିରୁ 'ମଗ୍ନମାଟି' ଗୋଟେ କ୍ଲାନ୍ତିପ୍ରଦ ଉପନ୍ୟାସ ଯଦିଓ ନୁହେଁ, ଅନାବଶ୍ୟକ କିଛି କଥାନ୍ତର, କିଛି ବର୍ଣ୍ଣନା ଏଥିରେ ରହିଛି । ଯାହା ନ ରହିଥିଲେ ବହୁତ ଭଲ ହୋଇଥାନ୍ତା । ଏହି କଥା ପ୍ରଫେସର ଶତପଥୀ ତାଙ୍କର ସମୀକ୍ଷାରେ ଅନେକ ସ୍ଥାନରେ କହିଛନ୍ତି । ମାତ୍ର ତା'ରି ଭିତରେ କିଛି କିଛି ବର୍ଣ୍ଣନା ଏତେ ଉଚ୍ଚତାକୁ ସ୍ପର୍ଶ କରିଛି ଯେ ପ୍ରଫେସର ଶତପଥୀ ଖୁବ୍ ଖୁସି ହୋଇ ଯାଇଛନ୍ତି । ଏଭଳି ବର୍ଣ୍ଣନା ଖୁବ୍ ନିଆରା ଓ ଅଭିନବ ବୋଲି ସେ ସ୍ପଷ୍ଟ ଭାବରେ ମତବ୍ୟକ୍ତ କରିଛନ୍ତି । ନାୟିକା ଗିରିମାର ରୂପବର୍ଣ୍ଣନା ଏହିଭଳି ନିଆରା ବର୍ଣ୍ଣନା ମାନଙ୍କ ଭିତରୁ ଗୋଟିଏ ଦୃଷ୍ଟାନ୍ତ । ଏହି ଦୃଷ୍ଟାନ୍ତକୁ ଉଦ୍ଧାର କରି ପ୍ରଫେସର ଶତପଥୀ ବାକ୍ୟଟିଏ ଲେଖିଛନ୍ତି- "ଏପରି ରୂପବର୍ଣ୍ଣନା ଯେ ଏକାନ୍ତ ଅଭିନବ ଏଥିରେ ମତଦ୍ୱୈଧ ଥାଇନପାରେ ।" ସେ ପୁଣି କହିଛନ୍ତି- "ଲକ୍ଷ୍ୟ କରିବାର କଥା ନାରୀଟିଏର ରୂପବର୍ଣ୍ଣନାରେ ଆମ କବି ଓ ଔପନ୍ୟାସିକମାନେ ଯେଉଁ ଯେଉଁ ଉପମା ଓ ରୂପକ ପ୍ରୟୋଗ କରିଥାନ୍ତି- ସେ ସବୁ ଏଠି ନାହିଁ । ଏଠି କେଉଟ ଝିଅର ସାଦୃଶ୍ୟବୋଧ ପାଇଁ ତା' ଘରିପାଖର ମାଟିରେ ମଗ୍ନ ଉପମାମାନଙ୍କୁ ଖୋଜି ଖଞ୍ଜି ଦିଆଯାଇଛି । ତେଣୁ ସମୁଦ୍ର, ନଦୀ, ହୁଲିଡଙ୍ଗା, ମୀନମାଛ, କିଶଳୟ, ସମୁଦ୍ର ଶିଉଳି, ଭାଲିଆ ମଞ୍ଜି ପରି ଅବ୍ୟବହୃତ ଉପମାରାଜି ଏଠି ସୌନ୍ଦର୍ଯ୍ୟର ପ୍ରତୀକ ହୋଇ ଉଠିଛନ୍ତି । ମନ୍ଦ ହୋଇନି ଉପମା ବିନ୍ୟାସ । ବରଂ ଖୁବ୍ ନୂଆ ନୂଆ ଲାଗୁଛି ଏସବୁର ପ୍ରୟୋଗ ।" ପ୍ରତିଭା ରାୟଙ୍କ ରୂପବର୍ଣ୍ଣନାର ନିଆରାପଣକୁ ସମୀକ୍ଷକ ପ୍ରଫେସର ଶତପଥୀ ଏଠାରେ ଉପସ୍ଥାପନ କରିଛନ୍ତି । ଅଭୟପୁର ଗାଁର ଟିକିନିଖି ବର୍ଣ୍ଣନା ଉପନ୍ୟାସରେ କିଭଳି ପ୍ରାଣସଂଚାର କରିଛି ସେ କଥା ମଧ୍ୟ ସିଏ ପ୍ରାଞ୍ଜଳ କରିଦେଇଛନ୍ତି ।

ଉପନ୍ୟାସଟି ଓଡ଼ିଶାର ଏକ ପ୍ରାକୃତିକ ଦୁର୍ବିପାକ ଉପରେ ଆଧାରିତ । ଏହା ଗୋଟେ ଜାତିର ଭାଗ୍ୟ ବିପର୍ଯ୍ୟୟର କାଳ । ୧୯୯୯ ମସିହା ନଭେମ୍ବର ମାସର ପ୍ରଳୟଙ୍କରୀ ବାତ୍ୟା ଯେଉଁଭଳି ଭାବରେ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କୁ ପ୍ରଭାବିତ କରିଥିଲା, ଯେଉଁଭଳି ଲୋମହର୍ଷଣକାରୀ ଦୃଶ୍ୟ ସବୁ ସଂଘଟିତ ହୋଇଥିଲା, ସେଦିନର ଓଡ଼ିଶାର ଭାଗ୍ୟାକାଶରେ ତାହା ଥିଲା ଅତ୍ୟନ୍ତ ହୃଦୟବିଦାରକ ଓ ମର୍ମନ୍ତୁଦ । ମାଟିର ମଣିଷମାନଙ୍କର ପ୍ରକୃତି ସହିତ ଯେଉଁଭଳି ଜୀବନ ସଂଘର୍ଷ ଚାଲିଥିଲା, ଏ ସମଗ୍ର ମହାକାଳ ବକ୍ଷରେ ତାହା ଥିଲା ଗୋଟାଏ ଯୁଗାନ୍ତକାରୀ କରୁଣ କାହାଣୀ । ଏଇ କରୁଣ କାହାଣୀର ଚିତ୍ର ଅତ୍ୟନ୍ତ

ସ୍ପର୍ଶକାତର ଭାଷାରେ ଓ ଶୈଳୀରେ ଔପନ୍ୟାସିକା ଶ୍ରୀମତୀ ରାୟ ଯେଉଁଭଳି ଭାବରେ ଅବତାରଣା କରିଛନ୍ତି, ପ୍ରଫେସର ଶତପଥୀ ତାହାକୁ ନିଜର ସୂକ୍ଷ୍ମଦୃଷ୍ଟିରେ ଖୁବ୍ ପ୍ରଶଂସା କରିଛନ୍ତି । ସେ ଲେଖିଛନ୍ତି- "ଏ ବର୍ଣ୍ଣନା ଏତେ ବାସ୍ତବ ଓ ନିଛକ ଯେ ମନେହୁଏ ଲେଖିକା ଯେପରି ସେମାନଙ୍କ ସହିତ ରହି ଏହାକୁ ଅଙ୍ଗେ ନିଭାଇଛନ୍ତି । ଆମେ ଗୋପୀନାଥ ମହାନ୍ତିଙ୍କ 'ମାଟିମଟାଳ'ରୁ ମହାବନ୍ୟାର କରାଳ ଧ୍ୱଂସଲୀଳା ପଢ଼ିଥିଲୁ, ଏବେ ମହାବାତ୍ୟାର ଭୟଙ୍କରୀ ପରିଣାମକୁ ଦେଖିବାକୁ ପାଇପାରିଲୁ ଶ୍ରୀମତୀ ରାୟଙ୍କ ମେଗା ଉପନ୍ୟାସ 'ମଗ୍ନମାଟି'ରୁ । ସମଗ୍ର ସ୍ଥଳଭାଗକୁ ମଗ୍ନ କରିଦେଇ ସମୁଦ୍ର ମାଡ଼ିଆସିବାର ବର୍ଣ୍ଣନାରେ କେଉଁଠି ଟିକିଏ ହେଲେ ଅତିରଞ୍ଜନ ବା ଅତିକଳ୍ପନା ନାହିଁ । ଯେଉଁମାନେ ମୋ ପରି ଏରସମାର ନିକଟବର୍ତ୍ତୀ ଗାଁମାନଙ୍କରେ ରହି ସେଦିନ ଏ ବାତ୍ୟାକୁ ଭୋଗିଥିବେ ଓ ନିଜ ଗ୍ରାମରେ ସମୁଦ୍ର ପାଣି ପଶିଯିବାର ଦୃଶ୍ୟ ଦେଖିଥିବେ, ସେମାନେ ଶ୍ରୀମତୀ ରାୟଙ୍କର ବର୍ଣ୍ଣନାର ସତ୍ୟତାକୁ ନିଶ୍ଚୟ ଉପଲବ୍ଧି କରିବେ । ଏ ବର୍ଣ୍ଣନାର ବୀଭତ୍ସତାକୁ ପ୍ରକାଶ କରିବାକୁ ହେଲେ ତାଙ୍କରି ଭାଷାର ସାହାଯ୍ୟ ନେବାକୁ ହିଁ ହେବ । ତାହାହିଁ ହେବ ତାଙ୍କ ନିରୀକ୍ଷଣ ପାଇଁ ଯଥାର୍ଥ ଉପଯୋଗିତା ।"

ଏହି ଉପର୍ଯ୍ୟୁକ୍ତ ମନ୍ତବ୍ୟରୁ ହିଁ ପ୍ରଫେସର ଶତପଥୀଙ୍କ ନିରପେକ୍ଷ ସମୀକ୍ଷା ଦୃଷ୍ଟିର ପରିଚ୍ୟ ମିଳେ । ଜଣେ ନିରୋଳା ସାହିତ୍ୟ ସାଧକ ଭାବରେ, ଜଣେ ରସଜ୍ଞ ପାଠକ ଭାବରେ ଏବଂ ଜଣେ ଗଭୀର ଅନୁଧ୍ୟାନକାରୀ ନିରପେକ୍ଷ ସମାଲୋଚକ ଭାବରେ ତାଙ୍କର ଯେଉଁ ଖ୍ୟାତି ରହିଛି, ତାହା ଏହି ମେଗା ଉପନ୍ୟାସର ସମୀକ୍ଷାରୁ ସ୍ପଷ୍ଟ ଭାବରେ ପ୍ରମାଣିତ ହେଉଛି । ଏହି ବର୍ଣ୍ଣନାମାନଙ୍କର ଅନେକ ଦୃଷ୍ଟାନ୍ତ ପ୍ରଦାନ କରି ପ୍ରଫେସର ଶତପଥୀ ଶ୍ରୀମତୀ ରାୟଙ୍କୁ ବହୁ ଉଚ୍ଚତାକୁ ନେଇଯାଇଛନ୍ତି । ତାଙ୍କ ଭାଷାରେ- "ଏସବୁ ବର୍ଣ୍ଣନାର ତୁଳନା ନାହିଁ । ପୁଣିଥରେ କହିବାକୁ ହେଉଛି ଯେ, କେବଳ ଗୋପୀବାବୁ ହୋଇପାରନ୍ତି ଏ ସବୁ ବର୍ଣ୍ଣନାର ଉର୍ଦ୍ଧ୍ୱରେ ଅବସ୍ଥାପିତ ଓଡ଼ିଆ ସାହିତ୍ୟରେ ଅନ୍ୟତମ ପ୍ରମୁଖ ଔପନ୍ୟାସିକ ।" ଏଭଳି ମନ୍ତବ୍ୟ ପ୍ରକୃତରେ ଶ୍ରୀମତୀ ରାୟଙ୍କ ପାଇଁ ଯଥାର୍ଥ ଅଟେ । କାରଣ ଏହା ବାସ୍ତବରେ ଏକ ଭଲ ଉପନ୍ୟାସ । ପ୍ରଫେସର ଶତପଥୀ ଏଥିପାଇଁ କହନ୍ତି- "ଯେଉଁ ଉପନ୍ୟାସ ପାଠକକୁ ନିମଜ୍ଜିତ କରି ରଖେ ଓ ପଢ଼ିଲାବେଳେ ତାକୁ ଭସେଇ ଭସେଇ ନିଏ ଏକ ଅବଶ୍ୟମ୍ଭାବୀ ପରିଣତି ଆଡ଼କୁ ତାକୁ ନିଶ୍ଚୟ ଭଲ ଉପନ୍ୟାସଟିଏ କହିବା । ତାହା କାହ୍ନୁଚରଣଙ୍କର 'ଅଦେଖା ହାତ' ବା 'ପରୀ' ପରି ଛୋଟ ଉପନ୍ୟାସ ହୋଇପାରେ କିମ୍ବା ଗୋପୀନାଥଙ୍କ 'ଅମୃତର ସନ୍ତାନ', 'ମାଟିମଟାଳ' ପରି ମେଗା ଉପନ୍ୟାସ ବି ହୋଇପାରେ । ଏ ଉପନ୍ୟାସଗୁଡ଼ିକୁ ପଢ଼ିବାମାତ୍ରେ ପାଠକ ମନରେ ଯେଉଁ ଉଲ୍ଲାସ, ବିସ୍ମୟ, ଆବେଗ, ଉତ୍କଣ୍ଠା ଓ କାରୁଣ୍ୟ ଜାଗ୍ରତ ହୁଏ, ତାହା ଶେଷପର୍ଯ୍ୟନ୍ତ ରହେ ଅନାହତ । ସେହିପରି ପ୍ରତିଭା ରାୟଙ୍କ 'ମଗ୍ନମାଟି' । ଦୀର୍ଘସମୟ ଧରି ଏ ଉପନ୍ୟାସଟି ମୋତେ

ଆଚ୍ଛନ୍ନ କରି ରହିଥିବା ଅବସ୍ଥା ଭିତରଦେଇ ମୁଁ ଗତି କରିଛି- କାରଣ ମୋ ଅଙ୍ଗେ ନିଭେଇଥିବା ବହୁ ଅନୁଭୂତିର ପ୍ରତିଫଳନ ଏ ଉପନ୍ୟାସରେ ମୁଁ ଦେଖିଛି ।"

ଏପରି ଉକ୍ତି ଜଣେ ସମୀକ୍ଷକର ନିହାତି ଅନ୍ତରଙ୍ଗ ଉକ୍ତି । ଗୋଟେ ଉପନ୍ୟାସ ସେଭଳି ପ୍ରଭାବଶାଳୀ ନ ହେଲେ ଜଣେ ସମୀକ୍ଷକ ଏଭଳି ଉକ୍ତି ଉଲ୍ଲେଖ କରିବ ନାହିଁ । ଖାଲି ଏତିକି ନୁହଁ, ଏଭଳି ଗୋଟିଏ ଉଚ୍ଚକୋଟୀର ଉପନ୍ୟାସର ଲେଖିକା ଯେ ଦିନେ ଏଥିପାଇଁ ଜ୍ଞାନପୀଠ ପୁରସ୍କାର ଲାଭ କରିବେ, ସେଭଳି ଭବିଷ୍ୟତବାଣୀ ମଧ୍ୟ ପ୍ରଫେସର ଶତପଥୀ ବହୁ ଆଗରୁ କରିଥିଲେ । ଏହା ବାସ୍ତବରେ ପ୍ରମାଣିତ ହୋଇଯାଇଛି । ଏଥିପାଇଁ "ସାହିତ୍ୟିକ ମାତ୍ରେ ଇ ଭବିଷ୍ୟତ ଦ୍ରଷ୍ଟା - ଏହା ଚମକପ୍ରଦ ଭାବରେ ପ୍ରମାଣିତ ହୋଇଛି" ବୋଲି ଶେଷକୁ କହିଛନ୍ତି ଡକ୍ଟର ଶତପଥୀ ।

## ॥ ୫ ॥

ଏହାପରେ ପ୍ରଫେସର ଶତପଥୀଙ୍କର ସମୀକ୍ଷାଦୃଷ୍ଟି ନିବଦ୍ଧ ହୋଇଛି ବିଶିଷ୍ଟ କଥାକାର ହୃଷୀକେଶ ପଣ୍ଡାଙ୍କର ମେଗା ଉପନ୍ୟାସ 'ଗର୍ବ କରିବାର କଥା' ଉପରେ । କଳାଦୃଷ୍ଟିରୁ ଏହି ଉପନ୍ୟାସର ସାର୍ଥକତା ବିଚାର କଲାବେଳେ ଏହାକୁ ଏକ ଐତିହାସିକ ଉପନ୍ୟାସ ଭାବରେ ହିଁ ଗ୍ରହଣ କରିବାକୁ ପଡ଼ିବ । କିନ୍ତୁ ଏହା ଇତିହାସ ନୁହେଁ ସାହିତ୍ୟ । ଇତିହାସକୁ କେବଳ ଅବଲମ୍ବନ କରି ଏହା ରଚ଼ନା କରାଯାଇଥାଏ । ତେଣୁ ଏଥିରେ ସାହିତ୍ୟିକ ସୌନ୍ଦର୍ଯ୍ୟବୋଧ ଓ ଚିରନ୍ତନତାର ସନ୍ଧାନ କରାଯାଇଥାଏ । ଉକ୍ତ ଉପନ୍ୟାସରେ ଏସବୁର ଅନେକ ଅଭାବ ରହିଛି ବୋଲି ସମୀକ୍ଷକ ମତବ୍ୟକ୍ତ କରିଛନ୍ତି । ଏଥିରେ ଇତିହାସର ତଥ୍ୟ ଓ ବିବରଣୀ ଅଧିକ ରହିଯାଇଛି । ସାହିତ୍ୟିକ ରସବୋଧ କମିଯାଇଛି । ସମୀକ୍ଷକଙ୍କ ଭାଷାରେ- "ଏ ଉପନ୍ୟାସରେ ଆବେଗ, ଉଦ୍‌ବେଗ ଓ ଉତ୍କଣ୍ଠାର ଭାଷା ଓ ବର୍ଣ୍ଣନାଶୈଳୀର ସୌନ୍ଦର୍ଯ୍ୟ ଇତିହାସର ଆଧିକ୍ୟ ଭିତରେ ସ୍ୱତଃ ବଳି ପଡ଼ିଯାଇଛି ।"

ଏହା ଯେ କେହି ପାଠକମାତ୍ରେ ଉପଲବ୍ଧି କରିପାରିବେ । ଏତଦ୍‌ବ୍ୟତୀତ ଛୋଟବଡ଼ ଆହୁରି ଅନେକ ଅଭାବବୋଧ ଏଥିରେ ରହିଯାଇଛି । ବର୍ଣ୍ଣନାତ୍ମକତା ଓ ସମୟର ଅବଧି ଦୃଷ୍ଟିରୁ ବିଚାରକଲେ ସେମିତି କିଛି ତ୍ରୁଟି ନାହିଁ । କିନ୍ତୁ କଥାନ୍ତରକୁ ଆଲୋଚ଼ନା କଲେ ଉପନ୍ୟାସର ମୂଳ ଆବେଦନ ସହିତ ଏ କଥାନ୍ତର ଗୁଡ଼ିକ ମଧ୍ୟରୁ କେତେକଙ୍କର ସୁ-ସଂଯୋଜନ ନାହିଁ । ଏହି କଥା ହିଁ କହିଛନ୍ତି ପ୍ରଫେସର ଶତପଥୀ । "ଓଡ଼ିଶାର ପ୍ରାଚ଼ୀନ ସାଧବମାନେ ସମୁଦ୍ରରେ ଶହ ଶହ ବର୍ଷଧରି ଯାତ୍ରା କରି ପୂର୍ବ ଓ ଦକ୍ଷିଣପୂର୍ବ ରାଜ୍ୟ ଓ ଦ୍ୱୀପପୁଞ୍ଜରେ ଯେଉଁ ବାଣିଜ୍ୟିକ କାରବାର ଚଳାଇଥିଲେ, ତାହାର ଗୌରବାବହ ଦିନଗୁଡ଼ିକର ଘଟଣା ସହିତ ଡଚ୍ ଓ ପର୍ତ୍ତୁଗୀଜମାନଙ୍କ ଆଗମନ ଫଳରେ ଓ ଶେଷକୁ ଇଂରେଜମାନଙ୍କ ଆଗମନ ଫଳରେ ହଜିଯାଇଥିବା ସେହି ସ୍ୱର୍ଣ୍ଣିତ ଅତୀତର ସ୍ମୃତିଚାରଣ

ଏ ଉପନ୍ୟାସର ମୁଖ୍ୟ ବିଷୟବସ୍ତୁ ବୋଲି କହିବାକୁ ହେବ ।" ଏତଦ୍ ବ୍ୟତୀତ "ଓଡ଼ିଶାରେ ଦୀର୍ଘକାଳରୁ ପ୍ରତିଷ୍ଠିତ ରହିଥିବା ପ୍ରଜା ଜମିଦାର ସଂପର୍କ ଇଂରେଜମାନଙ୍କ କୁଟନୀତି ଓ ଶୋଷଣ ପ୍ରକ୍ରିୟା ମାଧ୍ୟମରେ ହଜିଯାଇ ଏ ରାଜ୍ୟକୁ ଯେ ଦରିଦ୍ରତମ କରିଦେଲା ତା'ର ବ୍ୟଥାଦାୟକ ବିବରଣୀ ପଢ଼ିଲାବେଳେ ଯେକୌଣସି ଜାତୀୟବାଦୀ ବ୍ୟକ୍ତି ଓଡ଼ିଶାର ଆର୍ଥନୀତିକ ଦୁର୍ଗତି ପାଇଁ ସେମାନଙ୍କୁ ନିଶ୍ଚୟ ଦାୟୀ କରିବ । ସେଇ ସ୍ୱର୍ଣ୍ଣବାଣିଜ୍ୟିକ ସମୟର ବିବରଣୀ ମଧ୍ୟରେ କାଳିଦାସପୁର ଜମିଦାରୀର ଉତ୍‌ଥାନ ପତନର ଚିତ୍ର ଓ ଜମିଦାର ପରିବାର ମାନଙ୍କର ଦୁର୍ଗତିର ଚିତ୍ର ଏ ଉପନ୍ୟାସକୁ ଆଛନ୍ନ କରି ରଖିଛି ।"

ଏହାହିଁ ସମୀକ୍ଷକଙ୍କର ବିଚାର । ଖୁବ୍ ସୁଚିନ୍ତିତ ଓ ସଚେତନଶୀଳ ପାଠକମାତ୍ରେ ପ୍ରଫେସର ଶତପଥୀଙ୍କର ଏହି ସମୀକ୍ଷା ଦୃଷ୍ଟିକୁ ସାଦରେ ଗ୍ରହଣ କରିବେ । ପୁଣି ସମୀକ୍ଷକଙ୍କ ଭାଷାରେ- "କେବଳ ଇତିହାସ ଦୃଷ୍ଟିରୁ ନୁହେଁ, କଥାସାହିତ୍ୟର ଚିରନ୍ତନତା ଦୃଷ୍ଟିରୁ ସତୀ ଓ ଗୌରୀ ପରି ଜଣେ ଜଣେ ନାରୀଚରିତ୍ରର ବିକାଶରେ ବାସ୍ତବତା ଦେଖେଇବାକୁ ଲେଖକଙ୍କ ପ୍ରୟାସ ନିଶ୍ଚୟ ସ୍ୱାଗତଯୋଗ୍ୟ ଭାବେ ଗ୍ରହଣୀୟ ହେବ ।" ଏହା ସମୀକ୍ଷକଙ୍କର ସୁଚିନ୍ତିତ ବିଚାର । କେବଳ ନାରୀଚରିତ୍ର ନୁହଁ, ପୁରୁଷଚରିତ୍ର ମାନଙ୍କ ପ୍ରତି ସମୀକ୍ଷକଙ୍କର ଦୃଷ୍ଟି ମଧ୍ୟ ଖୁବ୍ ନିରପେକ୍ଷ । ଲେଖକ ହୃଷୀକେଶ ପଣ୍ଡା ତାଙ୍କ ଉପନ୍ୟାସରେ ଚରିତ୍ରମାନଙ୍କୁ ସାହିତ୍ୟିକ ସୌନ୍ଦର୍ଯ୍ୟବୋଧ ଓ ରସବୋଧରେ ଅଭିଷିକ୍ତ କରିଛନ୍ତି । ଚିନ୍ତା ଓ ଚେତନାସ୍ପର୍ଶୀ ଭାଷାରେ ସେମାନଙ୍କୁ ଅଭିବ୍ୟକ୍ତ କରିବାକୁ ଉଦ୍ୟମ କରିଛନ୍ତି । ଇତିହାସକୁ ସାହିତ୍ୟର କଳେବର ମଧ୍ୟରେ ଆବଦ୍ଧ କରି ଚିରନ୍ତନ ମୂଲ୍ୟବୋଧରେ ମଣ୍ଡିତ କରିବା ଲାଗି ପ୍ରୟାସ କରିଛନ୍ତି । ଇତିହାସକୁ ନୂତନ ଦୃଷ୍ଟିକୋଣରୁ ମୂଲ୍ୟାୟନ ମଧ୍ୟ କରିବାକୁ ଚେଷ୍ଟା କରିଛନ୍ତି ।

ଏହାରି ଉପରେ ଡକ୍ଟର ଶତପଥୀଙ୍କର ବିଚାର ନିବିଷ୍ଟ ହୋଇଛି । ଯେଉଁଠି ଲେଖକ ବ୍ୟକ୍ତିଗତ ହୋଇପଡ଼ିଛନ୍ତି ବା ସାହିତ୍ୟିକ ପ୍ରମାଦ କରିଛନ୍ତି, ସେଠାରେ ସମୀକ୍ଷକ ତାଙ୍କୁ ସମାଲୋଚନା କରିଛନ୍ତି । ଲେଖକଙ୍କର ତ୍ରୁଟିବିଚ୍ୟୁତି ଓ ଅଭାବବୋଧକୁ ଦେଖାଇବାରେ ପ୍ରଫେସର ଶତପଥୀ ତିଳେମାତ୍ର କୁଣ୍ଠାବୋଧ କରିନାହାନ୍ତି । ଯେଉଁଠି କଥାନ୍ତରର ପ୍ରାସଂଗିକତା ନାହିଁ, ଯେଉଁଠି ବର୍ଣ୍ଣନାରେ ବାସ୍ତବତା ନାହିଁ, ଯେଉଁଠି ଚରିତ୍ରମାନଙ୍କୁ ନ୍ୟାୟ ଦେବାରେ କାର୍ପଣ୍ୟ ରହିଛି, ସେଇଠି ପ୍ରଫେସର ଶତପଥୀ ସିଧାସଳଖ ଭାବରେ ସମାଲୋଚନା କରିଛନ୍ତି । ଏଇଭଳି ବହୁ ତ୍ରୁଟିବିଚ୍ୟୁତିର ଦୃଷ୍ଟାନ୍ତ ପ୍ରଦାନ କରି ପ୍ରଫେସର ଶତପଥୀ ତାଙ୍କର ସମୀକ୍ଷାଟିକୁ ପ୍ରସ୍ତୁତ କରିଛନ୍ତି । ଜଣେ ସଚ୍ଚୋଟ, ନିଷ୍ପାପର ଓ ଦାୟିତ୍ୱସମ୍ପନ୍ନ ସମାଲୋଚକର ଭୂମିକା ଏହି ଉପନ୍ୟାସଟିର 'ବୀକ୍ଷା ଓ ସମୀକ୍ଷା'ର ପୃଷ୍ଠାମାନଙ୍କରେ ସେ ସୂଚାରୁ ରୂପେ ନିର୍ବାହ କରିଛନ୍ତି । ଏହି ଆଲୋଚନାଟି ଅନିଚ୍ଛାକୃତ ଭାବରେ ଦୀର୍ଘ ହୋଇଥିବା କାରଣରୁ ସେହିସବୁ ଦୃଷ୍ଟାନ୍ତମାନଙ୍କୁ ଏଠାରେ ପ୍ରଦାନ କରାଯାଉ ନାହିଁ । ଯେଉଁଠି ବର୍ଣ୍ଣନାରେ ହୃଦୟର ଅଭିବ୍ୟକ୍ତିକୁ ରସସିକ୍ତ ଭାବରେ ଉପସ୍ଥାପନ କରାଯାଇଛି, ସେଠି ସମୀକ୍ଷକ ତା'ର ଭୁରି ଭୁରି ପ୍ରଶଂସା କରିଛନ୍ତି ।

ଇତିହାସକୁ ଅନ୍ତରାଳରେ ରଖି ସାହିତ୍ୟିକ ଆବେଦନକୁ ଯେଉଁ ଜାଗାମାନଙ୍କରେ ଗୁରୁତ୍ୱ ଦିଆଯାଇଛି, ସେହିଠାରେ ହିଁ ଉପନ୍ୟାସର ମହତ୍ତ୍ୱ ବୃଦ୍ଧି ପାଇଛି । ସେହିଠାରେ ହିଁ ଉପନ୍ୟାସ ଅଧିକତର ସାର୍ଥକ ହୋଇ ଉଠିଛି ।

ଏହି ଉପନ୍ୟାସରେ ଚରିତ୍ରମାନଙ୍କର ସୁନ୍ଦର ବର୍ଣ୍ଣନାତ୍ମକ ଅଭିବ୍ୟକ୍ତିକୁ ସମୀକ୍ଷକ ଭାଗ ଭାଗ କରି ଏହି ସନ୍ଦର୍ଭଟିରେ ଆଲୋଚନା କରିଛନ୍ତି । ଲେଖକ ଶ୍ରୀଯୁକ୍ତ ପଣ୍ଡା କିଭଳି ଭାବେ ତାଙ୍କ ଚରିତ୍ରମାନଙ୍କ ମାଧ୍ୟମରେ ଗୋଟେ ଜାତିର ଅନ୍ତରର କଥାକୁ କହିବାକୁ ଚାହିଁଛନ୍ତି ତାହାହିଁ ଦର୍ଶାଇଛନ୍ତି । ଏହା ମୁଖ୍ୟତଃ ଇତିହାସ, କିମ୍ବଦନ୍ତୀ ଓ ଜନଶ୍ରୁତି ଆଧାରିତ ଏକ ମେଗା ଉପନ୍ୟାସ । ଅତୀତର ଅସ୍ମିତା ଓ ଗୌରବ ଏବଂ ପ୍ରାଚୀନ ଓଡ଼ିଆଜାତିର ଐତିହ୍ୟ ହେଉଛି ଏଇ ମେଗା ଉପନ୍ୟାସର ପ୍ରାଣପ୍ରବାହ । ଇତିହାସକୁ ଅବଲମ୍ବନ କରି ଏହା ରଚିତ ହୋଇଥିଲେ ହେଁ ଏହା ଏକ ଚମତ୍କାର ଉପନ୍ୟାସ । ଏ ଜାତିର ଐତିହ୍ୟକୁ ସ୍ମରଣ କରି ଲେଖକ ବହୁ ପରିଶ୍ରମ କରି ଇତିହାସକୁ ଘାଣ୍ଟି ତଥ୍ୟ ସଂଗ୍ରହ କରି ଏହାକୁ ଲେଖିଛନ୍ତି । ଏହା ଆମର ଗର୍ବ କରିବାର ହିଁ କଥା । ପ୍ରକୃତରେ ଆମର ଅତୀତର ଇତିହାସ ଗର୍ଭରେ ଆମେ ଗର୍ବ କଲାଭଳି ବହୁ ଉପାଦାନ ରହିଛି । ଏହାହିଁ ଏହି ଉପନ୍ୟାସ ଆମକୁ ଚେତେଇଦିଏ । ତେଣୁ ଏହିଭଳି ଏକ ଉପନ୍ୟାସକୁ ବାରମ୍ବାର ପାଠ କରି ତା'ର ଏକ ସୁଷ୍ଠୁ ସମାଲୋଚନା ପ୍ରସ୍ତୁତ କରିଥିବାରୁ ପ୍ରକୃତରେ ପ୍ରଫେସର ଶତପଥୀ ପ୍ରଶଂସାର୍ହ । ଏଭଳି ସମାଲୋଚନା ହିଁ ଯଥାର୍ଥ ସାହିତ୍ୟ ସୃଷ୍ଟିରେ ସହାୟକ ହୋଇଥାଏ । ଏଥିରେ ସନ୍ଦେହ ନାହିଁ ।

|| ୬ ||

ପଞ୍ଚମ ବା ଶେଷ ସମୀକ୍ଷାଟି ପ୍ରସ୍ତୁତ ହୋଇଛି ବିଶିଷ୍ଟ ଲେଖକ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ମେଗା ଉପନ୍ୟାସ 'ଜନ୍ମାଷ୍ଟମୀ' ଉପରେ । ନିଶ୍ଚିତ ଭାବରେ ଓଡ଼ିଆ ପାଠକମାନେ ଜାଣନ୍ତି ଜତୀନ୍ଦ୍ର ମୋହନ ମହାନ୍ତି, କାହ୍ନୁଚରଣ, ଗୋପୀନାଥ, ପ୍ରତିଭା ରାୟ କି ହୃଷୀକେଶ ପଣ୍ଡାଙ୍କ ଭଳି ଜଣେ ବହୁ ଗଳ୍ପ କି ଉପନ୍ୟାସର ସ୍ରଷ୍ଟା ନୁହନ୍ତି । ସେ ମୁଖ୍ୟତଃ ଜଣେ ପ୍ରାବନ୍ଧିକ ଓ ସମାଲୋଚକ । ମାତ୍ର ଜୀବନର ଶେଷ ପର୍ଯ୍ୟାୟରେ ସେ ମାତ୍ର ଦୁଇଟି ଉପନ୍ୟାସ ରଚନା କରିଛନ୍ତି । ଗୋଟିଏ ସାଧାରଣ ଉପନ୍ୟାସ ଓ ଅନ୍ୟଟି ମେଗା ଉପନ୍ୟାସ । ଏହି ମେଗା ଉପନ୍ୟାସଟି ଛ'ଶହ ଅଠେଇଶି ପୃଷ୍ଠାର ଉପନ୍ୟାସ । ମେଗା ଉପନ୍ୟାସର ଅଭିଧାରେ ଏହାକୁ ପରିଚିତ କରାଇ ସମୀକ୍ଷାଟି ପ୍ରସ୍ତୁତ କରିଛନ୍ତି ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ଏହି ଉପନ୍ୟାସଟିକୁ ଗଭୀର ମନଯୋଗ ସହକାରେ ପାଠକରି ପ୍ରଫେସର ଶତପଥୀ ଏକପ୍ରକାର ବିଭୋର ହୋଇଯାଇଛନ୍ତି ଏହାର ରସବୋଧରେ । ଏହା ପ୍ରକୃତରେ ଏକ ଚମତ୍କାର ଉପନ୍ୟାସ । ଜଣେ ରସିକ, ପାଠକ ଓ ସମୀକ୍ଷକ ହାତରେ ପଡ଼ି ନିଜର ମୂଲ୍ୟକୁ ଓ ଗାରିମାକୁ ସେ ପ୍ରକାଶିତ କରିପାରିଛି । ନିଜେ

ପ୍ରଫେସର ଶତପଥୀ ଏହାର ଭୁରି ଭୁରି ପ୍ରଶଂସା କରିଛନ୍ତି । ବିଶେଷକରି ଏହାର ରଚ୍‌ନାଶୈଳୀ ଓ ଭାଷାବିନ୍ୟାସ ଏବଂ ଏହାର ବର୍ଣ୍ଣନା ଏତେ ଭାବବାହୀ ଏବଂ ଚେତନାସ୍ପର୍ଶୀ ଯେ ପ୍ରଫେସର ଶତପଥୀ ତା'ର ସଦୃଷ୍ଟାନ୍ତ ପ୍ରଶଂସା କରିବାରେ ଆଦୌ କୁଣ୍ଠିତ ହୋଇନାହାନ୍ତି । ଉପନ୍ୟାସଟିର ବହୁ ଜାଗାରେ ଔପନ୍ୟାସିକର ଆବେଗ ଓ ଜାତୀୟ ସ୍ୱାଭିମାନ ବିଚ୍ଛୁରିତ ହୋଇ ପଡ଼ିଛି, ଯାହାକୁ ପଢ଼ି ପ୍ରଫେସର ଶତପଥୀ ସ୍ୱତଃ କହିପକାଇଛନ୍ତି- "କି ସୁନ୍ଦର କଥା ଏ ସବୁ! ଆଶ୍ଚର୍ଯ୍ୟ ଏ ଉପନ୍ୟାସର ଲେଖକ । ନିଜ ଦେଶ ପାଇଁ ଏତେ ଆବେଗ ଓ ସ୍ୱାଭିମାନ ତାଙ୍କଠାରେ ଯେ ଭରି ରହିଥିଲା, ଏ ଉପନ୍ୟାସ ନ ପଢ଼ିଲେ ପାଠକେ ବୁଝିପାରିବେ ନାହିଁ ।" ଏହି ଉକ୍ତି ମାଧ୍ୟମରେ ସମୀକ୍ଷକଙ୍କର ବିଭୋରପଣଟି ହିଁ ଜଣାପଡ଼େ । ଆମେ ସମସ୍ତେ ଜାଣୁ ପ୍ରଫେସର ଶତପଥୀ ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ପ୍ରବୀଣ ଓ ଖ୍ୟାତନାମା ସମାଲୋଚ୍‌କ । ଖୁବ୍ ନିରପେକ୍ଷ ତାଙ୍କର ବିଚାରଧାରା । ପ୍ରକୃତରେ କୌଣସି ସାର୍ଥକ ସୃଷ୍ଟିକୁ ମୁକ୍ତକଣ୍ଠରେ ପ୍ରଶଂସା କରିବାରେ ସେ କଦାପି କୁଣ୍ଠିତ ନୁହଁନ୍ତି । ଉପନ୍ୟାସ ଶତ୍ରୁର ହେଲେବି ଯଦି ସାର୍ଥକ ହୋଇଥାଏ, ତାକୁ ଉପଯୁକ୍ତ ମୂଲ୍ୟ ଦେବାରେ, ନ୍ୟାୟ ଦେବାରେ ଓ ବିଚାର ଦେବାରେ ପ୍ରଫେସର ଶତଥୀଙ୍କ ଭଳି ସମାଲୋଚ୍‌କ କଦାପି ପଶ୍ଚାତ୍‌ପଦ ହୋଇପାରନ୍ତି ନାହିଁ ।

ତେଣୁ 'ଜନ୍ମାଷ୍ଟମୀ' ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇଗଲାଭଳି ଗୋଟେ ଉପନ୍ୟାସ ନିଶ୍ଚୟ । ଯଦିଓ ଏହା ଲେଖକଙ୍କର ଉତ୍ତର ଜୀବନରେ ଲେଖାଯାଇଛି । ଯଦିଓ ଲେଖକ ଇତିପୂର୍ବରୁ ଗଳ୍ପ, ଉପନ୍ୟାସ ଲେଖି ପ୍ରତିଷ୍ଠା ଲାଭ କରିନାହାନ୍ତି । ତେବେବି ଯେଉଁ ଦୁଇଟି ଉପନ୍ୟାସ ସେ ଶେଷପର୍ଯ୍ୟାୟରେ ଲେଖିଛନ୍ତି ତାହା ତାଙ୍କୁ ଜଣେ ସାର୍ଥକ ଔପନ୍ୟାସିକର ପ୍ରତିଷ୍ଠା ଦେଇପାରିଛି । ପୁରାଣର ପୃଷ୍ଠପିଠିକାରେ ଏହି ଉପନ୍ୟାସଟି ରଚ୍‌ିତ ହୋଇଥିଲେ ହେଁ ଏହା ସମକାଳର ଜାତୀୟ ଜୀବନକୁ ବିଶେଷ ଭାବରେ ଧରି ରଖିଛି । ଏହାର ମୂଲ୍ୟବୋଧ ଯେତିକି ସମକାଳୀନ ସେତିକି ସର୍ବକାଳୀନ । ସେତିକି ମଧ୍ୟ ସାର୍ବଜନୀନ । ପୁରାଣର ଗଦ୍ୟରୂପ ଏହା ନୁହେଁ, ଏହା ଗୋଟେ ଉପନ୍ୟାସ । ପୁରାଣ ସହିତ କିଛି କଳ୍ପନା, କିଛି ଅତିକଳ୍ପନା, କିଛି କଥା, କିଛି ଉପକଥା, କିଛି କଥାନ୍ତର, କିଛି ଭାବାନ୍ତର, କିଛି ରୂପ, କିଛି ରୂପାନ୍ତର ମିଶି ଏକ ଅନନ୍ୟ ସୃଜନଭୂମି ତିଆରି କରିଛି । ସମୀକ୍ଷକଙ୍କ ବିଚାରରେ ଏହାର କାନ୍‌ଭାସ ତେଣୁ ଖୁବ୍ ବିସ୍ତୃତ, ଖୁବ୍ ବ୍ୟାପକ । "ବିଶ୍ୱାସ ସହିତ ବାସ୍ତବତା, ଯନ୍ତ୍ରଣା ସହିତ ଆଶ୍ୱାସନା, ଜୀବନ ସହିତ ମୃତ୍ୟୁ, ଭ୍ରାନ୍ତି ସହିତ ବିଭୋରତା, ବାସ୍ତବତା ସହିତ ଆବେଗର ମିଶାମିଶି ଓ ଫେଣ୍ଟାଫେଣ୍ଟିରେ ଉପନ୍ୟାସ ରସଗର୍ଭା ବୋଲି କହିବାକୁ ମନେହୁଏ ।" ଏଭଳି ସମୀକ୍ଷାତ୍ମକ ଉକ୍ତି କେତେ ମୂଲ୍ୟବାନ ଓ ଗୁରୁତ୍ୱପୂର୍ଣ୍ଣ ତାହା ଉପଲବ୍ଧ କରିବାର କଥା । ସେତିକି ରସଗ୍ରାହୀ ଓ ବିବେକୀ ସମୀକ୍ଷକ ନ ହେଲେ ଏଭଳି ଉକ୍ତି ତାହାର କଲମରୁ ନିସୃତ ହେବ ନାହିଁ ।

'ଜନ୍ମାଷ୍ଟମୀ' ଉପନ୍ୟାସଟି ଏକ ପୌରାଣିକ ଉପନ୍ୟାସ ହେଲେ ହେଁ ଏହା ବାସ୍ତବରେ ଏକ ବାସ୍ତବଧର୍ମୀ ସାମାଜିକ ଉପନ୍ୟାସ । ଗୋଟେ ଜାତି ବା ଦେଶର ଭାଗ୍ୟର ବିପର୍ଯ୍ୟୟର ବା ଦୁର୍ଦ୍ଦଶାର ପ୍ରେକ୍ଷାପଟରେ ଏହାର ପରିକଳ୍ପନା । ଏ ଦୁର୍ଦ୍ଦଶା ରାଜନୈତିକ ଓ ଶାସନଗତ । ରାଜା ବା ଶାସକ ପ୍ରଜାପୀଡ଼କ ଓ ପ୍ରଜାଶୋଷକ ହେଲେ କିଭଳି ଭାବରେ ଅଧର୍ମ ଓ ଅନ୍ୟାୟ ବ୍ୟାପିଯାଏ, ଦୁର୍ନୀତି ଭ୍ରଷ୍ଟାଚାର କିଭଳି ଭାବରେ ସମାଜକୁ ନଷ୍ଟ କରିଦିଏ ଏବଂ ଏଥିରୁ ଉଦ୍ଧାର କରିବା ପାଇଁ କୌଣସି ଦୈବୀସତ୍ତାର ଅବତରଣ ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼େ, ତାହାହିଁ ମୌଳିକ ଆବେଦନ ଭାବରେ ଏହି ଉପନ୍ୟାସରେ ଗୁମ୍ଫିତ ହୋଇ ରହିଛି । କଂସ ଓ ଜରାସନ୍ଧ ପରି ଏବେବି ଏ ସମାଜରେ ଏ ଦେଶରେ ଅନେକ ଦୁର୍ଦ୍ଦାନ୍ତ ଶାସକ ଓ ନେତା ଅଛନ୍ତି । ରାଜତନ୍ତ୍ର ଲୋପ ପାଇଯାଇଥିଲେ ହେଁ ଗଣତାନ୍ତ୍ରିକ ଦେଶରେ ମଧ୍ୟ ନେତା-ମନ୍ତ୍ରୀ ରୂପରେ ଏହିଭଳି ନରରାକ୍ଷସମାନେ ସର୍ବତ୍ର ଦେଶକୁ ଘେରି ରହିଛନ୍ତି । ମହାତ୍ମାଗାନ୍ଧୀଙ୍କ ଭଳି ଜଣେ ଦିବ୍ୟାତ୍ମନ୍‌ଙ୍କର ଅବତରଣ ଯେଉଁଭଳି ଏ ବିରାଟ ଜାତିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିଥିଲା, ସେହିଭଳି ଏ ସ୍ୱାଧୀନ ଭାରତରେ ଯେଉଁ ରାଜନୈତିକ ଅତ୍ୟାଚାର ବଢ଼ିଛି ତା' କବଳରୁ ରକ୍ଷା ପାଇବା ପାଇଁ ଆଉ ଜଣେ ଦିବ୍ୟଆତ୍ମନ୍‌ଙ୍କର ଭୂମିଷ୍ଠ ହେବାର ଆବଶ୍ୟକତା ରହିଛି ।

ଏହିଭଳି ଗୋଟେ ସୃଜନ ଆଭିମୁଖ୍ୟ ବହନ କରି 'ଜନ୍ମାଷ୍ଟମୀ' ଉପନ୍ୟାସଟି ରଚିତ ହୋଇଛି । ଏଥିରେ ପୌରାଣିକ ଚରିତ୍ରମାନଙ୍କ ସହିତ କିଛି କାଳ୍ପନିକ ଚରିତ୍ରମାନଙ୍କର ସଂଯୋଗ କରାଯାଇଛି । କିଛି କାଳ୍ପନିକ କଥା ଓ ଉପକଥାର ସଂଯୋଗ ମଧ୍ୟ କରାଯାଇଛି । ପୌରାଣିକ ପ୍ରସଂଗର ପୃଷ୍ଠଭୂମିରେ ସାମାଜିକ ବାସ୍ତବତାର ଚିତ୍ର ସର୍ବତ୍ର ଉପସ୍ଥାପିତ ହୋଇଛି । କଂସ ଓ ଜରାସନ୍ଧମାନଙ୍କର ଅତ୍ୟାଚାର ଓ ଅପଶାସନ ବିରୁଦ୍ଧରେ ସଂଘବଦ୍ଧ ଜନତାର ବିଦ୍ରୋହର ଚିତ୍ର ମଧ୍ୟ ପ୍ରଦାନ କରାଯାଇଛି । ବ୍ୟାସଦେବଙ୍କ ଭଳି ଋଷିପ୍ରତିମ ବ୍ୟକ୍ତିତ୍ୱ ଏବେବି ଏ ଦେଶରେ ଅଛନ୍ତି, ଯେଉଁମାନେ ଭାନୁପ୍ରକାଶଙ୍କ ଭଳି ଚରିତ୍ର ମାଧ୍ୟମରେ ଏ ଜାତିକୁ ମହାନ୍ ବାର୍ତ୍ତା ଦେଇ ଚାଲିଛନ୍ତି ଯେ, ଆମେ ମାନେ ଏକାଠି ହେଲେ ଜଣେ ଦିବ୍ୟଆତ୍ମନ୍‌ଙ୍କର ନେତୃତ୍ୱରେ ଏ ଅପଶାସନକୁ ଧ୍ୱଂସ କରିଦେଇପାରିବା ।

ଏହି ଉପନ୍ୟାସରେ ଧର୍ମ, ନ୍ୟାୟ, ସତ୍ୟ, ଅହିଂସା ସପକ୍ଷରେ ଯେଉଁ ଚରିତ୍ରମାନଙ୍କର ଅବତାରଣା କରାଯାଇଛି ସେମାନେ ସମସ୍ତେ ଜଣେ ଜଣେ ମହିମାବନ୍ତ ଦିବ୍ୟସତ୍ତାଧାରୀ ଚରିତ୍ର । ଏଇମାନେ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଜନସାଧାରଣଙ୍କୁ ଏକାଠି କରିବାର ଭୂମିକା ନିର୍ବାହ କରିଛନ୍ତି । ଏମାନେ ସବୁବେଳେ ଦେଶ ଓ ଜାତିର ଦୁର୍ଦ୍ଦଶାକୁ ଚିନ୍ତାକରି ନିଜର ଅନ୍ତର୍ଜଗତରେ ଦୁଃଖୀ ହୋଇ ପଡୁଥିଲେ । ତେଣୁ ଲୋକଙ୍କ ଚେତନାର ଜାଗରଣ ଆଣିବାର ଗୁରୁଦାୟିତ୍ୱ ଏମାନଙ୍କର ହିଁ ଥିଲା । ଏହି କଥା ହିଁ ସମୀକ୍ଷକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ତାଙ୍କ ସମୀକ୍ଷାରେ ସ୍ପଷ୍ଟ କରିଦେଇଛନ୍ତି । ଏହି ଚରିତ୍ରମାନେ ଜଣେ ତ୍ରାଣକର୍ତ୍ତାଙ୍କ

ଆଗମନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାରେ ଲାଗିପଡ଼ିଥିଲେ । ସେଇ ତ୍ରାଣକର୍ତ୍ତାଙ୍କ ଆଗମନର ସମୟଟି ଶ୍ରୀକୃଷ୍ଣଙ୍କ ଜନ୍ମ ସମୟ । ସେହି ତ୍ରାଣକର୍ତ୍ତା ହିଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ । ଏହାହିଁ ସମୀକ୍ଷକଙ୍କର ବିଚାରନିଷ୍ଠ ମନ୍ତବ୍ୟ । ସେ କହିଛନ୍ତି ଯେ ଏହା ପୌରାଣିକ ଉପନ୍ୟାସ ହେଲେ ହେଁ ପୌରାଣିକ ଚରିତ୍ର ସହିତ କାଳ୍ପନିକ ଚରିତ୍ରର ମିଶ୍ରଣରେ ଉପନ୍ୟାସଟିକୁ ବାସ୍ତବାୟିତ କରାଯାଇଛି । ଏହା ତେଣୁ ପୌରାଣିକ ଉପନ୍ୟାସ ହୋଇ ମଧ୍ୟ କୌଣସି ଗୁଣରେ ଗୋଟେ ସାମାଜିକ-ବାସ୍ତବଧର୍ମୀ ଉପନ୍ୟାସଠାରୁ ଊଣା ନୁହେଁ ।

ଖାଲି ଏତିକି ନୁହଁ, ଉପନ୍ୟାସଟିର ଆଙ୍ଗିକ ଓ ଆତ୍ମିକ ଦିଗକୁ ଟିକିନିଖି କରି ପରୀକ୍ଷା ନିରୀକ୍ଷା କରିବାରେ ଯେମିତି ତାଙ୍କର ସମସ୍ତ ଆଗ୍ରହ ଏକୀଭୂତ ହୋଇଯାଇଛି, ଯେଉଁଥିପାଇଁ ସେ କହିଛନ୍ତି- "ଏ ମେଗା ଉପନ୍ୟାସରେ ଆହୁରି ଅନେକ ଗୁଣ ଓ ଖୁଣକୁ ଖୋଜାଯାଇପାରେ । କିନ୍ତୁ ଗୁଣର ମାତ୍ରା ଏତେ ବେଶୀ ଯେ ଖୁଣ କେଉଁଠି ଅନ୍ଧାରରେ ଲୁଚିଯାଏ ।" ପ୍ରକୃତରେ ଉପନ୍ୟାସଟି ସେହିଭଳି ଏକ ଗୁଣଗର୍ଭା ଉପନ୍ୟାସ । ଏହାର ଚରିତ୍ରମାନେ ଖୁବ୍ ମହିମାବନ୍ତ । ଏହାର ପ୍ରଧାନ ନାରୀଚରିତ୍ର ଗୋପା ଏହିଭଳି ଏକ ମହାନ ଚରିତ୍ର । ଯାହା ସମ୍ପର୍କରେ ସମୀକ୍ଷକ କହନ୍ତି- "ଏ ଚରିତ୍ରକୁ ଲେଖକ ଏପରି ଏକ ସାଣରେ ନିର୍ମାଣ କରିଛନ୍ତି, ଯାହାକୁ ସତ୍ୟବତୀ, ଭୀଷ୍ମ, ବିଦୁର ଓ ବ୍ୟାସଦେବ ଯେପରି ତାରିଫ୍ କରନ୍ତି ଭାନୁପ୍ରକାଶ, ସତ୍ୟକାମ, ନନ୍ଦ, ସୌରଦେବ ଓ ଅରିନ୍ଦମ ମଧ୍ୟ ସେହିପରି ତା' ସାନ୍ନିଧରେ ପବିତ୍ରତାର ଧାସ ଅନୁଭବ କରନ୍ତି । ଏ ଏକ ଅଦ୍ଭୁତ ଚରିତ୍ର..." । ଏହିଭଳି ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ଶବ୍ଦ ପ୍ରୟୋଗରୁ ହିଁ ଜଣେ ସମୀକ୍ଷକଙ୍କର ମୁଗ୍ଧ ଭାବଟିକୁ ଅନୁଭବ କରିହେବ । ଏଭଳି ମନ୍ତବ୍ୟ ପ୍ରକୃତରେ କୌଣସି ଭାବପ୍ରବଣ ସମାଲୋଚକର ମନ୍ତବ୍ୟ ନୁହେଁ । ଗୋଟିଏ ମେଗା ଉପନ୍ୟାସକୁ ଏପରିକି ଶହସ୍ରାଧିକ ପୃଷ୍ଠାର ଉପନ୍ୟାସକୁ ବାରମ୍ବାର ପାଠ କରି ଯେଉଁ ସମୀକ୍ଷାଟି ପ୍ରସ୍ତୁତ କରାଯାଇଛି, ସେଥିରେ ଉପସ୍ଥାପିତ ହୋଇଥିବା ମନ୍ତବ୍ୟ କଦାପି ଭାବପ୍ରବଣତାର ହୋଇନପାରେ ।

ତେଣୁ ଖୁବ୍ ସଂଯତ, ଖୁବ୍ ସଚେତନ ଏବଂ ଖୁବ୍ ଦାୟିତ୍ୱସଂପନ୍ନ ଓ ନିଷ୍ଠାପର ସମାଲୋଚକ ଭାବରେ ତାଙ୍କର ପ୍ରତିଷ୍ଠା ଅଦ୍ୟାବଧି ରହି ଆସିଛି । ସେ ଗଭୀର ମନଯୋଗ ସହକାରେ ଘଣ୍ଟା ଘଣ୍ଟା ଏକାଦିକ୍ରମେ ବସି ଉପନ୍ୟାସ ପଢ଼ିବା ଏବଂ ତା'ର ସମୀକ୍ଷା ଲେଖିବାରେ ଜୀବନର ଅନେକ ମୂଲ୍ୟବାନ ସମୟକୁ ସେ ବ୍ୟୟିତ କରିଦେଇଛନ୍ତି । ସତେଯେମିତି ତାଙ୍କର ଜୀବନର ସିଂହଭାଗ ଏଇ ସମୀକ୍ଷାରେ ଲେଖିବାରେ ହିଁ ବିଧିନିର୍ଦ୍ଦିଷ୍ଟ ହୋଇ ରହିଥିଲା । ତେଣୁ ତାଙ୍କର ଜୀବନର ଏକାଗ୍ରତାକୁ ଏହି ସମୀକ୍ଷା ରଚନାର ସାଧନାରେ ହିଁ ନିବିଷ୍ଟ କରିଦେଇଛନ୍ତି । ଏହା ତାଙ୍କର ଏହି ସମୀକ୍ଷା ମାନଙ୍କରୁ ହିଁ ପ୍ରମାଣିତ ହୋଇଥାଏ । ଏବେ ତାଙ୍କର ଉତ୍ତର ଜୀବନରେ ଏହି ସାଧନା ତଥାପି ବଳବତ୍ତର ଅଛି । ଏହି ମେଗା ଉପନ୍ୟାସ 'ବୀକ୍ଷା ଓ ସମୀକ୍ଷା' ତାହାର ଜ୍ୱଳନ୍ତ ପ୍ରମାଣ । ପାଞ୍ଚୋଟି ବୃହଦାକାର

ଉପନ୍ୟାସକୁ ବିଚାର କରି ତା'ର ସାରନିର୍ଯ୍ୟାସକୁ ଏକାଠି କରି ସିଏ ଅଣିଶହ ଛୟାନବେ ପୃଷ୍ଠାର ଏହି ଗ୍ରନ୍ଥଟିକୁ ଓଡ଼ିଆ ସାହିତ୍ୟ ଜଗତକୁ ଦାନ କରିଛନ୍ତି । ଖାଲି ଦୋଷ କାଢ଼ି ନାହାନ୍ତି, ଗୁଣର ଭୂରି ଭୂରି ପ୍ରଶଂସା କରିବା ସହିତ କ'ଣ କରିଥିଲେ ଉପନ୍ୟାସଟି ଆହୁରି ଦୋଷଶୂନ୍ୟ ହୋଇପାରିଥାନ୍ତା ସେକଥା ମଧ୍ୟ ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ କହିଦେଇଛନ୍ତି । ଗୋଟେ ଜାଗାରେ 'ଜନ୍ମାଷ୍ଟମୀ'ର ସମୀକ୍ଷାରେ ସେ ଲେଖିଛନ୍ତି- "ଏ ଉପନ୍ୟାସର ଭାଷା ସଂପର୍କରେ କୁହାଯାଇପାରେ, ଭାଷା ଖୁବ୍ ସଂଯତ, ମପାଚୁପା, ପରିମିତ ଓ ଉଦ୍ଦେଶ୍ୟସିଦ୍ଧ । କିନ୍ତୁ ଏକ ପୌରାଣିକ ଉପନ୍ୟାସ ପାଇଁ ଭାଷା ଆହୁରି ଅଭିଜାତ ହେବାର ଥିଲା ।" ଏବଂ ଏ ଉପନ୍ୟାସରେ "ତ୍ରୁଟି ବିଚ୍ୟୁତି ଯେ ନାହିଁ ତା' ନୁହେଁ । କିନ୍ତୁ ସେ ସବୁ ଏତେ ନଗଣ୍ୟ ଯେ ଉପନ୍ୟାସର ମୁଖ୍ୟଧାରାରେ ତାହା କୌଣସି ପରିବର୍ତ୍ତନ ବା ବ୍ୟତିକ୍ରମ ସୃଷ୍ଟି କରେନାହିଁ । ବହୁ ସ୍ଥାନରେ ପୁନରାବୃତ୍ତି ଅନାୟାସରେ ଲକ୍ଷ୍ୟ କରିହେବ । ଟିକେ ସତର୍କ ହୋଇଥିଲେ ଏ ସବୁକୁ ବାଦ୍ ଦିଆଯାଇପାରିଥାନ୍ତା ।" ଏହିଭଳି ଗଠନମୂଳକ ମତ ଓ ମନ୍ତବ୍ୟ ପ୍ରଦାନରେ ସେ କଦାପି କୁଣ୍ଠିତ ହୋଇନାହାନ୍ତି । ଏହି ଗ୍ରନ୍ଥର ସମସ୍ତ ଔପନ୍ୟାସିକଙ୍କୁ ସେ ଯଥାର୍ଥ ନ୍ୟାୟ ପ୍ରଦାନ କରିଛନ୍ତି ।

ସୂକ୍ଷ୍ମ ସୌନ୍ଦର୍ଯ୍ୟ ଉପନ୍ୟାସ ମାନଙ୍କରେ କିପରି ଫୁଟି ଉଠିଛି ଏବଂ ତାହା କିପରି କାବ୍ୟିକ ହୋଇଯାଇଛି ଏବଂ କିପରି ଉପନ୍ୟାସଗୁଡ଼ିକରେ ନିଆରାପଣ ବର୍ଣ୍ଣନାର ଛତ୍ରେ ଛତ୍ରେ ଅଭିବ୍ୟକ୍ତ ହୋଇ ଉଠିଛି, ସେ ସବୁକୁ ମଧ୍ୟ ସଦୃଷ୍ଟାନ୍ତ ଉପସ୍ଥାପନ କରିବାରେ ପ୍ରଫେସର ଶତପଥୀ କାର୍ପଣ୍ୟ କରିନାହାନ୍ତି । ଔପନ୍ୟାସିକର ଉପମା, ରୂପକ ଓ ରୂପକଳ୍ପର ପ୍ରୟୋଗ କିପରି ଉପନ୍ୟାସକୁ ଖୁବ୍ ରମଣୀୟ କରି ରଖିଛି, ସେଗୁଡ଼ିକର ଏକାଧିକ ଦୃଷ୍ଟାନ୍ତ ଦେଇ ବୁଝାଇବାକୁ ଚେଷ୍ଟା କରିଛନ୍ତି ପ୍ରଫେସର ଶତପଥୀ । ପ୍ରକାଶଭଙ୍ଗୀର ଚମତ୍କାରୀତାକୁ ମଧ୍ୟ ସେ ଦୃଷ୍ଟାନ୍ତ ଦେଇ ପ୍ରମାଣିତ କରିବାରେ ଅକୁଣ୍ଠିତ ହୋଇପଡ଼ିଛନ୍ତି ।

ପ୍ରକୃତରେ ଜଣେ ମୌଳିକ ସ୍ରଷ୍ଟାକୁ ଚିହ୍ନି ଚିହ୍ନାଇବାର ଗୁଣଟି ପ୍ରଫେସର ଶତପଥୀଙ୍କ ପାଖରେ ଅଦ୍ଭୁତ ଭାବରେ ଭରି ହୋଇ ରହିଛି । ସେ ଜମାରୁ ଉପର ଠାଉରିଆ ମତ କି ମନ୍ତବ୍ୟ ଦିଅନ୍ତି ନାହିଁ ଏବଂ ଜମାରୁ ଉପରଠାଉରିଆରେ ମଧ୍ୟ ପଢ଼ନ୍ତି ନାହିଁ କି ଲେଖନ୍ତି ନାହିଁ । ତାଙ୍କର ଏହି ମେଗା ଉପନ୍ୟାସ ଭିତ୍ତିକ ସମୀକ୍ଷା ଗ୍ରନ୍ଥଟି ତାଙ୍କର ସଫଳ ସୃଷ୍ଟିମାନଙ୍କ ମଧ୍ୟରେ ଅନ୍ୟତମ । 'ସବୁଜରୁ ସାଂପ୍ରତିକ', 'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥ ଦୁଇଟି ପରି ବିପୁଳ ପାଠକୀୟ ଆଦୃତି ଲାଭ କରିବ । ଏହା ନିଶ୍ଚିତ ଭାବରେ ତୃତୀୟ ସମୀକ୍ଷା ଗ୍ରନ୍ଥ । ଏଥିରେ କାହାରି ବି ଦ୍ୱିମତ ଥାଇ ନପାରେ । ମେଗା ଉପନ୍ୟାସର ପରିଭାଷାକୁ ଖୁବ୍ ସୁନ୍ଦର ଭାବରେ ଉପସ୍ଥାପନ କରି ସେ ଏହି ଗ୍ରନ୍ଥଟିରେ ଓଡ଼ିଆ ଭାଷା ଓ ସାହିତ୍ୟର ପାଞ୍ଚୋଟି ଅମୂଲ୍ୟ ମଣିକୁ ସତେଯେମିତି ଗୁନ୍ଥି ଗୋଟେ ଅପୂର୍ବ ମାଳ ସୃଷ୍ଟି କରିଛନ୍ତି ।

■ *ଅଧ୍ୟାପକ, ରଣପୁର କଲେଜ ରଣପୁର, ନୟାଗଡ଼*

# ମୁଖବନ୍ଧ ରଚନାରେ ଆଲୋଚ଼କ ପ୍ରଫେସର ନିତ୍ୟାନନ୍ଦ ଶତପଥୀ

♦ ଡକ୍ଟର ଦିଲୀପ କୁମାର ସ୍ୱାଇଁ

ମୁଖବନ୍ଧ ପୁସ୍ତକର ଦର୍ପଣ ସଦୃଶ । ଲେଖକ ନିଜର ସର୍ଜନକର୍ମ ସଂପର୍କରେ ମୁଖ୍ୟପାଠ ପୂର୍ବରୁ ମୁଖବନ୍ଧରେ ଆଲୋଚ଼ନା କରିଥାଏ । ମୁଖବନ୍ଧ ମୁଖ୍ୟପାଠ ଓ ପାଠକ ମଧ୍ୟରେ ଯୋଗାଯୋଗର ଭୂମିକା ତୁଲାଇଥାଏ । ପାଠକ ମୁଖବନ୍ଧ ମାଧ୍ୟମରେ ପୁସ୍ତକ ପ୍ରସ୍ତୁତି ସହ ଲେଖକର ଆଭିମୁଖ୍ୟ ସଂପର୍କର ସୂଚ଼ନା ପ୍ରାପ୍ତ ହୋଇଥାଏ । ମୁଖବନ୍ଧ ଲେଖକ ନିଜେ ଲେଖିପାରେ ବା ଅନ୍ୟ କେହିଜଣେ ଲେଖକଙ୍କ ଦ୍ୱାରା ରଚ଼ିତ ହୋଇ ପୁସ୍ତକରେ ଗ୍ରଥିତ ହୋଇପାରେ । ଲେଖକ ନିଜେ ମୁଖବନ୍ଧ ରଚନା କଲେ ତାହାକୁ 'ଉପକ୍ରମ' (Introduction) ବୋଲି କୁହାଯାଇଥାଏ । ସେହି ପୁସ୍ତକର ମୁଖବନ୍ଧ ଅନ୍ୟ ଜଣେ ଲେଖକ ଦ୍ୱାରା ସଂପନ୍ନ କରାଗଲେ, ତାହାକୁ ମୁଖବନ୍ଧ (Preface) କୁହାଯାଏ । ଏହି ଦୃଷ୍ଟିରୁ ବିଚ଼ାରକଲେ ଉପକ୍ରମ ଓ ମୁଖବନ୍ଧ ଭିତରେ ପାର୍ଥକ୍ୟ ସୀମିତ । ଉପକ୍ରମ ବହିର ମୁଖ୍ୟପାଠ ସଂପର୍କରେ ସୂଚ଼ନା ଦେବାସହ ଏହା ପାଠ୍ୟ ସଂପର୍କିତ ଆଉ କେତୋଟି ପାଠ୍ୟ ବହିର୍ଭୂତ ପ୍ରସଙ୍ଗର ଅବତାରଣା କରି ବହିଟିକୁ ଉପସ୍ଥାପନ କରିଥାଏ । (Introduction deals with subject of the book supplementing and introducting the text.) ମୁଖବନ୍ଧ ମୁଖ୍ୟପାଠର ଉତ୍ପତ୍ତି, ଆଭିମୁଖ୍ୟ, ସୀମାବଦ୍ଧତା, ପାଠର ପରିସର ସହ ପ୍ରାପ୍ତି ସ୍ୱୀକାର ସଂପର୍କରେ ସୂଚନା ପ୍ରଦାନ କରିଥାଏ । (A preface or foreword deals with the genesis purpose, limitations and scope of the book and may include acknowledgment.) ଲେଖକ ଯାହା ପୁସ୍ତକରେ କହି ପାରିନଥାଏ ତାହା ମୁଖବନ୍ଧ ମାଧ୍ୟମରେ କହିବା ପାଇଁ ଯତ୍ନ କରିଥାଏ । ଲେଖକ ନିଜେ କହିବା ବା ଅନ୍ୟ କାହାଦ୍ୱାରା କୁହାଇବା ଯୋଗୁ ପୁସ୍ତକର । ବିଦଗ୍ଧତା ବଢ଼ିବା ସହ ପାଠକକୁ ଏହା ଆକର୍ଷିତ କରିଥାଏ । 'ମୁଖବନ୍ଧ' ମାଧ୍ୟମରେ ଲେଖକ ନିଜ ପୁସ୍ତକକୁ ପାଠକ ହୃଦୟ ପାଖରେ ପହଞ୍ଚାଇ ପାରିଥାଏ । ଲାଟିନ୍ ଶବ୍ଦ ' Pare ' ଓ ' fatia ' ର ଅର୍ଥ ହେଉଛି ଯାହା ପୂର୍ବରୁ କୁହାଯାଇଛି ବା ଯାହା ମୁଖ୍ୟ ପ୍ରସଙ୍ଗର ପୂର୍ବ କଥନ । ପୁସ୍ତକର ମୁଖ୍ୟ ପ୍ରସଙ୍ଗ ପୂର୍ବରୁ ରଚିତ ରଚନାକୁ ଏହା ସୂଚ଼ୀତ କରିଥାଏ । ଏହି ଦୃଷ୍ଟିରୁ ବିଚ଼ାର କଲେ ମୁଖବନ୍ଧ ରଚନା କରିବା ଆଦୌ ସହଜସାଧ ପ୍ରକ୍ରିୟା ନୁହେଁ । ଜଣେ ପରିପକ୍ୱ ଓ ଦାୟିତ୍ୱବାନ ଲେଖକ ହିଁ କେବଳ ଯୁକ୍ତିଯୁକ୍ତ ମୁଖବନ୍ଧ ରଚନା କରିପାରିବ । ମୁଖବନ୍ଧ

ପୁସ୍ତକଟିର ପରିସର, ଆଭିମୁଖ୍ୟ, ପୃଷ୍ଠଭୂମି ସଂପର୍କରେ ଯଥାଯଥ ଉପକ୍ରମଣିକା ପ୍ରଦାନ କରିଥାଏ । "A preliminary statement or essay introducing a book that explains its scope, intention or back ground and is usually written by the author." (free dictionary) ମୁଖବନ୍ଧ ସ୍ୱୟଂ ଲେଖକ ରଚନା କରିପାରିବ ବା ଅନ୍ୟ କେହି ଲେଖକଙ୍କ ଦ୍ୱାରା ଏହା ସଂପନ୍ନ ହୋଇପାରିବ ଏଥି ପାଇଁ ମୁଖବନ୍ଧ ଲେଖକକୁ କେତୋଟି ଦିଗ ପ୍ରତି ଦୃଷ୍ଟି ଦେବାକୁ ହେବ । ଯଥା:-

୧. କାହିଁକି ଏ ପୁସ୍ତକ ମୁଁ ରଚନା କଲି ?

୨. ଏହି ପୁସ୍ତକର ବିଶେଷତ୍ୱ ବା ଗୁରୁତ୍ୱ କ'ଣ ଅଛି ?

୩. ଏହି ପୁସ୍ତକର ପୃଷ୍ଠଭୂମି କ'ଣ ?

ଉପରୋକ୍ତ ତିନୋଟି ପ୍ରଶ୍ନକୁ ଆଧାର କରି ପୁସ୍ତକର ମୁଖବନ୍ଧ ରଚିତ ହୋଇଥାଏ । ପୁସ୍ତକର ମୂଳପାଠ ଅଧ୍ୟୟନ ସହ ଲେଖକର ମନୋଭୂମି ଓ ପାରିପାର୍ଶ୍ୱିକ ଅବସ୍ଥାକୁ ଅଧ୍ୟୟନ କରି ମୁଖବନ୍ଧ ପ୍ରସ୍ତୁତ କରାଯାଇଥାଏ । ମୁଖବନ୍ଧର ପ୍ରସଙ୍ଗ କ'ଣ ଓ କିପରି ହେବା ଆବଶ୍ୟକ ନିମ୍ନରେ ସୂଚନା ଦିଆଯାଉଛି ।

୧. ବହି କିପରି ପ୍ରକାଶ ପାଇଲା ତା'ର ସୂଚନା ପ୍ରଦାନ କରିବା ଆବଶ୍ୟକ ।

୨. ଲେଖକ କାହିଁକି ଏହି ପୁସ୍ତକ ରଚନା କଲେ ତା'ର ବିବରଣୀ ମୁଖବନ୍ଧରେ ରହିବା ବାଞ୍ଛନୀୟ ।

୩. ଏହି ନିର୍ଦ୍ଦିଷ୍ଟ ବିଷୟଟିକୁ କାହିଁକି ପୁସ୍ତକ ଆକାର ଦେବାକୁ ମନସ୍ଥ କଲେ ।

୪. ଏଥିପାଇଁ ପ୍ରେରଣା କେଉଁଠୁ ପାଇଲେ ।

୫. ପୁସ୍ତକର ସଂକ୍ଷିପ୍ତ ସୂଚନା ମୁଖବନ୍ଧରେ ରହିବା ଆବଶ୍ୟକ । ଏହାଦ୍ୱାରା ପାଠକ ସମଗ୍ର ପୁସ୍ତକ ପାଠ କରିବା ପାଇଁ ଆଗ୍ରହ ପ୍ରକାଶ କରିବ ।

୬. ଏହି ପୁସ୍ତକ ରଚନାର ଉତ୍ସ ଓ ପ୍ରଭାବିତ କ୍ଷେତ୍ର ଗୁଡ଼ିକ କ'ଣ ?

୭. ଯେଉଁମାନେ ଏହି ପୁସ୍ତକ ରଚନା ପାଇଁ ସହଯୋଗ କରିଛନ୍ତି, ଶେଷରେ ସମସ୍ତଙ୍କୁ ଧନ୍ୟବାଦ ଦେବା ଆବଶ୍ୟକ ।

୮. ମୁଖବନ୍ଧର ଶେଷ ପୃଷ୍ଠାରେ ରଚକଙ୍କ ସ୍ୱାକ୍ଷର, ସ୍ଥାନ ଓ ତାରିଖ ସ୍ଥାନିତ ହେବା ଆବଶ୍ୟକ ।

୯. ମୁଖବନ୍ଧ ଅଯଥା ଦୀର୍ଘ, ବର୍ଣ୍ଣନାଧର୍ମୀ ନହୋଇ ଏହା ସଂକ୍ଷିପ୍ତ ଓ ସୂଚନାତ୍ମକ ହେବା ଆବଶ୍ୟକ ।

ମୁଖବନ୍ଧ ରଚକ ଉପରୋକ୍ତ କଳାଧର୍ମ ଗୁଡ଼ିକ ପ୍ରତି ସଚେତନ ରହି ମୁଖବନ୍ଧ ରଚନା କରିବା ଆବଶ୍ୟକ । ନିଜ ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରତି ସଚେତନ ହେଲେ ଉପଯୁକ୍ତ ମୁଖବନ୍ଧ ସୃଷ୍ଟି ହୋଇପାରିବ । ୧୯୧୧ ମସିହାରେ କବି ଡବ୍ଲୁ.ବି.ୟେଟ୍‌ସଙ୍କ ଦ୍ୱାରା

ରଚିତ ରବୀନ୍ଦ୍ର ନାଥ ଠାକୁରଙ୍କ 'ଗୀତାଞ୍ଜଳି'ର ମୁଖବନ୍ଧକୁ ଏହାର ଦୃଷ୍ଟାନ୍ତ ଭାବରେ ନିଆଯାଇପାରିବ । ମୁଖବନ୍ଧ ମାଧ୍ୟମରେ ହିଁ ଏହି ପୁସ୍ତକଟି ଜଗତର ଦୃଷ୍ଟି ଆକର୍ଷଣ କରିଥିଲା ।

ମୁଖବନ୍ଧ ରଚକର ପ୍ରତିଭା ଓ ଯୋଗ୍ୟତା ଆଧାରରେ ସଫଳ ମୁଖବନ୍ଧ ରଚନା ସଂଭବ ହୋଇଥାଏ । ଅନେକ କ୍ଷେତ୍ରରେ ଅନ୍ୟଜଣେ ଲେଖକଙ୍କ ଦ୍ୱାରା ରଚିତ ଓ ପୁସ୍ତକରେ ଗ୍ରଥିତ ମୁଖବନ୍ଧ ଗୁଡ଼ିକ ମୂଳ ପାଠ ଠାରୁ ଉଚ୍ଚକୋଟୀର ହୋଇଥାଏ । ଏହାର କାରଣ କ'ଣ ? ଏହା ମୁଖବନ୍ଧ ରଚ଼କର ପରିପକ୍ୱତା ଓ ପ୍ରତିଭା ଉପରେ ପର୍ଯ୍ୟବସିତ । ନିଜେ ଲେଖକ ପୁସ୍ତକଟି ରଚନା କରିସାରିବା ପରେ ମୁଖବନ୍ଧ ରଚନା କରୁଥିବାରୁ ପୁସ୍ତକ ରଚନାର ଅଭିଜ୍ଞତା ଓ ପୁସ୍ତକ ରଚନାର ତ୍ରୁଟିକୁ ମୁଖବନ୍ଧରେ ଅବତାରଣା କରିଥାଏ । ଦ୍ୱିତୀୟ କ୍ଷେତ୍ରରେ ଏହା ଅଧିକ ଆକର୍ଷଣୀୟ ହେବାର କାରଣ ଏୟା ଯେ ଏଥିରେ ଅନ୍ୟଜଣେ ଲେଖକର ପ୍ରଜ୍ଞା ଓ ହୃଦୟବତ୍ତା ପ୍ରକାଶ ପାଇଥାଏ । ନିଜ ପୁସ୍ତକର ନିଜେ ମୁଖବନ୍ଧ ରଚନା କରିବା ଅପେକ୍ଷା ଅନ୍ୟ ଜଣେ ଲେଖକ ଦ୍ୱାରା ଏହା ରଚିତ ହେବା ଯୋଗୁ ପୁସ୍ତକଟି ଅଧିକ ଗୌରବମଣ୍ଡିତ ହୋଇଥାଏ । ନୂଆଭାଷା ଓ ଶୈଳୀର ମୁଖବନ୍ଧ ପାଠକକୁ ଆକୃଷ୍ଟ କରିଥାଏ । ମୁଖବନ୍ଧ ଲେଖକ ନିଜେ ପୁସ୍ତକର ଲେଖକ ନ ହୋଇଥିଲେ ଜଣେ ପାଠକର ଦୃଷ୍ଟି ଓ ସମାଲୋଚ଼କର ଦୃଷ୍ଟି ମୁଖବନ୍ଧ ମାଧ୍ୟମରେ ପ୍ରକାଶ ପାଇଥାଏ । ଏହି ଦ୍ୱିବିଧ ସଫଳତା ଯୋଗୁ ପୁସ୍ତକଟି ଅଧିକ ଗୌରବମଣ୍ଡିତ ହୋଇ ପାଠକ ଦ୍ୱାରା ଆଦୃତ ହୋଇଥାଏ । ଏହି ଦୃଷ୍ଟିକୋଣରୁ ମୁଖବନ୍ଧ ରଚ଼କ ଜଣେ ଶାସ୍ତ୍ରଦର୍ଶୀ, ପ୍ରଜ୍ଞାଶୀଳ, ଅନ୍ତର୍ଦୃଷ୍ଟି ସଂପନ୍ନ ହେବା ସହ ହୃଦୟବାନ୍ ଓ ପ୍ରତିବଦ୍ଧ ବ୍ୟକ୍ତି ହେବା ଆବଶ୍ୟକ । ଅନ୍ୟର ରଚ଼ନାକୁ ଆଲୋକିତ କରିବାରେ ତା'ର ଉଦାରତା ଥିବା ଆବଶ୍ୟକ । ଗଦ୍ୟ ରଚନାରେ ପରିପକ୍ୱତା ଓ ଭାଷା ପ୍ରୟୋଗରେ ଦକ୍ଷତା ନ ଆସିଲେ ଜଣେ ମୁଖବନ୍ଧ ରଚକ ହୋଇପାରିବ ନାହିଁ । ମୁଖବନ୍ଧ ରଚନା ଏହିସବୁ ପ୍ରକରଣ ଉପରେ ନିର୍ଭର କରିଥାଏ । ଜଣେ ଉତ୍କୃଷ୍ଟ ଲେଖକ ହିଁ ସଫଳ ମୁଖବନ୍ଧ ରଚକ ହୋଇପାରିବ ବୋଲି କୁହାଯାଇପାରିବ ।

## ।। ଦୁଇ ।।

ସମାଲୋଚ଼କ ନିତ୍ୟାନନ୍ଦ ଶତପଥୀ ପାଞ୍ଚଦଶନ୍ଧି ଧରି ଓଡ଼ିଆ ସାହିତ୍ୟର ଗବେଷଣା, ସଂପାଦନା ଓ ପ୍ରବଂଧ ରଚନା ପରି ପ୍ରଜ୍ଞାଶୀଳ ସର୍ଜନ କର୍ମରେ ନିରନ୍ତର ନିୟୋଜିତ ଅଛନ୍ତି । ଆଧୁନିକ ସାହିତ୍ୟର ଗବେଷଣା ଓ ସ୍ଥିତିନିରୂପଣରେ ନିତ୍ୟାନନ୍ଦ ଶତପଥୀଙ୍କ ସୈଦ୍ଧାନ୍ତିକ ବକ୍ତବ୍ୟକୁ ସ୍ରଷ୍ଟା ଓ ପାଠକମାନେ ଗ୍ରହଣ କରି ଆସୁଛନ୍ତି । ଆଧୁନିକ କବିତା, ଗଳ୍ପ ଓ ଉପନ୍ୟାସ ସଂପର୍କିତ ତାଙ୍କର଼ ବିସ୍ତୃତ ଆଲୋଚ଼ନା ଯୋଗୁ ଆଧୁନିକ ସାହିତ୍ୟ

ଓଡ଼ିଆ ପାଠକ ମାନଙ୍କର ନିକଟବର୍ତ୍ତୀ ହୋଇପାରିଛି । ଅନ୍ୟ ପକ୍ଷରେ ନିଜସ୍ୱ ରଚ଼ନା ଭିନ୍ନ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଅନ୍ୟ ସ୍ରଷ୍ଟାମାନଙ୍କର ପୁସ୍ତକ ସଂପାଦନା, ମୁଖବନ୍ଧ ରଚ଼ନା ଓ ସମୀକ୍ଷା ମାଧମରେ ଓଡ଼ିଆ ସମାଲୋଚ଼ନା ସାହିତ୍ୟକୁ ସମୃଦ୍ଧ କରି ଆସୁଛନ୍ତି । ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚ଼ନା କର୍ମକୁ ମୁଖ୍ୟତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରିବ ।

(କ) ପ୍ରଥମ ପର୍ଯ୍ୟାୟ : ସ୍ୱରଚ଼ିତ ପୁସ୍ତକର ମୁଖବନ୍ଧ

(ଖ) ଦ୍ୱିତୀୟ ପର୍ଯ୍ୟାୟ : ସ୍ୱସଂପାଦିତ ପୁସ୍ତକର ମୁଖବନ୍ଧ

(ଗ) ତୃତୀୟ ପର୍ଯ୍ୟାୟ : ଅନ୍ୟ ରଚ଼ିତ ପୁସ୍ତକର ମୁଖବନ୍ଧ

ସ୍ୱରଚ଼ିତ ପୁସ୍ତକ ମାନଙ୍କର ମୁଖବନ୍ଧ ରଚନା କ୍ଷେତ୍ରରେ ଡ. ନିତ୍ୟାନନ୍ଦ ଶତପଥୀଙ୍କ ସମାଲୋଚକୀୟ ଦୃଷ୍ଟିଭଂଗୀର ପ୍ରତିଫଳନ ଅଧିକ ଲକ୍ଷ୍ୟ କରାଯାଏ । ପୁସ୍ତକର ପ୍ରସ୍ତୁତି ଭୂମି, ଗବେଷଣାର ପରିସର ଉଲ୍ଲେଖ ସହିତ ପୁସ୍ତକର ମୁଖ୍ୟାଂଶ ଗୁଡ଼ିକୁ ମୁଖବନ୍ଧରେ ଆଲୋକିତ କରାଯାଇଥାଏ । ଅନେକ କ୍ଷେତ୍ରରେ ନିଜସ୍ୱ ପୁସ୍ତକର ମୁଖବନ୍ଧ ଗୁଡ଼ିକ ଗ୍ରନ୍ଥ ସଂପର୍କିତ ସୂଚ଼ନା ଅପେକ୍ଷା ସାହିତ୍ୟ ପରିମଣ୍ଡଳ ସଂପର୍କରେ ସୂଚିତ କରିଥାଆନ୍ତି । ଡକ୍ଟର ଶତପଥୀ ଅନେକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥର ସ୍ରଷ୍ଟା; ସମାଲୋଚ଼ନା, ସଂକଳନ, ସଂପାଦନା, ଜୀବନୀ ରଚ଼ନା ଓ ଆତ୍ମଜୀବନୀ ସର୍ଜନାରେ ତାଙ୍କର ଲେଖକୀୟ ସିଦ୍ଧି ରହିଛି । ଏହି ପରିଚର୍ଚ୍ଚାରେ ତାଙ୍କର କେତୋଟି ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥର ମୁଖବନ୍ଧକୁ ଏଠାରେ ଦୃଷ୍ଟାନ୍ତ ଭାବରେ ଉପସ୍ଥାପନା କରାଯାଉଛି ।

'ସବୁଜରୁ ସାଂପ୍ରତିକ' ନିତ୍ୟାନନ୍ଦ ଶତପଥୀଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଗବେଷଣା ଗ୍ରନ୍ଥ । ପାଠକ ଏହି ଗ୍ରନ୍ଥର ଉଚ୍ଚାଙ୍ଗ ଗବେଷଣା ଉପଲବ୍ଧି କରୁଥିବାବେଳେ ଏହାର ଅନନ୍ୟ ବୈଶିଷ୍ଟ୍ୟ ରହିଛି ମୁଖବନ୍ଧରେ । ମୁଖବନ୍ଧ ଏଠାରେ ଗବେଷଣା ଧର୍ମ ଅନୁଯାୟୀ ରଚନା କରାଯାଇଛି । ମୁଖବନ୍ଧର ପାଠ ଗୁଡ଼ିକୁ ଗବେଷଣାର ମୁଖ୍ୟ ପାଠର ଉତ୍ସ ଭାବରେ ପ୍ରସ୍ତୁତି କରାଯାଇଛି । ମୁଖବନ୍ଧରେ ପାଦଟୀକାର ପ୍ରୟୋଗ କରାଯାଇ ଏହାକୁ ଗବେଷଣା ଅନୁରୂପ ମାନ୍ୟତା ଦିଆଯାଇଛି । 'ସବୁଜରୁ ସାଂପ୍ରତିକ' ପୁସ୍ତକର ଅନ୍ୟତମ ମୁଖବନ୍ଧ ଉପଲବ୍ଧି ହେଉଛି ଯେ ଏଥିରେ ସତ୍ୟବାଦୀ ସାହିତ୍ୟଠାରୁ ସାଂପ୍ରତିକ ସାହିତ୍ୟ (୧୯୭୦ ପର୍ଯ୍ୟନ୍ତ) ଚେତନା ଭିତ୍ତିକ ବିଶ୍ଳେଷଣ କରାଯାଇଛି । 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥର ମୁଖବନ୍ଧ କିପରି ଆରଂଭ ହୋଇଛି ଲକ୍ଷ୍ୟ କରନ୍ତୁ । "୧୯୨୦-୨୧ ବେଳକୁ ସତ୍ୟବାଦୀ କାବ୍ୟଧାରା ନାନା ପାରିସ୍ଥିତିଗତ ପ୍ରତିଘାତ ତଥା ଜାତୀୟ ସଂଗ୍ରାମର ପ୍ରତ୍ୟକ୍ଷ ଆହ୍ୱାନ ଯୋଗୁ କ୍ଷୀଣାବଶେଷ ହୋଇ ଆସିଥିଲେବି, ପ୍ରାୟ ୧୯୩୫-୩୬ ପର୍ଯ୍ୟନ୍ତ ଏହା ଗତିଶୀଳ ଥିଲା । ସତ୍ୟବାଦୀ ଜୀବନ ଦର୍ଶନର ମୁଖ୍ୟ ପ୍ରାଣ ପ୍ରତିଷ୍ଠାତା ଉତ୍କଳମଣି ଗୋପବନ୍ଧୁ ୧୯୨୨ ରୁ ୨୪ ପର୍ଯ୍ୟନ୍ତ କାରାବରଣ କରିଥିଲେ । କିନ୍ତୁ ୧୯୨୩ ଜାନୁଆରୀ ମାସରେ କଟକରୁ ବିହାରର

ହଜାରିବାଗ ଜେଲ୍‌କୁ ସ୍ଥାନାନ୍ତରିତ ହେବା କାଳରେ ଅଗଣିତ ଶୋକାକୁଳ ଜନତାକୁ ଦେଖି ତାଙ୍କ ମନରେ ଯେଉଁ ଗଭୀର ବେଦନା ଜାତ ହୋଇଥିଲା ତାହାହିଁ ପରେ ଏକ ଅମର କାବ୍ୟ 'ବନ୍ଦୀର ଆତ୍ମକଥା'ରେ ଆତ୍ମ ପ୍ରକାଶ କରିଛି । ।।୧।।" ଏଠାରେ ଲକ୍ଷ୍ୟ କରିବାର କଥା ଏୟାଯେ ସବୁଜରୁ ସାଂପ୍ରତିକ ପୁସ୍ତକର ପରିସର ହୋଇଥିବା ବେଳେ ପ୍ରାକ୍-ସବୁଜ ସାହିତ୍ୟ ଅର୍ଥାତ୍ ସତ୍ୟବାଦୀ ସାହିତ୍ୟ ସଂପର୍କରେ ଆଲୋଚ଼ନା ମୁଖବନ୍ଧରେ କରାଯାଇଛି । ପ୍ରଦତ୍ତ ତଥ୍ୟରେ ମଧ ପାଦଟୀକା ପ୍ରଦାନ କରାଯାଇଛି । 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥର ସମୁଦାୟ ମୁଖବନ୍ଧଟି କାବ୍ୟଧାରା ବିଶ୍ଳେଷଣ ସହ ଗ୍ରନ୍ଥର ପରିସର ଓ ଆଭିମୁଖ୍ୟ ସଂପର୍କରେ ତଥ୍ୟନିଷ୍ଠ ଉପସ୍ଥାପନା କରିଛି । ଡକ୍ଟର ଶତପଥୀ ସବୁଜ ସାହିତ୍ୟକୁ ଏକ ଯୁଗ ଭାବରେ ଗ୍ରହଣ କରିନଥିବାରୁ ଏହାର ସଫେଇ ମୁଖବନ୍ଧରେ ଦେଇଛନ୍ତି । ତେଣୁ ପ୍ରଥମ ପରିଚ୍ଛେଦରେ ସବୁଜ ଏକ ସାହିତ୍ୟ ଯୁଗ ନୁହେଁ ବୋଲି ବହୁ ଯୁକ୍ତି ଓ ତଥ୍ୟ ମାଧ୍ୟମରେ ପ୍ରତିପାଦନ କରାଯାଇଛି । ଏପରି ଏକ ପଦକ୍ଷେପ ପ୍ରଥମଥର ପାଇଁ ନିଆଯାଇ ଥିବାରୁ "ସବୁଜ ଗୋଷ୍ଠୀର ସତୀର୍ଥ ଓ ସବୁଜକୁ ଏକ କାବ୍ୟଯୁଗ ବୋଲି ଭାବପ୍ରବଣତା ବଶତଃ ବାରମ୍ୱାର ଉଚ୍ଚାରଣ କରୁଥିବା ଏ ସାହିତ୍ୟର ଅଧ୍ୟାପକ, ସମାଲୋଚକ, ଓ ଛାତ୍ରମାନେ ବିସ୍ମିତ ଓ ରୁଷ୍ଟ ହେଲେବି ମୁଁ ନିରୁପାୟ, କାରଣ ଇତିହାସର ଏ ସତ୍ୟତାକୁ ଉପେକ୍ଷା କରିବା ନିରପେକ୍ଷତା ହୋଇନଥାନ୍ତା ।" ମୁଖବନ୍ଧରେ ପ୍ରଫେସର ଶତପଥୀ ଏପରି ଦୃଢ଼ ମନ୍ତବ୍ୟ ଦେଇପାରନ୍ତି । ମୋର ମନେହୁଏ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ 'କବିତା-୧୯୬୨'ର ମୁଖବନ୍ଧ ପରି ନିତ୍ୟାନନ୍ଦ ଶତପଥୀଙ୍କ 'ସବୁଜରୁ ସାଂପ୍ରତିକ' ମୁଖବନ୍ଧ ଏକ ଅନନ୍ୟ ସାରସ୍ୱତ ସଂପତ୍ତି । ଲେଖକଙ୍କ 'ସତୁରୀରୁ ସହସ୍ରାବ୍ଦୀ' ସମାଲୋଚ଼ନା ପୁସ୍ତକର ମୁଖବନ୍ଧ 'ସବୁଜରୁ ସାଂପ୍ରତିକ' ମୁଖବନ୍ଧ ପରି ହୋଇପାରି ନ ଥିଲେବି ଗୁରୁତ୍ୱପୂର୍ଣ୍ଣ । "ସତୁରୀରୁ ସହସ୍ରାବ୍ଦୀ" ନାମକରଣରେ ପ୍ରକାଶ ପାଇବାକୁ ଯାଉଥିବା ଏ ଗ୍ରନ୍ଥଟି ପ୍ରକୃତରେ ଉତ୍ତର-ସତୁରୀ କାବ୍ୟଚ଼େତନା ଉପରେ ଏକ ଅନୁଶୀଳନ ମାତ୍ର । ମୁଁ ପ୍ରଥମରୁ ସ୍ପଷ୍ଟ କରିଦେବାକୁ ଚାହେଁଯେ ଏ କୃତି 'ସବୁଜରୁ ସାଂପ୍ରତିକ' ଏକ ଗବେଷଣାମୂଳକ ଗ୍ରନ୍ଥ ନୁହେଁ । ପତ୍ରପତ୍ରିକାରୁ କବିତା ପ୍ରକାଶନର ପ୍ରଥମ ଐତିହାସିକ ତାରିଖକୁ 'ସବୁଜରୁ ସାଂପ୍ରତିକ'ରେ ଗୁରୁତ୍ୱ ଦିଆ ଯାଇଥିଲା ବେଳେ ଏ ଗ୍ରନ୍ଥରେ କବିମାନଙ୍କ ସତୁରୀ ପରବର୍ତ୍ତୀ ପ୍ରକାଶିତ ସମସ୍ତ କବିତା ଗ୍ରନ୍ଥ ଉପରେ ଗୁରୁତ୍ୱ ଦିଆଯାଇଛି । ମୋର ଧାରଣା ସମାଲୋଚ଼କଟିଏ ପ୍ରଥମେ ଜଣେ ଭାଷ୍ୟକାର ଅର୍ଥାତ୍ କବିତା ଓ ପାଠକ ମଧ୍ୟରେ ଏକ ସଂଯୋଗ ସେତୁ । କବିତାର ଜଟିଳ ଓ ଗୁଂଫିତ ଭାବନାକୁ ନିଜେ ବୁଝି ପାଠକକୁ ବୁଝାଇବା ତା'ର ପ୍ରଥମ ଦାୟିତ୍ୱ । ତେଣୁ ଆକଳନରେ ନିଜର ପାଣ୍ଡିତ୍ୟ ଓ ଆହରଣ-ଶୀଳତା ପ୍ରଦର୍ଶନ କରିବା ଅପେକ୍ଷା କବି ଓ କବିତାକୁ ଯଥାସମ୍ଭବ ନିର୍ଭରଯୋଗ ଭାବେ ପାଠକଙ୍କ ପାଖରେ ପହଂଚ଼େଇବା ତାର ଏକ ସାରସ୍ୱତ ଦାୟିତ୍ୱ । ଉତ୍ତର ସତୁରୀ କାବ୍ୟ ଚେତନାର ଆକଳନ

ପାଇଁ ପ୍ରଫେସର ଶତପଥୀ ଏହି ଗ୍ରନ୍ଥରେ ଦଶଜଣ ବରିଷ୍ଠ କବିଙ୍କ କୃତିକୁ ସାମଗ୍ରିକ ଭାବରେ ଆଲୋଚ଼ନା କରିଛନ୍ତି । କବିମାନଙ୍କ ସହ ବ୍ୟକ୍ତିଗତ ସାକ୍ଷାତକାର, ଅଳାପ ମାଧ୍ୟମରେ କବିତାର ଗଣ୍ଠି ଫିଟାଇବା ସହ ଉତ୍ତର ଆଧୁନିକ କବିତାର ଲାକ୍ଷଣିକ ସୂଚନା ଏହି ଗ୍ରନ୍ଥର ମୁଖବନ୍ଧରେ ପ୍ରଦାନ କରାଯାଇଛି । ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚନାର ଗାଂଭୀର୍ଯ୍ୟ ଓ ଗବେଷଣା ଏହି ଗ୍ରନ୍ଥରେ ପରିଲକ୍ଷିତ ହୁଏ ନାହିଁ ଯଦିଓ ସେ ବହୁ ଅବୋଧ କବିତାର ଭାଷ୍ୟ ଏ ପୁସ୍ତକରେ ଲେଖି ରଖିଛନ୍ତି ।

'ମେଗା ଓଡ଼ିଆ ଉପନ୍ୟାସ' ଗ୍ରନ୍ଥଟି ପ୍ରଫେସର ଶତପଥୀଙ୍କ ସମାଲୋଚକୀୟ ଦକ୍ଷତାର ଅନ୍ୟତମ ସିଦ୍ଧି । ଏହି ଗ୍ରନ୍ଥର ମୁଖବନ୍ଧଟି ମେଗା ଉପନ୍ୟାସର ସଂଜ୍ଞା ଓ ସ୍ୱରୂପ ବିଶ୍ଲେଷଣରେ ନିୟୋଜିତ ହୋଇଛି । ମେଗା ଉପନ୍ୟାସ ବିଷୟଟି ଓଡ଼ିଆ ସାହିତ୍ୟରେ ନୂଆ ହୋଇଥିବାରୁ ପ୍ରଫେସର ଶତପଥୀ ମୁଖବନ୍ଧରେ ଏ ସଂପର୍କରେ ତାତ୍ତ୍ୱିକ ଆଲୋଚ଼ନା କରିଛନ୍ତି । ଗ୍ରନ୍ଥ ସଂପର୍କରେ ଏକ ତାତ୍ତ୍ୱିକ ଓ ପ୍ରାୟୋଗିକ ଧାରଣା ପାଇଁ ଉପନ୍ୟାସର ମୁଖବନ୍ଧକୁ ବ୍ୟବହାର କରାଯାଇଛି । ମେଗା ଉପନ୍ୟାସର ସମୟ ସୀମା, କଥାନ୍ତର ସୃଷ୍ଟି ଦକ୍ଷତା ସହ ବର୍ଣ୍ଣନାତ୍ମକତାକୁ ମୁଖ୍ୟ ପରିମାପକ ଭାବରେ ବ୍ୟବହାର କରି ପାଞ୍ଚଟି ଉପନ୍ୟାସର ସଂକ୍ଷିପ୍ତାଂଶ ସହ ଗ୍ରନ୍ଥ ସମାଲୋଚନାକୁ ଏହି ପୁସ୍ତକରେ ଗ୍ରଥିତ କରିଛନ୍ତି । ଗ୍ରନ୍ଥର ଆବଶ୍ୟକତା ସଂପର୍କରେ ମୁଖବନ୍ଧରେ କୁହାଯାଇଛି "ପାଠକମାନେ ତ କହୁଛନ୍ତି ସେମାନଙ୍କର ଏଡ଼େ ଏଡ଼େ ଉପନ୍ୟାସକୁ ପଢ଼ିବାକୁ ଆଉ ବେଳ ନାହିଁ । ସେମାନେ ଜୀବନ ଜଞ୍ଜାଳରେ ଖୁବ୍ ବ୍ୟସ୍ତ ଓ ବିବ୍ରତ । ତେବେ ପାଠ କରନ୍ତୁ ଏହି ଗ୍ରନ୍ଥ-ମୂଳଉପନ୍ୟାସର ସମସ୍ତ ମଂଜ ଓ ମୁଖ୍ୟ ପ୍ରସଙ୍ଗ ସହିତ ତା'ର ବିଶେଷତ୍ୱକୁ ଉପଲବ୍ଧି କରିବେ ।" ଓଡ଼ିଆ ସାହିତ୍ୟର ଏହି ଅଭିନବ ଗ୍ରନ୍ଥ ରଚନାକୁ ଏହାର ମୁଖବନ୍ଧର ତାତ୍ତ୍ୱିକ ନିଦର୍ଶନ ଆହୁରି ମଜବୁତ କରିପାରିଛି । ନିତ୍ୟାନନ୍ଦ ଶତପଥୀଙ୍କ ସ୍ୱରଚିତ ଗ୍ରନ୍ଥର ମୁଖବନ୍ଧରେ ପାଠକ ଲେଖକଙ୍କ ଦାୟିତ୍ୱକତା ସହ ବିନୟଭାବକୁ ମଧ୍ୟ ଲକ୍ଷ୍ୟ କରିପାରିବ । ଲେଖକ ନିଜ ବକ୍ତବ୍ୟ ପଛରେ ନିଷ୍ଠାର ସହ ଠିଆ ହେବା ସହ ନିଜର ଅଯତ୍ନ ଯୋଗୁ ପୁସ୍ତକରେ ତ୍ରୁଟି ପରିଳକ୍ଷିତ ହୋଇଥିବାରୁ କ୍ଷମା ମାଗିନେବାର ନମ୍ରତା ମୁଖବନ୍ଧରେର ପ୍ରକାଶ କରିଛନ୍ତି । 'ପ୍ରମୁଖ କବି କତିପୟ' ସମାଲୋଚ଼ନା ଗ୍ରନ୍ଥର ମୁଖବନ୍ଧ ଏହି ମାର୍ଗରେ ବିଗ୍ରର୍ଯ୍ୟ । "ସମୟାଭାବରୁ ଓ ଆଖି ଖରାପ ଥିବାରୁ ପ୍ରଥମ ୨୦୦ ପୃଷ୍ଠାର ପ୍ରୁଫ୍ ମୁଁ ନିଜେ ଦେଖିପାରି ନାହିଁ । ଏବେ ଦେଖୁଚ଼ି ଅନେକ ମୁଦ୍ରଣ ପ୍ରମାଦ ରହିଛି । ଏପରି ଦୋଷତ୍ରୁଟିକୁ ନ ଦେଖି ସଂଶୋଧନ କରି ପଢ଼ିବାକୁ ଉଦାର ପାଠକଙ୍କୁ ମୋର ଆନ୍ତରିକ ନିବେଦନ ।"

ନିତ୍ୟାନନ୍ଦ ଶତପଥୀଙ୍କ ରଚିତ ସମାଲୋଚ଼ନା ପୁସ୍ତକ ଗୁଡ଼ିକର ମୁଖବନ୍ଧ ମୂଳତଃ ସ୍ରଷ୍ଟାଙ୍କର ଗବେଷଣା ଅନୁସନ୍ଧିତ୍ସାର ପରିଚୟ ପ୍ରଦାନ କରେ । କବିତା, ଗଳ୍ପ ଓ ଉପନ୍ୟାସ ଗୁଡ଼ିକର ସମାଲୋଚ଼ନା ରଚନା କଲାବେଳେ ସଂଲଗ୍ନ ମୁଖବନ୍ଧ ଗୁଡ଼ିକ ଆଲୋଚ଼୍ୟ

ସାହିତ୍ୟର ଧାରା ଓ ଧାରଣାକୁ ବିଶ୍ଳେଷଣ କରି ପାଠକ ନିକଟରେ ଏକ ବୃହତ୍ତର ଜ୍ଞାନରାଜ୍ୟର ଅନାବରଣ କରିପାରିଛନ୍ତି । 'କବିତା ଯୁଗେ ଯୁଗେ', 'ଆଧୁନିକ ଓଡ଼ିଆ ସାହିତ୍ୟ', 'ଗଳ୍ପ ଓ ଗାଳ୍ପିକ', 'କାବ୍ୟ ପ୍ରକରଣ', 'ସତ୍ୟବାଦୀ ଯୁଗ - ସ୍ରଷ୍ଟା ଓ ସୃଷ୍ଟି', 'କବିତା ସେତୁ', 'କାବ୍ୟଦୃଷ୍ଟି କାବ୍ୟବିଚାର' ଆଦି ସମାଲୋଚନା ଗ୍ରନ୍ଥମାନଙ୍କରେ ନିତ୍ୟାନନ୍ଦ ଶତପଥୀ ପ୍ରାସଙ୍ଗିକ ମୁଖବନ୍ଧ ରଚନା କରି ପାଠକ ଓ ଗବେଷକଙ୍କ ମଧ୍ୟରେ ପ୍ରଥମରୁ ଏକ ସମ୍ପର୍କ ସେତୁ ନିର୍ମାଣ କରିବାର ପ୍ରୟାସ କରିଛନ୍ତି ।

ପ୍ରଫେସର ଶତପଥୀଙ୍କ ଆତ୍ମଜୀବନୀ 'ପ୍ରେମ ଓ ପ୍ରତାରଣା', 'ପ୍ରେମ ଓ ପରିତାପ' ଓ 'ଶୈଶବରୁ ଅବସର' ଗ୍ରନ୍ଥ ଗୁଡ଼ିକର ମୁଖବନ୍ଧ ସମକାଳୀନ ସାହିତ୍ୟର ପାଣିପାଗ, ବ୍ୟକ୍ତିଗତ ଜୀବନର ଉଷ୍ଣତା, ସ୍ୱପ୍ନଭଙ୍ଗ ସହ ଓଡ଼ିଶାର ସାମାଜିକ-ରାଜନୀତିକ ଘଟଣାବଳୀର ଚିତ୍ର ପ୍ରଦାନ କରିଥାଏ । 'ଶୈଶବରୁ ଅବସର' ଆତ୍ମଜୀବନୀ ଗ୍ରନ୍ଥରେ ଆତ୍ମଜୀବନୀର ଲକ୍ଷ୍ୟ କ'ଣ ହେବା ଉଚିତ୍ ତାହା ପ୍ରଫେସର ଶତପଥୀ ମୁଖବନ୍ଧରେ କହିଛନ୍ତି । "ଜୀବନର କୌଣସି ଘଟଣାକୁ ଗୋପନୀୟ ରଖିବାରେ ମୁଁ ପକ୍ଷପାତୀ ନୁହେଁ । ତା'ହେଲେ ଆତ୍ମଜୀବନୀ କପଟାଚାର ହୋଇଯିବ । ଆତ୍ମଜୀବନୀ ପଢ଼ି ଲେଖକଙ୍କୁ ସମସ୍ତେ ଯେ ତା'ର ସତ୍ୟବାଚ୍ ପାଇଁ ପ୍ରଶଂସା କରିବେ - ଏପରି କିଛି ସିଦ୍ଧାନ୍ତ ନାହିଁ । ତେଣୁ ମୁଁ ନିନ୍ଦା ଓ ପ୍ରଶଂସା ଉଭୟକୁ ପ୍ରାଣ ଦେଇ ଆପଣାର କରିଛି । ନିନ୍ଦୁକ ମାନଙ୍କୁ ସାଧୁବାଦ ଜଣାଉଛି । ଯେଉଁ ଲେଖକମାନେ ସତ୍ୟ ପ୍ରକାଶ ପାଇଁ ଭୟଭୀତ - ମୁଁ ସେ ବର୍ଗର ଲେଖକ ନୁହେଁ ।" ଏହି ଦୃଷ୍ଟିକୋଣରୁ ବିଚାର କଲେ 'ଶୈଶବରୁ ଅବସର' ଗ୍ରନ୍ଥରେ ଲେଖକ ନିଜର ସଂଘର୍ଷ-ସ୍ୱପ୍ନ-ପାପବୋଧକୁ ସମାନୁପାତିକ ଭାବରେ ଉପସ୍ଥାପନ କରିଛନ୍ତି । 'ପ୍ରେମ ଓ ପ୍ରତାରଣା', 'ପ୍ରେମ ଓ ପରିତାପ' ଓ 'ଶୈଶବରୁ ଅବସର' ଗ୍ରନ୍ଥ ତ୍ରୟର ମୁଖବନ୍ଧରେ ନିତ୍ୟାନନ୍ଦ ଶତପଥୀଙ୍କ ଭିନ୍ନ ଏକ ବ୍ୟକ୍ତିତ୍ୱ ପ୍ରକାଶ ପାଇଛି । ଏହି ବ୍ୟକ୍ତିତ୍ୱଟି ଜଣେ ଚଳଚଞ୍ଚଳ ଆଦର୍ଶବାଦୀ ଆଧୁନିକ ସାହିତ୍ୟ ଶିକ୍ଷକର ନୁହେଁ ପରନ୍ତୁ ଜଣେ ପ୍ରବଞ୍ଚନା ପୀଡ଼ିତ ପ୍ରେମ ଆତୁର ନିରୁତା ସ୍ରଷ୍ଟାମାନସର । ନିଜେ ସମାଲୋଚନାରେ ଖୁବ୍ ଗଂଭୀର ଓ ନିଷ୍ଠୁର ଜଣା ପଡୁଥିବା ପ୍ରଫେସର ଶତପଥୀଙ୍କ ଆବେଗ ପ୍ରବଣ ହୃଦୟର କୋମଳ ଅନୁରାଗ ଏହି ଗ୍ରନ୍ଥ ତ୍ରୟର ମୁଖବନ୍ଧରେ ପ୍ରତିଫଳିତ ହୋଇଛି । ଅତଏବ ନିତ୍ୟାନନ୍ଦ ଶତପଥୀଙ୍କ ସ୍ୱରଚିତ ଗ୍ରନ୍ଥ ମାନଙ୍କର ମୁଖବନ୍ଧରେ ପ୍ରତିଫଳିତ 'ପ୍ରେମ ଓ ପରିତାପ' ପ୍ରଫେସର ଶତପଥୀଙ୍କ ୨ୟ ଖଣ୍ଡିତ ଆତ୍ମଜୀବନୀ - ପ୍ରାୟ ଛ'ବର୍ଷର ବିବରଣୀକୁ ନେଇ ରଚିତ । ତାର ମୁଖବନ୍ଧରେ (ପଦେ କହିବାକୁ ହେବ) ଲେଖକ ଯେଉଁପରି ଦୁଃସାହସିକ ଭାବେ ଜୀବନର ସତ୍ୟ ପ୍ରକାଶ କରିଛନ୍ତି ତାହା ସମ୍ଭବତଃ ସମସାମୟିକ କୌଣସି ଲେଖକଙ୍କ ରଚ଼ନାରେ ପ୍ରକାଶ ପାଇନାହିଁ । ସେ ଲେଖିଛନ୍ତି ନିଜ ଜୀବନରେ ପ୍ରତାରିତ ହୋଇନଥିଲେ (ପ୍ରେମ ଓ ରାଜନୀତି) ପାଠକମାନଙ୍କ ଠାରୁ ଏତେ ଆଦରର ଫୁଲମାଳ କିପରି ପାଇଥାନ୍ତି ?" ପୁଣି ଲେଖିଛନ୍ତି -

"ରୋଗ, ବୈରାଗ୍ୟ, ବେଦନା, ବେପଥୁ, ପ୍ରତାରଣା ଓ ପରିତାପ ଧୀରେ ଧୀରେ ଜୀବନକୁ ମୃତ୍ୟୁର ଅନ୍ଧକାର କୂପ ଆଡ଼କୁ ଠେଲି ନିଏ । ଜୀବନର ସତୁରୀ ବର୍ଷର ଲୀଳାଖେଳା ପ୍ରାୟ ଶେଷ ହୋଇ ଆସିଲା । ଅନେକ ପାଇଲି । ଅନେକ ହରେଇଲି । ଏହାହିଁ ଜୀବନର ଉପଲବ୍‌ଧି । ଭାବୁଚି ପତ୍ନୀ, ପ୍ରେମ, ପରକୀୟା, ବଂଧୁ, ପରିବାର ଓ ପରିଜନ, ପରିବେଶ ଓ ପରିପାର୍ଶ୍ୱ ସମସ୍ତଙ୍କୁ ଛାଡ଼ି ଏ ପୃଥିବୀରୁ ଯିବାକୁ ହେବ - ଏହାହିଁ ନିଷ୍ଠୁରତମ ସତ୍ୟ । ତାକୁ ସ୍ୱୀକାର କରି ସ୍ୱାଗତ କରିବାଛଡ଼ା ଅନ୍ୟ ପନ୍ଥା ନାହିଁ ।" ପୂର୍ବ ଖଣ୍ଡିତ ଆତ୍ମଜୀବନୀ ପରି ଏହା ପାଠକ ମହଲରେ ଆଦୃତ ହେବ ବୋଲି ସେ ଆଶା କରିଛନ୍ତି ଯଦିଓ ଏହି ଖଣ୍ଡିତ ଜୀବନୀର ନାମ ରଖିଛନ୍ତି 'ପ୍ରେମ ଓ ପରିତାପ' ।

ଲେଖକୀୟ ବ୍ୟକ୍ତିତ୍ୱ ଦୁଇ ପ୍ରକାରର । ଜଣେ ପ୍ରଜ୍ଞାଶୀଳ, ବିଚାରଦର୍ଶୀ ଭାବରେ ସମାଲୋଚନା ଗ୍ରନ୍ଥ ମାନଙ୍କରେ ପ୍ରତୀତ ହୋଇଥିବା ନିତ୍ୟାନନ୍ଦ ଶତପଥୀ ନିଜର ସୃଜନ ଓ ଆତ୍ମଜୀବନୀ ପୁସ୍ତକର ମୁଖବନ୍ଧରେ ଆବେଗପ୍ରବଣ, ସ୍ନେହକାଙ୍ଗାଳ ମଣିଷଟି ଏପରି ମନେହୁଅନ୍ତି । 'ପ୍ରେମ ଓ ପରିତାପ'ର ମୁଖବନ୍ଧରେ ପ୍ରଫେସର ଶତପଥୀ କହିଛନ୍ତି, "ଜୀବନ ପାଇଁ ସେପରି କିଛି ନିର୍ଭର ଯୋଗ୍ୟ ଚିରନ୍ତନ ସତ୍ୟ ନାହିଁ । କେବଳ ଅନୁଭବ ହିଁ ଶେଷଦିନ ପର୍ଯ୍ୟନ୍ତ ତା'ର ପ୍ରାମାଣିକତା ରଖି ଚାଲିଥିବ ।" ଏହି ଅନୁଭବର ଅନନ୍ୟ ସମର୍ପଣ 'ଶୈଶବରୁ ଅବସର' ମୁଖବନ୍ଧରେ ପ୍ରକାଶ ପାଇଛି । ଏବେ ତ ମୁଁ ମୋର ଉପାର୍ଜନ ଦେଇ ଦେବାରେ ଗଭୀର ଆତ୍ମସନ୍ତୋଷ ଲାଭ କରୁଛି । ମୁଁ ପାଉଥିବା ସାହିତ୍ୟ ପୁରସ୍କାର ମୋର ନୁହେଁ ସେମାନଙ୍କର । ମୁଁ ପାଉଥିବା ଲେଖକୀୟ ରାଜଶୁଳ୍କ ଆଉ ମୋର ନୁହେଁ ଆମ ଅଞ୍ଚଳର ଅନେକ ଦୁଃଖୀ ଓ ଦରିଦ୍ରଙ୍କର - ଆଃ ଦେଇଦେବାରେ ପୁଣି ଏତେ ମାନସିକ ଶାନ୍ତି ଥାଏ - ତାହା ମୁଁ ବହୁ ଆଗରୁ ବୁଝିଲି ନାହିଁ କାହିଁକି ? ଏହି ଦୃଷ୍ଟିକୋଣରୁ ପ୍ରଫେସର ଶତପଥୀଙ୍କ ମୁଖବନ୍ଧ ଗୁଡ଼ିକ ତାଙ୍କ ବ୍ୟକ୍ତିତ୍ୱର ପ୍ରତିଫଳନ ବୋଲି ବୁଝିବାକୁ ପଡ଼ିବ ।

## ।। ତିନି ।।

ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନା ଓ ସଂକଳନ କାର୍ଯ୍ୟରେ ତାଙ୍କର ପରିପକ୍ୱତା ପ୍ରତିଫଳିତ ହୋଇଛି । ସଂପାଦନା କରିବା ଅର୍ଥ କେବଳ ଚୟନ ବା ବଛାବଛି କାର୍ଯ୍ୟ ନୁହେଁ, ଏହା ସ୍ରଷ୍ଟା ପ୍ରମାଣ କରିଛନ୍ତି । ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନାର ପ୍ରାୟୋଗିକ ଦୃଷ୍ଟିଟି ଏଥିରେ ସନ୍ନିବେଶିତ ମୁଖବନ୍ଧ ରଚନାରେ ପ୍ରତିଫଳିତ ହୋଇଥାଏ । କାହିଁକି ଓ କ'ଣ ପାଇଁ ଏହି ଗ୍ରନ୍ଥର ସଂପାଦନା ଆବଶ୍ୟକତା ପଡ଼ିଲା, ତା'ର ସବିଶେଷ ସୂଚନା ସ୍ରଷ୍ଟା ଦେଇଥାଆନ୍ତି । ମୁଖବନ୍ଧ ମାଧ୍ୟମରେ ପ୍ରଫେସର ଶତପଥୀ ଉକ୍ତ ଗ୍ରନ୍ଥଟିକୁ

ମହିମାମଣ୍ଡିତ କରି ଓଡ଼ିଆ ସାହିତ୍ୟରେ ପୁନଃ ପ୍ରବେଶ କରାଇଥାଆନ୍ତି । ସ୍ରଷ୍ଟାଙ୍କର ଏହି ଆଭିମୁଖ୍ୟକୁ ବିଶ୍ଳେଷଣ କରିବା ପାଇଁ ଏଠାରେ ଭିନ୍ନ ବର୍ଗର ଓ ସ୍ୱାଦର ଗୋଟିଏ ସଂପାଦିତ ଓ ସଂକଳିତ ଗ୍ରନ୍ଥକୁ ଦୃଷ୍ଟାନ୍ତ ଭାବରେ ଅବତାରଣା କରାଯାଉଛି ।

ନିତ୍ୟାନନ୍ଦ ଶତପଥୀଙ୍କ ଦ୍ୱାରା ସଂକଳିତ 'ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ, ୨ୟ ଭାଗ' ୧୯୮୩ ମସିହାରେ ଫ୍ରେଣ୍ଡସ୍ ପବ୍ଲିଶର୍ସଙ୍କ ଦ୍ୱାରା ପ୍ରକାଶ ପାଇଛି । ଏଥିରେ ବିଦ୍ୟୁତ୍‌ପ୍ରଭାଙ୍କ କବିତା ସହ ଶିଶୁ କବିତା ଗୁଡ଼ିକୁ ସ୍ଥାନ ଦିଆଯାଇଛି । ସ୍ରଷ୍ଟାଙ୍କ ଦ୍ୱାରା ରଚିତ କ୍ଷୁଦ୍ର ଉପନ୍ୟାସ 'ନିଃସ୍ୱଜଗତ' ସହ ତାଙ୍କର ବୈବାହିକ ଜୀବନର ଅନୁଭବକୁ ଏଥିରେ ଗୁନ୍ଥା ଯାଇଛି । ସମଗ୍ର ଗ୍ରନ୍ଥାବଳୀଟି ବିଦ୍ୟୁତ୍‌ପ୍ରଭାଙ୍କ ସୃଜନ ଓ ଜୀବନକୁ ଧାରଣ କରିଛି । ଜଣେ ପାଠକ ଏଥିରୁ କେବଳ ଭଲରଚନା ପାଇବ ନାହିଁ ପରନ୍ତୁ ସ୍ରଷ୍ଟାଙ୍କ ସହ ଏକାତ୍ମ ହେବାର ଅବସର ପାଇପାରିବ । ଏହି ଗ୍ରନ୍ଥାବଳୀରେ ସ୍ରଷ୍ଟାଙ୍କର ଉତ୍ତର ଜୀବନର ରଚନା ଗୁଡ଼ିକ ସ୍ଥାନିତ ହୋଇଛି । ଜୀବନ ପ୍ରତି ପରିପକ୍ୱ ଦୃଷ୍ଟିକୋଣ, ନୂତନ ସର୍ଜନାନୁଭୂତିରେ ତାଙ୍କ ଲେଖକୀୟ ଜୀବନର ପ୍ରତିନିଧିତ୍ୱ ଏହି ଗ୍ରନ୍ଥାବଳୀରେ ରହିଛି । ଏହିସବୁ ପ୍ରସଙ୍ଗ ଗୁଡ଼ିକୁ ଲକ୍ଷ୍ୟ କରି ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଯେଉଁ ମୁଖବନ୍ଧ ରଚନା କରିଛନ୍ତି, ତା'ର ପ୍ରାରଂଭିକ ଅଭିମତ ପ୍ରାସଙ୍ଗିକ ଓ ତଥ୍ୟନିଷ୍ଠ ହୋଇପାରିଛି । କବି ବିଦ୍ୟୁତ୍‌ପ୍ରଭାଙ୍କ ଉତ୍ତରକାଳୀନ କେତେକ କବିତା ଗୋଟିଏ ଅପ୍ରକାଶିତ ଉପନ୍ୟାସ ଓ ଏକାଙ୍କିକାର ସମାହାରରେ ଗ୍ରନ୍ଥାବଳୀର ୨ୟ ଭାଗ ପ୍ରକାଶିତ ହେଉଛି । ମୁଖ୍ୟତଃ ୧୯୫୬-୫୭ ପରବର୍ତ୍ତୀ କବିତା ସୃଷ୍ଟି ଏହି ସଂକଳନରେ ସନ୍ନିବେଶିତ ହୋଇଛି । ୧ମ ଭାଗରେ ସୂଚନା ଦିଆଯାଇଛି ଯେ ବିଦ୍ୟୁତ୍‌ପ୍ରଭାଙ୍କ ସୃଷ୍ଟିର ସ୍ପଷ୍ଟ ଅବକ୍ଷୟ ୧୯୫୭ ପରବର୍ତ୍ତୀ କାବ୍ୟ କବିତାରେ ପରିଲକ୍ଷିତ ହୁଏ । ଏ ସମୟରେ କାବ୍ୟାବେଗର ବିପୁଳ ପ୍ରେରଣା ହରେଇ ବସି କବି ଶିଶୁସାହିତ୍ୟ ସୃଷ୍ଟିରେ ଅଧିକରୁ ଅଧିକ ମନୋନିବେଶ କରିଛନ୍ତି । ଏ ସବୁ ସୃଷ୍ଟିରେ କବିତାର ସୁକୁମାର ଲାଳନା ବହୁ ପରିମାଣରେ କ୍ଷୁନ୍ନ ହୋଇଥିଲେବି ତାଙ୍କ କବିତାର ଆଉ ଏକ ଦିଗ ଉନ୍‌ମୋଚିତ ହୋଇଛି । ଏ ପର୍ଯ୍ୟାୟରେ ସେ ଅଧିକ ଭାବରେ ଭଗବତ୍ ଚେତନା ଓ ଆଧ୍ୟାତ୍ମିକ ଚିନ୍ତାରେ ଉଦ୍‌ବୁଦ୍ଧ ହୋଇଛନ୍ତି । ଏହା ତାଙ୍କ କାବ୍ୟମାନସର ଏକ ସ୍ୱାଭାବିକ ପରିଣତି ବୋଲି କୁହାଯାଇପାରେ । ପଣ୍ଡିଚେରୀର ପରିବେଶ ଓ ଶ୍ରୀମାଙ୍କ ଆକର୍ଷଣ ତାଙ୍କ କବିତାର ମୁଖ୍ୟ ବିଷୟବସ୍ତୁ । ଏଠାରେ ଲକ୍ଷ୍ୟ କରିବାର କଥା ବିଦ୍ୟୁତ୍‌ପ୍ରଭାଙ୍କ କବିତାର ଓ ଜୀବନର ସମାନ୍ତରାଳ ବିଶ୍ଳେଷଣ ଏହି ମୁଖବନ୍ଧରେ କରାଯାଇଛି । ଜଣେ ସମାଲୋଚକ ମୁଖବନ୍ଧ ରଚନା କଲେ ଏହି ସୁବିଧା ଉପଲବ୍ଧ ହୋଇଥାଏ । ଡକ୍ଟର ଶତପଥୀ ଏହି ଆରଂଭ ଅନୁଚ୍ଛେଦରେ କବିଙ୍କ ସଂପର୍କରେ ଯେଉଁ କେତୋଟି ତଥ୍ୟ ଦେଇଛନ୍ତି ତାହା ଏହିପରି ।

୧. ଗ୍ରନ୍ଥାବଳୀର ୧ମ ଭାଗ ସହ ଗ୍ରନ୍ଥାବଳୀର ୨ୟ ଭାଗ ମଧ୍ୟରେ ସମନ୍ୱୟ ଓ ସଂଯୋଗ ସ୍ଥାପନା ପାଠକର ଅବଗତି ନିମନ୍ତେ ୧ମ ଭାଗ ଗ୍ରନ୍ଥାବଳୀର ବକ୍ତବ୍ୟକୁ ପୁନର୍ମୋଚନ ।

୨. ବିଦ୍ୟୁତ୍ ପ୍ରଭାଙ୍କ କାବ୍ୟଜୀବନର ଅବକ୍ଷୟର ସମୟ ଭିତ୍ତିକ ସୂଚନା । ଏହି ସୂଚନା ପାଠକ ପାଇଁ ନିଶ୍ଚୟ ଆବଶ୍ୟକ ।

୩. କାବ୍ୟ ଅବକ୍ଷୟ ଯୋଗୁ ଶିଶୁ କବିତାରେ ମନୋନିବେଶ କବିତ୍ୱର ଏହି ସନ୍ଧିକ୍ଷଣ ସଂପର୍କରେ ସୂଚ଼ନା ରହିଛି ।

୪. ମୁଖବନ୍ଧକାର କ୍ଷୟଶୀଳ କବିତ୍ୱକୁ ସକରାତ୍ମକ ଦୃଷ୍ଟି ଦେଇ ଏହା ଶିଶୁ ସାହିତ୍ୟ ଉପଯୋଗୀ ବୋଲି ମତ ରଖିଛନ୍ତି ।

୫. ବିଦ୍ୟୁତ୍‌ପ୍ରଭାଙ୍କ ଶେଷ ପର୍ଯ୍ୟାୟର କବିତା ଭଗବତ୍ ବିଶ୍ୱାସୀ ହୋଇ ପଡ଼ିବାର କାରଣ ଅନୁସଂଧାନ କରି ଡକ୍ଟର ଶତପଥୀ ଏଠାରେ କବିଙ୍କ ଜୀବନକୁ ଏହାର ସମାନ୍ତରାଳ ଉପଭାବରେ ଗ୍ରହଣ କରିଛନ୍ତି ।

୬. ବିଦ୍ୟୁତ୍‌ପ୍ରଭାଙ୍କ ଶେଷ ଜୀବନ ପଣ୍ଡିଚେରୀ ଆଶ୍ରମରେ ଅତିବାହିତ କରିବାର ସୂଚନା ଏଠାରେ ରହିଛି ।

ଅତଏବ ମୁଖବନ୍ଧର ପ୍ରଥମ ଅନୁଚ୍ଛେଦରେ ପାଠକ ଜଣେ କାବ୍ୟ ବିଶ୍ଳେଷକ ସହ ଜୀବନୀ ଲେଖକକୁ ସାମ୍ନା କରିବ । ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚନାର ଏହା ଏକ ବିଶେଷ କଳାପକ୍ଷ । ପାଠକ ଗ୍ରନ୍ଥାବଳୀକୁ ପ୍ରବେଶ କରିବା ପୂର୍ବରୁ ବିଦ୍ୟୁତ୍‌ପ୍ରଭାଙ୍କ ଏହି ସବୁ କବିତା ଗୁଡ଼ିକର ପୃଷ୍ଠଭୂମିର ସଂଧାନ କରିପାରିବ । ଗ୍ରନ୍ଥାବଳୀ କିପରି ସଂପାଦନା କରାଯାଏ ଓ ମୁଖବନ୍ଧ ରଚନା କରାଯାଏ 'ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ' ତାର ଉଦାହରଣ । ସେହିପରି କବି ନାଟ୍ୟକାର ଅନାଲୋଚ଼ିତ ଘନଶ୍ୟାମ ଧଳଙ୍କ ଗ୍ରନ୍ଥାବଳୀ ସଂପାଦନା ସମୟରେ ସେ 'ସଂଧ୍ୟାବାଳୀ' କାବ୍ୟ ସଂପର୍କରେ ମତ ବ୍ୟକ୍ତ କରି କହନ୍ତି - "ଶ୍ରୀଧଳ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀର କବି ହୋଇଥିଲେ ସେ ସମୟର ଅନ୍ୟାନ୍ୟ କାବ୍ୟ ସହିତ ତାଙ୍କ କାବ୍ୟର ପ୍ରସିଦ୍ଧି ଆଧୁନିକ ଯୁଗ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇପାରିଥାନ୍ତା । କାରଣ ପ୍ରାଚୀନ ରୀତିଯୁଗୀୟ କାବ୍ୟର ନାନାଦି ବିଭବ ଓ ବିଭାବ ତାଙ୍କ କାବ୍ୟରୁ ମିଳେ, କେବଳ ଅତିରିକ୍ତ ଆଳଙ୍କାରିକତା ବ୍ୟତୀତ । ତେଣୁ ଏ କାବ୍ୟ ପ୍ରାଚୀନତା ଓ ଆଧୁନିକତାର ଏକ ମିଳନ ସେତୁ ବୋଲି କୁହାଯାଇପାରେ । ଏ କାବ୍ୟଟିକୁ ମୁକ୍ତ ଛନ୍ଦରେ ବା ପୟାର ଜାତୀୟ ଛନ୍ଦରେ ଲେଖିଥିଲେ କାବ୍ୟଟି ଅଧିକ ଗ୍ରହଣୀୟ ହୋଇଥାନ୍ତା । ତଥାପି ଏ କାବ୍ୟ କେବେବି ପ୍ରଭାବହୀନ ନୁହେଁ - ଏହାହିଁ ଶ୍ରୀ ଧଳଙ୍କ ଲେଖନୀର ସାର୍ଥକତା । (ପୃ.୫୮୯) ।

ପ୍ରଫେସର ଶତପଥୀ ସଂପାଦନା କରିଥିବା ପୂଜ୍ୟପୂଜା ସଂସଦ ପ୍ରକାଶିତ ୧୩ଟି ଯାକ ବହିରେ ତାଙ୍କର ପୁରୋକ୍ତି (ମୁଖବନ୍ଧ) ରହିଛି ଓ ତାହା ଇତିହାସ ଦୃଷ୍ଟିରୁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଉତ୍କଳ ଗୌରବ ମଧୁସୂଦନଙ୍କ ଠାରୁ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କ ସଂପର୍କରେ ଯେଉଁ କେତୋଟି ପୁସ୍ତକ ସେ ଓଡ଼ିଶାର ବିଶିଷ୍ଟ ଲେଖକମାନଙ୍କ ଲେଖାକୁ ନେଇ ସଂକଳନ କରିଛନ୍ତି ତାହା ଅବିସ୍ମରଣୀୟ ହୋଇ ରହିବ । ସେଥିପାଇଁ ତାଙ୍କ ତାରୁଣ୍ୟରେ ଯେଉଁ ଶ୍ରମ କରିଛନ୍ତି ତାହା ଦୁର୍ଲ୍ଲଭ ମନେହୁଏ ।

'ଲଳିତ ନିବନ୍ଧ' ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଦ୍ୱାରା ସଂକଳିତ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ । ଓଡ଼ିଆ ସାହିତ୍ୟର ମନୋଜ୍ଞ ପ୍ରବଂଧ ଗୁଡ଼ିକୁ ଲଳିତ ନିବନ୍ଧ ନାମରେ ସଂକଳିତ କରିବା ଏହା ପ୍ରଥମ ପ୍ରୟାସ । ଏଥିପାଇଁ ଏହି ସଂକଳନର ମୁଖବନ୍ଧରେ ଲଳିତ ନିବନ୍ଧ ଓ ପ୍ରବନ୍ଧ ମଧ୍ୟରେ କଣ ପାର୍ଥକ୍ୟ ରହିଛି, ତାହାକୁ ଚିହ୍ନଟ କରାଯାଇଛି । ଲଳିତ ନିବନ୍ଧର ଉତ୍ପତ୍ତି, ସ୍ୱରୂପ ଓ ପ୍ରୟୋଗ ସଂପର୍କରେ ମୁଖବନ୍ଧଟି ନିୟୋଜିତ ହୋଇଛି । ଗୋଟିଏ ନୂତନ ଧରଣର ସାହିତ୍ୟବାର୍ତ୍ତା ପାଇଁ ଏଠାରେ ମୁଖବନ୍ଧଟି ମୁଖଶାଳା ପରି ମନେ ହୋଇଛି । ସଂକଳକ ଇଂରାଜୀ ଲଳିତ ନିବନ୍ଧର ଆଦର୍ଶ ଭିତ୍ତିରେ ଓଡ଼ିଆ ଲଳିତ ନିବନ୍ଧର ଏକ ମାନକ ସୃଷ୍ଟି କରିଛନ୍ତି । ପାଶ୍ଚାତ୍ୟ ସାହିତ୍ୟର ତତ୍ତ୍ୱ ସହ ଓଡ଼ିଆ ସାହିତ୍ୟର ତଥ୍ୟକୁ ସମନ୍ୱିତ କରି ଲଳିତ ନିବନ୍ଧକୁ ଓଡ଼ିଆ ସାହିତ୍ୟରେ ପରିଚୟ ଓ ପ୍ରତିଷ୍ଠା ଦେଇଛନ୍ତି । ପ୍ରବନ୍ଧ ଠାରୁ ନିବନ୍ଧକୁ ନିଆରା ଦୃଷ୍ଟି ଦେବା ପାଇଁ ପ୍ରଫେସର ଶତପଥୀ କହିଛନ୍ତି, "ଓଡ଼ିଆ ସାହିତ୍ୟରେ ଏପରି ରଚନା ଅନେକ ଲେଖା ଯାଇଛି । କିନ୍ତୁ ପ୍ରବନ୍ଧର ବୌଦ୍ଧିକ ନିପୀଡ଼ନରୁ ଏସବୁ ରଚନା ପ୍ରାଜ୍ଞିକ ମାନଙ୍କ ଦରବାରରେ ପୂଜନୀୟ ହୋଇ ନାହିଁ; ଆଲୋଚନାର କଷଟିରେ ଉତ୍ତୀର୍ଣ୍ଣ ହୋଇନାହିଁ, ସମାଲୋଚନାର ମାର୍ମିକ ଦୃଷ୍ଟି ଆକର୍ଷଣ କରିନାହିଁ । ଏହିପରି କେତୋଟି ରଚନାକୁ ଏ ସଂକଳନରେ ଏକତ୍ର କଲାବେଳେ ଏହାର ରମଣୀୟତା ମୋତେ ଅଧିକରୁ ଅଧିକ ଆକୃଷ୍ଟ କରିଛି ।" ଏଠାରେ ଲଳିତ ନିବନ୍ଧର ସ୍ୱତନ୍ତ୍ରତା, ସୌନ୍ଦର୍ଯ୍ୟ ଓ ଆବଶ୍ୟକତାକୁ ମୁଖବନ୍ଧକାର ଗୁରୁତ୍ୱ ଦେଇଛନ୍ତି । କ'ଣ ପାଇଁ ଓ କାହିଁକି ଏହି କାର୍ଯ୍ୟଟି କରାଯାଉଛି, ତାର ସ୍ପଷ୍ଟୀକରଣ ରହିଛି । ନିତ୍ୟାନନ୍ଦ ଶତପଥୀଙ୍କ 'ମୁଖବନ୍ଧ' ରଚନା ପୁସ୍ତକର ଲକ୍ଷ୍ୟ ଓ ଆଭିମୁଖ୍ୟକୁ ସର୍ବଦା ପ୍ରତିଷ୍ଠା ଦେଇଥାଏ । କହିବା ବାହୁଲ୍ୟ ହେବନାହିଁ 'ଲଳିତ ନିବନ୍ଧ' ପୁସ୍ତକଟି ସଂପାଦନା ହେବା ଦ୍ୱାରା ଓଡ଼ିଆ ସାହିତ୍ୟରେ ଏହି ବିଭାଗଟି ନୂଆ ଉନ୍ମାଦନାରେ ପ୍ରଚଳିତ ହେବା ସହ ଅନେକ ଗୁରୁତ୍ୱପୂର୍ଣ୍ଣ ରଚନା ଚର୍ଚ୍ଚାକୁ ଆସିପାରିଛି । ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନା ପୁସ୍ତକର ମୁଖବନ୍ଧ ପରିଚର୍ଚ୍ଚାରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ଦ୍ୱାରା ପ୍ରକାଶିତ 'ସାଂପ୍ରତିକ ଓଡ଼ିଆ କବିତା' ଗ୍ରନ୍ଥକୁ ବିଚାର କରାଯାଇ ପାରିବ । ଏହି ସଂକଳନରେ ବରିଷ୍ଠ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଠାରୁ ଆରଂଭ କରି ଶତ୍ରୁଘ୍ନ ପାଣ୍ଡବଙ୍କ ପର୍ଯ୍ୟନ୍ତ ତରୁଣ କବିଙ୍କ କବିତାକୁ ସଂପାଦକ ସଂଯୋଜନା କରିଛନ୍ତି । ପଚ୍ଛଶ

ବର୍ଷ ବ୍ୟାପୀ ଓଡ଼ିଆ କବିତାର ଚେତନା କେନ୍ଦ୍ରିତ କ୍ରମ ବିକାଶକୁ ସୂଚେଇବା ପାଇଁ କବି ଏକ ଦୀର୍ଘ ଓ ବଳିଷ୍ଠ ମୁଖବନ୍ଧ 'ସାଂପ୍ରତିକ ଓଡ଼ିଆ କବିତା' ଶିରୋନାମାରେ ଗ୍ରଥିତ କରିଛନ୍ତି । ଏହି ମୁଖବନ୍ଧରେ ୧୯୮୦ ମସିହା ପରବର୍ତ୍ତୀ ଓଡ଼ିଆ କବିତାକୁ ଉତ୍ତର ଆଧୁନିକ କବିତା ଭାବରେ ଚିତ୍ରଣ କରିଛନ୍ତି । "ପ୍ରୟୋଗବାଦୀ କବିତାକୁ ଆଧୁନିକତାବାଦ ଭାବରେ ନାମିତ କରାଗଲେ ସାଂପ୍ରତିକ କବିତାର ପ୍ରାୟ ଦଶ ବାରବର୍ଷର ସୃଷ୍ଟିକୁ (୧୯୮୧-୯୩) ଉତ୍ତର ଆଧୁନିକ କବିତା (post modern Poetry) ଭାବେ ଚିହ୍ନିତ କରାଯାଇ ପାରିବ । କାରଣ ଏ ସମୟଖଣ୍ଡର କାବ୍ୟଧାରାରେ କିଛିଟା ମୌଳିକ ପରିବର୍ତ୍ତନ ପରିଲକ୍ଷିତ ହେଉଛି ।" ପ୍ରଫେସର ଶତପଥୀ ଏଠାରେ ମୁଖବନ୍ଧକୁ ଏକ ଅଗ୍ର ଆଲୋଚ଼ନା ଭାବରେ ପ୍ରୟୋଗ କରିଛନ୍ତି । ସ୍ୱାଧୀନତା ପରବର୍ତ୍ତୀ କବିତାର ଧାରା ନିରୂପଣ ଓ ଭାବମୂଲ୍ୟାୟନରେ ସହଭାଗିତା ରଖୁଥିବା କବିମାନଙ୍କୁ ଚର୍ଚ୍ଚାକୁ ଆଣି ସେମାନଙ୍କର କବିତା ଗୁଡ଼ିକୁ ସଂକଳନରେ ସ୍ଥାନ ଦେଇଛନ୍ତି । ଏକକ ଲେଖକଙ୍କ କବିତା ଗ୍ରନ୍ଥ ସଂପାଦନା କ୍ଷେତ୍ରରେ ଏଠାରେ କବି ହୃଷୀକେଶ ମଲ୍ଲିକଙ୍କ 'ଶ୍ରେଷ୍ଠ କବିତା'ର ସଂପାଦନାକୁ ବିଚାରକୁ ନିଆଯାଇପାରିବ । କବିଙ୍କ ସାତଶହରୁ ଉର୍ଦ୍ଧ୍ୱ କବିତା ଭିତରୁ ପ୍ରଫେସର ଶତପଥୀ ୭୩ଟି କବିତାକୁ ଚୟନ କରିଛନ୍ତି । ଏହି ବହିର ଆରଂଭରେ ମୁଖବନ୍ଧ ସ୍ଥାନରେ 'ଆକଳନ' ଲେଖି ହୃଷୀକେଶଙ୍କ କବିତ୍ୱ ଓ ଓଡ଼ିଆ କାବ୍ୟଧାରାରେ ତାଙ୍କର ବିଶେଷତ୍ୱ ଉପସ୍ଥାପନ କରିଛନ୍ତି । ସଂପାଦନା କ୍ଷେତ୍ରରେ ମୁଖବନ୍ଧର ଗୁରୁତ୍ୱପୂର୍ଣ୍ଣ ଭୂମିକା କିପରି ସମଗ୍ର ଗ୍ରନ୍ଥର ନିର୍ଣ୍ଣାୟକ ପରିଚୟ ତିଆରି କରେ ଏହା ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧରୁ ବୁଝା ପଡ଼ିଥାଏ । ଗ୍ରନ୍ଥାବଳୀ-ସଂକଳନ-ସଂପାଦନାରେ କିପରି ଭିନ୍ନ ଭିନ୍ନ ମୁଖବନ୍ଧ ରଚନା ଦରକାର ପଡ଼ିଥାଏ, ଏହା ପ୍ରଫେସର ଶତପଥୀ ପ୍ରମାଣ କରିଛନ୍ତି । ସଂପାଦିତ ଗ୍ରନ୍ଥମାନଙ୍କରେ ପ୍ରଫେସର ଶତପଥୀଙ୍କ ମୁଖବନ୍ଧ ପ୍ରକାଶିତ ଗ୍ରନ୍ଥ ଓ ତତ୍ ସଂପର୍କିତ ସାହିତ୍ୟ ଧାରା ସଂପର୍କରେ ପରିଚୟ ସୃଷ୍ଟି କରିପାରିଛି ।

ଆଧୁନିକ ଓଡ଼ିଆ କବିତା ସଂପର୍କରେ ତାଙ୍କର ଦୁଇଟି ସ୍ମରଣୀୟ ସଂକଳନ ହେଲା 'ସାଂପ୍ରତିକ ଓଡ଼ିଆ କବିତା' ଓ 'ଅନେକ ନଈର ସୁଅ' । ପ୍ରଥମଟି ଜାତୀୟ ପୁସ୍ତକ ଆୟୋଗ (N.B.T) ପ୍ରକାଶ କରିଥିବା ବେଳେ ଦ୍ୱିତୀୟଟି ଶ୍ରୀ ରମେଶ ପତିଙ୍କ 'ପ୍ରବାହ' (ଯାଜପୁର) ପ୍ରକାଶନୀ ସଂସ୍ଥାଦ୍ୱାରା ପ୍ରକାଶିତ । ଏହି ଦୁଇଟି ପୁସ୍ତକରେ ସେ ଯେଉଁ ଦୀର୍ଘ ମୁଖବନ୍ଧ ଲେଖିଛନ୍ତି ତାହା ଓଡ଼ିଆ ସାହିତ୍ୟରେ ସଂପୂର୍ଣ୍ଣ ଅନନ୍ୟ । କାରଣ ଏହିପରି ସଂକଳନ ମାନଙ୍କରେ ଆଗରୁ ବହୁ ସଂପାଦକ ଖୁବ୍ ବେଶୀ ହେଲେ ଚାରି/ପାଞ୍ଚ ପୃଷ୍ଠାର ଆକଳନ ଲେଖୁଥିଲେ । କିନ୍ତୁ ଡକ୍ଟର ଶତପଥୀ ଆଧୁନିକ ଓଡ଼ିଆ କବିତାର ଦୀର୍ଘ ପୃଷ୍ଠଭୂମିକୁ ବହୁ ଶ୍ରମ ସ୍ୱୀକାର କରି ଯଥାକ୍ରମେ ୩୯ ଓ ୩୪ ପୃଷ୍ଠାରେ ଏ ଦୁଇଟି ବହିରେ ଲେଖିଛନ୍ତି - ଯାହା ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀ ଓ ଗବେଷକମାନଙ୍କ ପାଇଁ ଖୁବ୍ ତଥ୍ୟ ବହୁଳ ହୋଇପାରିଛି । ତାଙ୍କ ଚିନ୍ତାଧାରାକୁ ସମର୍ଥନ ଓ ପରିପୁଷ୍ଟ କରିବା

ପାଇଁ ଏ ପୁସ୍ତକ ଦୁଇଟିର କବିତାଗୁଡ଼ିକ ଭରପୁର ଉପାଦାନ ଯୋଗାଇଛି - ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ।

## ॥ ଛରି ॥

ଏହି ପର୍ଯ୍ୟାୟରେ ପ୍ରଫେସର ଶତପଥୀ ଅନ୍ୟ ଲେଖକମାନଙ୍କ ପୁସ୍ତକରେ ରଚନା କରିଥିବା ମୁଖବନ୍ଧ ସଂପର୍କରେ ଆଲୋଚ଼ନା କରାଯିବ । ପ୍ରଫେସର ଶତପଥୀ ପଚ୍ଚଶରୁ ଊର୍ଦ୍ଧ୍ୱ ପୁସ୍ତକରେ ନିଜର ଅଭିମତ ପ୍ରଦାନ କରିଛନ୍ତି । ଏସବୁ ଆମୁଖ ଗୁଡ଼ିକ କେବଳ ଶୁଭକାମନା ବା ଗ୍ରନ୍ଥ ଗୌରବ ବୃଦ୍ଧି ଉଦ୍ଦେଶ୍ୟରେ ଗୁନ୍ଥା ହୋଇ ନାହାଁନ୍ତି । ସମଗ୍ର ପୁସ୍ତକର ଆଭିମୁଖ୍ୟ, ବିଷୟବସ୍ତୁ ଆଧାରରେ ଶ୍ରୀଯୁକ୍ତ ଶତପଥୀ ଏହାର ସମୀକ୍ଷାତ୍ମକ ବିଶ୍ଳେଷଣ ପ୍ରସ୍ତୁତ କରିଥାଆନ୍ତି । ଏହି ପର୍ଯ୍ୟାୟ ଆଲୋଚ଼ନାରେ କେତୋଟି ପୁସ୍ତକର ମୁଖବନ୍ଧକୁ ଏଠାରେ ଦୃଷ୍ଟାନ୍ତ ଭାବରେ ଉପସ୍ଥାପନା କରାଯାଉଛି ।

କୈଳାଶ ଚନ୍ଦ୍ର ପଣ୍ଡାଙ୍କ ସଂପାଦିତ 'ଆଧୁନିକ ପ୍ରେମ କବିତା' ସଂକଳନଟି ୧୯୭୨ ମସିହାରେ ପ୍ରକାଶ ପାଇଥିଲା । ଏହି ସଂକଳନରେ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଦୀର୍ଘ ମୁଖବନ୍ଧ ରଚନା କରି ପ୍ରେମ କବିତାର ଧାରା ସହ ନିର୍ଦ୍ଦିଷ୍ଟ କବିମାନଙ୍କ ପ୍ରେମ ଦୃଷ୍ଟିର ବିଶ୍ଳେଷଣ କରିଛନ୍ତି । ଅନେକ କ୍ଷେତ୍ରରେ ସଂକଳକଙ୍କ ଉଦ୍ୟମକୁ ଅତିକ୍ରମ କରି ସଂକଳିତ କବିତା ସଂପର୍କରେ ପ୍ରତିକୂଳ ମନ୍ତବ୍ୟ ଦେବା ପାଇଁ ସେ କୁଣ୍ଠା ରଖିନାହାଁନ୍ତି । ମୁଖବନ୍ଧରେ ଗୋଟିଏ ସ୍ଥାନରେ କବି ସୌଭାଗ୍ୟ କୁମାର ମିଶ୍ରଙ୍କ ସଂପର୍କରେ କହିଛନ୍ତି, "ଶ୍ରୀ ସୌଭାଗ୍ୟ ମିଶ୍ରଙ୍କ ବହୁ ସାଂପ୍ରତିକ କବିତାରେ ପ୍ରେମପ୍ରତି ଦୃଷ୍ଟିପାତ ଏକ ସୁସ୍ଥ ମନର ସୁକୁମାର ଅଭିବ୍ୟକ୍ତି ନୁହେଁ । ବରଂ ଜଳନ୍ତା କାମନାର ଏକ ବିକାରଗ୍ରସ୍ତ ଚିତ୍ର ମନରେ ସୃଷ୍ଟି କରେ । ବହୁ ପ୍ରତିଉପମା (anti simile) ଅଚଂଛା ଶବ୍ଦ ଯୋଜନା (crude wording) ଭିତରେ ଯୌନାକାଂକ୍ଷାକୁ ପ୍ରକାଶ କରିବାରେ ଶ୍ରୀ ମିଶ୍ରଙ୍କ କବିତାରେ ଅନନ୍ୟତା ରହିଛି; କିନ୍ତୁ ସଂକଳନସ୍ଥିତ ଏହି କବିତା 'କୃଷ୍ଣଚୂଡ଼ା' ଅପେକ୍ଷାକୃତ କଂଚ୍ଚ ବୟସର ରଚ଼ନା ପରି ମନେହୁଏ ।" ଏପରି ବକ୍ତବ୍ୟକୁ ସଂକଳନ ପାଇଁ ନକରାତ୍ମକ ମନ୍ତବ୍ୟ (anti remark) କୁହାଯାଇପାରେ । ଏପରି ମନ୍ତବ୍ୟ ଯୋଗୁ ସଂପାଦକ, ପ୍ରକାଶକ ଓ କବି ସମସ୍ତେ କଷ୍ଟ ପାଇବା ସ୍ୱାଭାବିକ କଥା । ନିତ୍ୟାନନ୍ଦ ଶତପଥୀ ଏପରି ଅପ୍ରିୟ ସତ୍ୟ କଥନ ମୁଖବନ୍ଧରେ କହିବାର ସ୍ପର୍ଦ୍ଧା କରନ୍ତି ଓ ତାହାକୁ ସଂକଳକମାନେ ଅନୁମୋଦିତ କରି ଗ୍ରଥିତ କରିଥାଆନ୍ତି । ଅତଏବ ଅନ୍ୟ ଜଣେ ଲେଖକ ପାଇଁ ଲେଖାଯାଉଥିବା ମୁଖବନ୍ଧ ଗୁଡ଼ିକ ସ୍ତୁତି ବା ଶୁଭକାମନା ନ ହୋଇ ଏହାର ସାହିତ୍ୟିକ ମୂଲ୍ୟ ପ୍ରକଟିତ କରିଥାଏ । ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚନାର ଏହା ଏକ ମୌଳିକ ଦିଗ । ପୁନଶ୍ଚ କୈଳାସଚନ୍ଦ୍ର ପଣ୍ଡାଙ୍କ ସଂପାଦିତ 'ପ୍ରବନ୍ଧରେ

ପ୍ରେମ' ପୁସ୍ତକରେ ପ୍ରଫେସର ଶତପଥୀ ମୁଖବନ୍ଧ ରଚନା କରିଛନ୍ତି । ଏଥିରେ ସ୍ଥାନିତ ୨୮ଟି ପ୍ରବନ୍ଧକୁ ଗୋଟି ଗୋଟି କରି ସମୀକ୍ଷା କରିଛନ୍ତି । ପାଠକ ସଂକଳନଟିକୁ ପାଠ କରିବା ପୂର୍ବରୁ ସେ ସଂପର୍କରେ ଏକ ମନୋଜ୍ଞ ମନନଶୀଳତା ଶ୍ରୀଯୁକ୍ତ ଶତପଥୀ ପରିବେଷଣ କରିଛନ୍ତି । ମୁଖବନ୍ଧଟି ଅଧ୍ୟୟନ କରିସାରିବା ପରେ ଯେ କେହି ପାଠକ ଏହି ପ୍ରବନ୍ଧ ଗୁଡ଼ିକୁ ପାଠ କରିବାକୁ ଆଗ୍ରହ ରଖିବ । ଏହି ମୁଖବନ୍ଧରେ ଗ୍ରଥିତ ପ୍ରବନ୍ଧର ନିଷ୍କର୍ଷ ଗୁଡ଼ିକୁ ଶ୍ରୀଯୁକ୍ତ ଶତପଥୀ ଉଲ୍ଲେଖ କରିଛନ୍ତି । ପାଠକ ସମଗ୍ର ପ୍ରବନ୍ଧ ପାଠ କରିସାରିବା ପରେ ଯେଉଁ ଉପଲବ୍ଧି ପାଇଥାଆନ୍ତା, ସେହି ଅନୁଭବ ମୁଖବନ୍ଧ ମାଧ୍ୟମରେ ପାଇ ପାରିବ । ଆଦିକନ୍ଦ ସାହୁଙ୍କ ପ୍ରବନ୍ଧ 'ପ୍ରେମିକ ଜୀବନ ଓ ତା'ର ଭାବାବେଗ' ପ୍ରବନ୍ଧକୁ ବିଶ୍ଳେଷଣ କରି ପ୍ରଫେସର ଶତପଥୀ କହିଛନ୍ତି, "ତଥାପି କହିବାକୁ ହେବ ଯେ ଡକ୍ଟର ସାହୁ ପ୍ରେମ ସଂପର୍କରେ କହିବାକୁ ଯାଇ ନାରୀ ଉପରେ ତାଙ୍କର ସମସ୍ତ ଅଧ୍ୟୟନ ଓ ଆରାଧନାକୁ କେନ୍ଦ୍ରୀଭୂତ କରିଛନ୍ତି । ନାରୀକୁ ଏକପକ୍ଷରେ ଈଶ୍ୱରୀ ବୋଲି କହିବାବେଳେ ଅନ୍ୟପକ୍ଷରେ ଅସୁରୀ ବୋଲି ମଧ୍ୟ କହି ରଖିଛନ୍ତି । ନାରୀକୁ ସ୍ୱର୍ଗଦ୍ୱାର ଓ ନର୍କଦ୍ୱାର - ଉଭୟ ରୂପେ ପ୍ରତିପାଦନ କରିଛନ୍ତି । ତାଙ୍କ ମତରେ- ନାରୀପ୍ରେମରେ ପଡ଼ିବା ଅର୍ଥ ପତଙ୍ଗ ନିଆଁରେ ଝାସ ଦେଲାପରି ଅବା ଶ୍ମଶାନକୁ ଯିବା ପରି । ଏ ମନ୍ତବ୍ୟ ଖୁବ୍ ଚରମ ବୋଲି ମନେହୁଏ ।" ମୂଳପାଠକୁ ବିଶ୍ଳେଷଣ କରିବା ସହ ତାକୁ ସଂଶ୍ଳେଷଣ କରି ଏହାର ପ୍ରଭାବ ଆକଳନ କରିବାରେ ଶ୍ରୀଯୁକ୍ତ ଶତପଥୀ ତତ୍ପରତା ଦେଖାଇ ଥାଆନ୍ତି ।

'ଆଧୁନିକ ପ୍ରେମ କବିତା' ଓ 'ପ୍ରବନ୍ଧରେ ପ୍ରେମ' ସଂକଳନ ଦୁଇଟିରେ ପ୍ରଫେସର ଶତପଥୀଙ୍କ ରଚିତ ମୁଖବନ୍ଧ ପାଠକୀୟ ଭାବାବେଗ ଓ ତର୍ଜମା ଦୃଷ୍ଟିରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ମୁଖବନ୍ଧ ରଚନାର ଉତ୍କର୍ଷ ଏହି ଦୁଇ ସଂକଳନରେ ପ୍ରମାଣିତ । ପ୍ରଫେସର ନିତ୍ୟାନନ୍ଦ ଶତପଥୀ କବି ଚକ୍ରଧର ପଣ୍ଡାଙ୍କ ଦୁଇଖଣ୍ଡ ପୁସ୍ତକର ମୁଖବନ୍ଧ ରଚନା କରିଛନ୍ତି । ଚକ୍ରଧରଙ୍କ ପ୍ରଥମ କବିତା ପୁସ୍ତକ 'ଫୁଲ ଓ ମଶାଲ'ର ମୁଖବନ୍ଧ କେବଳ ଏକ ମୁଖବନ୍ଧ ନୁହେଁ ପରନ୍ତୁ ସମଗ୍ର ସଂକଳନ ଭିତ୍ତିରେ ଚକ୍ରଧରଙ୍କ କବିତ୍ୱର ମୂଲ୍ୟାୟନ ଏଥିରେ କରାଯାଇଛି । କବିଙ୍କ ଜାତୀୟବାଦୀ ଚିନ୍ତାଧାରା, ପ୍ରଗତିଶୀଳ ବିଚାର ସହ ତାଙ୍କର ରୋମାଣ୍ଟିକ୍ କାବ୍ୟଚେତନାକୁ ଏଥିରେ ଉନ୍ମୋଚିତ କରି କବିତା ସଂକଳନର ନାମ ପରିବର୍ତ୍ତନ କରିବାକୁ ଲିଖିତ ପ୍ରସ୍ତାବ ଦେଇଛନ୍ତି । କବିତାର ଭାବବୋଧ ଦୃଷ୍ଟିରୁ ଏହାର ପ୍ରାସଂଗିକ ନାମକରଣ କରାଯାଇ ନାହିଁ ବୋଲି ପ୍ରଫେସର ଶତପଥୀ ସ୍ପଷ୍ଟ ମତ ରଖିଛନ୍ତି । "ଏବେ ଅନେକ ଅପ୍ରକାଶିତ ଓ ପ୍ରକାଶିତ କବିତାର ଏ ଯେଉଁ ସମାହାର 'ମଶାଲ' ନାମରେ ଆତ୍ମପ୍ରକାଶ କରୁଛି ତାକୁ 'ଫୁଲ ଓ ମଶାଲ' ନାମରେ ମୁଁ ବଦଳେଇ ଦେବାକୁ ଚାହେଁ । କାରଣ ଫୁଲ ତାଙ୍କର ରୋମାଣ୍ଟିକ୍ ଭାବନା ଓ ପ୍ରେମର ପ୍ରତିନିଧିତ୍ୱ କଲାବେଳେ 'ମଶାଲ' ତାଙ୍କ ମତବାଦର ଚମତ୍କାର ସମୀକରଣ (Synthesis) ପ୍ରୟାସ କରିଛି ।

ଭାବୁଚି କବି ଏ ନାମକରଣର ପ୍ରାସଙ୍ଗିକତାକୁ ସ୍ୱାଗତ କରିବେ ।" କବିତା ସଂକଳନ ସଂପର୍କରେ ଦୀର୍ଘ ଆଲୋଚ଼ନା କରିବା ପରେ ଗୋଟିଏ ଗଠନମୂଳକ ପରାମର୍ଶ ମୁଖବନ୍ଧରେ ଦେବା ପାଇଁ ପ୍ରଫେସର ଶତପଥୀ କୁଣ୍ଠା କରନ୍ତି ନାହିଁ । ମୁଖବନ୍ଧ କେବଳ ପୁସ୍ତକ ପ୍ରଶସ୍ତି ନ ହୋଇ ଏହାର ଅଭାବ ପକ୍ଷଟିକୁ ଉନ୍ମୋଚନ କରିବା ଉଚିତ୍ ବୋଲି ପ୍ରଫେସର ଶତପଥୀ ମନେ କରନ୍ତି । ଉଚାଙ୍ଗ ପୁସ୍ତକର ପ୍ରଶଂସା କରିବା ପାଇଁ ପ୍ରଫେସର ଶତପଥୀ ପଛଘୁଞ୍ଚା ଦିଅନ୍ତି ନାହିଁ । ଏହାର ପ୍ରମାଣ ହେଉଛି ଚକ୍ରଧର ପଣ୍ଡାଙ୍କ 'ଓଡ଼ିଆ-ବନାନସୂତ୍ର'ର ଦ୍ୱିତୀୟ ସଂସ୍କରଣର ମୁଖବନ୍ଧ । ବହିଟିର ଗାରିମା ଦୃଷ୍ଟିରୁ ଏହାକୁ ଓଡ଼ିଆ ଶବ୍ଦବୋଧର 'Hidden Treasure' ବୋଲି ସେ କହିଛନ୍ତି । ପ୍ରଫେସର ଶତପଥୀଙ୍କ ମୁଖବନ୍ଧ ରଚନାର ଏହା ଏକ ବିଶେଷତ୍ୱ ବୋଲି ବିଚାର କରିବାକୁ ହେବ ।

କବିତା କ୍ଷେତ୍ରକୁ ନୂଆ ଆସୁଥିବା ବା ବିଳମ୍ବିତ ସମୟରେ କବିତା-ବ୍ରତୀ ମାନଙ୍କୁ ଉତ୍ସାହିତ କରିବାରେ ପ୍ରଫେସର ଶତପଥୀ କାର୍ପଣ୍ୟ କରିନାହାଁନ୍ତି । ଅବଶ୍ୟ ସମାଲୋଚ଼କଙ୍କର ଏହି ଉଦାରତା କାବ୍ୟ ସମାଲୋଚ଼ନା କ୍ଷେତ୍ରରେ ଉପଲବ୍ଧ ହୁଏନା । ଜଣେ ନିଷ୍ଠାପର ଓ ନିଷ୍ଠୁର ଆଲୋଚ଼କ ଭାବରେ ଭାତହାଣ୍ଡିରୁ ଗୋଟିଏ ଭାତ ଚିପି କାବ୍ୟ ମୀମାଂସା କରିପାରୁଥିବା ପ୍ରଫେସର ଶତପଥୀ ନୂତନ ପୁସ୍ତକଧାରୀ ମାନଙ୍କ ପାଇଁ ମୁଖବନ୍ଧ ମାଧ୍ୟମରେ ପ୍ରତ୍ୟୟ ଓ ପାଥେୟ ଦେବା ଏକ ଉଲ୍ଲେଖନୀୟ ପ୍ରସଙ୍ଗ । କବି ହୃଷୀକେଶ ଆଚାର୍ଯ୍ୟଙ୍କ ପ୍ରଥମ କବିତା ବହି 'ତୁମେ ଆସିଲେ ସେଦିନ'ର ଗୋଟିଏ ମୃତ୍ୟୁଧର୍ମୀ କବିତାକୁ ଶ୍ରୀଯୁକ୍ତ ଶତପଥୀ ସୀତାକାନ୍ତ ମହାପାତ୍ରଙ୍କ 'ବଗିଚା' କବିତା ସହ ତୁଳନା କରିଛନ୍ତି । କେବଳ ଏତିକି ନୁହେଁ, ପ୍ରଫେସର ଶତପଥୀ କହିଛନ୍ତି- "ଅଳ୍ପ କେତୋଟି ହେଲେ ବି କବିତା ଗୁଡ଼ିକର ଓଜ ଓ ଐଶ୍ୱର୍ଯ୍ୟ ପାଠକକୁ ମୁଗ୍ଧ କରେ । ଅଧିକ ଅଧ୍ୟବସାୟ ଥିଲେ ହୃଷୀକେଶ ଜଣେ ଚର୍ଚ୍ଚିତ କବି ହୋଇପାରିଥାନ୍ତେ । ଏବେବି ସମୟ ଅଛି, ସେ ଅଧିକ ଲେଖିଯାଆନ୍ତୁ । ଫକୀର ମୋହନ ତ ପୁଣି ଉତର ପଚାଶରେ କବିତା ଗୁଡ଼ିଏ ଲେଖିପାରିଥିଲେ ।" ପୁନଶ୍ଚ କବି ବଙ୍ଗାଳୀନନ୍ଦଙ୍କ 'ସ୍ମୃତିଶତକ' ଯାହାକି ପ୍ରଫେସର ଶତପଥୀଙ୍କ ନଜରରେ ଉତ୍ତୀର୍ଣ୍ଣ ହୋଇପାରିନାହିଁ, ତା'ର ସାଂଗଠନିକ ପରିବର୍ତ୍ତନ ପାଇଁ ପ୍ରେରଣା ଦେଇ ଏହି ପରିବର୍ତ୍ତିତ କବିତା ଗୁଡ଼ିକର ଉତ୍ସାହଦୀପ୍ତ ମୁଖବନ୍ଧ ସେ ରଚନା କରିଛନ୍ତି । 'କବି ନିଜେ ସ୍ୱୀକାର କରିଛନ୍ତି ଯେ ଓମରଖାୟମ୍ ଓ ମଧୁଶାଳାର କବି ବଚ୍ଚନଙ୍କୁ ପଢ଼ିଲା ପରେ ସେ ସେମାନଙ୍କ କାବ୍ୟସ୍ୱର ଦ୍ୱାରା ପ୍ରଭାବିତ ହୋଇ ଅଶୀ ଦଶକରେ ଏସବୁ କବିତା ରଚନା କରିଥିଲେ । ସେତେବେଳର ଅପରିପକ୍ୱ ପରିପ୍ରକାଶକୁ ତିରିଶି ବର୍ଷ ପରେ ପ୍ରକାଶ କରିବାକୁ ଗଲାବେଳେ ନିଶ୍ଚିତ ଭାବେ କିଛି ପରିବର୍ତ୍ତନର ଆବଶ୍ୟକତା ଥିଲା । ଏକଥା କବିଙ୍କୁ କହିବାରୁ ସେ ମୋ ମତାମତକୁ ସମ୍ମାନ ଦେଇ ସେଥିରେ ଅନେକ କିଛି ପରିବର୍ତ୍ତନ କରି ଦେଇଛନ୍ତି ।" ବଙ୍ଗାଳୀନନ୍ଦଙ୍କ ପରିବର୍ତ୍ତନ ପରେ ନିତ୍ୟାନନ୍ଦ ଶତପଥୀ ଏସବୁ କବିତାର ଜୀବନବାଦୀ

ଆବେଦନକୁ ସମ୍ମାନ ଜଣାଇ ସମାଲୋଚନାଧର୍ମୀ ମୁଖବନ୍ଧ ରଚନା କରିଛନ୍ତି । ମୋର କହିବାର ତାତ୍ପର୍ଯ୍ୟ ହେଉଛି ପ୍ରଫେସର ଶତପଥୀ ବରେଣ୍ୟ କବିମାନଙ୍କର କାବ୍ୟଚେତନାର ଅବକ୍ଷୟ ଓ ପ୍ରକରଣଗତ ଅଶୁଦ୍ଧି ଗୁଡ଼ିକୁ ସମାଲୋଚନା କରୁଥିବାବେଳେ ଅପେକ୍ଷାକୃତ ନୂତନ ଓ ଅଣପେଶାଦାର କବିମାନଙ୍କ ପାଇଁ ଉଦାରତା ପ୍ରଦର୍ଶନ କରିଛନ୍ତି । ଅନେକ କ୍ଷେତ୍ରରେ ମୁଖବନ୍ଧ ରଚନା ପାଇଁ ଲେଖକ ଏକରକମ ମମତାବଦ୍ଧ ହୋଇଥାଏ । ଏପରି କ୍ଷେତ୍ରରେ କାବ୍ୟ ନ୍ୟାୟ ପ୍ରଦାନ କରିବା କଷ୍ଟକର ହୋଇ ପଡ଼ିଥାଏ । ନିତ୍ୟାନନ୍ଦ ଶତପଥୀଙ୍କ କ୍ଷେତ୍ରରେ ଏହି ଉଦାର ଆଭିମୁଖ୍ୟର ଦୁଇଟି ଦିଗ ଲକ୍ଷ୍ୟ କରାଯାଇ ପାରିବ । ପ୍ରଥମତଃ ତ୍ରୁଟି ସଂଶୋଧନ ପାଇଁ ପ୍ରାକ୍ ପ୍ରକାଶନ ପରାମର୍ଶ ଦେବା ଓ ଦ୍ୱିତୀୟତଃ କବିତା କ୍ଷେତ୍ରକୁ ବିଳମ୍ବରେ ଆସୁଥିବା ଏହି ବୟସ୍କ କବିଙ୍କୁ ଉତ୍ସାହିତ କରିବା । ଜଣେ ସତ୍ ସମାଲୋଚକର ମନରେ ଏହି ଉଦାର ଉର୍ବରତା ରହିବା ଆବଶ୍ୟକ, ଯାହା ନିତ୍ୟାନନ୍ଦ ଶତପଥୀଙ୍କ କ୍ଷେତ୍ରରେ ଉପଲବ୍ଧ ହୋଇପାରିଛି ।

ଡକ୍ଟର ଶତପଥୀଙ୍କ ସମାଲୋଚକୀୟ ଦକ୍ଷତା ତାଙ୍କ ରଚିତ ମୁଖବନ୍ଧ ମାନଙ୍କରେ ଫୁଟି ଉଠିଛି । କବି ଓ କବିତାର ଉତ୍ତରଣ ନେଇ ଶ୍ରୀଯୁକ୍ତ ଶତପଥୀ ଜଣେ ମାନ୍ତ୍ରିକ ପରି ନିର୍ଣ୍ଣାୟକ ମନ୍ତବ୍ୟ ଦେବାର ଦକ୍ଷତା ରଖନ୍ତି । ଏପରି ମନ୍ତବ୍ୟ ଖୁବ୍ ମପାଚୁପା ଓ ଅନ୍ୟମାନଙ୍କ ପାଇଁ ଅନୁସରଣ ଯୋଗ୍ୟ ହୋଇଥାଏ । ପ୍ରତିଷ୍ଠିତ ଲେଖକଙ୍କ କୃତି ଚର୍ଚ୍ଚାରେ ପ୍ରଫେସର ଶତପଥୀଙ୍କ ଅସଲ ଦକ୍ଷତା ପ୍ରକଟିତ ହୁଏ । କବି ରଘୁନାଥ ଦାସଙ୍କ 'ଉବାଚ' କବିତା ଗ୍ରନ୍ଥର ମୁଖବନ୍ଧରେ କବି କ'ଣ କହିଛନ୍ତି ଲକ୍ଷ୍ୟ କରନ୍ତୁ । "ତଥାପି କହିବାକୁ ହେବ ତାଙ୍କ କବିତାର ଉନ୍ମେଷ ଓ ବିକାଶ ଅଛି କିନ୍ତୁ ପରିଣତି ନାହିଁ । କବି ପରିଣତିକୁ ହାତ ବଢ଼େଇ ରଖିବାକୁ ପ୍ରୟାସ କରୁଥିଲାବେଳେ କାଳର କୁଟିଳ ହାତ ତାଙ୍କୁ ପୋଛି ନେଇଛି । ××× ତାଙ୍କ କବିତାର ସ୍ଥିତି ଅଛି, କିନ୍ତୁ ଉର୍ଦ୍ଧ୍ୱ ଉଚ୍ଚତାକୁ ତାହା ଆରୋହଣ କରିବାର ପ୍ରୟାସ ରଖୁ ରଖୁ ନିଶବ୍ଦ ହୋଇଯାଇଛି । ତେଣୁ ପରିଣତିରେ ପହଂଚି ପାରିନାହିଁ ।" କବି ରଘୁନାଥ ଦାସଙ୍କୁ ଜଣେ ବେସାଲିସ୍ ଗଣକବି କହି ଓଡ଼ିଶାର କାଜି ନଜରୁଲ୍ ବୋଲି ତାଙ୍କୁ ଅଭିପ୍ରେତ କରିଥିବାବେଳେ ତାଙ୍କର ସ୍ଥିତିର ମୂଲ୍ୟାୟନ ଓ କାବ୍ୟ ଚେତନାର ଉତ୍ତରଣ ଯାତ୍ରାର ସଠିକ୍ ସମୀକ୍ଷା କରିଛନ୍ତି । 'ଉବାଚ'ର ମୁଖବନ୍ଧଟି ମୋ ମତରେ କାରିଗରୀ ଓ ମୂଲ୍ୟାୟନ ଦୃଷ୍ଟିରୁ ଏକ ଉଚ୍ଚକୋଟୀର ମୁଖବନ୍ଧ । ଜଣେ କାବ୍ୟରସିକ ପାଠକ ଏଥିରୁ ଓଡ଼ିଆ ପ୍ରଗତିଶୀଳ କବିତାର ସୀମା, ସଂଭାବନା ଓ ସଂକଟ ସଂପର୍କରେ ତଥ୍ୟ ଲାଭ ସହ ରଘୁନାଥ ଦାସଙ୍କ କବିତ୍ୱ ସଂପର୍କରେ ଜାଣିପାରିବ । ଏହି ପର୍ଯ୍ୟାୟର ଅନ୍ୟ ଦୁଇଟି ମୁଖବନ୍ଧ ହେଉଛି ଗାଳ୍ପିକ ନିମାଇଁ ଚରଣ ପଟ୍ଟନାୟକଙ୍କ ଗଳ୍ପ ପୁସ୍ତକ 'ନିଜ ସହ ନିଜର ସଂପର୍କ' ଓ ଶ୍ରୀମତୀ ଶୈଳବାଳା ଦାସଙ୍କ ସମାଲୋଚନା ପୁସ୍ତକ 'ମହାନଦୀ ଓ ଗଂଗା' । ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚନାର କଳାବୋଧଟିକୁ କୁମାର ଚକ୍ରବର୍ତ୍ତୀଙ୍କ ଆତ୍ମ ଚରିତ ଗ୍ରନ୍ଥ 'ବ୍ୟଥ

ଉପତ୍ୟକାର ସୌଦାଗର'ରୁ ପାଇ ହେବ । ଆତ୍ମଚରିତ ଗ୍ରନ୍ଥ ଗୁଡ଼ିକ ସାଧାରଣତଃ ପୃଷ୍ଠାବହୁଳ ଓ ଘଟଣା ବହୁଳ ହୋଇଥାଏ । ସଂକ୍ଷିପ୍ତ ପରିସରରେ ପୃଥୁଳ ପୁସ୍ତକର ଅବତାରଣା କରିବା ଆଦୌ ସହଜଲବ୍ଧ କାର୍ଯ୍ୟ ନୁହେଁ । ୫୮୩ ପୃଷ୍ଠା ବିଶିଷ୍ଟ 'ବ୍ୟର୍ଥ ଉପତ୍ୟକାର ସୌଦାଗର' ଗ୍ରନ୍ଥର ମୁଖବନ୍ଧ ପ୍ରଫେସର ଶତପଥୀ ୧୩ ପୃଷ୍ଠାରେ ସଂପନ୍ନ କରିଛନ୍ତି । କୁମାର ଚକ୍ରବର୍ତ୍ତୀଙ୍କ ରାଜନୀତିକ ଜୀବନ, ବ୍ୟକ୍ତିଗତ ଜୀବନ ସହ ଅନେକ ସ୍ମରଣୀୟ ଘଟଣାର ସୂଚନା ଏହି ମୁଖବନ୍ଧରେ ପ୍ରଦାନ କରାଯାଇଛି । ଏହି ୧୩ ପୃଷ୍ଠାର ରୋମାଞ୍ଚକୁ ପାଠ କଲା ପରେ ପାଠକ ୫୮୩ ପୃଷ୍ଠାର ଗ୍ରନ୍ଥଟିକୁ ଅଧ୍ୟୟନ କରିବାକୁ ଆଗ୍ରହ ପ୍ରକାଶ କରିବ । ପ୍ରଫେସର ଶତପଥୀ ଗ୍ରନ୍ଥାବଳୀ, ସଂକଳନ, କବିତା, ଗପ, ଉପନ୍ୟାସ, ଆତ୍ମଜୀବନୀ, ସମାଲୋଚ଼ନା ପୁସ୍ତକ ମାନଙ୍କର ମୁଖବନ୍ଧ ରଚ଼ନା କରିଛନ୍ତି । ଏହି ମୁଖବନ୍ଧ ଗୁଡ଼ିକ ପୁସ୍ତକର ଆବେଦନ ପାଇଁ ସୂଚନାତ୍ମକ ସମାଲୋଚ଼ନାରେ ପରିଣତ ହୋଇଛି । ଏପରି ସୁଯୋଗ ସବୁ ପୁସ୍ତକ ଭାଗ୍ୟରେ ଜୁଟିଛି । କାରଣ ବହୁ ଲେଖକଙ୍କ ପୁସ୍ତକରେ କ୍ରିୟାଶୀଳ ଗଠନମୂଳକ ମୁଖବନ୍ଧ ରଚନା କରିବାରେ ପ୍ରଫେସର ଶତପଥୀ କାର୍ପଣ୍ୟ ପ୍ରକାଶ କରି ନାହାଁନ୍ତି । ମୂଳତଃ ଜଣେ ସମାଲୋଚ଼କ ହୋଇଥିବାରୁ ତାଙ୍କ ରଚିତ ମୁଖବନ୍ଧ ମାନଙ୍କରେ ମଧ୍ୟ ସମାଲୋଚ଼କୀୟ ବ୍ୟକ୍ତିତ୍ୱଟି ଫୁଟି ଉଠିଛି ।

## ॥ ପାଞ୍ଚ ॥

ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସ୍ରଷ୍ଟାମାନସର ଏକ ଉର୍ବର କଳା କର୍ମ ଭାବରେ ତାଙ୍କର 'ମୁଖବନ୍ଧ ରଚନା'କୁ ଗ୍ରହଣ କରାଯିବ । ପ୍ରଫେସର ଶତପଥୀଙ୍କ ରଚିତ ମୁଖବନ୍ଧ ଗୁଡ଼ିକୁ କେବଳ 'ମୁଖବନ୍ଧ' ଭାବରେ ବିଚାର ନ କରି ଏହାକୁ ଏକ 'ମିନି ସମାଲୋଚ଼ନା' ଭାବରେ ଗ୍ରହଣ କରିନେଲେ ଏହାର ସାରସ୍ୱତ ମହକ ଆହୁରି ବୃଦ୍ଧି ପାଇବ । ଲକ୍ଷ୍ୟଭେଦୀ ଓ ଅର୍ଥବାହୀ ଭାଷା ପ୍ରୟୋଗ, ଯଥାଯଥ ବିଚାରଦର୍ଶିତା, ମୁଖ୍ୟ ସାହିତ୍ୟ ଧାରା ସହ ସୃଷ୍ଟିଟିର ମୂଲ୍ୟାୟନ ଦକ୍ଷତା ଓ ନିରପେକ୍ଷ ମନ୍ତବ୍ୟ ପ୍ରଦାନ ନିତ୍ୟାନନ୍ଦ ଶତପଥୀଙ୍କ ମୁଖବନ୍ଧ ରଚନା କଳାର ବୈଶିଷ୍ଟ୍ୟ । ମୁଖବନ୍ଧ ରଚନା ବିଧିର ପରିମାପକରେ ଡ. ଶତପଥୀଙ୍କ ମୁଖବନ୍ଧ ଗୁଡ଼ିକ ଉତ୍ତୀର୍ଣ୍ଣ ହୋଇଥାଆନ୍ତି । ତାଙ୍କ ଦ୍ୱାରା ଭିନ୍ନ ଭିନ୍ନ ସମୟରେ ରଚିତ ମୁଖବନ୍ଧ ଗୁଡ଼ିକୁ ଯଦି ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶିତ କରାଯାଇପାରନ୍ତା ତେବେ ଲେଖକଙ୍କର ଏହି କଳାକର୍ମର ଉର୍ବରତା ସଂପର୍କରେ ନୂତନ ଲେଖକ ଓ ପାଠକମାନେ ଅଧିକ ଅବଗତ ହୋଇପାରନ୍ତେ ।

■ *ସ୍ନାତକୋତ୍ତର ଓଡ଼ିଆ ବିଭାଗ*

*ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ*

# ସୂକ୍ଷ୍ମ ଜୀବନବୋଧର ଭାଷ୍ୟକାର

♦ ଡକ୍ଟର ସଂଘମିତ୍ରା ଭଂଜ

ଜୀବନର ସୂକ୍ଷ୍ମ ଅବବୋଧ, ସ୍ମୃତି ବିଜଡ଼ିତ ଘଟଣା ଏବଂ ତା'ର ରୋମନ୍ଥନ-ନିର୍ଯ୍ୟାସକୁ ପାଥେୟ କରି ସ୍ରଷ୍ଟା ଗଢ଼େ ନିଜସ୍ୱ ଏକ ବ୍ୟକ୍ତିକ-ପରିସର । ସେଠାରେ କେବଳ ସ୍ରଷ୍ଟା ପୁରୁଷଙ୍କ ଅଖଣ୍ଡ ଆଧିପତ୍ୟ । ଶବ୍ଦର କମନୀୟ ନିଖୁଣ କାରିଗରୀ ବ୍ୟତିରେକ ଅନ୍ୟ ସବୁକଥା ସେଠି ଅବାଞ୍ଛିତ । ସମୟର ତଡ଼ିତ୍ ସଂବେଗ ଭିତରେ ଯୁଗୀୟ ଭାବଧର୍ମକୁ ଶବ୍ଦରେ ଜୀବନ୍ତ ରଖିବାର ଦାୟିତ୍ୱବୋଧ ଯୋଗୁଁ ସ୍ରଷ୍ଟାର ସାରସ୍ୱତ ସାଧନା ହୁଏ ଅସାଧାରଣ ଏବଂ ଅନୁଭୂତିସିଦ୍ଧ । କାରଣ, "ଅନୁଭୂତି ଯେକୌଣସି ଭଲ ସୃଷ୍ଟିର ମଞ୍ଜ" । (୧) ସାଂପ୍ରତିକ ଓଡ଼ିଆ ସାହିତ୍ୟ ଇତିହାସରେ ଯୁଗୀୟ ଭାବଧର୍ମକୁ ସ୍ୱକୀୟ ଶୈଳୀରେ ପରିପୁଷ୍ଟ କରିଥିବା ଜଣେ ଅନୁଭୂତିସିଦ୍ଧ-ଦାୟିତ୍ୱସଂପନ୍ନ-ନିଷ୍ଠାପର ସାହିତ୍ୟିକ ହେଉଛନ୍ତି ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀ । ଓଡ଼ିଆ ସାହିତ୍ୟର ପାଠକ ପାଠିକାଙ୍କ ପାଇଁ ସେ ଜଣେ ପ୍ରତିଶ୍ରୁତିବଦ୍ଧ ସମର୍ପିତ ବ୍ୟକ୍ତିତ୍ୱ । ବିବିଧ ସାହିତ୍ୟିକ ବିଭାଗରେ ସେ ତାଙ୍କର ଐଶୀ ଲେଖନୀର ପରାକାଷ୍ଠା ପ୍ରତିପାଦନ କରିସାରିଛନ୍ତି । ସଂପାଦନା, ସଂଗଠନ, ଅଧ୍ୟାପନା ଓ ସର୍ଜନାଦି କ୍ଷେତ୍ରରେ ତାଙ୍କ ଜୀବନବୋଧର ଅବଧାରଣା ଉତ୍କୀର୍ଣ୍ଣ ହୋଇଛି । ସେ ଏକାଧାରରେ ଜଣେ କୃତବିଦ୍ୟ କବି, ଗାଳ୍ପିକ, ସଂପାଦକ, ସମାଲୋଚକ, ଅଧ୍ୟାପକ, ବିଚାରକ, ସଂଗଠକ, ରାଜନୀତିଜ୍ଞ ତଥା ସମାଜ ସଂସ୍କାରକ ମଧ୍ୟ । ପ୍ରତ୍ୟେକ ଦିଗରୁ ସେ ତାଙ୍କର କର୍ମମୟ ଜୀବନକୁ ଯଥୋଚିତ ନ୍ୟାୟ ପ୍ରଦାନ କରିଛନ୍ତି । କି ଅଦ୍ଭୁତ ତାଙ୍କ ସାରସ୍ୱତ ଚେତନାର ସ୍ତରୀତ ପର୍ଯ୍ୟାୟ ସବୁ! କି ନିରପେକ୍ଷ ଅନୁଶୀଳନ କି ନିଷ୍ପକ୍ଷ ବିଚାର ଏବଂ ସିଦ୍ଧାନ୍ତ ସତେ ! ତାଙ୍କର ବହୁସ୍ରାବୀ ସୃଷ୍ଟି ମଧ୍ୟରେ ରହିଛି - 'କବିତା ଯୁଗେ ଯୁଗେ', 'ସବୁଜରୁ ସାଂପ୍ରତିକ', 'ଆଧୁନିକ ଓଡ଼ିଆ ସାହିତ୍ୟ', 'ପ୍ରମୁଖ କବି କତିପୟ', 'ଗଳ୍ପ ଓ ଗାଳ୍ପିକ', 'ସତୁରୀରୁ ସହସ୍ରାବ୍ଦୀ', 'କାବ୍ୟଦୃଷ୍ଟି କାବ୍ୟବିଚାର', 'ଶୈଶବରୁ ଅବସର' ଇତ୍ୟାଦି ।

ଜୀବନପ୍ରତି ଗଭୀର ଦୃଷ୍ଟି, ଜୀବନର ବ୍ୟାଖ୍ୟା ସହିତ ଆତ୍ମସମୀକ୍ଷା, ଆତ୍ମ ସଂଶୋଧନ ତଥା ଆତ୍ମ ପ୍ରତିଷ୍ଠାର ଆଭିମୁଖ୍ୟକୁ ନେଇ ରଚିତ ତାଙ୍କ ପୂର୍ଣ୍ଣାଙ୍ଗ ଆତ୍ମଜୀବନୀ 'ଶୈଶବରୁ ଅବସର' ଏକ ଉତ୍କୃଷ୍ଟ ସୃଷ୍ଟି । ଏଥିରେ ଶତପଥୀୟ ଆତ୍ମୋପଲବ୍ଧିର ପର୍ଯ୍ୟାୟାନୁକ୍ରମିକ ସ୍ଥିତିର ମୂଲ୍ୟାୟନ ରହିଛି । ଏଥିରେ ଆତ୍ମ ଆବିଷ୍କାରର ଗୁରୁଦାୟିତ୍ୱ ନିର୍ବାହ କରିଛନ୍ତି ସ୍ୱୟଂ ଲେଖକ । 'ଶୈଶବରୁ ଅବସର' ଆତ୍ମଜୀବନୀରେ ଆପାଦମସ୍ତକ ଜଣେ ନିଷ୍ପକ୍ଷ

ମଣିଷର ଚେହେରା ଦାଉ ଦାଉ ହୋଇ ଦିଶେ । ତାଙ୍କ ସାଧାସିଧା ବ୍ୟକ୍ତିତ୍ୱ ଭିତରେ ଲୁକ୍‌କାୟିତ ରହିଛି ଅସୀମ ଭାବବୋଧ ଓ ପ୍ରବଣତା । ବାହାରକୁ ପାଷାଣଠୁଁ ମଧ୍ୟ ଆହୁରି କଠିନ ଦିଶୁଥିବା ଦୃଢ଼ ମଣିଷଟି ଯେ ଅନ୍ତରରେ ବେଶ୍ ନିଷ୍କପଟ, ନିରୀହ, ଏହା ଯେ ବୁଝିଛି ସେ ଜାଣିଛି । ତାଙ୍କରି ଶବ୍ଦରେ- "ପ୍ରତ୍ୟେକ ଆଘାତର ପ୍ରତିଘାତ, ପ୍ରତ୍ୟେକ ଧ୍ୱନିର ମୁଁ ପ୍ରତିଧ୍ୱନି, ପ୍ରତ୍ୟେକ କ୍ରିୟାର ମୁଁ ପ୍ରତିକ୍ରିୟା । ଯେହେତୁ ମୁଁ ସାଧାରଣ ମଣିଷଟିଏ ମାତ୍ର - ସ୍ନେହ, ମମତା, ଆକାଂକ୍ଷା ଓ ଆକୁଳତାର । ମୁଁ ନିଜକୁ ଅନ୍ୟ ଭାବେନି, ମୁଁ ଯୋଗଜନ୍ମା ନୁହେଁ, ମୁଁ ଦେବତା ମଧ୍ୟ ନୁହେଁ ।"(୨)

ବହୁ ସ୍ୱପ୍ନକୁ ନେଇ ତାଙ୍କ ହାତ ତିଆରି କବିତା-ସଂସାର । ସମୟ, ଜୀବନ ଏବଂ ତଜ୍ଜନୀତ ସଂପର୍କର ଅଡୁଆଖିଅ ଭିତରେ ସ୍ପନ୍ଦିତ ତାଙ୍କ ସ୍ୱପ୍ନସବୁ ଅବସାଦବୋଧର ଶକ୍ତ ଚଟାଣ ସହିତ ଧକ୍କା ଖାଇ ନିସ୍ତରଙ୍ଗ ହୋଇ ନାହାନ୍ତି ବରଂ ଅତି ଅମାୟିକ ଢଙ୍ଗରେ ଆର୍ଦ୍ର ଆଉ ଛଳଛଳ ହୋଇ ଝରିପଡ଼ିଛନ୍ତି । ତାଙ୍କ ଦୃଷ୍ଟିରେ - "ସ୍ୱପ୍ନ କବିତା ନୁହେଁ କିନ୍ତୁ ଲେଖା ଭିତରେ ଯେଉଁ ସ୍ୱପ୍ନ ଆତ୍ମପ୍ରକାଶ କରେ ତାହାହିଁ କବିତା ।"(୩) ଅନ୍ୟ ସାହିତ୍ୟିକମାନଙ୍କ ଭଳି ସାହିତ୍ୟିକ ଜୀବନର ଆଦ୍ୟ ପର୍ଯ୍ୟାୟରେ ସେ ଜଣେ କବି ଭାବରେ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କର ପ୍ରତ୍ୟେକ କବିତା ତାରୁଣ୍ୟର ଆବେଗରେ ମଗ୍ନ ପୁଣି ପରିପକ୍ୱ ଚେତନା ଭିତରେ ସମାହିତ । ଡକ୍ଟର ଶତପଥୀ ଯୁଗୋପଯୋଗୀ ସାରସ୍ୱତ ସାଧନାରେ ସର୍ବଦା ନିମଗ୍ନ । ତାଙ୍କର ଏକନିଷ୍ଠ ସାଧନାର ଶିଳ୍ପସମ୍ମତ-ସଂପାଦିତ ରୂପ ହେଉଛି ତ୍ରୈମାସିକ 'ଇସ୍ତାହାର' ପତ୍ରିକା । ଅସଂଖ୍ୟ ବୌଦ୍ଧିକ ଚିନ୍ତନର ସମୁନ୍ନତ-ଅଭିଜାତ ରୂପ 'ଇସ୍ତାହାର' ଦୀର୍ଘ ୩୦ବର୍ଷର ଏକ ସମାଲୋଚନା ମୂଳକ ସାହିତ୍ୟ ପତ୍ରିକା ଭାବରେ ଓଡ଼ିଆ ସାହିତ୍ୟପ୍ରେମୀଙ୍କୁ ଦିଗ୍‌ଦର୍ଶନ ଦେଇଚାଲିଛି । ବହୁ ପ୍ରତିକୂଳ ଅବସ୍ଥା ତଥା ଆର୍ଥିକ ଦୁଃସ୍ଥିତି ସତ୍ତ୍ୱେ ଏହା ଆତ୍ମପ୍ରକାଶକ୍ଷମ ହୋଇ ପ୍ରଚୁର ଜନାଦୃତି ସାଉଁଟି ପାରିଛି । ସଂପାଦନା କ୍ଷେତ୍ରରେ ଡକ୍ଟର ନିତ୍ୟାନନ୍ଦ ଶତପଥୀ ନିଜର ସାରସ୍ୱତ ଦାୟିତ୍ୱବୋଧକୁ ଅତି ନିଷ୍ଠାପର ଭାବରେ ନିର୍ବାହ କରିଛନ୍ତି ।

'ଶୈଶବରୁ ଅବସର' - ଯାଏ ତାଙ୍କର ଜୀବନ ବହୁ ଘଟଣା, ଆବେଗ, ପ୍ରବଣତା ତଥା ଅନୁଭୂତିର ପ୍ରାଣପ୍ରାଚୁର୍ଯ୍ୟରେ ଦୀପ୍ତ । ଯନ୍ତ୍ରଣାରେ ଆକ୍ତାମାକ୍ତା ଜୀବନକୁ ଅତି ନିଛକ ଭାବରେ ପରଶିଦେବାର ଦୁର୍ବାର ଲେଖକୀୟ ସାହସକୁ ପ୍ରଶଂସା ନ କରି ରହିହୁଏ ନାହିଁ । ମିଛରେ ଆଖି ବନ୍ଦ କରି ଲୁହ ଗଡ଼େଇ ହୁଏ, କିନ୍ତୁ ବିଭୁପ୍ରେମ ନେଇ ଶରୀରରେ ମିଥ୍ୟା ରୋମାଞ୍ଚ ସୃଷ୍ଟି କରିହୁଏନି, ଅବା ମିଛରେ ନିଜର ଶତପ୍ରଶଂସା କରି ଅନେକ ଲେଖିହୁଏ, କିନ୍ତୁ ପାଠକର ହାର୍ଦ୍ଦିକ ସ୍ୱୀକୃତି ପାଇ ହୁଏ ନାହିଁ, ଠିକ୍ ସେହିପରି ସତ୍ୟବଦ୍ଧ ଲେଖକଙ୍କ 'ଶୈଶବରୁ ଅବସର' ଆତ୍ମଜୀବନୀ ଅସଂଖ୍ୟ ଓଡ଼ିଆ ପାଠକ/ପାଠିକାଙ୍କ ହୃଦୟରେ ସ୍ୱତନ୍ତ୍ର ସ୍ଥାନ ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଛି । ଏହାର ସମୁନ୍ନତ ଗରିମାକୁ ସିଦ୍ଧ କରିବାର ଆବଶ୍ୟକତା ମଧ୍ୟ ନାହିଁ ।

ଡକ୍ଟର ଶତପଥୀଙ୍କ ସାରସ୍ୱତ ସାଧନାକୁ ନେଇ ବିବିଧ ଘଟଣା, ଭିନ୍ନ ଭିନ୍ନ ସମୟରେ ତାଙ୍କ ସଂସ୍ପର୍ଶରେ ଆସିଥିବା ଅନେକ ସାହିତ୍ୟକାର, ସମକାଳୀନ ସାମାଜିକ-ରାଜନୀତିକ ପରିବେଶ, ବହୁ ବିଶ୍ୱବିଦ୍ୟାଳୟର ଶୈକ୍ଷିକ ପରିବେଶ, ଆତ୍ମୀୟସ୍ୱଜନ, ସେମାନଙ୍କର ପ୍ରତାରଣା, ବିଷୋଦ୍‌ଗାର, ସହକର୍ମୀଙ୍କର ପ୍ରତିଯୋଗିତା, ଅସହିଷ୍ଣୁଭାବ, କାର୍ଯ୍ୟରେ ଅସହଯୋଗ, ବିବିଧ ସ୍ଥାନମାନଙ୍କୁ ଷ୍ଟଡିଟୁର୍, ଓଡ଼ିଶାର ବିଶିଷ୍ଟ ଜନନାୟକ-ସଂସ୍କାରକମାନଙ୍କର ସାନ୍ନିଧ ଲାଭ, ସେମାନଙ୍କ ପ୍ରଭାବ ଆଦିକୁ ଆତ୍ମଜୀବନୀର ଆଲୋଚନାଭୁକ୍ତ କରାଯାଇଛି ।

ବି.ଏ. ଅନର୍ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସେ ଶିକ୍ଷକମାନଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ । ହଷ୍ଟେଲ୍‌ର ମୁଖପତ୍ର 'ଉର୍ମି' ପତ୍ରିକାର ସଂପାଦନା ସହିତ ପ୍ରଜାତନ୍ତ୍ର, ଆସନ୍ତାକାଲି ଆଦି ପତ୍ରପତ୍ରିକାରେ ନିୟମିତ କବିତା ପ୍ରକାଶନ ଦ୍ୱାରା ତାଙ୍କ ସାରସ୍ୱତ ଜୀବନର ଅୟମାରମ୍ଭ କଥା ଏଥିରେ ସେ ଉଲ୍ଲେଖ କରିଛନ୍ତି । ରେଭେନ୍‌ସାରେ ଜେନେରାଲ୍ ସେକ୍ରେଟାରୀ ହେବା ପରେ ତାଙ୍କର ସାହିତ୍ୟିକ ଦକ୍ଷତାର ଅଭିବୃଦ୍ଧି ଘଟିଥିଲା । ୧୯୬୧ ମସିହା ବିଷୁବ ମିଳନରେ 'ଦୁଇ ଧାର' କବିତା ପାଇଁ ପ୍ରଜାତନ୍ତ୍ର ପୁରସ୍କାର ଜରିଆରେ ତାଙ୍କ କବିତାକୁ ପ୍ରଥମ ସାରସ୍ୱତ ସ୍ୱୀକୃତି ପ୍ରାପ୍ତ ହୋଇଥିଲା । ନିଖିଳ ଉତ୍କଳ ଛାତ୍ର ୟୁନିଅନ୍‌ର ସଭାପତି ଦାୟିତ୍ୱ ଗ୍ରହଣ, ୧୯୬୧-୬୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ବାର୍ଷିକ ପ୍ରବନ୍ଧ ପ୍ରତିଯୋଗିତାରେ ପ୍ରଥମ ହୋଇଥିବା 'ଓଡ଼ିଆ କବିତାରେ ଜଗନ୍ନାଥ ଦାସଙ୍କ ପ୍ରଭାବ' ପ୍ରବନ୍ଧଟି ପରବର୍ତ୍ତୀ ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀର 'ପଞ୍ଚସଖା ବିଶେଷାଙ୍କ'ରେ ପ୍ରକାଶ ପାଇବା, ପ୍ରିୟ ଅଧ୍ୟାପକ ତଥା ପଥପ୍ରଦର୍ଶକ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ପ୍ରେରଣା, ଓଡ଼ିଶାରେ ପୂଜ୍ୟପୂଜା ର ଏକ ମହାନ୍ ବାତାବରଣ ପ୍ରତିଷ୍ଠା ନିମନ୍ତେ ମହାନ୍ ବ୍ୟକ୍ତିତ୍ୱଙ୍କ ଜନ୍ମସ୍ଥାନକୁ ଯାଇ ସଂସ୍କୃତି ସଭାର ଆୟୋଜନ, ସତ୍ୟବାଦୀର ପ୍ରତିନିଧି କବି ପଣ୍ଡିତ ନୀଳକଣ୍ଠ ଦାସଙ୍କ ପ୍ରତ୍ୟକ୍ଷ ସାନ୍ନିଧ୍ୟରେ ତାଙ୍କର 'ଆତ୍ମଜୀବନୀ' ଲିଖନ, ଓଡ଼ିଶା ସରକାରଙ୍କଠାରୁ ରେଭେନ୍‌ସାରେ ଓଡ଼ିଆ ବିଭାଗ ମୁଖ୍ୟ ଭାବେ ଯୋଗଦାନ ଏବଂ ପରବର୍ତ୍ତୀ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ ଇତ୍ୟାଦି ଘଟଣାକୁ ନେଇ ତାଙ୍କର କର୍ମମୟଜୀବନ ମୁଖରିତ । ବିଶେଷତଃ ଲେଖାପଢ଼ା, ପୁସ୍ତକ ପ୍ରକାଶନ, 'ଇସ୍ତାହାର' ପରି ଉନ୍ନତମାନର ସାହିତ୍ୟ ପତ୍ରିକାର ସଂପାଦନା, ପୂଜ୍ୟପୂଜା ସଂସଦର ପୁସ୍ତକ ସଂକଳନ ଏବଂ ବିଭାଗୀୟ ଦାୟିତ୍ୱକୁ ଅତି ସୂକ୍ଷ୍ମରୁ ଢଙ୍ଗରେ ତୁଲେଇବାର ଅନୁଭୂତିକୁ ସେ ଉଲ୍ଲେଖ କରିଛନ୍ତି ।

ଡକ୍ଟର ଶତପଥୀ ୧୯୬୦ ମସିହାରେ ରେଭେନ୍‌ସା କଲେଜରେ ଏମ୍.ଏ. ଅଧ୍ୟୟନ ବେଳେ ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସିଥିଲେ । ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ଡକ୍ଟର କାହ୍ନୁଚରଣ ମିଶ୍ର, ଶ୍ରୀଗୋପାଳ ଚନ୍ଦ୍ର ମିଶ୍ର, ଶ୍ରୀ

ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀ ଜାନକୀବଲ୍ଲଭ ମହାନ୍ତି (ସିନିୟର), ଡକ୍ଟର ଶ୍ରୀନିବାସ ମିଶ୍ର, ଭାଷାତତ୍ତ୍ୱବିତ୍ ଶ୍ରୀ ଗୋଲୋକବିହାରୀ ଧଳ ତଥା ଶ୍ରୀ ଚିନ୍ତାମଣି ବେହେରାଙ୍କ ଭଳି ଜ୍ଞାନଗର୍ଭା-ସର୍ଜ୍ଜନଶୀଳ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସିଥିବା ବିଷୟ ଉଲ୍ଲେଖ କରିଛନ୍ତି । ପ୍ରଖ୍ୟାତ ଗାଳ୍ପିକ ରାଜକିଶୋର ରାୟ, ସହକର୍ମୀ ଶ୍ରୀମତୀ କ୍ଷୀରୋଦ୍ରା ପରିଜା, ଅଧ୍ୟାପକ ବନ୍ଧୁ ଶ୍ରୀ ବିଭୁଦତ୍ତ ମିଶ୍ର, ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ଡକ୍ଟର ଧନେଶ୍ୱର ମହାପାତ୍ର, ଶ୍ରୀ କୈଳାସ ଲେଙ୍କା, ଶ୍ରୀ ପ୍ରଦ୍ୟୁମ୍ନବଳଙ୍କ ସମେତ ଆଡ୍‌ଭୋକେଟ୍ ବନ୍ଧୁ ଶ୍ରୀ ବିଷ୍ଣୁଚରଣ ସ୍ୱାଇଁ, ଦିବାକର ଭୂୟାଁ, ମୁରଲୀ ବାବୁ, ଅମିତାଭ ମହାପାତ୍ର ଏବଂ ଶରତ ବିଶ୍ୱାଳ ଆଦି ପ୍ରମୁଖ ଅଟନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସୌଭାଗ୍ୟ ମିଶ୍ର, କମଳାକାନ୍ତ ଲେଙ୍କା ପ୍ରଭୃତିଙ୍କ ସଂସ୍ପର୍ଶରେ ଆସିଥିବା ବିଷୟ ଡକ୍ଟର ଶତପଥୀ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ଡକ୍ଟର ଶତପଥୀଙ୍କ ପାଇଁ, ସତ୍ୟବାଦୀଯୁଗୀୟ ଆଦର୍ଶ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଥିଲେ- "ନବନୀତ କୋମଳ ହୃଦୟର ମଣିଷ । ସାଙ୍ଗେ ସାଙ୍ଗେ ଅଗ୍ନିଶର୍ମା ଓ ପରେ ପରେ ଶୀତଳ ବରଫ ଏବଂ ବଡ଼ ହୃଦୟବାନ ମଣିଷ ।" ଏତଦ୍‌ଭିନ୍ନ ସତ୍ୟବାଦୀର ଶେଷ ଦୀପଶିଖା ଥିଲେ ତ୍ୟାଗୀପୁରୁଷ-ଋଷିପ୍ରତିମ ଆଚାର୍ଯ୍ୟ ହରିହର ଦାସ । ସେ ଥିଲେ ଭାରତୀୟ ମୂଲ୍ୟବୋଧର ପ୍ରତୀକ ଏବଂ ନିରୀହତା-ସରଳତାର ମୂର୍ତ୍ତରୂପ । ଆଚାର୍ଯ୍ୟ ହରିହରଙ୍କ ସାନ୍ନିଧ ଲାଭ କରି ଏବଂ ତାଙ୍କର କ୍ରମକ୍ଷୟମାଣ ସ୍ମୃତିକୁ ପାଥେୟ କରି ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନୀ ଆଧାରରେ ଡକ୍ଟର ଶତପଥୀ ଲେଖିଛନ୍ତି- "ହେ ସାଥି ହେ ସାରଥୀ" ଜୀବନୀ ଗ୍ରନ୍ଥ । ପରବର୍ତ୍ତୀ ସମୟରେ ପୂଜ୍ୟପୂଜା ସଂସଦ ତରଫରୁ 'ଆଚାର୍ଯ୍ୟ ପରିକ୍ରମା' ପ୍ରକାଶ କରି ପଣ୍ଡିତ ହରିହରଙ୍କ ପ୍ରତି ନିଜର ଶ୍ରଦ୍ଧା ମଧ ଜ୍ଞାପନ କରିଛନ୍ତି । ପୂଜ୍ୟପୂଜା ସଂସଦ ଅନୁଷ୍ଠାନ ତରଫରୁ ୧୯୬୫ ମସିହାରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଜନ୍ମତିଥି ଉପଲକ୍ଷେ 'ମଧୁସ୍ମରଣିକା', ୧୯୬୭ ମସିହାରେ 'ଗୋପବନ୍ଧୁ ପରିକ୍ରମା', ୧୯୬୯ ମସିହାରେ 'ନୀଳକଣ୍ଠ ପରିକ୍ରମା' ଇତ୍ୟାଦିର ପ୍ରକାଶନ ଶତପଥୀୟ ସାଧନାର ଗୁଣାତ୍ମକ ମୂଲ୍ୟବୋଧର ବିଶ୍ୱସ୍ତ ବାର୍ତ୍ତାବହ ସାଜିଛି । ପୂଜ୍ୟପୂଜା ସଂସଦ ତରଫରୁ ଓଡ଼ିଶାର ୧୩ଜଣ ବିଶିଷ୍ଟ ବରପୁତ୍ର- ମହାମନୀଷୀଙ୍କ ସ୍ମୃତିରେ ପ୍ରକାଶିତ ୧୩ ଗୋଟି ପୁସ୍ତକ ପ୍ରକାଶନର ପଶ୍ଚାତ୍‌ଭାଗରେ ଶିକ୍ଷାଗୁରୁ ଲୋକରତ୍ନ କୁଞ୍ଜବିହାରୀ ଦାଶଙ୍କ ଆନ୍ତରିକ ଦିଗ୍‌ଦର୍ଶନ ତଥା ପ୍ରୋତ୍ସାହନକୁ ଲେଖକ ବାରମ୍ବାର ସ୍ୱୀକାର କରିଛନ୍ତି ।

ଲେଖକ ଡକ୍ଟର ଶତପଥୀ ତାଙ୍କ କର୍ମମୟ ଜୀବନରେ ବହୁ କର୍ମଶାଳାରେ ସକ୍ରିୟ ଯୋଗଦାନ କରିଛନ୍ତି । ୧୯୭୧ ମସିହାରେ ପୁନା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଡେକାନ୍ କଲେଜ କ୍ୟାମ୍ପସ୍‌ରେ N.B.T. ର ଜାତୀୟ କର୍ମଶାଳାରେ ଯୋଗଦାନ, ଜାମ୍ମୁ କାଶ୍ମୀର ଗ୍ରସ୍ତ, ୧୯୭୫ ମସିହାରେ ଉତ୍ତର ଭାରତ, ୧୯୭୯ରେ ଦକ୍ଷିଣ ଭାରତ, ୧୯୯୧ରେ

ପୁନଶ୍ଚ ଦକ୍ଷିଣ ଭାରତକୁ ଷ୍ଟଡିଟୁର୍‌ରେ ଗ୍ରସ୍ତ କରିଛନ୍ତି । ସୃଜନଶୀଳ ଦକ୍ଷତା ଥିବା ଛାତ୍ର-ଛାତ୍ରୀଙ୍କୁ ପ୍ରେରଣା, ନିୟମିତ ସେମିନାର୍, ପ୍ରବନ୍ଧ ଲିଖନ, ବକ୍ତୃତା ପ୍ରଦାନ, ଓଡ଼ିଶାର ବିଶିଷ୍ଟ ସାହିତ୍ୟ ରଥୀମାନଙ୍କୁ ଆମନ୍ତ୍ରଣ କରି ସେମାନଙ୍କ ଦ୍ୱାରା ବକ୍ତବ୍ୟ ପ୍ରଦାନ କରି ଅସଂଖ୍ୟ ସାହିତ୍ୟ କର୍ମର ସେ ଆବାହକ ହୋଇଛନ୍ତି । ଶିକ୍ଷାଦାନ ପରେ ପୁରୁଣା ପତ୍ରପତ୍ରିକା ଅଧ୍ୟୟନ ଓ ଭଲ କବିତାର ପ୍ରଥମ ପ୍ରକାଶନ ତାରିଖର ସନ୍ଧାନ ହିଁ ତାଙ୍କର ନିଶା । ଜଣେ କବିର ସୃଷ୍ଟିକୁ କାଳାନୁକ୍ରମିକ ଭାବେ ଅନୁଧ୍ୟାନ କଲାବେଳେ ସେମାନଙ୍କ ରୋମାଣ୍ଟିକ୍ ଚେତନା କାବ୍ୟଯାତ୍ରାର ଆରମ୍ଭରେ ଗତିଶୀଳ ହୋଇ ପରିଶେଷରେ ଆଧିଭୌତିକ ଚେତନାରେ ସମର୍ପିତ ହୋଇଥିବାର ସତ୍ୟକୁ ଉପଲବ୍ଧି କରି ପାଠକମାନଙ୍କୁ ଅବଗତ କରାଇଛନ୍ତି । ଲେଖକଙ୍କ ମତରେ- " 'ସତ୍ୟବାଦୀ' ଏକ ସାହିତ୍ୟ ଯୁଗ, କିନ୍ତୁ 'ସବୁଜ' ଏକ ସାହିତ୍ୟ ଗୋଷ୍ଠୀ । 'ସବୁଜ' ଏକ ସାହିତ୍ୟଯୁଗ ବୋଲି ଯେଉଁ ଧାରଣା ରହିଛି ତାହା ଉଚିତ୍ ନୁହେଁ, ବାସ୍ତବରେ ଏକ ଯୁଗାଭାସ ମାତ୍ର ।"(୪)

ଲେଖକଙ୍କ ଉଦ୍ୟମରେ ୧୯୭୪ ମସିହାରେ ଭାଗିରଥୀ ସାହୁଙ୍କ ସଂପାଦନାରେ ପ୍ରକାଶିତ 'ଇସ୍ତାହାର' ଥିଲା ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ସମୁଚ୍ଚସମୀକ୍ଷାତ୍ମକ ପତ୍ରିକା । ଏହି ପତ୍ରିକା ପ୍ରକାଶନ କ୍ଷେତ୍ରରେ ଡକ୍ଟର ମନ୍ମଥନାଥ ଦାସ, ମହାପାତ୍ର ନୀଳମଣି ସାହୁଙ୍କ ପରି ବିଶିଷ୍ଟ ବ୍ୟକ୍ତିତ୍ୱଙ୍କର ହାର୍ଦ୍ଦିକ ପ୍ରୋତ୍ସାହନକୁ ଡକ୍ଟର ନିତ୍ୟାନନ୍ଦ ଶତପଥୀ ସ୍ୱୀକାର କରିଛନ୍ତି । ଲେଖକଙ୍କ ଉଦ୍ୟମରେ 'ଇମ୍ପା'ର ପ୍ରତିଷ୍ଠାତା ଡକ୍ଟର ବଂଶୀଧର ପଣ୍ଡାଙ୍କ ଦ୍ୱାରା ୧୯୭୯ରେ 'ଶାରଳା ପୁରସ୍କାର'ର ପ୍ରତିଷ୍ଠା ସମ୍ଭବ ହୋଇଥିଲା । ୧୯୮୦ ମସିହାରେ ସର୍ବପ୍ରଥମ ଶାରଳା ପୁରସ୍କାର ଲାଭ କରିଥିଲେ 'କୁଳବୃଦ୍ଧ'ର ବିଶିଷ୍ଟ ଔପନ୍ୟାସିକ ଶ୍ରୀ ସୁରେନ୍ଦ୍ର ମହାନ୍ତି । ୧୯୮୩ ମସିହାରେ 'ଅଭିଶପ୍ତ ଗନ୍ଧର୍ବ' ପାଇଁ ମହାପାତ୍ର ନୀଳମଣି ସାହୁ, ୧୯୮୭ ମସିହାରେ 'ଶକୁନ୍ତଳା' ଉପନ୍ୟାସ ପାଇଁ ଶ୍ରୀ ଶାନ୍ତନୁ ଆଚାର୍ଯ୍ୟ ଏବଂ ୧୯୯୨ରେ 'ଶବରୀ' ପାଇଁ ପ୍ରତିଭା ଶତପଥୀ ଏହି ପୁରସ୍କାର ଲାଭ କରିଛନ୍ତି ।

'ଶାରଳା ପୁରସ୍କାର' ଭଳି 'ସତ୍ୟବାଦୀ ଚେୟାର'ର ପ୍ରତିଷ୍ଠା ଦିଗରେ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ନିରବଚ୍ଛିନ୍ନ ପ୍ରୟାସ ପ୍ରଶଂସନୀୟ । ୧୯୮୫ ମସିହାରେ ସତ୍ୟବାଦୀ ଚେୟାର୍‌ର ପ୍ରସ୍ତାବ ଗୃହୀତ ହେବା ନିଶ୍ଚିତ ଭାବରେ ଅଗଣିତ ଓଡ଼ିଆମାନଙ୍କ ପାଇଁ ଅବିସ୍ମରଣୀୟ ଥିଲା । ଏହି ଚେୟାର୍‌ର ପ୍ରତିଷ୍ଠା ଦିଗରେ ଲେଖକ ତତ୍କାଳୀନ ଅର୍ଥ ଏବଂ ଆଇନ୍ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଆନ୍ତରିକ ଉଦ୍ୟମକୁ ଭୁରି ଭୁରି ପ୍ରଶଂସା କରିଛନ୍ତି ।

ସାଂପ୍ରତିକ ସମୟରେ ଜଣେ ବିଶିଷ୍ଟ ପ୍ରାବନ୍ଧିକ ଭାବେ ଡକ୍ଟର ଶତପଥୀ ବହୁ ସମ୍ମାନର ଅଧିକାରୀ । ୧୯୯୦ ମସିହାରେ ସର୍ବଭାରତୀୟ ସମାଲୋଚକ ସମ୍ମିଳନୀରେ, ୧୯୯୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉପଲକ୍ଷେ ଲିଖିତ

ପ୍ରବନ୍ଧ ଗୁଡ଼ିକରେ ବଳିଷ୍ଠ ଯୁକ୍ତିନିଷ୍ଠତା ଏବଂ ଶାଣିତ ବୌଦ୍ଧିକତା ପ୍ରଦର୍ଶନ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ରଜତ ଜୟନ୍ତୀ ଉପଲକ୍ଷେ ଶ୍ରୀ ଶତପଥୀଙ୍କ ଦ୍ୱାରା ସଂପାଦିତ 'ଓଡ଼ିଆ ସାହିତ୍ୟ ଯୁଗେ ଯୁଗେ' ପୁସ୍ତକଟି ଏଯାବତ୍ ଅସଂଖ୍ୟ ଅନୁସନ୍ଧିତ୍ସୁ ପାଠକ ପାଠିକାଙ୍କ ନିମନ୍ତେ ଏକ ଉପାଦେୟ ଓ ସୂଚ଼ନାତ୍ମକ ପୁସ୍ତକ ରୂପେ ସ୍ୱୀକୃତି ଲାଭ କରିଛି । ସେହି ବର୍ଷ ୧୯୯୪ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗ ତରଫରୁ ଆୟୋଜିତ ତିନିଦିନଆ ସେମିନାର୍‌ରେ ଲେଖକଙ୍କ ଦ୍ୱାରା ପ୍ରଦତ୍ତ ବକ୍ତୃତାର ଶୀର୍ଷକ ଥିଲା, "Social backgroud of Modern Odia Literature". ଉତ୍କଳ ବିଶ୍ୱବିଦ୍ୟାଳୟ ରାଜନୀତିବିଜ୍ଞାନ ବିଭାଗରେ ଅନୁଷ୍ଠିତ ଓରିଏଣ୍ଟେସନ୍ କୋର୍ସ କାର୍ଯ୍ୟକ୍ରମରେ 'ଆଧୁନିକ ଓଡ଼ିଆ କବିତାର ଶିଳ୍ପ ଦୃଷ୍ଟି' ଏବଂ 'ଆଧୁନିକ କବିତାର ଧାରା', ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ ସେମିନାର୍‌ରେ "ସାଂପ୍ରତିକ ଓଡ଼ିଆ କବିତା : କାବ୍ୟଦୃଷ୍ଟି ଓ ଶିଳ୍ପବିଧି", ଆନନ୍ଦପୁର କଲେଜ୍‌ର ଓଡ଼ିଆ ସାହିତ୍ୟ ସମାଜ ତରଫରୁ ଆୟୋଜିତ ସାରସ୍ୱତ ଉତ୍ସବରେ - 'ଆଧୁନିକ ଓଡ଼ିଆ କବିତାର ଦିଗ ଓ ଦିଗନ୍ତ' I. & P.R. ବିଭାଗରେ ଯୋଗ ଦେଇଥିବା ତାଲିମ୍ ଆକାଂକ୍ଷୀ ବ୍ୟକ୍ତିମାନଙ୍କୁ "Orissan Literature, its growth", ସୋରୋ ଠାରେ ଆୟୋଜିତ ରାଧାନାଥ ଜୟନ୍ତୀ ଏବଂ ସୂଚ଼ନାଭବନଠାରେ "One World Founation" ତରଫରୁ ଆୟୋଜିତ ସେମିନାର୍‌ରେ "Value based politics and its impact on the society", ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଦିବସ ଉପଲକ୍ଷେ ଲିଖିତ "ଉତ୍କଳ ବିଶ୍ୱବିଦ୍ୟାୟ ପ୍ରତିଷ୍ଠା ଦିବସ : ଏକ ଆତ୍ମସମୀକ୍ଷା" ଏବଂ "ଓଡ଼ିଆ ସାହିତ୍ୟ ଓ ନ୍ୟାସ ପ୍ରସଙ୍ଗ" ଆଦି ପ୍ରବନ୍ଧ ବେଶ୍ ଉଚ୍ଚକୋଟୀର ମନେହୁଏ ।

ଦିଲ୍ଲୀରେ 'ସାଂପ୍ରତିକ' ସେମିନାର୍‌ର ଆୟୋଜନ କ୍ଷେତ୍ରରେ ଡକ୍ଟର ଶତପଥୀଙ୍କ ଭୂମିକା ଉଲ୍ଲେଖନୀୟ । ୧୯୯୪ ମସିହାରେ ବିଶ୍ୱ ଯୁବକେନ୍ଦ୍ରରେ (ଚ୍ଛାଣକ୍ୟପୁରୀ) ହିନ୍ଦୀ ଓ ଓଡ଼ିଆ ସାହିତ୍ୟ ମଧ୍ୟରେ ଅନୁଷ୍ଠିତ ଦ୍ୱିଭାଷିକ ସେମିନାର୍‌ରେ 'ସାଂପ୍ରତିକ'ର ସଂପାଦକ ଭାବରେ ଲେଖକଙ୍କ ଯୋଗଦାନ ଗୁରୁତ୍ୱପୂର୍ଣ୍ଣ ଥିଲା । ୩ ଦିନ ବ୍ୟାପୀ ଏହି ସେମିନାର୍‌ରେ ଓଡ଼ିଆ ସାହିତ୍ୟ ନିମନ୍ତେ ୨୨ଜଣ ସାହିତ୍ୟିକ ପ୍ରତିନିଧିତ୍ୱ କରିଥିଲେ । ପ୍ରଥମ ଦିବସରେ 'ଆଧୁନିକ ଓଡ଼ିଆ କବିତାର ସ୍ଥିତି ଓ ସମ୍ଭାବନା' ସହିତ 'ହିନ୍ଦୀ କବିତାର ସାଂପ୍ରତିକ ସ୍ଥିତି ଉପରେ ଆଲୋଚ଼ନା', ଦ୍ୱିତୀୟ ଦିନରେ 'ଓଡ଼ିଆ ଓ ହିନ୍ଦୀ ଗଳ୍ପ ସାହିତ୍ୟ', ତୃତୀୟ ଦିନରେ 'ଓଡ଼ିଆ ଓ ହିନ୍ଦୀ ନାଟକ' ଉପରେ ବହୁ ପ୍ରସଙ୍ଗ ଆଲୋଚ଼ିତ ହୋଇଥିଲା ।

୧୯୯୫ ମସିହାରେ ରାଞ୍ଚି ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଅଧ୍ୟାପକମାନଙ୍କ ବ୍ୟକ୍ତିଗତ ପଦୋନ୍ନତି ପାଇଁ ଗଠିତ ସ୍କ୍ରିନିଙ୍ଗ୍ କମିଟିରେ ବିଷୟ ବିଶାରଦ ଭାବେ ଡକ୍ଟର ଶତପଥୀଙ୍କ ଯୋଗଦାନ, ସାହିତ୍ୟ ଏକାଡେମୀର ପୂର୍ବାଞ୍ଚଳ ଶାଖା କାର୍ଯ୍ୟାଳୟ ତରଫରୁ ଆୟୋଜିତ

ସେମିନାର୍‌ରେ ସଭାପତିତ୍ୱ, ରାଷ୍ଟ୍ରୀୟ ଚେତନା ମଞ୍ଚ, ଓଡ଼ିଶା ବିକାଶ ମଞ୍ଚ ଭଳି ଉତ୍କୃଷ୍ଟ ଅନୁଷ୍ଠାନମାନଙ୍କ ସହିତ ସଂପୃକ୍ତିକୁ ସେ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ଆତ୍ମଜୀବନୀକାର ଡକ୍ଟର ଶତପଥୀ ଅତି ବେବାକ୍ ଢଙ୍ଗରେ ରାଜନୀତି ପ୍ରତି ଥିବା ତାଙ୍କ ପ୍ରଚ୍ଛନ୍ନ ଆକର୍ଷଣକୁ ପାଠକମାନଙ୍କ ଆଗରେ ନିର୍ଦ୍ୱନ୍ଦ୍ୱରେ ବଖାଣିଛନ୍ତି । ଦଳୀୟ-ରାଜନୀତିକ ଉନ୍ମାଦନାର ବଶବର୍ତ୍ତୀ ହୋଇ ରାଜନୀତିର ପ୍ରହେଳି ଭିତରକୁ ବାରମ୍ବାର ଟାଣି ହୋଇଯାଇଛନ୍ତି କିନ୍ତୁ ନିଜର ବ୍ୟକ୍ତିଗତ ଜୀବନ ସମସ୍ୟା ଏବଂ ସାହିତ୍ୟକର୍ମ ଯୋଗୁଁ ତାଙ୍କ ପଥରୁଦ୍ଧ ହୋଇଛି । ଅନିଚ୍ଛାସତ୍ତ୍ୱେ ବାରମ୍ବାର ରାଜନୀତିର ବନ୍ଧୁର ପଥରୁ ଓହରିଛନ୍ତି । ପୁଣି ରାଜନୀତିର ଅମୁହାଁ ରାସ୍ତାରେ ଦିଗ୍‌ଭ୍ରାନ୍ତ ହୋଇ ଅଣନିଃଶ୍ୱାସୀ ହୋଇପଡ଼ିଛନ୍ତି । ସେ ଲେଖିଛନ୍ତି- "ଇନ୍ଦିରା କଂଗ୍ରେସ ଓ ଏହାର ଓଡ଼ିଶା ନେତାଙ୍କ ପ୍ରତି ମୋ ମନରେ କୌଣସି ଆକର୍ଷଣ ଆଉ ନଥିଲା । ବିଶେଷତଃ ଜାନକୀବାବୁ ଡାକି ମଧ ଏରସମା ନିର୍ବାଚନ ମଣ୍ଡଳୀ ପାଇଁ ଟିକେଟ୍ ଦେଇ ନ ପାରିବା ମୋତେ ଖୁବ୍ ଆଘାତ ଦେଇଥିଲା । ମୁଁ ଆଉ କୌଣସି ରାଜନୈତିକ କାମରେ ଲିପ୍ତ ହେବାକୁ ଚାହୁଁନଥିଲି ।"(୫) ଲେଖକ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ । ଓଡ଼ିଶା ବିକାଶ ମଞ୍ଚର ସଭାପତି ହେଲାପରେ ପ୍ରାୟ ପ୍ରତ୍ୟକ୍ଷଭାବେ ରାଜନୀତିକ କାର୍ଯ୍ୟରେ ସଂପୃକ୍ତ ରହୁଥିଲେ । ସେ ଲେଖିଛନ୍ତି- "ବେଳେବେଳେ ରାଜନୈତିକ କାମ ପାଇଁ ବିପୁଳ ଉତ୍ସାହ, ବେଳେବେଳେ ଏକାନ୍ତ ଅବସାଦ ଓ ମାନସିକ ଯନ୍ତ୍ରଣା" ।(୬) ଏରସମା, କୁଜଙ୍ଗ ଓ ତିର୍ତ୍ତୋଲ୍‌ରେ ଯୁବମେଳା ପାଇଁ ତାଙ୍କର ସାଂଗଠନିକ କାର୍ଯ୍ୟ ଅଭିନନ୍ଦନୀୟ ଥିଲା । ରାହାମା ଅଞ୍ଚଳର ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ସାମାଜିକ-ଅର୍ଥନୀତିକ ଅବସ୍ଥାର ଉନ୍ନତି, ହାଇସ୍କୁଲ୍, ଡାକ୍ତରଖାନା, ପିଚୁରାସ୍ତା, ରାହାମା କଲେଜ୍ ପ୍ରତିଷ୍ଠାଦିର ଦାବୀ କରି ସେ ତାଙ୍କର ସୁଦୃଢ଼ ସାଂଗଠନିକ କର୍ତ୍ତବ୍ୟ ସଂପାଦନ କରିଥିଲେ । ଓଡ଼ିଶା ବିକାଶମଞ୍ଚ ସଂଗଠନର ସଭାପତି ରୂପେ ଆଦର୍ଶଭିତ୍ତିକ ଉଚ୍ଚତର ରାଜନୀତି ଏବଂ ଯୁବନେତୃତ୍ୱର ସନ୍ଧାନ ଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ । ପ୍ରଥମେ କଂଗ୍ରେସ ଏବଂ ପରେ ବିଜେପି ଦଳରେ ସାମିଲ୍ ହୋଇଥିଲେ ହେଁ ଓଡ଼ିଶାର ପ୍ରବାଦପୁରୁଷ ବିଜୁପଟ୍ଟନାୟକଙ୍କ ଦେହାନ୍ତ ପରେ ତାଙ୍କ ପାଇଁ ଶୋକସଭାର ଆୟୋଜନ ଡକ୍ଟର ଶତପଥୀଙ୍କ ବିଶାଳ ହୃଦୟବତ୍ତା ଏବଂ ଗଭୀର ମାନବପ୍ରେମର ପରିଚୟ ପ୍ରଦାନ କରେ । ଅତି ନିରପେକ୍ଷ ଢଙ୍ଗରେ ଦୁଃସାହସୀ ବିଜୁବାବୁଙ୍କ ବିଶାଳ ମନ ଏବଂ ହୃଦୟର ଉଦାରତାକୁ ସେ ତାଙ୍କର ଆତ୍ମଜୀବନୀରେ ପ୍ରଶଂସା କରିବାକୁ ଭୁଲି ନାହାନ୍ତି । ତାଙ୍କୁ ମନେହୋଇଛି- "ବିଜୁବାବୁ ଯେପରି ମୃତ୍ୟୁପରେ ଆହୁରି ବିରାଟ ହୋଇଯାଇଛନ୍ତି, ଜୀବନଠାରୁ ବୃହତ୍ତର ।"(୭)

'ଶୈଶବରୁ ଅବସର' - ଆତ୍ମଜୀବନୀରେ ଲେଖକଙ୍କ ଜୀବନର ଆଉଟା ବୈକଲ୍ୟ, ବିଷାଦବୋଧଜନିତ ଏକ୍‌ଲାପଣ ସତ୍ତ୍ୱେ ପରିଚିତମାନଙ୍କ ପ୍ରତି ଐକାନ୍ତିକ ଆବେଗ, ତରଳ

ଅବ୍ୟକ୍ତ ଦରଦ ପାଠକ ଚକ୍ଷୁକୁ ଲୋତକାପ୍ଳୁତ ଏବଂ ହୃଦୟକୁ ମର୍ମରିତ କରିବାରେ ସକ୍ଷମ ହୋଇଛି ।

ଡକ୍ଟର ଶତପଥୀଙ୍କ ନିଷ୍କପଟ-ବେବାକ୍ ଢଙ୍ଗ ଏବଂ କର୍ମମୟ ଜୀବନଶୈଳୀ ବାସ୍ତବିକ୍ ଅନନ୍ୟ । ସେ ନିଜର ଶିକ୍ଷା-ଦୀକ୍ଷା-ସଂସ୍କାରକୁ ନେଇ କେବେ ସାଲିସ୍ କରିନାହାନ୍ତି । ପଦ-ପଦବୀ, ଆଶୁ ପ୍ରତିଷ୍ଠା; ଲାଳସାରେ ମାତି ସାହିତ୍ୟ ସାଧନାର କୌଣସି ନିର୍ଦ୍ଦିଷ୍ଟ ଦିଗକୁ ଆବୋରି ବସିନାହାନ୍ତି । ସେ ବୁଝିଛନ୍ତି- "ଆଜିର ଶିଳ୍ପୀ, ଆଜିର କବି ଲୋଡ଼େଁ ଆଶୁ ପ୍ରତିଷ୍ଠା ଓ ପୁରସ୍କାର । ଏଇ ଅବବୋଧ ? ନଗ୍ନ ଓ ନୀଚ୍ × × × ଜଣେ ସଚ୍ଚୋଟ କଳାକାର ପଛରେ ପୁରସ୍କାର ଗୋଡ଼େଇ ଗୋଡ଼େଇଯିବ । ସେ ଯେତେ ତାକୁ ଅବହେଳା କରିବ ସେ ସେତିକି ସେତିକି ତାକୁ ଅନୁସରଣ କରୁଥିବ ।"(୮) ଯନ୍ତ୍ରଣା ନବୁଝି ଖୁସିର, ତିରସ୍କାର ନ ବୁଝି ଶ୍ରଦ୍ଧାର, ଘୃଣା ନ ବୁଝି ପ୍ରେମର ଅର୍ଥ ବା କ'ଣ ଥାଇପାରେ । ଆଉ ଏହାକୁ ଯେ ବୁଝିଛି ସେ ପ୍ରକୃତରେ ସବ୍ୟସାଚୀ... ସ୍ଥିତପ୍ରଜ୍ଞ । ଓଡ଼ିଆ ସାହିତ୍ୟର ସେହି ଏକନିଷ୍ଠ ସବ୍ୟସାଚୀ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ନଡ଼ିଆ ଭଳି ଟାଣୁଆ ଚେହେରା ତଳେ ପ୍ରତି ଅସହାୟ ମଣିଷପାଇଁ ଲୁକ୍‌କାୟିତ କେତେ ଯେ ଦରଦ, ଆବେଗ, ଶ୍ରଦ୍ଧା ଏବଂ ସମର୍ପଣ ରହିଛି ତାହା କେବଳ ଅନୁଭବ କରିହୁଏ । ତାଙ୍କର ଆଦର୍ଶ ପଛରେ ସମ୍ଭବତଃ ସତ୍ୟବାଦୀଯୁଗୀୟ ପଣ୍ଡିତ ନୀଳକଣ୍ଠ, ଋଷିପ୍ରତିମ ଆଚାର୍ଯ୍ୟ ହରିହର, ଉତ୍କଳମଣି ଗୋପବନ୍ଧୁ ଏବଂ ପରମପୂଜ୍ୟ କୁଞ୍ଜବିହାରୀ ଦାଶଙ୍କ ଅଖଣ୍ଡ ପ୍ରଭାବକୁ ଶ୍ରେୟ ଦିଆଯାଇପାରେ ।

ଡକ୍ଟର ଶତପଥୀଙ୍କ ପୂର୍ଣ୍ଣାଙ୍ଗ ଆତ୍ମଜୀବନୀରେ 'ନାରୀ' ପ୍ରତି ଲେଖକଙ୍କର କୋମଳ ଆବେଗ ଏବଂ ସମ୍ମାନବୋଧକୁ ହୃଦ୍‌ବୋଧ କରିହୁଏ । ଯଦିଚ୍ ବ୍ୟକ୍ତିଗତ ଜୀବନରେ 'ନାରୀ'ଭିତ୍ତିକ ବହୁ ତିକ୍ତ ଅନୁଭବ ରହିଛି । ତାଙ୍କ ମତରେ "Women are difficult to read and their ways are mysterious."(୯) ଜୀବନର ବହୁ ଦୁଃଖଦ ଅନୁଭବସତ୍ତ୍ୱେ ମୁହୂର୍ତ୍ତକ ପାଇଁ ମଧ୍ୟ ନାରୀ ପ୍ରତି କୌଣସି ଅପମାନସୂଚକ ଆକ୍ଷେପ ତାଙ୍କ ସୃଷ୍ଟିରେ ନାହିଁ । ସାଂସାରିକ ଜୀବନର ଉତ୍କଟ ଗରଳକୁ ପାନ କରି ସତେଯେପରି ସେ ନୀଳକଣ୍ଠ ପାଲଟିଛନ୍ତି । ଏହି ଉତ୍କଟ ଯନ୍ତ୍ରଣା-ଜର୍ଜରିତ ଘଟଣାବହୁଳ ଜୀବନ ହିଁ ତାଙ୍କ ସୃଷ୍ଟିର ପୃଷ୍ଠଭୂମିକୁ କରିଛି ଆହୁରି ବ୍ୟାପକ ଓ ସୁଦୃଢ଼ ।

ମଣିଷ ଜୀବନର ନିଃସଙ୍ଗତାବୋଧ ସଂଜାତ ବିଚ୍ଛିନ୍ନତା ଓ ଅସହାୟତାର ପ୍ରତୀତି ଉପରେ ଆଧାରିତ 'ଅନିକେତ' - ଶତପଥୀୟ ସାରସ୍ୱତ ଚେତନାରୁ ଉଚ୍ଚାରିତ ପ୍ରଥମ ଉପନ୍ୟାସ । ସାଂପ୍ରତିକ ଓଡ଼ିଆ ଗଳ୍ପଜଗତର ସେ ଜଣେ ସ୍ୱର୍ଦ୍ଧିତ ଉଚ୍ଚାରଣ । ଘଟଣାବହୁଳ ଜୀବନର ଖଣ୍ଡିତ ଅନୁଭୂତି ସବୁକୁ ଜୀବିତ ରଖି ସେ ୩୨ଗୋଟି ଗଳ୍ପ ସମାହାରରେ ସୃଷ୍ଟି କରିଛନ୍ତି 'କାଳ ଓ କର୍ଣ୍ଣିକା' ଏବଂ 'ଯେ ନଦୀ ମରୁପଥେ' ଭଳି ଦୁଇଗୋଟି ଗଳ୍ପ

ସଂକଳନ । 'ସମାବେଶ', 'ଇସ୍ତାହାର' ତଥା 'ଶାମୁକା' ଭଳି ଭିନ୍ନ-ଭିନ୍ନ ପତ୍ରପତ୍ରିକାରେ ତାଙ୍କର ଗଳ୍ପଗୁଡ଼ିକ ଆତ୍ମପ୍ରକାଶ ଲାଭକରିଛି ।

ମାର୍ଜିତ ଭାଷାରେ ଓ କାବ୍ୟିକ ପରିପକ୍ୱତାର ସମନ୍ୱୟରେ ଜୀବନବାଦୀ ଗାଳ୍ପିକ ନିତ୍ୟାନନ୍ଦ ଶତପଥୀଙ୍କ ଗଳ୍ପଜଗତଟି ବେଶ୍ ନିଆରା । ଚକିତ-ଉଦ୍ଭାସିତ କିଛି ଖଣ୍ଡିତ ଘଟଣାର ବାସ୍ତବ ରୂପକୁ ନେଇ ଚିତ୍ରିତ ତାଙ୍କର ଗଳ୍ପସଂସାର । ସମସ୍ତ ଗଳ୍ପରେ ସେଇ ଚିରନ୍ତନୀ ନାରୀ ଓ ପୁରୁଷର କେମେଷ୍ଟ୍ରିକୁ ନେଇ ରହିଛି ଚମତ୍କାର ମନୋବିଶ୍ଳେଷଣାତ୍ମକ ନୂତନ ଦୃଷ୍ଟିକୋଣ ।

'କାଳ ଓ କର୍ଣ୍ଣିକା' ଗଳ୍ପରେ ନାରୀ ମନୋଦଶାର ବିଚିତ୍ର ସ୍ତରକୁ ଗାଳ୍ପିକ ପାଠକଙ୍କ ଦୃଷ୍ଟି ସମ୍ମୁଖକୁ ଆଣିଛନ୍ତି । ଜୀବନର ଚଲାବାଟରେ ସଂପୂର୍ଣ୍ଣ ନୂଆ, ନିତାନ୍ତ ଅନଭିଜ୍ଞା ଗୀତାଲି ଚରିତ୍ରଟି ସୂତିକାରୋଗ ହେତୁ ମୃତ୍ୟୁ ଆଶଙ୍କାରେ ଅଭିଶପ୍ତ ଗର୍ଭସ୍ଥ ଭ୍ରୂଣକୁ ନଷ୍ଟ କରିଦେବାକୁ ଚାହିଁଛି । ଯଦିଓ ମାତୃତ୍ୱକୁ ନେଇ ନାରୀସୁଲଭ କୋମଳ ଭାବନାରେ ସେ ଆର୍ଦ୍ର ତଥାପି ଅପମୃତ୍ୟୁର ଶିକାର ନ ହୋଇ ସେ ବଞ୍ଚିବାକୁ ଚାହିଁଛି । ସେ ଜୀବନର ଜୟଗାନ କରିଛି ।

'ଅପହଞ୍ଚ ଦୂରତା' ଗଳ୍ପରେ ରିକେଟୀ ରୋଗରେ ଆକ୍ରାନ୍ତ ଶାପଗ୍ରସ୍ତା ସୁନ୍ଦରୀ କିନ୍ନରୀ ଭଳି 'ଶୋଭା' ଚରିତ୍ର ମାଧ୍ୟମରେ ଗାଳ୍ପିକ ତା'ଜୀବନର ଦୟନୀୟ ଅବସ୍ଥାକୁ ବର୍ଣ୍ଣନା କରିଛନ୍ତି । ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ମାନସିକ ସ୍ତରରେ ତା'ର ଦୃଢ଼ ନିଷ୍ଠା, ନିଷ୍କଳଙ୍କ ଜୀବନଧାରା, ଶ୍ରୀ ଅରବିନ୍ଦ ଦର୍ଶନକୁ ପାଥେୟ କରି ନିଜର ମାନବୀୟ ଦୁର୍ବଳତାକୁ ଅତିକ୍ରମ କରିବାର ଦିବ୍ୟ ପ୍ରୟାସକୁ ଗାଳ୍ପିକ ଉପସ୍ଥାପନା କରିଛନ୍ତି । ଗଳ୍ପରେ ଆକସ୍ମିକତାକୁ ସଂଯୋଗ କରି ଗାଳ୍ପିକ ଗଳ୍ପଟିର ମୋଡ଼ ପରିବର୍ତ୍ତନ କରିଛନ୍ତି । ବ୍ରତଚାରିଣୀ ତପସ୍ୱିନୀ ଶୋଭା ଗାନ୍ଧର୍ବ ମତରେ ଯେବେ ବିବାହ କରିଛି ଗଳ୍ପରେ ପାଠକୀୟ ଉତ୍କଣ୍ଠା ସ୍ୱତଃ ସୃଷ୍ଟି ହୋଇଛି । 'ସେମିମ୍ୟାଡ୍' ଗଳ୍ପରେ ସନାତନ ଶର୍ମା ଚରିତ୍ରର ଏକାନ୍ତ ଅସହାୟତା ବର୍ଣ୍ଣିତ । ମନର ଜଖମରେ ମଲମ ଲଗାଇବାକୁ ଧର୍ମପତ୍ନୀଙ୍କଠାରୁ ସ୍ନେହପୂର୍ଣ୍ଣ କଥାପଦେ ଓ ସାମାନ୍ୟ ସୁହାଗ ପାଇଁ ଗଳ୍ପନାୟକ ବେଶ୍ ଆତୁର । ଅଥଚ୍ ସ୍ନେହ ସୁହାଗ ପରିବର୍ତ୍ତେ ଉଚ୍ଚଶିକ୍ଷିତା ଧର୍ମପତ୍ନୀଙ୍କ ଠାରୁ 'ସେମିମ୍ୟାଡ୍' ଭଳି ଇଂରାଜୀ ଭୁସିଲା ଶବ୍ଦ ନାୟକର ହୃଦୟକୁ କରିଛି ବିଦୀର୍ଣ୍ଣ । "ଜୀବନର ସମସ୍ତ ଧାବମାନ ଗତି, ସବୁ ଉଦ୍ୟମ, ସବୁ ଆଶା ଓ ଆକାଂକ୍ଷା, ସବୁ ସମ୍ଭାବନା ଓ ପ୍ରତିଯୋଗିତା ମନେହୋଇଛି ନିତାନ୍ତ ଅଳିକ ଓ ଅର୍ଥହୀନ ।"(୧୦)

'ବିଧାନସଭା' ଗଳ୍ପରେ ରାଜନୀତି ଏବଂ ରାଜନେତାଙ୍କ ପ୍ରତି ଅନାସ୍ଥାଭାବ ଓ ସ୍ୱର ମର୍ମରିତ ହୋଇଛି । ବିଧାନସଭା ଗୃହରେ ସଭ୍ୟ-ସ୍ୱାଧୀନ ନେତାମାନଙ୍କର କ୍ଷମତାର ଅପଚ୍ୟ, ମିଥ୍ୟାଡ଼ମ୍ବର, ମିଥ୍ୟା ପ୍ରତିଶ୍ରୁତି ଭିତରେ "ସ୍ୱାର୍ଥପର ଜଗତଟା ମଣିଷଶୂନ୍ୟ ହୋଇନାହିଁ"ର ଅବବୋଧ ଏବଂ ବିଶ୍ୱାସକୁ ନେଇ ଗଳ୍ପଟି ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି ।

ଏହି ପରିପ୍ରେକ୍ଷୀରେ ସତ୍ୟବାଦୀଯୁଗୀୟ ବିଶିଷ୍ଟ ଗାଳ୍ପିକ ଗୋଦାବରୀଶ ମହାପାତ୍ରଙ୍କ 'ଏବେ ମଧ୍ୟ ବଞ୍ଚିଛି'ର ସ୍ୱାଭିମାନୀ ଭାବଧର୍ମ ସ୍ମରଣୀୟ ମନେହୁଏ ।

'ବିସର୍ଜନ' ଗଳ୍ପରେ ଉତ୍କଟ ଦାରିଦ୍ର୍ୟ, ଜୀବନ-ଜୀବିକାକୁ ନେଇ ସଂଘର୍ଷରତ ମଣିଷର ଜଡ଼ବାଦୀ ବୈଫଲ୍ୟ ଏବଂ ଅମେଣ୍ଟା ଆଶାକୁ ନେଇ ସହରାଭିମୁଖୀ ମାନସିକତାକୁ ଗାଳ୍ପିକ ଜୀବନ୍ତ କରି ଗଢ଼ି ତୋଳିଛନ୍ତି । ଧନୀନାମକ ମୋଚିଟିଏ ନିଜର ମୌଳିକ ପେଶାକୁ ନେଇ ରୋଜଗାରକ୍ଷମ ହୋଇନପାରି ସମୟଚକ୍ରରେ ପଡ଼ି ମାଟିମୂର୍ତ୍ତି ତିଆରି ପନ୍ଥାକୁ ବାଛି ନେଇଛି । ହାତଗଢ଼ା ମୂର୍ତ୍ତିକୁ କେହି ତା'ଠୁ କିଣି ନାହାନ୍ତି ଏବଂ ସେହି ମୂର୍ତ୍ତିମାନଙ୍କ ପ୍ରତି ଧନୀର ମୋହ ସୃଷ୍ଟି ହୋଇଛି । ସେମାନଙ୍କୁ ଜଳରେ ବିସର୍ଜନ କଲାବେଳେ ସେ ଅବ୍ୟକ୍ତ ଦୁଃଖରେ ମ୍ରିୟମାଣ ହୋଇ କାନ୍ଦିଉଠିଛି । ପରିଶେଷରେ ଅବସାଦଗ୍ରସ୍ତ ହୋଇ ସେ ଗାଁ ପରିତ୍ୟାଗ କରିଛି ।

'ପିତାମହ' ଗଳ୍ପରେ ଅସ୍ଥିକଙ୍କାଳସାର ଅଶୀତିବର୍ଷୀୟ ବୃଦ୍ଧ ପିତାମହ ଚରିତ୍ରଟି ନୀତିନିଷ୍ଠ-ଆତ୍ମପ୍ରତ୍ୟୟ-ଦୃଢ଼ତା ଏବଂ ବଳିଷ୍ଠ ମୂଲ୍ୟବୋଧର ପ୍ରତୀକଟିଏ । ବୃଦ୍ଧ ପିତାମହଙ୍କ ଅସୀମ ଧୈର୍ଯ୍ୟ, ସ୍ଥିର ଦୂରଦୃଷ୍ଟି ଏବଂ ଦୃଢ଼ ମନୋବଳ କିପରି ଗଳ୍ପନାୟକଙ୍କୁ ଜୀବନର ପ୍ରତି ଦୁର୍ଦ୍ଦିନରେ ଅନ୍ତଃଶକ୍ତି ପ୍ରଦାନ କରିଛି- ତାହାହିଁ ଆଲୋଚ୍ୟ ଗଳ୍ପର ପ୍ରତିପାଦ୍ୟ ବିଷୟବସ୍ତୁ ।

'ସ୍କେଲିଟନ୍' ଗଳ୍ପରେ ପେଟର ଭୋକଦାଉରେ ମାତ୍ର ପଚାଶ ଟଙ୍କା ବିନିମୟରେ ସ୍ତ୍ରୀଟିଏ ନିଜ ସ୍ୱାମୀର ମୃତବତ୍-କଙ୍କାଳସାର ଦେହକୁ କିପରି ଡାକ୍ତରଖାନାର ମେହନ୍ତରାଣୀଙ୍କୁ ସମର୍ପି ଦେଇଛି - ତା'ର ଏକ ମର୍ମସ୍ପର୍ଶୀ-କରୁଣ ରୂପଚିତ୍ର ରହିଛି । ଆଲୋଚ୍ୟ ଗଳ୍ପରେ ସଭ୍ୟ ଶିକ୍ଷିତ ମଣିଷସମାଜ, ରାଜନୀତିକ ସରକାର ଏବଂ ତଥାକଥିତ ଭଗବାନଙ୍କ ପ୍ରତି ଶାଣିତ ବିଦ୍ରୂପ ଏବଂ ପ୍ରଚ୍ଛନ୍ନଧିକାର ରହିଛି । ହାଡ଼ିଦାସ ମାଳିକାର ଭବିଷ୍ୟତ ବାଣୀକୁ ଯୋଡ଼ି ଗାଳ୍ପିକ ଗଳ୍ପଟିରେ ଅନାଗତ ସୁସ୍ଥ ଭବିଷ୍ୟତକୁ ଆଶ୍ୱାସନାପୂର୍ଣ୍ଣ ଏବଂ ସମ୍ଭାବନାମୟ କରିଛନ୍ତି ।

ଓଡ଼ିଶାର ବରେଣ୍ୟ ସାହିତ୍ୟିକ ଚନ୍ଦ୍ରଶେଖର ରଥଙ୍କ 'ସବୁଯାକ ସ୍ୱପ୍ନ' ଉପରେ ଆଧାରିତ 'ନବନୀତା'- ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କର ଏକ ଉତ୍କୃଷ୍ଟ ବହୁ ଚର୍ଚ୍ଚିତ ଗଳ୍ପ । ସରଳ-ନିର୍ବୋଧ-ମୂକ ତରୁଣୀ ନବନୀତା ଉପରେ ପଚାଶ ବର୍ଷୀୟ ହରିସାହୁ, ଚାଳିଶ ବର୍ଷୀୟ ମର୍ଦ୍ଦ, ଲକ୍ଷ୍ମଣ ସାମଲଙ୍କ ପାଶବିକ ଅତ୍ୟାଚାର, ଅନ୍ତଃସତ୍ତ୍ୱା ନବନୀତାର ଗର୍ଭସ୍ଥ ଶିଶୁକୁ ପିତୃତ୍ୱର ପରିଚୟ ଦେବାକୁ ଯାଇ ତିରିଶି ବର୍ଷୀୟ ଯୁବକର୍ମୀ ବାସୁଦେବ ତାକୁ ବିବାହ କରିବା ସତ୍ତ୍ୱେ ପୁନର୍ବାର ସେହି ନରାଧମ ମାନଙ୍କଦ୍ୱାରା ପୈଶାଚିକ ଧର୍ଷଣର ଶିକାର ନବନୀତାର ମୃତ୍ୟୁ ଏବଂ ଘଟଣାଟିକୁ ଚାପିଦେବାକୁ ଯାଇ ଧର୍ଷିତାକୁ ଜାଳିଦେବା ପାଇଁ ତା'ର ଘରକୁ ନିଆଁ ଲଗାଇ ଜଳାଇଦେବାର ନାରକୀୟ ମର୍ମସ୍ପର୍ଶୀ ଘଟଣାକୁ ନେଇ ଗଳ୍ପଟି ହୃଦ୍ୟ ଏବଂ ପ୍ରଭାବଶାଳୀ ହୋଇଛି ।

'ସୁଜାତା ମହାନ୍ତି' ଗଳ୍ପରେ ପିତୃମାତୃହୀନା-ଅବିବାହିତା ସୁଜାତା ନିଜ ଦାଦା ଖୁଡ଼ିଙ୍କ ପାଇଁ ଆଶ୍ରମ ସ୍କୁଲର ତତ୍ତ୍ୱବଧାରିକା ଏବଂ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଋକିରୀ ଜୀବନକୁ ଆଦରି ନେଇଛି । ସ୍କୁଲ୍‌ର ପ୍ରଧାନ ଶିକ୍ଷକଙ୍କ ପ୍ରତି ତା'ର ଦୁର୍ବାର ଆକର୍ଷଣ ଓ ପ୍ରେମ ସତ୍ତ୍ୱେ ତା'ର ସମସ୍ତ ଇଚ୍ଛା-ଆକାଂକ୍ଷାକୁ ଗୋପନ ରଖି ତ୍ୟାଗପୂତ ମହନୀୟ ଜୀବନକୁ ଆଦରି ନେଇଛି ।

'ଜୀବ ଓ ଜୈବିକ' ଗଳ୍ପରେ ତରୁଣ ଅଭିନବ ମହାନ୍ତିର ଅଦମ୍ୟ କାମନା କ୍ରମଶଃ ଉତ୍‌କ୍ଷେପଣ (Sublimation) ଆଡ଼କୁ ଗତିଶୀଳ ହୋଇଥିବା ମନେହୁଏ । ବଡ଼ ଭଉଣୀ ଗୀତା ପଟ୍ଟନାୟକ ପ୍ରତି ଆଦିମ ବାସନାକୁ ସଂଗୁପ୍ତ ରଖି ସାନଭଉଣୀ ଉଷାକୁ ସୋହାଗଭରା ଚୁମ୍ବନ ଭିତରେ ଥିବା ତା'ର ପ୍ରଚ୍ଛନ୍ନ କାମନାକୁ ଗାଳ୍ପିକ ଅତି ସୂକ୍ଷ୍ମ ଭାବରେ ଚିତ୍ରଣ କରିଛନ୍ତି ।

'ଅଗଷ୍ଟ ପନ୍ଦର'ରେ ବ୍ରଜସୁନ୍ଦର ବାହାବଳୀନ୍ଦ୍ର ବଳିୟାରସିଂହଙ୍କ ଜମିଦାରୀ ଆଭିଜାତ୍ୟକୁ ନେଇ ଅହମିକା, ଆତ୍ମୀୟସ୍ୱଜନଙ୍କ ସହିତ ଥିବା ଆବେଗହୀନ ସଂପର୍କର ଅନୁଶୀଳନ ଏବଂ ଅବକ୍ଷୟମାଣ ପାରିବାରିକ ଜୀବନକୁ ଏହି ଗଳ୍ପରେ ଜୀବନ୍ତ ଭାବରେ ବର୍ଣ୍ଣନା କରାଯାଇଛି ।

'ଉପେକ୍ଷିତା' - ଗାଳ୍ପିକ ନିତ୍ୟାନନ୍ଦ ଶତପଥୀଙ୍କର ଏକ ଉତ୍କୃଷ୍ଟ ଗଳ୍ପ । ସୂର୍ଯ୍ୟବଂଶର କୁଳବଧୂ ଅବହେଳିତା ଏବଂ ପତି ସୋହାଗିନୀ ଉର୍ମିଳାର ବେଦନାକ୍ଲିଷ୍ଟ ଜୀବନକୁ ଅବତାରଣା କରାଯାଇଛି । ବନବାସୀ ଲକ୍ଷ୍ମଣଙ୍କ ପାଇଁ ଯୁଗବ୍ୟାପୀ ପ୍ରତୀକ୍ଷାର ଯନ୍ତ୍ରଣା ସତ୍ତ୍ୱେ ଉର୍ମିଳା ନିଜର ଜୈବିକ ଆକର୍ଷଣକୁ ଅତିକ୍ରମ କରି ଜଣେ ସନ୍ନ୍ୟାସିନୀର ଗୈରିକ ଜୀବନକୁ ଆଦରି ନେଇଛି । ଗୁରୁ ବଶିଷ୍ଠଙ୍କୁ ଉର୍ମିଳାର ମହାନ୍ ଭିକ୍ଷା - "ମୁଁ ଅପାଙ୍‌କ୍ତେୟ ଜୀବନ ଋହେଁ"ର ଉକ୍ତି ଦ୍ୱାରା ଗାଳ୍ପିକ ଉର୍ମିଳା ଚରିତ୍ରକୁ ମହିମାମଣ୍ଡିତ କରିଛନ୍ତି । ଏହି ପରିପ୍ରେକ୍ଷୀରେ ହିନ୍ଦୀ ସାହିତ୍ୟର ଛାୟାବାଦୀ କବି ଜୟଶଙ୍କର ପ୍ରସାଦଙ୍କ 'କାମାୟନୀ' ମହାକାବ୍ୟର 'ନାରୀ ସିର୍ଫ ତୁମ୍ ଶ୍ରଦ୍ଧା ହୋ' ଯୁକ୍ତିଯୁକ୍ତ ମନେହୁଏ । 'ଉପେକ୍ଷିତା' ଗଳ୍ପରେ ଗାଳ୍ପିକ ନାରୀଜୀବନର ତ୍ୟାଗପୂତ ଦୃଷ୍ଟିକୋଣକୁ ସମ୍ମାନ ପ୍ରଦାନ କରିଛନ୍ତି । 'ଝିଅ' - ଗଳ୍ପରେ ହୁଣ୍ଡି-ହାଉଡ଼ି, ଘୁଙ୍ଗୀ-ବୋକୀ ସାବୀ ପ୍ରତି ସମାଜର ଟାହିଟାପରା, ଚୁଲିପଶୀ-ନିଆଁଲାଗୀ-ହୀନକପାଳୀ ଭଳି ଦୁର୍ଭାଗ୍ୟପୂର୍ଣ୍ଣ ସମ୍ବୋଧନ ଭିତରେ ତା' ଅବହେଳିତ ଓ ଅସହାୟ ଜୀବନର କରୁଣଚିତ୍ରକୁ ଗାଳ୍ପିକ ଅତି ଅନ୍ତରଙ୍ଗ-ଭାବସାନ୍ଦ୍ର ଶବ୍ଦଦ୍ୱାରା ବର୍ଣ୍ଣନା କରିଛନ୍ତି ।

'ମୋହନମୂର୍ତ୍ତି' ଗଳ୍ପରେ ନିଃସର୍ତ୍ତ-ତ୍ୟାଗର ପରାକାଷ୍ଠା ବହନ କରିଛି 'ମୋହନମୂର୍ତ୍ତି' ନାମକ ଚରିତ୍ରଟି । ଗାଳ୍ପିକ ଏହି ଚରିତ୍ର ମାଧ୍ୟମରେ ନିଜକୁ ରିକ୍ତ କରି ଅନ୍ୟକୁ ପୂର୍ଣ୍ଣ କରିବାର ମହାନ୍ ବାର୍ତ୍ତା ପ୍ରଦାନ କରିଛନ୍ତି । ପକେଟ୍‌କାଟ୍ ଯୋଗୁଁ ଭୋକରେ ଆଉଟୁ

ପାଉଟ୍ଟ ଥିବା ଅବସ୍ଥାରେ ସେ ପାଞ୍ଚ ଟଙ୍କାଟିଏ ପାଇଛି । କିନ୍ତୁ ରାସ୍ତାକଡ଼ର ଭିକାରୁଣୀର ଅନାମଧେୟ ପ୍ରେମିକର ଅବାଞ୍ଛିତ ସନ୍ତାନକୁ ବଞ୍ଚେଇ ରଖିବାର ସଂଘର୍ଷମୟ ସ୍ଥିତିରେ ମୋହନମୂର୍ତ୍ତି ସେଇ ପାଞ୍ଚଟଙ୍କାକୁ ତାକୁ ଦେଇଛି । ଅନ୍ୟକୁ ସାହାଯ୍ୟ କରି ମାନସିକ ଆତ୍ମତୃପ୍ତି ହିଁ ଗଳ୍ପର ଆତ୍ମିକ ସୌନ୍ଦର୍ଯ୍ୟ ଅଭିବୃଦ୍ଧିରେ ସହାୟକ ହୋଇଛି ।

'ଦହନ-ଦୋହନ' ଆଧୁନିକ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଥିବା ଅପହଞ୍ଚ ଦୂରତା ଏବଂ ଆଧୁନିକ ସ୍ୱାମୀର ମାନସିକ ଯନ୍ତ୍ରଣାବୋଧ ଉପରେ ଗଳ୍ପଟି ଅତି ଜୀବନ୍ତ ହୋଇଉଠିଛି । କିରାଣୀ ସ୍ୱାମୀ ସବ୍ୟସାଚୀଙ୍କ ସହାୟତାରେ ପତ୍ନୀ ନଳିନୀଦେବୀ ସାମାଜିକ ପ୍ରତିଷ୍ଠାଲାଭ କରିଛନ୍ତି । ସ୍ୱାମୀଙ୍କ ଯୋଗୁଁ ଉଚ୍ଚସ୍ଥାନରେ ପହଞ୍ଚିବା ସତ୍ତ୍ୱେ ମଧ୍ୟ ତାଙ୍କ ପ୍ରତି ସ୍ତ୍ରୀ ଓ ସନ୍ତାନମାନଙ୍କର ଭର୍ତ୍ସନା ଓ ଅପମାନର ଶେଷନାହିଁ । ଅସହାୟ ସ୍ୱାମୀଟି କହିଉଠିଛି - "ବେଳ ଥାଉ ଥାଉ ଦୋହନ କରିନିଅ ଆଉ ଦହନରୁ ମୁକ୍ତି ଦିଅ" । ତିଳତିଳ ଜଳି ଓ ଲାଞ୍ଛିତ ହୋଇ ସବ୍ୟସାଚୀ ଚରିତ୍ରଟି କିଭଳି ପ୍ରତିମୁହୂର୍ତ୍ତରେ ଭାଙ୍ଗିପଡୁଚି - ତା'ର ଏକ ବାସ୍ତବ ଚିତ୍ରକୁ ଗାଳ୍ପିକ ଉତ୍ତୋଳନ କରିଛନ୍ତି । ସାମାଜିକ ପ୍ରତିଷ୍ଠା ଓ ମିଥ୍ୟା ଆଭିଜାତ୍ୟର ଦାମ୍ଭିକତାକୁ ନେଇ ସ୍ୱାମୀକୁ ଶୋଷଣ କରୁଥିବା ସ୍ତ୍ରୀମାନଙ୍କ ପ୍ରତି ଏଥିରେ ରହିଛି ତୀର୍ଯ୍ୟକ୍ ବ୍ୟଙ୍ଗ-ବିଦ୍ରୂପ ।

'ଇତିଶ୍ରୀ' ଗଳ୍ପରେ ପାଳିତା ଝିଅଟି ଯେ ଗୋଟିଏ କୁଷ୍ଠରୋଗୀର ସନ୍ତାନ, ଜାଣିବା ପରେ ମନ୍ଦାକିନୀ କିପରି ଅସୂୟାପରାୟଣା ହୋଇଛନ୍ତି ଓ ଝିଅଟି ପ୍ରତି କିପରି ଦୁର୍ବ୍ୟବହାର କରିଛନ୍ତି ତା'ର ଏକ ମାର୍ମିକ ଚିତ୍ର ଏଥିରେ ଉପସ୍ଥାପିତ ହୋଇଛି ।

'ଗୋଟିଏ ବୋକ, ବିନ୍ଦୁଏ ଲୁହ' ଗଳ୍ପଟି ମାତୃତ୍ୱବୋଧର ଜୟଗାନ କରିଛି । 'ଚିଠି' ଗଳ୍ପରେ ଆଧୁନିକ 'ପାଞ୍ଚାଳୀ' ନାମ୍ନୀ ତରୁଣୀଟିଏ କିପରି ମୁସଲମାନ ଯୁବକର ପ୍ରେମରେ ପଡ଼ି ଗଭୀର ଅପ୍ରାପ୍ତିବୋଧର ଭୟରେ ଆତ୍ମହତ୍ୟା କରି 'ମିଥ୍' ଭଳି ଲିଜେଣ୍ଡାରି ହୋଇଯାଇଛି - ତାହାହିଁ 'ଚିଠି' ଗଳ୍ପର ଅନ୍ତଃସ୍ୱର । ବହୁ ବ୍ୟବଧାନରେ 'ପାଞ୍ଚାଳୀ'ର ଚିଠି ଏବଂ ତା'ର ଆତ୍ମହତ୍ୟା ଖବର ଗଳ୍ପନାୟକକୁ ବ୍ୟଥିତ ଏବଂ ମର୍ମାହତ କରିଛି । 'ଶ୍ୱାନ ଉପାଖ୍ୟାନ' ଏବଂ 'ପୁନଶ୍ଚ ଶ୍ୱାନ ବୃତ୍ତାନ୍ତ' ଗଳ୍ପ ଦ୍ୱୟରେ ଗାଳ୍ପିକ ନିତ୍ୟାନନ୍ଦ ଶତପଥୀଙ୍କର ମାନବେତର ଜୀବ ଶ୍ୱାନପ୍ରତି ସମ୍ବେଦନଶୀଳ ମନୋଭାବ ପୋଷଣ କରିଛନ୍ତି । ନାରୀ ଓ ପୁରୁଷ ଶ୍ୱାନର ଆଚରଣ, ପ୍ରାତ୍ୟହିକ ଜୀବନଶୈଳୀର ମନୋବୈଜ୍ଞାନିକ ବିଶ୍ଳେଷଣ ପ୍ରଦାନ କରିଛନ୍ତି । ନାରୀ ଶ୍ୱାନର ସ୍ୱେଚ୍ଛାଚାର ଏବଂ ମୁକ୍ତ ଜୀବନଶୈଳୀ ଭିତରେ ଉଗ୍ର ଆଧୁନିକା ନାରୀଙ୍କର ଉଚ୍ଛୃଙ୍ଖଳା-ସ୍ୱାଧୀନତାକୁ ଗାଳ୍ପିକ ଅନୁଭବ କରିଛନ୍ତି । ଏହାସତ୍ତ୍ୱେ ମଧ୍ୟ ନାରୀର ସୌନ୍ଦର୍ଯ୍ୟତୃଷ୍ଣା ଏବଂ ତା'ର 'ଆତ୍ମପ୍ରତିଷ୍ଠା' ଇଚ୍ଛାକୁ ଗାଳ୍ପିକ ସମ୍ମାନ ଦେବାକୁ ଭୁଲିନାହାନ୍ତି ।

'ବୃଷଭ ଉପାଖ୍ୟାନ' ଏବଂ 'ବୃଷଭ ସଂହିତା' ଗଳ୍ପ ଦ୍ୱୟରେ ନିର୍ବାଚନର ଛକାପଞ୍ଝା ରାଜନେତାଙ୍କର ବିଜୟଲାଭ ପାଇଁ ବିବିଧ ପେଞ୍ଚପୂର୍ଣ୍ଣ ଚତୁରତା ଓ ସେମାନଙ୍କ ଆଚରଣ-ଉଚ୍ଚାରଣର ବିରୋଧାଭାସ, ଦଳୀୟ ଚିହ୍ନଗୁଡ଼ିକର ଉଦ୍ଭଟ ପରିକଳ୍ପନାର ଚିତ୍ର ପ୍ରତି ରହିଛି ଗାଳ୍ପିକଙ୍କର ତୀର୍ଯ୍ୟକ୍ ବ୍ୟଙ୍ଗୋକ୍ତି ।

'ମାଙ୍କଡ଼ ଉପାଖ୍ୟାନ' ଗଳ୍ପରେ ସଂଗୁପ୍ତ ପୁଣି ଉଦ୍ଦୀପ୍ତ ଯୌନାକାଂକ୍ଷା, ଅନବଦମିତ ପ୍ରବୃତ୍ତୀୟ-ଦୈହିକ ଲାଳସାର ଚିତ୍ର ରହିଛି । 'ଯେ ନଦୀ ମରୁପଥେ' ଗଳ୍ପର ସୁକେଶୀ ଚରିତ୍ର ଜରିଆରେ ସାଂପ୍ରତିକ ଅସହାୟତାବୋଧର ମାର୍ମିକ ଚିତ୍ର ପ୍ରଦାନ କରାଯାଇଛି । 'ତିନୋଟି ହତ୍ୟାର କାହାଣୀ'ରେ ପୁରୁଷର ଶଠତା ଏବଂ ଯୌନ-ଅଭୀପ୍ସାର ବାସ୍ତବ ଚିତ୍ର ରହିଛି । 'ଅବଶିଷ୍ଟ ଅବଶୋଷ' ଗଳ୍ପରେ ଅନ୍ଧ ସୌରେନ୍ଦ୍ର ମାଧ୍ୟମରେ ମଣିଷକୁ ପାହାଚ୍ କରି ତା'ରି ଉପରେ ଗୋଡ଼ଦେଇ, ଉପରକୁ ଉଠି ସ୍ୱାର୍ଥ ହାସଲ କରିବାକୁ ଚାହୁଁଥିବା ସାଂପ୍ରତିକ ସ୍ୱାର୍ଥପ୍ରବଣ ମଣିଷମାନଙ୍କୁ ଗାଳ୍ପିକ ବିଦ୍ରୂପ କରିଛନ୍ତି ।

'ଜ୍ୟୋତିଷବାଣୀ'ରେ 'ଅଜାଗା ଘା' ଦେଖାଇ ହୁଏନି'ର ଯନ୍ତ୍ରଣା, ଅସଂଖ୍ୟ ଅବଶୋଷ, ପୁରୁଷାକାରର ନିଷ୍ଫଳତାର ଚିତ୍ର ରହିଛି । ଆଲୋଚ୍ୟ ଗଳ୍ପରେ ଅନାଗତ ସମୟକୁ ନେଇ ଭବିଷ୍ୟବାଣୀ କରୁଥିବା ଜ୍ୟୋତିଷମାନଙ୍କର ଉତ୍କଟ ପ୍ରଭାବ କିପରି ସାଂପ୍ରତିକ ମଣିଷର ସ୍ୱାଭାବିକ ଓ ସାମାନ୍ୟ ଜୀବନକୁ ପ୍ରଭାବିତ କରୁଛି ଏବଂ ସେଇ ଭବିଷ୍ୟବାଣୀର ଭ୍ରାନ୍ତ ପ୍ରଭାବ ଭିତରେ ଗଳ୍ପନାୟକର ସ୍ୱାମୀତ୍ୱ-ପିତୃତ୍ୱ କିପରି ବିପର୍ଯ୍ୟସ୍ତ ହୋଇଉଠିଛି ତାହାହିଁ ଆଲୋଚ୍ୟ ଗଳ୍ପର ପ୍ରତିପାଦ୍ୟ ବିଷୟବସ୍ତୁ ।

'ଘରବିକ୍ରୀ' ଗଳ୍ପଟି ସାଂପ୍ରତିକ ସମାଜର ବାସ୍ତବଚିତ୍ର ପ୍ରଦାନରେ ସକ୍ଷମ ହୋଇଛି । ଆଧୁନିକ-ଉଚ୍ଚଶିକ୍ଷିତ ପିଲାଙ୍କର ବ୍ୟବହାରଗତ ନିଷ୍ଠୁରତା ଆଗରେ ଗୋଟିଏ ପିତାର ଜୀବନବ୍ୟାପୀ ତ୍ୟାଗ ମୂଲ୍ୟହୀନ ପ୍ରମାଣିତ ହୋଇଛି । ନିଶିକାନ୍ତବାବୁଙ୍କ ପରି ଜଣେ ନିରୀହ ବ୍ୟକ୍ତି ନିଜ ସ୍ୱେଦ-ରକ୍ତ ଦେଇ ଗଢ଼ିଥିବା ଘରକୁ, ନିଜ ରୋଜଗାରକ୍ଷମ ପତ୍ନୀଙ୍କୁ ବିବାହତିଥିରେ ଉପହାର ଦେବାକୁ ବାଧହେବା ଘଟଣାଟି ବୈବାହିକ ସଂପର୍କ ପ୍ରତି ଏକ କ୍ଷୁବ୍ଧ-ପ୍ରଶ୍ନବାଚୀ । ପରିବାର ପାଇଁ ତାଙ୍କର ଆପ୍ରାଣ ଉତ୍ସର୍ଗ ସତ୍ତ୍ୱେ ପ୍ରତିମୁହୂର୍ତ୍ତରେ ପତ୍ନୀ ଏବଂ ସନ୍ତାନମାନଙ୍କ ଦ୍ୱାରା ସେ ମାନସିକ ସ୍ତରରେ ଅତ୍ୟାଚାରିତ ଏବଂ ସନ୍ତପ୍ତ ହୋଇଛନ୍ତି ।

'ଧୂସର ସୀମାନ୍ତ' ଗଳ୍ପଟି ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କର ଏକ ଶ୍ରେଷ୍ଠ ଗଳ୍ପ । ଏହି ଗଳ୍ପଟି ହିନ୍ଦୀ ସାହିତ୍ୟର ବିଶିଷ୍ଟ ଛାୟାବାଦୀ ଗାଳ୍ପିକ ଜୟଶଙ୍କର ପ୍ରସାଦଙ୍କ ଦ୍ୱାରା ଲିଖିତ 'ମମତା' ଗଳ୍ପର ସହିତ ତୁଳନୀୟ । 'ମମତା' ଗଳ୍ପରେ ପିତୃହନ୍ତା ଶତ୍ରୁପ୍ରତି ପ୍ରଦର୍ଶିତ ଦୟା, ସହାନୁଭୂତି, ସେବା ଆଶ୍ରୟ ପ୍ରଦାନ ସହିତ ମାନବୀୟ ସମ୍ବେଦନା ଭଳି ସମୁଚ୍ଚ ଭାବାଦର୍ଶ 'ଧୂସର ସୀମାନ୍ତ' ଗଳ୍ପରେ ପ୍ରାଣପ୍ରତିଷ୍ଠା ପାଇଲା ଭଳି ମନେହୁଏ । ପ୍ରସାଦଙ୍କ ପରି ଗାଳ୍ପିକ ନିତ୍ୟାନନ୍ଦ ଶତପଥୀ ମଧ୍ୟ ଭାରତୀୟ ସଂସ୍କୃତିର ଉଦାତ୍ତ ଗାୟକ ସାଜିଛନ୍ତି । ଶାନ୍ତି-ମୈତ୍ରୀ,

କରୁଣା-ପ୍ରୀତି, ବିଶ୍ୱାସ-ଉଦାରତା, ସେବା-ସାହାଯ୍ୟ ଭଳି ମହାନ୍ ଚେତନା 'ଧୂସର ସୀମାନ୍ତ' ଗଳ୍ପକୁ ବଳିଷ୍ଠ କରିଛି । ଭାରତ-ଋଇନାର ଐତିହାସିକ ଯୁଦ୍ଧର ପୃଷ୍ଠଭୂମି ଉପରେ ଆଧାରିତ ଏହି ଗଳ୍ପରେ ଦୁଇ ହତ୍ୟାକାରୀ ଚୀନ୍ ଶତ୍ରୁଙ୍କ ପ୍ରତି ଭାରତୀୟ ସୈନିକମାନଙ୍କର ଅଜସ୍ର ସହାୟତା, ସେବା, ଖାଦ୍ୟ ଓ ଔଷଧ ଦେଇ ତାକୁ ନିରାପଦ ସୀମାରେଖାରେ ସୁରକ୍ଷିତ ଭାବେ ପହଞ୍ଚାଇବାର ଅନନ୍ୟ ଆଦର୍ଶବତ୍ତାକୁ ନେଇ ଗଳ୍ପଟି ହୃଦ୍ୟ ହୋଇଛି । ପରିଶେଷରେ ଭାରତୀୟ ସୈନିକ ମାନଙ୍କର ଉଦାର ମାନସିକତାକୁ ହୃଦ୍‌ବୋଧ କରି ଋଇନା ସୈନିକଟି ଭାରତର ପବିତ୍ର ମାଟିରେ ପହଞ୍ଚି ସେଇଠି ଶେଷ ନିଃଶ୍ୱାସ ତ୍ୟାଗ ଏବଂ ପୁଣ୍ୟଭୂମି ଭାରତର ବାୟୁ ଆଘ୍ରାଣ କରିବାର ଅନୁରୋଧ ବାର୍ତ୍ତା ଦେଇ ଗାଳ୍ପିକ ଭାରତୀୟ ସଂସ୍କୃତିର ବାର୍ତ୍ତାବହ ହୋଇଛନ୍ତି ।

'ଭୋକଭିଜା ମାଟିର ନିଃସଙ୍ଗ କବି' ଗଳ୍ପରେ ନିଃସର୍ତ୍ତ ମଣିଷପଣିଆର ମହାନ୍ ସନ୍ଦେଶ ରହିଛି । କୌଣସି ସଂପର୍କ ନଥାଇ ମଧ୍ୟ ଅନ୍ୟକୁ ସାହାଯ୍ୟ କରିହୁଏ - ଏହି ଭାବବୋଧକୁ ନେଇ ଗଳ୍ପଟି ପାଠକୀୟ ଆଦୃତି ପାଇବାରେ ସକ୍ଷମ । ରମେଶ ଭଳି ଦୁଃସ୍ଥ କଳାକାରଟିଏ ବହୁ ଅଭାବସତ୍ତ୍ୱେ କିପରି ଗୋଟିଏ ରୋଗିଣୀକୁ ସାହାଯ୍ୟ କରିପାରିଛି, ତାହାହିଁ ଗଳ୍ପର ମୁଖ୍ୟ ବାର୍ତ୍ତା ।

ଶତପଥୀୟ ଚେତନାର ଏକ ଉତ୍କୃଷ୍ଟ-କଳାତ୍ମକ ଗଳ୍ପରୂପ ହେଉଚି - 'ଶମ୍ଭୁନାଥର କାହାଣୀ' । ହିନ୍ଦୀ ଜଗତର ବିଶିଷ୍ଟ ପ୍ରଯୋଗବାଦୀ ସାହିତ୍ୟିକ 'ଅଜ୍ଞେୟ'ଙ୍କ 'ଖିତୀନ୍‌ବାବୁ' ଗଳ୍ପର ପ୍ରାଣଧର୍ମଟି ଏହି ଗଳ୍ପରେ ଅନୁରଣିତ ହୋଇଥିବା ମନେହୁଏ । ଉଭୟଙ୍କ ଗଳ୍ପରେ ଜୀବନଯାତ୍ରାର ଅନବଦମିତ ମହାଯାତ୍ରୀ ହୋଇଛନ୍ତି ଖିତୀନ୍‌ବାବୁ ଏବଂ ଶମ୍ଭୁନାଥ ଚରିତ୍ର । 'ଶମ୍ଭୁନାଥର କାହାଣୀ' ଗଳ୍ପରେ ଅପାରଗ-ଅକ୍ଷମ ଶରୀରକୁ ନେଇ, ଜୀବନ ଜୀଇଁବାର ଅଭିନବ କୌଶଳ ଅତି ଚମତ୍କାର । ଭାବସାନ୍ଦ୍ର ଶବ୍ଦ ମାଧ୍ୟମରେ ଗଳ୍ପଟିକୁ ଆରମ୍ଭରୁ ଶେଷଯାଏ ମର୍ମସ୍ପର୍ଶୀ କରିବାର ଦାୟିତ୍ୱବୋଧଟି ସତେଯେପରି ଗାଳ୍ପିକଙ୍କ ପ୍ରାଣକୁ ଆଚ୍ଛନ୍ନ କରିବସିଛି । ଶମ୍ଭୁନାଥ ନିଜର ବାତରୋଗ, ଗୋଡ଼ଘା', ଜଳାସ୍ରାବ ଓ ଯନ୍ତ୍ରଣାକୁ ଭୁଲି ଇଂରେଜ ଶାସନ ବିରୁଦ୍ଧରେ ଯୁଦ୍ଧଘୋଷଣା କରିଛି । ଦରିଦ୍ର ସଂପ୍ରଦାୟର ନେତୃତ୍ୱ ନେବା ସହିତ ଦେଶମୁକ୍ତି ପାଇଁ ଗୁଣ୍ଡୁଚିମୂଷା ଭଳି କର୍ତ୍ତବ୍ୟ କରିଚାଲିଛି । ସମାଜର ଗଠନମୂଳକ କାର୍ଯ୍ୟ ସହିତ ଗ୍ରାମ୍ୟଯୁବକମାନଙ୍କୁ ସ୍ୱାବଲମ୍ବୀ କରିବାକୁ ଯୋଜନା କରିଛି । କିନ୍ତୁ କୃତଘ୍ନ ସମାଜ ତା'ର ସମସ୍ତ ଉତ୍ସର୍ଗକୁ ଅଣଦେଖା କରିଛି । ସାମାନ୍ୟତମ ଶ୍ରଦ୍ଧା-ସମ୍ମାନ ତାକୁ ମିଳିନି । କର୍ମଯୋଗୀ ଶମ୍ଭୁନାଥ କିନ୍ତୁ ଜୀବନର ଶେଷଯାଏ ତା'ର ସଂଘର୍ଷମୟ ଜୀବନର କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଛି ।

'ଶୀତଳଜ୍ୱାଳା' ଗଳ୍ପରେ ୧୯୬୨ର ଚୀନ୍-ଭାରତ ଆକ୍ରମଣ ଘଟଣାର ବର୍ଣ୍ଣନା ଛଳରେ ଯୁଦ୍ଧମୁକ୍ତ ସମାଜ ଏବଂ ସୁନ୍ଦର ଭବିଷ୍ୟ ନିର୍ମାଣର ଆହ୍ୱାନ ଅନୁରଣିତ । ଚକ୍ରପାଣ

ବଳିୟାରସିଂହ ଚରିତ୍ରଟି ମିଛ ଅହମିକା ଓ ଆଭିଜାତ୍ୟର ଦର୍ପରୁ ମୁକ୍ତହେବାର ଚିତ୍ର ଗଳ୍ପଟିକୁ ହୃଦୟସ୍ପର୍ଶୀ କରିଛି ।

'ହାତୀଚଢ଼ା' ଗଳ୍ପରେ ପ୍ରାପ୍ତବୟସ୍କ ମଣିଷ ନିଜର ଶିଶୁସୁଲଭ ଚପଳତା ପାଇଁ ଅସ୍ୱାଭାବିକ ସମସ୍ୟାର ସମ୍ମୁଖୀନ ହେବାର ଚିତ୍ରକୁ ଗାଳ୍ପିକ ଅତି ନିଛକ ଭାବରେ ବର୍ଣ୍ଣନା କରିଛନ୍ତି ।

'ଚନ୍ଦ୍ରକେତୁ ଦାସ' ଗଳ୍ପରେ ଚନ୍ଦ୍ରକେତୁ ଭଳି ଜଣେ ଜୀବନଲୋଭୀ ଚରିତ୍ରର ପୁରୁଷସୁଲଭ ପ୍ରବୃତ୍ତୀୟ ଇଚ୍ଛା, କାମନା-ବାସନା, ମାଂସପେଶୀର ଆରଣ୍ୟକ କଳରୋଳ ଏବଂ ଦୈହିକ ଚାହିଦା କିପରି ବାରମ୍ୱାର ପତ୍ନୀ ବିଭାମୟୀଙ୍କ ଦ୍ୱାରା ଉପହସିତ ଏବଂ ଲାଞ୍ଛିତ ହୋଇଛି- ତା'ର ଏକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହିଁ ଆଲୋଚ୍ୟ ଗଳ୍ପର ଅନ୍ତଃସ୍ୱର । 'ଚନ୍ଦ୍ରଉଦିଆ ଚନ୍ଦ୍ରା'ରେ ରକ୍ଷଣଶୀଳ-ପାରମ୍ପରିକ ରୀତି-ନୀତିର ସଂକୀର୍ଣ୍ଣତାକୁ ଛିନ୍ନ କରି ସ୍ୱାମୀର ମୃତ୍ୟୁପରେ ନିଆଶ୍ରୀ-ସୁନ୍ଦରୀ ବ୍ରାହ୍ମଣ କୂଳବଧୂ ଚନ୍ଦ୍ରା କିଭଳି ହଳିଆ ହରି ବେହେରାର ବଳିଷ୍ଠ ପୁରୁଷାକାରର ସାନ୍ନିଧ ପାଇଛି - ତାହାହିଁ ଏହି ଗଳ୍ପର ପ୍ରତିପାଦ୍ୟ ବିଷୟବସ୍ତୁ । ଆଲୋଚ୍ୟ ଗଳ୍ପରେ ହରିଆ ଏବଂ ତା'ର ସ୍ତ୍ରୀର ଉଦାରତା ଏବଂ ପରୋପକାରୀ ମନୋଭାବର ପଟାନ୍ତର ନାହିଁ ।

ଜୀବନବାଦୀ ଗାଳ୍ପିକ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ପ୍ରତ୍ୟେକ ଗଳ୍ପର ପ୍ରାଣଧର୍ମ ସୁରକ୍ଷିତ । ଯୁଗୀୟ ସମସ୍ୟାଗୁଡ଼ିକୁ ଉତ୍‌ଥାପନ କରିବା ସହିତ ବିଭିନ୍ନ ଚେତନାକୁ ଅନ୍ତର୍ଗର୍ଭିତ କରି ପାଠକସମାଜକୁ ଗଳ୍ପ ଜରିଆରେ ଦେଇଛନ୍ତି ସୁଚିନ୍ତିତ ବାର୍ତ୍ତା । ଆଖିପାଆନ୍ତା ଘଟଣା ହିଁ ତାଙ୍କ ଗଳ୍ପଗୁଡ଼ିକର ବିଷୟବସ୍ତୁ (plot) । ସୀମିତ ସମୟସୀମା ଭିତରେ ହାତଗଣତି ଚରିତ୍ରମାନଙ୍କ ଦ୍ୱାରା ଗଳ୍ପଗୁଡ଼ିକୁ ସେ ଯେପରି ଜୀବନ୍ତ କରି ଗଢ଼ିତୋଳିଛନ୍ତି ତାହା ବେଶ୍ ହୃଦ୍ୟ । ତାଙ୍କ ଗଳ୍ପର ସମସ୍ତ ଚରିତ୍ର ନିଜ ନିଜର ଚାରିତ୍ରିକ ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । ଗାଳ୍ପିକଙ୍କ ସୃଷ୍ଟିରେ ଯେଉଁଠି ନଳିନୀଦେବୀ, ମନ୍ଦାକିନୀ, ମାନମୟୀ ତଥା ବିଭାମୟୀ ଭଳି କଠୋର ହୃଦୟ ସଂପନ୍ନା-ରୁକ୍ଷ ନାରୀଚରିତ୍ରମାନଙ୍କୁ ଚିତ୍ରିତ କରିଛନ୍ତି, ଅପର ପକ୍ଷରେ ଗୀତାଳି, ଶୋଭା, ସୁକେଶୀ, ମୀରା, ପାଞ୍ଚାଳୀ, ସୁମତି, ସାବୀ, ସୁଜାତା, ନବନୀତା ଏବଂ ଉର୍ମିଳା ଭଳି ଶାନ୍ତ-ଉଦାର ଏବଂ କୋମଳ ହୃଦୟସର୍ବସ୍ୱା ଅଭିଶପ୍ତ କିନ୍ନରୀମାନଙ୍କର ବ୍ୟକ୍ତିତ୍ୱର ମହନୀୟତାକୁ ରୂପାୟିତ କରିବାରେ ଗାଳ୍ପିକ ଉଚ୍ଛ୍ୱସିତ ହୋଇଛନ୍ତି । ଯେଉଁଠି ଅଭିନବ ମହାନ୍ତି, ବ୍ରଜସୁନ୍ଦରଙ୍କ ଭଳି ନିଷ୍ଠୁର ପୁରୁଷ ଚରିତ୍ରମାନଙ୍କର ବର୍ଣ୍ଣନା ରହିଛି, ଅପର ପାର୍ଶ୍ୱରେ ସନାତନ ଶର୍ମା, ଧନୀମୋଚି, ମୋହନମୂର୍ତ୍ତି, ସବ୍ୟସାଚୀ ଭଳି ନିରୀହ ପୁରୁଷମାନଙ୍କର ମହତ୍ତ୍ୱକୁ ପ୍ରତିଷ୍ଠା କରାଯାଇଛି । ତେବେ ବିଶେଷତଃ ଶତପଥୀୟ ଗଳ୍ପଜଗତରେ ମାତୃତ୍ୱର ଦୀପ୍ତି, ସ୍ନେହ-ପ୍ରେମର ଦ୍ୟୁତି, ଚିତ୍ତସଂଘର୍ଷ-ସମ୍ମୋହନର ବ୍ୟାପ୍ତି ଅଛି ପୁଣି ନାରୀର ଦର୍ପ, ଔଦ୍ଧତ୍ୟ ଏବଂ ପଚ୍ଚ-ସଢ଼ା

ସଂକୀର୍ଣ୍ଣତାର ଦୁର୍ଗନ୍ଧ ମଧ୍ୟ ଅଛି । ପ୍ରାୟ ଏକାଧିକ ଗଳ୍ପରେ ନାରୀ ମନସ୍ତତ୍ତ୍ୱର ସୂକ୍ଷ୍ମ ମୂଲ୍ୟାୟନ ଗଳ୍ପଗୁଡ଼ିକୁ ବାସ୍ତବ କରିଛି ।

ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଅମାୟିକ ବ୍ୟକ୍ତିତ୍ୱ ଭଳି ତାଙ୍କର ଗଳ୍ପଜଗତ ବେଶ୍ ସାବଲୀଳ, ମାର୍ଜିତ ଏବଂ ଭାବସାନ୍ଦ୍ର । ଗଳ୍ପଗୁଡ଼ିକର ଆରମ୍ଭଠାରୁ ଅନ୍ତଯାଏ 'ଆକସ୍ମିକତା'ର ସମନ୍ୱୟ ପାଠକ-ପାଠିକାଙ୍କ ହୃଦୟକୁ ଉତ୍କଣ୍ଠିତ କରିବ ନିଶ୍ଚୟ । ଗଳ୍ପଗୁଡ଼ିକର ଆଙ୍ଗିକରେ ସଂଯତ-ସୁବିନ୍ୟସ୍ତ ସହରୀ ଭାଷାର ପ୍ରୟୋଗ ଏବଂ ଆତ୍ମିକରେ ମାନବୀୟ ଚିରନ୍ତନୀ ଇଚ୍ଛା-ଆକାଂକ୍ଷା, ଶୋଷଣ-ପ୍ରତିବାଦ ତଥା ଚିତ୍ତସଂଘର୍ଷର ବୈକଲ୍ୟ ଉପଲବ୍ଧ ହୁଏ । ପ୍ରେମରୁ ପ୍ରେମହୀନତା ପୁଣି ବ୍ୟକ୍ତିକ ପ୍ରେମର ଉର୍ଦ୍ଧ୍ୱରେ ବିଶ୍ୱୋନ୍ମୁଖୀ ପ୍ରେମ ଆଡ଼କୁ ଅଗ୍ରସର ହୋଇଥିବା ସାହିତ୍ୟିକ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଚେତନାର ବଳୟ କ୍ରମଶଃ ଅସାଧାରଣ-ଅବର୍ଗମାନକୁ ସଂପ୍ରସାରିତ ହୋଇଛି । ସେଥିପାଇଁ ହୁଏତ ସେ ଲେଖିଛନ୍ତି- "ବେଳେବେଳେ ଗଳ୍ପ ଓ କବିତା ମନଭିତରକୁ ଛିଟିକି ଆସୁଥିଲେ ହୁଏତ, କିନ୍ତୁ ପାଉନଥିଲେ ଉପଯୁକ୍ତ ଭାବ ଓ ଭାବାନ୍ତରର ପରିଭାଷା । ଅନେକ ମୂଲ୍ୟବାନ ଅନୁଭବ ଅଭିମାନ ମୋ ପାଖରୁ ପଳାଇ ଯାଉଥିଲେ ।"(୧୧) କବିତା ଓ ଗଳ୍ପରୁ ସାମାନ୍ୟ ଦୂରେଇ କ୍ରମେ ସେ 'ସମାଲୋଚ୍‌ନା'ର ବୌଦ୍ଧିକ ବଳୟ ଭିତରକୁ ସ୍ୱତଃ ଟାଣି ହୋଇଯାଇଛନ୍ତି । ତାଙ୍କ ଶବ୍ଦରେ- "ମୋର ସମଗ୍ର ସାହିତ୍ୟିକ ଉତ୍ସାହ ଓ ଉଲ୍ଲାସ ମୁଁ ସମାଲୋଚ୍‌ନା ଲେଖିବାରେ ହିଁ ବିନ୍ୟସ୍ତ କରିଛି ।"(୧୨) ଜଣେ ସମୀକ୍ଷକ ହିସାବରେ ଡକ୍ଟର ଶତପଥୀ ସୃଜନଶୀଳ ସମାଲୋଚ୍‌ନା (creative criticism)ରେ ଆସ୍ଥାବାନ୍ । ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି, ଯୁକ୍ତିମତ୍ତା, ଦୃଷ୍ଟିଭଙ୍ଗୀର ନୂତନତା, ବହୁ ଅଧ୍ୟୟନ ଆଧାରରେ ଗଭୀର ଜିଜ୍ଞାସା ଓ ଅନ୍ୱେଷା, ସୂକ୍ଷ୍ମ ବିବେଚ୍‌ନା ଏବଂ ସ୍ୱତନ୍ତ୍ର ଚିନ୍ତନର ପରିଚ୍ଚୟକ ହୋଇଛି ତାଙ୍କର ଅସଂଖ୍ୟ ସମାଲୋଚ୍‌ନା ପୁସ୍ତକ । 'କବିତା ଯୁଗେ ଯୁଗେ', 'ସବୁଜରୁ ସାଂପ୍ରତିକ', 'କାବ୍ୟପ୍ରକରଣ', 'ସତ୍ୟବାଦୀ ଯୁଗ : ସ୍ରଷ୍ଟା ଓ ସୃଷ୍ଟି', ସତୁରୀରୁ ସହସ୍ରାବ୍ଦୀ', 'କବିତା ସେତୁ ୨୦୦୯', ମେଗା ଓଡ଼ିଆ ଉପନ୍ୟାସ ୨୦୧୫', 'କାବ୍ୟଦୃଷ୍ଟି : କାବ୍ୟବିଚ୍ଚର' ଇତ୍ୟାଦିରେ ଡକ୍ଟର ଶତପଥୀ ସମୁଚ୍ଚ ସମାଲୋଚ୍‌ନାର ନୂତନ ପରିଭାଷା ସୃଷ୍ଟି କରି ସମାଲୋଚ୍‌ନାତ୍ମକ ସାହିତ୍ୟକୁ ଏକ ମୌଳିକ ରୂପପ୍ରଦାନ କରିଛନ୍ତି । ତାଙ୍କ ମତରେ- "ସମାଲୋଚ୍‌ଟିଏ ପ୍ରଥମେ ଜଣେ ଭାଷ୍ୟକାର, କବିତା ଓ ପାଠକ ମଧ୍ୟରେ ଏକ ସଂଯୋଗ ସେତୁ, କବିତାର ଜଟିଳ ଓ ଗୁମ୍ଫିତ ଭାବନାକୁ ନିଜେ ବୁଝି ପାଠକକୁ ବୁଝାଇବା ତା'ର ପ୍ରଥମ ଦାୟିତ୍ୱ । ତେଣୁ ଆକଳନରେ ନିଜସ୍ୱ ପାଣ୍ଡିତ୍ୟ ବା ଆହରଣଶୀଳତା ପ୍ରଦର୍ଶନ ଅପେକ୍ଷା କବି ଓ କବିତାକୁ ପାଠକ ପାଖରେ ଯଥାସମ୍ଭବ ନିର୍ଭରଯୋଗ୍ୟ ଭାବେ ପହଞ୍ଚାଇବା ତା'ର ଏକ ସାରସ୍ୱତ ଦାୟିତ୍ୱ ।"(୧୩)

ଜଣେ ଆଦର୍ଶ ସମାଲୋଚକ ଭାବେ ଡକ୍ଟର ଶତପଥୀ ତାଙ୍କ ଆଲୋଚନାଗୁଡ଼ିକରେ ଛାତ୍ର-ଛାତ୍ରୀମାନଙ୍କର ମୌଳିକ ଜିଜ୍ଞାସାବୋଧକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ସାହିତ୍ୟିକମାନଙ୍କ ସୃଷ୍ଟିଗୁଡ଼ିକର ସମୀକ୍ଷାତ୍ମକ ଅନୁଶୀଳନ ସମୟରେ ଅତି ନିଷ୍ପକ୍ଷ ଭାବରେ ମୂଳ ସୃଷ୍ଟିର ଦୋଷ-ଦୁର୍ବଳତା ସହ ତା'ର ଉନ୍ନତ ଗୁଣଗୁଡ଼ିକୁ ପାଠକ ସମ୍ମୁଖକୁ ଆଣିଛନ୍ତି । ସାରସ୍ୱତ ସୃଷ୍ଟିର ବ୍ୟାଖ୍ୟାର ବ୍ୟାଖ୍ୟା ସହିତ ତା'ର ଦୋଷ-ଗୁଣ ବିଚାର ଓ ବିଶ୍ଳେଷଣ, ମୂଲ୍ୟ ନିର୍ଦ୍ଧାରଣ, ସୃଷ୍ଟିର ନିହିତ ସୂତ୍ର ଓ ସତ୍ୟର ସ୍ୱରୂପ ଉଦ୍‌ଘାଟନ ହିଁ ଶତପଥୀୟ ସମାଲୋଚନାର ପ୍ରମୁଖ ଉଦ୍ଦେଶ୍ୟ । ସେ ସାହିତ୍ୟିକମାନଙ୍କର ସୃଷ୍ଟିଗୁଡ଼ିକୁ ଅନୁଶୀଳନ କଲାବେଳେ ଗଭୀର ବୌଦ୍ଧିକତା, ଭାଷାର ଶାଳୀନତା, ସତ୍ୟସନ୍ଧାନୀ ଅନୁସନ୍ଧିତ୍ସା, ପରିବେଷଣରେ ପରିଚ୍ଛନ୍ନତାକୁ ପ୍ରାଧାନ୍ୟ ଦେଇଛନ୍ତି ।

ସମୀକ୍ଷକ ଡକ୍ଟର ଶତପଥୀ ତାଙ୍କର 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥର ପ୍ରଥମ ପର୍ଯ୍ୟାୟରେ 'ସବୁଜ'କୁ ଏକ ଯୁଗ ଭାବେ ସ୍ୱୀକୃତି ନ ଦେଇ ଏକ ଯୁଗାଭାସ - ଏକ ଖଣ୍ଡିତ ସାହିତ୍ୟିକ ଚେତନା ରୂପେ ଆଲୋଚନା କରିଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଗତିବାଦୀ ଆଭିମୁଖ୍ୟର ବିସ୍ତୃତ ପରିସର, ସ୍ୱରୂପ ଏବଂ ପରିଭାଷା ନିର୍ଣ୍ଣୟ ଏବଂ ଶେଷ ପର୍ଯ୍ୟାୟରେ ପୃଥିବୀ ମହାଯୁଦ୍ଧ ପରବର୍ତ୍ତୀ ଓଡ଼ିଆ କବିତାରେ ସାମାଜିକ ମୂଲ୍ୟବୋଧର ଅବକ୍ଷୟ, ନିଃସଙ୍ଗତା, ନିଃସହାୟତା, ସ୍ୱପ୍ନଭଙ୍ଗ, ମୋହଭଙ୍ଗ ଆଦିର ବିପର୍ଯ୍ୟସ୍ତ ରୂପ ସଂପର୍କରେ ଆଲୋଚନା କରିଛନ୍ତି । ଡକ୍ଟର ଶତପଥୀ ପ୍ରତ୍ୟେକ ପର୍ଯ୍ୟାୟର ଯୁଗୀୟ ଭାବାବେଗ, ସାହିତ୍ୟକାରମାନଙ୍କ କାବ୍ୟଚେତନାର ବିକାଶ, ସୃଷ୍ଟିଗୁଡ଼ିକର କ୍ରମିକତା ରକ୍ଷା ସହିତ କାବ୍ୟ ଉତ୍ତରଣ ପର୍ଯ୍ୟାୟକୁ ପୁଙ୍ଖାନୁପୁଙ୍ଖ ଭାବରେ ଦର୍ଶାଇଛନ୍ତି । ଯୁଗୀୟ ଆଭିମୁଖ୍ୟ ସହିତ ଲେଖକୀୟ ବ୍ୟକ୍ତିତ୍ୱ ଏବଂ ଚେତନାର ବିଶଦ୍ ତୁଳନାତ୍ମକ ଅଧ୍ୟୟନ 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥକୁ ଏକ ଉତ୍କୃଷ୍ଟ ସମାଲୋଚନା ପୁସ୍ତକର ମାନ୍ୟତା ପ୍ରଦାନ କରିଛି । ଆଲୋଚ୍ୟ ଗ୍ରନ୍ଥରେ ଡକ୍ଟର ଶତପଥୀଙ୍କ ଗଭୀର ମନନଶୀଳତା, ସ୍ୱଚ୍ଛନ୍ଦ ପ୍ରକାଶଭଙ୍ଗୀ ତଥା ପରିଚ୍ଛନ୍ନ ଗଦ୍ୟଶୈଳୀ ତାଙ୍କ ସମୁଚ୍ଚ ସମୀକ୍ଷାର ମାନଦଣ୍ଡ ନିର୍ଦ୍ଧାରଣ କରେ ।

'ଆଧୁନିକ ଓଡ଼ିଆ ସାହିତ୍ୟ' ଗ୍ରନ୍ଥଟି ଡକ୍ଟର ଶତପୀଥଙ୍କର ଏକ ବିଶିଷ୍ଟ ସମାଲୋଚନା ପୁସ୍ତକ । ଶତପଥୀଙ୍କ ମତରେ- "ପରସ୍ପର ବିପରୀତମୁଖୀ ଚିନ୍ତା ଓ ଚେତନାକୁ ଧରି ରଖିବାର ନାମ ହିଁ ଆଧୁନିକତା-(୧୪) ଆଧୁନିକତାର ସଂଜ୍ଞା, ସ୍ୱରୂପ ତା'ର ଆଭିମୁଖ୍ୟକୁ ସମାଲୋଚକ ନିତ୍ୟାନନ୍ଦ ଶତପଥୀ ଅତି ସୂକ୍ଷ୍ମ ଭାବରେ ତର୍ଜମା କରିଛନ୍ତି । 'ପ୍ରମୁଖ କବି କତିପୟ' ପୁସ୍ତକରେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠିତ କବିମାନଙ୍କ କବିତାର ଅନ୍ତର୍ନିହିତ ଦର୍ଶନ ଆବେଗ ଏବଂ ଯୁଗୀୟବାର୍ତ୍ତାକୁ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପନ କରିଛନ୍ତି । ଏଥିରେ ସେମାନଙ୍କ କୃତିଗୁଡ଼ିକର ମୌଳିକତା, ଅଙ୍ଗ, ଆତ୍ମା, ଭାବ, ଭାଷା, ଶୈଳୀ, ସ୍ରଷ୍ଟାମାନସ ତଥା ସ୍ରଷ୍ଟା ବ୍ୟକ୍ତିତ୍ୱ ଆଦିର ଟିକିନିଖି ଆଲୋଚନା

ରହିଛି । ସାଂପ୍ରତିକ ଆଧୁନିକ ଗଳ୍ପର ଶିଳ୍ପସମ୍ମତ-ଅଭିଜାତ ରୂପକୁ ଆଲୋଚ଼ନା କରି 'ଗଳ୍ପ ଓ ଗାଳ୍ପିକ' ପୁସ୍ତକର ସୃଷ୍ଟି । ସେହିପରି ଆଧୁନିକ ଓଡ଼ିଆ କବିତାର ସୀମା ଓ ସମ୍ଭାବନାର ବିବର୍ତ୍ତିତ ଧାରାକୁ ବୁଝାଇବାର ଅଭିନବ ପ୍ରୟାସକୁ ସିଦ୍ଧ କରି ସୃଷ୍ଟି ହୋଇଛି ସମୀକ୍ଷାତ୍ମକ ପୁସ୍ତକ 'କାବ୍ୟପ୍ରକରଣ' ଏବଂ 'କାବ୍ୟଦୃଷ୍ଟି-କାବ୍ୟବିଚାର' । ଆଧୁନିକ ଓଡ଼ିଆ କବିତାରେ ଆଲୋଡ଼ନ ସୃଷ୍ଟି କରିଥିବା ବିଭିନ୍ନ ବାଦ (ଚେତନା), ଭାଷା, ଛନ୍ଦ, ନୂତନ ରୂପଚର୍ଯ୍ୟା, କାବ୍ୟତତ୍ତ୍ୱ ସଂପର୍କରେ ବିଧିବଦ୍ଧ ଆଲୋଚ଼ନା ଏଥିରେ ପ୍ରକାଶ ପାଇଛି । 'ସତୁରୀରୁ ସହସ୍ରାବ୍ଦୀ' - ସମାଲୋଚ଼ନା ପୁସ୍ତକରେ 'ବ୍ୟାଖ୍ୟାର ବ୍ୟାଖ୍ୟା' ଧର୍ମକୁ ଆଦରି ଅତି ନିଷ୍ପକ୍ଷ ଶୈଳୀରେ ଆଲୋଚ଼କ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଓଡ଼ିଶାର ବିଶିଷ୍ଟ ୧୦ଜଣ କବିଙ୍କୁ ଆଲୋଚ଼ନା ପରିସରଭୁକ୍ତ କରିଛନ୍ତି । ଏଥିରେ କେବଳ ଭଲ ନୁହେଁ ଅଭଲକୁ, ସୁନ୍ଦରକୁ ନୁହେଁ ତା'ର ଭ୍ରାନ୍ତିପୂର୍ଣ୍ଣ ରୂପକୁ, ପ୍ରତ୍ୟେକ ଦୁର୍ବୋଧତାର ଗ୍ରନ୍ଥି ଉନ୍ମୋଚ଼ନ କରି ସେଗୁଡ଼ିକର ବିଶଦ ଭାବରେ ଆଲୋଚ଼ନା କରାଯାଇଛି । ତେବେ ଓଡ଼ିଶାର ଏହି ଶ୍ରେଷ୍ଠ ସ୍ରଷ୍ଟା ସମୀକ୍ଷକ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସମୀକ୍ଷା ଉପରେ ସମୀକ୍ଷା କରିବା ଏକ ଆସ୍ପର୍ଦ୍ଧା ମାତ୍ର ।

ମା' ଶାରଳାଙ୍କ ବରପୁତ୍ର - ଡକ୍ଟର ନିତ୍ୟାନନ୍ଦ ଶତପଥୀ ତାଙ୍କର ଅଜସ୍ରସ୍ରାବୀ ସୃଷ୍ଟିକର୍ମ ନିମନ୍ତେ ଅସଂଖ୍ୟ ସମ୍ମାନର ଅଧିକାରୀ ହୋଇଛନ୍ତି । ୧୯୬୫ରେ କଟକ ପୂଜ୍ୟପୂଜା ସଂସଦର ସେକ୍ରେଟାରୀ, ୧୯୮୦-୧୯୯୦ ମସିହା ମଧ୍ୟରେ ଇମ୍ପା, ଭୁବନେଶ୍ୱର ତରଫରୁ ଶାରଳା ସମ୍ମାନ, ୧୯୯୪ ମସିହାରେ ସାହିତ୍ୟ ଏକାଡେମୀର କାର୍ଯ୍ୟକାରୀ ମେମ୍ବର ନିଯୁକ୍ତ ହୋଇ ବହୁ ଶ୍ରଦ୍ଧା-ସମ୍ମାନ ପ୍ରାପ୍ତ କରିଛନ୍ତି ।

ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଡକ୍ଟର ଶତପଥୀ ଜଣେ ସମ୍ଭାବନାମୟ ସ୍ରଷ୍ଟାପୁରୁଷ । ଶତଦଳ ଯନ୍ତ୍ରଣାର କୁକ୍ଷୀ ଭିତରକୁ ଚିପୁଡ଼ା ଅନୁଭୂତି ସବୁ ଗୋଟାଳି ବାନ୍ଧି ପ୍ରସ୍ତୁତ ହୋଇଛି ଶତପଥୀୟ ସାରସ୍ୱତ-ସୌଧ ! ଯାହାକୁ ବିଶ୍ଳେଷଣ କରିବାର ଗୁରୁଦାୟିତ୍ୱ ନ୍ୟସ୍ତ ରହିବ ଉତ୍ତର ପୀଢ଼ିର ନୂତନ ପାଠକ, ଗବେଷକ ଏବଂ ଅନୁସନ୍ଧିତ୍ସୁଙ୍କ ଉପରେ । ଯଥାର୍ଥତଃ ସାଂପ୍ରତିକ ଓଡ଼ିଆ ସାହିତ୍ୟ ଧାରାରେ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଜୀବନବୋଧର ସାଲିସ୍‌ବିହୀନ ଶ୍ରେଷ୍ଠ ଭାଷ୍ୟକାର ।

(ଏହି ସନ୍ଦର୍ଭରେ ପ୍ରଚ଼ଣ୍ଡ ସ୍ୱାଭିମାନୀ ନିତ୍ୟାନନ୍ଦ ଶତପଥୀଙ୍କ ନିଛକ ଜୀବନବୋଧ ପ୍ରସୂତ ଆତ୍ମଜୀବନୀ 'ଶୈଶବରୁ ଅବସର' ଏବଂ 'କାଳ ଓ କର୍ଣ୍ଣିକା' ତଥା 'ଯେ ନଦୀ ମରୁପଥେ' ଗଳ୍ପସମଗ୍ର ଉପରେ ଯଥାସମ୍ଭବ ଆଲୋଚ଼ନା କରାଯାଇଛି । ତତ୍‌ସହିତ ତାଙ୍କର କିଛି ବିଶିଷ୍ଟ ସମାଲୋଚ଼ନା ପୁସ୍ତକ ଉପରେ ସାମାନ୍ୟ ଆଲୋଚ଼ନା କରାଯାଇଛି ।)

**ପରିଶିଷ୍ଟ :**

୧. ଶୈଶବରୁ ଅବସର - (ଆତ୍ମଜୀବନୀ), ଡ. ନିତ୍ୟାନନ୍ଦ ଶତପଥୀ
୨. ଗଳ୍ପ ସମଗ୍ର - ଇସ୍ତାହାର ପ୍ରକାଶନୀ, ଡ. ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୩୦
୩. ଗଳ୍ପ ସମଗ୍ର - ଇସ୍ତାହାର ପ୍ରକାଶନୀ, ଡ. ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୬୭
୪. ଶୈଶବରୁ ଅବସର (ଆତ୍ମଜୀବନୀ), ବିଜୟିନୀ ପବ୍ଲିକେଶନ୍ସ, ଡ. ନିତ୍ୟାନନ୍ଦ ଶତପଥୀ, ୨୦୧୬, ପୃ: ୨୮୪
୫. ଶୈଶବରୁ ଅବସର (ଆତ୍ମଜୀବନୀ), ବିଜୟିନୀ ପବ୍ଲିକେଶନ୍ସ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୬, ପୃ: ୨୧୦
୬. ଶୈଶବରୁ ଅବସର (ଆତ୍ମଜୀବନୀ), ବିଜୟିନୀ ପବ୍ଲିକେଶନ୍ସ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୬, ପୃ: ୪୯୪
୭. ଶୈଶବରୁ ଅବସର (ଆତ୍ମଜୀବନୀ), ବିଜୟିନୀ ପବ୍ଲିକେଶନ୍ସ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୬, ପୃ: ୪୯୨
୮. ଗଳ୍ପସମଗ୍ର, ଇସ୍ତାହାର ପ୍ରକାଶନୀ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୧୦୬
୯. ଗଳ୍ପସମଗ୍ର, ଇସ୍ତାହାର ପ୍ରକାଶନୀ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୧୯୭
୧୦. ଗଳ୍ପସମଗ୍ର, ଇସ୍ତାହାର ପ୍ରକାଶନୀ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୩୫
୧୧. ଶୈଶବରୁ ଅବସର (ଆତ୍ମଜୀବନୀ), ବିଜୟିନୀ ପବ୍ଲିକେଶନ୍ସ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୬, ପୃ: ୪୫୬
୧୨. ସବୁଜରୁ ସାଂପ୍ରତିକ, ଗ୍ରନ୍ଥମନ୍ଦିର, ୨୦୧୧, (୭ମ ସଂସ୍କରଣ), ୫ମ ସଂସ୍କରଣ ସଂପର୍କରେ ।
୧୩. ସତୁରୀରୁ ସହସ୍ରାବ୍ଦୀ-(ଉତ୍ତର-ସତୁରୀ କାବ୍ୟଚେତନା), ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ-୨୦୧୦, ମୁଖବନ୍ଧ ପୃଷ୍ଠା ।
୧୪. ଗଳ୍ପସମଗ୍ର, ଇସ୍ତାହାର ପ୍ରକାଶନୀ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ୨୦୧୨, ପୃ: ୧୪

■ *ରଣପୁର ମହାବିଦ୍ୟାଳୟ, ରଣପୁର*
*ମୋ: ୯୪୩୮୨୯୪୪୧୮*

# ସାରସ୍ୱତ ପୁରୁଷ ନିତ୍ୟାନନ୍ଦ

♦ ପ୍ରଫେସର ଆଦିକନ୍ଦ ସାହୁ

ସାହିତ୍ୟର ଅଧିକାଂଶ ବିଭାବରେ କଲମ ଚଳେଇ ଥିବା ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଓଡ଼ିଶାର ସାରସ୍ୱତ ଜଗତରେ ଜଣେ ପ୍ରବୀଣ ସାହିତ୍ୟିକ । କେବଳ ବୟସ ଦୃଷ୍ଟିରୁ ନୁହେଁ ଜଣେ ଅତି ପରିପକ୍ୱ ପ୍ରବୀଣ ପୁରୁଷ ହେଉଛନ୍ତି ଯଥାର୍ଥରେ ନିତ୍ୟାନନ୍ଦ ।

ତାଙ୍କ ସମାଲୋଚନା ବହୁ ଭାବରେ ଅନୁଶୀଳନାତ୍ମକ । ଓଡ଼ିଆ ସାହିତ୍ୟକୁ ନାନା ମତେ ଆଗକୁ ନେବାରେ ସେ ଏକାନ୍ତ ଉତ୍ସର୍ଗୀକୃତ । ଏଥିପାଇଁ ତାଙ୍କ ଅଧ୍ୟୟନ ଓ ଅଧ୍ୟବସାୟର ତୁଳନା ନାହିଁ ।

କାବ୍ୟ ସାହିତ୍ୟର ଯୁଗ ଓ ରୋମାଣ୍ଟିକ୍ ସାହିତ୍ୟାଦର୍ଶ ପରେ ଅପେକ୍ଷାକୃତ ଅଧିକ ବୌଦ୍ଧିକ ଓ ପ୍ରତୀକାତ୍ମକ ଆଧୁନିକ ସାହିତ୍ୟକୁ ସର୍ବସାଧାରଣରେ ନେଇ ପହଞ୍ଚାଇବାରେ ସେ ଗୋଟେ ସାରସ୍ୱତ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ସେଥିରେ ସେ ବ୍ୟର୍ଥ ହୋଇଛନ୍ତି ବୋଲି ମୁଁ କେବେବି କହିବି ନାହିଁ ।

ଜଣେ ପ୍ରତିସ୍ପର୍ଦ୍ଧୀ ସାହିତ୍ୟିକ ଥିଲେ ନିତ୍ୟାନନ୍ଦ ଓ ସେ ଆନ୍ଦୋଳନର ମୁଖପତ୍ର ଥିଲା ସୁପରିଚିତ, ସୁପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ଇସ୍ତାହାର' । ଛଳିଶବର୍ଷରେ ବର୍ତ୍ତମାନ ଏ ତ୍ରୈମାସିକ ପତ୍ରିକା ଉପନୀତ ।

ଗତ ଅର୍ଦ୍ଧ ଶତାବ୍ଦୀ ବର୍ଷ ଧରି ନିତ୍ୟାନନ୍ଦ ଶତପଥୀ ହେଉଛନ୍ତି ଜଣେ ଅତି ସକ୍ରିୟ ସାହିତ୍ୟ ସମାଲୋଚକ ଓ ସୁଯୋଗ୍ୟ ସଂପାଦକ । ଓଡ଼ିଆ ସାହିତ୍ୟ ଇତିହାସରେ ଜଣେ ବଳିଷ୍ଠ ସମାଲୋଚକ ଭାବେ ସେ ଅମର ହୋଇ ରହିବେ । ବ୍ୟକ୍ତିଗତ ଭାବେ ମୋର ତାଙ୍କ ପ୍ରତି ନିସର୍ଗ ସମ୍ମାନବୋଧ ରହିଛି । ଯେତେବେଳେ ଯେଉଁଠି ତାଙ୍କ ସହିତ ମୋର କୌଣସି ମଞ୍ଚରେ ଅବା ମଞ୍ଚ ବାହାରେ ବାଟ ଘାଟରେ ସାକ୍ଷାତ୍ ହୋଇଛି ସେ ମୋ ପ୍ରତି ଏତେ ସ୍ନେହଶୀଳ ଥା'ନ୍ତି ଯେ ମୁଁ ବିନୀତ ଆତ୍ମାର ଜଣେ ନିରୀହ କିଶୋର ଭଳି ତାଙ୍କ ସମ୍ମୁଖରେ ନତ ବଦନରେ ଛିଡ଼ା ହୁଏ ।

ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ବିଷୟରେ ଆଲୋକପାତ କରି ମୁଁ ଉଭୟ ଆନନ୍ଦ ଓ ଗୌରବ ଲାଭ କରିବି ବୋଲି ଭାବିଥିଲି । ତା'ପରେ ମୁଁ ମୋର ସଂକଳ୍ପ ପରିବର୍ତ୍ତନ କରି ତାଙ୍କ ବ୍ୟକ୍ତିତ୍ୱର ଗୋଟେ ଅତି ମହିମ୍ନ ତଥା ସମ୍ବେଦନଶୀଳ ଅଥଚ ଅନାଲୋଚିତ ଦିଗ ଉପରେ ମୋର ସାମାନ୍ୟ ବିଶ୍ଳେଷଣ ରଖିବି ବୋଲି ସ୍ଥିର କଲି ।

ଏ ମୋର ଏକାନ୍ତ ଭାବନିଷ୍ଠ ଲେଖାଟି ମୋର ସେଇ ପରିବର୍ତ୍ତିତ ସିଦ୍ଧାନ୍ତର ଫଳଶ୍ରୁତି ।

ପ୍ରବୀଣ ନିତ୍ୟାନନ୍ଦ ଜଣେ ଆବେଗ ଛଳଛଳ ତରୁଣଙ୍କ ପରି ଜୀବନ ପାତ୍ର ଭରିବା ପାଇଁ ସ୍ନେହ ପ୍ରେମ ମାଗିଛନ୍ତି ।

ଏ ପ୍ରାର୍ଥନା ତାଙ୍କର ଅସ୍ୱର୍ଗୀୟ ନୁହେଁ । ପ୍ରାଣ ଢାଳିବାରେ ସେ ଏକାନ୍ତ ଛଳନା ରହିତ ଓ ଅକୁଣ୍ଠିତ ।

ଜଣେ ଜୀବନଟାକୁ ଏକାନ୍ତ ଭାବେ ଢାଳି ନ ଦେଲେ ସେ ପ୍ରେମ ପ୍ରାର୍ଥନା ପାଇଁ ଯୋଗ୍ୟ ହୋଇ ପାରନ୍ତିନି ।

ସେ ବଚନରେ, ଆଚରଣରେ କେବେକେବେ ଆପାତ୍ ରୁକ୍ଷ ଲାଗନ୍ତି । କିନ୍ତୁ ତାଙ୍କ ଭିତରେ ଅମାପ ସ୍ନେହ ପ୍ରେମର ଜାହ୍ନବୀଟିଏ ପ୍ରବାହିତ ହେଉଥାଏ । ଏ କଥା ଯେ ଜାଣେ ସେ ଜାଣେ ।

ଈଶ୍ୱର ତାଙ୍କ ହୃଦୟରେ ପ୍ରେମ ଓ କରୁଣାର ଯେଉଁ ଝର ବୁହାଇଛନ୍ତି ତାହା ଚିରସ୍ରୋତା ହୋଇ ରହିଛି ।

ଇତସ୍ତତଃ ଭାବେ ତାହା ତାଙ୍କ ଲେଖାଲେଖିକୁ ଉତ୍ସାରିତ ହୋଇ ଯାଇଛି ।

ସେ ଜୀବନରେ ପ୍ରେମ ପାଇଁ ଜଣେ ନିଷ୍କପଟ ଅନ୍ୱେଷୀ ଥିଲେ ହେଁ ନାନା ବିପନ୍ନ ଅବସ୍ଥା ଦେଇ ଗତି କରିଛନ୍ତି । ଦାରୁଣ ପୀଡ଼ା ଓ ବଞ୍ଚନା ଭୋଗିଛନ୍ତି ।

ମୁଁ ଖୁବ୍ ନିକଟରୁ ତାଙ୍କୁ ଜାଣିଛି । ଦୀର୍ଘ ବର୍ଷ ଧରି । ଗତ ଶତାବ୍ଦୀର ସତୁରି ମସିହାରୁ ଏଯାବତ୍ । ସଭା ସମିତିକୁ ଯାଇ ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେଦିନ ମୁଁ ପ୍ରଫେସର ଶତପଥୀଙ୍କ ସହିତ କଟେଇଛି । ତାଙ୍କ ଜୀବନର ଅନେକ ବିରଳ ଓ ପରିବୋଧନୀୟ ମୁହୂର୍ତ୍ତକୁ ସେ ମୋ ଆଗରେ ବଖାଣିଛନ୍ତି ।

ତାଙ୍କ ଓ ମୋ ଭିତରେ ବୟସଗତ ପାର୍ଥକ୍ୟ ତ ଅଛି । ହେଲେ ମୋର ଚିନ୍ତା ଓ ଚେତନା ପ୍ରତି ତାଙ୍କର ବେଶ୍ ପସନ୍ଦ ଥିଲା । ମୋ ଗଳ୍ପ ପ୍ରବନ୍ଧର ବିଷୟ ଓ ଶୈଳୀ ତାଙ୍କୁ ସବୁବେଳେ ମୁଗ୍‌ଧ କରୁଥିଲା ।

ସେ ଯାହାହେଉ ସେ ଯେତେବେଳେ ତାଙ୍କ ଦୁଃଖ ତାଙ୍କ ବଞ୍ଚନା କଥା ମୋ ଆଗରେ ବଖାଣନ୍ତି ସେତେବେଳେ ମୁଁ ଭାବେ ତାଙ୍କର ଗଭୀର ଦୁଃଖବୋଧ ବୋଧେ ତାଙ୍କ ସାରସ୍ୱତ ଉତ୍ତରଣର ସହଗାମୀ ହୋଇଛି । ତାଙ୍କ ଦୁଃଖ ହୁଏତ ତାଙ୍କୁ ପ୍ରାଜ୍ଞ କରିଛି ।

ମୁଁ ଆଜି ଉପଲବ୍‌ଧି କରିପାରୁଛି ଯେ, ପ୍ରଫେସର ଶତପଥୀଙ୍କ ହୃଦୟର ଗୋପନ କ୍ଷତ ବିଷୟ ମୋ ଆବେଗକୁ ହୁଏତ ବେଶୀ ଛୁଇଁଛି । ତାଙ୍କ ପ୍ରତି ମୋର ଆଦୌ ତୁଟି ଯାଇନଥିବା, ଟିକିଏ ବି ଶିଥିଳ ହୋଇଯାଉନଥିବା, ଶ୍ରଦ୍ଧା ଓ ସମ୍ମାନବୋଧ ସବୁବେଳେ ସେମିତି ରହିଛି ।

ସାହିତ୍ୟ ରାଜ୍ୟରେ ସେ ସବୁବେଳେ ଥାନ୍ତି । ତାଙ୍କ ପ୍ରେମିକତାକୁ ସେ କେତେବେଳେ ବିସର୍ଜି ଦିଅନ୍ତିନି । ସେ ଓଡ଼ିଶାର ବହୁ ତରୁଣ ତରୁଣୀଙ୍କ ପ୍ରଶଂସକ ଓ ଶୁଭଚିନ୍ତକ । ଯାହାଠାରେ ସେମିତି କିଛି ମାର୍ମିକତାକୁ ସେ ଠାବ କରିଛନ୍ତି ତା'କୁ ଆପଣାର କରନ୍ତି । 'ଇସ୍ତାହାର' ଥିଲା ଅନେକ ତରୁଣଙ୍କୁ ପ୍ରବୀଣ କରିବାର ଗୋଟେ ବଳଶାଳୀ ମାଧ୍ୟମ ।

ସାହିତ୍ୟକୁ ନେଇ ସେ ସବୁବେଳେ ବିଭୋର ହୋଇ ରହୁଥିଲେ । ତା'ର କାରଣ ହୁଏତ ତାଙ୍କ ଅନ୍ତରରେ ସାଇତା ହୋଇ ରହିଥିବା ଗୋଟେ ଉଷ୍ମ ପ୍ରେମିଳତା; ଯାହା ସବୁରି ଜୀବନ ବୃତ୍ତରେ ଅଲଂଘନୀୟ ଭାବେ ଥାଏ ।

ମୋର କାହିଁକି ମନେହୁଏ ସେ ତାଙ୍କ ଭାଗ୍ୟ ବିଡ଼ମ୍ବନା କାରଣରୁ ଅନେକ ଭୁଲ୍ ବୁଝାମଣାର ଶରବ୍ୟ ହୋଇଛନ୍ତି ।

ତାଙ୍କ ଜୀବନରେ ମୋ ଜାଣିବାରେ, ଅନେକ ପ୍ରକାର ସନ୍ତାପ ଥିଲା ଯେତିକି ପରିବାରିକ ତା'ଠାରୁ ଢେର୍ ଗୁଣରେ ଅଧିକ ବୃତ୍ତିଗତ । ତାଙ୍କ ସହକର୍ମୀ, ତାଙ୍କ ସମୟର ବିଶ୍ୱ ବିଦ୍ୟାଳୟ ପରି ବିଦ୍ୟାମନ୍ଦିରର ମଠାଧୀଶ ମାନଙ୍କ ଅସହନଶୀଳତାର ଶିକାର ହୋଇଛନ୍ତି ସେ ବାରବାର ।

ପ୍ରଫେସର ଶତପଥୀ କେବଳ ପ୍ରତିଭାବାନ ନଥିଲେ, ଥିଲେ ଅଧ୍ୟୟନ, ଅଧ୍ୟବସାୟରେ ଜଣେ ବିଚକ୍ଷଣ ବ୍ୟକ୍ତିତ୍ୱ । ଏହାହିଁ ଥିଲା ତାଙ୍କ ପ୍ରତି କେତେକଙ୍କ ଈର୍ଷାର କାରଣ ।

ସେ ଜଣେ ଏପରି ସମାଲୋଚକ, ଏପରି ଜଣେ ପ୍ରଫେସର ଥିଲେ ଯେ କି ପ୍ରାଚୀନ, କି ଆଧୁନିକ, କି ଗଦ୍ୟ କି କିପଦ୍ୟ ସବୁର ଜଣେ ଅତି ନିମଜ୍ଜିତ ଅନୁରାଗୀ ପାଠକ ଥିଲେ ।

ମୁଁ ନିଜେ ପ୍ରତ୍ୟକ୍ଷ କରିଛି ଅତି ଅଶାଳୀନ ଭାବେ କେତେଜଣ ତାଙ୍କ ନାଁରେ କୁତ୍ସା ରଟନା କରନ୍ତି । ସେମାନେ ସତରେ ଆଜି ଗଲେ କୁଆଡ଼େ ? ମଣିଷ ଜାତିର ଇତିହାସରେ ସେମାନେ ସେହି ଭାବରେ ରହିଗଲେ ।

ହଜାରେ ପ୍ରତିବନ୍ଧକ ସେ ଡେଙ୍ଗିଁ ଆସିଛନ୍ତି । ହଜାରେ ବଦନାମର ଛିଟା ତାଙ୍କ ଉପରେ ପଡ଼ିଛି । ହେଲେ ତାଙ୍କ ଭିତରେ ଯେଉଁ ବିଦ୍ୟାନୁରାଗ, ଅନ୍ତର୍ଦୃଷ୍ଟି ତଥା ସତ୍ୟାନ୍ୱେଷଣର ସାଧୁତା ରହିଛି ତା'କୁ କେହି ବିନଷ୍ଟ କରି ପାରିବନି ।

ଜୀବନରେ ସୁନାପୁଅ ହେବାର ଛଳନା ସେ କରି ନାହାନ୍ତି । ସେ କିଛି ଅଧିକ ଅନମନୀୟ ହୋଇଛନ୍ତି । ତାଙ୍କ 'ପ୍ରେମ ପ୍ରତାରଣା' ଓ 'ପ୍ରେମ ଓ ପରିତାପ' ବହି ଦିଖଣ୍ଡ ତାଙ୍କ ବ୍ୟଥା ବେଦନାର, ତାଙ୍କ ଅନ୍ୱେଷା, ତାଙ୍କ ଅଭିମାନର, ତାଙ୍କ ଅସହାୟତା, ତାଙ୍କ ଅନମନୀୟତାର ଅଭ୍ରାନ୍ତ ନିଦର୍ଶନ ।

ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ 'ପ୍ରେମ ପ୍ରତାରଣା' ବହିଟି ଯେତେବେଳେ ଓଡ଼ିଶାର ସର୍ବପ୍ରାଚୀନ ସାରସ୍ୱତ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ଶତାବ୍ଦୀ ଭବନରେ ଉନ୍ମୋଚିତ ହେଲା ସେଦିନ ମଧ୍ୟାହ୍ନ ଆସର ଓଡ଼ିଶାର ବହୁ ତରୁଣ ଓ ପ୍ରବୀଣ ସାହିତ୍ୟିକଙ୍କ ଉପସ୍ଥିତିରେ ପୂରି ଉଠିଥିଲା । ମୁଁ ଥିଲି ସେ ସଭାର ମୁଖ୍ୟବକ୍ତା । ବିଶିଷ୍ଟ କଥାଶିଳ୍ପୀ ଡକ୍ଟର ହୃଷୀକେଶ ପଣ୍ଡା, ଡକ୍ଟର କୃଷ୍ଣ ଚରଣ ବେହେରା ଥିଲେ ଯଥାକ୍ରମେ ସମ୍ମାନିତ ଅତିଥି ଓ ସଭାପତି ।

ମୋର ସ୍ପଷ୍ଟତଃ ମନେଅଛି ସେଦିନ ସଭାରେ ମୁଁ କହିଥିଲି ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ଦ୍ୱାରା ରଚିତ ତାଙ୍କ ଆତ୍ମଜୀବନୀ ମୂଳକ ଗ୍ରନ୍ଥ 'ପ୍ରେମ ପ୍ରତାରଣା' ଓଡ଼ିଶାର ସୁଦୀର୍ଘ ସାରସ୍ୱତ ପରଂପରାରେ ଏକ ଅନବଦ୍ୟ ସୃଷ୍ଟି ଏଇଥିପାଇଁ ଯେ ଏ ଗ୍ରନ୍ଥଟି ମୂଳତଃ ଏକ ଆତ୍ମସ୍ୱୀକାରୋକ୍ତି ମୂଳକ (confessional) ରଚ଼ନା ।

ଜଣେ ଏତିକି ଭୟଶୂନ୍ୟ ନହେଲେ ଏମିତି ଗ୍ରନ୍ଥର ରାମଗାର ଟାଣି ପାରିବନି । ଆପଣାର ଦୋଷ ଦୁର୍ବଳତା, ଭୋଗିଥିବା ଯାବତୀୟ ପ୍ରତାରଣା ତାଙ୍କୁ କ୍ରମଶଃ ଗୋଟେ ଏକଲା ମଣିଷ କରି ଗଢ଼ି ତୋଳିଛି ।

ପ୍ରଫେସର ଶତପଥୀଙ୍କ 'ଶୈଶବରୁ ଅବସର' ଶୀର୍ଷକ ଅତ୍ମଜୀବନୀ ପୁସ୍ତକଟି ସେହିପରି ଅଧିକରୁ ଅଧିକ କନଫେଶନାଲ । ତାହା ଅନେକ ଆତ୍ମଜୀବନୀ ଗ୍ରନ୍ଥ ପରି ଗତାନୁଗତିକ ନୁହେଁ । ସମ୍ଭବତଃ ସେ ପ୍ରଥମେ ହିଁ ଦୁଇଟି ଖଣ୍ଡିତ ଆତ୍ମଜୀବନୀ ଲେଖିଛନ୍ତି ।

ଗୋଟେ ଉତ୍ତମ ଆତ୍ମଜୀବନୀ ଗ୍ରନ୍ଥ କ'ଣ ହେବା ଉଚିତ ସେ ସଂପର୍କରେ 'ଶୈଶବରୁ ଅବସର' ଗ୍ରନ୍ଥରେ ନିଜେ ଲେଖିଛନ୍ତି: "ଜୀବନର କୌଣସି ଘଟଣାକୁ ଗୋପନୀୟ ରଖିବାରେ ମୁଁ ପକ୍ଷପାତୀ ନୁହେଁ । ତା'ହେଲେ ଆତ୍ମଜୀବନୀ କପଟାଗ୍ରର ହୋଇଯିବ । ଆତ୍ମଜୀବନୀ ପଢ଼ି ଲେଖକଙ୍କୁ ସମସ୍ତେ ଯେ ତା'ର ସତ୍ୟବାକ୍ ପାଇଁ ପ୍ରଶଂସା କରିବେ ଏପରି କୌଣସି ସିଦ୍ଧାନ୍ତ ନାହିଁ । ତେଣୁ ମୁଁ ନିନ୍ଦା ଓ ପ୍ରଶଂସା ଉଭୟକୁ ପ୍ରାଣ ଦେଇ ଆପଣାର କରିଛି । ନିନ୍ଦୁକ ମାନଙ୍କୁ ସାଧୁବାଦ ଜଣାଇଛି ।"

ସେଇଠି ସେ ପୁଣି ଲେଖିଚନ୍ତି: "ଯେଉଁ ଲେଖକମାନେ ସତ୍ୟ ପ୍ରକାଶ ପାଇଁ ଭୟଭୀତ - ମୁଁ ସେ ବର୍ଗର ଲେଖକ ନୁହେଁ । ପ୍ରଫେସର ଶତପଥୀ ନିର୍ଭୀକ ଭାବେ ତାଙ୍କ ଜୀବନରେ ଘଟିଥିବା ପ୍ରେମିଳ ଘଟଣାକୁ ପ୍ରକାଶ କରି ଦେଇଛନ୍ତି । ସାମାଜିକ ସଂହତି, ସୌନ୍ଦର୍ଯ୍ୟବୋଧ, ଶାଳୀନତା ସଂପର୍କରେ ବି ସେ ସଚେତନ ହୋଇନାହାନ୍ତି । କାରଣ ସେ ସଂକଳ୍ପବଦ୍ଧ ହୋଇଛନ୍ତି ଜୀବନଟାକୁ ସର୍ବ ସମକ୍ଷରେ ଓଜାଡ଼ି ଦେବାକୁ - ପାପ ହେଉ କି ପୁଣ୍ୟ ହେଉ ।

ତାଙ୍କ ଅଭୀପ୍ସା, ତାଙ୍କ ପ୍ରତ୍ୟାଶା ଯେତେବେଳେ ପୂରଣ ହୋଇନି ବରଂ ଅତି ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାତ ହୋଇଛି ସେତେବେଳେ ତାଙ୍କ ମନରେ ଗୋଟେ ବେସାଲିସ୍

କ୍ରୋଧ ଜାତ ହୋଇଛି । ପ୍ରଜ୍ଜ୍ୱଳିତ ଦୁର୍ବସା ଋଷିଙ୍କ କ୍ରୋଧ । ସେ ପଛେ ପାପାତ୍ମା ତାଲିକାରେ ରହନ୍ତୁ ହେଲେ ତାଙ୍କ ଜୀବନଯାତନାର ଗ୍ରନ୍ଥ ସବୁ ଖୋଲି ହୋଇ ଯାଉ ବୋଲି ସେ ଋହିଁଛନ୍ତି । ତାଙ୍କର ସମସ୍ତ ଆତ୍ମଜୀବନୀ ମୂଳକ ଗ୍ରନ୍ଥ କମ୍ ବେଶୀରେ ତା'ରି ପ୍ରତିଶ୍ରୁତି ।

ଲାଗନ୍ତି ସେ ସବୁକଥାରେ ଚରମ ପନ୍ଥୀ । ଭାରି ଶ୍ରଦ୍ଧା, ଭାରି ପ୍ରେମ ପୁଣି ବିପରୀତ ପ୍ରବାହ - ଅଶ୍ରଦ୍ଧା ଓ ଅପ୍ରେମ । ସେ ସମ୍ଭବତଃ ଜଣେ "Strong like And dislike"ର ମଣିଷ । ତାଙ୍କ ବ୍ୟକ୍ତିଗତ ଜୀବନକୁ ସେ ତାଙ୍କ ପ୍ରେମ ପ୍ରତାରଣା, ପ୍ରେମ ଓ ପରିତାପ, ଶୈଶବରୁ ଅବସରକୁ ଉଠାଇ ଆଣିଛନ୍ତି । ଯେ କୌଣସି ଲେଖାକୁ ଗୋଟେ କଳାକୃତି କରିବା ପାଇଁ ଯେଉଁ ବଛାବଛି, ଯେଉଁ ଶିଳ୍ପାୟନ ଦରକାର ହୁଏତ ଗୋଟେ ପ୍ରତିବାଦ ମୂଳକ ଉଗ୍ର ମାନସିକତାର ବଶବର୍ତ୍ତୀ ହୋଇ ସେ ଆଡ଼କୁ ସେ ଧ୍ୟାନ ଦେଇ ନାହାନ୍ତି ।

ମୋତେ ଭାରି ଭଲ ଲାଗିଲା ସେଇ ପୃଷ୍ଠା, ସେଇ ଧାଡ଼ି ଯେଉଁଠି ଲେଖକ ପ୍ରଫେସର ଶତପଥୀ ସଚ୍ଚି ରାଉତରାୟଙ୍କ ନିମ୍ନୋକ୍ତ ପଦପଂକ୍ତି ଉଦ୍ଧାରକରି ଗଭୀର ଆତ୍ମସନ୍ତୋଷ ଲାଭ କରିଛନ୍ତି ।

"ମୋ ଜୀବନ ଗନ୍ତାଘରୁ କଡ଼ାକ୍ରାନ୍ତି ଯାହା ହେଲା ବ୍ୟୟ
ଦବାଟା ହିଁ ସତ୍ୟ ଏକା ଧନ୍ୟ ହୁଏ ତା' ଯୋଗୁଁ ସଞ୍ଚୟ ।"

ପ୍ରଫେସର ଶତପଥୀ ଯୁକ୍ତି କରିଛନ୍ତି ଜଣେ ଆତ୍ମଜୀବନୀ ଲେଖକ ଆଗରେ ଜୀବନ ବଡ଼ ନା କ୍ୟାନନ୍ ବଡ଼ । ଅପେକ୍ଷାକୃତ ଦୀର୍ଘ ଉଦ୍ଧୃତି ହେଉପଛେ ମୁଁ ତାଙ୍କୁ ଉଦ୍ଧାର କରୁଛି । ସେ ଲେଖିଛନ୍ତି: "ବିଶିଷ୍ଟ ଲେଖକମାନେ ଆତ୍ମଜୀବନୀ ଲେଖିଛନ୍ତି ସେମାନେ ନିଜର ମାନବିକ ଦୋଷ ଦୁର୍ବଳତା ପ୍ରାୟ ପ୍ରକାଶ କରିନାହାନ୍ତି । ଅବଶ୍ୟ ଫକୀରମୋହନ, ଗୋଦାବରୀଶ ମିଶ୍ର ଓ ଗୋପାଳ ଚନ୍ଦ୍ର ପ୍ରହରାଜ ଏଥିରେ ବ୍ୟତିକ୍ରମ । ସେଥିପାଇଁ ସେମାନଙ୍କ ଆତ୍ମଜୀବନୀ ପାଠକ ମହଲରେ ଆଦର ଓ ଆଲୋଡ଼ନ ସୃଷ୍ଟି କରିଛି । କିନ୍ତୁ ଅଧିକାଂଶ ଆତ୍ମଜୀବନୀରେ ଲେଖକ ନିଜକୁ ସର୍ବୋତ୍‌କୃଷ୍ଟ ସଚ୍ଚୋଟ ଭାବେ ପ୍ରତିପାଦନ କରିଛନ୍ତି ଆମ ରାଜ୍ୟରେ । ସମ୍ଭବତଃ ସେମାନେ ଭାରତୀୟ ପରଂପରା ପ୍ରତି ଅଧିକ ଅନୁରାଗୀ । କିନ୍ତୁ ସମୃଦ୍ଧ ଇଂରାଜୀ ସାହିତ୍ୟରେ ଆତ୍ମଜୀବନୀ ଲେଖିବାର ଧାରା ନିଆରା ଭାବେ ପ୍ରତିପନ୍ନ ହୁଏ । ନିଜ ଜୀବନର ସ୍ଖଳନ, ବିଚ୍ୟୁତି ଓ ବୈସାଦୃଶ୍ୟକୁ ସେ ଲେଖକମାନେ ଖୁବ୍ ନିର୍ଭୀକତାର ସହିତ ପ୍ରକାଶ କରି ବିପୁଳ ପାଠକୀୟ ସଂପ୍ରୀତି ଲାଭ କରିଛନ୍ତି । ଆମ ଦେଶରେ ଜୀବନଠାରୁ ସାମାଜିକ କ୍ୟାନନ ଗୁଡ଼ିକ ଅଧିକ ଗୁରୁତ୍ୱ ବହନ କରୁଥିବାରୁ ଲେଖକମାନେ ନିଜ ଜୀବନର ଗୋପନୀୟ କଥା ପ୍ରକାଶ କରିବାକୁ ବାଧ୍ୟତଃ ଅନାଗ୍ରହୀ ମନେହୁଅନ୍ତି ।

ଜଣେ ସମର୍ଥ ଲେଖକର ବଡ଼ ଗୁଣ ହେଉଛି ତା' ଅବବୋଧ ଓ ପ୍ରତ୍ୟୟ (conviction) । ରଚ୍‌ନାର ସ୍ପଷ୍ଟତା ବା ସ୍ୱଚ୍ଛତା (clarity) ଓ ତଦ୍‌ଜନିତ 'ଫୋର୍ସ' ସେଇଥିରୁ ପ୍ରକଟିତ ହୋଇଥାଏ ।

ମୁଁ ତାଙ୍କର ଲେଖା ସବୁ ଯେତେ ପଢ଼ିଛି ହୁଏତ ସମୀକ୍ଷାର ମାନ କେଉଁଠି ଊଣା ହୋଇଛି ପଛେ ଲେଖାର ଯୌକ୍ତିକତା (Logical core) କେଉଁଠି ଅସ୍ୱଚ୍ଛ ବା ଦୁର୍ବଳ ହୋଇନି ।

ତାଙ୍କ ଲେଖାସବୁ ମୁଖ୍ୟତଃ ତଥ୍ୟନିଷ୍ଠ ଓ ବର୍ଣ୍ଣନାତ୍ମକ । ସେମିତି ଦୃଢ଼ୋକ୍ତି ମୂଳକ । ଏଇ ତିନୋଟି ଆତ୍ମଜୀବନୀ ମୂଳକ ପୁସ୍ତକ ତାଙ୍କ ନିଃସଙ୍ଗ ଜୀବନକୁ ହିଁ ଚିତ୍ରଣ କରିଛି ।

ନିଃସଙ୍ଗତାର ଯନ୍ତ୍ରଣା ଭୁଲିବା ପାଇଁ ଜଣେ ଯୌନପ୍ରେମ କରେ । ଯୌନପ୍ରେମ ଠାରୁ ଚିତ୍ତାକର୍ଷକ ବିଷୟ ଆଉ କ'ଣ ଅଛି ଦୁନିଆରେ ?

ପ୍ରଫେସର ଶତପଥୀ ଅବିକଳ ସେଇଆ ହିଁ ଲେଖିଛନ୍ତି ତାଙ୍କ 'ପ୍ରେମ ଓ ପ୍ରତାରଣା'ରେ ଏବଂ 'ପ୍ରେମ ଓ ପରିତାପ'ରେ । ସେ ଏ ଦୁଇଟି ପୁସ୍ତକକୁ ଖଣ୍ଡିତ ଆତ୍ମଜୀବନୀ ନାମରେ ନାମିତ କରିଛନ୍ତି । ତାଙ୍କ ଜୀବନର ପାଞ୍ଚ ଛ' ବର୍ଷର ଘଟଣାକୁ ନେଇ ଏ ଦୁଇଟି ବିରଚିତ ।

"ପ୍ରେମ ସେହିପରି ଏକ ଆଶ୍ରୟ ଯାହା ମୋ ଜୀବନର ନିଃସଙ୍ଗତାକୁ ପ୍ରତିହତ କରି ମୋତେ ବଞ୍ଚିବାକୁ ଦୃଢ଼ ବିଶ୍ୱାସ ଦେଇଛି । ମୁଁ ନିଃସଙ୍ଗତା ରୂପୀ ଅନ୍ଧକାର କରାଗାରରୁ ଆଲୋକ ଆଶାରେ ପଳାଇ ଯାଇଛି ସେଇମାନଙ୍କ ଉତ୍ସଙ୍ଗକୁ ଯେଉଁମାନେ ମୋ ଜୀବନରେ ଫୁଲ, ମକରନ୍ଦ ଓ ମଳୟର ଶୀତଳ ଆଶ୍ୱାସନା ଦେଇଛନ୍ତି ।"

ସେମାନେ ମହାନ ହୁଅନ୍ତୁ ବା କ୍ଷୁଦ୍ର ହୁଅନ୍ତୁ ଯେଉଁମାନେ ସ୍ନେହ ଦେଇ, ପ୍ରେମ ଦେଇ ସନ୍ତାପିତ ପ୍ରାଣକୁ ଶୀତଳ କରିଛନ୍ତି ସେମାନଙ୍କୁ ସ୍ମରଣ କରିବା, ସେମାନଙ୍କ ନାଁକୁ ଲେଖାରେ ଦରଜ କରିବାକୁ ଆତ୍ମଜୀବନୀ ଲେଖକ ଶ୍ରେୟ ମଣିଛନ୍ତି ।

ତାଙ୍କର ଏ ବହି ସବୁ ପଢ଼ିଲେ ମୋତେ ସେ ବେଶୀ ବେଶୀ ଦସ୍ତୋଭସ୍କୀୟ ଲାଗନ୍ତି । ପାପ ପୁଣ୍ୟ ମାପିବା ତରାଜୁରେ ଓଜନ ହେବା କଥା ସେ ଭୁଲି ଯାଇଛନ୍ତି ।

ଜଣେ ଯାଯାବର ପରି ତମାମ ଜୀବନ ସେ ଏଠି ସେଠି ବୁଲିଛନ୍ତି । ଜୀବନ ଥାଳ ଭରିବା ପାଇଁ ସେ ପ୍ରେମ ମାଗିଛନ୍ତି । ପ୍ରେମ ପାଇଁ ତାଙ୍କର ପ୍ରାର୍ଥନା ତାଙ୍କୁ ଅସମ୍ଭାଳ କରିଛି । ଅନୁରାଗିଣୀମାନେ ବୟସ ନିର୍ବିଶେଷରେ ତାଙ୍କୁ ପ୍ରେମଦାନ କରିଛନ୍ତି ।

ଜୀବନରେ ଏତେ ଘଟଣା, ବାଙ୍କ ବୁଲାଣି ରାସ୍ତାରେ ଚାଲିବା, ଏତେ ବିପୁଳ ଲୋକ ସଂପର୍କ, ବୃତ୍ତିଗତ ଜୀବନରେ ଏତେ କନ୍ଦଳ, ଏତେ ଲେଖାଲେଖି, ସଂପାଦନା ଭାବିହୁଏନି ତାଙ୍କ ବ୍ୟସ୍ତ ବହୁଳ କର୍ମମୟ ଜୀବନକୁ । ତାଙ୍କ ଜୀବନର ପଳାୟନ ଧର୍ମ ସତରେ ଆଉ ଗୋଟେ ଫର୍ଦ୍ଦ ।

ସୃଜନଶୀଳତା ଆଉ ସମାଲୋଚନା ଏ ଦୁଇଟାର ସୀମାନ୍ତ ପ୍ରଦେଶରେ ସେ ଥିଲେ । କବିପ୍ରାଣ ନେଇ ସେ ଅଶିଣ ଜହ୍ନ, ଚଇତାଳି ପବନ, ଶୀତରାତି ସବୁକୁ ଅନୁଭବ କରିଛନ୍ତି ଅତି ନିବିଡ଼ ଭାବେ । ସେଇମାନେ ତ ପ୍ରେମ ଖୋଜନ୍ତି, କାହାର ସ୍ନେହାଧୀନ ହେବାକୁ ଲୋଡ଼ନ୍ତି ।

ଜଣେ ବଡ଼ ଲେଖକ ଥରେ କହିଥିଲେ: ନାରୀମାନେ କାହାକୁ ଆଉ ପ୍ରାଣବନ୍ତ କରୁନାହାନ୍ତି । ସେମାନେ ପୁରୁଷଙ୍କ ଭଳି ବିଷୟ ଆଉ କ୍ଷମତା ପଛରେ ଧାଇଁଲେଣି । ଗୋଟେ ଜୀବନକୁ ମହାସଙ୍ଗୀତରେ ପରିଣତ କରିଦିଏ ପ୍ରେମ । ବେଶୀ ନାରୀକେନ୍ଦ୍ରିକ ପ୍ରେମ ।

ଜଣେ ପୁରୁଷର ନାରୀ ସଂପର୍କ ଅସ୍ୱର୍ଗୀୟ ନୁହେଁ । ଯେତେବେଳେ ଚିଦାନନ୍ଦ ନିତ୍ୟାନନ୍ଦ କପର୍ଦ୍ଦକଶୂନ୍ୟ ନିଃସମ୍ବଳ ଥିଲେ ସେତେବେଳେ ସେ ପ୍ରେମରେ ବିଭୋର ହୋଇଛନ୍ତି । ପ୍ରେମିକା ଠାରେ ଜୀବନର ସବୁ ଆବେଗ ଢାଳି ଦେଇଛନ୍ତି । ପ୍ରେମର ଆସ୍ୱାଦନ କରିଛନ୍ତି । ପ୍ରେମ ଓ ପ୍ରେମିକାକୁ ଗୌରବାନ୍ୱିତ କରିବା ପାଇଁ ସକଳ ପ୍ରକାର ଆୟୋଜନ କରିଛନ୍ତି । ତାଙ୍କର କର୍ମତତ୍ପରତା ହୁଏତ ତାଙ୍କ ପ୍ରେମିଳତାର ଏକ ଅଂଶ । ଆଉ ଯେତେବେଳେ ସେ ବିପୁଳ ଅର୍ଥ ଓ ସଂପଦର ଅଧିକାରୀ ନିଃସଂକୋଚ଼ରେ ସେ ଦରିଦ୍ର ପ୍ରେମିକାମାନଙ୍କ ଥାଳ ପୂର୍ଣ୍ଣ କରି ଦେଇଛନ୍ତି । ହଜାର ନୁହେଁ ଲକ୍ଷ ଲକ୍ଷ ମୁଦ୍ରା ଦାରିଦ୍ର୍ୟ ଘୁଞ୍ଚିବା ପାଇଁ ଦାନ କରିଦେଇଛନ୍ତି । ସେ କହନ୍ତି "ଦେବାରେ ଯେଉଁ ଆନନ୍ଦ ମିଳେ ତାହା ପାଇବାରେ ନଥାଏ ।" ପ୍ରତ୍ୟେକ ଆବେଗର ଗୋଟେ ଆରୋହଣ ଓ ନିର୍ବହଣ କ୍ରମ ଅଛି । ଏହି ପ୍ରକ୍ରିୟାରେ ପ୍ରେମ ଅପ୍ରେମରେ ପରିଣତ ହେବା ବିଚିତ୍ର ନୁହେଁ ।

ରାଜନୀତିକୁ ଯାଇ ପ୍ରଫେସର ଶତପଥୀ ଭୁଲ୍ କରିଛନ୍ତି । ଜଣେ ନିର୍ଭେଜାଲ ସଚ୍ଚା ଏକାଡେମିସିଆନ ରାଜନୀତି ପରି ନିଷ୍ଠୁର ଜଟିଳତାକୁ ଯାଆନ୍ତିନି । ଅଳ୍ପବିଦ୍ୟା, ଅଳ୍ପ ସୌଜନ୍ୟ ଅଳ୍ପଲୋକଙ୍କ ଅନୁଗ୍ରହ ଭିକ୍ଷା କରିବାକୁ ପଡ଼େ ସେ ରାଜନୀତିରେ । ଆଉ ଦିଖଣ୍ଡ ଭଲ ବହି ନ ଲେଖି ବିଚ୍ଛର ବିହୀନ ମାନଙ୍କ ପାଖକୁ ଯାଇ ପ୍ରତାରିତ ହେବା ବୋଧେ ତାଙ୍କ ଭାଗ୍ୟର ବିଡ଼ମ୍ବନା ଥିଲା ।

ମୁଁ ତାଙ୍କଠାରୁ ବୟସରେ ସାନ, ଅଭିଜ୍ଞତାରେ ସାନ, ବିଦ୍ୟା ବୁଦ୍ଧିରେ ବି ସାନ । ପ୍ରତିଭା ମାଡାମ୍ ମୋତେ ରେଭେନ୍ସାରେ କିଛିକାଳ ପାଠ ପଢ଼େଇଛନ୍ତି । ସେତେବେଳେ ରେଭେନ୍ସାରେ ଓଡ଼ିଆ ବିଭାଗର ମୁଖ୍ୟ ଥିଲେ ବିଖ୍ୟାତ ଭାଷାବିଜ୍ଞାନୀ ପ୍ରଫେସର ଗୋଲକ ବିହାରୀ ଧଳ ।

ସେ ଯାହାହେଉ ମାଡାମଙ୍କ ଯୋଗୁଁ ନିତ୍ୟାନନ୍ଦ ବାବୁ ମୋର ଗୁରୁଜନ ସ୍ଥାନୀୟ ହେଲେ । ମୁଁ କ୍ରମଶଃ ତାଙ୍କର ସ୍ନେହାଧୀନ ହୋଇ ପଡ଼ିଲି । ଗୋଟେ ଏକାନ୍ତ ବିଶ୍ୱାସନୀୟ ମୁହୂର୍ତ୍ତ ମୋତେ ତାଙ୍କ ପାଖରେ ସମର୍ପିତ କରିଦେଲା ।

ନିତ୍ୟାନନ୍ଦ ବାବୁଙ୍କ ରଚ଼ନାଶୈଳୀ ଓ ଲେଖାର ଅର୍ଥପୂର୍ଣ୍ଣ ଶବ୍ଦ ସଂଯୋଜନା ମୋତେ ଏଯାବତ୍ ମୁଗ୍ଧ କରି ଆସିଛି । ସେ ଭାଷା ପାଠକକୁ ଭସେଇ ନେବାକୁ ବାଧ୍ୟ ।

ମୋତେ ଉଦାର ଭାବରେ କ୍ଷମା କରିଦେବେ ଯଦି ମୁଁ କହିବି, ସାର୍ ଏତେଟା ମୁଖର ନ ହୋଇ, ଏତେଟା ବିଚଳିତ ନ ହୋଇ ଯଦି ଟିକିଏ ନୀରବ ହୋଇ ଯାଇଥାଆନ୍ତେ ତା'ହେଲେ ତାଙ୍କ ପ୍ରାଥମିକ ଜୀବନର ପ୍ରେମ ଓ ତା'ର ଦୀପ୍ତି ସେମିତି ଅତୁଟ ରହିଥାନ୍ତା ।

ଆମ ରାଜ୍ୟର ଯେଉଁ ସୁନ୍ଦର ଯୋଡ଼ିକୁ ଦିନେ ନାରୀ ପୁରୁଷ ନିର୍ବିଶେଷରେ କେତେକ ଈର୍ଷା କରୁଥିଲେ ସେମାନେ ପୁଣି ଦାମ୍ପତ୍ୟର ଏହି ବିଡ଼ମ୍ବନାକୁ ଉତ୍ସୁକ ହୋଇ ଶୁଣିଲେ, ଦେଖିଲେ ଓ ଜାଣିଲେ । ଏହା ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କଣ ହୋଇପାରେ ?

ମୋ ଦାମ୍ପତ୍ୟ ଶିଥିଳତା ବିଷୟରେ ପ୍ରତିଭା ମାଡାମ୍ ଦିନେ ପଚାରି ବୁଝିଛନ୍ତି ଜଣେ ସ୍ନେହଶୀଳା ଶିକ୍ଷୟିତ୍ରୀର ଅଧିକାର ନେଇ । ମୋ ପ୍ରେମିକା ପତ୍ନୀ ଚନ୍ଦ୍ରା ଉଚ୍ଚତର ଗବେଷଣା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରତିଭା ମାଡାମଙ୍କୁ ଦିଗ୍‌ଦର୍ଶିକା କରି ତାଙ୍କ ନାଁ ପଞ୍ଜୀକୃତ କରିଥିଲେ ।

ସାର୍‌ଙ୍କ ପ୍ରତି ଓ ମାଡାମଙ୍କ ପ୍ରତି କେବଳ ମୋର ନୁହେଁ ମୋ ପତ୍ନୀ, ମୋ ପୁଅବୋହୂ ସମସ୍ତଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନବୋଧ ରହିଛି । ସାର୍‌ଙ୍କ ଦୁଃଖଦ ମାନସିକ ସ୍ଥିତି ମୋତେ ଦୁଃଖିତ କରିଛି । ସାର୍‌ଙ୍କ ସ୍ନେହଉଚ୍ଛଳ ପ୍ରାଣକୁ ମୁଁ ବୁଝିପାରିଛି । ସାର୍‌ଙ୍କଠାରୁ ତାଙ୍କ ଆତ୍ମନିଷ୍ଠ ଦୁଃଖ ଓ ଅବସାଦର କଥା କେତେଥର ଶୁଣିଛି ।

ବେଳେବେଳେ ମୁଁ ଭାବେ ଆଉ ଅଭିଳାଷ ପୋଷଣ କରେ ଯେ କାଲି ପୁଣି ସୁଦିନ ଆସୁ, ସୌଭାଗ୍ୟର ମାହେନ୍ଦ୍ରବେଳା ଉପଗତ ହେଉ, ନିତ୍ୟାନନ୍ଦ ସାର୍ ଆଉ ପ୍ରତିଭା ମାଡାମ୍ ମନଭିତରେ ଟିକିଏ ବି ବୈରତା ନ ରଖି ଏକାତ୍ମ ହୋଇଯାଆନ୍ତୁ ।

ଆଜି ହଜାରେ ଦୁର୍ଭାଗ୍ୟଜନକ ସ୍ଥିତି ସତ୍ତ୍ୱେ ମୁଁ ବିଶ୍ୱାସ କରୁଛି ଯେ ଏ କର୍ଦ୍ଦମ ପୃଥିବୀ ଦିନେ ଭଲ ପାଇବାରେ, ସ୍ନେହରେ, ପ୍ରେମରେ ଈଶ୍ୱରଙ୍କ ଆବାସସ୍ଥଳୀ ହୋଇ ଉଠିବ ।

ଜଗତରୁ ଅଶ୍ରଦ୍ଧା ଅପ୍ରେମ ସବୁ ଦୂର ହୋଇଯିବ । ଏ କାଳ, ଏ ପୃଥିବୀ ପୁଣି ବଦଳିଯିବ ।

ବହୁ ସାରସ୍ୱତ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦାନ କରି ପ୍ରଫେସର ଶତପଥୀ ବର୍ଷସାରା ଗୋଟେ ବ୍ୟସ୍ତବହୁଳ ଜୀବନ ବଞ୍ଚୁଥିଲେ । ତା'ରି ଭିତରେ ତାଙ୍କ ସ୍ୱପ୍ନ ଓ ପ୍ରତ୍ୟାଶା । ଲେଖାଲେଖି - କବିତା, ଗପ ଠାରୁ ସମାଲୋଚନା ଯାଏ । କିପରି ଏହା ସମ୍ଭବ ହୁଏ ବିଶ୍ୱାସ କରି ହୁଏନି ।

ସ୍ୱପ୍ନ ପୂରଣ ନ ହୋଇ ପାରିଲେ ତ ଜଣେ ବଞ୍ଚନା ଭୋଗେ । ବଞ୍ଚନା ଜନିତ ଦୁଃଖକୁ ସେ ବାରବାର ତାଙ୍କ 'ପ୍ରେମ ଓ ପ୍ରତାରଣା' ଗ୍ରନ୍ଥରେ ଲେଖିଛନ୍ତି ।

ତାଙ୍କ ରାଜନୀତିକ ସଂଗଠନର ବହୁ ଫର୍ଦ୍ଦ ତାଙ୍କର ଏ ଆତ୍ମଜୀବନୀ 'ପ୍ରେମ ଓ ପ୍ରତାରଣା'ରେ ରହିଛି । ସବୁଠାରୁ ବେଶୀ ବଞ୍ଚନା ଭୋଗିଛନ୍ତି ଉତ୍ତର ଜୀବନରେ ଏଇ ରାଜନୀତିରେ ଯୋଗ ଦେଇ ।

ଦଳୀୟ ରାଜନୀତିରେ ଏତେ କନ୍ଦଳ ପୁଣି ଦଳୀୟ ରାଜନେତାଙ୍କ ଏତେ କପଟାଚରଣ ଜଣେ ସତରେ ଅତିଷ୍ଠ ହୋଇଯିବ ।

ଜୀବନକୁ ସବୁମତେ ଭଲପାଇବାର ସେ ଥିଲେ ଅତ୍ୟନ୍ତ ଉତ୍ସାହୀ । ତାଙ୍କପରି ଜଣେ କର୍ମଯୋଗୀଙ୍କୁ ସେହି ମାନର କେହି ସହଯାତ୍ରୀ ସହଯାତ୍ରିଣୀ ମିଳିଲେନି ।

ମୋ ଜାଣିବାରେ ଏହି 'ଶୈଶବରୁ ଅବସର' ଆଉ 'ପ୍ରେମ ଓ ପ୍ରତାରଣା' ଗ୍ରନ୍ଥରେ ସେ ଅନେକ କଥା ଲିପିବଦ୍ଧ କରି ଯାଇଛନ୍ତି । ତାଙ୍କ ବୃତ୍ତିଗତ ଜୀବନରେ ମଧ୍ୟ ସେ ନାନା ବିଡ଼ମ୍ବନା ଭୋଗିଛନ୍ତି । ସେ ସବୁ ବିଷୟରେ ମୁଁ ଭାରି ଖବର ରଖୁଥିଲି । କାରଣ ମୋ ଚାକିରୀ ଜୀବନରେ ମୁଁ ତାଙ୍କଠାରୁ ବି ବେଶୀ ଲାଂଛିତ ହୋଇଛି । ମୁଁ ତାଙ୍କ ଦୁଃଖ ବୁଝିପାରୁଥିଲି ଓ ସେହି କାରଣରୁ ବରଂ ମୁଁ ପ୍ରଫେସର ଶତପଥୀଙ୍କୁ ବେଶୀ ଭଲ ପାଉଥିଲି ।

ତାଙ୍କ ଜୀବନରେ ଏ ପ୍ରକାର ସବୁ ମର୍ମବେଦନା ତାଙ୍କୁ ଲଢୁଆ କରି ପାରୁଥିଲା । ସେ ଲଢ଼ିବାପଣରେ ଭାରି ସମର୍ଥ ଆଉ ବ୍ୟକ୍ତିତ୍ୱ ସଂପନ୍ନ ।

ଆଗାମୀ ଦିନରେ ତାଙ୍କର ଏ ଆତ୍ମଜୀବନୀ ଅନେକ ପାଠକ ପାଠିକାଙ୍କୁ ତାଙ୍କ ବିଷୟ କେବଳ ସ୍ମରଣ କରିଦେବନି ସେଥିରୁ ସେମାନେ ତାଙ୍କ ସମୟ ଓ ଚିରକାଳର ସୁଖ ଦୁଃଖ, ଜୟ ପରାଜୟକୁ ଜାଣିପାରିବେ ।

ଏ ବହି ତିନିଖଣ୍ଡ ଯଦିଓ କମ୍ ବେଶୀରେ ତାଙ୍କ ଆତ୍ମଜୀବନୀ ତଥାପି ଆମ ରାଜନୀତି ଓ ଶିକ୍ଷାୟତନର ବହୁ ଚିତ୍ର ସ୍ଥାପିତ ହୋଇଛି ।

ଏ ବହି ତିନିଖଣ୍ଡର ସାହିତ୍ୟିକ ମୂଲ୍ୟ ରହିଛି । ଆବେଗ ଢାଳିବା କେବେ ଅଯଥାରେ ଯାଏନି ।

ଶେଷରେ ଏତିକି କହିବି ତାଙ୍କ ଜୀବନର ଦୁଃଖଭୋଗ ପ୍ରତି କନିଷ୍ଠ ଭାବରେ ମୋର ନିସର୍ତ୍ତ ସମ୍ବେଦନଶୀଳତା ରହିଛି । ଓଡ଼ିଶାର ଜଣେ ବଡ଼ ଲେଖକ ତାଙ୍କର ସେମିତି ଗୋଟେ କ୍ଲାସିକ୍ ତୁଙ୍ଗିମାର କଥା ଗ୍ରନ୍ଥରେ ଲେଖିଥିଲେ : ବେଶ୍ୟା ପ୍ରୀତିରେ ହୁଏତ କିଛି ସ୍ଥିରତା ଅଛି ରାଜନୀତିରେ ନାହିଁ । ପ୍ରଫେସର ଶତପଥୀ ଅବଶିଷ୍ଟ ଜୀବନରେ ଆଉ କେବେ ରାଜନୀତିର ନାଁ ନ ଧରନ୍ତୁ ।

ପତ୍ନୀ ପରିବାର ପୁଣି କାହା ପ୍ରବୋଧିତ ପ୍ରାଣର ପୋଷକତା କରନ୍ତିନି ପ୍ରାୟ । ହୁଏତ କୋଟିକରେ ଗୋଟିଏ କେଉଁଠି ହୋଇଥିବ । ସେଥିପାଇଁ ଆଉ ଅଭିମାନ କ'ଣ ?

ସାର୍‌ଙ୍କୁ ବୁଝେଇବା ମୋର ନିର୍ବୋଧତା ବ୍ୟତୀତ ଅନ୍ୟ କିଛି ନୁହେଁ । ଜଣେ ମଣିଷ ଶୁଧୁ ଏକା ବଞ୍ଚେ । ତା'ପାଇଁ ଗୋଟିଏ ଜୀବନ ଆଉ ଗୋଟିଏ ପୃଥିବୀ । ଏକା ସେ ନିଜ ଶିଙ୍ଗରେ ମାଟି ଖୋଳେ । ନିଜ ଭାଗ୍ୟ ନିଜେ ତିଆରି କରେ । ସମଷ୍ଟିଗତ ଜୀବନ କେବଳ ସାମୟିକ । ପୁଣି ପୁଣି ବିଯୋଗିତ ଜୀବନ ।

ଆଉ ଗୋଟେ କଥା 'ପ୍ରେମ ଓ ପ୍ରତାରଣା' ବହିଟି ପଢ଼ି ମୋ ମନକୁ ଆସିଲା, ଯେ ପାପ ପୁଣ୍ୟ ବି ଜଣକର । ସେସବୁ ତା' ନିଜର । ବିକ୍ରମାଦିତ୍ୟଙ୍କ ରାଜକୀୟ ଗୁଣ ଗୌରବ ସହିତ ବୀଟପଣ ସେଇ ବିକ୍ରମାଦିତ୍ୟଙ୍କର । ଦସ୍ତୋଭସ୍କି ପୂରା ଏକଲା ବଞ୍ଚିଥିଲେ ତାଙ୍କ ସୃଜନଶୀଳତା ଭିତରେ ତ ତାଙ୍କ ପାପ ଅନମନୀୟତା ଭିତରେ ।

ପ୍ରଫେସର ଶତପଥୀ ନାନାଭାବରେ ପର ଆପଣାଙ୍କ ଦ୍ୱାରା ନିନ୍ଦିତ ହୋଇଥିଲେ ବି ନିରବଧି କାଳ ତାଙ୍କୁ ନନ୍ଦିତ କରିବ ଅବଶ୍ୟ ।

ସେ ଆଜି ତାଙ୍କ ଜୀବନକୁ ନେଇ ବଞ୍ଚିଛନ୍ତି । ତାଙ୍କ ପାଇଁ ସବୁକିଛି ଉର୍ଦ୍ଧ୍ୱରେ ଗୋଟେ ପରିଚୟ ପ୍ରତିଷ୍ଠା ତିଆରି କରିଛନ୍ତି । କାଲି ହୁଏତ ତାଙ୍କ ମରଣମୁଖୀ ଜୀବନ ଅସ୍ତ ହୋଇଯିବ । ହେଲେ ତାଙ୍କ ନୈତିକ ଅସ୍ତିତ୍ୱକୁ କେହି ମ୍ଳାନ କରି ଦେଇ ପାରିବେନି କି କେହି ଲିଭେଇ ଦେଇ ପାରିବେନି ।

ତାଙ୍କ ସୁଖ୍ୟାତି ତାଙ୍କର ଆଉ ତାଙ୍କ ଅପଖ୍ୟାତି ବି ତାଙ୍କର । ସୁଖ୍ୟାତି ତ ବୁଝି ହେଉଛି; ମାତ୍ର ତାଙ୍କ ଅପଖ୍ୟାତିକୁ ଆହୁରି ଅନ୍ତର୍ଦୃଷ୍ଟି ଦେଇ ଆହୁରି ବାସ୍ତବତା ଦୃଷ୍ଟିରୁ ପୁନର୍ସମୀକ୍ଷା କରିବାର ଆବଶ୍ୟକତାକୁ ଏଡ଼ାଇ ଦେଇ ହେବନି । କିଂତୁ ଆମ ସମାଜର ଦୃଷ୍ଟିଭଙ୍ଗୀ ସବୁବେଳେ ଏକପାଖିଆ । ବିଚାର ତେଣୁ ଭିନ୍ନ ବା ହେବ କିପରି ?

ସବା ଶେଷରେ ମୁଁ 'ପ୍ରେମ ଓ ପ୍ରତାରଣା' ପରି ଆତ୍ମଜୀବନୀ ମୂଳକ ପୁସ୍ତକଟିକୁ ପ୍ରଶଂସା କରିବି ନିଶ୍ଚୟ; ଯେଉଁଥିରେ ଉଭୟ ଗରଳ ଓ ଅମୃତର ପିଆଲା ଖୋଲି ହୋଇ ପଡ଼ିଛି ।

ଆପଣାର ଅନ୍ତର୍ଜୀବନ ଅନ୍ତର୍ମନକୁ ଗୋପନ ରଖି ଯେଉଁ ସୁନାପୁଅମାନେ ଆଜି ଆତ୍ମଜୀବନୀ ଲେଖୁଛନ୍ତି ସେଥିରେ ସତ୍ୟ ପ୍ରଖ୍ୟାପିତ ହେଉନାହିଁ ବୋଲି ତାହା ଆମକୁ ଅନୁଜ୍ଜ୍ୱଳ ଲାଗୁଛି ।

ସେ ସବୁ ରଚ଼ନା କାହାକୁ ଥରେଇ ଦେଉନି । କିଛି ପ୍ରାଣ, କିଛି ଶିହରଣ ସେଥିରୁ ମିଳୁନି । କିଛି ଅଧିକ ଆତ୍ମସ୍ୱୀକାରୋକ୍ତି ମୂଳକ ରଚ଼ନାର ଧାରାକୁ ଗ୍ରହଣ କରି ପ୍ରଫେସର ନିତ୍ୟାନନ୍ଦ ଶତପଥୀ ନୂତନ ସମ୍ଭାବନା ସୃଷ୍ଟି କରିଛନ୍ତି । ଅନେକ କଥାରେ ସେ ଏହିପରି ନୂତନ ଓ ନିଃଶଙ୍କ (dauntless) ନିଶ୍ଚୟ ।

ମୁଁ ସେଇ କନଫେସନାଲ୍ ଧାରାକୁ ମୋ ଲେଖାରେ ସ୍ଥାନିତ କରି ଜୀବନ ପ୍ରାଚୁର୍ଯ୍ୟର ନିବିଡ଼ତାକୁ ଉପଲବ୍ଧି କରି ପାରିଛି ବୋଲି ପ୍ରଫେସର ଶତପଥୀଙ୍କ ଏ ଲେଖାକୁ ଅଧିକ ଜୀବନମୟ ଓ ସତ୍ୟଶୀଳ ବୋଲି ବର୍ଣ୍ଣନା କରୁଛି । ଏଥିରେ ତେଣୁ କୌଣସି ଛଳନା ବା କପଟତା ନାହିଁ ।

■ *ଚନ୍ଦ୍ରାଲୋକ, କଳିଙ୍ଗବିହାର, ଭୁବନେଶ୍ୱର*

*ମୋ: ୮୮୯୫୧୭୯୯୪୩*

# ପ୍ରଫେସର ନିତ୍ୟାନନ୍ଦ ଶତପଥୀ : ବ୍ୟକ୍ତିତ୍ୱ ଓ କୃତିତ୍ୱ

◆ ଡକ୍ଟର ପ୍ରସନ୍ନ କୁମାର ମହାନ୍ତି

ସେଦିନର କଥା ମନେପକାଇବାକୁ ହେଲେ କାଳସ୍ରୋତର ଉଜାଣିରେ ଦୀର୍ଘ ୪୧ବର୍ଷ ପଛକୁ ଫେରିବାକୁ ହେବ । ୪୧ ବର୍ଷ ତଳେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରରେ ଯେବେ ସ୍ନାତକୋତ୍ତର ଓଡ଼ିଆ ଭାଷା ସାହିତ୍ୟ ବିଭାଗରେ ନାଁ ଲେଖା ହେଲା, ସେହିଦିନର କଥା । ସ୍ୱୟଂ ସ୍ରୋତ ଭିତରେ ରହିଥିଲେ ସ୍ରୋତର ଗତିବେଗ ସହଜରେ ଜଣାପଡ଼େ ନାହିଁ । ତେବେ ଏଭଳି ଗୋଟେ ଗୋଟେ ମୁହୂର୍ତ୍ତରେ ପଛକୁ ଫେରି ପୁରୁଣା ସ୍ମୃତି ଆଡ଼କୁ ଚାହିଁଲେ ହିଁ ଆମେ କେତେ ଶୀଘ୍ର କେତେଦୂର ଭାସିଆସିଲୁଣି ତାହା ଜଣାପଡ଼େ ।

ଏହି ଆଲେଖକୁ ଦୁଇ ଭାଗରେ ବିଭକ୍ତ କରାଯିବା ଆବଶ୍ୟକ । ଗୋଟିଏ, ଅନୁଭୂତିକୁ ଆଧାର କରି ଆଧୁନିକ ସାହିତ୍ୟର ପ୍ରଖ୍ୟାତ ସମାଲୋଚକ, ଗବେଷକ (କଥାକାର ଓ କବି ମଧ୍ୟ) ତଥା ମୋର ଶିକ୍ଷା ଓ ଦୀକ୍ଷାଗୁରୁ ପ୍ରଫେସର ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ବ୍ୟକ୍ତିତ୍ୱଗତ ସଂକ୍ଷିପ୍ତ ଆକଳନ ଏବଂ ଅନ୍ୟ ଭାଗରେ ତାଙ୍କର ସାହିତ୍ୟିକ କୃତିତ୍ୱର ଗୋଟିଏ ପ୍ରାଥମିକ ବିଭାବର ଆକଳନ ।

## - ଏକ -

୧୯୭୬ ମସିହା ଜୁଲାଇ ଅଗଷ୍ଟ ମାସରେ ବାଣୀବିହାରରେ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ମୁଁ ନାମ ଲେଖାଇଲି । ସେତେବେଳକୁ କିଛିବର୍ଷ ଧରି କବିତା ଲେଖା ଆରମ୍ଭ ହୋଇ ସାରିଥିଲା ଏବଂ 'ନବରବି', 'ଆସନ୍ତାକାଲି', 'ସହକାର', 'ସମାବେଶ', 'ପ୍ରଜାତନ୍ତ୍ର', 'ଧରିତ୍ରୀ' ପ୍ରଭୃତି ସାହିତ୍ୟ ପତ୍ରିକା ଓ ଖବରକାଗଜର ସାହିତ୍ୟ ଫର୍ଦ୍ଦରେ ମୋ କବିତା ପ୍ରକାଶ ପାଇସାରିଥିଲା । ବାଣୀବିହାର ଓଡ଼ିଆ ବିଭାଗରେ ଆମର ୧୯୭୬-୭୮ ବ୍ୟାଚ୍ ଥିଲା ଏକ ବିଶେଷଭାବେ ଉଲ୍ଲେଖଯୋଗ୍ୟ ବ୍ୟାଚ୍ । ସେ ବ୍ୟାଚ୍‌ରେ ମୋ ସହିତ ଥିଲେ କବି ହୃଷୀକେଶ ମଲ୍ଲିକ, ଶତ୍ରୁଘ୍ନ ପାଣ୍ଡବ, ପ୍ରବାସିନୀ ମହାକୁଡ଼, ହୃଦାନନ୍ଦ ପାଣିଗ୍ରାହୀ, ସୁକାନ୍ତ ମିଶ୍ର, ମିନାକ୍ଷୀ ଦେବୀ, ଜ୍ୟୋତ୍ସ୍ନା ରାଉତ, ଅଶୋକ ମହାନ୍ତି, ବିଜୟ ଚୌଧୁରୀ (କ ଓ ଖ) ପ୍ରଦୀପ୍ତ ଦାଶ, ଗୋପବଂଧୁ ମହାନ୍ତି, କୃଷ୍ଣଚନ୍ଦ୍ର ଦାଶ ପ୍ରମୁଖ ବନ୍ଧୁ । ପରବର୍ତ୍ତୀ ସମୟରେ ଏମାନେ କବି, ପ୍ରାବନ୍ଧିକ, ନାଟ୍ୟକାର ଓ ଗବେଷକ ଭାବେ ଉଲ୍ଲେଖଯୋଗ୍ୟ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ସେତେବେଳେ ବାଣୀବିହାର ଉପାଧ୍ୟୁତ୍ତର ଓଡ଼ିଆ ବିଭାଗରେ ଥିବା ସମସ୍ତ ଅଧ୍ୟାପକ ଥିଲେ ଉତ୍ସର୍ଗୀକୃତ ଓ ପ୍ରତିଭାଦୀପ୍ତ ଉଚ୍ଚକୋଟୀର ଅଧ୍ୟାପକ । ଡକ୍ଟର ବଂଶୀଧର ମହାନ୍ତି ଥାଆନ୍ତି ବିଭାଗର ପ୍ରଫେସର ଓ ମୁଖ୍ୟ । ପ୍ରାଧ୍ୟାପକ ଥାଆନ୍ତି ଡକ୍ଟର କୃଷ୍ଣଚରଣ ସାହୁ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ଡକ୍ଟର ବାସୁଦେବ ସାହୁ ଓ ଡକ୍ଟର ଆଶୁତୋଷ ପଟ୍ଟନାୟକ । ପରେ ଆସନ୍ତି ଡକ୍ଟର ବୈଷ୍ଣବ ଚରଣ ସାମଲ । ଡକ୍ଟର ସୀତାକାନ୍ତ ମହାନ୍ତି ଓ ଡକ୍ଟର ଭୀମ ଦାଶ ପତ୍ର ବିନିମୟ ବିଭାଗରୁ ଆସି ସାମୟିକ ଭାବେ କ୍ଲାସ୍ ନେଉଥାନ୍ତି । ଏ ସବୁ ଦିଗ୍‌ଗଜ ମାନଙ୍କ ଛାତ୍ରତ୍ୱ ଲାଭ କରିବାର ଥିଲା ଆମର ବିରଳ ସୌଭାଗ୍ୟ ।

ଡକ୍ଟର ନିତ୍ୟାନନ୍ଦ ଶତପଥୀ ସେତେବେଳକୁ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ପ୍ରମୁଖ ସମାଲୋଚକ, ଗବେଷକ ଓ ତଦ୍‌ବିଦ୍ ଭାବରେ ଓଡ଼ିଆ ସାହିତ୍ୟ ଜଗତରେ ପ୍ରତିଷ୍ଠା ଓ ସ୍ୱୀକୃତି ପାଇସାରିଥାନ୍ତି । ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ବହୁ ପ୍ରବୀଣ ଆଲୋଚକ ଥିଲେ ହେଁ ସେତେବେଳେ (ଏପରିକି ଏବେ ମଧ୍ୟ) ସାଂପ୍ରତିକ ଓଡ଼ିଆ ଓ ବିଶ୍ୱସାହିତ୍ୟର, ବିଶେଷତଃ କବିତାର, ଅବଗ୍ରହୀ ଦକ୍ଷ ସମାଲୋଚକ ସମଗ୍ର ରାଜ୍ୟରେ ଥାଆନ୍ତି ମୁଷ୍ଟିମେୟ । ଡକ୍ଟର ଶତପଥୀ ସେଇ ଅଙ୍ଗୁଳିମେୟ ଆଲୋଚକଙ୍କ ମଧ୍ୟରେ ସବା ଆଗଧାଡ଼ିରେ ଅତ୍ୟନ୍ତ ସାମ୍ମାନାର୍ହ ଆସନ ଅଳଙ୍କୃତ କରିଥାନ୍ତି । ଆଧୁନିକ ସାହିତ୍ୟକୁ, ବିଶେଷତଃ କାବ୍ୟିକ ମୂଲ୍ୟାୟନକୁ, ଅଗ୍ରାଧିକାର ଦେଉଥିବା ପ୍ରସିଦ୍ଧ ସାହିତ୍ୟ ପତ୍ରିକା 'ଇସ୍ତାହାର'ର ପ୍ରଥମ ଆରମ୍ଭିକ ସଂଖ୍ୟାଟି ଡକ୍ଟର ଶତପଥୀଙ୍କ ସଂପାଦନାରେ ପ୍ରକାଶ ପାଇ ତାହା ସମଗ୍ର ଓଡ଼ିଆ ସାହିତ୍ୟରେ ଚର୍ଚ୍ଚିତ ହୋଇସାରିଥାଏ ଏବଂ ତା'ପରେ ପ୍ରାୟ ଚାରି ପାଞ୍ଚବର୍ଷ ଧରି ତା'ର ଦ୍ୱିତୀୟ ସଂଖ୍ୟାଟି ଆଉ ପ୍ରକାଶ ପାଇପାରିନଥାଏ ।

ଆମମାନଙ୍କ ସହଯୋଗ ମିଳିଲେ 'ଇସ୍ତାହାର' ପୁଣି ପ୍ରକାଶ ପାଇବ ଏବଂ ଓଡ଼ିଆ ସାହିତ୍ୟରେ ଏକ ବୈପ୍ଳବିକ ଭୂମିକା ନିର୍ବାହ କରିବ ବୋଲି ଡକ୍ଟର ଶତପଥୀଙ୍କ ଘୋଷଣା ଆମମାନଙ୍କୁ ଦେଇଥିଲା ଏକ ଉଷ୍ମ ଉତ୍ସାହ ଓ ଉଦାମ ପ୍ରେରଣା । ଯୋଜନାନୁଯାୟୀ ପ୍ରତ୍ୟାଶିତ ପଦକ୍ଷେପମାନ ଗୃହୀତ ହେଲା ଏବଂ 'ଇସ୍ତାହାର'ର ଅପ୍ରତିହତ ପ୍ରକାଶନ-ଅଭିଯାନ ଅବିଳମ୍ବେ ଡକ୍ଟର ଶତପଥୀଙ୍କ ମୁଖ୍ୟ-ସଂପାଦକତ୍ୱରେ ଆରମ୍ଭ ହୋଇପାରିଥିଲା ।

ଏମ୍.ଏ. ପରୀକ୍ଷା ପାଇଁ ସ୍ୱତନ୍ତ୍ର ପତ୍ର ବା ସ୍ପେଶାଲ ପେପର୍ ନେବାର ବେଳ ଆସିଲା । ଭଲ ମାର୍କ ମିଳିବନି ଭାବି ମତର୍ଣ୍ଣ ସ୍ପେଶାଲ ପେପର ନେବାକୁ ଛାତ୍ରଛାତ୍ରୀ ଆଗ୍ରହୀ ହେଉନଥିଲେ । ଡକ୍ଟର ଶତପଥୀ 'ଆଧୁନିକ ସାହିତ୍ୟ' ସ୍ୱତନ୍ତ୍ର ପତ୍ର ନେବାପାଇଁ ବିଶେଷତଃ କବିତା ଲେଖୁଥିବା ଆମ କେତେଜଣଙ୍କୁ ପରାମର୍ଶ ଦେଲେ । ସେ କହିଲେ ଯେ ଆଧୁନିକ କବିତା ସହ ସର୍ଜନଶୀଳ ସଂପର୍କ ଆରମ୍ଭ କରିଥିବା ଆମେମାନେ ଆଧୁନିକ ବିଶେଷ ପତ୍ର ନେଲେ ଆମର ସାଂପ୍ରତିକ ସାହିତ୍ୟ ସମ୍ବନ୍ଧିତ ଅନୁସନ୍ଧାନ, ଅନୁଶୀଳନ, ଗବେଷଣା, ମନନ ଓ ମନ୍ଥନ ଆହୁରି ଗଭୀର ତଥା ପ୍ରଶସ୍ତ ହେବାର ସୁଯୋଗ ବ୍ୟାପକତର ହେବ ।

ଆଧୁନିକ ସ୍ୱତନ୍ତ୍ର ପତ୍ରରେ କମ୍ ନମ୍ବର ମିଳିବା ଏକ ଭ୍ରାନ୍ତ ଧାରଣା । ଉପଯୁକ୍ତ ଅଧ୍ୟୟନ ଓ ଅନୁଧ୍ୟାନ ସାହାଯ୍ୟରେ ପ୍ରଭାବଶାଳୀ ଉତ୍ତର ଲେଖିଲେ ଏଥିରେ ବେଶ୍ ଅଧିକ ନମ୍ବର ମିଳିବା ସୁନିଶ୍ଚିତ । ଏକ ପ୍ରତ୍ୟୟଶୀଳ ଉଚ୍ଚକୋଟୀର ଉତ୍ତର ଲାଗି ପରୀକ୍ଷାର୍ଥୀଙ୍କୁ କମ୍ ନମ୍ବର ଦେବା କୌଣସି ପରୀକ୍ଷକଙ୍କ ପକ୍ଷରେ ସମ୍ଭବ ନୁହେଁ ।

ଆଧୁନିକ ସାହିତ୍ୟର ମହାରଥୀ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କୁ ଦିଗ୍‌ଦର୍ଶକ ଭାବେ ପାଇ ଆମେ କେତେଜଣ ସହଜରେ ଭରସା ପାଇଗଲୁ ଓ ଆଧୁନିକ ସାହିତ୍ୟକୁ ଆମ ସ୍ୱତନ୍ତ୍ର ପତ୍ର ଭାବେ ଗ୍ରହଣ କଲୁ । ଅବଶ୍ୟ ଆମଭିତରୁ ହୃଦାନନ୍ଦ ଓ ସୁକାନ୍ତଙ୍କ ପରି କେତେଜଣ ଧର୍ମଧାରା ବା ଧର୍ମ-ସାହିତ୍ୟକୁ ସ୍ୱତନ୍ତ୍ର ପତ୍ରଭାବେ ଗ୍ରହଣ କଲେ ।

ଡକ୍ଟର ଶତପଥୀଙ୍କ ଠାରୁ ଏକପ୍ରକାର ପ୍ରଶିକ୍ଷଣ ଗ୍ରହଣ କରି ଆମ୍ଭମାନଙ୍କ ମଧ୍ୟରୁ ହୃଷୀକେଶ, ଶତ୍ରୁଘ୍ନ ଓ ମୋ' ସମେତ ଆଉ କେତେଜଣ କବିତାର ଆଲୋଚନା, ପ୍ରୟୋଗିକ ସମୀକ୍ଷା, କବିମାନଙ୍କ ସାମଗ୍ରିକ କୃତିର ସମାଲୋଚନା ପ୍ରଭୃତି ଲେଖିବା ଆରମ୍ଭ କଲୁ । ସେ ସବୁ ଲେଖା ମୁଖ୍ୟତଃ 'ଇସ୍ତାହାର' ସମେତ ଅନ୍ୟାନ୍ୟ ପତ୍ରିକାରେ ମଧ୍ୟ ପ୍ରକାଶିତ ହେଲା । ଆମ ଉପର ବ୍ୟାଚ୍‌ର କୁମୁଦ ଚନ୍ଦ୍ର ଦାଶ ଓ ଆଉ କେତେଜଣ ମଧ୍ୟ ଏହି ଆଧୁନିକ କାବ୍ୟାନୁଶୀଳନ ପ୍ରକ୍ରିୟାରେ ଆମ ସହିତ ଥାଆନ୍ତି । ସାର୍‌ଙ୍କ ଧର୍ମପତ୍ନୀ କବି ଡକ୍ଟର ପ୍ରତିଭା ଶତପଥୀ ସେତେବେଳେ ରମାଦେବୀ ମହିଳା ମହାବିଦ୍ୟାଳୟରେ ଅଧ୍ୟାପିକା ଥାଆନ୍ତି । ଆମକୁ ବେଳେବେଳେ ମାଡାମ୍‌ଙ୍କ ସହ କବିତା-ଚର୍ଚ୍ଚାର ତଥା ତାଙ୍କ ପରାମର୍ଶର ସୁଯୋଗ ମଧ୍ୟ ମିଳିଯାଏ । କବି ଫନୀମହାନ୍ତି ଓ କବି ନିତ୍ୟାନନ୍ଦ ପତି ସେତେବେଳେ ଯଥାକ୍ରମେ ଦର୍ଶନ ଓ ମନସ୍ତତ୍ତ୍ୱ ବିଭାଗରେ ଡକ୍ଟରାଲ୍ ଡିଗ୍ରୀ ପାଇଁ ଗବେଷଣା କରୁଥାନ୍ତି । କ୍ୟାମ୍ପସ୍‌କୁ ବେଳେବେଳେ ପୁଣି ଆସିଯାଆନ୍ତି କବି ରାଜେନ୍ଦ୍ର କିଶୋର ପଣ୍ଡା, କବି ସରୋଜ ରଞ୍ଜନ ମହାନ୍ତି, କବି ଓ କଥାକାର ଅଶୋକ ଚନ୍ଦନ, କଥାକାର ଜଗଦୀଶ ମହାନ୍ତି, କଥାକାର ଶ୍ୟାମାପ୍ରସାଦ ଚୌଧୁରୀ । ଇଂଲିଶ୍ ବିଭାଗରେ ଅଧ୍ୟାପକ ଥାଆନ୍ତି ସମାଲୋଚ୍‌କ ଯତୀନ୍ଦ୍ର ମୋହନ ମହାନ୍ତି ଓ କଥାକାର ଗଣେଶ୍ୱର ମିଶ୍ର, ଦର୍ଶନ ବିଭାଗରେ ଅଧ୍ୟାପକ ଥାଆନ୍ତି କଥାକାର କୃଷ୍ଣପ୍ରସାଦ ମିଶ୍ର । ସାହିତ୍ୟର ଆକାଶ ଆମ ମୁଣ୍ଡ ଉପରେ ଆହୁରି ତଳକୁ ନଇଁଆସେ ଓ କବିତା ମନେହୁଏ ଆସି ଆମ ହାତପାହାନ୍ତାରେ ।

ବାଣୀବିହାରରେ ପଢ଼ିବାବେଳକୁ ବଡ଼ ପତ୍ରିକା ଭିତରୁ କେବଳ 'ଝଂକାର'ରେ ଆମମାନଙ୍କ କବିତା ପ୍ରକାଶ ପାଇନଥିଲା । ବାଣୀବିହାରରେ ଯୋଗ ଦେବା ପରେ ଆଗପଛ ହୋଇ ମୋର ତଥା ହୃଷୀକେଶ, ଶତ୍ରୁଘ୍ନ, ହୃଦାନନ୍ଦ, ପ୍ରବାସିନୀ ଓ ଜ୍ୟୋସ୍ନାଙ୍କ କବିତା 'ଝଂକାର'ରେ ପ୍ରକାଶ ପାଇଲା । ଏଭଳି ସାମୂହିକ କାବ୍ୟିକ ଉନ୍ମୀଳନ ବାଣୀବିହାରର ଅନ୍ୟ କୌଣସି ବ୍ୟାଚ୍ ଓଡ଼ିଆ ବିଭାଗ ଛାତ୍ରଛାତ୍ରୀଙ୍କ ସମୟରେ ସମ୍ଭବ ହୋଇନି ।

ଆଧୁନିକ ସାହିତ୍ୟ ତତ୍ତ୍ୱର ଗଭୀର ଅନୁଧ୍ୟାନ ସହିତ ମୁଖ୍ୟତଃ ଆଧୁନିକ କବିତାର ମୌଳିକ ଅଧ୍ୟୟନ ଓ ଅନୁଶୀଳନରେ ଡକ୍ଟର ଶତପଥୀ ରହିଥାନ୍ତି ଏକାନ୍ତ ନିମଗ୍ନ, ପ୍ରତିବଦ୍ଧ, ଓ ଉତ୍ସର୍ଗୀକୃତ ।

ଗୋଟିଏ ଘଟଣା ମନେପଡ଼େ । ଏମ୍.ଏ. ଦ୍ୱିତୀୟ ବର୍ଷ ବା ଅନ୍ତିମ ବର୍ଷ ମୁଁ କ୍ୟାମ୍ପସ୍‌ରେ ରହି ପଢ଼ିବା ପାଇଁ ସିଦ୍ଧାନ୍ତ ନେଇ ହଷ୍ଟେଲ୍‌ରେ ସିଟ୍ ଲାଗି ଦରଖାସ୍ତ କଲି ଏବଂ ଦ୍ୱିତୀୟ ହଷ୍ଟେଲ୍‌ରେ ମୋତେ ଏକ ସିଙ୍ଗିଲ୍ ରୁମ୍ ମଧ୍ୟ ମିଳିଗଲା । ସେହି ସ୍ମରଣୀୟ ପ୍ରକୋଷ୍ଠଟି ହେଉଛି ଦ୍ୱିତୀୟ ଛାତ୍ରାବାସ ଦୋ'ତାଲାର ପଞ୍ଚାବନ ନମ୍ବର ପ୍ରକୋଷ୍ଠ । ନିଃସଂଗତାକୁ ମୁଁ ଭୂତ ପ୍ରେତ ପରି ଡରୁଥିଲି ଖୁବ୍ । ତ' ଜଣେ ବନ୍ଧୁଙ୍କୁ ସାଥି କରିବାକୁ ଖୋଜିଲି । ସହପାଠୀ କବିବନ୍ଧୁ ସୁକାନ୍ତ ମିଶ୍ର ତାଙ୍କର ଜଣେ ସଂପର୍କୀୟଙ୍କ ସରକାରୀ କ୍ୱାର୍ଟର୍ସରେ ରହି ବାଣୀବିହାର ପଢ଼ିବାକୁ ଆସୁଥିଲେ । ସେ ଥିଲେ ମୋର ସ୍କୁଲ୍‌ବେଳର ପ୍ରିୟ ବନ୍ଧୁ । ସୁକାନ୍ତଙ୍କୁ ହଷ୍ଟେଲ୍‌ରେ ମୋ ସହିତ ରହିବାକୁ ଡାକିଲି ଓ ସେ ଆନନ୍ଦରେ ମୋ ପାଖକୁ ଚାଲିଆସିଲେ ।

ନିୟମ ଅନୁଯାୟୀ ହଷ୍ଟେଲ୍ ମେସ୍‌ରେ ମାସକୁ ମାତ୍ର ପାଞ୍ଚୋଟି ଗେଷ୍ଟ୍ ମିଲ୍ ପଡ଼ିପାରିବ । ତେଣୁ ସୁକାନ୍ତ ସବୁଦିନ ହଷ୍ଟେଲ୍ ମେସ୍‌ରେ ଖାଇବା ସମ୍ଭବ ନଥିଲା । ମେସ୍‌ରେ ଶସ୍ତାରେ ଭଲ ଖାଇବା ମିଳୁଥିଲେ ସୁଦ୍ଧା ମୁଁ ହଷ୍ଟେଲ୍‌ରେ ଖାଇଲାବେଳେ ସୁକାନ୍ତ ଏକାକୀ ବଜାରକୁ ଯାଇ ହୋଟେଲ୍‌ରେ ଖାଇବା ମୋତେ ଭଲ ଲାଗିଲାନି । ତେଣୁ ଦୁହେଁ କ୍ୟାମ୍ପସ୍‌ର ଛୋଟ ବଜାରରେ ଥିବା ମୁଖ୍ୟତଃ ଭାଇନା ହୋଟେଲ୍ ଓ ବେଳେବେଳେ ବିରଂଚି ହୋଟେଲ୍‌ରେ ମଧ୍ୟାହ୍ନ ଭୋଜନ ଓ ରାତ୍ରିଭୋଜନ କରିବା ଆରମ୍ଭ କଲୁ ।

ଯେଉଁ ଘଟଣାଟି ଉପସ୍ଥାପନ କରିବାକୁ ଏ ପ୍ରାକ୍-ଭାଷ ଦେଲି, ସେଠାକୁ ଯାଏ ।

ଦିନେ ରାତ୍ରି ପାୟ ଦଶଟା ବେଳେ ପାଣିଟାଙ୍କି ପାଖ ଭାଇନା ହୋଟେଲ୍‌ରୁ ଖାଇସାରି ସୁକାନ୍ତ ଓ ମୁଁ ଦୁହେଁ ହଷ୍ଟେଲ୍ ଫେରୁଥିବାବେଳେ ନିଉ ଆର୍ଟସ୍ ବ୍ଲକ୍‌ର ତିନି ତାଲାରେ ଥିବା ଆମ ଡିପାର୍ଟମେଣ୍ଟ ଆଡ଼କୁ ଚାହିଁ ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ଯେ, ଡିପାର୍ଟମେଣ୍ଟରେ ଗୋଟିଏ ପ୍ରକୋଷ୍ଠରେ ଆଲୁଅ ଜଳୁଛି । କ୍ୟାମ୍ପସ୍ ଥିଲା ଶୂନ୍‌ଶାନ, ନିଃଶବ୍ଦ, ନିର୍ଜନ ଓ ବୁଡ଼ିରହିଥିଲା ଅଧା ଅନ୍ଧାରର ସମୁଦ୍ର ଭିତରେ । ମୁଁ କହିଲି- "ସୁକାନ୍ତ, ଏଇଟା ନିତ୍ୟାନନ୍ଦ ସାର୍‌ଙ୍କ ରୁମ୍ । ଚାଲ, ଯାଇ ଦେଖିବା । ସାର୍ ବୋଧେ ପଢ଼ାପଢ଼ି କରୁଛନ୍ତି !"

ସନ୍ତର୍ପଣରେ ସାର୍‌ଙ୍କ ପ୍ରକୋଷ୍ଠରେ ପହଞ୍ଚି ଦେଖିଲୁ ଯେ, ସାର୍ ଗୋଟେ ପତ୍ରିକା ଖୋଲି ଗୋଟେ ପୃଷ୍ଠା ଭିତରେ ଏକଦମ୍ ବୁଡ଼ିଯାଇଛନ୍ତି । କିଛିକ୍ଷଣ ପରେ ଆମେ ସମ୍ଭ୍ରମର ସହିତ ନିଜ ଉପସ୍ଥିତି ଜାହିର୍ କରନ୍ତେ ସାର୍‌ଙ୍କ ଧ୍ୟାନ ଭଗ୍ନ ହେଲା । ସାର୍ କିନ୍ତୁ ଆମ ମୁହଁକୁ ଦେଖି ଖୁବ୍ ଖୁସି ହୋଇଗଲେ ଓ ବସିବାକୁ କହିଲେ । ସାର୍ କହିଲେ- "ମୁଁ ରମାକାନ୍ତ ରଥଙ୍କର ଗୋଟେ ନୂଆ କବିତା ପଢୁଛି । ତୁମେ ଦିହେଁ ନିଅ, କବିତାଟାକୁ ଭଲକରି ୨/୩ଥର ପଢ଼ । ମୁଁ ଭାବୁଛି କବିତାର ଦମ୍ ଦେଇଛି xxx । ତୁମେ କ'ଣ ଭାବୁଛ କହ ।"

ସାର୍ ଆମକୁ ସାହିତ୍ୟ ଚର୍ଚ୍ଚା ବେଳେ ଖୁବ୍ ସହଜ କରିଦିଅନ୍ତି । ଆମ ସଂପର୍କକୁ ପାରଂପରିକ କଠୋର ଗୁରୁଛାତ୍ରର ରକ୍ଷଣଶୀଳ ସଂପର୍କର ଶିକୁଳିରୁ ସେ ଖୋଲି ଦେଇଥାନ୍ତି, ତ ବେଶ୍ ନିର୍ଭୟ ଓ ବନ୍ଧୁସୁଲଭ ସହଜପଣରେ ମୁକ୍ତ ଆଲୋଚନାର ସାହସ ଆମେ ପାଇଯାଉ ।

ସେଦିନ ପ୍ରାୟ ମଧ୍ୟରାତ୍ରି ପର୍ଯ୍ୟନ୍ତ ରମାକାନ୍ତ ରଥଙ୍କ ସେ କବିତାଟି ଉପରେ ଆମର ଘମାଘୋଟ ଆଲୋଚନା ହେଲା । ଏମ୍.ଏ. ଚୂଡ଼ାନ୍ତ ପରୀକ୍ଷା ପାଖ ହୋଇଯାଇଥିଲା । ଆମର ଏକ ବଢ଼ିଆ ଦୀର୍ଘ ଏକ୍‌ସଟ୍ରା କ୍ଲାସ୍ ହୋଇଗଲା । ପ୍ରକୃତରେ ରମାକାନ୍ତ ରଥଙ୍କ କବିତା ଉପରେ ସାର୍ ଏକ ଗୁରୁତ୍ୱପୂର୍ଣ୍ଣ ବଡ଼ ଆଲୋଚନା ସେତେବେଳେ ଲେଖୁଥାନ୍ତି । ସାର୍‌ଙ୍କ ସେ ଲେଖାଟି 'ଇସ୍ତାହାର' ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶ ପାଇଥିଲା ।

ଡକ୍ଟର ଶତପଥୀଙ୍କ ବ୍ୟକ୍ତିତ୍ୱର ଏକ ବିଶେଷତ୍ୱ ହେଉଛି ତାଙ୍କର ସ୍ପଷ୍ଟବାଦୀତା ଓ ନିର୍ଭୀକତା । ଅନ୍ୟ ଅନେକଙ୍କ ପରି ସେ ସାମ୍ନାରେ ଥିଲା ଲୋକ କାଳେ କ'ଣ ଭାବିବ ବୋଲି ନିଜ ପ୍ରକୃତ ମନୋଭାବକୁ ଲୁଚାଇ ରଖି କଅଁଳ କଥା କହନ୍ତିନି । ସେଥିପାଇଁ କେହି କେହି ହୁଏତ ତାଙ୍କୁ ଭୁଲ୍ ବୁଝନ୍ତି ଓ କେହି କେହି ତାଙ୍କୁ ରୁକ୍ଷ ଓ କଠୋର ବୋଲି ହୁଏତ ଆଖ୍ୟା ଦିଅନ୍ତି । ତାଙ୍କ ବିଚାର ଓ ମାନସିକତାର ପରିଚ୍ଛନ୍ନତା କାହାକୁ କାହାକୁ ହୁଏତ ଠିକ୍ ଭାବେ ଦିଶେ ନାହିଁ । କୃତ୍ରିମ ଓ ମିଥ୍ୟା ପ୍ରଶଂସା କିପରି କ୍ଷତିକାରକ ତାହା ଅନେକ ଲୋକେ ବୁଝିପାରନ୍ତି ନାହିଁ । ମୁଖା ପିନ୍ଧି ଛଳନା କରିବା ବା ଭିତରେ ଅନାତ୍ମୀୟ ଭାବ ରଖି ବାହାରେ ପ୍ରେମାଭିନୟ କରିବା ଲୋକଙ୍କୁ ଏ ଯୁଗର ଅଧିକାଂଶ କ୍ଷେତ୍ରରେ ଗଦ୍‌ଗଦ୍ ହୋଇ ଗ୍ରହଣ କରିନିଆଯାଏ । କିନ୍ତୁ ସ୍ପଷ୍ଟବାଦୀ ଭଦ୍ରଲୋକଙ୍କୁ ନକାରାତ୍ମକ ନମ୍ବର ମିଳେ । ଏହାହିଁ ଏ ଯୁଗର ବିଡ଼ମ୍ବନା ।

ଗୁରୁ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସମ୍ଭ୍ରାନ୍ତ ବ୍ୟକ୍ତିତ୍ୱ, ନିବିଡ଼ ଗବେଷଣାତ୍ମକ ନିରପେକ୍ଷ ଦୃଷ୍ଟିଭଂଗୀ, ସାହସିକ ସତ୍ୟବଦ୍ଧତା, ଗଭୀର ସାରସ୍ୱତ ପ୍ରତିବଦ୍ଧତା ଓ ଶାଣିତ ଅନୁସନ୍ଧିତ୍ସା ଆମକୁ ଯେଉଁ ପ୍ରେରଣା ଓ ମାର୍ଗ ଦର୍ଶନ ଦେଇଛି ସେ ଋଣ ଆଜୀବନ ଅପରିଶୋଧ୍ୟ ।

- ଦୁଇ -

ଆଲେଖ୍ୟର ଏହି ଦ୍ୱିତୀୟ ଭାଗରେ ମୁଁ ଡକ୍ଟର ଶତପଥୀଙ୍କ କେବଳ ଗୋଟିଏ ଗ୍ରନ୍ଥ 'କବିତା ଯୁଗେ ଯୁଗେ'ର ମହାର୍ଘତା ଓ ମୌଳିକତାକୁ ବିଚାରକୁ ନେଉଛି ।

ଆମେ ବାଣୀବିହାରରେ ନାମ ଲେଖାଇଲା ବେଳକୁ, ଯାହା ପୂର୍ବେ ସୂଚାଇଛି, ଡକ୍ଟର ଶତପଥୀ ଆଧୁନିକ ସାହିତ୍ୟ, ବିଶେଷତଃ ଚଳନ୍ତି ଓଡ଼ିଆ କବିତାର ଜଣେ ସର୍ବମାନ୍ୟ

ଶ୍ରେଷ୍ଠ ସମାଲୋଚକର ମର୍ଯ୍ୟାଦାମଣ୍ଡିତ ହୋଇ ସାରିଥାନ୍ତି, ଯଦିଓ ବୟସ ଦୃଷ୍ଟିରୁ ସେତେବେଳକୁ ସେ ଯୁବକ । ପୁଣି ସେତେବେଳକୁ ତାଙ୍କର କେବଳ ଗୋଟିଏ ମାତ୍ର ସାହିତ୍ୟ ସମାଲୋଚନା ଗ୍ରନ୍ଥ 'କବିତା ଯୁଗେ ଯୁଗେ' ପ୍ରକାଶ ପାଇଥାଏ । କିନ୍ତୁ 'ଝଂକାର', 'କୋଣାର୍କ', 'ନବରବି' ପ୍ରଭୃତି ପତ୍ରିକାରେ କବିତା ଉପରେ ଉଚ୍ଚକୋଟୀର ଆଲୋଚନାମାନ ପ୍ରକାଶ ପାଇ ସେ ଜଣେ ବିଚକ୍ଷଣ ସମାଲୋଚକର ସ୍ୱୀକୃତି ପାଇସାରିଥାନ୍ତି ।

ଡକ୍ଟର ଶତପଥୀଙ୍କ ପ୍ରଥମ ପ୍ରକାଶିତ ଗ୍ରନ୍ଥ ହେଉଛି- ଉତ୍କଳମଣି ଗୋପବନ୍ଧୁଙ୍କ ଚର୍ଚ୍ଚିତ ଜୀବନୀ 'ହେ ସାଥି, ହେ ସାରଥି' (୧୯୬୯) ଏବଂ ଦ୍ୱିତୀୟ ପ୍ରକାଶିତ ଗ୍ରନ୍ଥ ଏଠାରେ ଆଲୋଚ୍ୟ ସମାଲୋଚନା ସଂକଳନ 'କବିତା ଯୁଗେ ଯୁଗେ' (୧୯୭୪) । 'କବିତା ଯୁଗେ ଯୁଗେ' ତାଙ୍କର ପ୍ରଥମ ଆଲୋଚନା ଗ୍ରନ୍ଥ ହେଲେହେଁ ଏହା ତାଙ୍କର ଅନ୍ୟତମ ଶ୍ରେଷ୍ଠ ସାହିତ୍ୟ ସମାଲୋଚନା ପୁସ୍ତକ । ଏହି ଗ୍ରନ୍ଥରେ ସମାଲୋଚକ ଭାବେ ଡକ୍ଟର ଶତପଥୀଙ୍କର ଯେଉଁ ମନନଶୀଳ ବୈଶିଷ୍ଟ୍ୟ ଓ ମୌଳିକତା ପ୍ରତିଫଳିତ ହୋଇଥିଲା ତାହାର ଏକ ନିଷ୍କର୍ଷ ମୂଳକ ବ୍ୟବଛେଦ କରାଯାଇପାରେ ।

'କବିତା ଯୁଗେ ଯୁଗେ' ପରେ ଡକ୍ଟର ଶତପଥୀଙ୍କର ଆଧୁନିକ କବିତା ଆଧାରିତ ଅନେକ ଚର୍ଚ୍ଚିତ ଓ ଗୁରୁତ୍ୱପୂର୍ଣ୍ଣ ଗବେଷଣାତ୍ମକ ଗ୍ରନ୍ଥ ପ୍ରକାଶ ପାଇଛି । ସେଗୁଡ଼ିକ ମଧ୍ୟରେ ରହିଛି 'ଆଧୁନିକ ଓଡ଼ିଆ ସାହିତ୍ୟ', 'ସବୁଜରୁ ସାଂପ୍ରତିକ', 'ପ୍ରମୁଖ କବି କତିପୟ', 'ସତୁରୀରୁ ସହସ୍ରାବ୍ଦୀ', 'ଚଳିତ ଶତାବ୍ଦୀର ଓଡ଼ିଆ କବିତା', 'କାବ୍ୟପ୍ରକରଣ', 'କବିତା-ସେତୁ' ପ୍ରଭୃତି । ମାତ୍ର 'କବିତା ଯୁଗେ ଯୁଗେ' ପୁସ୍ତକରୁ ତାଙ୍କ କାବ୍ୟଜିଜ୍ଞାସା ଓ କାବ୍ୟାନୁଶୀଳନର ବୈଶିଷ୍ଟ୍ୟ ଓ ନିଆରାପଣର ଦୃଢ଼ ଭିତ୍ତି ଓ ଭୂତି ସ୍ଥାପିତ ହୋଇଥିଲା ବୋଲି କୁହାଯାଇପାରେ ।

ସ୍ୱାଧୀନତା ପରବର୍ତ୍ତୀ କାଳର ଓଡ଼ିଆ କବିତା କଳାତ୍ମକ ଉଜ୍ଜ୍ୱଳତା ସହିତ ବରଂ ଅଧିକତରଭାବେ ଏକ କୁହେଳିକାଚ୍ଛନ୍ନ ଅସ୍ପଷ୍ଟତା ଓ ଦୋଦୁଲ୍ୟମାନତାର ପରିବେଶ ସୃଷ୍ଟି କରିଥିଲା ବୋଲି କୁହାଯାଇପାରେ । ଏହି ସନ୍ଦିଗ୍ଧ ଓ ଅସ୍ପଷ୍ଟ କାବ୍ୟ-ଭୂମିର ଯଥାର୍ଥ ଓ ନିର୍ଭୀକ ସମାଲୋଚନା ଥିଲା ସେ ସମୟର ଏକ ଜରୁରୀ ସାରସ୍ୱତ ଆବଶ୍ୟକତା । କିନ୍ତୁ ଏହି ଆବଶ୍ୟକତାର ପରିପୂର୍ଣ୍ଣତା ପାଇଁ ଦକ୍ଷ ଲେଖନୀର ଅଯଥେଷ୍ଟତା ଜଳ ଜଳ ହୋଇ ଦିଶୁଥିଲା । ସମାଲୋଚକୀୟ ଆପାତ-ଦୈନ୍ୟର ଏଭଳି ଏକ ଅଭାବ-ପୀଡ଼ିତ ଓ ସ୍ପର୍ଶକାତର ମୁହୂର୍ତ୍ତରେ ହିଁ ଓଡ଼ିଆ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ଡକ୍ଟର ଶତପଥୀଙ୍କ ଆବିର୍ଭାବ ହୁଏ ।

ଗଭୀର ଅଧ୍ୟୟନ ଓ ମୌଳିକ ଅନୁଶୀଳନ ପୁଷ୍ଟ ତାଙ୍କ ସମାଲୋଚନାର ନୀତି ଆଦର୍ଶ ବ୍ୟକ୍ତିକୈନ୍ଦ୍ରିକ ବା Subjective ନୁହେଁ, ତାହା ହେଉଛି ସଂପୂର୍ଣ୍ଣଭାବେ ବସ୍ତୁକୈନ୍ଦ୍ରିକ

ବା Objective । କବିତାର ଆଲୋଚନାରେ ତାଙ୍କ ସମ୍ମୁଖରେ ସଂପୃକ୍ତ କବିତାର ସ୍ରଷ୍ଟା ନୁହନ୍ତି, ସୁଦ୍ଧୁ ପ୍ରତ୍ୟକ୍ଷ କବିତାଟି ହିଁ ଥାଏ ବିଚାର୍ଯ୍ୟବସ୍ତୁ । ପ୍ରସିଦ୍ଧ କବି ଓ ସମାଲୋଚକ T.S.Eliot ଙ୍କ ଭାଷାରେ- "Honest Criticism and sensible appreciation is directed not upon the poet, but upon the poetry." ଡକ୍ଟର ଶତପଥୀଙ୍କ ନୀତି ଓ ଆଦର୍ଶରେ ମଧ୍ଯ ଏହାହିଁ ରହି ଆସିଛି । ଡକ୍ଟର ଶତପଥୀଙ୍କ ଭାଷାରେ- "ମୁଁ ଗତାନୁଗତିକ ରୀତିରେ ସମାଲୋଚନା ଲେଖିବାରେ ହାତ ଦେଇ ନାହିଁ, କିମ୍ବା ସମାଲୋଚନା ଲେଖିଲାବେଳେ ଭାବସଂବେଗ ତଥା ପରିଚିତ ବଂଧୁବାଂଧବ ବିଚାର କରିନାହିଁ ।" ('ଦେହଳୀ' - କବିତା ଯୁଗେ ଯୁଗେ)

'ଦେହଳୀ' ଶୀର୍ଷକ ଏହି ଗ୍ରନ୍ଥର ମୁଖବନ୍ଧ ମଧ୍ଯ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଉଚ୍ଚାରଣ । ମାତ୍ର ତିନି ପୃଷ୍ଠାରେ ଏହି ବକ୍ତବ୍ୟଟିକୁ ପୁସ୍ତକର ୧୬ଟି ଉଚ୍ଚକୋଟୀର ଆଲୋଚନା ସହ ଯୋଡ଼ି ୧୭ତମ ନିବନ୍ଧ ଭାବେ ମୁଁ ଗ୍ରହଣ କରିବାକୁ ଚାହିଁବି । ଏଥିରେ ଡ. ଶତପଥୀ କାବ୍ୟିକ ମୂଲ୍ୟାୟନ କ୍ଷେତ୍ରରେ ତାଙ୍କର ବିଚାର ଓ ଆଭିମୁଖ୍ୟକୁ ସ୍ପଷ୍ଟ କରିଦେଇଛନ୍ତି ।

ଏଥିରେ ଗୋଟିଏ ଉକ୍ତି ବେଶ୍ ପ୍ରଣିଧାନଯୋଗ୍ୟ- "ଆଧୁନିକ କବିତା ଉପରେ ଆଲୋଚନା ଅର୍ଥ ହାଣ କୁରାଢ଼ିକୁ ବେକକୁ ନେବା । ସହଜେ ତ କବି ମାତ୍ରେଇ ଚାହାନ୍ତି ତାଙ୍କ କବିତା ଉପରେ କିଛି ଉଚ୍ଛ୍ୱସିତ ପ୍ରଶଂସା ପ୍ରକାଶ ପାଉ । ଟିକିଏ ସତ କଥା ଲେଖିଲେ ଅଭିମାନୀ କବି ସହନଶୀଳତାର ସମସ୍ତ ଦରଜାକୁ ନିବୁଜ୍ କରିଦିଏ । ××× ତଥାପି ସମାଲୋଚନାର ମୂଳଧର୍ମ ହେଉଛି ନିରପେକ୍ଷ ବିଶ୍ୱସ୍ତତା । ସେ ଦିଗରୁ ମୁଁ ମୋ ସମସାମୟିକ ବହୁ କବିଙ୍କୁ ହୁଏତ ଆହତ କରିଛି- ଏପରିକି ଗୋଟିଏ ଗୋଟିଏ ସମାଲୋଚନା ପ୍ରକାଶ ପାଇବାରେ ବଂଧୁତା ବି ହରାଇବାକୁ ହୋଇଛି । ××× ମୋ ଆଗରେ ରହିଛି ଅଗଣିତ ପାଠକଙ୍କ ପାଇଁ ଏକ ଗୁରୁ ଦାୟିତ୍ୱବୋଧ ।" ('ଦେହଳୀ' - କବିତା ଯୁଗେ ଯୁଗେ)

ଶଂସିତ ଗ୍ରନ୍ଥରେ ଆଦିଯୁଗର ସାରଳା ସାହିତ୍ୟଠାରୁ ଆରମ୍ଭ କରି ୧୯୭୦ ମସିହାରେ ସମକାଳୀନ ଓଡ଼ିଆ କବିତା ପର୍ଯ୍ୟନ୍ତ ପ୍ରସଂଗ ଗର୍ଭିତ ହୋଇଛି ଏବଂ ସମସ୍ତ ପ୍ରସଂଗରେ ଲେଖକଙ୍କର ଅପାରଂପରିକ ନିଜସ୍ୱ ମୌଳିକତାର ରହିଛି ଉଜ୍ଜ୍ୱଳ ସ୍ପର୍ଶ । ବୈଷ୍ଣବ ସାହିତ୍ୟରୁ ଗତାନୁଗତିକ ଭାବେ ତତ୍ତ୍ୱ ନ ଖୋଜି ସେ ଚିରନ୍ତନ ପ୍ରେମିକା ରାଧାଙ୍କୁ ଲୌକିକ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । ଡ. ଶତପଥୀଙ୍କ ଏହି ଗ୍ରନ୍ଥ ପ୍ରକାଶ ପାଇବାର ଅନେକବର୍ଷ ପରେ (୧୧ ବର୍ଷ) ଶ୍ରୀରାଧାଙ୍କର ଏହି ଅସାଧାରଣ ଲୌକିକ ଅଥଚ୍ ଚିରନ୍ତନ ଓ ଅଭାବିତ ପ୍ରେମାନୁଭବ ଆଧାରିତ କବି ରମାକାନ୍ତ ରଥଙ୍କ ପ୍ରସିଦ୍ଧ ଦୀର୍ଘ କବିତା 'ଶ୍ରୀରାଧା' ପ୍ରକାଶିତ ହୋଇଥିଲା ।

ପଣ୍ଡିତ ନୀଳକଣ୍ଠଙ୍କ କାବ୍ୟ କବିତାରୁ ଡ. ଶତପଥୀ ପାଣ୍ଡିତ୍ୟ ନ ଖୋଜି ତାଙ୍କ କାବ୍ୟ-ମାନସର ଦ୍ୱନ୍ଦ୍ୱ ଉପରେ ହିଁ ଦୃଷ୍ଟି କେନ୍ଦ୍ରୀଭୂତ କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କୁ କବ

ସମ୍ରାଟ ଭାବେ ଗ୍ରହଣ ନ କରି ବଳିଷ୍ଠ ଯୁକ୍ତି ଓ କାରଣ ସହିତ ତାଙ୍କୁ 'ସଂଗୀତ ସମ୍ରାଟ' ଭାବେ ସମ୍ମାନ ଦେବାକୁ ଡ. ଶତପଥୀ ଚାହିଁଛନ୍ତି । ଏଭଳି ମୌଳିକ ମନନଶୀଳତା ଜଣେ ବୟୋଜ୍ୟେଷ୍ଠ ପ୍ରବୀଣ ପ୍ରଫେସରଙ୍କର ବୋଲି ମନେହେବା ସ୍ୱାଭାବିକ, ମାତ୍ର ଏହା ଆଶ୍ଚର୍ଯ୍ୟ କରେ ଯେ ଏହି ଗ୍ରନ୍ଥର ଅତ୍ୟନ୍ତ ମୌଳିକ ଓ ଉଚ୍ଚକୋଟୀର ଆଲୋଚନାଗୁଡ଼ିକ ଲେଖିଲାବେଳେ ଡ. ଶତପଥୀଙ୍କ ବୟସ ଥିଲା ମାତ୍ର ୩୪-୩୫ ବର୍ଷର ଆଖପାଖରେ । 'ଝଂକାର', 'କୋଣାର୍କ', 'ନବରବି', 'ସମାଜ' ପ୍ରଭୃତି ପତ୍ରପତ୍ରିକାରେ ପ୍ରଥମେ ପ୍ରକାଶିତ ହେବା ପରେ ହିଁ ସେଗୁଡ଼ିକ ୧୯୭୪ ମସିହାରେ ସଂକଳିତ ହୋଇ ଗ୍ରନ୍ଥାୟିତ ହୋଇଛନ୍ତି ।

ଡ. ଶତପଥୀ ନିଜର ସାଂପ୍ରତିକ କବିତାର ପଠନାନୁଭୂତି ଉପ୍ରୋଧହୀନ ସ୍ପଷ୍ଟତାର ସହ ପ୍ରକାଶ କରି କହନ୍ତି- "ମୁଁ ନୈରାଶ୍ୟର ସହିତ ସେମାନଙ୍କ କବିତାକୁ ପଢ଼ି ଏତିକି ବୁଝିଚି ଯେ ଖରାଦିନର ନୂଆ କଅଁଳିଆ ଚଂପାଗଛ ପରି ଏ କବିତାଗୁଡ଼ିକ ଶୁଖି ନିଃଶେଷ ହୋଇଯାଉଛି ।" ଯେ କୌଣସି ପ୍ରକାରର ଖଣ୍ଡବାକ୍ୟ ସମୂହର ଏକ ଆଳଂବ ଶାବ୍ଦିକ ସମାଗମ ମାତ୍ର ଯେ ଉଚ୍ଚକୋଟୀର କବିତା ହୋଇ ନପାରେ - ଏହା ନିର୍ଭୀକ ଭାବରେ ପ୍ରକାଶ କରି ସାଂପ୍ରତିକ କବିଗଣଙ୍କ ସମ୍ମୁଖରେ ଏକ ଉଚ୍ଚତର ଲକ୍ଷ୍ୟସ୍ଥଳକୁ ସେ ଅଂଗୁଳି ନିର୍ଦ୍ଦେଶ କରିଥିଲେ । 'ଦେହଳୀ'ରେ ଶେଷତଃ ସେ ତାଙ୍କ ନିଷ୍କର୍ଷର ସାରାଂଶ ପ୍ରକାଶ କରିଥିଲେ ଏହିପରି ଭାବେ- "ଅଂତତଃ ଯେଉଁ କବିତାଗୁଡ଼ିକ ସଂପୂର୍ଣ୍ଣ ଅର୍ଥହୀନ ଓ ଅସଂଗତ, ସେଗୁଡ଼ିକ ସଂପର୍କରେ ସମାଲୋଚକ ରୋକ୍‌ଠୋକ୍ ମତାମତ ବ୍ୟକ୍ତ କରଂତୁ ଏବଂ ସଂପାଦକମାନେ ମଧ୍ୟ ସଚେତନ ହୁଅଂତୁ - ତାହେଲେ ଅବସ୍ଥା ନିଶ୍ଚୟ ସୁଧୁରିଯିବ ।" ଡ. ଶତପଥୀଙ୍କ ଏହି ସତର୍କବାଣୀ ଓ ପରାମର୍ଶ ଉତ୍ତର ଅଶୀଦଶକ ଓଡ଼ିଆ କବିତାର ସ୍ୱାସ୍ଥ୍ୟଗତ ପରିବର୍ତ୍ତନରେ ଯେ ସହାୟକ ହୋଇଥିଲା ଏହା କଳନା କରିବା ଅଯଥାର୍ଥ ହେବନାହିଁ ।

ତିନିହଜାର ବର୍ଷ ତଳର ଏକ ପୌରାଣିକ କାବ୍ୟକୁ ଓଡ଼ିଆ ଭାଷାରେ ଲେଖିଲାବେଳେ ସାରଳା ଦାସ ସେଥିରେ ନିଜର ସମକାଳୀନ ସମାଜର ଚିତ୍ର ଓ ଚରିତ୍ରକୁ ଯେଭଳି ସଫଳଭାବେ ପ୍ରତିଫଳିତ କରିଛନ୍ତି ତାହାକୁ ଡ. ଶତପଥୀ "ସାରଳା ସାହିତ୍ୟର ବିଚିତ୍ର ବିଭୂତି" ଶୀର୍ଷକ ଆଲୋଚନାରେ ଭୂୟସୀ ପ୍ରଶଂସା କରିଛନ୍ତି । ଭୀମ, ଦ୍ରୌପଦୀ, ଗଂଗା, ଯୁଧିଷ୍ଠିର, ଶ୍ରୀକୃଷ୍ଣ, ଭୀଷ୍ମ ପ୍ରଭୃତି ଚରିତ୍ରଙ୍କ ଅତିମାନୁଷିକ କାରବାର ସତ୍ତ୍ୱେ ସେମାନଙ୍କ ମଧ୍ୟରେ ଯେଉଁ ଲୌକିକ ବାସ୍ତବତା ସାରଳାଦାସ ଆରୋପିତ କରିଛନ୍ତି ସେଥିରୁ ଜୀବନର ବିଚିତ୍ର ରହସ୍ୟକୁ ଉଦ୍‌ଘାଟନ କରିବାରେ ତାଙ୍କର ଆନ୍ତରିକତା ସ୍ପଷ୍ଟ ବୋଲି ଡ. ଶତପଥୀ କହିଛନ୍ତି ।

'ଚିରଂତନ ପ୍ରେମିକା ରାଧା' ଶୀର୍ଷକ ପ୍ରବନ୍ଧରେ ଡ. ଶତପଥୀ ରାଧାଙ୍କୁ ପାରଂପରିକ ଭାବେ ବୈଷ୍ଣବ ସାହିତ୍ୟର ତତ୍ତ୍ୱଦର୍ଶୀ ସମାଲୋଚକଙ୍କ ପଦାଙ୍କ ଅନୁସରଣ କରି ଦେବୀ

ବା ଆଦ୍ୟାଶକ୍ତି ଭାବରେ ଦେଖିନାହାନ୍ତି । ରାଧାକୃଷ୍ଣଙ୍କୁ 'ଅପ୍ରାକୃତ ପ୍ରେମମୂର୍ତ୍ତି' ଭାବରେ ନଦେଖି ସେମାନଙ୍କ ପ୍ରେମରେ ଲୌକିକ ପ୍ରେମର ଅସାଧାରଣତ୍ୱ ଲକ୍ଷ୍ୟ କରିଛନ୍ତି ।

ଜାତିପ୍ରାଣ ଉତ୍କଳମଣି ଗୋପବନ୍ଧୁଙ୍କର ଓଡ଼ିଆ ଜାତିର ଅସ୍ମିତା, ସ୍ୱାଭିମାନ ତଥା ମାନବିକତା ଓ ନୈତିକ ଆଦର୍ଶର ଉତ୍ତରଣ ଲାଗି ଯେଉଁ ଐତିହାସିକ ଅବଦାନ, ତା'ର ଉଚ୍ଛ୍ୱସିତ ଚର୍ଚ୍ଚା କରିଛନ୍ତି ଡ. ଶତପଥୀ । ବସ୍ତୁତଃ, 'ହେ ସାଥି ହେ ସାରଥି' ଶୀର୍ଷକ ତାଙ୍କ ଲିଖିତ ଗୋପବନ୍ଧୁଙ୍କ ଅନନ୍ୟ ଜୀବନୀ ଗ୍ରନ୍ଥ ତାଙ୍କୁ ଅଗ୍ରଗଣ୍ୟ ଗୋପବନ୍ଧୁ-ଗବେଷକର ପରିଚିତି ପ୍ରଦାନ କରିଛି । ଆଲୋଚ୍ୟ 'କବିତା ଯୁଗେ ଯୁଗେ'ରେ ସ୍ଥାନିତ ଜାତିପ୍ରାଣରେ ପ୍ରାଣବନ୍ତ, ଉଷ୍ମ ଓ ଉଜ୍ଜ୍ୱଳ ଗୋପବନ୍ଧୁ-ସାହିତ୍ୟର ଆଲୋଚନାତ୍ମକ ନିବନ୍ଧଟିର ଶୀର୍ଷକ ଡ. ଶତପଥୀ ରଖିଛନ୍ତି "ଗୋପବନ୍ଧୁ : ଏକ ଜାତୀୟ ଅଧ୍ୟାୟ" । ଏହି ଶୀର୍ଷକ ହିଁ ଆଲୋଚକଙ୍କ ଗୋପବନ୍ଧୁ - ଦୃଷ୍ଟିର ପ୍ରକୃଷ୍ଟ ପରିଚୟ ବହନ କରେ ।

ଗ୍ରନ୍ଥର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ନିବନ୍ଧ ହେଉଛି "ଆଧୁନିକ ଓଡ଼ିଆ କବିତା : ଇତିହାସ ଓ ଆଭିମୁଖ୍ୟ" । ଏଥିରେ ଡ. ଶତପଥୀ ଊନବିଂଶ ଶତାବ୍ଦୀର ରୋମାଣ୍ଟିକ୍ ଓ ଆଦର୍ଶବାଦୀ କାବ୍ୟଧାରାର ଗତି ପରିବର୍ତ୍ତନର ମୁଖ୍ୟ କାରଣ ଓ ପୃଷ୍ଠଭୂମିର ବାସ୍ତବତାଭିତ୍ତିକ ମନନଶୀଳ ଆଲୋଚନା କରିଛନ୍ତି । କାର୍ଲମାର୍କସ୍‌ଙ୍କ ସମାଜ-ରାଜନୀତିକ ଦର୍ଶନ, ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ଏବଂ ସିଗ୍‌ମଣ୍ଡ୍ ଫ୍ରୟଡ଼ଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ସମଗ୍ର ପୃଥିବୀରେ ସାଧାରଣ ଜନତାଠାରୁ ଆରମ୍ଭ କରି ବୌଦ୍ଧିକ ଜଗତରେ କିପରି ଆଲୋଡ଼ନ ସୃଷ୍ଟି କରିଥିଲା ଓ ବିଂଶ ଶତାବ୍ଦୀର କବିତାରେ ତାହାର କିପରି ପ୍ରଭାବଶାଳୀ ପ୍ରତିଫଳନ ଘଟିଥିଲା, ସେ ସଂପର୍କରେ ଡ. ଶତପଥୀ ଉଚ୍ଚକୋଟୀର ବ୍ୟବଚ୍ଛେଦ କରିଛନ୍ତି । ୱାଲ୍‌ଟ୍ ହ୍ୱିଟ୍‌ମ୍ୟାନ୍, ଲୁଇ ଆରାଁ, ଟି.ଏସ୍.ଏଲିଅଟ୍, ଏଜରା ପାଉଣ୍ଡ୍, ଭ୍ଲାଦିମ୍‌ର ମାୟାକୋଭସ୍କି, ଟି.ଇ.ହ୍ୟୁମ୍ ପ୍ରଭୃତି ବିଦେଶୀ କବିଙ୍କଠାରୁ ଆରମ୍ଭକରି ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ପ୍ରଭୃତି ଓଡ଼ିଆ କବିଙ୍କ କବିତାରେ ଏହି ନୂତନ ପରିବର୍ତ୍ତିତ ସ୍ଥିତିର ପ୍ରତିଫଳନର ସେ ବଳିଷ୍ଠ ତର୍ଜମା କରିଛନ୍ତି ।

ସମାଲୋଚନାର ଭାଷା ଆବେଗ, ଅତିରଂଜନ, ବର୍ଣ୍ଣନାବର୍ଜିତ ଏକ ଅନାସକ୍ତ, ତତ୍ତ୍ୱନିଷ୍ଠ, ପ୍ରତ୍ୟକ୍ଷ ଓ ଗାଂଭୀର୍ଯ୍ୟପୂର୍ଣ୍ଣ ଭାଷା । ଡ. ଶତପଥୀ ଏକ ସମ୍ଭ୍ରାନ୍ତ ଭାଷା ବ୍ୟବହାରରେ ତାଙ୍କର ଧୂରୀଣତାର ନିରବଚ୍ଛିନ୍ନ ପ୍ରମାଣ ଦିଅନ୍ତି ।

'ସାହିତ୍ୟରେ ପ୍ରତୀକବାଦ' ହେଉଛି ଆଲୋଚ୍ୟ ଗ୍ରନ୍ଥର ଅନ୍ୟତମ ତାତ୍ପର୍ଯ୍ୟପୂର୍ଣ୍ଣ ନିବନ୍ଧ । କବିତାରେ ପ୍ରତୀକ ବ୍ୟବହାରର ପୃଷ୍ଠଭୂମି ଏବଂ ଏକ ଆଂଗିକ ଉପାଦାନ ଭାବେ ଏହାର ଗୁରୁତ୍ୱ ସଂପର୍କରେ ଆଲୋଚକ ଏଥିରେ ବିସ୍ତୃତ ଆଲୋଚନା କରିଛନ୍ତି । ବିଭିନ୍ନ କବିତାରେ ପ୍ରଯୁକ୍ତ ପ୍ରତୀକାଦିର କଥ୍ୟ, ବକ୍ତବ୍ୟ ଓ ଭାବାନୁସନ୍ଧାନର ପଦ୍ଧତି ମଧ୍ୟ ପ୍ରଫେସର ଶତପଥୀ ବହୁ ଦୃଷ୍ଟାନ୍ତ ମାଧ୍ୟମରେ ବେଶ୍ ବୋଧଗମ୍ୟ ବିଶ୍ଳେଷଣ ଦ୍ୱାରା ଉପସ୍ଥାପିତ

କରିଛନ୍ତି । ବିଶ୍ୱ ସାହିତ୍ୟରେ ପ୍ରଥମେ ବଦଲେୟାର୍, ଭର୍ଲେନ୍, ମାଲାର୍ମେ, ଏଡ୍‌ଗାର୍ ଏଲାନ୍ ପୋ ପ୍ରଭୃତି ପାଶ୍ଚାତ୍ୟ କବିଗଣ କିପରି ଏହି ପ୍ରତୀକବାଦୀ ଆନ୍ଦୋଳନର ବାର୍ତ୍ତାବହ ଥିଲେ ତାହା ଡ. ଶତପଥୀ ଏହି ଆଲୋଚନାରେ ଚର୍ଚ୍ଚା କରିଛନ୍ତି ।

ରୀତିଯୁଗୀୟ ଓଡ଼ିଆ କାବ୍ୟାବଳୀରୁ ସଂପ୍ରତି ଯେଉଁ ସମାଲୋଚକମାନେ 'ପ୍ରତୀକ'ର ସନ୍ଧାନ କରୁଛନ୍ତି, ସେମାନଙ୍କ ସମକ୍ଷରେ ଡ. ଶତପଥୀ 'ପ୍ରତୀକ'ର ପ୍ରକୃତି ମର୍ମକୁ ସ୍ପଷ୍ଟ କରିଦେଇଛନ୍ତି । ତାଙ୍କ ଭାଷାରେ- "ଧ୍ୱନି ପ୍ରତୀକବାଦୀ ସାହିତ୍ୟ ହୋଇ ନପାରେ । କାରଣ ଧ୍ୱନି, ଶ୍ଲେଷ ଓ ବକ୍ରୋକ୍ତି ଆଦିରୁ reference ବା ସଂଗତିକୁ ବାଦ୍ ଦେଲେ ତାହା ଅଭୀପ୍‌ସିତ ଅର୍ଥ ପ୍ରକାଶନ ନ କରି ସଂପୂର୍ଣ୍ଣ ଭାବରେ ବୈଚିତ୍ର୍ୟହୀନ ହୋଇପଡ଼େ । ××× ତେଣୁ ଫକୀରମୋହନଙ୍କ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ପ୍ରତୀକବାଦୀ ସାହିତ୍ୟ ନାହିଁ କହିଲେ ଚଳେ ।"

ସେହିପରି 'ରୂପକଳ୍ପ ସଂପର୍କରେ' ଶୀର୍ଷକ ଆଲୋଚନାରେ ଡ. ଶତପଥୀ ରୂପକଳ୍ପ, ଚିତ୍ରକଳ୍ପ ବା ବିମ୍ବର ସ୍ୱରୂପ ଓ ପ୍ରୟୋଗ ସମ୍ବନ୍ଧରେ ଉଚ୍ଚକୋଟୀର ତାତ୍ତ୍ୱିକ ଆଲୋଚନା କରିଛନ୍ତି । କବି ଏଜ୍‌ରା ପାଉଣ୍ଡ, ଟି.ଇ.ହ୍ୟୁମ୍ ତଥା ସମାଲୋଚକ ହବର୍ଟରିଡ୍, ଡ୍ରାଇଡେନ୍, ସି.ଡି.ଲୁଇସ୍, ଏଲିଜାବେଥ୍ ଡ୍ରୁ ପ୍ରଭୃତିଙ୍କ ରୂପକଳ୍ପ ସମ୍ବନ୍ଧୀୟ ମନ୍ତବ୍ୟ, ବିଚାର ଓ ଉଚ୍ଚାରଣର ସେ ବିସ୍ତୃତ ବ୍ୟାଖ୍ୟା କରିଛନ୍ତି । ସଚ୍ଚି ରାଉତରାୟଙ୍କଠାରୁ ଆରମ୍ଭ କରି ଗୁରୁପ୍ରସାଦ ମହାନ୍ତି, ବିନୋଦ ନାୟକ, ରମାକାନ୍ତ ରଥ, ନିତ୍ୟାନନ୍ଦ ପତି, ସୀତାକାନ୍ତ ମହାପାତ୍ର, ଦୀପକ ମିଶ୍ର, ସୌଭାଗ୍ୟ ମିଶ୍ର, ହରପ୍ରସାଦ ଦାସ ପ୍ରଭୃତି ଓଡ଼ିଆ କବି ଚିତ୍ରକଳ୍ପର କିପରି ସଫଳ ପ୍ରୟୋଗ କରିଛନ୍ତି ତାହା ଡ. ଶତପଥୀ ବିଶ୍ଳେଷଣ କରିଛନ୍ତି । ତାଙ୍କ ଭାଷାରେ "××× ଅବଶ୍ୟ ଏଥିପାଇଁ ତା'ର ଗଭୀର କଳ୍ପନା ପ୍ରବଣତା ଓ ଅନ୍ତର୍ଦୃଷ୍ଟି ଥିବା ଆବଶ୍ୟକ । ×× କବିତାର ବିଷୟବସ୍ତୁ ସହିତ ଏହି ଚିତ୍ର ଚୈତନ୍ୟର ଯୋଗାଯୋଗ କବିତାର ଅର୍ଥ ସମୃଦ୍ଧି, ବ୍ୟାପ୍ତି ଓ ନିହିତତା ପାଇଁ ଅତି ପ୍ରୟୋଜନ । କବିତା ପାଇଁ ଏହି ଚିତ୍ରକଳ୍ପ ଏକ ସୁପ୍ତ ଉତ୍ତାପ ପ୍ରଦାନ କରି କବିତାର ଶକ୍ତିମତ୍ତାକୁ ଯଥେଷ୍ଟ ବଢ଼ାଇ ଦେଇଥାଏ ।"

ଗ୍ରନ୍ଥର ଅନ୍ତିମ ଆଲୋଚନାର ଶୀର୍ଷକ "ତିନି ବର୍ଷର ଓଡ଼ିଆ କବିତା (୧୯୬୭-୭୦)" । ଏଥିରେ ଡ. ଶତପଥୀ ରମାକାନ୍ତ ରଥ, ବେଣୁଧର ରାଉତ, ସୀତାକାନ୍ତ ମହାପାତ୍ର, ରବି ସିଂ, ଦେବଦାସ ଛୋଟରାୟ, ହରପ୍ରସାଦ ଦାସ, ଦୀପକ ମିଶ୍ର, ପ୍ରତିଭା ଶତପଥୀ, କମଳାକାନ୍ତ ଲେଙ୍କା, ପ୍ରସନ୍ନ ମିଶ୍ର ପ୍ରଭୃତି କବିଙ୍କୁ ବିଶଦ ଭାବେ ଆଲୋଚନା କରିଛନ୍ତି । ଏହି ତିନି ବର୍ଷର ପ୍ରକାଶିତ ଓଡ଼ିଆ କବିତାର ଉତ୍କର୍ଷ ବିଚାର କରିବା ସହ ଅତ୍ୟନ୍ତ ନିର୍ଭୀକ ଓ ସ୍ପଷ୍ଟ ସ୍ୱରରେ କେତେକ ପ୍ରତିଷ୍ଠିତ କବିଙ୍କର ପ୍ରତୀକ ଓ ଚିତ୍ରକଳ୍ପ ପ୍ରୟୋଗରେ ଯାଦୃଚ୍ଛିକତା, ସୀମିତତା ଓ ଅସଫଳତା ପ୍ରତି ମଧ୍ୟ ସଦୃଷ୍ଟାନ୍ତ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

କବି ଏଲିଅଟ୍ ଥରେ କହିଥିଲେ- "Criticism is as inevitable as breathing." ସାହିତ୍ୟରେ ସମାଲୋଚନା ଶ୍ୱାସ ପ୍ରଶ୍ୱାସ ପରି ଅପରିହାର୍ଯ୍ୟ । ମାତ୍ର ସର୍ଜନଶୀଳ ସାହିତ୍ୟର ବିଭିନ୍ନ ଉପାଦାନ, ବିଭାବ ଓ ବିଭବ, ପରଂପରା ଓ ପୁରୋଦୃଷ୍ଟି, ପ୍ରକରଣ ଓ ପ୍ରଭାବ, ତତ୍ତ୍ୱ ଓ ପ୍ରୟୋଗ, କଳା ଓ କୃଷ୍ଟି ସଂପର୍କରେ ସମାଲୋଚକର ଗଭୀର ଅବଗାହନ ନଥିଲେ ସମାଲୋଚନା ଅନ୍ତସାରଶୂନ୍ୟ ଓ ଅର୍ଥହୀନ ହୋଇପଡ଼େ । ଡ. ଶତପଥୀ ଉପୁର୍ଯ୍ୟୁକ୍ତ ସମସ୍ତ ଯୋଗ୍ୟତାର ଅଧିକାରୀ ବୋଲି ବଳିଷ୍ଠ ଭାବେ ପ୍ରତିପାଦନ କରି ଆସିଛନ୍ତି ।

ଡ. ନିତ୍ୟାନନ୍ଦ ଶତପଥୀ ଆଧୁନିକ ସାହିତ୍ୟର ଛାତ୍ର ଓ ପ୍ରଫେସର ଭାବରେ ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱକାଳ ଧରି ଆଧୁନିକ ଓଡ଼ିଆ ସାହିତ୍ୟ, ବିଶେଷତଃ କବିତା ବିଭାଗକୁ ସମକାଳୀନ ଆନ୍ତର୍ଜାତୀୟ ସାହିତ୍ୟର ପରିପ୍ରେକ୍ଷୀରେ ଯେଉଁଭଳି ଭାବେ ପ୍ରବୀଣ ବିଶେଷଜ୍ଞର ଦକ୍ଷତା ନେଇ ବ୍ୟବଚ୍ଛେଦ ପୂର୍ବକ ଆକଳନ ଓ ନିଷ୍କର୍ଷମୂଳକ ଦିଗ୍‌ଦର୍ଶନ ଦେଇ ଆସିଛନ୍ତି ତାହା ଅନନ୍ୟ ଓ ଅସାଧାରଣ । ତାଙ୍କ ସମାଲୋଚକୀୟ ଲେଖନୀର ଶାଣିତ ଧାରରେ ସାଂପ୍ରତିକ ଓଡ଼ିଆ କବିତାର ଜଟିଳ ଜଗତ ହୋଇଛି ଉଦ୍ଭାସିତ ତଥା ଆମ ସଂକୀର୍ଣ୍ଣ କାବ୍ୟିକ ମାର୍ଗ ହୋଇଛି ପ୍ରଶସ୍ତତର ।

ଆଜି ଅଶୀତମ ଶୁଭ ଜନ୍ମଦିନ ପୂର୍ତ୍ତି ଅବସରରେ ପୂଜ୍ୟ ଗୁରୁ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କୁ ଶତାୟୁ ଭାବେ ଦେଖିବାର ଆନ୍ତରିକ କାମନା ସହ ତାଙ୍କୁ ଗଭୀର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ।

■ *ଏସୋସିଏଟ୍ ପ୍ରଫେସର ଓ ମୁଖ୍ୟ, ଓଡ଼ିଆ ବିଭାଗ*
*ବିଜେବି (ସ୍ୱ.ଶା) କଲେଜ୍, ଭୁବନେଶ୍ୱର-୭୫୧୦୧୪*

# ଦୁର୍ବାର ସଂଯାତ୍ରୀ ପ୍ରବର
# ପ୍ରଫେସର ନିତ୍ୟାନନ୍ଦ ଶତପଥୀ : ଏକ ସୁହୃଦାଲେଖ୍ୟ

♦ ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ

ସନ ୧୯୫୨ ରୁ ଅବଧି ୨୦୧୭ - ଏହି ଦୀର୍ଘ ୬୫ ବର୍ଷ ଯାବତ୍ ଆମର ସଖ୍ୟ ଓ ସୌହାର୍ଦ୍ଦ୍ୟର ପ୍ରସାରିତ ବଳୟ ମଧ୍ୟରେ କେତେ ଅନୁଭୂତି-ଅଭିଜ୍ଞତାର ଧୂପଛାୟା ଆବୋରି ବସିଛି ଆମକୁ ସେ ସବୁର ବଖାଣ ହୁଏତ ସମ୍ଭବ ନୁହେଁ । ମାତ୍ର ଡକ୍ଟର ଶତପଥୀଙ୍କର ବୌଦ୍ଧିକ ବ୍ୟକ୍ତିତ୍ୱର ପ୍ରଭାବ ଆଦ୍ୟ ଯୌବନର ଚଳଚଞ୍ଚଳ ମାନସିକତାରୁ ଆଜିର ପରିପୃକ୍ତ ଗ୍ରହଣଶୀଳ ଚୈତିକ ସ୍ଥୈର୍ଯ୍ୟାବସ୍ଥା ପର୍ଯ୍ୟନ୍ତ ଏହି ଲେଖକକୁ ଯେଭଳି ଆସକ୍ତ କରିଆସୁଛି ତା'ର ହେତୁ ନିର୍ଣ୍ଣୟ ହିଁ ଏହି ଆଲେଖ୍ୟର ଉପଜୀବ୍ୟ ।

ସ୍କୁଲ୍, କଲେଜରେ ଆମ୍ଭମାନଙ୍କର ଶିକ୍ଷାର୍ଥୀ ଜୀବନ କଟିଥିଲା ଆର୍ଥିକ ଅନଟନ ମଧ୍ୟରେ । ଅତ୍ୟାବଶ୍ୟକ ବ୍ୟୟ ମେଣ୍ଟାଇବାରେ ଘର୍ମାକ୍ତ ଥିବା ଅବସ୍ଥାରେ ଅଧ୍ୟୟନ ବ୍ୟାହତ ହେବା ଥିଲା ଅବଶ୍ୟମ୍ଭାବୀ । ସେଥିପାଇଁ ସ୍ନାତକ ହେବା ଉତ୍ତାରୁ ଯେତେବେଳେ ଉତ୍ତରୋତ୍ତର ଅଧ୍ୟୟନ-ପଥ ଥିଲା ପ୍ରଶସ୍ତ ତାକୁ ଅଗ୍ରାହ୍ୟ କରି ଆମେ ବରି ନେଇଥିଲୁ ଅର୍ଥୋପାର୍ଜନର ପନ୍ଥା, ଶିକ୍ଷକତାକୁ । ଆଇ.ଏସ୍‌ସି. ପରେ ନିତ୍ୟାନନ୍ଦ ଶତପଥୀ ଓ ବି.ଏ. (ଅନର୍ସ) ପରେ ମୁଁ ହାଇସ୍କୁଲ୍‌ରେ ସହକାରୀ ଶିକ୍ଷକ ଭାବରେ କର୍ମରତ ହୋଇଥିଲୁ । ୧୯୬୦-୬୧ରେ ମୁଁ ରାଧାନାଥ ଟ୍ରେନିଂ କଲେଜରେ ବୃତ୍ତିପ୍ରାପ୍ତ ଅଧ୍ୟାୟୀ ହେଲାବେଳେ ଶ୍ରୀ ଶତପଥୀ ଓଡ଼ିଆ ଏମ୍.ଏ. ଶ୍ରେଣୀର ଅଧ୍ୟାୟୀ ହୋଇଥିଲେ ରେଭେନ୍‌ସା କଲେଜରେ । ପ୍ରଥମ ଶ୍ରେଣୀ ଅନର୍ସ ପାଇବାରୁ ଏକ ନମ୍ବର ପାଇଁ ବଞ୍ଚିତ ହୋଇଥିଲେ ହେଁ ସାହିତ୍ୟ-ସମୀକ୍ଷଣରେ ଶ୍ରୀ ଶତପଥୀଙ୍କର କୃତିତ୍ୱ ଆମ୍ଭମାନଙ୍କୁ ବେଶ୍ ବିଦିତ ଥିଲା । ୧୯୬୨ରେ ସେ ୧ମ ଶ୍ରେଣୀରେ ଏମ୍.ଏ. ପାଶ୍ କଲେ । ସେହି ବର୍ଷ ଘରୋଇ ଭାବରେ ଏମ୍.ଏ. ପରୀକ୍ଷା ଦେବା ପାଇଁ ମୁଁ ଫର୍ମ ପୂରଣ କରିଥିଲେ ହେଁ ରାଣୀହାଟ ହାଇସ୍କୁଲ୍‌ରେ ଅତିରିକ୍ତ କାର୍ଯ୍ୟଭାର, ଶାରୀରିକ ଅସୁସ୍ଥତା, ମୋର ବିବାହ, ପିତାମହଙ୍କର ଦେହାନ୍ତ ଆଦିରେ ମାନସିକ ବିପର୍ଯ୍ୟସ୍ତତା ହେତୁ ଅପ୍ରସ୍ତୁତ ଯୋଗୁଁ ମୁଁ ସେଥିରୁ ଓହରି ଯିବାକୁ ବାଧ୍ୟ ହୋଇଥିଲି । କିନ୍ତୁ ୧୯୬୩ ରେ ଖୁବ୍ ସାହସ ବାନ୍ଧି ଏମ୍.ଏ. ପରୀକ୍ଷା ଦେଇ ଉତ୍ତୀର୍ଣ୍ଣତା ଲାଭ କଲି । ୧୯୬୪ ଜାନୁଆରୀ ପହିଲାରେ ରେଭେନ୍‌ସା ସାନ୍ଧ୍ୟ କଲେଜରେ ମୁଁ ଅଧ୍ୟାପକ ଭାବରେ ଯୋଗ ଦେଲାବେଳକୁ ଶ୍ରୀ ଶତପଥୀଙ୍କୁ ଭେଟିଲି ବିଭାଗୀୟ ମୁଖ୍ୟ ଭାବରେ । ଦୀର୍ଘ ଛଅବର୍ଷ ଆମର ସେହି ସହାବସ୍ଥାନ କାଳରେ ଆମର ବନ୍ଧୁତା କ୍ରମଶଃ ନିବିଡ଼ ହେବା

ଥିଲା ଅବଶ୍ୟମ୍ଭାବୀ । ସେଦିନ ମାନଙ୍କରେ ତାଙ୍କର ସାହିତ୍ୟ ସେବା ଓ ସାଧନା ମୋତେ ଅଭିଭୂତ କରିଥିଲା କହିଲେ ମୁଁ ଅତ୍ୟୁକ୍ତି କରିବି ନାହିଁ ।

ଆମ୍ଭମାନଙ୍କ ଭଳି ସରକାରୀ ବୃତ୍ତି ବୃତ୍ତରେ ଆବଦ୍ଧ ଓ ନିୟନ୍ତ୍ରିତ ହେବାର ଦୁର୍ବଳ ମାନସିକତା ତାଙ୍କର ନଥିଲା । ସେ ଅନ୍ୱେଷୀ ଥିଲେ ସାହିତ୍ୟ ସେବାର ଉଚ୍ଚତର ଦିଗନ୍ତର, ପ୍ରାପ୍ତ ହେଲେ ମଧ୍ୟ । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଅଧ୍ୟାପକ ଭାବରେ ତାଙ୍କର କୃତିତ୍ୱ ଯେଉଁଭଳି ବିସ୍ଫୁରିତ ହେବାକୁ ଲାଗିଥିଲା, ତାହାର ଆଭାସ ମୁଁ ପାଇଥିଲି ତାଙ୍କ ରଚିତ ସମୀକ୍ଷା-ଗ୍ରନ୍ଥ ଓ ପତ୍ରିକା ପ୍ରକାଶିତ ପ୍ରବନ୍ଧାବଳୀରୁ ।

ବୃତ୍ତିଗତ ସାଫଲ୍ୟ ଓ ଔଜଲ୍ୟ ବ୍ୟତିରିକ୍ତ ତାଙ୍କର ସାଂଗଠନିକ ଦକ୍ଷତା ମୋତେ ଆଶ୍ଚର୍ଯ୍ୟଚକିତ କରିଥିଲା । ବିଶେଷତଃ ତାଙ୍କ ସଂପାଦନାରେ କ୍ରମ ପ୍ରକାଶମାନ 'ଇସ୍ତାହାର' ପତ୍ରିକା ଆଧୁନିକ ସାହିତ୍ୟର ବିଚାର-ବିଶ୍ଳେଷଣ କ୍ଷେତ୍ରରେ ନେତୃତ୍ୱ ଗ୍ରହଣ କରିବା ମଧ୍ୟ ଥିଲା ଏକାନ୍ତ ପ୍ରଶଂସ୍ୟ । ତାଙ୍କର ଶାଣିତ, ପ୍ରତିକ୍ରିୟାତ୍ମକ, ନିର୍ଦ୍ଦେଶିତ-ସିଦ୍ଧାନ୍ତ ଗର୍ଭିତ ସଂପାଦକୀୟ ଥିଲା ଆକର୍ଷଣୀୟ । ଏ ପ୍ରସଙ୍ଗରେ ପ୍ରଥିତଯଶା ସାଂପ୍ରତିକ ସର୍ଜନଶୀଳ ସାହିତ୍ୟିକ ନେତୃପୁରୁଷ ମାନଙ୍କର ମତ ଓ ମନ୍ତବ୍ୟ ଥିଲା ଡକ୍ଟର ଶତପଥୀଙ୍କ ପ୍ରତିଭା ଓ ସାଧନାର ଇସ୍ତାହାର । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଆଧୁନିକ କବିତା, ଗଳ୍ପ ଓ ଉପନ୍ୟାସର ଆଲୋଚନା-ସମାଲୋଚନା, ଅଧ୍ୟୟନ ଓ ଗବେଷଣାକୁ ନୂତନ ଦିଶା ଓ ଦର୍ଶନର ଆଲୋକରେ ଋଦ୍ଧିମନ୍ତ କରିବାରେ ଡକ୍ଟର ଶତପଥୀଙ୍କର ନେତୃତ୍ୱ ଓ ପ୍ରଚେଷ୍ଟା କିଭଳି ପ୍ରଶଂସାର୍ହ, ଏହା ସେମାନଙ୍କ ମନ୍ତବ୍ୟରେ ପ୍ରତିଫଳିତ ହୋଇଛି ।

ବ୍ୟକ୍ତିଗତ ଭାବରେ ମୋ ପ୍ରତି ଡ. ଶତପଥୀଙ୍କର ସ୍ନେହାନୁରାଗ ବିସ୍ମୃତ ହେବାର ନୁହେଁ । ରେଭେନ୍‌ସା ସାନ୍ଧ୍ୟ କଲେଜରେ ସହାବସ୍ଥାନ କାଳରେ ସେ ଦୁଇଥର ଏକ ବିଶେଷ ଅବକାଶରେ ମୋର ସଖ୍ୟ ଲୋଡ଼ିଥିଲେ । ଥରେ ଡ. କୁଞ୍ଜବିହାରୀ ଦାଶଙ୍କ ସମଭିବ୍ୟାହାରରେ ସତ୍ୟବାଦୀ ବନ ବିଦ୍ୟାଳୟ ସନ୍ଦର୍ଶନ ଲାଗି ଓ ଅନ୍ୟଥର ଉତ୍କଳ ଗୌରବ ମଧୁସୂଦନଙ୍କ ଜନ୍ମସ୍ଥଳୀ ସତ୍ୟଭାମାପୁର ଯାଇ ଏକ ସଭାରେ ଭାଷଣ ଦେବାର ସୁଯୋଗ ପ୍ରାପ୍ତି କରାଇବା ମୁଁ ବିସ୍ମରି ଯାଇ ନାହିଁ । ଏ ଦୁଇଟି ଅବକାଶ ସ୍ମରଣୀୟ ରହିଛି ଏଇଥିପାଇଁ ଯେ ସେ ମୋତେ ପ୍ରଥମଥର କଂଗ୍ରେସୀ ନେତାମାନେ କିଭଳି ସମ୍ଭୋଗମୟ ଜୀବନଯାପନ କରନ୍ତି ଅନୁଭବ କରାଇଥିଲେ । ଆମ ପାଇଁ ଗାଡ଼ିଟିଏ ଯୋଗାଡ଼ କରିବା ବା ସେହିଭଳି କୌଣସି ଉଦ୍ଦେଶ୍ୟରେ ସେ ଭୁବନେଶ୍ୱରର ଯେଉଁ ସୌଧକୁ ମୋତେ ଯିବାର ସୁଯୋଗ ଦେଇଥିଲେ ସେଠାରେ ଏକ ପ୍ରକୋଷ୍ଠରେ ଅବସ୍ଥାନ କରୁଥାଆନ୍ତି ସର୍ବଭାରତୀୟ ସ୍ତରର ଜନୈକ ନେତା । ସେ ପ୍ରକୋଷ୍ଠଟି ମୋର ଅନାଘ୍ରାତପୂର୍ବ ଅତର ବାସ୍ନାରେ ଏପରି ମହକୁଥିଲାଯେ ମୁଁ ସେ ବିଳାସ ପ୍ରବଣତାରେ ଅସ୍ୱସ୍ତିବୋଧ କରିଥିଲି । ଦ୍ୱିତୀୟଟି କିନ୍ତୁ ସ୍ମରଣୀୟ ରହିଛି ଭବ୍ୟ ଆତିଥ୍ୟ ପ୍ରାପ୍ତି ଯୋଗୁଁ । ସମାଜ ସଂପାଦକ ରାଧାନାଥ

ରଥଙ୍କ ଗହଣରେ ସଭା ଉତାରୁ ଆମକୁ ରାତ୍ରିଭୋଜ ପ୍ରଦାନ କରିଥିଲେ ମାଆ ରମାଦେବୀ । ଅଯଥା ଆଡ଼ମ୍ବର ରହିତ ରୁଚିକର ଖାଦ୍ୟର ସ୍ୱାଦ ଓ ଆତିଥେୟତାର ଅକୃତ୍ରିମ ସସ୍ନିଗ୍ଧ ଆନ୍ତରିକତା ଭୁଲି ହୋଇ ନାହିଁ । ଡ. ଶତପଥୀ ଲୋଡ଼ିଥିଲେ ବୋଲି ସିନା, ନ ହେଲେ ଏ ଅନୁଭୂତି ମୋତେ ପ୍ରାପ୍ତ ହୋଇ ନଥାନ୍ତା । ଆଉ ଏକ ଦିନର କଥା ମନେପଡ଼ୁଛି । ମୁଁ ବି.ଜେ.ବି. କଲେଜରେ ଅଧ୍ୟାପନା କରୁଥାଏ । ଅପରାହ୍ନରେ କତିପୟ ଓଡ଼ିଆ ସ୍ନାତକୋତ୍ତର ଛାତ୍ର ଆସି ମୋତେ ସାକ୍ଷାତ କଲେ ବି.ଜେ.ବି. କ୍ୱାଟର୍ସ ଡି/୭୦ରେ । ସନ୍ନିବିଷ୍ଟ ଅନୁରୋଧ ନିର୍ଦ୍ଦିଷ୍ଟ ଦିନରେ ବାଣୀବିହାର ଯାଇ ସେମାନଙ୍କୁ ପ୍ରାକ୍ ସାରଳା ସାହିତ୍ୟ ସଂପର୍କରେ ଭାଷଣ ଦେବାକୁ ହେବ । ଭାଷଣଟି ଏଭଳି ଦେବାକୁ ହେବ ଯେପରି ସେମାନେ ସମସ୍ତେ ବକ୍ତବ୍ୟକୁ ନୋଟ୍ କରି ନେଇ ପାରିବେ । ନିଜର ଯେତେ ଅକ୍ଷମତା ଦର୍ଶାଇଲେ ମଧ୍ୟ ସେମାନେ ଛାଡ଼ିଲେ ନାହିଁ । ପଛରି ଜାଣିଲି, ପ୍ରଫେସର ଶତପଥୀଙ୍କ ନିର୍ଦ୍ଦେଶ ଏହା ପଛରେ ରହିଛି । ତାଙ୍କର ସେହି ଉଦାର ଆମନ୍ତ୍ରଣକୁ ଏଡ଼ିପାରିଲି ନାହିଁ । ସ୍ନାତକୋତ୍ତର ତାଙ୍କର ବିଭାଗରେ କେତେ କିଏ ପ୍ରବୀଣ ଅଧ୍ୟାପକ ଥିଲାବେଳେ ମୋ ଭଳି ଜଣେ ସ୍ନାତକ ଶ୍ରେଣୀର ଅଧ୍ୟାପକ ପ୍ରତି ଡ. ଶତପଥୀଙ୍କର କାହିଁକି ଦୃଷ୍ଟି ପଡ଼ିଲା ଏବଂ ମୁଁ କିପରି ଏହି ଆହ୍ୱାନର ସମ୍ମୁଖୀନ ହେବି, ବଡ଼ ଚିନ୍ତାରେ ପଡ଼ିଗଲି । ଯାହା ହେଉ, ଉପସ୍ଥିତ ହେଲି । ଦିବଂଗତ ଡ. ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ଆସିଥାଆନ୍ତି ସେହି ଶ୍ରେଣୀଗତ ପାଠ୍ୟାତିରିକ୍ତ ବିଷୟରେ ବିଶେଷ ଦିଗ୍‌ଦର୍ଶନ ଦେବା ଲାଗି । ମୋର ଯାହା ବା ଯେଭଳି ପ୍ରସ୍ତୁତି ଥିଲା ତଦନୁଯାୟୀ ମୁଁ ଯଥାସାଧ୍ୟ ଭାଷଣଟିଏ ଦେଲି । ପରେ ଜାଣିଲି, ମୋର ଶ୍ରମ ବ୍ୟର୍ଥ ଯାଇ ନାହିଁ । ପ୍ରଫେସର ଶତପଥୀଙ୍କର ଆଶା ଓ ଆଗ୍ରହ ଅନୁରୂପ ହୋଇଥିଲା ମୋର ବକ୍ତବ୍ୟ । ଭାଷା ପ୍ରୟୋଗରେ ମୋର ପାରଦର୍ଶିତାର ପ୍ରଶଂସା କରିଥିଲେ ସ୍ୱର୍ଗତ ଡ. ଆଚାର୍ଯ୍ୟ, ବୋଲି ଅବଗତ ହୋଇଥିଲି ସହକର୍ମୀ ବନ୍ଧୁ ମଥୁରାନନ୍ଦଙ୍କ ଠାରୁ ।

ଏଠାରେ ସାହିତ୍ୟାତିରିକ୍ତ ଅନ୍ୟ ଏକ ଅନୁଭୂତି ମଧ୍ୟ ମୁଁ ବିସ୍ମରି ନାହିଁ । ଆମେ ଉଭୟେ ତିର୍ତ୍ତୋଲ ଅଞ୍ଚଳବାସୀ । ମୋ ସହ ସୌହାର୍ଦ୍ଦ୍ୟ ଯୋଗୁଁ ନିର୍ବାଚନ ଯୁଦ୍ଧରେ ଅବତୀର୍ଣ୍ଣ ହେବା କାଳରେ ଡ. ଶତପଥୀ ମୋର ଗ୍ରାମବାସକୁ ଆଗମନ କରି ମୋ'ଠାରୁ ଯାହା ପ୍ରତ୍ୟାଶା କରିଥିଲେ, ଯଥାସାଧ୍ୟ ମୁଁ ତାଙ୍କର ଅଭୀପ୍‌ସା ପୂରଣ କରିଥିଲି । ସେ ନିର୍ବାଚନ ଯୁଦ୍ଧରେ ହାରିଯିବାକୁ ମୁଁ ସହଜରେ ଗ୍ରହଣ କରିପାରିନଥିଲି । ଭୋଟ୍‌ର ଜନସାଧାରଣ ତାଙ୍କପରି ଉଚ୍ଚଶିକ୍ଷିତ ସୁଯୋଗ୍ୟ ପ୍ରାର୍ଥୀଙ୍କ ପ୍ରତି ଅନାସ୍ଥା ଅବଶ୍ୟ ମୋତେ ବାଧିଥିଲା । ଏବେବି ସେମାନଙ୍କର ସେ ମନଃସ୍ଥିତିରେ କିଛି ପରିବର୍ତ୍ତନ ଘଟିନାହିଁ । ଏହାର ହେତୁ ବିଶ୍ଳେଷଣକୁ ସମୀଚୀନ ବୋଧ କରୁନାହିଁ । କାରଣ ଅଜ୍ଞାନତାର ତିମିରିପଟଳ ଏକାନ୍ତ ସାନ୍ଦ୍ର । ତେବେ ୨୦୦୦ ମସିହା ବିଧାନସଭା ନିର୍ବାଚନରେ ସ୍ୱାଧୀନ ପ୍ରାର୍ଥୀ ଭାବେ ଠିଆ ହୋଇ ମୋ ଗୃହ ପରିସରରେ ଗୋଟିଏ କର୍ମୀ ସମ୍ମିଳନୀ କରାଇଥିଲେ ଓ ତାଙ୍କ

ଅନୁରୋଧକ୍ରମେ ମୁଁ ଖୁବ୍ ଆନନ୍ଦରେ ଖଳାବାଡ଼ିରେ ଉପସ୍ଥିତ କର୍ମୀମାନଙ୍କ ଭୋଜନାଦିର ବ୍ୟବସ୍ଥା କରିଥିଲି । ସେଥିପାଇଁ ପ୍ରଫେସର ଶତପଥୀ ମୋତେ ଅଜସ୍ର ସାଧୁବାଦ୍‌ରେ ପୋତିପକାଇ ଥିଲେ ।

ଏହି ନିର୍ବାଚନ ସଂଗ୍ରାମ-ଆବର୍ତ୍ତରୁ ଆପଣାକୁ ମୁକ୍ତକରି ଡ. ଶତପଥୀ ଯେଉଁଭଳି ଭାବରେ ଓ ଯେତେ ଶୀଘ୍ର ସଂବିତ୍ ଫେରି ପାଇ ସାରସ୍ୱତ କ୍ରିୟାକର୍ମରେ ପୂର୍ବଭଳି ଆପଣାକୁ ନିୟୋଜିତ କରିପାରିଲେ ତାହା ମଧ୍ୟ ମୋତେ ଚକିତ କରିଥିଲା; କାରଣ ଏଭଳି ତ୍ରିତାପ - ଅର୍ଥହାନୀ, ମନସ୍ତାପ ଓ ପ୍ରାଣପୀଡ଼ା ଭୋଗିବା ପରେ ଆମଭଳି ସାଧାରଣ ବ୍ୟକ୍ତି ହୁଏତ ଆତ୍ମଗୋପନ କରି ନିଷ୍କ୍ରିୟ ରହି ଯାଇଥାଆନ୍ତା । ସେ କିନ୍ତୁ ଭିନ୍ନ ଧାତୁର ବ୍ୟକ୍ତି ହୋଇଥିବାରୁ ସମସ୍ତ ପାରିବାରିକ ତଥା ବାହ୍ୟ ସମାଲୋଚ଼ନାକୁ ଆତ୍ମସାତ୍ କରି ନୀଳକଂଠ ହୋଇଗଲେ । ଏହା ପରେ ତାଙ୍କ ଲେଖନୀରୁ ଅଗ୍ନି ବର୍ଷା କରି ସେ ପ୍ରକାଶ କଲେ ତାଙ୍କ ଖଣ୍ଡିତ ଆତ୍ମଜୀବନୀ ଦୁଇ ଖଣ୍ଡରେ । ନିତାନ୍ତ ବ୍ୟକ୍ତିଗତ ଅପ୍ରିୟ ସତ୍ୟଗୁଡ଼ିଏ ସେ ଯେପରି ଉଦ୍‌ଗାର କଲେ ତାହା ମଧ୍ୟ ଥିଲା ଅସାଧାରଣ ।

ଡ. ଶତପଥୀ ମୋ ଦୃଷ୍ଟିରେ ଜଣେ ଦୁର୍ବାର ସଂଗ୍ରାମୀ ବ୍ୟକ୍ତିସତ୍ତା; ଅକୁତୋଭୟ, ଅଗ୍ରଯାୟୀ, ଅନବଦମିତ । ସେଥିପାଇଁ ତାଙ୍କର ଅନୁଗାମୀ ଅନେକ, ତାଙ୍କର ସାରସ୍ୱତ ପରିମଣ୍ଡଳ ସର୍ବଦା କୋଳାହଳପୂର୍ଣ୍ଣ, ସକ୍ରିୟ, ସ୍ୱତନ୍ତ୍ର ବୌଦ୍ଧିକ ଦୀପ୍ତିରେ ସମୁଜ୍ଜ୍ୱଳ । ସେ ନିଜେ କେବଳ ଲେଖନ୍ତି ନାହିଁ, ଅନ୍ୟମାନଙ୍କୁ ଲେଖିବାରେ ପ୍ରବୃତ୍ତ କରାଇପାରନ୍ତି । ତାଙ୍କରି ପରାମର୍ଶ ଏ ପ୍ରୋତ୍ସାହନରେ ଅବଧି 'ଇସ୍ତାହାର' ପାଇଁ ମୁଁ ଲେଖିଛି ଚାରିଗୋଟି ସମୀକ୍ଷାତ୍ମକ ପ୍ରବନ୍ଧ ଓ ୮/୧୦ଟି ଅନୁବାଦ ଗଳ୍ପ । ମୋର ସାହିତ୍ୟିକ କର୍ତ୍ତବ୍ୟ ନିଷ୍ପାଦନରେ ତାଙ୍କର ପ୍ରଶଂସମାନ ମନ୍ତବ୍ୟ ଲାଗି ମୁଁ କୃତାର୍ଥବୋଧ କରିଥାଏ । ତାଙ୍କର ସାହିତ୍ୟ ସମୀକ୍ଷଣ ସର୍ବଥା ମୋତେ ତ୍ରୁଟିରହିତ ମନେ ହୋଇ ନଥିଲେ ହେଁ ସେଗୁଡ଼ିକର ନିଜସ୍ୱ ଅଭିବ୍ୟକ୍ତି ପାଟବତା ମୋତେ ମୁଗ୍ଧ କରିଥାଏ । ତାଙ୍କର ସର୍ଜନଶୀଳ ଆଭିମୁଖ୍ୟ ମଧ୍ୟ ଉଣା ସ୍ୱତନ୍ତ୍ରତା ଚିହ୍ନିତ ନୁହେଁ । ସେଥିରେ ସମଧିକ ଗଭୀରତା ଓ ବ୍ୟାପକତାର ଆବଶ୍ୟକତା ରହିଛି, ଯାହା ମୋର ନିଜସ୍ୱ ବିନୀତ ମନ୍ତବ୍ୟ । ସେ ଯାହା ହେଉନା କାହିଁକି ଏକ ସାହିତ୍ୟିକ ସିଦ୍ଧି ଓ ପ୍ରତିଷ୍ଠାପନ୍ନ ପରିବାରର ସେ କର୍ତ୍ତୃପୁରୁଷ ହୋଇଥିବାରୁ ଆମ୍ଭମାନଙ୍କର ସମୀହତା ସର୍ବଥା ଦାବୀ କରନ୍ତି ।

ସେ ଶତାୟୁ ହୁଅନ୍ତୁ ଏବଂ ତାଙ୍କର ସାହିତ୍ୟ-ସଂପୃକ୍ତି ଉତ୍ତରୋତ୍ତର ସିଦ୍ଧି ଆହରଣ କରୁ, ଏହାହିଁ ତାଙ୍କର ବନ୍ଧୁ ଭାବରେ ମୋର ଏକାନ୍ତ ଅଭିଳାଷ । ସେଥିପାଇଁ ଅଥର୍ବବେଦୋକ୍ତ ବହୁଜ୍ଞାତ ସେହି ଆର୍ଯ୍ୟ ପ୍ରାର୍ଥନା ଆବୃତ୍ତି କରୁଛି :

"ଜୀବେମ ଶରଦଃ ଶତମ୍, ପଶ୍ୟେମ ଶରଦେ ଶତମ୍, ବୁଧେମ ଶରଦଃ ଶତମ୍..."

■ *୧୯ ସି, ଜୟଦୁର୍ଗାନଗର, ଭୁବନେଶ୍ୱର-୬*

# ସେ ଏକ ସାରସ୍ୱତ କ୍ରାନ୍ତି : ଡକ୍ଟର ନିତ୍ୟାନନ୍ଦ ଶତପଥୀ

♦ ଅଧ୍ୟାପକ ସୁଧା ଦାଶ

ଅସରନ୍ତି ବାଟ । ତା' ଉପରେ ଉଦ୍ଦାମ ଦୁଇପାଦ । ବାସ୍ ଏଣିକି ତମାମ୍ ଜୀବନ ବେସାଲିସ୍ ବାଟଚଲା । ଯେମିତି ଗତି ହିଁ କେବଳ ଜୀବନର କାମ୍ୟ ।

ସକଳ ଅଥର୍ବପଣ, ପଙ୍ଗୁତ୍ୱ ଓ ଶିଥିଳତାକୁ ପାଦରେ ଏଡ଼େଇଦେଇ ଗୋଟେ ଶାଣିତ ଜୀବନଦୃଷ୍ଟି ପହଁରିଯାଏ ଆଗକୁ ଆଗକୁ । ସକଳ ଅସହାୟତାରୁ ଆତ୍ମବଳ ସଂଗ୍ରହ କରି ପୁଣି ବାଟ ଚାଲିବାର ଝୁଙ୍କ୍‌ରେ ବିଭୋର ହୁଏ ସେ ପାଦ । ଜୀବନ ଗଡ଼ିଯାଉଥାଏ ଆଗକୁ ଆଗକୁ । ପଛରେ ଛାଡ଼ି ଯାଉଥାଏ ସ୍ପର୍ଦ୍ଧିତ ସମୟର ପାଦ ଚିହ୍ନ । ଏତେବେଳକୁ ଯାତ୍ରା ଆରମ୍ଭର ସେ ପାଦ ପାଲଟି ଯାଇଥାଏ ପାଦୁକା । ପାଲଟି ଯାଇଥାଏ ପ୍ରତୀକ । ଗତିର ପ୍ରତୀକ । ନିୟତ ଏକ ପ୍ରବାହ ।

ସେ ପାଦ ଜଣେ ଶିକ୍ଷକର,
ସେ ପାଦ ପ୍ରେମିକର, କବିର,

ସେ ପାଦ ଯାଯାବର । କେବେ ବାଟର ଦାସ ନୁହେଁ । ବରଂ ନୂଆ ବାଟ ଗଢ଼ିବାର ସ୍ପର୍ଦ୍ଧାରେ ସେ ପୂଜ୍ୟପାଦ । ପାର୍ବଣର ପୃଷ୍ଠା ଭିତରୁ ସେଇ ପ୍ରତୀକ ପୁରୁଷ ଡ. ନିତ୍ୟାନନ୍ଦ ଶତପଥୀଙ୍କ ଶାଣିତ ଜୀବନଦୃଷ୍ଟି ଓ ଉଦ୍ଦାମ ପାଦ ଉଦ୍ଦେଶ୍ୟରେ ଅସରନ୍ତି ଅର୍ଘ୍ୟ ।

"ସେମାନେ ଆତ୍ମୀୟ ନା ଅନାତ୍ମୀୟ ?
ଯେଉଁମାନେ ନିଜ କୁହାଟରେ
ଉଚ୍ଛୁଳେଇ ଦେଇପାରନ୍ତି ପର୍ବତ
ଗାଇ ବୁଲନ୍ତି କୁତ୍ସା ଅପରିମିତ
ଓଜନ କରନ୍ତି ନିଜର ମାନ ଅପମାନ
ମୁଦ୍ରାରେ, ପଦବୀରେ...
ବୁଝନ୍ତି ନାହିଁ ପ୍ରେମର ସଂଜ୍ଞା ବି ହୋଇପାରେ
ବର୍ବାଦ ହୋଇଯିବାର ଖିଆଲ
ନିଜକୁ ଏକାକୀ କରିଦେବାର ପୁରୁଷକାର
ଶୂନ୍ୟ ରମଣ ଓ ଶୂନ୍ୟ ସଂଘର ।"

କେତେ ଏକାକୀତ୍ୱ ଅଥଚ୍ ଅସହାୟ ନୁହେଁ । ଚୁପ୍‌ଚାପ୍ ନିଜକୁ ସାରିଦେବାର ଗୋଟେ ଖିଆଲ ହିଁ ହେଇପାରେ ପ୍ରେମର ସର୍ବଶ୍ରେଷ୍ଠ ମହକ । ଅସହାୟତା ଓ ଏକ୍‌ଲାପଣର

ରୂପାନ୍ତରରେ ବିଭୋର ଏ ମଣିଷଟି ନିଶ୍ଚିନ୍ତ କବି । ଯିଏ ପ୍ରେମର ପରିଭାଷା ଖୋଜିପାଏ ନିରବତାରେ । ଶୂନ୍ୟତାରେ ।

ବାସ୍ତବରେ ଆରମ୍ଭରୁ ଶେଷ ଯାଏଁ ନିତ୍ୟାନନ୍ଦ ଶତପଥୀ ଜଣେ ନିଗୁଡ଼ା କବି । କବିପଣ ତାଙ୍କର ଶାଣିତ, ନିକ୍ଷକ୍ଷ ଦୃଷ୍ଟିକୁ ମଧ୍ୟ ସର୍ଜନାର ସ୍ପର୍ଶରେ ରସସିକ୍ତ କରିଛି । ଆଦ୍ୟ ଯୌବନରେ ଏ ମାଟିର ଆଦର୍ଶ ଓ ମୌଳିକତା ପ୍ରତି ଚରମ ଅନୁରକ୍ତି ଯୋଗୁଁ ସେ ସତ୍ୟାଶ୍ରୟୀ । ବାଟ ଚାଲିବାର ଏକମାତ୍ର ସାଧନ ସତ୍ୟ ଓ ସଂକଳ୍ପ । ଆଜୀବନ ଉଚ୍ଚାଦର୍ଶ ଓ ମୂଲ୍ୟବୋଧର ମନ୍ତ୍ରରେ ବିଶ୍ୱାସୀ ଏଇ କବି-ସଂପାଦକ, ଏଇ ସାରସ୍ୱତ ସ୍ରଷ୍ଟା ଏ ଜାତି ପାଇଁ ଜାତିର ସାହିତ୍ୟ ପାଇଁ ଶେଷହୀନ ପ୍ରେରଣାର ଉତ୍ସ । ତାରୁଣ୍ୟରୁ କବିତା ପ୍ରତି ସେ ଆକର୍ଷଣର ପରିଣତି ଥିଲା ପତ୍ନୀକବି ପ୍ରତିଭା ଶତପଥୀଙ୍କ ସହ ମିଶି ପ୍ରକାଶ ପାଇଥିବା କବିତା ସଂକଳନ 'ଆମ କବିତା' । କବିର ସ୍ଥିତି ସବୁକାଳେ ଏକ ନିରପେକ୍ଷ ଧରାତଳ । ସେଇ ଧରାତଳରେ ଥାଇ ଓଡ଼ିଆ କବିତାର ସମାଲୋଚନା ଲେଖିଲାବେଳେ ସ୍ୱଭାବ ସୁଲଭ କବିତ୍ୱ ତାଙ୍କ ଗଦ୍ୟଭାଷାକୁ ନୂତନତା ଦେଇଛି । ତାଙ୍କ ଆକଳନକୁ ସଠିକତା ଦେଇଛି । ପରୀକ୍ଷା ଖାତା ହେଉ କି ଓଡ଼ିଆ ସାହିତ୍ୟର ପ୍ରୟୋଗଶାଳା ହେଉ ସବୁଠି ସେ ନିରପେକ୍ଷ । ନିର୍ଭୀକ । ସବୁଠି ବେଶ୍ ଉନ୍ମୁକ୍ତ ।

ଆଧୁନିକତା ଯେତେବେଳେ 'ବାଦ'ର ସ୍ୱରୂପ ଧରି ଓଡ଼ିଆ କବିତାକୁ ଆକ୍ରାନ୍ତ କଲା, ସେତିକିବେଳେ ପରୀକ୍ଷା ଓ ପ୍ରୟୋଗ କବିତ୍ୱର ସ୍ୱଚ୍ଛନ୍ଦ ଧାରାକୁ ନିୟନ୍ତିତ କଲା । କବି ଓ କବିତା ମଝିରୁ ଏ ସମୟରେ ପାଠକ ଉଭାନ୍ । ଅବୋଧ ଅବୋଧ ବୋଲି ଘରିଆଡ଼େ କବିତାର (ବିଶେଷକରି ଷାଠିଏ ଦଶକର ପ୍ରୟୋଗବାଦୀ କବିତା) ନିନ୍ଦା । ସେତିକିବେଳେ କବିତାର ଯଥାର୍ଥ ଆକଳନ ଓ ମୂଲ୍ୟାୟନ କରି କବିତାକୁ ଅବୋଧ ଦୋଷରୁ ମୁକ୍ତି ଦେବାରେ ଶତପଥୀଙ୍କ ଲେଖନୀର ବିକଳ୍ପ ନାହିଁ । କବିତା ପ୍ରତି ଚରମ ଉଦାସୀନତା ଓ ବିରକ୍ତି ଦୂର କରିବାରେ ତାଙ୍କ ସମାଲୋଚନା ଧାରାବାହିକ ପ୍ରୟାସ ଆରମ୍ଭ କଲା । "ହେ ସାଥୀ, ହେ ସାରଥୀ" ପରି ଉତ୍କଳମଣିଙ୍କ ଜୀବନୀ ଗ୍ରନ୍ଥ ତାଙ୍କ ଆଦର୍ଶ ଓ ଦକ୍ଷତାର ପ୍ରମାଣ । ତାଙ୍କ ସଂପର୍କରେ ମହାପାତ୍ର ନୀଳମଣି ସାହୁଙ୍କ ବକ୍ତବ୍ୟ ଏପରି-

"ଦେଶର ଭଲମନ୍ଦ ପାଇଁ ଚିନ୍ତା କରୁଥିବା ଓ ଦରକାର ହେଲେ ନିର୍ଭୟରେ ପ୍ରତିବାଦର ସ୍ୱର ତୋଳୁଥିବା କେତେଜଣ ଲୋକଙ୍କୁ ବା ଆମେ ପ୍ରତିଦିନ ଭେଟୁଛେ ?"

'ସବୁଜରୁ ସାଂପ୍ରତିକ' ହେଉ କି 'ଇସ୍ତାହାରର ସମ୍ପାଦକୀୟ' ହେଉ ସବୁଠି ସତ୍ୟବାଦୀ ଆଦର୍ଶର ଲୋହିତ ଛବି ପ୍ରତିଫଳିତ । କେବଳ ସାହିତ୍ୟ ଭିତରେ ସୀମିତ ନଥିଲା ତାଙ୍କ ଜିଜ୍ଞାସା, ତାଙ୍କ ମନନଶୀଳତା । ବ୍ୟବସ୍ଥା ପ୍ରତି ସଚେତନ ଓ ବ୍ୟବସ୍ଥାଗତ

ତ୍ରୁଟି ବିରୁଦ୍ଧରେ ଦ୍ରୋହ ତାଙ୍କର ସମସ୍ତ ଲେଖାରେ ଦେଖିବାକୁ ମିଳେ । ଗୋପବନ୍ଧୁ ଓ ସତ୍ୟବାଦୀର ସାଧନାପଥକୁ ଭଲପାଉଥିବା କବି-ସମାଲୋଚକ ଡ. ଶତପଥୀ ଶିକ୍ଷା, ରାଜନୀତି ଓ ଜନଜୀବନର ଅନେକ ସ୍ପର୍ଶକାତର ପ୍ରସଂଗ ପ୍ରତି ଜାଗରୁକ । ଏ ଦୃଷ୍ଟିରୁ ଖୁବ୍ ମାନବବାଦୀ । ଖୁବ୍ ଦରଦୀ ।

କବିତା ସୃଷ୍ଟିଲଗ୍ନକୁ ଚିହ୍ନି ନିଜପାଇଁ ଅବବୋଧର ନୂଆ ଧାରାଟିଏ ଖୋଜିବା ଥିଲା ତାଙ୍କ ସମାଲୋଚନାର ବିଶେଷତ୍ୱ । ଏପରି କି ନିର୍ଦ୍ଦିଷ୍ଟ କବିଙ୍କର କୌଣସି କବିତା ଅବୋଧ ଲାଗିଲେ କବିଙ୍କୁ ସିଧାସଳଖ ପଚାରି ବୁଝିବାରେ କୁଣ୍ଠା କରନ୍ତି ନାହିଁ । ଆଧୁନିକ କବିତା ବିରୋଧରେ ସମସ୍ତ ବିକ୍ଷୋଦ୍‌ଗାରର ଜବାବ ଦେବା ପାଇଁ ସେ ଥିଲେ ସଂକଳ୍ପବଦ୍ଧ । ୧୯୨୦-୬୦ ଚାଳିଶି ବର୍ଷର ଓଡ଼ିଆ କବିତାର ଆଧାର ଓ ଆଭିମୁଖ୍ୟକୁ ସ୍ପଷ୍ଟଭାବେ ପାଠକ ଆଗରେ ଟୋଳି ଧରିବାରେ 'ସବୁଜରୁ ସାଂପ୍ରତିକ'ର ସାମର୍ଥ୍ୟ ପ୍ରମାଣିତ । ନିଜ ସମାଲୋଚନାର ଭାଷା ଓ ଶୈଳୀରେ ନିଆରା । ଶ୍ରୀ ଶତପଥୀଙ୍କ ଆଲୋଚନା ଗ୍ରନ୍ଥ ସବୁ ପାଠକର ବୌଦ୍ଧିକ ଗବାକ୍ଷ ଓ ସୃଜନାତ୍ମକ ଦୃଷ୍ଟିକୁ ବିସ୍ତାରିତ କରିବାରେ ଅଦ୍ୱିତୀୟ ।

କୌଣସି ପାଶ୍ଚାତ୍ୟ ସମାଲୋଚନା ଓ ବାଦର ଆଧାରରେ ସେ କବିତାର ଆକଳନ କରିନାହାନ୍ତି । ଓଡ଼ିଆ ସମାଜ ଜୀବନ ଓ ସାଂସ୍କୃତିକ ପରିମଣ୍ଡଳରେ ମୌଳିକ ଶୈଳୀରେ ଆଧୁନିକ ଓଡ଼ିଆ କବିତାର ପୂର୍ଣ୍ଣାଙ୍ଗ ଇତିହାସ ରଚନା କରିବାରେ ଡ. ଶତପଥୀ ପ୍ରଥମ ଐତିହାସିକ ।

ଶତପଥୀଙ୍କ ପୂର୍ବରୁ ସମାଲୋଚନା କ୍ଷେତ୍ରରେ ବିଚାରର ଯେଉଁ ବିଘଟନ ଓ ଅବମୂଲ୍ୟାୟନ ଥିଲା ତାହା ଦୂର କରି ଶତପଥୀଙ୍କ ଲେଖନୀ ସତ୍ୟ ଓ ତଥ୍ୟର ପ୍ରତିଷ୍ଠା କରି ଇତିହାସ ସଚେତନତା ଯେ କବିତା ଓ ସମାଲୋଚନାର ଆଧାରଭୂମି, ଏକଥା ପ୍ରମାଣିତ କରିପାରିଛି ।

ମାୟାଧର ମାନସିଂ, ସୁରେନ୍ଦ୍ର ମହାନ୍ତିଙ୍କ ପରି ପ୍ରଥିତଯଶା ଲେଖକ ସମାଲୋଚକ ମାନଙ୍କ ତୁଳନାରେ ଶ୍ରୀ ଶତପଥୀ ଆହୁରି ଶାଣିତ, ଆହୁରି ନିରପେକ୍ଷ ଓ ଅଧିକ ବେସାଲିସ୍ । ସମାଲୋଚନାର ସାମଗ୍ରିକ ସୌନ୍ଦର୍ଯ୍ୟ ପ୍ରକାଶ କରିବାକୁ ଯାଇ ସେ ଯେଉଁ କାବ୍ୟଭାଷା ପ୍ରଦାନ କରିଛନ୍ତି ତାହା ଅନନ୍ୟ । ଏଥିସହ ପୂର୍ବ ସମାଲୋଚକମାନଙ୍କ ଏକଦେଶଦର୍ଶୀ ବିଚାର ଓ ମୂଲ୍ୟାୟନକୁ ତୀବ୍ର ବିରୋଧ କରିଛନ୍ତି । ସ୍ୱକୀୟ ଆକଳନର ଆଲୋକରେ ପ୍ରକୃତ କବିତା ଓ କବିପ୍ରତିଭାକୁ ଆଲୋକିତ କରିଛନ୍ତି ।

"ହେ ମୋର ଦେଶର ଅଗଣିତ ଉଦ୍ଦାମ ଯୁବ ଓ ଛାତ୍ରଶକ୍ତି, ନିଜକୁ ଉପଲବ୍ଧି କର । ସତ୍ୟକୁ ଆବିଷ୍କାର କର । ଯୁକ୍ତିକୁ ସାବ୍ୟସ୍ତ କର । କ୍ରାନ୍ତି, କ୍ରାନ୍ତି ହିଁ ହେଉ ତୁମର ମନ୍ତ୍ର,

ଅବସନ୍ନତା ବା କ୍ଲାନ୍ତି ନୁହେଁ । ମିଥ୍ୟାଚାରର ବା ପରାଜୟ ନୁହେଁ । ତୁମ ଦୁର୍ବାର ଜୟଯାତ୍ରାର ଶୋଣିତ ବାର୍ତ୍ତା ଆଗାମୀ ଭାରତ ଲେଖି ରଖିବ ଓ ଆହୁରି ଅନେକଙ୍କୁ ଭାରତ ଜନନୀ ଜନ୍ମ ଦେବ ।" (କ୍ଲାନ୍ତି ନା କ୍ରାନ୍ତି ?)

କେତେ ପ୍ରେରଣାପ୍ରଦ, କେତେ ଆତ୍ମବିଶ୍ୱାସରେ ପ୍ରଜ୍ୱଳିତ ଶ୍ରୀ ଶତପଥୀଙ୍କ ଶବ୍ଦ ସବୁ । ସମାଜ ଜୀବନର ତୀବ୍ର ଅସହାୟତାକୁ ଉପଲବ୍ଧି କରି ମୁମୂର୍ଷୁ ଏ ଜାତି ଓ ମଣିଷର ପ୍ରାଣରେ ଶକ୍ତି ସଂଚାରର ଏ ମନ୍ତ୍ର କେବଳ ଜଣେ ମାନ୍ତ୍ରିକ କବି ହିଁ ଉଚ୍ଚାରି ପାରେ । ସଂକଟ ଓ ସଂଘର୍ଷରେ ଜୀବନ ତାଙ୍କର ମୁଖର । ଘଟଣାହୀନ, ସ୍ଥବିର ଜୀବନ ତାଙ୍କୁ ପସନ୍ଦ ଲାଗୁନଥିଲା, ଯେଉଁଥିପାଇଁ ଜଣେ ଛାତ୍ରବତ୍ସଳ ସତ୍ୟନିଷ୍ଠ ଶିକ୍ଷକ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ବି ସେ ପଢ଼ା ବହି କିମ୍ବା ପାଠ୍ୟକ୍ରମ ଭିତରେ ସୀମିତ ନଥିଲେ । ନିଜ କଳ୍ପନା, ଚେତନା ଓ ବୌଦ୍ଧିକ ବିସ୍ତାରରେ ସେ ମୁକ୍ତପକ୍ଷ । ଏଯାବତ୍ ସେ ମୁକ୍ତପକ୍ଷ ଚେତନା, ସେ ପ୍ରଦୀପ୍ତ ଦୃଷ୍ଟିକୋଣ ସେମିତି ଅଛି । ପରିଣତ ବୟସରେ ମୁହଁରେ ସେ ଦମ୍ଭ, ସେ ଚମକ ଓ ଆତ୍ମସନ୍ତୋଷ ଅଛି ।

ଅନ୍ୟମାନଙ୍କ ପରି କେବେ ନିଜର ସୀମିତ ବ୍ୟକ୍ତିଜୀବନ ଭିତରେ ଆବଦ୍ଧ ହୋଇନାହାନ୍ତି । ତାଙ୍କ ସ୍ପର୍ଶ, ପ୍ରେରଣା, ତାଙ୍କର ସାମାନ୍ୟ ସାନ୍ନିଧ୍ୟ ଛାତ୍ରଛାତ୍ରୀମାନଙ୍କ ଦୃଷ୍ଟିକୋଣକୁ ଯେତିକି ବିସ୍ତାର ଦେଇଛି, ସେତିକି ନୂତନତା ବି ଦେଇଛି । ଛାତ୍ରଜୀବନରୁ କବିତା, ସାହିତ୍ୟ, ସଂସ୍କୃତି, ରାଜନୀତି ଓ ସଂଗଠନ ପ୍ରତି ଅହେତୁକ ଆକର୍ଷଣ ତାଙ୍କ ପ୍ରତିଭାକୁ ବହିର୍ମୁଖୀ କରିଥିଲା । ନିଜ ଉପରେ ବଳିଷ୍ଠ ଆତ୍ମପ୍ରତ୍ୟୟ ଓ ସାଲିସ୍‌ବିହୀନ ବ୍ୟକ୍ତିତ୍ୱ ପାଇଁ ସେ ଅନେକ ସମୟରେ ବିବାଦୀୟ ହୋଇଛନ୍ତି । ରୋଷର ଶିକାର ହୋଇଛନ୍ତି । ବିଭିନ୍ନ ଚକ୍ରାନ୍ତ ଦ୍ୱାରା ତାଙ୍କ ସମସାମୟିକମାନେ ତାଙ୍କ ସ୍ୱଚ୍ଛନ୍ଦ ଗତିକୁ ବାଧା ଦେଇଛନ୍ତି । ମାତ୍ର ନିଜର ଉଦାର ଗୁଣରେ ସବୁ କଥାକୁ ସାମ୍ନା କରିଛନ୍ତି । ଯେଉଁମାନେ ତାଙ୍କର ନିନ୍ଦା କରିଛନ୍ତି ସେସବୁ କବି ସମାଲୋଚକ ଓ ସଂଗଠକମାନଙ୍କୁ ସେ ନିଜ ଲେଖାରେ ଅଭିନନ୍ଦିତ କରିଛନ୍ତି । ପର୍ଯ୍ୟାପ୍ତ ସମ୍ମାନ ଦେଇଛନ୍ତି । ତେବେ କୌଣସି ମତାନ୍ତରକୁ ବ୍ୟକ୍ତିଗତ ସ୍ତରକୁ ନେଇନାହାନ୍ତି । କେବଳ ମହାନତା ଥିଲେ - ହୃଦୟ ପ୍ରଶସ୍ତ ଥିଲେ ଏପରି ବ୍ୟକ୍ତିତ୍ୱ ସମ୍ଭବ ।

ତାଙ୍କ ପ୍ରଣିତ ସମାଲୋଚନା ପୁସ୍ତକ ହେଉ କି ଇସ୍ତାହାରର ସଂପାଦକୀୟ ହେଉ ସବୁଠି ସେ ଗୁରୁ । ସବୁଠି ମାର୍ଗଦର୍ଶକ । ସବୁବେଳେ ପ୍ରେରଣା ଦାୟକ । ସତେଯେପରି ତାଙ୍କ ଜିଜ୍ଞାସାର ଶେଷ ନାହିଁ କି ଆମ ପାଠପଢ଼ାର ବି ଶେଷ ନାହିଁ । ଏବେବି ଯେତେ ଦୂରରେ ଥିଲେ ଅନେକଥର ସ୍ୱପ୍ନରେ ଆସିବାଭଳି ଶିକ୍ଷକ ସେ । ଏମିତି ଗୁରୁ ଥିଲେ ସମଗ୍ର ଜୀବନ ଛାତ୍ରତ୍ୱରେ ସାରିଦେବାରେ କୌଣସି କୁଣ୍ଠା ନାହିଁ ।

ତାଙ୍କୁ ଦେଖିଲେ ଲାଗେ ଶିକ୍ଷା ଓ ଶିକ୍ଷକର ପାରମ୍ପରିକ ପରିଭାଷା ତାଙ୍କୁ ସ୍ପର୍ଶ କରିନାହିଁ । ଏକଥା ଦୃଢ଼ତାର ସହ କୁହାଯାଇପାରେ ଯେ, ଯେ ପର୍ଯ୍ୟନ୍ତ ଡ. ଶତପଥୀଙ୍କ ପରି ଶିକ୍ଷକ ଅଛନ୍ତି, ସେଯାଏଁ ଶିକ୍ଷକ ଓ ଶିକ୍ଷାର ବିକାଶ ଅନିବାର୍ଯ୍ୟ । ତାଙ୍କ ଅଧ୍ୟାପନା, ଗବେଷଣା ଓ ଜୀବନଦୃଷ୍ଟିକୁ ବିଶ୍ଳେଷଣ କରି ବୁଝିଛି ଯେ, ଯେ ସାରାଜୀବନ ଶିଖୁଥାଏ ସେ ହିଁ ଶିକ୍ଷକ । ଆଜୀବନ ଏକ ଯୁବଛାତ୍ରର ଉଦ୍ଦାମତାରେ ସେ ଜଗତ ଓ ଜୀବନକୁ ଅନୁଭବ କରିଛନ୍ତି ଓ ଅକାତରେ ଉପଲବ୍ଧ ସତ୍ୟକୁ ବିତରଣ କରିଛନ୍ତି ।

‘ଇସ୍ତାହାର’ ଓଡ଼ିଆ ସାରସ୍ୱତ ଆକାଶର ଧ୍ରୁବତାରା ନିଶ୍ଚିତ । ଏମିତି ନିରପେକ୍ଷ ମନନଶୀଳ, ତାତ୍ତ୍ୱିକ ପୁଣି ଲୋକପ୍ରିୟ ପତ୍ରିକାର ସଂପାଦନା ଖୁବ୍ କାଠିକର ପାଠ । ‘ଇସ୍ତାହାର’କୁ ପ୍ରକାଶ କରିବାକୁ ଯାଇ ବହୁ ବ୍ୟଥା ଓ ଦଂଶନ ପାଇଛନ୍ତି । ଅଥଚ୍ ନିଜର ବ୍ୟଥା ଓ ଅସହାୟତାକୁ ନିଜ ସୃଜନକର୍ମର ଭିତ୍ତି ଭାବେ ଗ୍ରହଣ କରି ବାଟ ଚାଲିଛନ୍ତି । ଭାଂଗି ପଡ଼ିବେ ପଛେ ନଇଁବେ ନାହିଁ । ଏପରି ଦର୍ଶନ ଧରି ବଞ୍ଚିଲେ ଦଂଶନ ମିଳେ । ଏମିତି ସତ୍ୟକୁ ଉପଲବ୍ଧି କରିଥିବାରୁ ସବୁ କ୍ଷେତ୍ରରେ ତାଙ୍କର ସ୍ୱାଭିମାନ ପ୍ରତିଫଳିତ ।

୧୯୬୪ରେ ପୂଜ୍ୟପୂଜା ସଂସଦର ପ୍ରାଣପ୍ରତିଷ୍ଠା କରି ଓଡ଼ିଶାରେ ଯେଉଁ ଦୁର୍ଲ୍ଲଭ ପରଂପରା ସେ ଆରମ୍ଭ କଲେ ସେଥିପାଇଁ ସେ ଚିରବନ୍ଦିତ । ଶାରଳା ପୁରସ୍କାର ପ୍ରବର୍ତ୍ତନ କରି ଓଡ଼ିଶାର ପ୍ରତିଭାମାନଙ୍କୁ ପ୍ରେରଣା ଦେବାରେ ମଧ୍ୟ ସେ ଅଦ୍ୱିତୀୟ । ଯେଉଁ କ୍ଷେତ୍ରକୁ ପ୍ରବେଶ କରିଛନ୍ତି, ସେ’ଠି ସ୍ୱୀୟ ପ୍ରତିଭାର ସ୍ପର୍ଶରେ ନୂଆ ଚମକ ସୃଷ୍ଟି କରିଛନ୍ତି । ଧାରା ସୃଷ୍ଟି କରିଛନ୍ତି ।

ଭାଷା ସାହିତ୍ୟ ଓ ସଂସ୍କୃତି ପ୍ରତି ବିମୁଖ ଏବର ସମୟରେ ପ୍ରଫେସର ଶତପଥୀଙ୍କ ପରି ବ୍ୟକ୍ତିତ୍ୱ ବିରଳ । ସକଳ ବିମୁଖତା ଭିତରେ ସାହିତ୍ୟ ଓ ସୃଜନଧାରାକୁ ଗତିଶୀଳ ରଖିବାରେ ତାଙ୍କର ଭୂମିକାକୁ ଲେଖିବସିଲେ ଏକ ସ୍ୱତନ୍ତ୍ର ସାରସ୍ୱତ ଇତିହାସ ହେବ । ସେ ବ୍ୟକ୍ତି ନୁହଁନ୍ତି । ନିଜ ଦକ୍ଷତା ଓ ପ୍ରତିଭା ତାଙ୍କୁ ଏକ ଅନୁଷ୍ଠାନରେ ପରିଣତ କରିଛି । ଉପେକ୍ଷିତ ଆଧୁନିକ ପ୍ରୟୋଗବାଦୀ କବିତାକୁ ସେ ପୁଣି ପାଠକୀୟ ଆଦର ଦେବାରେ ଆଜୀବନ ପ୍ରଯତ୍ନ କରି ଚାଲିଛନ୍ତି ।

ତାଙ୍କ ବ୍ୟକ୍ତିତ୍ୱର ତୁଳନାରେ ଏତିକି କୁହାଯାଇପାରେ ଯେ, ଏବେ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ମାନଙ୍କରେ ମାଳ ମାଳ ଅଧ୍ୟାପକ, ପ୍ରାଧ୍ୟାପକ ଓ ପ୍ରଫେସର ଅଛନ୍ତି ମାତ୍ର ଶିକ୍ଷା ଓ ଶିକ୍ଷାୟତନ ସହ ସମଗ୍ର ଓଡ଼ିଆ ଜାତିକୁ ଉଦ୍‌ବୁଦ୍ଧ କରିବା ଭଳି ଗୁରୁ ଏବେ ଦୁର୍ଲ୍ଲଭ । ତାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ମହାପାତ୍ର ନୀଳମଣି ସାହୁଙ୍କ ବକ୍ତବ୍ୟ ହେଲା- “କିନ୍ତୁ ନିତ୍ୟାନନ୍ଦ ବାବୁ ଗୋଟିଏ ଦୃଷ୍ଟିରୁ ସଂସାରୀ ମଣିଷ ନୁହଁନ୍ତି । ସେ ଗୋଟିଏ କ୍ଷୁଦ୍ର ପରିବାରରେ

ବନ୍ଧା ପଡ଼ିବା ଲୋକ ନୁହଁନ୍ତି । ତାଙ୍କ ଆଖି ଆଗରେ ଥାଏ ସବୁବେଳେ ଏକ ବୃହତ୍ତର ପରିବାର – ଯାହାର ଘରିପଟେ କାନ୍ଥ ନାହିଁ କି ଉପରେ ଛାତ ନାହିଁ ।"

ଅବିଭକ୍ତ କଟକ ଜିଲ୍ଲାର କୁଜଙ୍ଗ ନିକଟସ୍ଥ ପୀତାମ୍ବରପୁର ପରେ ଗରାଇଶାସନ ଭାବେ ପରିଚିତ ଗ୍ରାମ ଶ୍ରୀ ଶତପଥୀଙ୍କ ଜନ୍ମସ୍ଥାନ । ୧୯୩୭ ଅକ୍ଟୋବରରେ ଜନ୍ମିତ ଏ ପ୍ରତିଭା ପରିବାରର ସଂସ୍କାର ଓ ପ୍ରେରଣାରେ ଶିକ୍ଷକ ବୃତ୍ତିରେ ଯୋଗ ଦେଇଥିଲେ ।

ଆଜୀବନ ନିଜ ଯାତ୍ରାପଥରେ ଗତି କଲାବେଳେ ଏକ ପବିତ୍ର ଅସନ୍ତୋଷ ତାଙ୍କୁ ନୂଆ କିଛି କରିବାର ଯେତିକି ପ୍ରେରଣା ଦେଇଛି ସେତେ ଗତିପଥକୁ କରିଛି ବଂଧୁର ଓ କଣ୍ଟକିତ । ତଥାପି ସେ ସ୍ୱପ୍ନବିଭୋର ପାଦ ଥକିଯାଇନି; ରହିଯାଇନି ବାଟ ଅଧାରେ । କାରଣ ସେ ପାଦ ସମଗ୍ର ସାହିତ୍ୟ ଜଗତ ପରିକ୍ରମା କରିଛି । ଶାଣିତ ସେ ଜୀବନଦୃଷ୍ଟି ଆମ ସମୟ ଓ ପରିବେଶକୁ ଯଥାର୍ଥ ରୂପରେ ଆମ ଆଗରେ ଆଙ୍କି ଦେଇଛି ।

କବି ପ୍ରତିଭା ଶତପଥୀଙ୍କ ସହ ବିବାହ ଅବସରରେ ପ୍ରକାଶ ପାଇଥିଲା ଯୌଥ କବିଦ୍ୱର ଆଦ୍ୟ ଚମକ 'ଆମ କବିତା' । ଏହି ଗ୍ରନ୍ଥର ପ୍ରାକ୍ କଥନୀରେ ପ୍ରକାଶିତ 'ଗଣଚିନ୍ତା ଓ ଅତ୍ୟାଧୁନିକ କବିତା' ଶୀର୍ଷକ ଆଲେଖ୍ୟ ସାଙ୍ଗକୁ 'ଅଗ୍ନିଶିଖା' ଓ 'ଶେଷଜହ୍ନ' ନାଁରେ ଉଭୟ ପତି ପତ୍ନୀଙ୍କ କବିତା ପ୍ରକାଶିତ । 'ଆମ କବିତା' ହିଁ କବି ସମାଲୋଚକ ନିତ୍ୟାନନ୍ଦଙ୍କ ସୃଜନ ଜୀବନର ଆଦ୍ୟ ଉନ୍ମେଷ । ତାଙ୍କ କବିତାର ଭାଷାରେ ସେ –

"ମୁଁ ଖାଲି ଅନ୍ଧ ପ୍ରେମର ନାୟକ ନୁହେଁ
ବିଭାଜିତ ସ୍ମୃତିର ଭାଗଫଳ ବା ଭାଗଶେଷ ନୁହେଁ
ପରମ ପ୍ରେମିକର ପ୍ରେମ ପାଶରେ ବନ୍ଧା
ଚିର ସ୍ନେହ ପାଗଳ ମଣିଷଟିଏ ।" – ସ୍ମୃତି-୨/୧୯୯୪

ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଲେଖନୀରୁ...

କବିତା

ଆମ କବିତା – ୧୯୬୨ ନିତ୍ୟାନନ୍ଦ ଶତପଥୀ ପୁନଶ୍ଚ 'ସବାସାନ ପ୍ରେମିକା' ଓ ଅନ୍ୟାନ୍ୟ କବିତା (୨୦୧୨) ଓ ପ୍ରତିଭା ଶତପଥୀ 'ଅଗ୍ନିଶିଖା' ଓ 'ଶେଷଜହ୍ନ' ।

**ଆଲୋଚନା ସମାଲୋଚନା :**

୧. କବିତା ଯୁଗେ ଯୁଗେ – ୧୯୭୪
୨. ଆଧୁନିକ ଓଡ଼ିଆ ସାହିତ୍ୟ : ଚିନ୍ତା ଓ ଚେତନା – ୧୯୯୦
୩. ସବୁଜରୁ ସାମ୍ପ୍ରତିକ – ୧୯୭୯ ଏଯାବତ୍ ସାତୋଟି ସଂସ୍କରଣ
୪. ପ୍ରମୁଖ କବି କତିପୟ – ୧୯୮୫
୫. କାବ୍ୟ ପ୍ରକରଣ – ୧୯୯୩
୬. ଗଳ୍ପ ଓ ଗାଳ୍ପିକ – ୧୯୮୭, ୨୦୦୪

୭. ସତ୍ୟବାଦୀ ସ୍ରଷ୍ଟା ଓ ସୃଷ୍ଟି - ୧୯୯୯ (ଓ.ସା.ଏ. ପୁରସ୍କାର ପ୍ରତ୍ୟାଖ୍ୟାନ)
୮. ସାରଳାରୁ ସମ୍ପ୍ରତି - ୧୯୯୭
୯. କବିତାସେତୁ - ୨୦୦୯
୧୦. ସତୁରୀରୁ ସହସ୍ରାବ୍ଦୀ - ୨୦୦୩, ୨୦୧୦
୧୧. କାବ୍ୟ ଦୃଷ୍ଟି, କାବ୍ୟ ବିଚ୍ଛର-୨୦୧୫
୧୨. ମେଗା ଓଡ଼ିଆ ଉପନ୍ୟାସ ୨୦୧୫

**ଗଳ୍ପ / ଉପନ୍ୟାସ / ଜୀବନୀ ପୁସ୍ତକ :**

୧. କାଳ ଓ କର୍ଣ୍ଣିକା (ଗଳ୍ପ / ୧୯୮୯)
୨. ଅନିକେତ (ଉପନ୍ୟାସ / ୧୯୯୦)
୩. ହେ ସାଥି ହେ ସାରଥି (ଜୀବନୀ ପୁସ୍ତକ / ୧୯୬୯) ଏଯାବତ୍ ୭ଟି ସଂ.

**ସଂକଳନ ଓ ସଂପାଦନା :**

୧. ଚଳିତ ଶତାବ୍ଦୀର ଓଡ଼ିଆ କବିତା - ୧୯୭୮
୨. ଲଳିତ ନିବନ୍ଧ - ୧୯୮୫
୩. ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ (୧ମ ଓ ୨ୟ ଭାଗ) - ୧୯୮୩
୪. ସାମ୍ପ୍ରତିକ ଓଡ଼ିଆ କବିତା - ୧୯୯୭
୫. କବି ମନୀଷୀ - ୧୯୮୩
୬. ସତ୍ୟବାଦୀ ସାହିତ୍ୟଯୁଗ - ୧୯୯୨
୭. ମଧୁସ୍ମରଣିକା - ୧୯୬୬
୮. ଗୋପବନ୍ଧୁ ସ୍ମରଣିକା - ୧୯୬୭
୯. ନୀଳକଣ୍ଠ ପରିକ୍ରମା - ୧୯୬୯
୧୦. ପ୍ରହରାଜ ପରିକ୍ରମା - ୧୯୭୧
୧୧. ଆଶ୍ଚର୍ଯ୍ୟ ପରିକ୍ରମା - ୧୯୭୩
୧୨. ଅତିବଡ଼ୀ ପରିକ୍ରମା - ୧୯୭୫
୧୩. ଗୋପବନ୍ଧୁ ପରିକ୍ରମା - ୧୯୭୭ (ଜନ୍ମ ଶତାବ୍ଦୀ ଉପଲକ୍ଷେ)
୧୪. ମାନସିଂହ ପରିକ୍ରମା - ୧୯୭୯
୧୫. ବୈକୁଣ୍ଠ ପରିକ୍ରମା - ୧୯୮୧
୧୬. ଗୋଦାବରୀଶ ପରିକ୍ରମା - ୧୯୮୬
୧୭. ଗଜପତି ପରିକ୍ରମା - ୧୯୮୯
(ଇସ୍ତାହାର ସଂପାଦନା - ୧୯୭୮ ରୁ ଏଯାବତ୍) - ପ୍ରାୟ ୪୦ ବର୍ଷଧରି ।

ପ୍ର: ସାହିତ୍ୟ ଆଗ, ସବୁ କଥା ପଛ - ଏମିତି ଏକ ବିଶ୍ୱାସ ଧରି ବଞ୍ଚିବା ବେଳେ ଆପଣଙ୍କର ସଫଳତା ଓ ବିଫଳତାର କେବେ ଆକଳନ କରିଛନ୍ତି ?

ଉ: ପ୍ରଥମ କଥାଟି ମୋ ଜୀବନରେ ସତ୍ୟତାରେ ପରିଣତ ହୋଇଛି । ମୁଁ ମଝିରେ ବିପଥଗାମୀ ହୋଇ ସାହିତ୍ୟକୁ ପଛ କରିଦେଇଥିଲି ଓ ସେଥିପାଇଁ ବିପୁଳ ପରାଭବ ପାଇଛି । ତା'ପରେ ପୁଣି ମୋ ନିଜ ରାଜ୍ୟକୁ ଫେରିଆସିଛି । ମା' ଶାରଳା ହିଁ ମୋର ଆରାଧ୍ୟା ଦେବୀ । ତାଙ୍କୁ ହିଁ ମୋର ବିଶ୍ୱାସ, ସଫଳତା, ବିଫଳତା ସବୁ ସମର୍ପଣ କରିଦେଇଛି । ମଣିଷ ଜୀବନରେ କେତେ ବା ସଫଳତା ଆସେ କିନ୍ତୁ ବିଫଳତାର ମାତ୍ରା ସବୁବେଳେ ଅଧିକ । ମୋ ଜୀବନରେ ତେଣୁ ଏ ସଫଳତା ଓ ବିଫଳତାର ଆକଳନ ମୁଁ କ'ଣ ନିଜେ କରିପାରିବି ? ସେ ଦାୟିତ୍ୱ ତୁମମାନଙ୍କ ପରି ଅନୁରାଗୀ ଛାତ୍ର ଓ ସାହିତ୍ୟିକଙ୍କର ମୁଣ୍ଡକୁ ନେବାକଥା ।

ପ୍ର: ପୂଜ୍ୟପୂଜା ସଂସଦ ପରି ଅନୁଷ୍ଠାନ ଜରିଆରେ ଆପଣ ସାହିତ୍ୟିକ ଧାରା ଓ ପରମ୍ପରାକୁ କ'ଣ ନୂଆ ରୂପ ଦେଇଛନ୍ତି ବୋଲି ଭାବୁଛନ୍ତି ?

ଉ: ନା, ତା ଭାବୁନାହିଁ; କିନ୍ତୁ ସାହିତ୍ୟ ହିଁ ଯେ କୌଣସି ଆଦର୍ଶ ବା ଚେତନାକୁ ଚିରାୟତ କରିଥାଏ । ସେଥିପାଇଁ ପୂଜ୍ୟପୂଜା ସଂସଦର ଆଭିମୁଖ୍ୟ ଥିଲା ଆମ ରାଜ୍ୟର ବିପୁଳଯଶା ଜନନାୟକ ଓ ସାହିତ୍ୟିକମାନଙ୍କୁ ସାହିତ୍ୟ ମାଧ୍ୟମରେ ଆରାଧନା କରିବା । ଆମେ ପ୍ରଥମେ ପ୍ରଥମେ ସଭାସମିତି ଓ ସ୍ମୃତିତର୍ପଣ ଉପରେ ବିଶ୍ୱାସ କରୁଥିଲୁ । କିନ୍ତୁ ପରେ ଶ୍ରୀଯୁକ୍ତ ବିମଳ କିଶୋର ମିଶ୍ର (ଆଇ.ଏ.ଏସ୍)ଙ୍କ ପରାମର୍ଶରେ ଗୋଟିଏ ଗୋଟିଏ ଜୀବନୀ ଓ କୃତି ଆକଳନମୂଳକ ପୁସ୍ତକ ଛାପି ସେମାନଙ୍କ ବିପୁଳତାକୁ ବିଜ୍ଞାପିତ କରିବା ପନ୍ଥା ବାଛିନେଲୁ । ପ୍ରକୃତରେ ଭାଷଣ ପବନରେ ଉଡ଼ିଯାଏ; କିନ୍ତୁ ବହିଟିଏ ମାଧ୍ୟମରେ ସେଇ ସବୁ ଐତିହାସିକ ପୁରୁଷ ଅଧିକ ତେଜୋଦୀପ୍ତ ହୋଇ ଉଠନ୍ତି । ଆମର ପରବର୍ତ୍ତୀ ପିଢ଼ିକୁ ଭାବଚେତନାର ସନ୍ଦେସ ସଠିକ୍ ଭାବରେ ଗତି କରିପାରେ । ଏପରି ଏକ ପରିକଳ୍ପନା ୧୯୬୫-୬୬ରେ ମଧୁବାବୁଙ୍କୁ ନେଇ ରଚିତ 'ମଧୁସ୍ମରଣିକା'ରୁ ପ୍ରଥମେ ଆରମ୍ଭ ହୋଇଥିଲା ଓ ଏହି କ୍ରମରେ ଓଡ଼ିଶା ପୂଜ୍ୟପୂଜା ସଂସଦ ପକ୍ଷରୁ ପ୍ରାୟ ୧୨ଟି ପୁସ୍ତକ ବିଭିନ୍ନ ସମୟରେ ପ୍ରକାଶ ପାଇଥିଲା । ଏହି ଉଦ୍ୟମ ଆଜି ପରଂପରାରେ ପରିଣତ ହୋଇସାରିଛି । ତେଣୁ ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ସ୍ୱତଃ ପୂଜ୍ୟପୂଜା ସଂସଦ ପରି ଅନୁଷ୍ଠାନମାନ ଗଢ଼ି ଉଠିଛି । ମହାଜନମାନଙ୍କର ଜୀବନୀ ଓ କୃତିକୁ ନେଇ ନାନାଦି ପୁସ୍ତକ ପ୍ରକାଶ ପାଉଛି । ସେ ସବୁ ପୁସ୍ତକ କ୍ରମେ ସାହିତ୍ୟରାଜ୍ୟର ପୌରାଣିକ ସଂପତ୍ତିରେ ପରିଣତ ହୋଇଯାଉଛି । ଏ ସଫଳତା ମୋତେ ବିସ୍ମିତ ଓ ମୁଗ୍ଧ କରି ରଖିଛି ।

ପ୍ର: 'ହେ ସାଥି ! ହେ ସାରଥି !' ପରି ଜୀବନୀ ପୁସ୍ତକ ରଚନା ପଛରେ କେଉଁ ଇଚ୍ଛାଶକ୍ତି ଓ ପ୍ରେରଣା ନିହିତ ?

ଉ: ପୂଜ୍ୟପୂଜା ସଂସଦ ଗଠନର ସମସାମୟିକ ଭାବେ ଗତ ଶତାବ୍ଦୀର ଷଷ୍ଠ ଦଶକରେ ମୁଁ ଓ ଆମ ସଂସଦର ତତ୍‌କାଳୀନ ସଭାପତି ସଂସ୍କୃତି ମନ୍ତ୍ରୀ ସନ୍ତୋଷ କୁମାର ସାହୁ ସାକ୍ଷୀଗୋପାଳ ଠାରେ ସ୍ଥାନୀୟ ଲୋକଙ୍କ ଦ୍ୱାରା ଆୟୋଜିତ ଗୋପବନ୍ଧୁଙ୍କ ସ୍ମୃତି ସଭାରେ ଭାଷଣ ଦେବାକୁ ଯାଇ ସେମାନଙ୍କର ବାସ୍ତବ ଅଭିଯୋଗର ସାମ୍ନା କରିଥିଲୁ । ସେମାନେ କହିଲେ, ଗୋପବନ୍ଧୁ ସେଦିନୁ ଚାଲିଗଲେଣି; ଅଥଚ୍ ତାଙ୍କ ଗ୍ରାମକୁ ଭଲ ରାସ୍ତାଟିଏ ନାହିଁ କିମ୍ବା ତାଙ୍କ ସମ୍ପର୍କରେ ପ୍ରାମାଣିକ ଜୀବନୀପୁସ୍ତକ ପ୍ରକାଶ ପାଉନାହିଁ । ଏପରି ଏକ କ୍ଷୋଭର ମୁକାବିଲା କଲାବେଳେ ମୋ ବକ୍ତବ୍ୟରେ ମୁଁ ଭାବବିଭୋର ହୋଇ ସେଇଠି ୧୯୬୫ ମସିହା ଅକ୍ଟୋବର ୯ ତାରିଖ ଦିନ (ଜନ୍ମଦିନ) ପ୍ରତିଶ୍ରୁତି ଦେଇ ବସିଥିଲି ଯେ ତିନିବର୍ଷ ମଧ୍ୟରେ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଜୀବନଟିଏ ଲେଖି ତାଙ୍କ ସ୍ମୃତିସଭାରେ ଦାଖଲ କରିବି । ଏଇ ପ୍ରତିଶ୍ରୁତି ହିଁ ଥିଲା ମୋ ପାଇଁ ଏକମାତ୍ର ପ୍ରେରଣା ଓ ବାଧ୍ୟବାଧକତା । ସେତେବେଳେ ମୁଁ ରେଭେନ୍‌ସା ନୈଶ କଲେଜର ଓଡ଼ିଆ ବିଭାଗ ମୁଖ୍ୟ; ପ୍ରଚୁର ଉଦ୍ଦାମତା ଓ ଇଚ୍ଛାଶକ୍ତି ମୋତେ ବହୁ ଅସାଧ ସାଧନ ପାଇଁ ଅନୁପ୍ରେରିତ କରୁଥିଲା । ତା'ରି ଫଳଶ୍ରୁତି 'ହେ ସାଥି ! ହେ ସାରଥି !' ଯାହା ପ୍ରାୟ ତିନିବର୍ଷ ହେବ ବଜାରରେ ମିଳୁନାହିଁ ।

ପ୍ର: କବିତା, ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ଛାଡ଼ି ସମାଲୋଚ଼ନାରେ ହାତ ଦେବା ପଛରେ କେଉଁ ମାନସିକତା ରହିଥିଲା ?

ଉ: ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଖୋଲିଲା ୧୯୬୯ ମସିହା ଜୁଲାଇ ପହିଲାରେ । ମୁଁ ସେଠାରେ ଅଧ୍ୟାପକ ଭାବେ ସେହିଦିନ ହିଁ ଯୋଗ ଦେଲି ଓ ଉତ୍ସାହୀ ଛାତ୍ରମାନଙ୍କୁ ଆଧୁନିକ ଓଡ଼ିଆ କବିତା ପଢ଼ାଇବାର ଦାୟିତ୍ୱ ବହନ କଲି । ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କ ମଧ୍ୟରେ ପାଠ୍ୟ ସଂପର୍କୀୟ ପ୍ରତିଯୋଗିତା ସବୁବେଳେ ଥାଏ । ପ୍ରବନ୍ଧ, ସମାଲୋଚ଼ନା ଓ ଗବେଷଣା ହିଁ ସେମାନଙ୍କ କୃତିତ୍ୱର ମାପକାଠି ଭାବେ ବିବେଚିତ ହୁଏ । ମୁଁ ଆଧୁନିକ ଓଡ଼ିଆ କବିତାର ଏକ ବିଶିଷ୍ଟ ସମୟଖଣ୍ଡ ୧୯୨୦-୧୯୭୦ ଯାଏ ରଚ଼ିତ ଓଡ଼ିଆ କବିତା ଉପରେ ଗବେଷଣା କରିବା ସଂଗେ ସଂଗେ ପତ୍ରପତ୍ରିକାରେ ବରାବର ସମାଲୋଚ଼ନାମୂଳକ ପ୍ରବନ୍ଧ ଲେଖିବାକୁ ଏକପ୍ରକାର ବାଧ୍ୟ ହେଉଥିଲି । କିଛି ନୂଆ ଦୃଷ୍ଟିକୋଣରୁ ସମାଲୋଚ଼ନା ଲେଖିବା ପାଇଁ କ୍ରମେ ମନରେ ଝୁଙ୍କ୍ ଆସିଗଲା ଓ ମୋର ସୃଜନଶୀଳ ଗଳ୍ପ ଓ କବିତା କଣଠେସା ହୋଇଗଲା । ମୁଁ ନିଜେ ଅନୁଭବ କଲି ମୋର... ଓ ମୋ ପତ୍ନୀଙ୍କ ମଧ୍ୟରେ ବୋଧହୁଏ ସାରସ୍ୱତ ବିବାଦ ଉପସ୍ଥିତ ହୋଇଛି । ଯେତେ ଚେଷ୍ଟା କଲେବି ଭଲ କବିତାଟିଏ ଆଉ ଲେଖିପାରିଲି ନାହିଁ । ସମାଲୋଚ଼ନା ଲେଖିବା ଖୁବ୍ ସମୟ ସାପେକ୍ଷ କଳା ଓ ସେଥିପାଇଁ ବିଶେଷ ଅଧ୍ୟୟନର ଆବଶ୍ୟକତା ରହିଛି । ତାହାହିଁ ମୋତେ ବିଶେଷ ତୃପ୍ତି ଦେଲା ଓ ଗୋଟିଏ ପରେ ଗୋଟିଏ ସମାଲୋଚ଼ନା ପୁସ୍ତକ ପ୍ରକାଶିତ ହେବାକୁ ଲାଗିଲା । ମୋର ଗବେଷଣା, ନିବନ୍ଧ 'ସବୁଜର

ସାଂପ୍ରତିକ' ଆଧୁନିକ ଓଡ଼ିଆ କବିତାକୁ ଚିହ୍ନି ଚିହ୍ନାଇବାରେ ଏକ ସାର୍ଥକ ପ୍ରଚେଷ୍ଟା ବୋଲି ମୋର ଅଧ୍ୟାପକ ବନ୍ଧୁ, ମୋର ଶିକ୍ଷକ, ମୋର ଛାତ୍ର ଓ ପାଠକମାନେ ପ୍ରାୟ ଏକମତ - ଏହାହିଁ ମୋର ଆନନ୍ଦ ଓ ସାର୍ଥକତା । ବୋଧହୁଏ କୌଣସି ପୁରସ୍କାର ମୋର ଅଗଣିତ ପାଠକଙ୍କ ସଦିଚ୍ଛାକୁ ସହଜରେ ଅତିକ୍ରମ କରିପାରିବ ନାହିଁ ।

ପ୍ର: ପତ୍ରପତ୍ରିକାରେ ପ୍ରକାଶ ପାଉଥିବା ପୁସ୍ତକ ସମୀକ୍ଷାକୁ ନିରପେକ୍ଷ ସମାଲୋଚନା କୁହାଯାଇପାରିବ କି ?

ଉ: ନିରପେକ୍ଷ ସମାଲୋଚନା ମାପକାଠି କ'ଣ ? ମୋ ବିଚାରରେ ଉଭୟ ତ୍ରୁଟି ଓ ସଫଳତାର ଆକଳନ ଯେଉଁ ସମାଲୋଚନାରେ ଥାଏ, ତାହାହିଁ ନିରପେକ୍ଷ । ପତ୍ରପତ୍ରିକାର ଗୋଟାଏ ଦୁର୍ବଳତା ହେଲା ଲେଖକ ତା' ବହିଟିକୁ ତା'ର କୌଣସି ପରିଚିତ ବ୍ୟକ୍ତିକୁ ଦେଇ ପ୍ରସ୍ତୁତ କରିଥିବା ସମୀକ୍ଷାଟିକୁ ବାଧ ହୋଇ ଛାପିଥାନ୍ତି । କାରଣ ବହିଟିକୁ ପଢ଼ି ନିଜେ ସଂପାଦକ ଆକଳନଟିଏ ପ୍ରସ୍ତୁତ କରିବାକୁ ସମୟ ପାଆନ୍ତି ନାହିଁ । ପୁଣି ସବୁ ସଂପାଦକ ସମାଲୋଚକ ନୁହଁନ୍ତି । ସେମାନେ ତେଣୁ ପ୍ରାୟ ପୁସ୍ତକ ସମୀକ୍ଷା ବିଭାଗ ରଖନ୍ତି ନାହିଁ । ତେବେ 'ଇସ୍ତାହାର'ରେ ପ୍ରକାଶ ପାଉଥିବା ସମାଲୋଚନାକୁ ଆପଣ ନିରପେକ୍ଷ ଭାବେ ଗ୍ରହଣ କରିପାରନ୍ତି ଯଦିଓ 'ଇସ୍ତାହାର' ସଂପାଦକ ଜାଣନ୍ତି ଯେ ନାନାଦି ବାଧବାଧକତାରେ ପୁସ୍ତକ ସମୀକ୍ଷା ବିଭାଗଟି ପ୍ରକାଶ ପାଇଥାଏ ।

ପ୍ର: 'ଇସ୍ତାହାର' ଓଡ଼ିଆ ସାହିତ୍ୟର ଯଥାର୍ଥ ଇସ୍ତାହାର-ନିରପେକ୍ଷ ସଂପାଦନା ପାଇଁ କେଉଁ ଯୋଗ୍ୟତା ଆବଶ୍ୟକ ?

ଉ: 'ଇସ୍ତାହାର' ଏକ ଦାୟବଦ୍ଧ ସମାଲୋଚନା ସମୃଦ୍ଧ ସୃଜନଶୀଳ ଓଡ଼ିଆ ତ୍ରୈମାସିକ ବୋଲି ସମସ୍ତେ ବିଚାରୁଛନ୍ତି । ତେଣୁ ଆମ ପାଖରେ ବହୁ ଉଚ୍ଚକୋଟୀର ପ୍ରବନ୍ଧ ଓ ସମାଲୋଚନା ପହଞ୍ଚି ଯାଉଛି । ମୋ ବିଚାରରେ ସମାଲୋଚନା ହିଁ ଯେକୌଣସି ସାହିତ୍ୟର କୃତି ଓ କୃତିତ୍ୱକୁ ଚିହ୍ନାଇଥାଏ । ତେଣୁ ଆମେ ସମାଲୋଚନା ଉପରେ ଅଧିକ ଗୁରୁତ୍ୱ ଦେଇଥାଉ । ନିରପେକ୍ଷ ସମ୍ପାଦନାର ଗୋଟିଏ ଅଭିଜ୍ଞତା ସଂପର୍କରେ ଏଠି ସୂଚନା ଦେଉଛି । ଏଥର ପୂଜାସଂଖ୍ୟା ପାଇଁ ଉତ୍ତର-ଆଧୁନିକ ଓଡ଼ିଆ ସାହିତ୍ୟ (କବିତା ଅଭିମୁଖୀ) ଉପରେ ଦୁଇଟି ପ୍ରବନ୍ଧ ଆସିଥିଲା । ଗୋଟିଏ କୋରାପୁଟର କେନ୍ଦ୍ରିୟ ବିଶ୍ୱବିଦ୍ୟାଳୟର ଅଧ୍ୟାପକଙ୍କ ଲେଖା ଓ ଅନ୍ୟଟି ମୋର ପ୍ରିୟ ଛାତ୍ର ଦିଲୀପ କୁମାର ସ୍ୱାଇଁଙ୍କ ଲେଖା । ମୁଁ ଏଥିରୁ ଗୋଟିଏ ପ୍ରବନ୍ଧ ବାଛିବାକୁ ସ୍ଥିର କଲି ଓ ଯେଉଁ ପ୍ରବନ୍ଧଟି ଆଗ ଆସିଥିଲା ତାକୁ ହିଁ ଗୁରୁତ୍ୱ ଦେଲି । ଯଦିଓ ମୁଁ ଜାଣୁଛି ଦିଲୀପ ଏଥିପାଇଁ ମୋତେ ଆଦୌ କ୍ଷମା ଦେବନି । କିନ୍ତୁ ପରିସ୍ଥିତି ମୋତେ ଏଥିପାଇଁ ସମ୍ଭବତଃ ବାଧ କଲା । ଅପ୍ରକାଶିତ ପ୍ରବନ୍ଧଟି ଖୁବ୍ ଉଚ୍ଚମାନର ଓ ତାହା ଜାନୁଆରୀ ୨୦୧୨ ସଂଖ୍ୟାରେ ହିଁ ପ୍ରକାଶ ପାଇବ ବୋଲି ମୁଁ ପୂଜାସଂଖ୍ୟାରେ ଘୋଷଣା କରିଛି । 'ଇସ୍ତାହାର'କୁ ଏତେ ପରିମାଣରେ ପ୍ରବନ୍ଧ ଆସୁଛି ଯେ ସବୁ ପ୍ରବନ୍ଧ

ଛାପିବା କଷ୍ଟକର । ପ୍ରବନ୍ଧ / ସମାଲୋଚ଼ନାକୁ ମୁଁ ପଢ଼ି ଏଡିଟ୍ କଲାପରେ ହିଁ ଛପାଯାଏ । ତେଣୁ ନିରପେକ୍ଷ ସଂପାଦନା ପାଇଁ ଦୃଢ଼ ମାନସିକତା, ବିଚାରଶକ୍ତି, ଅଧ୍ୟୟନ ଓ କର୍ତ୍ତବ୍ୟ ବିରୋଧର ସମ୍ମୁଖୀନ ହେଲେ ତହିଁରୁ ମୁକୁଳି ଯିବାର ପନ୍ଥା ସଂପାଦକଙ୍କୁ ଜଣାଥିବା ଦରକାର ।

ପ୍ର: ସମକାଳୀନ ଓଡ଼ିଆ ସାହିତ୍ୟରେ ସମାଲୋଚ଼ନାର ପରଂପରା ଖୁବ୍ ଦୁର୍ବଳ କାହିଁକି ଓ ପ୍ରତିକାର କ'ଣ ?

ଉ: ସମକାଳୀନ ଓଡ଼ିଆ ସାହିତ୍ୟରେ ସମାଲୋଚ଼ନାର ପରଂପରା ଦୁର୍ବଳ ବୋଲି କାହିଁକି ଭାବୁଛନ୍ତି ? ଅବଶ୍ୟ କବି, ଗାଳ୍ପିକ ଓ ଔପନ୍ୟାସିକଙ୍କ ସଂଖ୍ୟା ସହିତ ସମାଲୋଚ଼କମାନେ ପ୍ରତିଯୋଗିତା କରିପାରିବେ ନାହିଁ । ସମାଲୋଚ଼ନା ସାହିତ୍ୟର ସବୁ ବିଭାଗ ମଧ୍ୟରେ ଏକ ଜଟିଳ ବିଭାଗ । ଗୋଟିଏ ଗପ ହୁଏତ କେତେ ଘଣ୍ଟା ମଧ୍ୟରେ ଲେଖି ଦେଇ ହେବ; କିନ୍ତୁ ସମାଲୋଚ଼ନା ପାଇଁ କେତେ ଦିନ ବି ଲାଗିପାରେ । ତେଣୁ ଯଥେଷ୍ଟ ସଂଖ୍ୟକ ସମାଲୋଚ଼କ ନାହାନ୍ତି । ଏବେ ଅନେକ ପତ୍ରପତ୍ରିକା ଅଛନ୍ତି ଯେଉଁମାନେ ସମାଲୋଚ଼ନାକୁ ଆଦୌ ପ୍ରକାଶ କରନ୍ତି ନାହିଁ । ସେମାନଙ୍କ ବିଚାର ହେଲା ପାଠକ କେବଳ ଗଳ୍ପ ଓ କବିତା ପଢ଼ିବାକୁ ଆଗ୍ରହୀ । ଖୁବ୍ ବେଶୀ ହେଲେ ଫିଚର୍ ଲେଖାଗୁଡ଼ିକୁ ପଢ଼ିପାରନ୍ତି । ତେଣୁ ଯେଉଁଠି ସମାଲୋଚ଼ନା ପଢ଼ିବାକୁ ପାଠକ ନାହାଁନ୍ତି, ଛାପିବାକୁ ପତ୍ରିକା ନାହିଁ, ପୁରସ୍କାର ଓ ପ୍ରୋତ୍ସାହନ ନାହିଁ ସେଠି ଉଚ୍ଚମାନର ସମାଲୋଚ଼ନା କିପରି ସୃଷ୍ଟି ହୋଇପାରିବ ? ଆମର କେତେକ ପ୍ରମୁଖ ଲେଖକ ସମାଲୋଚ଼ନାକୁ ଏକ ଉଚ୍ଚ ବର୍ଗର ସାହିତ୍ୟ କର୍ମ ବୋଲି ସ୍ୱୀକାର କରନ୍ତି ନାହିଁ; ଅଥଚ଼ ବିରୋଧାଭାସ ହେଲା ସେମାନେ ନିଜ କୃତି ସଂପର୍କରେ ସମାଲୋଚ଼କଠାରୁ ଆକଳନ ସବୁବେଳେ ଆଶା କରନ୍ତି । ସମାଲୋଚ଼କଙ୍କୁ ନିଜ ବହିଟିଏ ବି କ୍ୱଚିତ୍ ଉପହାର ଦିଅନ୍ତି; କାରଣ ସେମାନେ ଭାବନ୍ତି ସମାଲୋଚ଼କ ବହିଟିଏ ନିଶ୍ଚୟ କିଣିବ ଓ ନିଜର ପରିତୃପ୍ତି ପାଇଁ ଅଧ୍ୟୟନ କରିବ ଓ ଆଲୋଚ଼ନାଟିଏ ଲେଖିବ । ନ ଲେଖିଲେ ତା'ପ୍ରତି ଲେଖକ ଶତ୍ରୁ ଭାବାପନ୍ନ ହୋଇଯିବ । ଏ ଏକ ବିଚିତ୍ର ପରିସ୍ଥିତି । ସୃଜନଶୀଳ ଲେଖକମାନେ ସବୁ ସୁଯୋଗର ଅଧିକାରୀ ହେଉଥିବା ବେଳେ ସମାଲୋଚ଼କଟିଏ ଅବିଚାରର ଶରବ୍ୟ ହେବା ସାହିତ୍ୟ ପାଇଁ ଶୁଭଖବର ହୋଇ ନପାରେ ।

ପ୍ର: ଲୋକରତ୍ନ କୁଂଜବିହାରୀ ଦାଶ ଆପଣଙ୍କ ସୃଜନ ପଥକୁ କିପରି ଆଲୋକିତ କରିଛନ୍ତି ବୋଲି ଭାବୁଛନ୍ତି ?

ଉ: ମୁଁ ତାଙ୍କରି ଆଶୀର୍ବାଦରେ ଓଡ଼ିଆ ସାହିତ୍ୟକୁ ଭଲପାଇବା ଶିଖିଛି । ସେ ଯେଉଁଦିନ ମା' ଶାରଳାଙ୍କ ମନ୍ଦିର ବେଢ଼ାରେ କବି ସାରଳାଦାସଙ୍କ ଉପରେ ମୋତେ କିଛି କହିବାକୁ ବାଧ କଲେ ସତକହିବାକୁ ଗଲେ ମୁଁ ତାଙ୍କୁ ଓ ଶ୍ରୋତାଙ୍କୁ ସନ୍ତୁଷ୍ଟ କରିପାରିବି ବୋଲି

ଭାବିନଥିଲି । ସଭା ଶେଷ ହୁଅନ୍ତେ ମୋ ମୁଣ୍ଡରେ ହାତରଖି ସାର୍ କହିଲେ- "ଆଶୀର୍ବାଦ କରୁଛି ତୁମେ ଜଣେ ଉଚ୍ଚକୋଟୀର ବକ୍ତା ଓ ସମାଲୋଚକ ହୁଅ ।" ତା'ପରେ ତାଙ୍କରି ଅଧୀନରେ ମୋର ଗବେଷଣା କୃତି ଆଧୁନିକ ଓଡ଼ିଆ କବିତା ସଂପର୍କୀୟ 'ସବୁଜରୁ ସାଂପ୍ରତିକ' ଏକ ଅଭିନବ ସମାଲୋଚନା ଗ୍ରନ୍ଥଭାବେ ପ୍ରକାଶ ପାଇଲା । ତାଙ୍କର ଖୁସିର ସୀମା ନ ଥିଲା । ଭାଷା ସାହିତ୍ୟ ପାଇଁ ଏତେ ସ୍ୱାଭିମାନ ମୁଁ ଆଉ କେଉଁଠି ଦେଖିନି । ତାଙ୍କରି ପ୍ରେରଣାରେ 'ପୂଜ୍ୟପୂଜା ସଂସଦ' ତରଫରୁ ଏତେଗୁଡ଼ିଏ ପୁସ୍ତକ ପ୍ରକାଶ ପାଇଲା । ତେଣୁ ସେ ମୋର ସୃଜନ ପଥକୁ କେବଳ ଆଲୋକିତ କରି ଯାଇନାହାନ୍ତି ପୁଷ୍ପାସ୍ତୃତ କରିଦେଇଛନ୍ତି । ସେ ମୋର ସଖା, ଦିଗ୍‌ଦର୍ଶକ, ଗୁରୁ ଓ ପିତା ।

ପ୍ର: କବିତାକୁ ବୁଝିବା ପାଇଁ ଆପଣ ବିଶେଷ କିଛି ପଦ୍ଧତି, କୌଶଳ କିମ୍ବା ମାନସିକତାର ଅପେକ୍ଷା ରଖନ୍ତି କି ?

ଉ: କବିତା ବହିଟିଏ ପାଇଲେ ମୁଁ ତାକୁ ଆଗ ପଢ଼ିବସେ । ପତ୍ରିକାରୁ ମଧ୍ୟ କବିତା ବିଭାଗ ଉପରେ ମୋର ପ୍ରଥମ ଦୃଷ୍ଟି । ଯେଉଁ ପୁସ୍ତକଟି ଉପରେ ସମୀକ୍ଷା ଲେଖିବାକୁ ଭାବେ ତାକୁ ପ୍ରାୟ ତିନିଥର ପଢ଼େ । ତଥାପି ଯେଉଁ କବିତା ମୋ ପାଇଁ ଅପହଞ୍ଚ ରହିଯାଏ ସୁଯୋଗ ଥିଲେ କବିଙ୍କୁ ଭେଟି ଆଲୋଚନା କରେ, ନାହିଁ ତ ନିଜସ୍ୱ ବ୍ୟାଖ୍ୟା ଦେବାକୁ ଚେଷ୍ଟାକରେ । ଏବେ କିନ୍ତୁ ଗଳ୍ପ ଓ ଉପନ୍ୟାସ ଉପରେ କିଛି କାମ କରିବାକୁ ମୋତେ ଭଲ ଲାଗୁଛି । ବୋଧହୁଏ ସେଥିପାଇଁ ପ୍ରତିଭା ରାୟଙ୍କ ମେଗା ଉପନ୍ୟାସ 'ମଗ୍ନମାଟି'କୁ ତିନିଥର ପଢ଼ି ତା' ଉପରେ ପ୍ରାୟ ପଚାଶ ପୃଷ୍ଠାର ସମାଲୋଚନା ଲେଖିଛି ଓ ତାହା ବାଲେଶ୍ୱରରୁ ପ୍ରକାଶିତ 'ସାଗରିକା'ର ଛଅଟି ସଂଖ୍ୟାରେ ଧାରାବାହିକ ପ୍ରକାଶିତ ହୋଇଛି । କବିତା ବହିଟିଏ ଦେଇ ଜଣେ ସତ୍‌କବି ମୋତେ ସମାଲୋଚନା ଲେଖିବାକୁ ଅନୁରୋଧ କଲେ ତାହା ମୋ ପାଇଁ ଏକ ଦାୟିତ୍ୱରେ ପରିଣତ ହୋଇଯାଏ । ମୁଁ ସରସ୍ୱତୀଙ୍କ ପାଖରେ ଦାୟବଦ୍ଧ - ତେଣୁ ଏ ସବୁ ଆହ୍ୱାନକୁ ଉପେକ୍ଷା କରିବା ସହଜ ନୁହେଁ ।

ପ୍ର: ୟୁରୋପୀୟ ସମାଲୋଚନା ଓ ଆମ ସମାଲୋଚନା ଧାରା ମଧ୍ୟରେ କିଛି ସାମ୍ୟ ଓ ତାରତମ୍ୟ ଅଛି ବୋଲି ଭାବୁଛନ୍ତି କି ?

ଉ: ଯାହାହେଲେ ବି ସମାଲୋଚନା ହେଉଛି ମୂଳଗ୍ରନ୍ଥ ସଂପର୍କୀୟ ମନ୍ତବ୍ୟ, ଭାଷ୍ୟ ଓ ଆକଳନ । ଆମ ସାହିତ୍ୟିକ ପାଣିପାଗ ସହିତ ୟୁରୋପୀୟ ସାହିତ୍ୟିକ ପାଣିପାଗର କିବା ସଂପର୍କ ? ଆମେ ତାଙ୍କ ସମାଲୋଚନାକୁ କାହିଁକି ଆମର ଆଦର୍ଶ ମଣିବା ଓ ପ୍ରତି ପୃଷ୍ଠାରୁ କିଛି ଉଦ୍ଧୃତି ଦେଇ କେବଳ ଆମର କବିତ୍ୱର ପ୍ରତିପାଦନ କରିବା । ଗୋଟିଏ କବିତାକୁ ତନ୍ନ ତନ୍ନ କରି ବିଚାର କରିବା ଓ ସେହି କ୍ରମରେ ଗୋଟିଏ ପୁସ୍ତକରେ ସଂକଳିତ ସମସ୍ତ କବିତାକୁ ବର୍ଗୀକରଣ କରି ଚେତନା ଆଧାରିତ ସମାଲୋଚନା ଦେଖିବାରେ ମୁଁ

ପକ୍ଷପାତୀ । ହଁ ପ୍ରସଂଗକ୍ରମେ ବିଦେଶୀ କବିତାର ତୁଳନାତ୍ମକତା ଆସିଯାଇପାରେ । ତେବେ ସେ ତୁଳନାତ୍ମକତା ଭାରତୀୟ କବିତାର ଅବଲମ୍ବନରେ କରାଯିବା ମୋ ମତରେ ଅଧିକ କାମ୍ୟ । କବିତାର ଯେଉଁ ଯେଉଁ ପଙ୍କ୍ତି ପାଠକକୁ ବା ସମାଲୋଚକକୁ ମୁଗ୍ଧ କରେ, ଭାବନାରେ ହାତୁଡ଼ି ପିଟେ, ମନକୁ ଉଚ୍ଚାଟିତ କରେ, ଜୀବନର ନାନାବିଧ ରହସ୍ୟକୁ ଉତ୍‌ଖାତ କରେ ସେ ସବୁକୁ ଚିହ୍ନଟ କରି ପାଠକ ପାଖରେ ପରିବେଷଣ କରିବାକୁ ହେବ । ସମାଲୋଚନାରେ କେବଳ ଦୋଷଦର୍ଶୀ ହେଲେ ଆକଳନ ତାହାର ମହତ୍ତ୍ୱ ହରେଇବ । ଭଲମନ୍ଦ - ଉଭୟ ଦିଗରେ ଆଲୋଚନା ଦରକାର । କବିତାର ଭାବ ଓ ସ୍ଥାପତ୍ୟ - ଉଭୟ ସମାଲୋଚନାରେ ସମଭାବରେ ଗୁରୁତ୍ୱର ଅଧିକାରୀ ହୋଇପାରନ୍ତି । ଏ ଦୃଷ୍ଟିରୁ ଆମ ସମାଲୋଚନାର ଧାରା ପାଶ୍ଚାତ୍ୟ ସମାଲୋଚନା ଧାରା ଠାରୁ ତଫାତ୍ ନୁହେଁ ପୁଣି ତଫାତ୍ ମଧ୍ୟ । ତାଙ୍କର ଉତ୍ତର-ଆଧୁନିକତା ସଂପର୍କୀୟ ଚିନ୍ତାଧାରା ଯୁଦ୍ଧ ପରବର୍ତ୍ତୀ ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ବିପର୍ଯ୍ୟୟର ଭାବନାରେ ସଂଗଠିତ । ଆମ ସାହିତ୍ୟରେ ୧୯୮୦ ମସିହାରେ ଆସିଥିବା ବାସ୍ତବ ପରିବର୍ତ୍ତନର ସ୍ୱର ହିଁ ଉତ୍ତର-ଆଧୁନିକତା । କାରଣ ପ୍ରାୟ ବିଦେଶୀ ଅନୁକୃତ ଏକ ବୌଦ୍ଧିକ, ବ୍ୟକ୍ତିଗତ ପ୍ରୟୋଗବାଦୀ ଧାରାର ପରିବର୍ତ୍ତନ ହୋଇଛି ପାଖାପାଖି ଅଶୀ ଦଶକର ଆରମ୍ଭରୁ । ତେଣୁ ଭାବନାରେ ବା ଚେତନାରେ ଯେଉଁ ପରିବର୍ତ୍ତନ ଆସିଛି ତାକୁ ହିଁ ଭିତ୍ତିକରି ଆମେ ଉତ୍ତର-ଆଧୁନିକତାର ସଂଜ୍ଞା ନିରୂପଣ କରିପାରିବା । କିନ୍ତୁ ୯୦ ଦଶକରେ ଆସିଥିବା ଜଗତୀକରଣର ପ୍ରଭାବକୁ ଆମେ ଉପେକ୍ଷା କରି ପାରିବା କି ? ତା'ର ପ୍ରଭାବ ଏକବିଂଶ ଶତାବ୍ଦୀର ଆରମ୍ଭରୁ ପ୍ରତ୍ୟକ୍ଷ ହୁଏ । ତେଣୁ ଆର୍ଥନୀତିକ ଉଦାରୀକରଣର ଯେଉଁ ପ୍ରଭାବ ଆମ ଅର୍ଥନୀତିକୁ ଓ ସାମାଜିକ ତଥା ସାଂସ୍କୃତିକ ଚେତନାକୁ କବଳିତ କରି ବସିଛି ତା'ର ଉତ୍ସ ଆମେ ଓ ଆମ ସମାଜ । ଏଥିପାଇଁ ପାଶ୍ଚାତ୍ୟ ଆଡ଼କୁ କାହିଁକି ଋତକ ପରି ଋହିଁ ରହିବା ? ଆମ ଜୀବନଧାରା ଓ ତା'ର ଦ୍ରୁତ ପରିବର୍ତ୍ତନଶୀଳତାକୁ ଆମ କବିତା ଓ ସାହିତ୍ୟ ଯଦି ପ୍ରତିଫଳିତ କରୁଥାଏ ତା'ର ସନ୍ଧାନ ସମାଲୋଚକଟିଏ ନିଶ୍ଚୟ କରିବଇ । ଏଥିପାଇଁ ଅଧ୍ୟାପକ ବେଣୁଧର ପାଢ଼ୀଙ୍କ ଉତ୍ତର ଆଧୁନିକତା ସଂପର୍କୀୟ ସମାଲୋଚନା ଗୁଡ଼ିକୁ ଅଧ୍ୟୟନ କରିବାକୁ ମୁଁ ଅନୁସନ୍ଧିତ୍ସୁ ପାଠକମାନଙ୍କୁ ଅନୁରୋଧ କରିବି । ମୁଁ ଏ ସଂପର୍କରେ ପୂଜା 'ଚନ୍ଦ୍ରଭାଗା'ରେ ଦୀର୍ଘ ପ୍ରବନ୍ଧଟିଏ ଲେଖିଛି । ଦେଖିପାରନ୍ତି ।

ପ୍ର: ସମାଲୋଚନା ବି ଏକ ସୃଜନକର୍ମ - ଏକଥା ଅନେକ ସ୍ୱୀକାର କରନ୍ତିନାହିଁ କାହିଁକି ?

ଉ: ଯେଉଁମାନେ ଏକଥା ସ୍ୱୀକାର କରୁନାହାନ୍ତି .ମୋର ବିଶ୍ୱାସ ସେମାନେ ସମାଲୋଚନା ପାଠ କରନ୍ତି ନାହିଁ । ଖୁବ୍ ବେଶୀ ହେଲେ ପତ୍ରପତ୍ରିକା ପୃଷ୍ଠାରୁ ତାଙ୍କ ବିଷୟରେ କ'ଣ ଲେଖାଯାଇଛି ଅନୁସନ୍ଧାନ କରନ୍ତି । ସମାଲୋଚନା ମଧ୍ୟ କବିତା ପରି

ଉପମା, ରୂପକ ଓ ଚିତ୍ରକଳ୍ପ ଭିତ୍ତିକ ରଚନା ହୋଇପାରେ । ଅର୍ଥାତ୍ ସମାଲୋଚ଼ନାର ଭାଷା ହୋଇପାରେ ସୃଜନଶୀଳ । ଦୟାକରି ଚିନ୍ତାମଣି ବେହେରାଙ୍କ 'କାବ୍ୟ ଓ କଳାକାର' ଏ ପର୍ଯ୍ୟନ୍ତ ପାଞ୍ଚୋଟି ସଂସ୍କରଣ ହୋଇସାରିଥିବା ମୋର 'ସବୁଜରୁ ସାଂପ୍ରତିକ', ଆଦିକନ୍ଦ ସାହୁଙ୍କ 'ସୌନ୍ଦର୍ଯ୍ୟ ଓ ସୃଜନ ଦର୍ଶନ', 'କବିତାର ମୃତ୍ୟୁ ଓ ଅନ୍ୟାନ୍ୟ ନିବନ୍ଧ' ପରି କେତୋଟି ସମାଲୋଚ଼ନା ପୁସ୍ତକ ପଢ଼ିବାକୁ ମୁଁ ସେମାନଙ୍କୁ ଅନୁରୋଧ କରିବି ।

ପ୍ର: ସଂସାର ଓ ସାହିତ୍ୟ ମଧ୍ୟରେ ସମନ୍ୱୟ ରଖିବାରେ ଆପଣ କେତେଦୂର ସଫଳ ?

ଉ: ନା, ମୁଁ ଉଭୟ ମଧ୍ୟରେ ସମନ୍ୱୟ ରଖିପାରିନାହିଁ ବୋଲି ମୁଁ ପରିବାର ପାଇଁ ଜଣେ ଅବହେଳିତ ଅବାନ୍ତର ବ୍ୟକ୍ତି । ସ୍ୱାମୀ ଓ ପିତା ହିସାବରେ ମୁଁ ଅସଫଳ । ମୁଁ ଜୀବନରେ ସାଲିସ୍ କରିନାହିଁ, ଚାଟୁକାର ହୋଇନାହିଁ । ସାହିତ୍ୟରେ ସତ୍ୟଦ୍ରଷ୍ଟା ହେବା ମୋର ଆତ୍ମାର କଥା । ତେଣୁ ଖଣ୍ଡିତ ଆତ୍ମଜୀବନୀରେ କିଛି ଗୋପନୀୟ ରଖିନାହିଁ । ସେ ସବୁ ଲେଖିସାରିବା ପରେ ପରିବାରରେ ମୁଁ ଏକ ଭିନ୍ନ ଶିବିରଭୁକ୍ତ ମଣିଷ ।

ପ୍ର: ଜଣେ ନିରପେକ୍ଷ ସମାଲୋଚ଼କର ଧର୍ମ ଓ ଯୋଗ୍ୟତା କ'ଣ ?

ଉ: ଏ କଥାର ଉତ୍ତର କିଛି ଅଂଶରେ ଆଗରୁ ୬ ନମ୍ବର ପ୍ରଶ୍ନର ଉତ୍ତରରେ ଦିଆ ସରିଛି । ତେବେ ନିରପେକ୍ଷ ସମାଲୋଚ଼କଟିଏ ପ୍ରକାଶ ପାଉଥିବା ସମସ୍ତ ବହିକୁ ପ୍ରଥମେ ପଢ଼ିବା ଉଚିତ୍ । କିନ୍ତୁ ଏହା ସମ୍ଭବ କି ? ଏତେ ବହି କିଣି ପଢ଼ିବାକୁ ତା' ପାଖରେ ପୁଞ୍ଜି ଥିବା ଦରକାର ଓ ବହିମାନଙ୍କୁ ସାଇତି ରଖିବାକୁ ଘର ଥିବା ଦରକାର ।

ପ୍ର: ଆମ ସମୟର ଅଧିକାଂଶ କବି ଗଦ୍ୟରେ ଦୁର୍ବଳ - ଏପରି କାହିଁକି ହୁଏ ?

ଉ: ନିହାତି ସତକଥାଟିଏ । ପୁଣି ନିପାତନ ବି ଅଛି । ଆମ ସମୟର କବି ସୀତାକାନ୍ତ ଗଦ୍ୟଲେଖାରେ ଆଦୌ ଦୁର୍ବଳ ନୁହଁନ୍ତି । ଗଦ୍ୟ କେବେହେଲେ ପଦ୍ୟ ସୃଜନ-କର୍ମର ବାଧକ ହେବାର ନୁହେଁ । ତେବେ ଜୀବନସାରା କବିତା ଲେଖି ଲେଖି ଯେଉଁମାନେ ଶେଷବେଳକୁ ଗଦ୍ୟ ଲେଖୁଛନ୍ତି କିମ୍ବା ଜୀବନସାରା ଗଦ୍ୟ ଲେଖି ଲେଖି ଶେଷବେଳରେ କବିତା ଲେଖୁଛନ୍ତି (ଯେଉଁଭଳି ଚନ୍ଦ୍ରଶେଖର ରଥ ଓ ବୀଣାପାଣି ମହାନ୍ତି) ସେମାନେ ଅସଫଳତାର ଶିକାର ହେବେ ହିଁ । କିନ୍ତୁ ସେମାନେ ଆତ୍ମଜୀବନୀ ଲେଖିଲେ ସେମାନଙ୍କ ଗଦ୍ୟର ପରିଛନ୍ନତା ଜଣାପଡ଼ନ୍ତା ।

ପ୍ର: କବିତାର ଭାବ ଓ ଶୈଳୀ ମଧ୍ୟରୁ କିଏ କବିତାକୁ କାଳଜୟୀ ପ୍ରତିଷ୍ଠା ଦେବ ?

ଉ: ଭାବ ଓ ଶୈଳୀ ପରସ୍ପର ଠାରୁ ଛଡ଼ାଛଡ଼ି ହୋଇପାରନ୍ତି ନାହିଁ । ଯେଉଁ କବିତାରେ ଉଭୟର ସମନ୍ୱୟ ଥାଏ ତାହାହିଁ ଉତ୍କୃଷ୍ଟ କବିତା - ଯେଉଁପରି ସଚ୍ଚିବାବୁଙ୍କ 'ବାଜିରାଉତ', 'ପାଣ୍ଡୁଲିପି', 'ଭାନୁମତୀର ଦେଶ' କବିତା ଗ୍ରନ୍ଥ । ଗୁରୁପ୍ରସାଦଙ୍କ 'କାଳପୁରୁଷ' ମଧ୍ୟ ଏହି ସମନ୍ୱୟର ଶୀର୍ଷରେ ଅବସ୍ଥାନ କରେ । କାଳଜୟୀ ହେବାପାଇଁ ଭାବ ଓ ସ୍ଥାପତ୍ୟ ଉଭୟର ସହାବସ୍ଥାନ ଏକାନ୍ତ ଜରୁରୀ ।

ପ୍ର: ଓଡ଼ିଆ ସମାଲୋଚ଼ନା କ୍ଷେତ୍ରରେ କେଉଁ ନାରୀପ୍ରତିଭାଙ୍କୁ ଆପଣ ସ୍ମରଣ କରିବେ ?

ଉ: ଡକ୍ଟର ସବିତା ପ୍ରଧାନ, ଡକ୍ଟର ଗିରିବାଳା ମହାନ୍ତି, ଡକ୍ଟର କବିତା ବାରିକ, ଡକ୍ଟର ସୁନିତା ଶତପଥୀ, ଡକ୍ଟର ପ୍ରତିଭା ଶତପଥୀ ଏହିପରି ମୁଷ୍ଟିମେୟ କେତେଜଣ ।

ପ୍ର: ଓଡ଼ିଆ ସମାଲୋଚ଼ନାର ଆଗାମୀ ପିଢ଼ିରେ ଆପଣ କେଉଁମାନଙ୍କୁ ବିଚାରକୁ ନେବେ ?

ଉ: ଡକ୍ଟର ବେଣୁଧର ପାଢ଼ୀ, ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଡକ୍ଟର ଶତ୍ରୁଘ୍ନ ପାଣ୍ଡବ, ଡ. ଦିଲୀପ କୁମାର ସ୍ୱାଇଁ, ଡ. ଅଭୟ ବାରିକ, ଡ. ରବୀନ୍ଦ୍ର କୁମାର ଦାସ, ଅଧ୍ୟାପକ କୁମୁଦ ଚନ୍ଦ୍ର ଦାସ ଓ ହଠାତ୍ ମନେ ନ ପଡୁଥିବା ଆଉ ଜଣେ ଦି'ଣ ହୋଇପାରନ୍ତି (୨୦୧୭ରେ ଏ ମତାମତ) ।

ପ୍ର: ଏବେ ଉତ୍ତର ଆଧୁନିକତାର ଚର୍ଚ୍ଚା ସବୁଠି, ଏ ସଂପର୍କରେ ଆପଣଙ୍କର ଆଭିମୁଖ୍ୟ କିପରି ?

ଉ: ଏ ସଂପର୍କରେ ୨୦୧୧ ପୂଜାସଂଖ୍ୟା 'ଚନ୍ଦ୍ରଭାଗା'ରେ ଏକ ଦୀର୍ଘ ପ୍ରବନ୍ଧ ଲେଖିଛି । ତେଣୁ ଏଠାରେ ପୁନରାବୃତ୍ତି ଅନାବଶ୍ୟକ ।

* ଏ ସାକ୍ଷାତ୍‌କାର ପ୍ରଥମେ ୨୦୧୨ ପୂଜାସଂଖ୍ୟା 'ବିଶ୍ୱମୁକ୍ତି' ପତ୍ରିକାରେ ପ୍ରକାଶ ପାଇଥିଲା ।

*■ ସାକ୍ଷାତ୍‌କାର : ସୁଧା ଦାଶ*
*ଅଧ୍ୟାପକ, ଓଡ଼ିଆ ବିଭାଗ*
*କେଉଁଝର କଲେଜ, କେଉଁଝର*

# ନିତ୍ୟାନନ୍ଦଙ୍କ ଗୋପବନ୍ଧୁ

♦ ଗୌରାଙ୍ଗ ଚରଣ ଦାଶ

।। ଏକ ।।

ନିତ୍ୟାନନ୍ଦ ଶତପଥୀଙ୍କର ଖଣ୍ଡିଏ ବହିର ଶୀର୍ଷକ 'ହେ ସାଥି ! ହେ ସାରଥି !, ପ୍ରଥମେ ପ୍ରକାଶପାଇଛି ୧୯୬୯ ମସିହାରେ' । ଇତିମଧ୍ୟରେ ବହି ପାଞ୍ଚଥର ବିଭିନ୍ନ ପ୍ରକାଶନ ସଂସ୍ଥାଦ୍ୱାରା ପ୍ରକାଶିତ ହେଲାଣି । ଶେଷ ପରିମାର୍ଜିତ ମୁଦ୍ରଣ ୧୯୭୬ ମସିହାରେ । ବହିର ଦେହ ବେଶ ବଡ଼ । ୩୪୫ ପୃଷ୍ଠା । ଜଣକୁ ସମ୍ବୋଧନ କରି ଏତେ ବଡ଼ ବହି ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଲେଖାଯାଉ ନାହିଁ ।

ବହିର ଶୀର୍ଷକ ସ୍ୱତନ୍ତ୍ର ନିଶ୍ଚୟ । ଜଣକ ପ୍ରତି ଅନ୍ତରଙ୍ଗ, ସମ୍ମୋହିତ ସମ୍ବୋଧନ । ପ୍ରତୀକାତ୍ମକ । ଆଖିପଡ଼ିଗଲେ, ବାରିହେଉନି, ଏହା କେଉଁ ଗୋତ୍ରର ହୋଇଥିବ । ମାତ୍ର ବୁଝି ହୋଇଯାଉଛି । ଦୃଶ୍ୟଟିଏ ସ୍ପଷ୍ଟ । ତାହା ଏହିପରି । ଗୋଟିଏ ରଥ । ରଥଟି ଗତିଶୀଳ । ରଥ ଉପରେ ଜଣେ ସାରଥି । ଏଥିରୁ ଦୁଇଗୋଟି ଅନୁଭବ ସ୍ପଷ୍ଟ ହୋଇଯାଉଛି । ପ୍ରଥମତଃ, ନିତ୍ୟାନନ୍ଦ ଜଣକୁ ସମ୍ବୋଧନ କରି କହୁଛନ୍ତି, ହେ ଥରାରୋହି, ତମେ ମୋର ସାଥି ଓ ସାରଥି । ଜଣେ ଏକ ସମୟରେ, ଜଣକର ସାଥି ଓ ସାରଥି ହୋଇ ପାରିବେ କିପରି ? ଆଉ ଗୋଟିଏ କଥା ସ୍ପଷ୍ଟ ଦିଶିଯାଉଛି, ସେ ଏକା ନୁହନ୍ତି । ତାଙ୍କ ସହିତ ମୁଁ ଅଛି, ଅନ୍ୟ ଅନେକ ମଧ୍ୟ ଅଛନ୍ତି । ଅର୍ଥାତ୍ ସେ ଏକ ସମଗ୍ର । ତାଙ୍କୁ ସ୍ୱତନ୍ତ୍ର ବୋଲି ବାରି ହେଉ ନାହିଁ । ଲାଗୁଛି, ସେ ଯେପରି ଏକ ମିତ୍ରତା, ଏକ ସହୃଦୟତା । ଆମରି ଗହଣରେ, ଆମରି ଭିତରେ କେଉଁଠି ଥାଇ, ଆମ ଜୀବନକୁ ଗତି ଦେଉଛି, ନିରାପତ୍ତା ଦେଉଛି, ନିୟନ୍ତ୍ରଣ କରୁଛି । ଆମ ଚେତନାର ଉନ୍‌ମୀଳନ ବି । ଯାହାର ବ୍ୟକ୍ତିତ୍ୱ ଏତେ ସ୍ୱତନ୍ତ୍ର, ସେ ବାରିହେଉନି କିପରି ? ସେ ବାରିହେଉନି ଏଇଥିପାଇଁ ଯେ, ସେ ମିତ୍ର । ସେ ଏକ ସମଭାବାଦର୍ଶୀ, ଗତିଶୀଳ ଓ ସମର୍ପିତ ପ୍ରୀତିବୋଧର ଉଦ୍‌ଭାସନ । ସେ ଏକ ନୁହେଁ, ଅନେକ ଏବଂ ଅନେକ ନୁହେଁ, ଏକ ।

ଦ୍ୱିତୀୟତଃ, ଆମେ ଜାଣୁ, ରଥରେ ଜଣେ ରଥୀ ଥାଏ । ତା'ର ଲକ୍ଷ୍ୟ ନିର୍ଦ୍ଦିଷ୍ଟ । ସେ ବୀର । ସେ ଉତ୍ସାହ । ସେ ଅକୁତୋଭୟୀ-ନିଜର ଓ ଅବଶିଷ୍ଟମାନଙ୍କର । ସେ ମଧ୍ୟ ଜୀବନ । ତାର ଅବର୍ତ୍ତମାନ ହିଁ ଅବଶିଷ୍ଟମାନଙ୍କର ପରାଜୟ, ଅସ୍ତିତ୍ୱର ବିଲୋପନ । ତେବେ ନିତ୍ୟାନନ୍ଦ ଆପଣା କଳ୍ପିତ ରଥର ରଥୀର ପରିଚୟ ସମ୍ପର୍କରେ ନିରବ । କିଏ ସେହି ରଥୀ । ଦିଶୁ ନାହିଁ ତ ? ରଥୀହୀନ ରଥ ଓ ରଥର ଗତିଶୀଳତା କ'ଣ ସମ୍ଭବ ? ରଥରେ

ରଥୀ ଅନୁପସ୍ଥିତ ଅବଶ୍ୟ,ମାତ୍ର ଅନୁଭବ କରି ହେଉଛି । ସେ ଏକ ବିଚାର, ଏକ ଭାବାଦର୍ଶୀ । ଏକ ଅଧ୍ୟାତ୍ମ ଅନୁଭବ । ତାର ପରିଚୟ ହେଉଛି ସେବା ଓ ତ୍ୟାଗ । ଏପରି ଏକ ଭାବାଦର୍ଶକୁ ଗତି ଦେବା କ'ଣ ସମ୍ଭବ, ସହଜ ?

ଆମେ ଏକଥା ଅବଶ୍ୟ ଜାଣୁ- ରଥ, ରଥୀ ଓ ସାରଥି କେହି ସ୍ୱତନ୍ତ୍ର ନୁହନ୍ତି, ଅଭିନ୍ନ । ରଥ ହେଉଛି ଦେହ, ରଥୀ ହେଉଛି ପ୍ରାଣ ଏବଂ ସାରଥି ହେଉଛି ଆତ୍ମା । ଏମାନଙ୍କର ଏକାଭୂତତା ହିଁ ଗତିଶୀଳତା । ତେଣୁ କୁହାଯାଏ, ସାରଥି ହିଁ ରଥର ଗତି ନିୟନ୍ତକ ଏବଂ ରଥୀ ହିଁ ସାରଥିର ସୁରକ୍ଷାଦାତା । ଏ ଦୁହିଁଙ୍କ ଗତିଶୀଳତା ହିଁ ଅବଶିଷ୍ଟମାନଙ୍କର ଗତିଶୀଳତା । ଏବଂ, ଅବଶିଷ୍ଟ ସମୂହ, ରଥୀ ଓ ସାରଥିଙ୍କର ମିତ୍ରତାରେ ହିଁ କୌଣସି ଭାବାଦର୍ଶର ପ୍ରତିଷ୍ଠା ଓ ଗତିଶୀଳତା । ନିତ୍ୟାନନ୍ଦଙ୍କ ଗ୍ରନ୍ଥର ଶୀର୍ଷକରୁ ବୁଝି ହେଉଛି । ସେ ଏମିତି ଜଣେ ମଣିଷକୁ ସମ୍ବୋଧନ କରୁଛନ୍ତି, ଯିଏ ରଥ, ରଥୀ, ସାରଥି ଓ ସହଯାତ୍ରୀମାନଙ୍କର ଏକ ଜୈବିକ ଯୋଡ଼ଣ । ସେହି ମଣିଷ ଜଣକ ଶ୍ରୀ ଗୋପବନ୍ଧୁ ଦାସ । ତେଣୁ ତାଙ୍କ ବହିର ନାମକରଣକୁ ସ୍ୱତନ୍ତ୍ର ବୋଲି ଅବଶ୍ୟ କହିବା । ଏବଂ, ଉପର୍ଯ୍ୟୁକ୍ତ ଭାବାଦର୍ଶକୁ ଭିତ୍ତିକରି ତାଙ୍କ ଗୋପବନ୍ଧୁ ବ୍ୟକ୍ତିତ୍ୱର ନବନିର୍ମାଣର ଚର୍ଚ୍ଚା କରିପାରିବା ।

## ଦୁଇ

ନିତ୍ୟାନନ୍ଦ ଆତ୍ମଜୀବନୀ ଲେଖିଛନ୍ତି, ଜୀବନୀ ବି । ପ୍ରଥମେ ଜୀବନୀ । କୁହାଯାଏ, ନିଜ ବିଷୟରେ ଲେଖିବା ବା କହିବା ଯେତିକି ସହଜ, ଅନ୍ୟ ବିଷୟରେ ଲେଖିବା ତତୋଽଧିକ ଅସହଜ । ଏକଥାକୁ ମିଛ ବୋଲି କହିପାରିବା କି ? ଅନ୍ୟମାନଙ୍କ ପାଖରେ ପରିଚିତ କରାଇଦେବା ପାଇଁ ଜଣେ ଆପଣା ଚାରିପାଖରେ କୁହୁକ ବଳୟଟିଏ ରଚନା କରିପାରେ, ଅଥବା ଦେହର ପ୍ରତି ଲୋମକୂପକୁ କରି ଦେଇପାରେ ମୁଖାମୟ ଯିଏ ତାକୁ ଯେମିତି ଦେଖୁଚି ଦେଖୁ । ଉପଭୋଗକରୁ ନିଜର ସ୍ୱାଧୀନତା । ଅନ୍ୟ ଭିତରେ, ନିଜ ସମ୍ପର୍କରେ ସତର ଏକ ପ୍ରତ୍ୟୟ ବା ଛଦ୍ମତାର କମନୀୟ ଓ ବାସ୍ତବ ରୂପ ତିଆରି କରି ଦେଇପାରିଲେ ହେଲା । ଏହା ଏକ ଚମତ୍କାର କଳା ନିଶ୍ଚୟ । ତେଣୁ, ପ୍ରତ୍ୟେକ ଆତ୍ମଚରିତ, ଜଣେ ଖୋଲାବହି ବୋଲି ଦାବିକଲେ ବି, ତାହା ସତ୍ୟ ସ୍ୱୀକାରୋକ୍ତିର ଉଦ୍‌ଭାସନ ହେବା ସମ୍ଭବ ନୁହେଁ । ନିଜ ଭିତରେ ଆତ୍ମ ସଂରଚନାକୈନ୍ଦ୍ରିକ ଚିରନ୍ତନ ଦ୍ୱନ୍ଦ୍ୱର ତାହା ଭବ୍ୟ ରୂପ ମାତ୍ର । କାରଣ, ନିଜକୁ ତିଆରୁଥିବା ସେଇ ମଣିଷ ଜଣକ ନିଜ ଇଚ୍ଛାର ସମ୍ରାଟ ଅଥବା ସଉଦାଗର । ଅନ୍ୟ ପକ୍ଷରେ, ଅନ୍ୟର ଜୀବନ ଗଢୁଥିବା ମଣିଷ ବା ଶିଳ୍ପୀର ଦାୟିତ୍ୱ ଅଧିକ । ସେ ତା ପ୍ରିୟ ମଣିଷକୁ ତିଆରି କରିଥିବା ଅନ୍ୟ ଅନେକ ସମଧର୍ମୀଙ୍କ ପାଖକୁ ଯାଏ । ସେମାନଙ୍କ ଗଢ଼ଣରେ କଳାର ଭାବଦର୍ଶ ବା ରହସ୍ୟକୁ ବୁଝିବାକୁ ଚେଷ୍ଟାକରେ । ସତ୍ୟ ଉଦ୍‌ଘାଟନ ପ୍ରତି ପ୍ରତିଶ୍ରୁତିବଦ୍ଧତା ଥାଏ । ସତ୍ୟ

ଯେତେବେଳେ ଗୋପ୍ୟ ଓ ଗୂଢ଼, ତାର ଉଦ୍‌ଘାଟନ କ'ଣ ସମ୍ଭବ ? ଯାହା ସତ୍ୟ ବୋଲି ଏକ ପ୍ରତ୍ୟୟ ସୃଷ୍ଟି କରେ ବିଚାର ଓ ଚେତନାରେ, ତାହା ସତ୍ୟାଭାସ-ତେଣୁ ସତ୍ୟ ଅଥବା ମିଥ୍ୟାଠାରୁ ଅଧିକ ବିପଦଜନକ ହେବା ଅସମ୍ଭବ ନୁହେଁ । ନିତ୍ୟାନନ୍ଦ ଏକଥା ଜାଣିଛନ୍ତି ନିଶ୍ଚୟ । କାରଣ, ସେ ନିଜ ବିଷୟରେ ସହସ୍ରାଧିକ ପୃଷ୍ଠା ଲେଖିବା ବେଳେ, ଆଦୌ କ୍ରିଟିକାଲ ହୋଇନାହାନ୍ତି । ଆପଣାକୁ ଏକ କୁହୁକବଳୟ ଭିତରେ ନିରାପଦ ରଖି, ଅନ୍ୟ ଅନେକଙ୍କୁ କୁଶବିଦ୍ଧ କରୁଛନ୍ତି । ତେଣୁ ଅନ୍ୟକୁ ଗଢ଼ିବା କାଳରେ ତାଙ୍କ ଭିତରେ ବସ୍ତୁନିଷ୍ଠତା ଆଶା କରିବା ଆଦୌ ଉଚିତ ନୁହେଁ । ଏହା କେବଳ ତାଙ୍କ କ୍ଷେତ୍ରରେ ନୁହେଁ, ପ୍ରତ୍ୟେକ ଜୀବନୀକାରଙ୍କ କ୍ଷେତ୍ରରେ ସ୍ପଷ୍ଟ ବାସ୍ତବତା । ମାତ୍ର ଏକ୍ଷେତ୍ରରେ ନିତ୍ୟାନନ୍ଦଙ୍କ ଭାବାଦର୍ଶ, ସେ ଆପଣାର ପ୍ରିୟତମ ବ୍ୟକ୍ତିତ୍ୱ ଗୋପବନ୍ଧୁଙ୍କ ଗଢ଼ଣ କାଳରେ ଅନ୍ୟ ଅନେକଙ୍କ ଗଢ଼ଣରେ ସେଇ ମଣିଷ ଜଣକ କେମିତି ଦିଶୁଛନ୍ତି, ତାହା ପରଖିଛନ୍ତି । ଆପଣା ଅବବୋଧର ସୂକ୍ଷ୍ମତାକୁ ପ୍ରୟୋଗ କରିଛନ୍ତି । ବେଶ୍ କ୍ରିଟିକାଲ । ଏବଂ, ଶେଷରେ ନିଜ ଗୋପବନ୍ଧୁଙ୍କୁ ଗଢ଼ିଛନ୍ତି । ଏବଂ, କେଉଁମାନେ ତାଙ୍କ ଗୋପବନ୍ଧୁ ଗଢ଼ଣରେ ଉତ୍‌ପ୍ରେରକ, ସେମାନଙ୍କ ବିଚାରକୁ ସ୍ପଷ୍ଟ କରି ଦେଇଛନ୍ତି । ସେମାନେ, ଗୋପୀନାଥ ମହାନ୍ତି (ଉତ୍କଳମଣି), ନୀଳକଣ୍ଠ ଦାସ (ଆତ୍ମଜୀବନୀ), ଗୋଦାବରୀଶ ମିଶ୍ର (ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ), ଚନ୍ଦ୍ରଶେଖର ମିଶ୍ର (ସତ୍ୟବାଦୀରେ ସାତବର୍ଷ), ଚିନ୍ତାମଣି ଦାସ (କବି ଗୋପବନ୍ଧୁ ) ଶ୍ରୀରାମଚନ୍ଦ୍ର ଦାଶ ଓ ଅନ୍ୟମାନେ ।

ମାତ୍ର ନିତ୍ୟାନନ୍ଦଙ୍କ ବିଶେଷତା, ସେ ଗୋପବନ୍ଧୁଙ୍କ ବିଷୟ ଲେଖାଥିବା ଅନ୍ୟମାନଙ୍କ ରଚନା କେବଳ ପଢ଼ି ନାହାନ୍ତି, ସେଇ ମଣିଷ ଜଣକ ସହିତ ବଂଚୁଥିବା ଅନ୍ୟ ଅନେକ ଜୀବନ ଓ ବିଚାରର ସହଯାତ୍ରୀ ହୋଇଛନ୍ତି । ସେମାନେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ସଚ୍ଚିଦାନନ୍ଦ ମହାନ୍ତି, ଭାଗୀରଥି ମହାପାତ୍ର ଏବଂ ଅନ୍ୟମାନେ । ସେମାନଙ୍କ ସ୍ମୃତିକଥାରୁ ଅନୁଭବ କରିଛନ୍ତି- ଗୋପବନ୍ଧୁ ଏକ ମହାନ୍ କାବ୍ୟଗ୍ରନ୍ଥ, ଓଡ଼ିଶାର ଏକ ବିପୁଳ ପୌରାଣିକ ସମ୍ପତ୍ତି । ଏହି ମାନସିକତାରୁ ତାଙ୍କ ଯାତ୍ରାରମ୍ଭ । ମାତ୍ର ଯାତ୍ରାକାଳରେ ସେ କେଉଁଠି କେମିତି ଅଟକି ଯାଉଛନ୍ତି । କଲମ ଥକିପଡୁନି । ପ୍ରଶ୍ନ କରୁଛି । ପ୍ରଶ୍ନ : ମୁଁ ଆପଣଙ୍କର ଯେଉ ପ୍ରତିମା ଏତେ ଶ୍ରଦ୍ଧାରେ ଗଢ଼ିଚାଲିଛି, ଆପଣ କ'ଣ ଠିକ୍ ସେମିତି ? ଏକ ଦ୍ୱନ୍ଦ୍ୱାତ୍ମକ ମାନସିକତା । ଆପଣଙ୍କ ଭିତରେ ଏତେ ସ୍ୱପ୍ନର ଆବେଶ, ପୁଣି ସ୍ୱପ୍ନଭଙ୍ଗ ଜନିତ କାରୁଣ୍ୟ । ତଥାପି ଆପଣ ଥକି ଯାଉନାହାନ୍ତି କେଉଁ ସୁଖରେ ? ଏବଂ, ଆପଣ ଏକ ବହୁଧା ବିଭକ୍ତ ବ୍ୟକ୍ତିସତ୍ତା-ଶିକ୍ଷାକର୍ମୀ, ସମାଜକର୍ମୀ, ଅକ୍ଷରକର୍ମୀ, ରାଜନେତା, ମାନବବାଦୀ, ଜାତୀୟତାବାଦୀ, ଆପଣା ଭୂମିମନସ୍କ, ଏବଂ, ସର୍ବୋପରି ପାରମ୍ପରିକ ପ୍ରୀତିଭୂମିରେ ବଂଚୁଥିବା ଜଣେ ସ୍ୱପ୍ନଦର୍ଶୀ ବିପ୍ଳବୀ । ଏହା କ'ଣ ସମ୍ଭବ, ଉପର୍ଯ୍ୟୁକ୍ତ ସକଳ ପ୍ରଶ୍ନର ଉତ୍ତର-ହେ ସାଥି ! ହେ ସାରଥି !

## ତିନି

ନିତ୍ୟାନନ୍ଦଙ୍କ ଆପଣାର ପ୍ରିୟ ସାଥୀ ଓ ସାରଥିଙ୍କ ଜୀବନ ଗଢ଼ଣ କାଳରେ, ତାଙ୍କ ବ୍ୟକ୍ତିକ ଜୀବନଚର୍ଯାର ରହସ୍ୟ ଭେଦିବାକୁ ପ୍ରୟାସ କରିଛନ୍ତି । ସେ ଗ୍ରହଣ କରି ନେଇଛନ୍ତି ଯେ, ବ୍ୟକ୍ତିତ୍ୱକୁ ବୁଝିବାପାଇଁ ଜୀବନର ଛୋଟଛୋଟ ଲାଗୁଥିବା ଘଟଣା ଅଧିକ ଗୁରୁତ୍ୱପୂର୍ଣ୍ଣ । ସେ ଏଥିପାଇଁ ଗୋପବନ୍ଧୁଙ୍କ ଶୈଶବର ପୃଷ୍ଠା ଖୋଲୁଛନ୍ତି । କହୁଛନ୍ତି, ଗୋପବନ୍ଧୁ ଶାସନୀ ବ୍ରାହ୍ମଣ । ବାପା ଦୈତ୍ୟାରି ବୃତ୍ତିରେ ମୁକ୍ତ୍ୟାର, ଭୂସମ୍ପତ୍ତି ବି ଅଛି । ସେ କିନ୍ତୁ ଶୈଶବରେ ଜୀବନର ପ୍ରକୃତ ସମ୍ପଦ ମା'ଙ୍କୁ ହରାଇଛନ୍ତି । ବଢ଼ିଛନ୍ତି ବାଲୁତ ବିଧବା ପିଉସୀନାନୀ କମଳାଙ୍କ କୋଳରେ । ନାନୀ ନିଜ ସ୍ତନରେ କ୍ଷୀର ଢାଳି ଦିଅନ୍ତି ଏବଂ ତାଙ୍କ କଅଁଳ ଓଠ ଲାଖିଯାଏ ସ୍ତନାଗ୍ରରେ । ଉଭୟଙ୍କର ବିଚିତ୍ର ଅନୁଭବ ନିଶ୍ଚୟ । ସେଇ ବାଲୁତ କାଳରେ ସେ ସାଙ୍ଗ ମେଳରେ ଅନ୍ୟ ବାରିରୁ ନଡ଼ିଆ, ଛତୁ ଚୋରି କରିଛନ୍ତି । ଏବଂ, ନିଜର ଅସହାୟତାକୁ ବଡ଼ମାନଙ୍କ ପାଖରେ ସ୍ୱୀକାର କରିଛନ୍ତି । କିଶୋର ବୟସରେ ଦୁଇ ଜଣଙ୍କ ବ୍ୟକ୍ତିତ୍ୱ ତାଙ୍କ ଭବିଷ୍ୟତକୁ ବାସ୍ତବତଃ ଏତେ ସ୍ୱତନ୍ତ୍ର କରିଛି । ଜଣେ ମୁକ୍ତି ଆର ରାମଚନ୍ଦ୍ର ଦାଶ, ପୁରୀବାସିନ୍ଦା । ତାଙ୍କ ପାଖରୁ ପାଇଛନ୍ତି ଜାତିପ୍ରୀତିବୋଧ ଓ ଜନସେବାର ମନ୍ତ୍ର । ରଥଯାତ୍ରା ଓ ଅନ୍ୟ ସମୟରେ ଯାତ୍ରୀମାନଙ୍କର ସେବା କରୁଛନ୍ତି । ଅଧିକ ମଜାକଥା, ସେ ବ୍ରାହ୍ମଣ ସମିତିର ନେତୃତ୍ୱ ନେଉଛନ୍ତି, ଜଗନ୍ନାଥମନସ୍କ ଜୀବନ ବଂଚୁଛନ୍ତି । ଅନ୍ୟ ଜଣକ ତାଙ୍କ ଦଦେଇ ଦୀନବନ୍ଧୁ ଦାଶ । ସେ ଏକଦା ବୃନ୍ଦାବନ ଯାଇଛନ୍ତି । ବୈଷ୍ଣବ ଦୀକ୍ଷା ନେଇଛନ୍ତି, ଗାଁକୁ ଫେରିଛନ୍ତି । ସାଙ୍ଗରେ ଆଣିଛନ୍ତି ରାସବିହାରୀ ପ୍ରତିମା । ପ୍ରତିମାଙ୍କ ପାଖରେ ଅହଂକୁ ସମର୍ପଣ କରୁଛନ୍ତି । ଭାଗବତ ପଢୁଛନ୍ତି । ଜୀବନର ପରିଣତ ବୟସରେ ମାଛପ୍ରେମରେ ମଧ ପଡ଼ିଛନ୍ତି । ନିବୃତ୍ତି ଓ ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱ । ଗୋପବନ୍ଧୁ ପାଟଲୁଗା ପିନ୍ଧି ଭାଗବତ ପାରାୟଣ କରୁଛନ୍ତି । ମାଛ ବି ଖାଉଛନ୍ତି । ମାତ୍ର ତାଙ୍କ ଭାଗବତ ବ୍ରାହ୍ମଣ ସମାଜର ଭାଗବତ ନୁହେଁ, ଜଗନ୍ନାଥ ବ୍ରାହ୍ମଣପୂଜିତ ଦିଅଁ ନୁହନ୍ତି । ପରମ୍ପରା ପ୍ରେମରେ ବାନ୍ଧି ହୋଇଥିବା ଜଣେ ମଣିଷ ପ୍ରେମର ଗୁଣ ସୂତ୍ରକୁ ବୁଝିଗଲେ ଯେ ଆଧୁନିକ ହୋଇଯାଏ, ପରମ୍ପରାକୁ ନୂଆକରି ଗଢ଼ିଦିଏ, ଗୋପବନ୍ଧୁ ଏହି ଭାବାଦର୍ଶର ଉଦାହରଣ ହୋଇଛନ୍ତି ।

ଏବେ ଗୋପବନ୍ଧୁଙ୍କ ବ୍ୟକ୍ତିକ ଜୀବନର ଅନ୍ୟ ଏକ ପ୍ରସଙ୍ଗକୁ ଆସିବା-ସଂସାରିକ ଜୀବନ । ସେ ମାତ୍ର ବାରବର୍ଷ ବୟସରେ ମୋତି ନାମକ ଝିଅକୁ ବାହା ହେଉଛନ୍ତି । ଭର୍ଣ୍ଣାକୁଲାର ସ୍କୁଲର ଛାତ୍ର । ପନ୍ଦର ବର୍ଷ ବୟସରେ ମୋତି ଦେବୀ ଘରଯୋଗ୍ୟା ହୋଇ ତାଙ୍କ ଘରକୁ ଆସୁଛନ୍ତି । ବାଇଶ ବର୍ଷ ବେଳକୁ ସେ ଗୋଟିଏ ପୁଅ ଓ ଦୁଇଟି ଝିଅର ମା' । ୧୯୦୪ ମସିହାରେ ଛ' ବର୍ଷ ବୟସର ପୁଅ ଓ ୧୯୦୮ ମସିହାରେ ହରାଉଛନ୍ତି ପତ୍ନୀକୁ । ସେତେବେଳକୁ ତାଙ୍କ ବୟସ ମାତ୍ର ଅଠେଇଶ । ଦୁଇଟି ଦାରୁଣ ଆଘାତ । ସ୍ୱୀକାର କରୁଛନ୍ତି । ଦ୍ୱିତୀୟ ବିବାହର ପ୍ରସ୍ତାବ ଆସୁଛି । ଗୋପବନ୍ଧୁ ଉତ୍ତର ଦେଉଛନ୍ତି 'ମୁଁ

ଦ୍ୱିତୀୟବାର ବିବାହ କରି ପାରିବି ନାହିଁ । ଏ ଦେଶର ବ୍ରାହ୍ମଣଘର ଝିଅ ବିଧବା ହେଲେ ସେ ଯଦି ଦ୍ୱିତୀୟବାର ସ୍ୱାମୀ ଗ୍ରହଣ କରିବାକୁ ସମର୍ଥ ନୁହେଁ, ମୁଁ କିପରି ଦ୍ୱିତୀୟ ପତ୍ନୀ ଗ୍ରହଣ କରିବି ? ପୁରୁଷର ଏକ ପତ୍ନୀବ୍ରତତା ଏକାନ୍ତ ଅନୁକରଣୀୟ ।" ଏଇ ସିଦ୍ଧାନ୍ତ ପଛରେ କମଳା ନାନୀଙ୍କ ବର୍ତ୍ତମାନ ଅବଶ୍ୟ ସ୍ୱୀକାର୍ଯ୍ୟ । ବାଲ୍ୟ ବିଧବାମାନଙ୍କର ପୁନର୍ବିବାହ ପାଇଁ ସେ ରକ୍ଷଣଶୀଳ ବ୍ରାହ୍ମଣମାନଙ୍କୁ ପ୍ରବର୍ତ୍ତାଇଛନ୍ତି । ସଫଳ ହୋଇନାହାନ୍ତି । ମାତ୍ର ସେମାନଙ୍କର ରକ୍ଷଣାବେକ୍ଷଣ ଓ ରହଣି ପାଇଁ ୧୯୨୬ ମସିହାରେ ପୁରୀରେ 'ଜଗନ୍ନାଥ ବିଧବାଶ୍ରମ' ପ୍ରତିଷ୍ଠା କରିଛନ୍ତି । ଆଶ୍ରମରେ ହସ୍ତଶିଳ୍ପ (ସୂତାକଟା, ଲୁଗାବୁଣା) ରୋଗୀ ସେବା ଓ ଭାଗବତ ଚର୍ଚ୍ଚାର ବ୍ୟବସ୍ଥା କରିଛନ୍ତି । ଆଶ୍ରମରେ ପ୍ରତ୍ୟେକ ଜାତିର ବିଧବା-ରହଣିର ବ୍ୟବସ୍ଥା କରାଯାଇଛି ।

ଗୋପବନ୍ଧୁ ଆପଣାର ଦୁଇ ଝିଅ ସାରଂଗିଣୀକୁ ରତ୍ନାକର ପତି ଓ କେତକୀକୁ ନାରାୟଣ ମିଶ୍ରଙ୍କ ହାତକୁ ଟେକି ଦେଇଛନ୍ତି । ଭାରଥୋରରେ ସେମାନଙ୍କ ଘରକୁ ପୂର୍ଣ୍ଣ କରିଛନ୍ତି । ଯୌତୁକ ଦେଇନାହାନ୍ତି । ବାହାଘର ବେଳେ ନା ବାଣ, ନା ରୋସଣିର ଚମକ । ଥରେ ବଡ଼ଝିଅ ଘର ପାଖରେ ରହୁଥିବା ଜଣେ ଅସୁସ୍ଥ ବନ୍ଧୁଙ୍କୁ ଦେଖିବାକୁ ଯାଇଛନ୍ତି । ଝିଅ ଅପେକ୍ଷା କରିଛି, ବାପା ଆସିବେ । ବାପାଙ୍କୁ ହାତଠାରି ଡାକିଛି । ଶୁଣି ନାହାନ୍ତି । କହିଛନ୍ତି - "ସେ ତା ଭାଗ୍ୟନେଇ ରହିବ, ମୋତେ ଦେଖି ଲାଭ କ'ଣ ?" ସାନ ଝିଅ ଅଭାବବେଳେ ଟଙ୍କା ମାଗିଛି । ବାପାଙ୍କ ପାଖରୁ ଉତ୍ତର ଆସିଛି । "ମୁଁ ଟଙ୍କା ପଇସା ଦେଇ ପାରିବି ନାହିଁ ।" 'ଆଳୁ ସାରୁ ମୁଣ୍ଡରେ ଧରି ବଜାରରେ ବୁଲି ବିକାବିକି କର ।' ଅରଟ କିଣି ନିଜ ଲୁଗା ନିଜେ ବୁଣ, ଆତ୍ମନିର୍ଭରଶୀଳ ହୁଅ । ପରମୁଖାପେକ୍ଷିତା ଜୀବନ ପାଇଁ ଏକ କଳଙ୍କର ବ୍ୟାଧି । ଦେଶର ଲୋକେ ଖାଇବାକୁ ପାଉ ନାହାନ୍ତି । ସବୁଆଡ଼େ ଧୋଇ ମରୁଡ଼ି । ଉତ୍କଟ ଅଭାବ ଲାଗି ରହିଛି । ସେତେବେଳେ ତୋ ଅଭାବ ବଡ଼ କଥା ନୁହେଁ । ଗୋପବନ୍ଧୁ କିପରି ଜଣେ ବାପା, ଏଇ ଦୁଇଟି ଘଟଣା ତାହାର ଉଦାହରଣ ।

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ସମ୍ପର୍କରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ଉତ୍ତର, ନିତ୍ୟାନନ୍ଦ ଶତପଥୀ, ହଜାରିବାଗ ଜେଲର ସହବନ୍ଦୀ ଭାଗୀରଥି ମହାପାତ୍ରଙ୍କ ତୁଣ୍ଡରେ ଦେଇଛନ୍ତି । ପ୍ରଥମ : ଗୋପବନ୍ଧୁଙ୍କ ବିରୋଧରେ ଅଭିଯୋଗ, ସେ କାଳେ କମ୍ୟୁନାଲ । ଉତ୍ତର- "ମୋର ସମସ୍ତେ ବନ୍ଧୁ ।" ଦ୍ୱିତୀୟ: ରାମ ବାରିକ ନାମକ ଜଣେ ମଣିଷ ସହିତ ତାଙ୍କର ସମ୍ପର୍କ । ଉତ୍ତର: ଏଇ ମଣିଷ ଜଣକ ତାଙ୍କ ଅବସନ୍ନ ଦେହରେ ତେଲ ମାଲିସ କରିଦିଏ, ରୋଷେଇ କରେ, ଖାଇବା ସଜାଡ଼ି ଦିଏ, ଗୋଟିଏ ଘରେ ଶୁଏ, ଅବୋଲାକରା ପରି ତାଙ୍କ ପଛେ ପଛେ ଘୂରି ବୁଲୁଥାଏ- ଏ କେଉଁ ପ୍ରକାରର ସମ୍ପର୍କ ? ଉତ୍ତର: ଏ ବୟସରେ କ'ଣ ସେ ସବୁ ଦୁର୍ବଳତା ରହେ ? ଭାରିଯା ଓ ପୁଅ ମଲା ପରେ ଦେଶ କାମରେ ଲାଗି ମୁଁ ସେମାନଙ୍କୁ ମୁହୂର୍ତ୍ତେ ମନେ ପକାଇବାକୁ ବେଳ ପାଇନି । ସ୍ତ୍ରୀ ସ୍ମୃତିକୁ ଅପମାନ ହେବ ବୋଲି ବୟସ

ଥାଉଁଥାଉଁ ଦ୍ୱିତୀୟ ବିବାହ ବି କରି ନାହିଁ । ତେଣୁ ଦେହର ପ୍ରଶ୍ନ ଉଠୁଛି କେଉଁଠି ? ଆମର ସକଳ ଭଲମନ୍ଦ କାମରେ ଜଗନ୍ନାଥ ସାକ୍ଷୀ ଅଛନ୍ତି ।

ଗୋପବନ୍ଧୁଙ୍କ ଜୀବନଚର୍ଯା ସମ୍ପର୍କରେ ନିତ୍ୟାନନ୍ଦଙ୍କର ଏ ପ୍ରଶ୍ନ ବେଶ୍ ସମ୍ବେଦନଶୀଳ । କେବଳ ନିତ୍ୟାନନ୍ଦ ନୁହନ୍ତି, ଅନନ୍ତ ମିଶ୍ର ଓ ବାସୁଦେବ ମହାପାତ୍ର ଏ ପ୍ରସଙ୍ଗରେ ମଧ ପ୍ରଶ୍ନ କରିଛନ୍ତି । ଏ ପ୍ରଶ୍ନର ଉତ୍ତର ଦେଇଛନ୍ତି ଭାଗୁ ବାବୁ । ତାଙ୍କ ଭାଷାରେ, "ସେ ମହାତ୍ମା ଆଜି ନାହାନ୍ତି । ମୁଁ ତାଙ୍କୁ ଏ ପ୍ରଶ୍ନ ପଚାରି ଯେତିକି ଆଘାତ ଦେଇଛି, ସେତିକି ଆଘାତ ନିଜ ହୃଦୟରେ ଅନୁଭବ କରିଛି । ଯାହା ହେଉ ମୋ ଅନ୍ତର ସେହି ଦିନଠାରୁ ଅତି ସ୍ୱଚ୍ଛ ହୋଇଯାଇଛି ।"

ଏପରି ଏକ ପ୍ରଶ୍ନର ସ୍ୱଚ୍ଛତା ସବୁକାଳରେ, ସବୁ ଭୂମିରେ, ସବୁ ମଣିଷପାଇଁ ଦ୍ୱନ୍ଦ୍ୱାତ୍ମକ । ମାତ୍ର ଯେଉଁ ବ୍ୟକ୍ତିଙ୍କ ସମ୍ପର୍କରେ ଆମ ଭିତରେ ଏ ପ୍ରଶ୍ନ, ସେ ଅଧ୍ୟାତ୍ମବାଦୀ, ତେଣୁ ଜୀବନବାଦୀ ଓ ମାନବବାଦୀ । ନିତ୍ୟାନନ୍ଦ ଆପଣା ଗ୍ରନ୍ଥର ପ୍ରତ୍ୟେକ ଅଧ୍ୟାୟରେ ଗୋପବନ୍ଧୁ ବ୍ୟକ୍ତିତ୍ୱର ଏଇ ବିଶେଷତାକୁ ସ୍ୱଷ୍ଟ କରି ଦେଇଛନ୍ତି ।

## ଚାରି

କୁହାଯାଏ, ଗୋପବନ୍ଧୁ ଜଣେ ଶକ୍ତିଶାଳୀ ସଙ୍ଗଠକ । ଆପଣା କାଳରେ ସେ ବହୁ ସଙ୍ଗଠନ ସହିତ ସେ ସମ୍ପୃକ୍ତ ରହିଛନ୍ତି । ସଙ୍ଗଠନ ଗଢ଼ିଛନ୍ତି । ସେ ଅନୁଭବ କରିଛନ୍ତି, ସଙ୍ଗଠନ ହିଁ ଯେକୌଣସି ଭାବାଦର୍ଶର ବୀଜୟନ, ପଲ୍ଲବନ ଓ କୁସୁମନର କାରଣ । କିଶୋର ବୟସରେ ହାଇସ୍କୁଲରେ ସହଧ୍ୟାୟୀ ଓ ବନ୍ଧୁମାନଙ୍କ ସହ ସାହିତ୍ୟ, ରାଜନୀତି, ସମାଜ ସମ୍ପର୍କରେ ଚର୍ଚ୍ଚା କରିଛନ୍ତି । ପରବର୍ତ୍ତୀ କାଳରେ ପୁରୀ ସେବାସମିତି (ପୁରୀ: ୧୯୦୧), ସେଣ୍ଟ୍ରାଲ ୟଂଗ ଉତ୍କଳ ଆସୋସିଏସନ, ୟଂଗ ଉତ୍କଳ ଆସୋସିଏସନ (ବାରିପଦା), ସତ୍ୟବାଦୀ ବନବିଦ୍ୟାଳୟ (୧୯୦୯, ସାକ୍ଷୀଗୋପାଳ,ପୁରୀ), ପ୍ରଜାହିତକାରିଣୀ ସଭା (ଫୁଲଝରି: ୧୯୨୦), କଲିକତା ଓଡ଼ିଆ ସମାଜ, (କଲିକତା), ସ୍ୱରାଜ୍ୟ ସେବକ ସଂଘ, ଭାରତ ସେବକ ସମାଜ, କର୍ତ୍ତବ୍ୟବୋଧିନୀ (କଟକ), ଜଗନ୍ନାଥ ବିଧବା ଆଶ୍ରମ (ପୁରୀ) ଇତ୍ୟାଦି । ଏତଦ୍ ବ୍ୟତୀତ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆମାନଙ୍କୁ ସଙ୍ଗଠନ କରିବା କ୍ଷେତ୍ରରେ ନେତୃତ୍ୱ ନେଇଛନ୍ତି । ଏବଂ, ଉତ୍କଳ ସମ୍ମିଳନୀ ଓ ଭାରତୀୟ ଜାତୀୟ କଂଗ୍ରେସ ହୋଇଛି ତାଙ୍କ ଜୀବନଯାତ୍ରାର ମନ୍ତ୍ର । ମାତ୍ର ଯାତ୍ରା ଆଉ ମନ୍ତ୍ରକୁ ମିତ୍ର କରି ସେ କ'ଣ ଜୀବନ ବଞ୍ଚିବା ଓ ଜାତିଗଢ଼ଣରେ ସମର୍ଥ ହୋଇଛନ୍ତି ? ନିତ୍ୟାନନ୍ଦଙ୍କ ବହିରେ ଏହି ପ୍ରଶ୍ନର ଇଂଗିତ ରହିଛି ।

ପ୍ରଥମେ ସତ୍ୟବାଦୀ ବନବିଦ୍ୟାଳୟର କଥା । ଗୋପବନ୍ଧୁ ଅନୁଭବ କରିଛନ୍ତି, ଜାତିକୁ ମୁକ୍ତ ଓ ଗତିଶୀଳ କରିବାପାଇଁ ବିଦ୍ୟା ସର୍ବମୂଳ ସମ୍ପଦ । ଏବଂ, ଚେତନା ସ୍ତରରେ ମୁକ୍ତ ମଣିଷ ହିଁ ଅବଶିଷ୍ଟମାନଙ୍କ ମୁକ୍ତିର କାରଣ ହୋଇପାରିବ । ବିଦେଶୀ ଶିକ୍ଷା ଅବଶ୍ୟ ଆମକୁ ବିଶ୍ୱ ଯୋଡ଼ଣରେ ସାହାଯ୍ୟ କରୁଛି, ମାତ୍ର ମୁକ୍ତ ଜୀବନବୋଧର ମାତ୍ରିକ କରିପାରୁ ନାହିଁ । ଆତ୍ମଦର୍ଶନ ଓ ଆତ୍ମବିକାଶର ସକଳ ମାର୍ଗକୁ ରୁଦ୍ଧ କରି ଦେଉଛି । ସେଥିପାଇଁ ସେ ଏକ

ବିଦ୍ୟାଳୟ ଗଢୁଛନ୍ତି । ସ୍ଥାନ ବଉଳ ଓ ଛୁରିଅନା ଗଛରେ ପରିପୂର୍ଣ୍ଣ ସାକ୍ଷୀଗୋପାଳ । ଓଡ଼ିଶାର ସବୁଜାଗାରୁ, ସବୁବର୍ଣ୍ଣର ପିଲା ଆସିବେ, ଏକାଠି ରହିବେ, ଶୋଇବେ, ଗାଧେଇବେ, ଖାଇବେ, ଖେଳିବେ, ପଢ଼ିବେ, ଗୀତ ଗାଇବେ, ପ୍ରାର୍ଥନା କରିବେ, ନିଜ ନିଜ ସହିତ କଥା ହେବେ, ପଢ଼ାବହି ସହିତ ଅନ୍ୟ କେତେକେତେ ବହି ପଢ଼ିବେ । ପ୍ରତ୍ୟେକ ଏକାପରି ଦିଶିବେ । ମଣିଷ ପରି । ବିଦ୍ୟା-ସମୁଦ୍‌ଭାସିତ, ସମଦର୍ଶୀ ଓ ସମଭାବାପନ୍ନ ଅସ୍ତିତ୍ୱ । ମାତ୍ର ଏହା କ'ଣ ସମ୍ଭବ ? ସେ କ'ଣ ଶିକ୍ଷକ ହୋଇ ପାରିବେ ? ଏପରି ମାନସିକତାର ଶିକ୍ଷକ କେଉଁଠୁ ଆସିବେ ତାଙ୍କ ପାଖକୁ ?

ଗୋପବନ୍ଧୁ ବୃତ୍ତିଗତ ଜୀବନର ଆରମ୍ଭ ଶିକ୍ଷକତାରୁ । ବି.ଏଲ. ପରୀକ୍ଷା ଦେଇ ଆସିବା ପରେପରେ ନୀଳଗିରିରେ ମାତ୍ର କେତେ ମାସ ପାଇଁ । ଏବେ ବୃତ୍ତି କହିଲେ, ଓକିଲାତି । ମାତ୍ର ସେ ନିଜ ପାଖରେ ଅଙ୍ଗୀକାରବଦ୍ଧ, ଅସମ୍ଭବ ହେବ ନାହିଁ । ସମ୍ପର୍କଥିଲା ହରିହର, ଗୋଦାବରୀଶ, ନୀଳକଣ୍ଠ, କୃପାସିନ୍ଧୁ, ବାସୁଦେବ, ରାମଚନ୍ଦ୍ରଙ୍କ ପରି ତରୁଣମାନଙ୍କ ସହିତ । ସମସ୍ତେ ଗାଁ ପାଖର ମଣିଷ । ପ୍ରତିଭାଦୀପ୍ତ, ବିଦ୍ୟା ଅନୁରାଗୀ । ସେମାନଙ୍କ ଚେତନାରେ ଜାତି ପ୍ରୀତିବୋଧର ନିଆଁ ଜାଳି ଦେଇପାରିଲେ ହେଲା । ସେ ସମର୍ଥ ହେଲେ । କହିଲେ, ଆସ, ବ୍ୟକ୍ତିଗତ ଜୀବନ, ଜାତିଜୀବନ ଓ ବିଦ୍ୟାକୁ ମିଶାଇ ଦେବା । ଆପେ ଶକ୍ତ ମେରି ଖୁଣ୍ଟ ହୋଇଗଲେ । ଜାତି ପ୍ରୀତିବୋଧର ମନ୍ତ୍ର ହେଲା ଦାଉଣି । ମନ୍ତ୍ରରେ ବାନ୍ଧି ହୋଇଗଲେ ଉତ୍ସାହୀ ତରୁଣ ଗୋଷ୍ଠୀ । ସତ୍ୟବାଦୀରେ ଏବେ ମାଟିକାନ୍ଥ ଓ ନଡ଼ାଛପର ଘର । ଛାତ୍ର-ଶିକ୍ଷକ ଏଇଠି । ସହଜୀବନଯାତ୍ରା । ବଢ଼ି ଓ ବତାସରେ ଘର ଭାଙ୍ଗୁଚି, ତିଆରି ହେଉଛି । ମାଟିଘର ଇଟାରେ ରୂପାନ୍ତରିତ ହେଉଛି । ଜମିଦାର, ରାଜା, ମହାରାଜା, ବିଶିଷ୍ଟ ଓ ଦାନଶୀଳମାନେ ନିଜକୁ ଏହି ପରୀକ୍ଷାଗାରର ସଦସ୍ୟ କରୁଛନ୍ତି । ଗୋରାମାନେ ବି ଆସୁଛନ୍ତି । ଉତ୍ସାହରେ ପରିପୂର୍ଣ୍ଣ ଏବେ ପରିମଣ୍ଡଳ । ଗୋପବନ୍ଧୁ ବାତଚକ୍ର ପରି ଘୂରି ବୁଲୁଛନ୍ତି । ଆଜି ଏଠି, କାଲି ସେଠି । ସେ ସ୍କୁଲକୁ ଆସୁଛନ୍ତି, ରହୁଛନ୍ତି, ଶୋଉଛନ୍ତି, ଖାଉଛନ୍ତି, ମନ୍ତ୍ର ଦେଉଛନ୍ତି । ଶିକ୍ଷକ ହେଉନାହାନ୍ତି । ସେ ମାନ୍ତ୍ରିକ । ମାତ୍ର ସମକାଳର ସମାଜ ଓ ପ୍ରଶାସନ ତାଙ୍କ ଅଭିନବ ଯାତ୍ରାକୁ ସ୍ୱୀକାର କରିପାରୁ ନାହିଁ । ଘର ପୋଡ଼ି ଦିଆଯାଉଛି, ପ୍ରଶାସନ କହୁଚି- ବିଦ୍ରୋହୀ । ଗୋପବନ୍ଧୁ କିନ୍ତୁ ଅକୁତୋଭୟୀ ଯାତ୍ରୀ ।

ଜଣେ ଅକୁତୋଭୟ ଅବଶ୍ୟ ବହିଃଶତ୍ରୁମାନଙ୍କୁ ଆୟତ୍ତ କରିପାରେ, ମାତ୍ର ଅନ୍ତଃଶତ୍ରୁ (ମାନଙ୍କ)ର ବଶୀକରଣ ଅସହଜ । ଏହା ହିଁ ଯାବତୀୟ ବିପାକର କାରଣ । ମନେହୁଏ ସତ୍ୟବାଦୀ ବନ ବିଦ୍ୟାଳୟର ଅକାଳ ମରଣର ତାହା ହିଁ କାରଣ । ନିତ୍ୟାନନ୍ଦଙ୍କ ଗ୍ରନ୍ଥରେ ଏହାର ସ୍ପଷ୍ଟ ସୂଚନା ରହିଛି । ଗୋପବନ୍ଧୁ ଯେଉଁମାନଙ୍କୁ ମିତ୍ର କରିଛନ୍ତି, ସେମାନେ ବେତନଭୋଗୀ ଓ ବିଦ୍ୱାନ । ତ୍ୟାଗ ବି ରହିଛି । ମାତ୍ର ପ୍ରତ୍ୟେକ ଅହଂପଲଙ୍କର ମୋହ

ଛାଡ଼ି ପାରିନାହାନ୍ତି । ଅଧିକ ଦରମା, ପ୍ରଧାନଶିକ୍ଷକ ଖଟୁଲି, ଛାତ୍ରାବାସ ତତ୍ତ୍ୱାବଧାରକ ପଦ ଏବଂ ପ୍ରତିପତ୍ତି ପାଇଁ ପରସ୍ପର ସହିତ ଲଢ଼େଇ କରିଛନ୍ତି । ବାହାରେ ଶାନ୍ତ, ମାତ୍ର ଭିତରେ ସନ୍ତାପିତ ଓ ବିକ୍ଷୁବ୍ଧ । ଅନ୍ୟ ପକ୍ଷରେ, ସ୍ୱୟଂ ଗୋପବନ୍ଧୁଙ୍କର ସମସ୍ୟା କିଛି କମ୍ ନଥିଲା । ତାଙ୍କ ଯାତ୍ରା ବହୁମୁଖୀ । ଓକିଲାତି, ରାଜନୀତି, ଲୋକ-ସମ୍ପୃକ୍ତି, ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ଆନ୍ଦୋଳନ, ସମ୍ବାଦପତ୍ରର ପରୋକ୍ଷ ଓ ପ୍ରତ୍ୟକ୍ଷ ସମ୍ପାଦନା, ସାହିତ୍ୟପତ୍ର ସମ୍ପାଦନା, ଏବଂ ୧୯୨୦ ମସିହା ପରେ ଭାରତର ମୁକ୍ତି ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ- ନାନା ମାତ୍ର । ବନବିଦ୍ୟାଳୟକୁ ଶୃଙ୍ଖଳିତ କରିବାପାଇଁ ସେ ବହୁ ଅପ୍ରୀତିକର ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ଗୋଦାବରୀଶ ଚକ୍ରଧରପୁର ଯାଇଛନ୍ତି । ଓଡ଼ିଆ ଭାଷା ଭାଷୀ ଅଂଚଳର ଏକତ୍ରୀକରଣ ଓ ଶିକ୍ଷା ବିସ୍ତାର । ନୀଳକଣ୍ଠ ବି ରାଜନୀତିମୁଖା । ୧୯୨୧ ମସିହାରେ ସେ ସତ୍ୟାଦୀକୁ ଜାତୀୟ ସ୍କୁଲ ଘୋଷଣା କରି ଦେଉଛନ୍ତି । ଅର୍ଥାତ୍ ସେ ସରକାରୀ ଅନୁଦାନ ନେବେ ନାହିଁ, ସରକାରୀ ହାକିମାତିକୁ ମାନବେ ନାହିଁ । ଏପରିକି, ସ୍ୱୀକୃତି ପ୍ରତ୍ୟାହାର ପାଇଁ ସରକାରଙ୍କୁ ଚିଠି ଲେଖିଦେଇଛନ୍ତି । ପିଲାମାନଙ୍କୁ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେବାପାଇଁ ପ୍ରଚୋଦକ ହୋଇଛନ୍ତି । କହିଛନ୍ତି, "ମୁଁ ଯଦି ମୋ ସ୍କୁଲ ନ ଭାଙ୍ଗେ, ତେବେ ସ୍କୁଲ କଲେଜ ଛାଡ଼ିବାକୁ ମୁଁ ଅନ୍ୟମାନଙ୍କୁ କହିବି କେମିତି ?" ୧୯୨୨ ମସିହାରେ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲକୁ ଜାତୀୟ କଲେଜରେ ପରିଣତ କରିବା ପାଇଁ ଯୋଜନା କରିଛନ୍ତି । ବିଜ୍ଞପ୍ତି ପ୍ରକାଶ ପାଇଛି । ନୀଳକଣ୍ଠ ସମ୍ବଲପୁରର ଜାତୀୟ ବିଦ୍ୟାଳୟ ଛାଡ଼ି ସତ୍ୟବାଦୀରେ ଅଧାପକ ଭାବରେ ଯୋଗଦେଇଛନ୍ତି । ପିଲାମାନେ ନାଁ ଲେଖାଇଛନ୍ତି । ମାତ୍ର ଗୋପବନ୍ଧୁଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଛି । ଫଳତଃ ଜାତୀୟ କଲେଜ ଅର୍ଥ ଅନଟନ ଭିତରେ ସମ୍ପୂର୍ଣ୍ଣ ଅଚଳ ହୋଇଯାଇଛି । ବସ୍ତୁତଃ ଓଡ଼ିଶାର ଜାତୀୟ ଜୀବନରେ ଏକ ପରୀକ୍ଷା ଓ ପ୍ରୟୋଗଶାଳା ସତ୍ୟବାଦୀ କାଣ୍ଡାରୀ ଅନୁପସ୍ଥିତିରେ ଦିଗହରା ହୋଇଯାଇଛି । ସମୟ ଆସିଛି ବିଶ୍ୱବିଦ୍ୟାଳୟ ସହିତ ସତ୍ୟବାଦୀର ସମ୍ପର୍କ ଛିନ୍ନ ହୋଇଛି । ଅଭିଭାବକମାନେ ସ୍କୁଲ/ କଲେଜକୁ ପିଲା ପଠାଇ ନାହାନ୍ତି । ୧୯୨୬ ମସିହାରେ ଏକ ମଣିଷ ଗଢ଼ା କାରଖାନା ତାର ଅକାଳମରଣକୁ ସ୍ୱୀକାର କରିଛି । ଏହାର କାରଣ ସମ୍ପର୍କରେ ନିତ୍ୟାନନ୍ଦଙ୍କ ମନ୍ତବ୍ୟ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

"ଗୋପବନ୍ଧୁଙ୍କ ସାଧନାର ଅନ୍ତ ନଥିଲା; କିନ୍ତୁ ଜାତୀୟ ସଂଗ୍ରାମ ହେତୁ ସେ ସତ୍ୟବାଦୀ ପାଇଁ ଏକନିଷ୍ଠ ହୋଇ ପାରିଲେ ନାହିଁ । ରବି ଠାକୁରଙ୍କ ଜାତୀୟ ସଂଗ୍ରାମରେ ସେପର ଅଂଶ ନ ଥିଲା, ଫଳରେ ଶାନ୍ତିନିକେତନପାଇଁ ସେ ସମ୍ପୂର୍ଣ୍ଣ ଲଗି ପଡ଼ିଥିଲେ । ଗୋପବନ୍ଧୁଙ୍କ କାନରେ ପରାଧୀନ ଜାତିର କରୁଣ କାରୁଣ୍ୟ ଅହରହ ପ୍ରତିଧ୍ୱନିତ ହେଉଥିଲା । ତା ଆଗରେ

ସତ୍ୟବାଦୀ ବନବିଦ୍ୟାଳୟକୁ କେନ୍ଦ୍ରକରି ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଅନ୍ୟ ଦୁଇଟି ଅଭିବ୍ୟକ୍ତି 'ସତ୍ୟବାଦୀ' ସାହିତ୍ୟ ପତ୍ରିକା ଓ 'ସମାଜ' ସମ୍ବାଦପତ୍ର । ସତ୍ୟବାଦୀର ପ୍ରକାଶ ଅବଧି ପ୍ରାୟ ସାଢ଼େ ଚାରି ବର୍ଷ (ମାର୍ଚ୍ଚ ୧୯୧୫-୧୯୧୯) ଅନିୟମିତ ହୋଇଛି । ଆଭିମୁଖ୍ୟ ସ୍ପଷ୍ଟ । ଚର୍ଚ୍ଚା ଓ ବିତର୍କ ମାଧ୍ୟମରେ ଗଦ୍ୟକୁ ଗତି ଦେବା । ବିଚାର ଓ ଜ୍ଞାନକୁ ପୁଷ୍ଟ କରିବା । ଗୋପୀନାଥ ନନ୍ଦ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ବିରୂପାକ୍ଷ, ଜଗବନ୍ଧୁ, ରୁଦ୍ର ନାରାୟଣ, ଶ୍ରୀବତ୍ସ ଏବଂ ଅନ୍ୟମାନଙ୍କୁ ଆମେ ପାଇବା ସହ ହୋଇନଥାନ୍ତା, ସତ୍ୟବାଦୀ ନଥିଲେ । 'ପଲ୍ଲୀ ପ୍ରସଙ୍ଗ' ଶୀର୍ଷକ ଏକ ସ୍ୱତନ୍ତ୍ର ବିଭାଗରେ ଗାଁର କଥା ରହୁଥିଲା । ଅନ୍ୟ ଏ ବିଭାଗରେ ପିଲାମାନେ ବି ଲେଖୁଥିଲେ । ଅର୍ଥାତ୍ ଭବିଷ୍ୟତ ଗଢ଼ଣ ପାଇଁ ପ୍ରତିଶ୍ରୁତିବଦ୍ଧତା । ଗୋପବନ୍ଧୁ ପ୍ରଥମ ଓଡ଼ିଆ, ଯିଏ ବୁଝିଛନ୍ତି, କବିତା ବା ପଦ୍ୟ ନୁହେଁ, ଗଦ୍ୟ ହିଁ କୌଣସି ଜାତିର ମାନସିକ, ସାଂସ୍କୃତିକ, ସାମାଜିକ ଅଭିବ୍ୟକ୍ତି ଓ ବିକାଶର ପ୍ରକୃତ ମାଧ୍ୟମ । ତେଣୁ ସତ୍ୟବାଦୀ ଏକ ପତ୍ରିକା ନୁହେଁ, ଆନ୍ଦୋଳନ; ଚେତନା-ଉନ୍‌ମିଳନର ଭାବରୂପ । ତା ୪ ଅକ୍ଟୋବର, ୧୯୧୯ ମସିହାରେ ସାପ୍ତାହିକ ସମ୍ବାଦପତ୍ର 'ସମାଜ' ମଧ୍ୟ ଉପର୍ଯ୍ୟୁକ୍ତ ଭାବାଦର୍ଶର ଇସ୍ତାହାର । ମାତ୍ର ବାସ୍ତବତଃ ୧୯୧୩ ମସିହାରେ ପ୍ରକାଶିତ, ଶଶି ଭୂଷଣ ରଥ ସମ୍ପାଦିତ ଆଶା ହିଁ ଗୋପବନ୍ଧୁଙ୍କ ସାମ୍ବାଦିକ- ବ୍ୟକ୍ତିତ୍ୱର ଓଁକାର । ସେ ଏହାର ଛାୟା ସମ୍ପାଦକ । ସମ୍ପାଦନୀୟ ବି ଲେଖିଛନ୍ତି । ଆମ ବହୁ ବିତର୍କିତ 'ଲିପି ସଂସ୍କାର ଆନ୍ଦୋଳନ'ର ଆରମ୍ଭ 'ଆଶା' ମାଧ୍ୟମରେ ତାହା ପୁଣି ଗୋପବନ୍ଧୁଙ୍କ ଏକ ପତ୍ର (୧୬ ଫେବୃଆରୀ, ୧୯୧୪) । ମାତ୍ର ଗୋପବନ୍ଧୁଙ୍କ ଭାରତୀୟ ଜାତୀୟ କଂଗ୍ରେସ ସହ । ସମ୍ପର୍କ ଓ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ କ୍ଷେତ୍ରରେ ମଧୁସୂଦନଙ୍କ ଭାବାଦର୍ଶ ବିରୋଧୀ ମାନସିକତା ବହୁ ଉଗ୍ର ଉତ୍କଳୀୟଙ୍କୁ ଚକିତ କରିଛି । ସେମାନେ ତାଙ୍କୁ ସହଜରେ ଗ୍ରହଣ କରିପାରିନାହାନ୍ତି । ଫଳତଃ ଆଶା-ଭୂମିରୁ ତାଙ୍କୁ ଅପସରି ଯିବାକୁ ପଡ଼ିଛି । 'ସମାଜ'ହୋଇଛି ସେଇ ଅପସାରଣ ମାନସିକତାର ବିକଳ୍ପ । ଏହା ଏକ ଭିନ୍ନ ପ୍ରସଙ୍ଗ । ମାତ୍ର ସମକାଳରେ ପ୍ରକାଶପାଉଛି ଓଡ଼ିଆ ଭାଷାରେ ଚାରିଗୋଟି ପ୍ରମୁଖ ସମ୍ବାଦପତ୍ର, ଉତ୍କଳଦୀପିକା, ବାଲେଶ୍ୱର ସମ୍ବାଦବାହିକା, ସମ୍ବଲପୁର ହିତୈଷିଣୀ ଏବଂ ଆଶା । ପ୍ରତ୍ୟେକ ଓଡ଼ିଶାର ଚାରିଗୋଟି ଭିନ୍ନ ପ୍ରାନ୍ତରୁ । ଏଥର କେନ୍ଦ୍ରରୁ ସମାଜ, ଉତ୍କଳ ଦୀପିକା ପରେ । ପତ୍ରରେ କ'ଣ ରହିବ, ପ୍ରଥମ ସଂଖ୍ୟାରେ ଗୋପବନ୍ଧୁ ସ୍ପଷ୍ଟ କରି ଦେଇଛନ୍ତି । ତାଙ୍କ ଭାଷାରେ, "ଏଥିରେ ଦେଶର ଅବସ୍ଥା ଓ ନାନାଦି ହିତକର ପ୍ରସ୍ତାବର ଆଲୋଚନା ହେବ । ରାଜା-ପ୍ରଜା, ଜମିଦାର- ରୟତ, ମହାଜନ ଖାତକ, କୃଷକ-ବ୍ୟବସାୟୀ, ଶିକ୍ଷକ-ଛାତ୍ର,ମାଲିକ ମଜୁରିଆ, ଶ୍ରମଜୀବୀ ପ୍ରଭୃତି ସକଳ ଶ୍ରେଣୀ ଲୋକଙ୍କ ବିଷୟ ଏଥିରେ ରହିବ । ସହର. ମଫସଲ. ଦେଶ ବିଦେଶର ସମ୍ବାଦମାନ ଏଥିରେ ଦିଆଯିବ । ବିଶେଷତଃ

ସାକ୍ଷୀଗୋପାଳ ଓ କଟକରୁ ପ୍ରକାଶ ପାଇଛି । ନିଜର ପ୍ରେସ୍ କରିଛନ୍ତି । ସତ୍ୟବାଦୀ ପ୍ରେସ୍ । ପତ୍ରିକାର ଭାଷା ସରଳ, ସହଜବୋଧ ଓ ସମ୍ବାଦ ହୋଇଛି ସତ୍ୟନିଷ୍ଠ । ଏଥିସହିତ ରହିଛି ପାଠକ ଚେତନା ଉନ୍ମୀଳିକ ଆଲୋଚନା ସର୍ବୋପରି ଏବଂ ପାଠକ ମନରେ ପ୍ରଶ୍ନ-ସୃଷ୍ଟିକାରୀ ପ୍ରସଙ୍ଗ । ସ୍ୱାଧୀନତା ସଂଗ୍ରାମ ଓ ଗାଁ ମାଟିର ସମସ୍ୟା ପ୍ରମୁଖ ସ୍ଥାନ ପାଇଛି । ଫଳତଃ ଏହା ବିଦେଶୀ ପ୍ରଶାସନ ରୋଷର ଶିକାର ହେଉଛି । ଗୋପବନ୍ଧୁ କିନ୍ତୁ ଆନାଙ୍କିତ । 'ସମାଜ' ମରୁନି । ସମୟ ଆସିଛି, ଓଡ଼ିଆମାନେ ସମ୍ବାଦପତ୍ର କହିଲେ, 'ସମାଜ'କୁ ହିଁ ବୁଝିଛନ୍ତି । ସମକାଳର 'ସମାଜ' ଜାତିର ଇତିହାସ ରଚନାର ପ୍ରାମାଣିକ ଉପାଦାନ ହେଉଛି । ଶେଷକୁ ଗୋପବନ୍ଧୁ ଏହାର ସ୍ୱତ୍ୱ ଲୋକ ସେବକମଣ୍ଡଳ ହାତକୁ ଟେକି ଦେଇଛନ୍ତି ।

## ପାଞ୍ଚ

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ କେଉଁ ଧାତୁରେ ଗଢ଼ା, ନିତ୍ୟାନନ୍ଦ ଆପଣା ଗ୍ରନ୍ଥରେ ଏକଥା ସ୍ପଷ୍ଟ କରି ଦେଇଛନ୍ତି । ବହୁ ଘଟଣାର ଉଦାହରଣ ଦେଇଛନ୍ତି । ସେହି ଧାତୁର ନାଁ ସେବା । ସମକାଳରେ ସମଗ୍ର ଭାରତବର୍ଷରେ ସମମାନସିକତା ମଣିଷମାନେ ଅବଶ୍ୟ ରହିଛନ୍ତି । ମାତ୍ର ସେବା କହିଲେ, ଗୋପବନ୍ଧୁ ବୁଝିଛନ୍ତି, ପ୍ରଥମେ ମଣିଷର ସେବା, ପରେ ଜାତିର ସେବା । ସେଇଥିପାଇଁ ସେ ସବୁବେଳେ କହିଛନ୍ତି, ମୁଁ ପ୍ରଥମେ ମଣିଷ, ଦ୍ୱିତୀୟରେ ଭାରତୀୟ ଏବଂ ଶେଷରେ ଓଡ଼ିଆ । ତେଣୁ, ଏଇଥିପାଇଁ, ତାଙ୍କୁ କୁହାଯାଇପାରିବ, ସମକାଳର ଭାରତର ସେ ପ୍ରଥମ ଲୋକନେତା ବା ଜନନେତା । କିପରି ? ତାଙ୍କ ବୃତ୍ତିଗତ ଓ ରାଜନୀତିକ ଜୀବନକୁ ବିଶ୍ଳେଷଣ କଲେ, ଏହି ରହସ୍ୟ ସ୍ପଷ୍ଟ ହୋଇଯିବ ।

ଗୋପବନ୍ଧୁ ଓକିଲାତି କରୁଛନ୍ତି । କଟକରେ, ପୁରୀରେ । କଟକରେ ସେ ପ୍ରଥମେ ମଧୁସୂଦନ ଦାସଙ୍କ ସହଯୋଗୀ । ୧୯୦୯ ମସିହାରେ ବାରିପଦା ଯାଇଛନ୍ତି, ମଧୁସୂଦନଙ୍କ ସୁପାରିଶରେ । ରାମଚନ୍ଦ୍ର ଭଞ୍ଜଦେବଙ୍କ ସରକାରୀ ଓକିଲ । ମୟୂରଭଞ୍ଜ ଷ୍ଟେଟ କାଉନସିଲର ସଭ୍ୟ ରୂପରେ ମନୋନୀତ ହେଉଛନ୍ତି । ରହୁଛନ୍ତି ପ୍ରାୟ ଦୁଇବର୍ଷ । ମ୍ୟୁନିସପାଲିଟିର ଭାଇସ୍ ଚେୟାରମାନ ମଧ୍ୟ । ମାତ୍ର ୧୯୧୨ ମସିହାରେ ସେ ପଦରୁ ଇସ୍ତଫା ଦେଇ ପୁରୀ ଫେରୁଛନ୍ତି । ବାରିପଦାରେ ତାଙ୍କ ରହଣିକୁ, ନିତ୍ୟାନନ୍ଦ, ବିରୋଧୀଦଳ ନେତା ବୋଲି ମନ୍ତବ୍ୟ ଦେଇଛନ୍ତି । ବାସ୍ତବତଃ ତାଙ୍କ କାର୍ଯ୍ୟପନ୍ଥା ଥିଲା ସେହିପରି । ରାଜା ଅସ୍ତ୍ରଶସ୍ତ୍ର ରଖିବା ଅଧିକାରର ବିରୋଧ କରୁଛନ୍ତି । ରାଜ୍ୟରେ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାରେ ଅଧିକ ଅର୍ଥ ବ୍ୟବସ୍ଥା ପାଇଁ ଦାବି କରୁଛନ୍ତି । କହୁଛନ୍ତି, ଲୋକମାନେ ହିଁ ରାଜ୍ୟର ଶ୍ରେଷ୍ଠ ସମ୍ପଦ, ଖଣି କି ବନ, ସମ୍ପଦ ନୁହେଁ । ଲୋକମାନେ ନିଜର ସ୍ଥିତି ଓ ଅଧିକାର ବୁଝିବା ପାଇଁ ଶିକ୍ଷା ଏକ ଆବଶ୍ୟକତା । କେବଳ ଏତିକି ନୁହେଁ, ଜନହିତକର କାର୍ଯ୍ୟରେ ବ୍ୟୟିତ ଅର୍ଥ ଭରଣା ପାଇଁ ପ୍ରଜାମାନଙ୍କ ଉପରେ କର ବୃଦ୍ଧି ପ୍ରସ୍ତାବର ମଧ୍ୟ ସେ ବିରୋଧ କରିଛନ୍ତି । ଗୋପବନ୍ଧୁଙ୍କ

ଉପର୍ଯ୍ୟୁକ୍ତ ମାନସିକତାର ଅର୍ଥ ନୁହେଁ, ସେ ରାଜତନ୍ତ୍ର/ ରାଜା ବିରୋଧୀ ଥିଲେ । ଥିଲେ ରାଜତନ୍ତ୍ରର ପ୍ରଜାଶୋଷଣ ମାନସିକତାର ବିରୋଧୀ । ଏହାର ଭଲ ଉଦାହରଣ, ସେ ସ୍ୱୟଂ ରାଜାଙ୍କ ବିଲାତ ଯାତ୍ରା କାଳରେ ତାଙ୍କର ସୁଖ କାମନା କରିଛନ୍ତି, ପ୍ରଶସ୍ତି ଗାନ କରିଛନ୍ତି ।

ଏବେ ଗୋପବନ୍ଧୁଙ୍କ ବୃତ୍ତିଗତ ଜୀବନର ଅନ୍ୟ ପ୍ରସଙ୍ଗକୁ ଆସିବା । ଆମେ ଜାଣୁ ଓକିଲାତି ବିଦ୍ୟା, କଳାକୁ ଧଳା, ଧଳାକୁ କଳା କରିବାର ବିଦ୍ୟା । ମାତ୍ର ଏହି ବିଦ୍ୟା ମାଧ୍ୟମରେ ଧଳାକୁ ଧଳା ଓ କଳାକୁ କଳା ବୋଲି ପ୍ରମାଣ କରାଯାଇପାରେ । ଗୋପବନ୍ଧୁ ଆପଣା ଅଧିତ ବିଦ୍ୟାର ପ୍ରଥମ ଭାବାଦର୍ଶର ବିରୋଧୀ ଥିଲେ । କଚେରି ଆସୁଥିବା ମଣିଷମାନଙ୍କୁ ନିଜ ସମସ୍ୟାର  ନିଜେ ଉଚିତ ମାର୍ଗରେ ସମାଧାନ ପାଇଁ ପରାମର୍ଶ ଦେଉଥିଲେ । ଓକିଲମାନଙ୍କ ଦପ୍ତରରେ ଅର୍ଥଶ୍ରାଦ୍ଧର ବିରୋଧ କରୁଥିଲେ । ଏବଂ, ଏ କ୍ଷେତ୍ରରେ ତାଙ୍କର ଗୁରୁ ହେଉଛନ୍ତି ମୁକ୍ତାର ରାମଚନ୍ଦ୍ର ଦାଶ । ତାଙ୍କ ବକ୍ତବ୍ୟ- 'ଯେଉଁ ପକ୍ଷ ପ୍ରକୃତ ସତ୍ୟ ତଥା କହିବ, କଚେରିରେ ତାରି ପକ୍ଷ ଗ୍ରହଣ କରିବ ।' ଏହି ଭାବାଦର୍ଶ ତାଙ୍କ ମୋହରିରମାନଙ୍କୁ ଆଶ୍ଚର୍ଯ୍ୟ ଓ ବିବ୍ରତ କରିଛି । ମାତ୍ର ଏଇ ମଣିଷ ଜଣକ ସମଗ୍ର ଜୀବନ ଆଦର୍ଶ-ଅନୁଗତ ହୋଇ ବଞ୍ଚିଛନ୍ତି ।

ଗୋପନ୍ଧୁଙ୍କ ରାଜନୀତିକ ଜୀବନ ମଧ୍ୟ ଉପର୍ଯ୍ୟୁକ୍ତ ଭାବାଦର୍ଶର ପ୍ରତିଫଳନ । ସମକାଳରେ ଓଡ଼ିଶା-ରାଜନୀତିର ତୁଙ୍ଗ ବ୍ୟକ୍ତିତ୍ୱ ମଧୁସୂଦନ ଦାସ । ସେ ଭାରତ ରାଜନୀତିରେ ଅଛନ୍ତି, ଓଡ଼ିଶା ରାଜନୀତିରେ ବି । ଉନବିଂଶ ଶତାବ୍ଦୀର ଅଧିକାଂଶ ବ୍ୟକ୍ତିଙ୍କ ପରି ତାଙ୍କ ରାଜନୀତିକ ବିଚାର ଦ୍ୱନ୍ଦ୍ୱାତ୍ମକ । ସେ ଔପନିବେଶିକ ଶାସନ ବ୍ୟବସ୍ଥାକୁ ପୂର୍ଣ୍ଣତଃ ବିରୋଧ କରିପାରୁନାହାନ୍ତି । ଅନ୍ୟପକ୍ଷରେ, ଆପଣା ଭୂମିର ମଣିଷମାନେ କିପରି ଶୋଷଣମୁକ୍ତ ଓ ସ୍ୱାବଲମ୍ବୀ ହୋଇପାରିବେ, ତତ୍ ସମ୍ପର୍କରେ ଚିନ୍ତା କରୁଛନ୍ତି, କାମ ବି କରୁଛନ୍ତି । ଭାରତୀୟ ଜାତୀୟ କଂଗ୍ରେସ ସହିତ ସମ୍ପର୍କ ରଖୁଛନ୍ତି, ଏବଂ ସ୍ଥଳ ବିଶେଷରେ ବିରୋଧ ମଧ୍ୟ କରୁଛନ୍ତି । ମାତ୍ର ଭାରତ ରାଜନୀତିରେ ଗାନ୍ଧୀଙ୍କ ବ୍ୟକ୍ତିତ୍ୱର ଉଦୟନ ଓ କ୍ରିୟାଶୀଳତା ଏହି ବୟସ୍କ ରାଜନୀତିଜ୍ଞଙ୍କୁ ବିବ୍ରଦମାନ କରି ଦେଇଛି । ସେ ଗାନ୍ଧୀଙ୍କୁ ଗ୍ରହଣ କରିପାରୁ ନାହାନ୍ତି, ଅର୍ଥାତ୍ ଏହି ଲଙ୍ଗଳା ଫକୀରଙ୍କ ଭାବାଦର୍ଶ ସାମନ୍ତମନସ୍କମାନଙ୍କୁ ଯେପରି କିମ୍ଭୂତ ବୋଧ ହେଉଛି । ଆଶ୍ଚର୍ଯ୍ୟ, ଗୋଟିଏ ଭୂମିରେ ବିଚରଣଶୀଳ ଆଉ ଜଣେ, ଗୋପବନ୍ଧୁ, ଗାନ୍ଧିଙ୍କୁ ନିଃସର୍ତ୍ତରେ ସ୍ୱୀକାର କରି ନେଉଛନ୍ତି । ସତେ ଯେପରି ସେ ଗାନ୍ଧୀଙ୍କୁ ଅପେକ୍ଷା କରିଥିବା ଏକ ନିଃଶଙ୍କ ଯାତ୍ରୀ । କାରଣ, ଗାନ୍ଧୀ ୧୯୧୯/୨୦ ମସିହା ପରେ ଭାରତ ପରିବର୍ତ୍ତନ ପାଇଁ ଯେଉଁ ଅଭିନବ ଶୈକ୍ଷିକ, ସାଂସ୍କୃତିକ, ରାଜନୀତିକ, ସାମାଜିକ, ଅର୍ଥନୀତିକ ପରିଯୋଜନାଗୁଡ଼ିକୁ କ୍ରିୟାଶୀଳ କରିବା ପାଇଁ ସିଦ୍ଧାନ୍ତ ନେଉଛନ୍ତି, ଗୋପବନ୍ଧୁ ତାହା ପ୍ରୟୋଗ କରିଛନ୍ତି ଓଡ଼ିଶା ଭୂମିରେ ।

ସେ ତନ୍ତବୁଣା ଧୋତି ପିନ୍ଧୁଛନ୍ତି । ଦେହରେ ଚଦର । ଅନ୍ୟଙ୍କୁ ପିନ୍ଧିବାକୁ ପରାମର୍ଶ ଦେଉଛନ୍ତି । ସେ 'ଲୁଣମାରିବା' ସ୍ଥାନୀୟ ମଣିଷମାନଙ୍କ ଅଧିକାର କହୁଛନ୍ତି । ସେ ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା କରୁଛନ୍ତି, ଔପନିବେଶିକ ଶିକ୍ଷା ବ୍ୟବସ୍ଥାରେ ଏକ ପରାଂଗପୁଷ୍ଟ, କର୍ମକୁଣ୍ଠ ଓ ବୃତ୍ତିଜୀବୀ ଗୋଷ୍ଠୀ ଗଢ଼ଣ ଭାବାଦର୍ଶର ଏହା ପ୍ରତିବାଦ । ଶିକ୍ଷା, ସ୍ୱାସ୍ଥ୍ୟ ଓ ବାଣିଜ୍ୟ କ୍ଷେତ୍ରରେ ପାଣ୍ଠି ବିନିଯୋଗରେ ସରକାର ମୁକ୍ତହସ୍ତ ହେବା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ସମାଜବ୍ୟବସ୍ଥାରେ ଜାତିଭେଦ ପ୍ରଥାର ବିଲୋପନ କଥା ମଧ୍ୟ କହିଛନ୍ତି । ଏବଂ ସର୍ବୋପରି ଧର୍ମ ନୁହେଁ, ଆଧ୍ୟାତ୍ମିକତା ଯେ ବ୍ୟକ୍ତି-ଜୀବନ ଓ ସମାଜ- ଜୀବନର ସକଳ ସମସ୍ୟା ସମାଧାନର ସୂତ୍ର- ଏକଥା ସ୍ପଷ୍ଟ କରି ଦେଇଛନ୍ତି । ବାତ୍ୟା, ବଢ଼ି, ମରୁଡ଼ି, ମହାମାରି ଆଦି ପ୍ରାକୃତିକ ବିପର୍ଯ୍ୟୟ କାଳରେ ତାଙ୍କ ସେବା ମାନସିକତା ଏହାର ଉଦାହରଣ ।

ଗୋପବନ୍ଧୁଙ୍କୁ ଜନତାବନ୍ଧୁ ବା ଲୋକବନ୍ଧୁ କହିବାର କାରଣ କ'ଣ ? ଏହି ମୌଳିକ ପ୍ରଶ୍ନର ଉତ୍ତର ଖୋଜିଲା ବେଳେ, ଆମେ ଅନୁଭବ କରୁ, ଜଣେ ମଣିଷ କିପରି ଆପଣା ଜୀବନକୁ ବିପନ୍ନ କରି, ପ୍ରାକୃତିକ ବିପର୍ଯ୍ୟୟ କାଳରେ, ଅନ୍ୟ ମଣିଷମାନଙ୍କ ପାଖରେ ଠିଆ ହୋଇଯାଉଛି । ଆଖିରେ ଲୁହ, ହାତରେ ଖାଦ୍ୟ, ବସ୍ତ୍ର ଅଥବା ଅନ୍ୟ ଆବଶ୍ୟକ ପଦାର୍ଥ । ତୁଣ୍ଡରେ ସମସ୍ୟା ଅତିକ୍ରମଣ ପାଇଁ ଉତ୍ସାହ । ସେ କେବଳ ଅସହାୟ ମଣିଷମାନଙ୍କ ପାଖକୁ ଯାଉନାହାନ୍ତି, ସେମାନଙ୍କ ସମସ୍ୟା ସମାଧାନପାଇଁ ପ୍ରଶାସନ ପାଖରେ ଦାବି ଓ ଗୁହାରି କରୁଛନ୍ତି । ଯିଏ ଜନତାର ପ୍ରତିନିଧି, କ୍ଷମତା ପାଖରେ ଜନତାର କଥା ନ କରିବା, ତାଙ୍କ ଭାଷାରେ, 'ଅପରାଧ', 'ମହାପାପ' । ୧୯୧୮ ମସିହାରେ ବିହାର ଓଡ଼ିଶା ବ୍ୟବସ୍ଥା ସଭାର ସଦସ୍ୟ ଥିବା କାଳରେ, ସେ କ୍ଷମତା ଓ ସଭାସଦ୍‌ମାନଙ୍କୁ ମଣିଷମାନଙ୍କ କଥା କହିଛନ୍ତି । ସମସ୍ୟା ପୀଡ଼ିତମାନଙ୍କ ପାଖକୁ ଯିବା ପାଇଁ କ୍ଷମତାକୁ ବାଧ୍ୟ ଓ ଅନୁରୋଧ କରିଛନ୍ତି । ଚଦରରେ ଯେପରି ବନ୍ଧା ହୋଇଛି ନିରନ୍ନ ଓ ଅସହାୟମାନଙ୍କର କାରୁଣ୍ୟ । ଆଖିରେ ଲୁହର ଝର । ତାଙ୍କ ପୀଡ଼ିତ ଆତ୍ମା ତାତ୍‌କାଳିକ ଦୃଶ୍ୟ ବର୍ଣ୍ଣନାରେ ନିରବ ହେଉନାହିଁ । ଦାବି କରୁଛନ୍ତି, ବନ୍ୟା ଓ ମରୁଡ଼ିର ସ୍ଥାୟୀ ପ୍ରତିକାର ନିମନ୍ତେ ଯୋଜନା କରାଯାଉ । ବ୍ୟବସ୍ଥା ସଭାରେ ତାଙ୍କ ଅନ୍ୟ ଦାବିଗୁଡ଼ିକ ମଧ୍ୟରେ ରହିଛି- ଲୁଣ ଆମଦାନୀ ଉପରୁ ସମସ୍ତ କଟକଣା ଓ ଶୁଳ୍କ ଉଚ୍ଛେଦ, ଶିକ୍ଷା ଅନୁଷ୍ଠାନଗୁଡ଼ିକରେ ସରକାରୀ କଟକଣାର କୋହଳୀକରଣ ଓ କୋଠାଘର ନିର୍ମାଣ, ଆସବାବ ପତ୍ର ଯୋଗାଣ; ସହରରେ ପିଇବା ପାଣି ଓ ପରିମଳ ବ୍ୟବସ୍ଥା ପାଇଁ ଉଦ୍ୟମ, ଜଙ୍ଗଲ ଆଇନର ଲୋକାଭିମୁଖୀକରଣ, ଶିକ୍ଷାଦାନରେ ମାତୃଭାଷା ଉପରେ ଗୁରୁତ୍ୱ ଓ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ଆଦି ନାନା ପ୍ରସଙ୍ଗ । ୧୯୨୦ ମସିହାର ଅକ୍ଟୋବର ମାସ ଥିଲା ବ୍ୟବସ୍ଥା ସଭାରେ ତାଙ୍କ ଶେଷ ଉପସ୍ଥିତି । ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ, ୧୯୧୯ ମସିହାରେ ସେ ମଣ୍ଟେଗ୍ୟୁ ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର ଆଇନର ବିରୋଧ କରିଛନ୍ତି । ଜାତୀୟ କଂଗ୍ରେସର ଜନ

ଆନ୍ଦୋଳନରେ ସେ ଏବେ ଜଣେ ପ୍ରମୁଖ କର୍ମୀ, ଜନତା ଭିତରେ, ନୂଆ ରୂପରେ, ଅସହଯୋଗୀ ।

ରାଜନୀତି କ୍ଷେତ୍ରରେ, ଗୋପବନ୍ଧୁଙ୍କ ଓଡ଼ିଆ ପ୍ରାଣତା ଚର୍ଚ୍ଚା କାଳରେ ଉତ୍କଳ ସମ୍ମିଳନୀ ଓ ମଧୁସୂଦନ ଦାସ ସ୍ୱତଃ ଆଲୋଚନାର ପ୍ରସଙ୍ଗ ହୋଇଯାନ୍ତି । ଆମେ ୧୯୨୦ ମସିହା ଡିସେମ୍ବର ୩୦, ୩୧ ଓ ୧୯୨୧ ଜାନୁଆରି ୧ ତାରିଖରେ ପ୍ରଥମ ଥର ପାଇଁ ପ୍ରାୟତଃ ଓଡ଼ିଶା ଭିନ୍ନ ଅନ୍ୟ ଏକ ସ୍ଥାନ, ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ପାଖରୁ ଆଲୋଚନା ଆରମ୍ଭ କରୁ ଏବଂ ଫେରୁ ୧୯୦୩ର ଗଂଜା ସମ୍ମିଳନୀ ଓ ଉତ୍କଳ ସମ୍ମିଳନୀ ମଣ୍ଡପ ପାଖକୁ । ୧୯୨୦ ମସିହାର ସମ୍ମିଳନୀରେ ମଧୁସୂଦନ ଯୋଗ ଦେଇନାହାନ୍ତି ସଭାପତିତ୍ୱ କରିଛନ୍ତି ଜଗବନ୍ଧୁ ସିଂହ । ଏଥିରେ ବାରଗୋଟି ନିର୍ଦ୍ଧାରଣ ଗୃହୀତ ହୋଇଛି । ଦ୍ୱିତୀୟ ନିର୍ଦ୍ଧାରଣ ହେଉଛି-

"ସମ୍ମିଳନୀର ବର୍ତ୍ତମାନ ଯେଉଁ ଉଦ୍ଦେଶ୍ୟ ନିରୂପିତ ହୋଇଅଛି, ତାହା ସ୍ଥିର ରଖାଯାଇ, ଭାରତ ଜାତୀୟ ମହାସମିତିର ଯେ ଉଦ୍ଦେଶ୍ୟ ଓ ଆକାଂକ୍ଷା, ତାହା ଏହି ସମ୍ମଳିନୀର ଆକାଂକ୍ଷା ଓ ଉଦ୍ଦେଶ୍ୟ ରୂପେ ଗୃହୀତ ହେବ ।" ଏହାର ପ୍ରସ୍ତାବକ ଗୋପବନ୍ଧ ଦାସ ଓ ଅନୁମୋଦନ ଚନ୍ଦ୍ରଶେଖର ବେହେରା । ଅନ୍ୟ ନିଦ୍ଧାରଣଗୁଡ଼ିକରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ, ଅନ୍ୟଭାଷୀ ଅଞ୍ଚଳରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ସୁରକ୍ଷା ଓ ଏଥିପାଇଁ ଜାତୀୟ ପାଣ୍ଠି ସୃଷ୍ଟି ଏବଂ ସର୍ବୋପରି ଅନ୍ୟ ପ୍ରଦେଶର ମଣିଷମାନଙ୍କ ସହିତ ମିତ୍ରଭାବ ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦିଆଯାଇଛି । ଏହି ପ୍ରସଙ୍ଗରେ, ଏଠାରେ କୁହାଯାଇପାରେ ଯେ, ୧୯୧୯ ମସିହାରେ, ପୁରୀଠାରେ ଅନୁଷ୍ଠିତ ବାର୍ଷିକ ସମ୍ମିଳନୀର ସଭାପତିଙ୍କ ଅଭିଭାଷଣ (ସଭାପତି: ଚନ୍ଦ୍ରଶେଖର ବେହେରା)ର ଏହା ବିସ୍ତାରିତ ଅଭିବ୍ୟକ୍ତି । ସେଠାରେ ମଧ ମଣ୍ଟେଗ୍ୟୁ ଚେମ୍‌ସଫୋର୍ଡଙ୍କ ଭାରତ ଶାସନ ଆଇନରେ ଉଲ୍ଲିଖିତ ଦେଶମିଶ୍ରଣ ଆଭିମୁଖ୍ୟର ବିରୋଧ କରାଯାଇଛି । ଚନ୍ଦ୍ରଶେଖର କହିଛନ୍ତି-

"ଉତ୍କଳ ସମ୍ମିଳନୀ ଦିନେ ଏହି ଓଡ଼ିଆ ଜାତିକୁ ଭାରତୀୟ ଜାତି ସଂଘରେ ଯେ ମିଳାଇ ନ ଦେବ, ଏହା କିଏ କହିପାରେ? ଏଠାରେ ମୋର ଏହା କହିବା ଉଦ୍ଦେଶ୍ୟ ଯେ, ଅନେକ ଉତ୍କଳ ସମ୍ମିଳନୀକୁ ଭାରତୀୟ ମହାଜାତୀୟ ପାଖରୁ ବିଚ୍ଛିନ୍ନ ବୋଲି ମନେ କରିଥାନ୍ତି, ଏବଂ ସମ୍ମିଳନୀ ରାଜନୈତିକ ଆନ୍ଦୋଳନର ସହିତ ସମ୍ପର୍କ ରଖି ନାହିଁ ବା ରଖିବ ନାହିଁ ବୋଲି କହିଥାନ୍ତି । ଏହା ସେମାନଙ୍କର ଭ୍ରାନ୍ତ ଧାରଣା ମାତ୍ର । କୌଣସି ମନୁଷ୍ୟ ବା କୌଣସି ଅନୁଷ୍ଠାନ ରାଜନୈତିକତାରୁ ପୃଥକ ରହି ତିଷ୍ଠି ପାରେ ନାହିଁ । ରାଜନୀତି ସହିତ ପ୍ରଜାମାନେ ହିଁ ସମ୍ପୃକ୍ତ । ରାଷ୍ଟ୍ରୀୟ ସଂଶ୍ଳିଷ୍ଟତା ମନୁଷ୍ୟର ପ୍ରକୃତିସୁଲଭ ଧର୍ମ ବା ଗୁଣ । ଉତ୍କଳ ସମ୍ମିଳନୀ ଯେ ରାଜନୈତିକ ସଂସ୍ରବରୁ ବିଚ୍ଛିନ୍ନ ବା ବିମୁକ୍ତ ହୋଇ ରହି ପାରିବ, ଏହା କଦାଚ ସମ୍ଭବପର ନୁହେଁ ।

କେବଳ ଏତିକି ନୁହେଁ, ଯେଉଁମାନେ ଉତ୍କଳ ସମ୍ମିଳନୀକୁ 'ରାଜନୀତି' ମୁକ୍ତି ଅନୁଷ୍ଠାନ ବୋଲି କୁହନ୍ତି, ଶ୍ରୀ ବେହେରା, ସେଇ ମାନସିକତାକୁ ସୁଆଂଗ ବୋଲି କହିଛନ୍ତି । ଉପର୍ଯ୍ୟୁକ୍ତ ମନ୍ତବ୍ୟ ଥିଲା, ମଧୁସୂଦନ ଦାସଙ୍କ ପ୍ରତି ସ୍ପଷ୍ଟ ଆହ୍ୱାନ । ମଧୁବାବୁ ପୁରୀରେ ଅନୁଭବ କରିଛନ୍ତି, ସମ୍ମିଳନୀ ଏବେ ତାଙ୍କ ନିୟନ୍ତ୍ରଣର ବାହାରେ । ସେଦିନ, ଯେଉ ଯୁବକ ଜଣଙ୍କୁ ସେ ଉତ୍କଳ ସମ୍ମିଳନୀର ମଣ୍ଡପରୁ ବାହାର କରି ଦେଇଥିଲେ, ଏବେ ତା ହାତରେ ସମ୍ମିଳନୀର ବର୍ତ୍ତମାନ । ତେବେ ଏଠାରେ ଗୋଟିଏ କଥା ସ୍ପଷ୍ଟ ଯେ, 'ଉତ୍କଳୀୟତା'ଭାବାବେଗକୁ ନିଧିକରି, ଉତ୍କଳକୁ ଏକ 'ନେସନ' ବୋଲି କହିବା ପରି ଊନବିଂଶ ଶତାବ୍ଦୀର ଭାବାଦର୍ଶଠାରୁ ଆପଣା ଭୂମିର ମଣିଷମାନଙ୍କୁ ମୁକ୍ତ କରିବା, ମିଛ ସ୍ୱାର୍ଥପାଇଁ ମହାଭାରତୀୟ ଚେତନା ତରଙ୍ଗରୁ ଏକ ଜନସମୁଦାୟକୁ ଦୂରରେ ରଖିବା ଏବଂ ସର୍ବୋପରି ଏକ ରାଜନୀତିକ ସଙ୍ଗଠନକୁ ରାଜନୀତିମୁକ୍ତ ବୋଲି ପ୍ରସଙ୍ଗକୁ ଗୋପବନ୍ଧୁ ବିରୋଧ କରିଛନ୍ତି । ମାନସିକତାର ପରିବର୍ତ୍ତନ ପାଇଁ ଓଡ଼ିଆମାନଙ୍କୁ ଆହ୍ୱାନ ଦେଇଛନ୍ତି । କେତେକ ତାଙ୍କ ମାନସିକତା ଓ ବିଚାରକୁ ଗ୍ରହଣ କରିପାରିନାହାନ୍ତି । ବିରୋଧ କରିଛନ୍ତି । ଫଳତଃ, ସମ୍ମିଳନୀ ବିଖଣ୍ଡିତ ହୋଇଛି । ମଧୁସୂଦନ, ବିହାର- ଓଡ଼ିଶା ବ୍ୟବସ୍ଥା ସଭାର ମନ୍ତ୍ରୀ ହେଉଛନ୍ତି । ରାଜସୁଖ ଭୋଗ କରୁଛନ୍ତି ଏବଂ କହୁଛନ୍ତି, ସେ ରାଜନୀତିମୁକ୍ତ ବ୍ୟକ୍ତିତ୍ୱ ।

ଏଠାରେ ଗୁରୁତ୍ୱପୂର୍ଣ୍ଣ କଥା, ସମକାଳର ବହୁ ଓଡ଼ିଆଙ୍କ ପାଖରେ ଗୋପବନ୍ଧୁ ଜଣେ ଦୁର୍ବୋଧ ବ୍ୟକ୍ତିତ୍ୱ । ସେ ଯେ ପୂର୍ଣ୍ଣତଃ ଓଡ଼ିଆ-ସ୍ୱାର୍ଥମନସ୍କ ଜଣେ କର୍ମୀ, ଏକଥା ଅନ୍ୟ ଅନେକ ବୁଝି ପାରୁନାହାନ୍ତି । ସେ ଚାହୁଁଛନ୍ତି, ଓଡ଼ିଆମାନେ ନିଜ ସମସ୍ୟା ସମ୍ପର୍କରେ ସଚେତନ ହୁଅନ୍ତୁ । ନିଜେ ପ୍ରତିବାଦର ଭୂମିକୁ ଆସନ୍ତୁ । ରାଜା, ମହାରାଜ ସାମନ୍ତ ଓ ନବସାମନ୍ତ ଗୋଷ୍ଠୀର ଅସ୍ତ୍ର ନ ହୁଅନ୍ତୁ । ପୃଥିବୀର ପ୍ରତ୍ୟେକ ଭୂମିରେ ଭୂମିମୁକ୍ତ ଆନ୍ଦୋଳନରେ ଜନତା ଅନ୍ୟ କାହାର ଅସ୍ତ୍ର ହୁଅନ୍ତି ନାହିଁ, ଆପେ ଆପଣାର ଅସ୍ତ୍ର ହୋଇଯାନ୍ତି, ଏହି ଆତ୍ମସମ୍ମାନବୋଧ ଓ ଆତ୍ମ ମୁକ୍ତି ମନ୍ତ୍ର ହିଁ ସେମାନଙ୍କୁ ଅସମ୍ଭବବୋଧ ହେଉଥିବା ଏକ ପ୍ରତ୍ୟୟକୁ ସତ୍ୟ / ବାସ୍ତବରେ ରୂପାନ୍ତର କରିଦିଏ । ଗୋପବନ୍ଧୁ ଏହି ବାସ୍ତବତାକୁ ଅନୁଭବ କରିଛନ୍ତି, ଏବଂ ସମ୍ମିଳନୀର ଜନ୍ମ ଦିନଠାରୁ ହିଁ ଆପଣା ଭାବାଦର୍ଶ ପ୍ରତିଷ୍ଠାପାଇଁ ଉଦ୍ୟମ କରିଛନ୍ତି । ସଫଳ ହେବା ପାଇଁ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଛି ୧୯୨୦ ମସିହା ପର୍ଯ୍ୟନ୍ତ ।

ଗୋପବନ୍ଧୁ ସମକାଳୀନ ଅଳ୍ପ କେତେଜଣ ଓଡ଼ିଆଙ୍କ ମଧ୍ୟରେ ଅନ୍ୟତମ, ଯିଏ, ତାଙ୍କ ଜୀବନକାଳରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ପ୍ରତ୍ୟେକ ବାର୍ଷିକ ସମ୍ମିଳନୀରେ ଯୋଗ ଦେଇଛନ୍ତି । ପ୍ରଥମ ସମ୍ମିଳନୀରେ ଯୋଗଦାନ ତାଙ୍କପାଇଁ ସ୍ୱତନ୍ତ୍ର ଅନୁଭବ । ପ୍ରାର୍ଥନା ଶୀର୍ଷକ କବିତା ପୁସ୍ତିକାରେ ସେ ମଧୁସୂଦନଙ୍କୁ ବିରୋଧ କରିଥିବାରୁ, ମଧୁସୂଦନ ତାଙ୍କୁ ସଭାସ୍ଥଳ ଛାଡ଼ି ଚାଲି ଯିବାପାଇଁ କହିଛନ୍ତି । କହିଛନ୍ତି, "ଭଲରେ ନ ଗଲେ, ସ୍ୱେଚ୍ଛାସେବୀ

ଲଗେଇ ତଡ଼ି ଦେବେ ।" ନିତ୍ୟାନନ୍ଦ ଶତପଥୀ ଲେଖିଛନ୍ତି, "ଗୋପବନ୍ଧୁ ଟିକେଟ କିଣି, କେତେକ ବଙ୍ଗାଳୀ ବନ୍ଧୁଙ୍କ ସହିତ ସଭାସ୍ଥଳକୁ ଯାଇଛନ୍ତି । ବଙ୍ଗୀୟମାନଙ୍କୁ ଦେଖି ଖପ୍ପା ହୋଇଛନ୍ତି ମଧୁସୂଦନ । ବାହାରିଯିବାକୁ କହିଛନ୍ତି । ଗୋପବନ୍ଧୁ ସମ୍ମିଳନୀ ଟୋପି ଫେରେଇ ଦେଇ ଆଦେଶ ପାଳନ କରିଛନ୍ତି । ଚିଠି ଖଣ୍ଡିଏ ଲେଖିଛନ୍ତି । ଚିଠିରେ ରହିଛି ମଧୁସୂଦନଙ୍କ ପ୍ରାଦେଶିକତାମନସ୍କ ସଂକୀର୍ଣ୍ଣ ବିଚାର ପ୍ରତି ପ୍ରତିବାଦ ।" ବଙ୍ଗଳା ନୁହେଁ, ବରଂ କେନ୍ଦ୍ରରାଜ୍ୟ ସହ ଓଡ଼ିଶାର ପ୍ରଶାସନ ସମ୍ପୃକ୍ତ ରହିବା ଉଚିତ ବୋଲି ଯୁକ୍ତି କରିଛନ୍ତି । ମାତ୍ର ସେ ସମ୍ମିଳନୀ ଛାଡ଼ିନାହାନ୍ତି । ପଂଚମ ଅଧିବେଶନରେ ସଭାପତିତ୍ୱ କରିବା ପାଇଁ ସେ ମଧୁସୂଦନଙ୍କ ନାଁ ପ୍ରସ୍ତାବ ଦେଇଛନ୍ତି । ଏବଂ, ପରବର୍ତ୍ତୀ କାଳରେ ସମ୍ମିଳନୀର ଅନ୍ୟତମ ନୀତି ନିର୍ଦ୍ଧାରକର ଭୂମିକା ଦେଇଛନ୍ତି । ଫୁଲଝରି ଚାଇଁବସା, ମେଦିନପୁର ଆଦି ବିଚ୍ଛିନ୍ନାଞ୍ଚଳରେ ସଙ୍ଗଠନ ଗଢ଼ଣ ମାଧମରେ ଓଡ଼ିଆମାନଙ୍କର ଏକତ୍ରୀକରଣରେ ସେ ଅପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତିତ୍ୱ ହୋଇଛନ୍ତି । ସତ୍ୟବାଦୀ ଗୋଷ୍ଠୀର ବନ୍ଧୁମାନଙ୍କୁ ଆଦର୍ଶ ପ୍ରତିଷ୍ଠା ମାଧମ କରିଛନ୍ତି । ନୀଳକଣ୍ଠ, ଗୋଦାବରୀଶ ଓ ଅନନ୍ତଙ୍କ ଜୀବନ ଏହାର ଉଦାହରଣ । କେବଳ ସେତିକି ନୁହେଁ-ମଧ, ଦକ୍ଷିଣ ଓ ପଶ୍ଚିମ  ଓଡ଼ିଶାର ସେ ଏକ ସଂଯୋଗ ସେତୁ ହୋଇଛନ୍ତି । ଯେପରି ଜଣେ ସହୃଦୟ ବାତଚକ୍ର । ସମୟକ୍ରମେ, ତାଙ୍କ  ଚେତନାରେ ଭୂମିଗତ ଏହି ମିତ୍ରତାବୋଧ, ଆପଣାର ଛୋଟ ମୁଲକକୁ ବୃହତ୍ତର ଭାରତ ଓ ବୃହତ୍ତମ ପୃଥିବୀ ସହ ଯୋଡ଼ଣର ସ୍ୱପ୍ନ ଦେଖୁଛି । ସମକାଳର  ସାମନ୍ତ -ମାନସିକତାପୀଡ଼ିତ ଓ ନବଶିକ୍ଷିତ ଓଡ଼ିଆମାନେ ତାଙ୍କ ଚେତନାରେ ସମୁଦ୍‌ଭାସିତ ମାନବତାବୋଧକୁ ବୁଝିପାରୁନାହାନ୍ତି । 'ଓଡ଼ିଆ ବିରୋଧୀ' ଅପଦୂଆରେ ଚିହ୍ନିତ କରୁଛନ୍ତି । ମାତ୍ର ଗୋପବନ୍ଧୁଙ୍କ ମିତ୍ରଦୃଷ୍ଟି ଅନାନ୍ଦୋଳିତ । ଯେତେ ଦୂରରେ ଥାଉ ବରଂ, ଶିଖର ଯାତ୍ରା ହୋଇଛି ତାଙ୍କର ଜୀବନାଦର୍ଶ । ପାଖରେ ମୋହନଦାସ କରମଚାନ୍ଦ ଗାନ୍ଧୀ  ।

ଓଡ଼ିଶାରେ ଗାନ୍ଧୀ ଓ ଗୋପବନ୍ଧୁଙ୍କ ଯୁଗଳଯାତ୍ରାର ଆରମ୍ଭ ୧୯୨୦ ମସିହା ଡିସେମ୍ବର ମାସ । ନାଗପୁରରେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ସମ୍ମେଳନ ଆରମ୍ଭ ହେଉଛି । ଗୋପବନ୍ଧୁ ଓଡ଼ିଶାର ଅନ୍ୟତମ ପ୍ରତିନିଧି । ଭାଷାକୁ ଭିତ୍ତିକରି ଭାରତର ରାଜନୀତିକ ଆୟତନଗୁଡ଼ିକର ସୀମା ନିର୍ଦ୍ଧାରିତ ହେବା ଉଚିତ ବୋଲି ସେ ପ୍ରସ୍ତାବ ଦେଉଛନ୍ତି । ପ୍ରସ୍ତାବ ସକଳଙ୍କ ମନକୁ ଛୁଇଁଚି, ଗୃହୀତ ହେଉଛି । ଏହି ମଂଚୁ ଶୁଭୁଚି ବ୍ରିଟିସ୍ ଶାସନ ବିରୋଧରେ ଏକ ସ୍ୱତନ୍ତ୍ର ଶୈଳୀର ପ୍ରତିବାଦ । ଅସହଯୋଗ । ଆମ ହାତରେ ଆମକୁ ଶାସନ କରିବାର ସୁଯୋଗ ଦିଅ । ଜନଗଣମନର ସେ ପ୍ରତୀକ ହୋଇଯାଉଛନ୍ତି । ଏବଂ ଗୋପବନ୍ଧୁ ଓଡ଼ିଶା ଭୂମିରେ ମନ୍ତ୍ର ପ୍ରଚାରର ନେତୃତ୍ୱ ନେଉଛନ୍ତି ।

ଗୋପବନ୍ଧୁ ନାଗପୁରରୁ ଓଡ଼ିଶା ଫେରୁଛନ୍ତି । କଣ୍ଠରେ ଅସହଯୋଗ ଭାବାଦର୍ଶର ଗୀତ । ସମଧର୍ମୀମାନେ ତାଙ୍କ କଣ୍ଠରେ କଣ୍ଠ ମିଳାଉଛନ୍ତି । ଏଥର ଓଡ଼ିଶାର ସବୁଆଡ଼େ ତାଙ୍କ

ଚଳଂପାଦ । ସେ ଓଡ଼ିଶା ଆସିବାକୁ ଗାନ୍ଧୀଙ୍କୁ ନିମନ୍ତ୍ରଣ କରୁଛନ୍ତି । ଗାନ୍ଧୀ ହିଁ କରୁଛନ୍ତି । ୨୩ ମାର୍ଚ୍ଚ, ୧୯୨୧ ମସିହା ଦିନ କଟକ ସହରର କାଠଯୋଡ଼ି ନଈବାଲିରୁ ଗାନ୍ଧୀଙ୍କ ଓଡ଼ିଶା ପରିକ୍ରମା ଆରମ୍ଭ ହେଉଛି । ଯାତ୍ରା- କଟକରୁ ପୁରୀ ଓ ପୁରୀରୁ ବ୍ରହ୍ମପୁର । ତୁଣ୍ଡରେ ଅସହଯୋଗର ବାର୍ତ୍ତା । ଦୁଇ ଅନୁଭବୀଙ୍କ ଅଭିଭାଷଣ ଜନତାକୁ ମୁଗ୍ଧ କରୁଛି । ଯାତ୍ରାରେ ମିଶି ଯାଉଛନ୍ତି । ହଜାର ସଂଖ୍ୟକ ସ୍ୱୟଂସେବକ ହେଉଛନ୍ତି । ବିଦେଶୀ ଦ୍ରବ୍ୟ ବର୍ଜନ କରୁଛନ୍ତି । ପୋଡ଼ି ଦେଉଛନ୍ତି । କୀର୍ତ୍ତନ କରି ଗାନ୍ଧୀ ବିଚାର ପ୍ରଚାର କରୁଛନ୍ତି । ଗୋପବନ୍ଧୁ ଓଡ଼ିଶାରୁ ଯାଉଛନ୍ତି କଲିକତା । କଲିକତାରେ ଲକ୍ଷସଂଖ୍ୟକ ଓଡ଼ିଆ । ନାନା ଶ୍ରେଣୀର ଶ୍ରମିକ । ଚଟକଳ, ପାନଦୋକାନ, ହୋଟେଲ, ରେଲଷ୍ଟେସନ, ବନ୍ଦର, ବାବୁଭାୟାଙ୍କ ଭୋଷଘର, ମ୍ୟୁନିସପାଲିଟି- ସବୁଠି । ସେ ସେମାନଙ୍କୁ ସଙ୍ଗଠିତ କରୁଛନ୍ତି । ଓଡ଼ିଆ ଶ୍ରମିକମାନଙ୍କ ସଭାକୁ ଗାନ୍ଧୀଙ୍କୁ ନିମନ୍ତ୍ରଣ କରୁଛନ୍ତି । ଜଣେ ମଣିଷର ସାଙ୍ଗଠନିକ ଦକ୍ଷତା ଅଭିଭୂତ କରୁଛି ଗାନ୍ଧୀଙ୍କୁ । ଗୋପବନ୍ଧୁ ଓଡ଼ିଶା ଫେରୁଛନ୍ତି । ସବୁଠାରେ ତାଙ୍କୁ ବିପୁଳ ଜନ ସମର୍ଥନ । ଏବଂ, ତାଙ୍କ ଅସହଯୋଗ ବାର୍ତ୍ତା ପ୍ରଚାରର ମାଧ୍ୟମ ହେଉଛି 'ସମାଜ' ସାପ୍ତାହିକୀ ।

୧୯୨୨ ମସିହା, ମଇ ମାସ ୩୧ ତାରିଖ । ପୁରୀର ନରେନ୍ଦ୍ର ପୋଖରୀରେ ଗାଧୋଇ ଗୋପବନ୍ଧୁ ଘରକୁ ଫେରୁଛନ୍ତି । ବାଟରେ ପୋଲିସ ଗିରଫ କରୁଛି । ତାଙ୍କର ଅପରାଧ, ସେ ସରକାରଙ୍କ ବିରୋଧରେ ଲୋକଙ୍କୁ ସଙ୍ଗଠିତ କରୁଛନ୍ତି । 'ଉତ୍କଳ ସ୍ୱରାଜ୍ୟ ସେବକ ସଂଘ' ଓ 'ସ୍ୱେଚ୍ଛାସେବକ ଦଳ' ଗଢ଼ିଛନ୍ତି । ତାଙ୍କୁ କଟକ ନିଆଯାଇଛି । କୋର୍ଟ ବିଚାର ହୋଇଛି । ଦୁଇବର୍ଷ କାରାବାସ ସଜା ମିଳିଛି । ତାଙ୍କ ସହ ଅଛନ୍ତି ଭାଗୀରଥି ମହାପାତ୍ର । ୧୯୨୩ ମସିହା ଜାନୁଆରି ୨୪ ତାରିଖରେ ତାଙ୍କୁ ବିହାରର ହଜାରିବାଗ ଜେଲ ନିଆଯାଇଛି । ତାଙ୍କ ସହ ବନ୍ଦୀ ଖାଁ ଅବଦୁଲ ଗଫୁର ଖାଁ, ମହମ୍ମଦ ସୁବେୟା, ଭାରତୀକୃଷ୍ଣ ତୀର୍ଥସ୍ୱାମୀ ଓ ଅନ୍ୟମାନେ । ସରକାର ରାଜନୀତିକ ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ସିଦ୍ଧାନ୍ତ ନେଇଛନ୍ତି । ଗୋପବନ୍ଧୁ କାରମୁକ୍ତ ହୋଇଛନ୍ତି ୧୯୨୪ ମସିହା ଜୁନ୍ ମାସ ୨୪ ତାରିଖରେ । ଜେଲଖାନା ତାଙ୍କ ପଢ଼ାଘର ହେଉଛି । ହେଉଚି କବିତା ରଚନାର ଦିବ୍ୟ ଭୂମି । ସେ ଆପଣା ଭୂମି ଓ ମଣିଷମାନଙ୍କ ପାଖକୁ ଫେରୁଛନ୍ତି, ଯେମିତି ଥିଲେ, ସେମିତି । ଜଣେ ବିଚିତ୍ର ବ୍ୟକ୍ତିତ୍ୱ ।

୧୯୨୬ ମସିହା ବେଳକୁ ଭାରତର ରାଜନୀତିକ ପରିମଣ୍ଡଳରେ ଭିନ୍ନଭିନ୍ନ ବିଚାର କ୍ରିୟାଶୀଳ ହେଉଛି । ୧୯୧୯ ମସିହାର ଭାରତ ଶାସନ ଖସଡ଼ା ଏହି ଭିନ୍ନ ପରିମଣ୍ଡଳ ସୃଷ୍ଟିର କାରଣ । କେତେକ ନେତା ଅନୁଭବ କରୁଛନ୍ତି, ବିଦେଶୀ ଶାସନତନ୍ତ୍ରରେ ଦେଶୀ ମଣିଷମାନଙ୍କ ସମ୍ପୃକ୍ତି ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା । ପ୍ରଥମତଃ, ଦେଶୀମାନେ ବିଦେଶୀମାନଙ୍କୁ ଆପଣର ସମସ୍ୟା ସମ୍ପର୍କରେ ଅବହିତ କରାଇବେ, ଏବଂ ଦ୍ୱିତୀୟତଃ,

ଏହି ପ୍ରାଥମିକ ସମ୍ପୃକ୍ତି ଭବିଷ୍ୟତରେ ସେମାନଙ୍କ ମୁକ୍ତିମାର୍ଗକୁ ସୁଗମ କରିଦେବ । ଲାଲାଜୀଙ୍କ ନେତୃତ୍ୱରେ ୧୯୨୨ /୨୩ ମସିହା ବେଳକୁ 'ଭାରତ ସେବକ ସମାଜ' ଜନ୍ମ ନେଇ ସାରିଛି । ଓଡ଼ିଶାରେ ତା'ର ସ୍ୱର ଶୁଭିଛି । ୧୯୨୬ ମସିହା ବେଳକୁ ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହେରୁ ଓ ଅନ୍ୟ ସମଧର୍ମୀମାନେ 'ସ୍ୱରାଜ୍ୟ ପାର୍ଟି' ଗଢ଼ିଛନ୍ତି । ଲାଲ ଲାଜପତରାୟ, ମଦନମୋହନ ମାଲବ୍ୟ ଏବଂ ତାଙ୍କ ବନ୍ଧୁମାନେ ଗଢୁଛନ୍ତି 'ସ୍ୱାଧୀନ କଂଗ୍ରେସ' । ଯାହା ଅଧିକ ଗୁରୁତ୍ୱପୂର୍ଣ୍ଣ, କେତେକ ତରୁଣଙ୍କ ଚେତନାରେ ସମାଜବାଦୀ ଭାବାଦର୍ଶ ବୀଜ ମଧ୍ୟ ଅଙ୍କୁରିତ ହେଉଛି । ଓଡ଼ିଶାରେ ଏକ ବିଚିତ୍ର ପରିମଣ୍ଡଳ । ଉତ୍କଳ ସମ୍ମିଳନୀ ଅଛି । ସ୍ୱତନ୍ତ୍ର ଓଡ଼ିଶା ଦରକାର । ଭାରତୀୟ ଜାତୀୟ କଂଗ୍ରେସ ଅଛି । ଭାରତମୁକ୍ତିର ଗୀତ ଶୁଭୁଚି । ଏବଂ, ଏଥି ସହିତ ଅଛନ୍ତି ଗାନ୍ଧୀଦୂରସ୍ଥ ଅନ୍ୟମାନେ । ଏହି ବିଚିତ୍ର ପରିମଣ୍ଡଳକୁ ପରଖୁଥିବା ଅନେକଙ୍କ ପ୍ରଶ୍ନ, ଗୋପବନ୍ଧୁ ଗାନ୍ଧୀ ଭିନ୍ନ ଅନ୍ୟ କାହାପାଖକୁ ଢଳିଯିବେନିତ ? ସ୍ୱୟଂ ଗୋପବନ୍ଧୁ ଅନ୍ୟମାନଙ୍କ ସକଳ ସମ୍ଭାବନାକୁ ଅମୂଳକ ବୋଲି ପ୍ରମାଣ କରୁଛନ୍ତି । ପ୍ରଦେଶ କଂଗ୍ରେସ କମିଟିର ବୈଠକ ବସୁଛି । ଓଡ଼ିଶା-ବିହାର ବ୍ୟବସ୍ଥା ସଭାକୁ ସଭ୍ୟ ନିର୍ବାଚନ ପାଇଁ ଯୋଜନା ପ୍ରସ୍ତୁତି ଏହି ବୈଠକ ଆୟୋଜନର ଆଭିମୁଖ୍ୟ । ପ୍ରତ୍ୟେକ କର୍ମୀ ଗୋପବନ୍ଧୁଙ୍କୁ ନିର୍ବାଚନରେ ଅଂଶଗ୍ରହଣ ପାଇଁ ଅନୁରୋଧ କରୁଛନ୍ତି । ମାତ୍ର ଆପେ ନିର୍ବାଚନରେ ଅଂଶଗ୍ରହଣ ତ ଦୂରର କଥା, ସେ ନିର୍ବାଚନ ପରିଚାଳନା କମିଟିରୁ ଇସ୍ତଫା ଦେଉଛନ୍ତି । କେହି ଜଣେ ମାତ୍ର ତାଙ୍କ ଭାବାବେଗକୁ ସମୁଝି ପାରି ନାହାନ୍ତି । ସେବା ନୁହେଁ, ସେବା ଆଳରେ ବ୍ୟକ୍ତି ଭିତରେ ଜଳୁଥିବା ଭୋଗନିଆଁର ତାତିକୁ ସେ ଅନୁଭବ କରୁଛନ୍ତି । ନେତା ଓ ଭୋଟଦାତାମାନଙ୍କର ଯୋଗ୍ୟତା, କର୍ତ୍ତବ୍ୟ, ଦାୟିତ୍ୱବୋଧ ଓ ପ୍ରଜାମାନଙ୍କ ପ୍ରତି ଉତ୍ତରଦାୟୀ ହେବା ସମ୍ପର୍କରେ ନାନା କଥା ସେ ସମାଜରେ ଲେଖୁଛନ୍ତି । ଅନ୍ୟମାନଙ୍କୁ ସଚେତନ କରୁଛନ୍ତି । ମାତ୍ର ଗୁରୁତ୍ୱପୂର୍ଣ୍ଣ କଥା, ଏ ସକଳ ସତ୍ତ୍ୱେ, ସେ ନିର୍ବାଚନ ପ୍ରକ୍ରିୟାରୁ ନିଜକୁ ପୂର୍ଣ୍ଣତଃ ଅଲଗା କରିପାରୁନାହାନ୍ତି । ତାଙ୍କ ବିଚାର ଯେ ଗ୍ରହଣୀୟ ହେବା ସମ୍ଭବ ନୁହେଁ, ଏହି ବାସ୍ତବତାକୁ ସେ ଅନୁଭବ କରୁଛନ୍ତି । ଏବଂ କଂଗ୍ରେସ ପ୍ରାର୍ଥୀମାନଙ୍କୁ ବ୍ୟବସ୍ଥା ସଭାକୁ ନିର୍ବାଚିତ କରିବା ପାଇଁ ଭୋଟରମାନଙ୍କୁ ଅନୁରୋଧ କରୁଛନ୍ତି ।

୧୯୨୬ ମସିହାରେ ଗୋପବନ୍ଧୁ କଂଗ୍ରେସର ସଭାପତି ପଦ ଛାଡୁଛନ୍ତି । ପ୍ରତିଜ୍ଞା କରୁଛନ୍ତି, ସେ କଟକ ଆସିବେ; ମାତ୍ର ଖଟୁଲି ଓ ପଦର ବୋଟି ବୋହି ଆସିବେନି । ପୁରୀରେ ରହଣି । କାରଣ ବା କ'ଣ ହୋଇପାରେ ? ସାଙ୍ଗଠନିକ ଦକ୍ଷତାର ଅଭାବ ? କର୍ମୀମାନଙ୍କ ଭିତରେ ସଂପ୍ରୀତିବୋଧର ଅଭାବ ନୁହେଁତ ? ୧୯୨୭ ମସିହା ନଭେମ୍ବର ମାସରେ ଖଦୀ ପ୍ରସାର ଆଭିମୁଖ୍ୟକୁ ଗତି ଦେବା ପାଇଁ ଗାନ୍ଧୀ ଗଞ୍ଜାମ ଆସୁଛନ୍ତି । ଗୋପବନ୍ଧୁଙ୍କୁ ଅଣଦେଖା କରାଯାଉଛି । ଗାନ୍ଧୀଙ୍କ ତାଙ୍କ ସମ୍ପର୍କରେ ମନ୍ତବ୍ୟ- "ସେ ଜଣେ

ବିରଳ ହୃଦୟାବାନ ବ୍ୟକ୍ତିତ୍ୱ, ମାତ୍ର ବ୍ୟାବସାୟତ୍ମକ ନୁହନ୍ତି ।" ଏ ମନ୍ତବ୍ୟ ମିଛ ନୁହେଁ । ଗାନ୍ଧୀ ପୁରୀ ଆସୁଛନ୍ତି, ମାତ୍ର ଗୋପବନ୍ଧୁଙ୍କ ଅନୁପସ୍ଥିତିରେ ତାଙ୍କ ସ୍ଥିତି ସ୍ୱାନ୍ତତ୍ର୍ୟ ହରାଉଛି । ତାଙ୍କ ଭିତରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦ୍ୱନ୍ଦ୍ୱ- ଓଡ଼ିଶାର ସ୍ୱତନ୍ତ୍ର ରାଜନୀତିକ ଅସ୍ତିତ୍ୱ । ଆରମ୍ଭରୁ ଉତ୍କଳ ସମ୍ମିଳନୀ ସହିତ ତାଙ୍କର ଅତ୍ମୀୟତା । ସ୍କୁଲରେ ପଢୁଥିବା କାଳରେ ରାଧାନାଥଙ୍କ ସାହିତ୍ୟରେ ଓଡ଼ିଆ ସାଂସ୍କୃତିକ ଜୀବନର ଅପଚିତ୍ରଣକୁ ସେ ତୀବ୍ର କଟାକ୍ଷ କରିଛନ୍ତି । ପୁଣି ଭାଗବତ ମନସ୍କ । ଜଗନ୍ନାଥ ପ୍ରାଣ । ଦେଶ ମିଶ୍ରଣ ସମ୍ପର୍କରେ ତାଙ୍କ ବିଚାର, ଓଡ଼ିଶା ସବ୍‌ପ୍ରୋଭିନସ୍ ନୁହେଁ, ପ୍ରୋଭିନସ୍ ହେବ । ଅନ୍ୟ କୌଣସି ପ୍ରଦେଶ ସହିତ ମିଶି ରହିବ ନାହିଁ । ମାତ୍ର ଶାସନଗତ ସୁବିଧା ଦୃଷ୍ଟିରୁ ଏକତ୍ର ରହିପାରେ । ଦେଶମିଶ୍ରଣ ପ୍ରସ୍ତାବର ସରକାରୀ ପ୍ରତିନିଧିମାନେ ଓଡ଼ିଶା ଆସୁଛନ୍ତି, ଓଡ଼ିଶାର ସଂସ୍କୃତି, ଓଡ଼ିଆ ଭାଷା ଓ ଓଡ଼ିଆମାନଙ୍କର ପ୍ରଶଂସା କରୁଛନ୍ତି, ମାତ୍ର କାର୍ଯ୍ୟରେ ସ୍ପଷ୍ଟ ଉଦାସୀନତା । ଗୋପବନ୍ଧୁ ପୁଣି ସ୍ପଷ୍ଟ କରି ଦେଉଛନ୍ତି-ମାନ୍ଦ୍ରାଜ ନୁହେଁ, ଫୁଲଝର, ପଦ୍ମପୁର, ଚାଇବସା, ମେଦିନୀପୁର ଆଦି ଅଂଚଳ ମଧ୍ୟ ଭାଷା ଓ ସଂସ୍କୃତି ଦୃଷ୍ଟିରୁ ଓଡ଼ିଶା-ରାଜନୀତିକ ଆୟତନର ପରିସରଭୁକ୍ତ ହେବା ଆବଶ୍ୟକ । ନୀଳକଣ୍ଠ ଦାସଙ୍କ ମୁହଁରେ, ଗୋପବନ୍ଧୁ ଶୁଣେଇ ଦେଉଛନ୍ତି, "ଦେଶମିଶ୍ରଣ ବ୍ୟବସ୍ଥା ନ ହେଲେ, ଓଡ଼ିଶା ଶାନ୍ତି ଓ କ୍ଷାନ୍ତ ହେବ ନାହିଁ । ଗୋପବନ୍ଧ ଅସହାୟ ।"

୧୯୨୭ ମସିହାରେ ବ୍ରାହ୍ମଣୀ, ବୈତରଣୀରେ ଭୟଙ୍କର ବଢ଼ି । ଗୋପବନ୍ଧ ଅସୁସ୍ଥ, ମାତ୍ର ପାଦ ଚଂଚଳ । ଯାଉଛନ୍ତି । ବଦାନ୍ୟମାନଙ୍କ ପାଖରେ ହାତ ପାତୁଛନ୍ତି । ସାହାଯ୍ୟ ମିଳି ଯାଉଛି "ନିଖିଳ ଉତ୍କଳ ବନ୍ୟା ସମ୍ମିଳନୀ" ମାଧ୍ୟମରେ । ବନ୍ୟାର ସ୍ଥାୟୀ ପ୍ରତିକାର ପ୍ରସଙ୍ଗ ଉଠାଉଛନ୍ତି ସରକାରଙ୍କ ପାଖରେ । ମାତ୍ର ୟଂଗ ଉତ୍କଳ ନାମକ ଇଂରାଜୀ ସମ୍ବାଦପତ୍ରରେ ଭୁବନାନନ୍ଦ ଦାସଙ୍କ ଅଭିଯୋଗ, ସେ କାଳେ ବନ୍ୟାବିପନ୍ନମାନଙ୍କ ଅର୍ଥ ଆତ୍ମସାତ କରିଛନ୍ତି । ସେ ଶୁଣୁଛନ୍ତି । ଲୁହରେ କହୁଛନ୍ତି ନୀଳକଣ୍ଠଙ୍କୁ 'ମୁଁ ବଢ଼ି କଉଡ଼ି ଖାଇଗଲି' । ବାକିଟି ପରେ ଗୋପବନ୍ଧୁଙ୍କ ମାନସିକତା, ନୀଳକଣ୍ଠଙ୍କ ଭାଷାରେ ଏହିପରି : ମାଡ଼ ଖାଇଥିବା ଛୋଟ ପିଲା ପରି କେବଳ କାନ୍ଦିବାରେ ଲାଗିଲେ । କୋହ ପରେ କୋହ ଉଠୁଥାଏ । ତାଙ୍କ ନିର୍ମଳ ନିଷ୍ପାପ ଅନ୍ତରରୁ କେତେ ଦୁଃଖ ଓ ବେଦନା ଲୁହ ଆକାରରେ ବୋହି ଯାଉଥାଏ । ଜଣେ ସହୃଦୟ ଆଖିର ନୁହ,ଶୁଖେନି ।"

ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଯେଉଁ ଉପସର୍ଗ ଆମ ପାଇଁ ତଥାପି ଅବୋଧ, ତାହା 'ଲୋକସେବକ ସମାଜ' ସହିତ ତାଙ୍କର ସମ୍ପର୍କ । ଲାଲ ଲଜପତ ରାୟ ହିନ୍ଦୁ ମହାସଭା ସହିତ ସମ୍ପୃକ୍ତ । ମହାସଭାର ଉଦ୍ଦେଶ୍ୟ, ମୁସଲମାନ ଓ ଖ୍ରୀଷ୍ଟିୟାନମାନଙ୍କ ପରି ହିନ୍ଦୁମାନେ ମଧ୍ୟ ସଙ୍ଗଠିତ ଭାବରେ ଆପଣା ଧର୍ମ ବିଚାରର ପ୍ରସାରଣ ପ୍ରତି ଯତ୍ନଶୀଳ ହେବା ଆବଶ୍ୟକ । ଏବଂ, ଏହି ମାନସିକତା ଭାରତର ସ୍ୱାଧୀନତା କ୍ଷେତ୍ରରେ ମଧ୍ୟ ସହାୟକ ହୋଇପାରିବ ।

ଗୋପବନ୍ଧୁଙ୍କୁ ଆମେ ଉଦାର ହିନ୍ଦୁ ବା ଲିବେରାଲ ହିନ୍ଦୁ ଅବଶ୍ୟ କହି ପାରିବା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକର, ଭାରତରେ ନବଶିକ୍ଷିତମାନଙ୍କ ମଧ୍ୟରେ ଏହି ମାନସିକତାର ଜନ୍ମ । ବିଭିନ୍ନ ସ୍ଥାନରେ 'ଗୋରକ୍ଷଣୀ' ସଭା ଓ ଗୋଶାଳା ପ୍ରତିଷ୍ଠା ଏହାର ଉଦାହରଣ । ଗୋପବନ୍ଧୁ 'ଗୋ ମହାତ୍ମ୍ୟ' ବି ଲେଖିଛନ୍ତି । ଏକଥା କହିବାର କାରଣ, ଗୋପବନ୍ଧୁ ଲାଲାଜୀଙ୍କ ବିଚାର ଜାଲରେ ଧରା ଦେଇଛନ୍ତି । କଟକରେ ଲୋକସେବକ ସମାଜର ଶାଖା, ତାଙ୍କ ନେତୃତ୍ୱରେ ଗଢ଼ି ଉଠିଛି । ଲାଲାଜୀ ପାଣ୍ଠି ବି ଯୋଗାଇ ଦେଇଛନ୍ତି । ଓଡ଼ିଶା ରିଲିଫ୍‌ଫଣ୍ଡ, ଧାନକୁଟା କେନ୍ଦ୍ର ସ୍ଥାପିତ ହୋଇଛି । ଦଳିତ ଓ ହରିଜନମାନଙ୍କ ଉନ୍ନତି ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ଲିଙ୍ଗରାଜ ମିଶ୍ର ହୋଇଛନ୍ତି ଗୋପବନ୍ଧୁଙ୍କ ସହକର୍ମୀ । ଲାଲାଜୀଙ୍କ କେତେକ କାର୍ଯ୍ୟପନ୍ଥାକୁ ଗାନ୍ଧୀ, ମଖନଲାଲ, ଶଙ୍କରଲାଲ, ସରୋଜିନୀ ପ୍ରମୁଖ ପ୍ରଶଂସା କରିଛନ୍ତି । ଗୋପବନ୍ଧୁ 'ସମାଜ'ର ଉପସଭାପତି ହୋଇଛନ୍ତି । ଏହା ଏକ ସର୍ବଭାରତୀୟ ସ୍ୱୀକୃତି । ଏବଂ, ସଂସାରରେ ଜୀବନର ଶେଷଦିନ, ସେ ସମାଜର ସ୍ୱତ୍ୱ ସମର୍ପଣ କରି ଦେଇଛନ୍ତି ଲୋକ ସେବକ ସମାଜ ହାତରେ ।

ବାସ୍ତବତଃ, ଏହି ସହୃଦୟ ମଣିଷ ଜଣକ ଜୀବନର ଶେଷ କେତେ ମାସ ଥିଲା ବେଶ ଘଟଣାବହୁଳ । ଆପଣା ପରିବାର, ଆର୍ଥିକସ୍ଥିତିକୁ ଛଡା ହୋଇଥିବା ଏବଂ ତାଙ୍କ ଅସଂସାରୀ ଓ ହରାଉଥିବା ଜୀବନକୁ ପୂର୍ଣ୍ଣକରି ରଖିଥିବା ବଡ଼ଭାଇଙ୍କୁ ହରାଇଛନ୍ତି । ପରେ ପରେ ବ୍ରାହ୍ମଣୀ, ବୈତରଣୀରେ ବନ୍ୟା ସେ ଯାଇଛନ୍ତି । ଝଡ଼ି ଆଉ ବଢ଼ି ସହ ଲଢ଼ିଲଢ଼ି ଘରକୁ ଫେରିଛନ୍ତି । ଟାଇଫଏଡ଼ ମାଡ଼ି ବସିଛି । ଟିକିଏ ଭଲ ହୋଇଛନ୍ତି କି ନାହିଁ, କଲିକତାରୁ ଶ୍ରମିକମାନଙ୍କ ପାଖରୁ ଡାକରା ଆସିଲା । ଯାଇଛନ୍ତି, ବୋହୂବଜାର ଷ୍ଟ୍ରିଟ, ଅନ୍ଧାର ଘର, ମଶା, ମାଛି, ଛାରପୋକ, ସନ୍ତସନ୍ତିଆ ଓ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନର ସପନ ଦେଖୁଥିବା ଅସୁସ୍ଥ ମଣିଷମାନଙ୍କର ଅସହାୟତା ତାଙ୍କୁ ଆତଙ୍କିତ ଓ ବିବ୍ରତ କରିଛି । ରେଙ୍ଗୁନ୍, କଳାମାଟିରେ ମଧ୍ୟ ଓଡ଼ିଆମାନେ ସମାନ ଅବସ୍ଥା । ସେ ଓଡ଼ିଶା ଫେରୁଛନ୍ତି । ଜର ଆସୁଛି, ଯାଉଛି । ବେଳେବେଳେ କହୁଛନ୍ତି- ବେଳ ଆସିଗଲା, ଏବେ ମୁଁ ଯାଏ । ମୋ ଚାରିପାଖରେ ବସି ପ୍ରାର୍ଥନା କର । ଗୀତାପଢ଼, ମୁଁ ଶୁଣେ । ପ୍ରାର୍ଥନା ଓ ଗୀତାର ମନ୍ତ୍ର ଭିତରେ ଜୀବନର ଶେଷ ତାତି ଶୀତଳ ହୋଇଯାଉଛି । ସେଦିନ ୧୯୨୮ ମସିହା, ଜୁନ ୧୭ ତାରିଖ ସନ୍ଧ୍ୟା ପାଂଚ୍ଟା ତିରିଶ ମିନିଟ୍ ।

## ଛଅ

ଏଇ ମଣିଷ ଜଣକ ପୃଥିବୀରେ କେତେଦିନ ବଂଚିଛନ୍ତି କି ? ମାତ୍ର ପ୍ରାୟ ବାଉନବର୍ଷ । କ'ଣ ତାଙ୍କର ପରିଚୟ ? ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ରଙ୍କ ଭାଷାରେ 'ସେ କାଳେ ଉତ୍କଳମଣି' । (ତା ୨୪.୬.୨୪ରିଖରେ ହଜାରିବାଗ ଜେଲରୁ ମୁକ୍ତ ହୋଇ ପରଦିନ କଟକରେ ପହଂଲା

ପରେ ଏକ ସମ୍ବର୍ଦ୍ଧନା ସଭାରେ ପ୍ରଦତ୍ତ ବିଶେଷଣ) । ଜଣେ ବଙ୍ଗଭାଷୀଙ୍କର ଗୋପବନ୍ଧୁଙ୍କ ପ୍ରତି ଏହି ସହୃଦୟ ସମ୍ଭାଷଣକୁ, ତାଙ୍କ ବ୍ୟକ୍ତିତ୍ୱର ଖର୍ବାୟନ କୁହାଯାଇପାରିବ ମାତ୍ର ଆଶ୍ଚର୍ଯ୍ୟ, ଓଡ଼ିଆମାନେ କେଜାଣି କାହିଁକି ଏହି ବିଶେଷଣକୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ଭାବରେ ଗ୍ରହଣ କରନ୍ତି । ମାତ୍ର ଯଥାର୍ଥତଃ ସେ ଜଣେ ବିଶେଷଣହୀନ ବ୍ୟକ୍ତିତ୍ୱ । ସେ ଏମିତି ଜଣେ ବ୍ୟକ୍ତି, ଯିଏ ନିଜର ରୂପକୁ ଅସ୍ୱୀକାର କରିଛି । ଥରେ ଲାଲାଜୀ ତାଙ୍କୁ ଫଟୋଟିଏ ମାଗିଛନ୍ତି । ପତ୍ରିକାରେ ଛାପିବେ । ଚିହ୍ନେଇବେ ମଣିଷ ଜଣକ କେମିତି ? ଗୋପବନ୍ଧୁଙ୍କ ଉତ୍ତର ଥିଲା- "ଦେଶରେ ନାଁ ଓ ସମ୍ମାନ କମେଇବାର ମୋର ତିଳେ ଆଗ୍ରହ ନାହିଁ । ମୋର ଶକ୍ତି ଓ ସାମର୍ଥ ଅନୁଯାୟୀ ମୁଁ ଯେକୌଣସି କଷ୍ଟ କାମ କରିବାକୁ ପଛେଇ ନାହିଁ । ମୁଁ ନିଜକୁ ଆଜୀବନ ଜନତାର ସେବକ ଭାବରେ ଧରିନେଇଛି । ତାର ଯାହା ସବୁ ନିଜସ୍ୱ ସେ ସବୁ ଜନତାର ସମ୍ପତ୍ତି ।" ଫଟୋ ପଠେଇ ନାହାନ୍ତି । ଯେଉଁ ବ୍ୟକ୍ତି ନିଜକୁ ପ୍ରଥମେ ମଣିଷ ଏବଂ ଶେଷରେ ଓଡ଼ିଆ କହିଛନ୍ତି, ଅର୍ଥାତ୍ ନିଜ ବ୍ୟକ୍ତିତ୍ୱ ଓ ପରିଚୟକୁ ପୃଥିବୀର ଅନନ୍ତକାଳର ମଣିଷମାନଙ୍କ ଗହଣରେ ନାମହୀନ ଅନ୍ୟତମ ବୋଲି କହିଛନ୍ତି, ତାଙ୍କୁ ଉତ୍କଳମଣି କହିବା ଯେ ଅଯଥାର୍ଥ, ଏକଥା ଆମେ ବୁଝି ପାରିନାହୁଁ । ତାଙ୍କ ସମ୍ପର୍କରେ ଏତିକି କୁହାଯାଇପାରିବ, ମଣିଷର ଅସହାୟତାକୁ ଅନୁଭବ କରି ପାରୁଥିବା ସେ ଅନ୍ୟତମ ସହୃଦୟ ଓ ଆନନ୍ଦ ଅନ୍ୱେଷୀ ସତ୍ତା । ତାଙ୍କ ଜୀବନର ପ୍ରତ୍ୟେକ ଆଚରଣର ଏହାହିଁ ମର୍ମକଥା ।

ଗୋପବନ୍ଧୁଙ୍କ ସମ୍ପର୍କରେ ଏତେକଥା ମୁଁ ମୋ ମନରୁ କହି ନାହିଁ । ଶ୍ରୀ ନିତ୍ୟାନନ୍ଦ ଶତପଥୀଙ୍କ ବହିରେ ସେ ସବୁ ଅଛି । ସେ ଏଇ ମଣିଷଙ୍କ ଜୀବନ ବୃତ୍ତାନ୍ତ ଗୋଟିଏଗୋଟିଏ ଚୂର୍ଣ୍ଣକ (ଆନେକଡଟ) ମାଧ୍ୟମରେ କହିଛନ୍ତି କାହାଣୀ ପରି ଲାଗୁଛି । ତଥ୍ୟ ପୁଷ୍ଟ କାହାଣୀ । ବ୍ୟାଖ୍ୟା ବି କରିଛନ୍ତି । ତେଣୁ ବହିଖଣ୍ଡକ ବେଶ୍ ସୁଖପାଠ୍ୟ । ଏହାର ଅନ୍ୟତମ କାରଣ, ସେ ଗୋପବନ୍ଧୁଙ୍କୁ ବୁଝିବାକୁ ଚାହିଁଛନ୍ତି । ତେଣୁ ଜୀବନୀ ବିବରଣୀ ମୂଳକ ହୋଇ ନାହିଁ । ଜୀବନଗଢ଼ଣ କାଳରେ ତାଙ୍କର କର୍ମ, ସାହିତ୍ୟ, ଅଧ୍ୟୟନ ଓ ସ୍ୱପ୍ନ-ଚାରୋଟି ବିଭବ ସଂହତ ଭାବରେ ଖଞ୍ଜା ଯାଇ ପାରିଥିଲେ, ବହିଖଣ୍ଡିକ ଅଧିକ କଳାତ୍ମକ ହୋଇ ପାରିଥାନ୍ତା । ଗୋପବନ୍ଧୁଙ୍କ ଅକ୍ଷର କର୍ମ ସମ୍ପର୍କରେ ସେ ଅବଶ୍ୟ ଲେଖିଛନ୍ତି । କହିଛନ୍ତି, ଏହା ଅନୁଭବର ସାହିତ୍ୟ ମାତ୍ର ସାହିତ୍ୟ ଙ୍କେ ଏକ ଚେତନା-ସଂବେଦୀ ଆନ୍ଦୋଳନ, ଗୋପବନ୍ଧୁ ସାହିତ୍ୟ ଏହାର ପ୍ରମାଣ, ଅନୁରୂପ ଚର୍ଚ୍ଚାର ଅଭାବ ରହିଛି ଏ ଗ୍ରନ୍ଥରେ ।

ମାତ୍ର ବହି ଖଣ୍ଡକ ପଢ଼ିଥିବା ଯେକୌଣସି ପାଠକ ସ୍ୱୀକାର କରିବ, ଗୋପବନ୍ଧୁଙ୍କ ସଂକ୍ରାନ୍ତ ଏହା ଏକ ସ୍ୱତନ୍ତ୍ର ଅଭିଲେଖା ଲାଗିବ, ନିତ୍ୟାନନ୍ଦ ଯେପରି ସାରଥି ରୂପରେ ଗୋପବନ୍ଧୁଙ୍କ ଚେତନା ରଥକୁ ଗତି ଦେଉଛନ୍ତି ।

*■ ପ୍ରାକ୍ତନ ପ୍ରାଧ୍ୟାପକ, ରେଭେନ୍ସା ବିଶ୍ୱବିଦ୍ୟାଳୟ*

# ଇସ୍ତାହାର ସଂପର୍କରେ ପଦେ...

♦ ପ୍ରଫେସର ନିତ୍ୟାନନ୍ଦ ଶତପଥୀ

*'ଇସ୍ତାହାର'କୁ digitalise କରିଛନ୍ତି 'ସୃଜନିକା' ସଂସ୍ଥା । ଅର୍ଥାତ୍ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ପରାମର୍ଶରେର ପରିଚାଳିତ ହେଉଥିବା ସଂସ୍ଥା - ଯାହାର ମୁଖ୍ୟ ହେଉଛନ୍ତି ନିଖିଳ ମୋହନ ପଟ୍ଟନାୟକ ଓ ତାଙ୍କ ପତ୍ନୀ ସ୍ୱାଗତିକା । ସେଇ ସଂସ୍ଥାଦ୍ୱାରା wel night କୁ ଯାଉଥିବା 'ଇସ୍ତାହାର' ପତ୍ରିକାର ଲୋକାର୍ପଣ କାର୍ଯ୍ୟକ୍ରମ ପାଇଁ ଏ ଲେଖାଟି ମୁଖବନ୍ଧ ମାତ୍ର ।*

ଉତ୍କଳ ବିଶ୍ୱବିଦ୍ୟାଳୟରେ ମୁଁ ଆଧୁନିକ ଓଡ଼ିଆ କବିତା ବିଶେଷ ପତ୍ରର ସଂପୂର୍ଣ୍ଣ ଦାୟିତ୍ୱରେ ଥିଲି । ପିଲାମାନଙ୍କୁ କିନ୍ତୁ ମୋ ସହକର୍ମୀମାନେ ବିଶେଷ ପତ୍ର ଭାବେ ଏ ପ୍ରସଙ୍ଗକୁ ନେବାପାଇଁ ବରାବର ବାରଣ କରୁଥିଲେ । ସେଥିପାଇଁ ସେମାନେ ଦୁଇଟି କାରଣ ଦେଉଥିଲେ । ଗୋଟିଏ ହେଲା ରାଧାନାଥଙ୍କଠାରୁ ଆଧୁନିକ କବିମାନଙ୍କ ପର୍ଯ୍ୟନ୍ତ ବିଷୟ ଖୁବ୍ ବ୍ୟାପକ ଓ କଠିଣ । ଦ୍ୱିତୀୟରେ ଏଥିରେ ପିଲାମାନେ ଅଧିକ ନମ୍ବର ରଖି ପାରିବେନି । ଧର୍ମଧାରା ନେଲେ ଅକ୍ଲେଶରେ ଅଶୀ ନମ୍ବର ରଖି ହେବ; କିଂତୁ ଆଧୁନିକ କବିତାରେ ୬୦ ନମ୍ବର ରଖିବା ଖୁବ୍ ଦୁରୂହ । ପିଲାମାନେ କ'ଣ ବା ବୁଝନ୍ତି; ସେମାନେ ସାର୍‌ମାନଙ୍କ ଏପରି କଥାରେ ଭୟଭୀତ ହୋଇ ଯାଉଥିଲେ । ମୁଁ ଭାବିଲି ଏଇ ଆଧୁନିକ କବିତା ଇଲାକାକୁ ନେଇ ଯଦି ତ୍ରୈମାସିକ ସାହିତ୍ୟ ପତ୍ରିକାଟିଏ ପ୍ରକାଶ ପାଇ ପାରନ୍ତା ତେବେ ପିଲାମାନଙ୍କ ମନରୁ ଏ କବିତା ପ୍ରତି ଭୟ ଦୂର ହୋଇଯାନ୍ତା ଓ ବିଭିନ୍ନ ଆଲୋଚ଼ନାରୁ ସେମାନେ ଉପକୃତ ହୁଅନ୍ତେ ।

୧୯୬୫ ମସିହାରେ ମାତ୍ର ଜଣେ ଛାତ୍ର ଭାଗୀରଥି ସାହୁ ଆଧୁନିକ କବିତା ବିଶେଷ ପତ୍ର ନେବାକୁ ଆଗେଇ ଆସିଥିଲେ । ମୁଁ ଶ୍ରେଣୀ କକ୍ଷରେ ତାଙ୍କୁ ଏ ସବୁ କଥା କହି ସାହିତ୍ୟର ଇସ୍ତାହାର ବା 'ଇସ୍ତାହାର' ନାମରେ ପତ୍ରିକାଟିଏ ପ୍ରକାଶ କରିବା ପ୍ରସଙ୍ଗ ଉତ୍‌ଥାପନ କଲି । ସେ ଖୁବ୍ ଖୁସି ହୋଇଗଲେ ଓ ତାଙ୍କୁ ଏଥିପାଇଁ କ'ଣ କରିବାକୁ ହେବ ତାହା ଜାଣିବାକୁ ଚାହିଁଲେ । ମୁଁ ତାଙ୍କୁ କହିଲି ତୁମେ ସଂପାଦକ ରହିବ ଆଉ ମୁଁ ରହିବି ଉପଦେଷ୍ଟା । ବିଭିନ୍ନ ବିଦ୍ୱାନ କବି ଓ ଆଲୋଚ଼କଙ୍କଠାରୁ ତୁମ ବିଶେଷପତ୍ର ପାଠ୍ୟକ୍ରମକୁ ଲକ୍ଷ୍ୟ ରଖି ସମାଲୋଚ଼ନା ଓ ପ୍ରାୟୋଗିକ ଆଲୋଚ଼ନା ଆଣିବା । ତେବେ ପ୍ରାୟୋଗିକ ଆଲୋଚ଼ନା କ'ଣ ସେ କଥା ଭାଗୀରଥି ବୁଝି ନ ପାରିବାରୁ ମୁଁ ତାଙ୍କୁ

ବୁଝାଇ କହିଲି ଯେ ତୁମ ଏମ୍.ଏ. କ୍ଲାସ୍‌ରେ ଆଧୁନିକ କବିତା କେତୋଟି ନିଶ୍ଚୟ ପଢ଼ାଯାଉଛି । ତାରି ବିଷୟରେ କିଛି ଆଲୋଚ଼ନା ଯାହା ପିଲାମାନଙ୍କୁ ସହସା ସାହାଯ୍ୟ କରିବ; ଭଲଭାବରେ ବୁଝି ହେଉଥିବ; ବେଶୀ ସମାଲୋଚ଼କୀୟ ପାଣ୍ଡିତ୍ୟ ରହିବନି । ଆମେ ପ୍ରାୟ ଏଥିପାଇଁ ଦଶୋଟି କବିତା ବାଛିଲୁ ଓ କେଉଁମାନଙ୍କୁ ସମୀକ୍ଷା ଲେଖିବାକୁ ଦେବୁ ତାର ତାଲିକାଟିଏ ପ୍ରସ୍ତୁତ କଲୁ । ଭାଗୀରଥି ସଂପାଦକ ହେବାରୁ ଖୁବ୍ ଉତ୍ସାହରେ ଦଉଡ଼ା ଦଉଡ଼ି କରି ଲେଖା ଯୋଗାଡ଼ କରି ଆଣିଲା । ମୁଁ ଅର୍ଥ ବ୍ୟବସ୍ଥା ପାଇଁ ଲାଗିଗଲି । କେବଳ କବିତା ଉପରେ ସେ ସଂଖ୍ୟାଟି ଓ ପରବର୍ତ୍ତୀ ଗୋଟିଏ ଦୁଇଟି ସଂଖ୍ୟାରେ ଲେଖା ପ୍ରକାଶ ପାଇଲା । ମୁଁ ଦେଖିଲି ଛାତ୍ରମାନଙ୍କ ମହଲରେ ପତ୍ରିକାଟି ଖୁବ୍ ଆଦୃତ ହେଉଛି । କିଂତୁ ଏ ସଂଖ୍ୟାଟି ଖୁବ୍ ଦୁର୍ଲଭ ସଂଖ୍ୟା ହୋଇଥିଲେ ବି ଓ ପତ୍ରିକା ଦୋକାନ ମାନଙ୍କରେ ଖୁବ୍ ଭଲ ବିକ୍ରି ହୋଇଥିଲେ ବି ଆମ ହାତକୁ ଶହେଟଙ୍କା ବି ଆସିଲା ନାହିଁ ।

ଭାଗୀରଥିର ପଢ଼ା ସେ ବର୍ଷ ଶେଷ ହୋଇଗଲା ସତ କିଂତୁ ମୋର ଆଧୁନିକ କବିତା ଉପରେ ଗବେଷଣା ଆରମ୍ଭ ହୋଇଗଲା । ତେଣୁ ଏ ପତ୍ରିକା ପଛରେ ଗୋଡ଼େଇବାକୁ ମୁଁ ବେଳ ପାଇଲିନି । ଗବେଷଣା ପାଇଁ ମୋତେ ବିଭିନ୍ନ ପାଠାଗାର ଯିବାକୁ ହେଲା । ତେଣୁ 'ଇସ୍ତାହାର' ପାଇଁ ମୁଁ ଆଉ ପ୍ରତ୍ୟକ୍ଷ ନଜର ଦେଇପାରିଲି ନାହିଁ ।

କିଂତୁ କୌଣସି କାରଣରେ ବ୍ରହ୍ମପୁର ଯାଇ ସେଠାରେ ବଂଧୁ କମଳାକାନ୍ତ ଲେଙ୍କାଙ୍କୁ ଖଲିକୋଟ୍ ମହାବିଦ୍ୟାଳୟରେ ଭେଟିବାରୁ ଏ 'ଇସ୍ତାହାର' ତୁ କାହିଁକି ବନ୍ଦ କରିଦେଲୁ ବୋଲି ସେ ମୋତେ ଖୁବ୍ ଗାଳିଗୁଲଜ କଲେ । ପ୍ରାୟ ଏକଘଣ୍ଟା ତାଙ୍କ ସହିତ ଆଲୋଚ଼ନା 'ଇସ୍ତାହାର' ପୁଣି ବାହାରିବା ନିଷ୍ପତ୍ତି ହେଲା । ମୁଁ ମୋର ଥେସିସ୍ କାମ ସାରି ଆଧୁନିକ ଓଡ଼ିଆ କବିତାର ଏକ ବିସ୍ତୃତ ଯୁଗ ଉପରେ (୧୯୨୦-୧୯୭୦) ବହିଟିଏ 'ସବୁଜରୁ ସାଂପ୍ରତିକ' ନାମରେ ପ୍ରକାଶ କରିବା ଉଦ୍ୟମରେ ଥାଏ । ୧୯୭୬ ମସିହାରେ ମୁଁ ପିଏଚ୍.ଡି. ପାଇଲି ଓ ବହିଟି ୧୯୭୯ ବେଳକୁ ବଜାରକୁ ଆସିଲା । ୧୯୭୮ରେ 'ଇସ୍ତାହାର'ର ଏକ ମିଳିତ ସଂଖ୍ୟା ପ୍ରକାଶ ପାଇଥାଏ । 'ଇସ୍ତାହାର'କୁ ଆର୍.ଏନ୍.ଆଇ. ରେଜିଷ୍ଟ୍ରେସନ୍ ନମ୍ବର ମିଳିଯାଇଥାଏ । ଏହି ମିଳିତ ସଂଖ୍ୟାଟି ଓଡ଼ିଆ କବିତାର ବହୁ ଜଟିଳ ପ୍ରସଂଗ ଉପରେ ଲିଖିତ ହୋଇଥିଲା ଓ ଏ ସମୟକୁ ଆଧୁନିକ କବିତା ବିଶେଷପତ୍ର ନେବାକୁ ପ୍ରାୟ ଦଶଜଣ ଛାତ୍ର ଛାତ୍ରୀ ଆଗ୍ରହ ପ୍ରକାଶ କରିଥିଲେ । ସମ୍ଭବତଃ 'ଇସ୍ତାହାର' ଓ ବହି 'ସବୁଜରୁ ସାଂପ୍ରତିକ' ସେମାନଙ୍କ ମନରୁ ଆଧୁନିକ କବିତା ପାଇଁ ଭୟ ଓ ଭ୍ରାନ୍ତିକୁ ଦୂର କରି ଦେଇଥିଲା । ଉପାଦାନ ମିଳିଯିବାରୁ ଏମ୍.ଏ. ଛାତ୍ରମାନେ ଏଣିକି ଏ ପ୍ରସଂଗକୁ ପଢ଼ିବାକୁ ଆଗ୍ରହ ପ୍ରକାଶ କରିବା ସ୍ୱଭାବିକ ଥିଲା । ତାଂକୁ ଯେଉଁମାନେ ଭୟଭୀତ କରୁଥିଲେ ସେମାନେବି ଚୁପ୍ ପଡ଼ିଗଲେ । 'ଇସ୍ତାହାର' ଏକ ତ୍ରୈମାସିକ ସାହିତ୍ୟ ପ୍ରତିକାଭାବେ ଅନୁବନ୍ଧିତ ହୋଇଥିଲା । ଭାଗୀରଥିର ଆଉ ଦେଖା ଦର୍ଶନ ନ

ମିଳିବାରୁ ମୁଁ ନିଜେ ସଂପାଦନା ଦାୟିତ୍ୱ ବହନ କଲି କିନ୍ତୁ ବିଶେଷପତ୍ର ନେଇଥିବା କିଛି ଛାତ୍ରଙ୍କୁ ଏଥିରେ ସହଯୋଗୀ ଭାବେ ରଖିଲି । ସେମାନେ ବି 'ଇସ୍ତାହାର' ପାଇଁ କାମ କରିବାକୁ ଖୁବ୍ ଆଗ୍ରହୀ ଥିଲେ । ଏହାର ୨ୟ ସଂଖ୍ୟା ଫେବ୍ରୁୟାରୀ ୧୯୭୮ରେ ପ୍ରକାଶ ପାଇଲା ଓ ସଂପାଦନା ମଣ୍ଡଳୀରେ କୁମୁଦ ଚନ୍ଦ୍ର ଦାଶ, ବିଜୟ କୁମାର ଚୌଧୁରୀ ଓ ସୁକାନ୍ତ କୁମାର ମିଶ୍ର - ତିନିଜଣ ଆଧୁନିକ ଓଡ଼ିଆ କବିତା ନେଇଥିବା ଛାତ୍ର ରହିଲେ । ଯେଉଁ କବିମାନଙ୍କୁ ଜଟିଳ ଓ ଦୁର୍ବୋଧ ବୋଲି କହି ଅନ୍ୟମାନେ ହତାଦର କରୁଥିଲେ ସେମାନଙ୍କ ମଧ୍ୟରୁ ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ହରପ୍ରସାଦ ଦାସ, ଦୀପକ ମିଶ୍ର, ହରିହର ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ଚିନ୍ତାମଣି ବେହେରା, ପ୍ରତିଭା ଶତପଥୀଙ୍କ ସଂସ୍ପର୍ଶରେ ଆଲୋଚ଼ନାମାନ ପ୍ରକାଶ ପାଇଲା । ସ୍ୱାଧୀନତା ପ୍ରାପ୍ତି ଠାରୁ ୧୯୭୮ ମସିହା ମଧ୍ୟରେ ପ୍ରକାଶ ପାଇଥିବା ସମସ୍ତ କବିତା ପୁସ୍ତକର ଏକ ତାଲିକା ପ୍ରସ୍ତୁତ କଲେ ଶ୍ରୀ କୁମୁଦ ଚନ୍ଦ୍ର ଦାଶ । ଏ ତାଲିକାଟି ଆଧୁନିକ କବିତା ଉପରେ କାମ କରିବାକୁ ଚାହୁଁଥିବା ଗବେଷକ ଓ ଏ କବିତାକୁ ଭଲ ପାଉଥିଲା ପାଠକମାନଙ୍କୁ ଯେ କେତେ ଉପଯୋଗିତା ପହଁଞ୍ଚାଇଥିଲା ତାହା ଆଜି ମୁଁ ଭାବିଲା ବେଳକୁ ବିସ୍ମିତ ହୁଏ । ଏହି ୨ୟ ସଂଖ୍ୟାର ସଂପାଦକୀୟରେ ମୁଁ ଲେଖିଥିଲି 'ଇସ୍ତାହାର' ଗୋଟିଏ ଗୋଷ୍ଠୀମୁକ୍ତ ନିରପେକ୍ଷ ସମାଲୋଚ଼ନାମୂଳକ ପତ୍ରିକା । କେତେକ ଗୋଷ୍ଠୀବଦ୍ଧ ପତ୍ରିକା ଯେପରି ରୁଚ଼ିହୀନ ଆତ୍ମପ୍ରଚାରରେ ବା କେତେଜଣଙ୍କୁ ଟେକାଟେକି କରିବାରେ ଲିପ୍ତ ଅଛନ୍ତି ସେପରି ଏକମୁହାଁ (one track) ଆଭିମୁଖ୍ୟରୁ ମୁକ୍ତ ରହି ସାଂପ୍ରତିକ ସୃଷ୍ଟି ପ୍ରତି ନିରପେକ୍ଷ ଦୃଷ୍ଟିପାତ କରିବା ଏହି ପତ୍ରିକାର ନିର୍ଦ୍ଧାରିତ ଲକ୍ଷ୍ୟ ହେବ । ଏଥିପାଇଁ ମୁଁ କବି, ସମାଲୋଚ଼କ ଓ ପାଠକ ଏହି ତିନିବର୍ଗଙ୍କ ସହଯୋଗ କାମନା କରୁଛି ।

'ଇସ୍ତାହାର'ର ତୃତୀୟ ସଂଖ୍ୟାରେ ଶ୍ରୀ ରମାକାନ୍ତ ରଥ, ସୌଭାଗ୍ୟ ମିଶ୍ର, ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ, ଶ୍ରୀ ବିବେକ ଜେନା, ଶ୍ରୀ କମଳାକାନ୍ତ ଲେଙ୍କା, ଶ୍ରୀ ବ୍ରଜନାଥ ରଥ, ଶ୍ରୀ ନିତ୍ୟାନନ୍ଦ ପତି, ସରୋଜ ରଂଜନ ମହାନ୍ତି, ବଂଶୀଧର ଷଡ଼ଙ୍ଗୀ, ପ୍ରସନ୍ନ ପାଟଶାଣୀଙ୍କ ପରିଚ଼ୟ ବହନ କରୁଥିବା କେତୋଟି ପ୍ରତିନିଧି ସ୍ଥାନୀୟ କବିତାର ପ୍ରାୟୋଗିକ ଆଲୋଚ଼ନା ପ୍ରକାଶ ପାଇବ ବୋଲି ଘୋଷଣା କରାଯାଇଥିଲା । ଏହା ସହିତ ପାଠକମାନଙ୍କ ଗଠନମୂଳକ ମତାମତ ମଧ୍ୟ ସ୍ଥାନିତ ହେବ ବୋଲି କୁହାଯାଇଥିଲା । ଅନ୍ତତଃ ଏହି ଚତୁର୍ଥ ସଂଖ୍ୟା ପର୍ଯ୍ୟନ୍ତ 'ଇସ୍ତାହାର' କେବଳ କବିତା ଭିତ୍ତିକ ଥିଲା । କିନ୍ତୁ କିଛି ପାଠକେ ଗଳ୍ପ ଓ ଫିଚର୍ ଲେଖା କାହିଁକ 'ଇସ୍ତାହାର'ରେ ପ୍ରକାଶ ପାଉନାହିଁ ବୋଲି ଆପତ୍ତି କରିବାରୁ ପଞ୍ଚମ ସଂଖ୍ୟା ଠାରୁ ଅର୍ଥାତ୍ ଜାନୁୟାରୀ-ମାର୍ଚ୍ଚ ୧୯୭୯ ଠାରୁ 'ଇସ୍ତାହାର' ସାହିତ୍ୟର ସମସ୍ତ ବିଭାଗକୁ ନେଇ ଆତ୍ମପ୍ରକାଶ କଲା । ଏଥିରେ ଆମେ ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଜଙ୍ଗଲୀ' ଗପଟିକୁ ଉତ୍କଳ ସାହିତ୍ୟ ୩୨ ଭାଗ / ୯ମ ସଂ ପୌଷ ୧୯୨୯ରୁ ଆଣ

ଛାପିଥିଲୁ ଏବଂ ତାଙ୍କ ଗଳ୍ପ 'ଜଂଗଲୀ'ରୁ 'ହାତୁଡ଼ି ଓ ଦା' ପର୍ଯ୍ୟନ୍ତ ମୁଁ ଏକ ସମୀକ୍ଷା କରିଥିଲି । 'ଇସ୍ତାହାର'ର ୧୯୭୯ ପୂଜାସଂଖ୍ୟା ସବୁ ଦୃଷ୍ଟିରୁ ଥିଲା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏଥିରେ ଆଧୁନିକ ଓଡ଼ିଆ, ବଙ୍ଗଳା ଓ ଅସମୀୟା ସାହିତ୍ୟରେ ମେଟାଫିଜିକାଲ୍ ଶୈଳୀ ସଂପର୍କରେ ଆଲୋଚନା କରିଥିଲେ ପ୍ରଫେସର ବିଧୁଭୂଷଣ ଦାସ । ଏ ସଂଖ୍ୟାରେ ମଧ୍ୟ 'ସାହିତ୍ୟରେ ରହସ୍ୟବାଦ' ପ୍ରସଙ୍ଗରେ ଆଲୋଚନା କରିଥିଲେ ଅଧ୍ୟାପିକା ସୌଦାମିନୀ ଚୌଧୁରୀ, ସୁରେନ୍ଦ୍ର ମହାନ୍ତି ଓ କାଲ୍‌କାଟା' ଗଳ୍ପ ସଂକଳନ ଉପରେ ଆଲୋଚନା କରିଥିଲେ ଅଧ୍ୟାପକ ପୀତାମ୍ବର ସ୍ୱାଇଁ । ସେହିପରି ଗାଳ୍ପିକ ରବି ପଟ୍ଟନାୟକଙ୍କ 'ଓ ଅନ୍ଧଗଳି' ଓ 'ବାଇଶି ପାହାଚ' ଉପରେ ଆଲୋଚନା କରିଥିଲେ ଗାଳ୍ପିକ ଛବି ସ୍ୱାଇଁ । ଏହି ସଂଖ୍ୟାରେ ଗଳ୍ପ ଲେଖିଥିଲେ ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ, କିଶୋରୀ ଚରଣ ଦାସ, ଜଗଦୀଶ ମହାନ୍ତି, ମନୋଜ ଦାସ, ବୀଣାପାଣି ମହାନ୍ତି, ରାମଚନ୍ଦ୍ର ବେହେରା ଓ ଗୋପୀନାଥ ମହାନ୍ତିଙ୍କ ପରି ସାରସ୍ୱତ ପୁରୁଷମାନେ । କବିତା ଲେଖିଥିଲେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ବ୍ରଜନାଥ ରଥ, ଦୀପକ ମିଶ୍ର ଆଦି ବହୁ ବିଶିଷ୍ଟ କବି । 'ଇସ୍ତାହାର' ଏତେ ଉଚ୍ଚ ମାନ ରକ୍ଷା କରୁଥିଲା ଯେ ସମସାମୟିକ ପତ୍ରିକାମାନଙ୍କ ମଧ୍ୟରେ ଝଂକାରକୁ ଛାଡ଼ିଦେଲେ ଆଉ କୌଣସି ପତ୍ରିକା ସେଠାରେ ପହଞ୍ଚି ପାରୁନଥିଲା । 'ଇସ୍ତାହାର' ନୂଆ ନୂଆ ଲେଖୁଥିବା କବି ଓ ସମାଲୋଚକମାନଙ୍କୁ ଅଧିକ ଉତ୍ସାହିତ କରୁଥିଲା । ଏହା ଲଳିତ ନିବନ୍ଧ, ବୈଜ୍ଞାନିକ ପ୍ରବନ୍ଧ, ନାଟ୍ୟ ସଂପର୍କୀୟ ଆଲୋଚନା ସବୁକୁ କୁକ୍ଷୀଗତ କରିଥିଲା । ଏପରିକି କ୍ରମେ ପାଠକମାନେ ଏହାକୁ ଏକ ଉଚ୍ଚାଙ୍ଗ ପ୍ରବନ୍ଧ ପ୍ରଧାନ ପତ୍ରିକା ଭାବେ ଗଣନା କରିବାକୁ ଆରମ୍ଭ କଲେ । ଏହାର ପୂଜାସଂଖ୍ୟା ଗୁଡ଼ିକ ଥିଲା ଏକାନ୍ତ ସଂଗ୍ରହଣୀୟ ।

'ଇସ୍ତାହାର'ର ସଂପାଦକୀୟ ଥିଲା ବ୍ୟାପ୍ତି ଭିତ୍ତିକ । ସାହିତ୍ୟ, ରାଜନୈତିକ ପ୍ରସଙ୍ଗ, ତାତ୍ତ୍ୱିକ ବିଚାର, ସାମୟିକ ଓ ଚିରନ୍ତନ ପ୍ରସଙ୍ଗକୁ ନେଇ ଏ ସଂପାଦକୀୟ ପ୍ରକାଶ ପାଉଥିଲା । ଉଦାହରଣ ସ୍ୱରୂପ ଏହାର ଦ୍ୱିତୀୟ ବର୍ଷ ୧ମ ସଂଖ୍ୟା (ଜାନୁୟାରୀ-ମାର୍ଚ୍ଚ ୧୯୭୯) ସଂଖ୍ୟାରେ ପ୍ରକାଶ ପାଇଥିଲା 'ସାହିତ୍ୟରେ ଆଧୁନିକତା ବନାମ ଚିରନ୍ତନତା' ଶୀର୍ଷକ ଏକ ପ୍ରସଙ୍ଗ । ସେଥିରେ ଡିସେମ୍ବର ମାସରେ 'ସମାବେଶ' ପତ୍ରିକାରେ ଶ୍ରୀ ସଂଜୟଙ୍କ ଲିଖିତ 'ଆମ କଥା ସାହିତ୍ୟର କଥା' ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ'ର ଚମ୍ପା ଚରିତ୍ର ଉପରେ ଯେଉଁ ମନ୍ତବ୍ୟ ନେଇଥିଲେ 'ଇସ୍ତାହାର' ସଂପାଦକୀୟରେ ତାହାର ପ୍ରତିବାଦ କରାଯାଇଥିଲା । ଏହାଥିଲା ମୋର ସାହିତ୍ୟିକ ପ୍ରତିକ୍ରିୟା ମାତ୍ର । ଶ୍ରୀ ସଂଜୟ ଲେଖିଥିଲେ - "ଫକୀରମୋହନଙ୍କ ହାତରେ ଚମ୍ପା ସଦୃଶ ବ୍ୟକ୍ତିତ୍ୱସଂପନ୍ନା ନାରୀ ନଷ୍ଟ ହୋଇଗଲା । ସେମିତି ମଧ୍ୟ ପଡ଼ିଥିଲା ତାଙ୍କ ହାତରେ ଚିତ୍ରକଳା ।" ଏହାର ପ୍ରତିକ୍ରିୟାରେ 'ଇସ୍ତାହାର' ସଂପାଦକୀୟରେ ଲେଖାଯାଇଥିଲା- ଲେଖକ ଫକୀରମୋହନଙ୍କ ଚରିତ

ଗୁଡ଼ିକୁ ଆଧୁନିକ ଅଣ୍ଟୋଜେନେଟିକ୍ ସମାଲୋଚନା ପଦ୍ଧତି ଅନୁସାରେ ବିଚାର କରିଛନ୍ତି । ଯୁଦ୍ଧ ପରବର୍ତ୍ତୀ କାଳରେ ନାନାଦି କାରଣରୁ ଆମ ଚିନ୍ତାଧାରାରେ ଉପନ୍ୟାସର ଚରିତ୍ରମାନଙ୍କ ପ୍ରତି ଭିନ୍ନ ରୁଚି ପ୍ରକାଶ ପାଇଛି । ଆମେ ଅଧିକରୁ ଅଧିକ ଚରିତ୍ର ଗୁଡ଼ିକର ମନସ୍ତାତ୍ତ୍ୱିକ ଦିଗ, ସାମାଜିକ ପରିବେଶ, ସ୍ଥିତିବାଦୀ ଚେହେରା ଖୋଜିବସୁଛେ । ସେଥିପାଇଁ ଫକୀରମୋହନଙ୍କ ଚମ୍ପା ମଧ ଆଧୁନିକ ମାପକାଠିରେ ସମାଲୋଚିତା । କିନ୍ତୁ ଫକୀରମୋହନଙ୍କ ଚମ୍ପା ଜଣେ ଆଧୁନିକ ନୁହେଁ, ଜଣେ ଚିରନ୍ତନ ଖଳନାୟିକା । ଫକୀରମୋହନ ତାଙ୍କ ଉପନ୍ୟାସରେ ଆଧୁନିକତା ଅପେକ୍ଷା ଚିରନ୍ତନତା ଦ୍ୱାରା ଅଧିକ ବଶବର୍ତ୍ତୀ ହୋଇଛନ୍ତି । ତେଣୁ ତାଙ୍କ ଆଖିରେ ଖଳ ଚିରଦିନ ଖଳ ହୋଇ ରହିଯାଇଛି । ତା'ଠାରେ ମଣିଷର ଚିରନ୍ତନ ପାପ ପ୍ରବୃତ୍ତି ଗୁଡ଼ିକ ହିଁ ଅଧିକ କ୍ରିୟାଶୀଳ । ପାପ, ପ୍ରତାରଣା, ଯୌନାଚାର, ଲୋଭାଦି ତା'ର ଖଳ ପ୍ରକୃତିର ପରିଚୟ । ସେହିପରି ପବିତ୍ରତା, ସୁଚିତା, ଦୟା, କ୍ଷମା, ସତୀତ୍ୱ ପରି ଚିରନ୍ତନ ଗୁଣ ଗୁଡ଼ିକର ପ୍ରତିନିଧିତ୍ୱ କରୁଥିବା ଅପରିବର୍ତ୍ତିତ ଚରିତ୍ରମାନେ ଗୋଟିଏ ପଟେ ତାଙ୍କ ଉପନ୍ୟାସରେ ଅଛନ୍ତି । ତେବେ ବ୍ୟକ୍ତିତ୍ୱର ସଂଜ୍ଞା କ'ଣ ? ଯେ ଭାଂଗୁଥିବ, ଧ୍ୱଂସ କରୁଥିବ, ଚୋରୀ କରୁଥିବ, ଘର ପୋଡ଼ି ଦେଉଥିବ, ଜମିବାଡ଼ି ଲୁଣ୍ଠନ କରିବାକୁ ଫନ୍ଦିଫିକର କରୁଥିବ, ଧଳାକୁ କଳା କରିପାରୁଥିବ, ନିରୀହ ମଣିଷମାନଙ୍କୁ ପ୍ରତାରିତ କରି ତାଙ୍କର ସର୍ବସ୍ୱ ଲୁଣ୍ଠନ କରୁଥିବ ସେ ଯଦି ବ୍ୟକ୍ତିତ୍ୱ ସଂପନ୍ନ ହୁଏ ତେବେ ମୁଁ କହିବି ଟାଉଟରି କରି ବଂଚୁଥିବା ଯେ କୌଣସି ରାଜନୈତିକ କର୍ମୀ ମଧ ଅଧିକ ବ୍ୟକ୍ତିତ୍ୱ ସଂପନ୍ନ ! ଏଇ ମାପକାଠିରେ ସାଧୁସନ୍ଥ, ଗୁଣୀ, ନିରୀହ, ଧର୍ମଜ୍ଞାନ ସଂପନ୍ନ ବ୍ୟକ୍ତିମାନେ ତେବେ କ'ଣ ବ୍ୟକ୍ତିତ୍ୱହୀନ ଗୋଟିଏ ଗୋଟିଏ ସାମାନ୍ୟ ଚରିତ୍ରରେ ପରିଣତ ହୋଇଯିବେ । ସେମାନେ ନିରବରେ ଆଖିରୁ ଲୁହ ଝରାଇ ଭାଗ୍ୟକୁ ଆଦରି ରହିବେ ସିନା, ଚମ୍ପା ବା ମଙ୍ଗରାଜଙ୍କ ସହିତ ପ୍ରତିସ୍ପର୍ଦ୍ଧୀ ହୋଇ କମରକସି ଠିଆ ହୋଇପାରିବେ କି ? ମୋ ମତରେ ଯେଉଁ ଦୃଷ୍ଟିରୁ ଫକୀରମୋହନ ଚମ୍ପା ଚରିତ୍ର ସୃଷ୍ଟି କରିଛନ୍ତି ଗାଁ ଗହଳରେ ସେମାନେ ଭରି ରହିଛନ୍ତି । ଫକୀରମୋହନ ଏପରି ଏକ ଅପରିବର୍ତ୍ତିତ ନିଖୁଣ ଚରିତ୍ରଟିଏ ଓଡ଼ିଆ ସାହିତ୍ୟକୁ ଦେଇ ପାରିଥିବାରୁ ଶ୍ଳାଘ୍ୟ ବିବେଚିତ ହେବେ । କାରଣ ଯାହା କିଛି ସତ୍ୟ ଓ ଚିରନ୍ତନ ଔପନ୍ୟାସିକ ତାହାର ହିଁ ରୂପକାର । ତେଣୁ ଚମ୍ପା ଜୀବନର ଶେଷ ଭାଗକୁ ସେ ସହାନୁଭୂତି କାହିଁକି ଦେଖେଇ ଥାଆନ୍ତେ ? ବୋଧହୁଏ ଚରିତ୍ର ଚିତ୍ରଣର ଏଇ ନିର୍ଭୁଲ୍ ବିଚାରଧାରା ପାଇଁ ସମସାମୟିକ ଭାରତୀୟ ସାହିତ୍ୟରେ ତାମିଲ୍ ସମାଲୋଚକ କାନା ସୁବ୍ରମନ୍ୟମ୍ ଫକୀରମୋହନଙ୍କୁ ଅଗ୍ରଗଣ୍ୟ ସ୍ଥାନରେ ଆସୀନ କରାଇଛନ୍ତି ଓ 'ଛ'ମାଣ ଆଠଗୁଣ୍ଠ'କୁ ଗଦ୍ୟ ପୁରାଣ ଆଖ୍ୟା ଦେଇଛନ୍ତି । ମହାକାବ୍ୟ ଓ ପୁରାଣର ଚରିତ୍ରମାନେ ସେଇଥିପାଇଁ ଆଧୁନିକ ନ ହୋଇ ଚିରନ୍ତନ ହୋଇ ରହିଛନ୍ତି । ସେଥିପାଇଁ ଆଧୁନିକ ବିଚାର ପଦ୍ଧତି ଫକୀରମୋହନଙ୍କ ପାଇଁ ଲାଗୁ ହେବ ନାହିଁ ।

୧୯୯୦-୯୧ ବେଳେ ଦେଶରେ ଯେତେବେଳେ ମଣ୍ଡଳ କମିଶନ୍ ଗୋଳ ଲାଗି ରହିଲା ଆମେ ଉପଲବ୍ଧି କରିଥିଲୁ ଯେ ଏଣିକି ସବୁ କ୍ଷେତ୍ରରୁ ମେଧାକୁ ଦୂରେଇ ରଖିବାକୁ

ପଥ ପରିଷ୍କାର ହୋଇଗଲା । ତେଣୁ ଏହାକୁ 'ମେଧାମେଧ ଯଜ୍ଞ'ର ଅୟମାରମ୍ଭ ବୋଲି ଆମେ ନାମିତ କରିଥିଲୁ ଓ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପସିଂହଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲୁ 'ଇସ୍ତାହାର'ର ସଂପାଦକୀୟରେ ।

'ଇସ୍ତାହାର' ହିଁ ଦୃଢ଼ ସ୍ୱରରେ 'ରାଜନୀତିର ବିଷାକ୍ତ ପ୍ରକ୍ରିୟା' ନାମକ ଏକ ସଂପାଦକୀୟରେ କଲେଜ ଓ ବିଶ୍ୱବିଦ୍ୟାଳୟ ଛାତ୍ର ରାଜନୀତି ଓ ନିର୍ବାଚନକୁ ବିରୋଧ କରିଥିଲା । ସେହିପରି ପଞ୍ଚାୟତ ନିର୍ବାଚନର ବିଷାକ୍ତ ପରିଣତିକୁ ଲୋକଲୋଚନକୁ ଆଣିବାର ପ୍ରୟାସ କରିଥିଲା । କାରଣ ଏସବୁରେ ପରିଲକ୍ଷିତ ହେଉଥିବା ଦଳୀୟ ରାଜନୀତି ପରିବାର ଓ ଗ୍ରାମକୁ ବିପନ୍ନ କରୁଛି, ଭାଗ ଭାଗ କରିଦେଉଛି । ତେଣୁ ପଞ୍ଚାୟତ ନିର୍ବାଚନ ନିର୍ଦ୍ଦଳୀୟ ଭିତ୍ତିରେ ହେଉ ବୋଲି ଆମେ ସ୍ୱର ଉତ୍ତୋଳନ କରିଥିଲୁ । ମୋର ତେଣୁ ଅଭିମତ ଥିଲା- "ଏ ଦେଶରେ କ'ଣ ଏପରି ଶୁଭ ସମୟ ଆସିବ ନାହିଁ ଯେତେବେଳେ ରାଜନୈତିକ ଦଳମାନେ ଏକମତ ହୋଇ ଘୋଷଣା କରିବେ ଯେ ସେମାନେ ପଞ୍ଚାୟତ ଓ ଛାତ୍ରସଂସଦ ନିର୍ବାଚନରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଆଦୌ ସଂପୃକ୍ତ ହେବେ ନାହିଁ । କାରଣ ସେମନଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ ଯୋଗଦାନ ଓ ଆର୍ଥିକ ପୃଷ୍ଠପୋଷକତା ସମାଜ ଓ ଶିକ୍ଷାବ୍ୟବସ୍ଥା ପ୍ରତି ଯେଉଁ ଭୟଙ୍କର ପରିଣତିକୁ ଡାକିଆଣୁଛି ସେ ସବୁ କଥା ସେମାନେ ବୁଝିବା ପାଇଁ ବେଳ ଆସିଛି । ସେହିପରି ଗୋଟିଏ ସଂପାଦକୀୟ ଥିଲା- "ଜନରାଜ୍ୟ ଦିବସ ଓ ଆମେ ଜନସାଧାରଣ ।" ବହୁ ପାଠକ 'ଇସ୍ତାହାର'ର ସଂପାଦକୀୟ ପଢ଼ି ମୋତେ ଫୋନ୍ କରୁଥିଲେ ଓ ତାରିଫ୍ କରୁଥିଲେ । ଅବଶ୍ୟ କେତେକ ସଂପାଦକୀୟ ତତ୍କାଳୀନ ଥିଲା; କିନ୍ତୁ ଯେଉଁ ସଂପାଦକୀୟ ଗୁଡ଼ିକର ଚିରନ୍ତନ ମୂଲ୍ୟବୋଧ ଥିଲା ସେ ସବୁକୁ ଏକାଠି କରି ପୁସ୍ତକଟିଏ ପ୍ରକାଶ କରାଯାଇ ପାରନ୍ତା । ଅବଶ୍ୟ ଏଥିପାଇଁ ନିଷ୍ଠାପର କେହି ଗବେଷକ ଦରକାର ହେବେ ।

'ସୃଜନିକା' ସଂସ୍ଥାର ଦିଗ୍‌ଦର୍ଶକ ଆମମାନଙ୍କର ଖୁବ୍ ସମ୍ମାନସ୍ପଦ ପ୍ରିୟତମ ବ୍ୟକ୍ତି ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ 'ଇସ୍ତାହାର'ର ସବୁ ସଂଖ୍ୟାକୁ ଖୋଜାଖୋଜି କରି ଏହାକୁ ଏବେ digitalise କରୁଥିବା ମୋ ପାଇଁ ଖୁବ୍ ଆନନ୍ଦର ବିଷୟ । 'ସୃଜନିକା'ର ସଂଚାଳିକା ଓ ସଂଚାଳକ ଦୁହେଁ ମଧ୍ୟ ମୋର ବିଶେଷ ଆଦରଣୀୟ । ସମସ୍ତଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ପ୍ରଦାନ କରୁଛି । 'ଇସ୍ତାହାର'କୁ ଏବେ ୩୭ ବର୍ଷ ପୂରିଲା । ୪୦ ଯାଏଁ ଯାଇପାରନ୍ତା କି ।

■ *ନିତ୍ୟାନନ୍ଦ ଶତପଥୀ*

*୮।୭।୯।୧୫*

*ଡୁପ୍ଲେକ୍ସ-୯, ଶୈଳଶ୍ରୀବିହାର*

*ଭୁବନେଶ୍ୱର-୨୧*

# ମୋ ଜୀବନ ମୋ ସାହିତ୍ୟ

♦ ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ସାହିତ୍ୟ ସହିତ ଜୀବନ ସାର୍ବଜନୀନ ଭାବେ ଛନ୍ଦାଛନ୍ଦି ହୋଇଥିବା ସର୍ବତ୍ର ପ୍ରାୟ ଦେଖାଯାଏନି । ଅଥଚ୍ କିଛି ମଣିଷ ନିଶ୍ଚୟ ଅଛନ୍ତି ଯେଉଁମାନେ ସାହିତ୍ୟଠାରୁ ଜୀବନକୁ ଭିନ୍ନ ଭାବରେ ଦେଖିପାରନ୍ତି ନାହିଁ । ଅର୍ଥାତ୍ ସେମାନଙ୍କ ପାଇଁ ସାହିତ୍ୟ ହିଁ ଜୀବନର ଅନ୍ୟନାମ ହୋଇଯାଏ । ସେହିପରି କିଛି ଭାଗ୍ୟବାନ ବ୍ୟକ୍ତି ନିଶ୍ଚୟ ପୃଥିବୀରେ ଅଛନ୍ତି ଯେଉଁମାନେ ରବୀନ୍ଦ୍ରନାଥ ବା ସଚ୍ଚିରାଉତରାୟଙ୍କ ପରି ଜୀବନର ଶେଷ ଦୀପଶିଖା ନିଭିଯିବା ଯାଏ କଲମ ଧରି କିଛି ନା କିଛି ଲେଖୁଥାନ୍ତି । ମୁଁ ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ଖୁବ୍ ନିକଟରୁ ଦେଖିଛି ଓ ସେ ଜଣେ ସେହିପରି ଭାଗ୍ୟବାନ ଲୋକ ବୋଲି ମୁଁ ମନେକରେ । ସେମାନେ ଧନୀମାନଙ୍କ ମଧ୍ୟରେ ଅଧିକ ଧନୀ; ମାନୀ ମାନଙ୍କ ମଧ୍ୟରେ ଅଧିକ ମାନୀ; ଅର୍ଥାତ୍ ସ୍ୱାଭିମାନୀ ପୁରୁଷ ଜଣେ ଜଣେ । ସେମାନଙ୍କ ଉପରେ ମା' ସରସ୍ୱତୀଙ୍କ ଅପାର କରୁଣା ବର୍ଷିଯାଏ । ସେମାନେ ସରସ୍ୱତୀଙ୍କର ଜଣେ ଜଣେ ବରପୁତ୍ର ଭାବେ ପରିଗଣିତ ହୁଅନ୍ତି - ସାରସ୍ୱତ ପୁରୁଷ ସେମାନେ । ପୁରୁଷ କହିଲା ବେଳେ ମୁଁ ନାରୀକୁ ମଧ୍ୟ ସେମାନଙ୍କ ସହିତ ସମାନ ଭାବରେ ଦେଖୁଛି । ନାରୀ ଓ ପୁରୁଷ ଅବୟବରେ ଭିନ୍ନ ହେଲେ ବି ଲେଖକ ଭାବେ ସେମାନେ ଏକ - ଅର୍ଥାତ୍ ପରସ୍ପରଠାରୁ ଅଭିନ୍ନ । ତେଣୁ ସେମାନଙ୍କର ଲିଙ୍ଗଭେଦ ନଥାଏ । ସେମାନେ ସରସ୍ୱତୀଙ୍କ ବରପୁତ୍ର ମଧ୍ୟ ।

ମୁଁ ଏଇପରି ଜୀବନଟିଏ ମା' ଶାରଳାଙ୍କୁ ସ୍ତୁତି କରି ପ୍ରାୟ ଏଗାର ବର୍ଷ ବେଳୁ ମାଗି ନେଇଥିଲି । ନଚେତ୍ ସେଇ ବୟସରେ ତାଙ୍କ ପାଇଁ ମୋର ସର୍ବପ୍ରଥମ କବିତା ଆରାଧନାର ସଂଗୀତଟିଏ କିପରି ବା ଲେଖିପାରିଥାନ୍ତି । ତାହା ମୋ ପାଇଁ ସ୍ତୋତ୍ରଟିଏ ହୋଇଗଲା - ସବୁଦିନେ ସକାଳ ସଂଜେ ସେଇ ସଂଗୀତଟି ହୋଇଗଲା ମୋର ପ୍ରାର୍ଥନାର ସଂଗୀତ । ପ୍ରାର୍ଥନାର ସଂଗୀତ କ'ଣ କେବଳ ସଂସ୍କୃତ ଭାଷାରେ ଲେଖାଯିବା କଥା କି ? ମୋର କିଶୋର ସୁଲଭ ଭାବ ଓ ଭାଷାରେ ସେଦିନ ଯାହା ଲେଖିଥିଲି ତାହା ଉଚ୍ଚାଙ୍ଗ ସାହିତ୍ୟ ନ ହୋଇପାରେ - କିଂତୁ ମୋ ଅନ୍ତରର ଉଚ୍ଚାଟନ ଓ ସମର୍ପଣ ତ ନିଶ୍ଚୟ । ମନେହେଉଛି ସେଇଦିନଠାରୁ ଜୀବନ ସହିତ ସାହିତ୍ୟର ଏକ ଯୋଡ଼ାଯୋଡ଼ି ବା ଘେନାଘେନି ସଂପର୍କ ମୋର ପ୍ରତିଷ୍ଠିତ ହୋଇଗଲା ।

କଲେଜରେ ପଢ଼ିଲାବେଳେ ସାହିତ୍ୟପ୍ରତି ଏତେ ଶ୍ରଦ୍ଧା ଆସି ନଥାନ୍ତା; କାରଣ ମୁଁ ଥିଲି ବିଜ୍ଞାନର ଛାତ୍ର । ତେଣୁ ଡାକ୍ତର ବା ଇଂଜିନିୟରଟିଏ ହୋଇଥାନ୍ତି - ତାହା ହୋଇଥାନ୍ତା

ବିଜ୍ଞାନ ଛାତ୍ରର ସ୍ୱାଭାବିକ ଗତିପଥ । କିଂତୁ ବି.ଏ. ଶ୍ରେଣୀରେ ବିଜ୍ଞାନ ଛାଡ଼ି କଳାକୁ ପୁଣି ମୋ ଭାଷା ସାହିତ୍ୟକୁ ବିଶେଷ ଅଧ୍ୟୟନ (ଅନର୍ସ) ଭାବେ ମୁଁ କାହା ପ୍ରେରଣାରେ ବାଛି ନେଲି ? ମା' ସରସ୍ୱତୀଙ୍କ କୃପାରେ ନା ମାତୃଭାଷା ପ୍ରତି ମମତାରେ ? ସମ୍ଭବତଃ ସେଇ ସମୟରୁ ମୋ ଜୀବନ ସହିତ ସାହିତ୍ୟ ଅଧିକ ନିକଟବର୍ତ୍ତୀ ହୋଇଗଲା । ମୁଁ କେବଳ ଜଣେ ବାଳିକାର ପ୍ରେମରେ ନୁହେଁ, ସାହିତ୍ୟ ସରସ୍ୱତୀଙ୍କ ପ୍ରେମରେ ମଧ୍ୟ ପଡ଼ିଗଲି । କବି ଓ ଲେଖକମାନଙ୍କ ଜୀବନ ପ୍ରେମ ଓ ସାହିତ୍ୟ ସହିତ ପ୍ରାୟ ଯୋଡ଼ାଯୋଡ଼ି; କାରଣ ପ୍ରେମ ହିଁ ସେମାନଙ୍କ ପାଇଁ ହୋଇଯାଏ ସୃଷ୍ଟିର ଉତ୍ସ ଓ ଅବଲମ୍ବନ । କବିତାର ମୋହରେ ମୋ ତାରୁଣ୍ୟ ତରଙ୍ଗାୟିତ ହୋଇ ଉଠୁଥିଲା । ବେଶ୍ କିଛି କବିତା ଲେଖି ପାରିଥିଲି । କିଂତୁ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେବାପରେ ସ୍ୱତଃ ସମାଲୋଚନା ହୋଇଗଲା ମୋର ସାହିତ୍ୟିକ ଜୀବନର ଉଦ୍‌ଘୋଷିତ ସରଣୀ । କବିତା ଅପେକ୍ଷା ଗଦ୍ୟରେ ମୁଁ ଅଧିକ ସ୍ୱଚ୍ଛନ୍ଦ ହୋଇ ଉଠୁଥିବା ନିଜେ ଅନୁଭବ କଲି । ସମ୍ଭବତଃ ବୃତ୍ତି ଓ ପ୍ରବୃତ୍ତିର ଦ୍ୱନ୍ଦ୍ୱରେ ବୃତ୍ତି ହିଁ ମୋ ଉପରେ ସବାର ହୋଇଗଲା ଓ ମୋ ଜୀବନ ଗଦ୍ୟର ସରଣୀ ହୋଇ ଉଠିଲା ରୁକ୍ଷ ଓ କର୍କଶ । ଭାବିଲି ତାହାହିଁ ବୋଧହୁଏ ଉତ୍କଳ ସରସ୍ୱତୀ ମା' ଶାରଳାଙ୍କ ଇଚ୍ଛା ଓ ନିର୍ଦ୍ଦେଶ । ମୋ ଜୀବନରୁ ଆବେଗ ମରିଗଲା କି ? ତେବେ କବିତାର ନିର୍ଝର କାହିଁକି କ୍ରମେ ଶୁଷ୍କ ହୋଇ ଆସିଲା ଓ ଗଦ୍ୟ ହିଁ ମୋତେ ଅଧିକ ଭାବେ ମୋହାଚ୍ଛନ୍ନ କରି ରଖିଲା ?

ବେଳେବେଳେ ଅବଶ୍ୟ କେଉଁ ଝଲକ୍‌ରେ କବିତାର ନିବୁଜ ଉତ୍ସଟି ଫିଟିଯାଏ - ମୁଁ ପୁଣି ଲେଖିବସେ କବିତା; 'ରାଣୀ ମହୁମାଛି', 'ସବାସାନ ପ୍ରେମିକା' ପରି କବିତା ସ୍ୱତଃ ଲେଖି ହୋଇଯାଏ । ମୁଁ ଚେଷ୍ଟା କରେ ବାଇଶି ବର୍ଷ ବୟସରେ ଲେଖିଥିବା 'ଆଖି' ଓ 'ସମୁଦ୍ର' ପରି କବିତା ସହିତ ସେମାନଙ୍କୁ ଯୋଡ଼ିବା ପାଇଁ । ଆଦ୍ୟ ପ୍ରେମର ସଂପର୍କକୁ ହରେଇ କେତେ ଭାବ-ସଂପର୍କ ଭିତରେ ବଂଚିବାକୁ ଚେଷ୍ଟା କରେ । ଜୀବନ କିଂତୁ ରକ୍ତସଂପର୍କ ଓ ଭାବ ସଂପର୍କକୁ ଏକାଠି ଧରି ରଖିବାକୁ ନାରାଜ୍ ହୁଏ । ରକ୍ତ ସଂପର୍କ ଗଦ୍ୟପରି ଧୂସର ଓ ଧୂମିଳ ହୋଇ ଉଠିଲାବେଳେ ଭାବ ସଂପର୍କ କବିତା ପରି ଉଜ୍ଜ୍ୱଳ ଓ ଆବେଗାୟିତ ହୋଇ ଉଠେ । ଭାବେ ଜୀବନ ସମ୍ଭବତଃ ସବୁଦିନେ ଭାବକୁ ନିକଟ ହୋଇ ଉଠିବା ପାଇଁ ବ୍ୟଗ୍ର ହେଲାବେଳେ ରକ୍ତସମ୍ପର୍କ ଜୀବନଠାରୁ ହୋଇଯାଏ ଦୂରବର୍ତ୍ତୀ । ତା'ରି ଯନ୍ତ୍ରଣା ତ ସାହିତ୍ୟର ଉତ୍ସ ଓ ଉପାଦାନ । ଏତେ ଆନନ୍ଦ ପୁଣି ଥାଏ ପଢ଼ାଲେଖାରେ ! କୁଆଡ଼େ ହଜିଯାଏ ଜୀବନ, ନିଶ୍ଚିହ୍ନ ହୋଇଯାଏ ରକ୍ତସଂପର୍କ । ଅଥଚ୍ ସାହିତ୍ୟ ଦିଏ ବରାଭୟ । କ୍ଷତାକ୍ତ ଜୀବନ୍‌ରେ ମଲମ ଲେପିଦିଏ, ବଂଚିବାକୁ ଯୋଗାଇଦିଏ ମାନସିକ ପୁଞ୍ଜି - ତାକୁ ନୂତନ ଅଭିଜ୍ଞତା ବୋଲି କହି ପାରନ୍ତି । ଜୀବନ ଓ ଅଭିଜ୍ଞତା ପରସ୍ପରଠାରୁ କ'ଣ ବିଚ୍ଛିନ୍ନ ହୋଇପାରିବେ । ସେମାନେ ହିଁ ପ୍ରତ୍ୟକ୍ଷ ଭାବେ ସାହିତ୍ୟକୁ ପରିପୁଷ୍ଟ କରନ୍ତି;

ସୋହାଗରେ ପୋଛି ଦିଅନ୍ତି କ୍ଷତରୁ ନିଗିଡ଼ି ଯାଉଥିବା ରକ୍ତଧାରକୁ । ସାହିତ୍ୟ ସରସ୍ୱତୀ ବରାଭୟ ଦିଅନ୍ତି - ଜୀବନରେ ଦୁଃଖ ଗୋଟେ କ'ଣ, ମୁଁ ଅଛି ପାଖେ ପାଖେ; ଦୁଃଖକୁ ଅତିକ୍ରମ କରିଯିବାକୁ ମୁଁ ଯୋଗାଇଦେବି ଉପାଦାନ । ସବୁ ଭୁଲି ମୋତେ ହିଁ ଆପଣାର କର - ଦେଖିବ ଜୀବନର ସବୁ ଯନ୍ତ୍ରଣା କିପରି ମଉଳିଯିବ, ନିଭିଯିବ ବି ପର୍ଯ୍ୟାୟକ୍ରମେ । ମୁଁ ଆଶ୍ୱସ୍ତ ହୁଏ । ଭାବେ ସତେତ କେତେ ଅଭୟଦାୟିନୀ, ଶ୍ରଦ୍ଧାଶୀଳା, ଉଦାରବାଦୀ ଏ ସାହିତ୍ୟ ଚର୍ଚ୍ଚାର ସରଣୀ । ଏଠି ଈର୍ଷା ନାହିଁ, ଅସୂୟା ନାହିଁ, କଳି ନାହିଁ, ଛଳ ନାହିଁ, ଦ୍ୱନ୍ଦ୍ୱ ନାହିଁ, ଦଳ (group) ନାହିଁ, ରାଜନୀତିର ନଷ୍ଟ ଗତି ନାହିଁ, କୃତ୍ରିମତା ନାହିଁ । ଶୁଭ୍ର ଶତଦଳ ପରି ଅବା ଶୀତଳ ସମୀରଣ ପରି ସାହିତ୍ୟ ଏତେ ସ୍ନେହ ମେଦୁର ଓ ପ୍ରୀତିପ୍ରଦ ହୋଇପାରେ - ଜୀବନ ଭ୍ରମର ସେଥିରୁ ମଧୁପାନ କରୁ କରୁ ମୃତ୍ୟୁ ଆସି ଯାଆନ୍ତା କି । ଜୀବନ ହୋଇ ଉଠନ୍ତା ଅଧିକ ମହନୀୟ, ଅଧିକ ରମଣୀୟ - ସେମାନେ କୁହନ୍ତେ ସବୁ ଦେଇ ନିଃସ୍ୱ ମଣିଷଟିଏ ଶୂନ୍ୟ ହାତରେ ଅପାଙ୍‌କ୍ତେୟ ଭାବେ ପୃଥିବୀରୁ ଆଖି ବୁଜିଦେଲା - ତାର ଘର ଥାଇବି ନଥିଲା, ସଂସାର ଥାଇ ବି ନଥିଲା, ମେଳ ଭିତରେ ନିହାତି ଏକ୍‌ଲା ମଣିଷଟିଏ ନିଜ ବାଗରେ ବଂଚିଥିଲା । ତାର ସ୍ୱାଧୀନ ଇଚ୍ଛା ଓ ସ୍ୱାଧୀନ ବିହାରରେ ଯେଉଁମାନେ ଅନ୍ତରାୟ ସୃଷ୍ଟି କରୁଥିଲେ ସେସବୁକୁ ସେ ଅନାୟାସରେ ଅତିକ୍ରମ କରିଯାଉଥିଲା । ତାର ଗୋଷ୍ଠୀ ନଥିଲା, ଅଭିସନ୍ଧି ନଥିଲା, ତୋଷାମଦ୍ କ'ଣ ଓ କିପରି ସେ ଜାଣି ନ ଥିଲା । ସତ କହୁଥିଲା, ସତ ଲେଖୁଥିଲା - ସେଥିପାଇଁ ତାର ଶତ୍ରୁ ଥିଲେ ଅନେକ । ସେଥିପାଇଁ ତାର ପରବାୟ ନ ଥିଲା - କାରଣ ସେ କୌଣସି ପୁରସ୍କାର ପାଇଁ ପ୍ରଲୋଭିତ ନ ଥିଲା କିମ୍ବା ତିରସ୍କାରରେ ମ୍ରିୟମାଣ ହେଉ ନ ଥିଲା - ସାହିତ୍ୟ ହିଁ ଥିଲା ତାର ଜୀବନ, ବଂଚିବାର ଏକମାତ୍ର ସାଧନ ସ୍ୱପ୍ନ ଓ ସାମଗ୍ରୀ । ତାର ସମଗ୍ର ପରିବାର ସାହିତ୍ୟରେ ଉତଫୁଲ୍ଲ ହେଉଥିଲେ ବୋଲି ସେ ନିଶ୍ଚୟ ଆନନ୍ଦ ଅନୁଭବ କରୁଥିଲା । କିଂତୁ ତାର ଜୀବନ ଥିଲା ନିଆରା - ତାର ଜୀବନ ଥିଲେ ବହି ଓ ପ୍ରେମିକାମାନେ । ଶୋଇବା ଘର ଠାରୁ ଡ୍ରଇଂରୁମ୍ ଓ ପଢ଼ାଘର ସବୁଆଡ଼େ କେବଳ ବହି ଆଉ ବହି । ସେମାନଙ୍କୁ ଦେଖି ସେ ଆନନ୍ଦ ପାଉଥିଲା, ସେମାନଙ୍କୁ ନେଇ ବଂଚୁଥିଲା, ସେମାନଙ୍କୁ ଭଲ ପାଉଥିଲା, ପ୍ରେମ କରୁଥିଲା । ତା ଜୀବନଠାରୁ ତା ସାହିତ୍ୟ କେବେବି ଅଲଗା ନଥିଲା । ବରଂ ଥିଲା ଯୁଗନଦ୍ଧ ଓ ନାକ୍ଷତ୍ରିକ । ସ୍ନେହ, ଶାଦ୍ୱଳ ଓ ପ୍ରୀତି ଉଚ୍ଛଳ ।

■ *ନିତ୍ୟାନନ୍ଦ ଶତପଥୀ*
*ଡୁପ୍ଲେକ୍ସ-୯, ଶୈଳଶ୍ରୀବିହାର*
*ଭୁବନେଶ୍ୱର-୨୧*


ପୁରୀ ସମୁଦ୍ର କୂଳରେ ନାତୁଣୀ ସହ



ପ୍ରଫେସର ଶତପଥୀଙ୍କ ପିତା ৺ବିଦ୍ୟାଧର ଓ ମାତା ৺ ଦୁର୍ଗାବତୀ



ଅଧ୍ୟାପକ ଶତପଥୀ ଚାଳିଶ ବର୍ଷ ବେଳେ